# ସୂଚୀପତ୍ର ୪

## [ଓଡ଼ିଆ ସାହିତ୍ୟର ଇତିହାସ]

## [ ଓଡ଼ିଆ ସମାଜ ଓ ସାହିତ୍ୟ ]

# ଭୂମିକା

## ଏହି 'ଇତିହାସ'ର ଇତିହାସ

କୌଣସି ଇତିହାସ, ପୁଣି ବିଶେଷକରି 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖିବାର କଳ୍ପନା ବା ବାସନା ଏହି ଲେଖକର ସ୍ୱପ୍ନରେ ମଧ୍ୟ କେବେ ଦେଖାଦେଇନଥିଲା ।

ରେଭେନ୍‌ସା କଲେଜରେ ଛାତ୍ର ଥିଲାବେଳେ ରଣପୁରର ସହପାଠୀ ବନ୍ଧୁ ଶ୍ରୀ ଚଣ୍ଡେଶ୍ୱର ପ୍ରସାଦ ମିଶ୍ର (ବର୍ତ୍ତମାନ ସେ ଅଞ୍ଚଳର ପ୍ରସିଦ୍ଧ ଆଡ୍‌ଭୋକେଟ୍) କଥାପ୍ରସଙ୍ଗରେ କିନ୍ତୁ ଥରେ କହିଥିଲେ– ''ମାନସିଂ, ତମେ ଦିନେ ଇଂରାଜୀରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବ।'' ପ୍ରାୟ ୪୦ ବର୍ଷତଳର ତାଙ୍କର ବାଣୀ ଏପରି ଝଡ଼-ଝଞ୍ଜା-ସହିତ ସଫଳତା ଲାଭ କରିବ ବୋଲି କିଏ ଭାବିଥିଲା ? ବନ୍ଧୁ ମିଶ୍ରେ ଏ କଥା କହିଥିଲେ ବୋଧହୁଏ, ସେତେବେଳେ ଏହି ଲେଖକ ଇଂରାଜୀ ସାହିତ୍ୟର ଉତ୍ସାହୀ ଛାତ୍ର ଥିବା ଯୋଗୁଁ। ଇଂରାଜୀ ସାହିତ୍ୟକୁ ଭଲରୂପେ ଜାଣିବାପାଇଁ ଇଂରାଜୀ ସାହିତ୍ୟର ଇତିହାସକୁ ଉତ୍ତମ ଭାବରେ ଆୟତ୍ତ କରିବା ନିତାନ୍ତ ଦରକାର। ଇଂରାଜୀ ସାହିତ୍ୟର ବହୁ ଇତିହାସ ବଜାରରେ ମିଳିବ। ସେଥିରୁ ଅନ୍ତତଃ କେତୋଟି ନିଜେଇ ଏକ ଏକ ସାହିତ୍ୟ– ଅତି ସୁଖପାଠ୍ୟ ଓ ଶିକ୍ଷାପ୍ରଦ ଗ୍ରନ୍ଥ। ଏବେ ବି ଏ ଲେଖକର ଅବସରବିନୋଦନ ଭିତରେ ଥାଏ ବେଳେବେଳେ ଇଂରାଜୀ ସାହିତ୍ୟର କୌଣସି ନା କୌଣସି ଇତିହାସ ଗ୍ରନ୍ଥ। ଅବଶ୍ୟ ତାହା ସାଥିରେ ଥାଏ ମଧ୍ୟ ରୁଷ୍, ଜର୍ମାନ୍ ଆଦି ଅନ୍ୟ ଉନ୍ନତ ବୈଦେଶିକ ଭାଷାମାନଙ୍କର ଇତିହାସ। କାରଣ, କେବଳ ସାହିତ୍ୟର ଇତିହାସହିଁ ଦେବ ଯେକୌଣସି ଜାତିର ଆତ୍ମାର ଇତିହାସ, ତା'ର ପ୍ରକୃତ ମର୍ମବାଣୀ।

ସହପାଠୀ ବନ୍ଧୁ ମିଶ୍ରେ ମତେ ସେତେବେଳେ ଇଂରାଜୀରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାକୁ ଯେ କହିଥିଲେ, ତାହା ବୋଧହୁଏ ସେତେବେଳେ ମୁଁ ପଢୁଥିବା ଇଂରାଜୀ ସାହିତ୍ୟର ଛୋଟ ବା ମୋଟ; କିନ୍ତୁ ସୁଲିଖିତ ଓ ସୁପାଠ୍ୟ ଇତିହାସ ସବୁ ଦେଖି ଦେଖି ଓ ମନେ ମନେ ଭାବି, ''ଏପରି ଖଣ୍ଡିଏ ବହି ଓଡ଼ିଆ ସାହିତ୍ୟରେ ଥାଆନ୍ତା କି ?''

ବନ୍ଧୁ ମତେ ଏ ଦାୟିତ୍ୱ ଦେବାର ଆଉ ଏକ କାରଣ ବୋଧହୁଏ ଥାଇପାରେ ଯେ, ସେ ବୟସରେ ମଧ୍ୟ ଓଡ଼ିଶାର କଥା ଇଂରାଜୀରେ ଲେଖିବା ମୁଁ ଅଳ୍ପ ଅଳ୍ପ ଆରମ୍ଭ କରିଦେଇଥିଲି। ଗୋପବନ୍ଧୁଙ୍କ ଉପରେ ପ୍ରଥମ ଇଂରାଜୀ ପ୍ରବନ୍ଧ ଓ ଗୋପାଳକୃଷ୍ଣଙ୍କ କବିତାର ପ୍ରଥମ ଇଂରାଜୀ ଅନୁବାଦ **(Love-lyrics of Gopalkrishna)**

ସମସାମୟିକ ରେଭେନ୍‌ସାଭିଆନ୍‌ରେ ଏହି ଲେଖକର ରଚନା ଭାବରେ ପ୍ରକାଶିତ ହୋଇଥିଲା। ରବୀନ୍ଦ୍ରନାଥଙ୍କ ଓଡ଼ିଶା-ସଂପୃକ୍ତ ଏକ ବଙ୍ଗଳା ରଚନା **'Temples of Bhubaneswar'** ନାମରେ ଅନୂଦିତ ହୋଇ ପ୍ରକାଶ ପାଇଥିଲା, ସେହି ରେଭେନ୍‌ସାଭିଆନ୍‌ରେ। ମନେଅଛି, ରେଭେନ୍‌ସାଭିଆନ୍‌ରେ ଗୋପାଳକୃଷ୍ଣଙ୍କ କବିତାର ଅନୁବାଦ ପଢ଼ି ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି କହିଥିଲେ– ''ଭଲ କାମ କରୁଛୁ ରେ। ଆହୁରି ଆହୁରି କରି ଯା।''

କଲେଜ ଛାଡ଼ିବା ପରେ ମଧ ପୂର୍ବର ସେହି ଛାତ୍ରଜୀବନର ଅଭ୍ୟାସଟା ବରାବର ରହିଥିଲା– ଅର୍ଥାତ୍, ବେଳ ଓ ସୁଯୋଗ ଆସିଲେ ଓଡ଼ିଶା, ଓଡ଼ିଆ ଜାତି ଓ ବିଶେଷରେ ଓଡ଼ିଆ ସାହିତ୍ୟର କଥା ଇଂରାଜୀରେ ଲେଖି ବାହାରେ ପ୍ରଚାର କରିବାର ଅଭ୍ୟାସଟା। ନିମାପଡ଼ାରେ ସ୍କୁଲ ଶିକ୍ଷକ ଥିଲେ ମଧ ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ପ୍ରଥମ ଇଂରାଜୀ ପ୍ରବନ୍ଧ ମାନ୍ଦ୍ରାସ୍‌ର ସେତେବେଳର ପ୍ରସିଦ୍ଧ ପତ୍ରିକା 'ଇଣ୍ଡିୟାନ୍ ରିଭିୟୁ'ରେ, (୧୯୩୫) ବାହାରିଲା। ଏଇ ପ୍ରବନ୍ଧରେ ସତ୍ୟବାଦୀ ସ୍କୁଲକୁ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଗୋଟିଏ ଅନନ୍ୟ-ଏକକରୂପେ ପ୍ରଥମକରି ବର୍ଣ୍ଣନା କରାଯାଇଥିଲା। ତା'ପରେ ବାଙ୍ଗାଲୋର୍‌ରୁ ବାହାରୁଥିବା ଇଂରାଜୀ ପତ୍ରିକା 'ତ୍ରିବେଣୀ'ର ଦୁଇଟି ସଂଖ୍ୟାରେ ସମଗ୍ର ଓଡ଼ିଆ ସାହିତ୍ୟର ଏକ ସଂକ୍ଷିପ୍ତ ଇତିହାସ ପ୍ରକାଶ କରାଇଥିଲି। ମନେଅଛି, ମୋର ରଚନାରେ ଓଡ଼ିଶାର ରାଜନୈତିକ ନେତା ଗୋପବନ୍ଧୁ ଦାସଙ୍କୁ ସାହିତ୍ୟିକ ଭାବରେ ପ୍ରଥମକରି ଦେଖି, ସ୍ୱୟଂ ସମ୍ପାଦକ ରାମକୋଟୀଶ୍ୱର ରାଓ, 'ତ୍ରିବେଣୀ'ର ପରବର୍ତ୍ତୀ ସଂଖ୍ୟାରେ ଆନ୍ଧ୍ର ନେତା କୋଣ୍ଡା ଭେଙ୍କେଟାପ୍‌ପାୟାଙ୍କ ସହିତ ଗୋପବନ୍ଧୁଙ୍କର ତୁଳନା କରି ସମ୍ପାଦକୀୟ ଲେଖିଥିଲେ। ପରେ 'ତ୍ରିବେଣୀ'ରେ ଗୋପାଳକୃଷ୍ଣଙ୍କ ଉପରେ ଓ 'ଇଣ୍ଡିଆନ୍ ରିଭିୟୁ'ରେ ଭୀମ ଭୋଇଙ୍କ ଉପରେ ପ୍ରବନ୍ଧ ଲେଖିଛି। ଏସବୁ ତ ସର୍ବଭାରତୀୟ ପତ୍ରିକା। ଭାରତର ଚାରିଆଡ଼େ ବୁଦ୍ଧିଜୀବୀମାନେ ଏସବୁ ବୋଧହୁଏ ପଢୁଥିବେ; ଫଳରେ, ପରେ ମୋ ନିକଟକୁ ଅଯାଚିତଭାବରେ ଓଡ଼ିଆ ସାହିତ୍ୟ ଉପରେ ପ୍ରବନ୍ଧ ପାଇଁ ଅନୁରୋଧ ସବୁ ଆସିଲା– ଏବେ ବି ଆସେ। ଦିଲ୍ଲୀ ବିଶ୍ୱବିଦ୍ୟାଳୟର ହିନ୍ଦୀ ବିଭାଗ ପକ୍ଷରୁ ହିନ୍ଦୀ ବିଭାଗର ପ୍ରଫେସର ଓ ପ୍ରସିଦ୍ଧ ହିନ୍ଦୀ ସାହିତ୍ୟିକ ଡକ୍ଟର ନଗେନ୍ଦ୍ରଙ୍କ ସମ୍ପାଦନାରେ **'Indian Literatures'** ନାମରେ ଏକ ସୁନ୍ଦର ଗ୍ରନ୍ଥ ପ୍ରକାଶିତ ହୋଇଛି। ତା'ର ଏକ ହିନ୍ଦୀ ସଂସ୍କରଣ ମଧ କରାହୋଇଛି। ଏଥିରେ ଓଡ଼ିଆ ସାହିତ୍ୟର ଭାର ମତେ ଦିଆଯାଇଥିଲା। ସେହିପରି ଭାର ଦିଆଯାଇଥିଲା ୱାର୍ଦ୍ଧାର ରାଷ୍ଟ୍ରଭାଷା ପ୍ରଚାର ସଂସ୍ଥା ପକ୍ଷରୁ ପ୍ରକାଶିତ 'ଭାରତୀ ବାଙ୍ମୟ' ପର୍ଯ୍ୟାୟରେ ଓଡ଼ିଆ ଭାଷା ପାଇଁ। ଏହାର ଯେଉଁ ଖଣ୍ଡରେ ଓଡ଼ିଆ ସାହିତ୍ୟ ଉପରେ ପ୍ରବନ୍ଧ ପ୍ରକାଶିତ, ସେହି ଖଣ୍ଡରେ ଡକ୍ଟର ସୁନୀତି କୁମାର ଚାଟାର୍ଜ୍ଜିଙ୍କ ଲିଖିତ ବଙ୍ଗଳା ସାହିତ୍ୟ ସଂପୃକ୍ତ ପ୍ରବନ୍ଧ ମଧ ପ୍ରକାଶିତ। ୧୯୫୭ରେ ଜାତୀୟ ସାହିତ୍ୟ ଆକାଡେମୀ **Contemporary Indian Literature** ନାମରେ ଖଣ୍ଡିଏ ବହି ପ୍ରକାଶ କଲେ। ବହିଟି ଅତ୍ୟନ୍ତ ଜନପ୍ରିୟ ହୋଇଉଠିଥିଲା, ଫଳରେ ୧୯୫୯ରେ ଏହାର ଦ୍ୱିତୀୟ

ସଂସ୍କରଣ ହେବା ଦରକାର ପଡ଼ିଲା। ଏଥିରେ ମଧ୍ୟ ଆଧୁନିକ ଓଡ଼ିଆ ସାହିତ୍ୟର ଅଂଶ ଏହି ଲେଖକଙ୍କୁହିଁ ଲେଖିବାକୁ ଦିଆଯାଇଥିଲା ଅଯାଚିତ ଭାବରେ। ଏବେ ଏ ଗ୍ରନ୍ଥ ସର୍ବଭାରତୀୟ ଭାଷାମାନଙ୍କୁ ଅନୂଦିତ ହେବାକୁ ଯାଉଛି ଓ ସେଥିପାଇଁ ଲେଖକ ଉପରେ ସଂପୃକ୍ତ ପ୍ରବନ୍ଧର ରିଭିଜନ୍‌ର ଭାର ଦିଆଯାଇଛି।

ତେଣୁ ମୋଟଉପରେ ଓଡ଼ିଆ ସାହିତ୍ୟ ଉପରେ ଖଣ୍ଡିଏ ପୂରା ବହି ଲେଖିବା ପାଇଁ ବହୁକାଳଧରି ଏହି ଲେଖକର କିଛି କିଛି ଖଡ଼ିପାଠ ଯେ ନ ହୋଇଥିଲା, ଏପରି ନୁହେଁ। ଜାତୀୟ ସାହିତ୍ୟ ଆକାଡେମୀର **'Contemporary Indian Literature'** ପ୍ରକାଶିତ ହେବା ପରେ ସେଥିରେ ଥିବା ଆଧୁନିକ ଓଡ଼ିଆ-ସାହିତ୍ୟ-ସଂପୃକ୍ତ ପ୍ରବନ୍ଧ ଉପରେ ତଥାକଥିତ ବାମପନ୍ଥୀ ଓ ପ୍ରଗତି-ପନ୍ଥୀ ବନ୍ଧୁମାନେ ପରେ ପାଟିତୁଣ୍ଡ କରିଥିଲେ, ସେହି କାଳକୁ ନେଇ ଯେପରି ହୋଇଛି ପୂରା ଇତିହାସରେ। କିନ୍ତୁ ସେତେବେଳେ ମଧ୍ୟ ଉତ୍ତରରେ କହିଥିଲି ଯେ, **'Contemporary Indian Literature'**ରେ ପ୍ରକାଶିତ ମତ ମୋ ପକ୍ଷରୁ ନୂତନ ବା ଆକସ୍ମିକ ନୁହେଁ। ସବୁଜ, ବାମପନ୍ଥୀ ଓ ତଥାକଥିତ ପ୍ରଗତିବାଦୀମାନେ ଓଡ଼ିଆ ଭାଷାର ହଜାରେ ବର୍ଷର ସ୍ୱକୀୟ ଐତିହ୍ୟକୁ ଯେ ନଷ୍ଟ କରିଛନ୍ତି, ସେମାନଙ୍କର ଗପ-ସଂଗ୍ରହ ଏ ଦେଶର ମାଟିରୁ ନୁହେଁ, ପୁଣି ସେମାନଙ୍କର ଅଧିକାଂଶ ଗଢ଼ନା ବଙ୍ଗଳାରୁ ଚୋରି ବା ଧାର ବା ଅଦଳବଦଳ ଛଡ଼ା ଆଉ କିଛି ନୁହେଁ, ଏ କଥା ମୁଁ ଗତ ତିରିଶ ବର୍ଷଧରି କହିଆସୁଛି। ଯେତେ ବାଦ-ପ୍ରତିବାଦ, କୁତ୍ସା ଓ ଗୁଣ୍ଡାମି ସତ୍ତ୍ୱେ ମୋର ମତ ଓ ସ୍ୱର ବଦଳାଇନାହିଁ କି ଏବେ ବି ବଦଳାଇବାର କୌଣସି କାରଣ ଦେଖୁନାହିଁ। କାରଣ, ସାହିତ୍ୟରାଜ୍ୟରେ କୁତ୍ସା, ସଭା ବା ଗୁଣ୍ଡାମି ଗ୍ରହଣୀୟ ଯୁକ୍ତି ନୁହେଁ।

ଜାତୀୟ ସାହିତ୍ୟ ଆକାଡେମୀର **'Contemporary Indian Literature'**ରେ ପ୍ରକାଶିତ ମୋର ଓଡ଼ିଆ ସାହିତ୍ୟ ପ୍ରବନ୍ଧଟି ମଧ୍ୟ ବୀଭତ୍ସ ତୋଫାନୀ ରୀତିରେ ଓଡ଼ିଶାରେ ଆଲୋଚିତ ହେଲେହେଁ ଗୋଟିଏ ଆଶ୍ୱାସନାର ବାଣୀ କିନ୍ତୁ ସପକ୍ଷ ଓ ବିପକ୍ଷ ଉଭୟ ତରଫରୁ ଶୁଣିବାକୁ ମିଳିଲା ଯେ, ପ୍ରବନ୍ଧଟି ଇଂରାଜୀରେ ସୁଲିଖିତ। ଫଳରେ, ଇଂରାଜୀରେ ଓଡ଼ିଆ ସାହିତ୍ୟର ପୂରା ଇତିହାସଟିଏ ଲେଖିଦେବାପାଇଁ ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ଯେତେବେଳେ ଅନୁରୋଧ ଆସିଲା, ଜାତୀୟ ଦାୟିତ୍ୱଦୃଷ୍ଟିରୁହିଁ ସେ ଗୁରୁ ଭାରକୁ ଫିଙ୍ଗି ନପାରି ସ୍ୱୀକାର କରିନେଲି।

## ଓଡ଼ିଆରେ ଓଡ଼ିଆ ସାହିତ୍ୟର ଇତିହାସ ଅଛି କି? –

କିନ୍ତୁ ଦାୟିତ୍ୱ ନେଲି ସିନା, ପ୍ରାଥମିକ ଚେଷ୍ଟା ପରେହିଁ ବାରମ୍ବାର ନିଜକୁ ପ୍ରଶ୍ନ କଲି– "କାହିଁକି ଏ ମୂର୍ଖତା କଲି?" କାରଣ, ଓଡ଼ିଆ ଭାଷାରେହିଁ ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଓ ସନ୍ତୋଷଜନକ ଖଣ୍ଡିଏ ହେଲେ ଇତିହାସ ଏପର୍ଯ୍ୟନ୍ତ ଦେଖାଦେଇନାହିଁ। ତାହାକୁ ଆଶ୍ରୟ କରି ତେଣୁ ଇଂରାଜୀ ପରି ଏକ ବିଦେଶୀ ଭାଷାରେ ଓଡ଼ିଆ ସାହିତ୍ୟର ଏକ ପୂରା ଇତିହାସ ଲେଖିବି କି ଏତାବତ୍ ଅଜ୍ଞାତ ଓ ଅବଜ୍ଞାତ ମୋର

ମାତୃଭାଷାକୁ କିପରି ସଜାଇ ଠିଆକଲେ ବାହାରର ଲୋକେ ଏପରି ଏକ ଇତିହାସକୁ ଆଗ୍ରହର ସହିତ ପଢ଼ିବେ ଓ ପଢ଼ି ଏ ସାହିତ୍ୟପ୍ରତି ସଶ୍ରଦ୍ଧ ହେବେ? ଏ ପ୍ରକାର ଲକ୍ଷ୍ୟ ପୂରଣରେ ଓଡ଼ିଆରେ ତ ଖଣ୍ଡିଏ ହେଲେ ଅଧାପନ୍ତରିଆ ବହି ମଧ୍ୟ ନାହିଁ। ପ୍ରାଚୀ ସମିତିର ପୁସ୍ତକମାନଙ୍କରେ ଥିବା ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଦୀର୍ଘ ଓ ଆସ୍ପର୍ଦ୍ଧାମୟ ଭୂମିକାବଳି ଆଲୋଚନାର ହଯବରଲ ମାତ୍ର। ସେସବୁରେ ଯଥେଷ୍ଟ 'ଗ୍ରାହୀତ୍ୱ' ଥାଇପାରେ; କିନ୍ତୁ 'ସାହିତ୍ୟ' ସେଠାରୁ ଯେ ପଳାୟିତ– ଏହା କହିଲେ ଅତ୍ୟୁକ୍ତି ହେବନାହିଁ। ଏ ଦିଗରେ ସାମାନ୍ୟ ସିଦ୍ଧି ଥିଲା ପଣ୍ଡିତ ବିନାୟକ ମିଶ୍ରଙ୍କର– 'ଓଡ଼ିଆ ସାହିତ୍ୟର ଇତିହାସ'ର ପ୍ରଥମ ସଂସ୍କରଣ; କିନ୍ତୁ ତାହା ଥିଲା ଅସଂପୂର୍ଣ୍ଣ। ଯାହା ବା ସେଥିରେ ଥିଲା, କେବଳ ତାକୁଇ ଇଂରାଜୀରେ ଅନୁବାଦ କରିଦେଲେ ବାହାରର କୌଣସି ବୁଦ୍ଧିଜୀବୀ ତାକୁ ପଢ଼ି ଓଡ଼ିଆ ସାହିତ୍ୟ ପ୍ରତି ସଶ୍ରଦ୍ଧ ହେବାର କୌଣସି ଆଶା ନଥିଲା। ଗୋଟିଏ ଜାତୀୟ ସାହିତ୍ୟର ଇତିହାସ ଖାଣ୍ଟିଭାବରେ ସାହିତ୍ୟଧର୍ମୀହିଁ ରହିବା ଉଚିତ। ସାହିତ୍ୟ ଚର୍ଚ୍ଚା କରିବା ଛଳନାରେ ବଜ୍ରଯାନ, ମନ୍ତ୍ରଯାନ, ରାସଯାନ, ମାଂସଯାନ ବା ଗୌଡ଼ୀୟ ଓ ଉତ୍କଳୀୟ ବୈଷ୍ଣବବାଦ ଇତ୍ୟାଦିର ଆଲୋଚନା ଏକାନ୍ତ ଅବାନ୍ତର ଚେଷ୍ଟା। ତାହା **pedantry** ହୋଇପାରେ; କିନ୍ତୁ ପାଣ୍ଡିତ୍ୟ ନୁହେଁ। କୌଣସି ୟୁରୋପୀୟ ସାହିତ୍ୟର ଇତିହାସରେ ପାଠକେ କାଥଲିସିଜିମ୍ ଓ ପ୍ରୋଟେଷ୍ଟାଣ୍ଟିଜିମ୍‌ର ବିବାଦର ଆଲୋଚନା ପାଇବେ ନାହିଁ; ଯଦିଓ ସେସବୁ ଭାଷାରେ ଉଭୟ ଧର୍ମଗୋଷ୍ଠୀ ପକ୍ଷରୁ ଏବେ ବି ଏପରି ଉତ୍ତମ ପୁସ୍ତକ ସବୁ ପ୍ରକାଶିତ ହେଉଛି ଯାହାକୁ 'ସାହିତ୍ୟ' ବୋଲି କହିବାରେ କୌଣସି ବାଧା ନାହିଁ। (ଏହି ସମ୍ପର୍କରେ ଅଧ୍ୟାପକ ଚିତ୍ତରଞ୍ଜନ ଦାସଙ୍କ ମନ୍ତବ୍ୟ ପରେ ଦ୍ରଷ୍ଟବ୍ୟ।) ଓଡ଼ିଶାରେ ସାହିତ୍ୟାଲୋଚନା ନାମରେ ସୁପରିଚିତ ଏହିସବୁ ଜଞ୍ଜାଳ ଓ ଜଞ୍ଜାଳରୁ ପୁସ୍ତକଟିକୁ ସଂପୂର୍ଣ୍ଣ ମୁକ୍ତ ରଖି, ଓଡ଼ିଆ ସାହିତ୍ୟକୁ ବାହାର ଜଗତ୍‌ରେ ପ୍ରଚାର ଲକ୍ଷ୍ୟରେ ପୂରା-ଭାବରେ ସାହିତ୍ୟ-ଧର୍ମୀ ଏକ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବା ତେଣୁ ମୋ ପକ୍ଷରେ ଏକ ଆଦିମ ଓ ଅଗ୍ରଗାମୀ ଚେଷ୍ଟା ହୋଇପଡ଼ିଛି ଓ ହୋଇଛି ସେହି ଅନୁପାତରେ କଷ୍ଟସାଧ୍ୟ। ଦାୟିତ୍ୱ ଥରେ ନେଇ କଷ୍ଟ ପଡ଼ିଲା ବୋଲି ମଝିରେ ପ୍ରତ୍ୟାଖ୍ୟାନ କରିବା ବା ସମ୍ଭବ ହୁଅନ୍ତା କିପରି? ମତେ ତେଣୁ ଚାରି ବର୍ଷକାଳ ଏଥିପାଇଁ କଠୋର ପରିଶ୍ରମ କରିବାକୁ ପଡ଼ିଲା। ପାଣ୍ଡୁଲିପି ଚାରି ଥର ନଷ୍ଟ କରିବାକୁ ପଡ଼ିଛି। ତଥାପି ଯାହା ହୋଇଛି, ସେଥିରେ ମୁଁ ପୂରାପୂରି ସନ୍ତୁଷ୍ଟ ନଥିଲି କି ଏବେ ବି ନାହିଁ। କେବଳ ଅଜ୍ଞହିଁ ଭାବିପାରିନ୍ତି ଯେ ଏପରି ବ୍ୟାପକ ବୌଦ୍ଧିକାରମ୍ଭ ଅତି ସହଜସାଧ୍ୟ ବ୍ୟାପାର ଓ ଏପରି ଗ୍ରନ୍ଥରେ କୌଣସି ହେଲେ ତ୍ରୁଟି ରହିବନି। ଶହେ ବର୍ଷର ବିଶ୍ୱବ୍ୟାପୀ ପ୍ରଚାର ପରେ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକାର ନବତନ ସଂସ୍କରଣମାନଙ୍କରେ ଭୁଲ୍-ତ୍ରୁଟି ରହିଯାଉଛି, ଯାହାକି ଉଦାର କର୍ତ୍ତୃପକ୍ଷ ଅସଙ୍କୋଚ ଭାବରେ ସ୍ୱୀକାର କରୁଛନ୍ତି। ବ୍ରିଟାନିକାର ଶେଷତମ ସଂସ୍କରଣରେ କେତେକ ଭୁଲ୍ ଏଇ ସାମାନ୍ୟ ଲେଖକ ମଧ୍ୟ ଦେଖାଇପାରିଛି। ତା'ର ଅର୍ଥ କିନ୍ତୁ ନୁହେଁ ଯେ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା ଏକ 'ତ୍ରୁଟିପୂର୍ଣ୍ଣ' ଗ୍ରନ୍ଥ ଓ ବର୍ଜନୀୟ।

କେବଳ ମୂର୍ଖହିଁ ସେପରି ଭାବିପାରନ୍ତି ବା ପ୍ରଚାର କରିପାରନ୍ତି। ବ୍ରିଟାନିକାର ଉଦାର ସମ୍ପାଦକମଣ୍ଡଳୀ ଏଇ ସାମାନ୍ୟ ଲେଖକର ଦୋଷ-ପ୍ରଦର୍ଶନ ଓ ସେହି ଦୋଷକୁ ସଂଶୋଧିତ କରୁଥିବା ରଚନା, ଉଭୟକୁ ଗ୍ରହଣ କରିନେଇ ପ୍ରକୃତ ବୁଦ୍ଧିଜୀବୀର ଆଦର୍ଶ ଦେଖାଇଛନ୍ତି କେବଳ ନୁହେଁ, ତାଙ୍କର ନବତନ ପ୍ରଚାର-ପୁସ୍ତିକାରେ ତାଙ୍କର ଲେଖକମଣ୍ଡଳୀ ଭିତରେ ଏହି ସାମାନ୍ୟ ଲେଖକର ନାମ ମଧ୍ୟ ପ୍ରକାଶ କରିଅଛନ୍ତି। ପଣ୍ଡିତ ବିନାୟକ ମିଶ୍ରଙ୍କ ଓଡ଼ିଆ ସାହିତ୍ୟର ଇତିହାସରେ (ପ୍ରଥମ ଓ ଦ୍ୱିତୀୟ, ଉଭୟ ସଂସ୍କରଣରେ) ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ପରି କବିଙ୍କର ମଧ୍ୟ ନାମୋଲ୍ଲେଖ ନାହିଁ। ପୁଣି 'ଓଡ଼ିଆ ସାହିତ୍ୟର ଇତିହାସ' ବୋଲାଉଥିବା ଏହି ପୁସ୍ତକରେ ଯଦୁମଣି ଏଗାର ପୃଷ୍ଠା ପାଇବା ଜାଗାରେ ବଳଦେବ ରଥେ ପାଇଛନ୍ତି ମାତ୍ର ପାଞ୍ଚ ପୃଷ୍ଠା ଓ ଗୋପାଳକୃଷ୍ଣ ପରି କବିର ନାମୋଲ୍ଲେଖ ମଧ୍ୟ ନାହିଁ। ଆମର ପଣ୍ଡିତମ୍ମନ୍ୟ ଓଡ଼ିଆ ଅଧ୍ୟାପକଙ୍କ ଚକ୍ଷୁରେ ଏ 'ତ୍ରୁଟି' ନୁହେଁ; କିନ୍ତୁ ଅନ୍ୟ ପୁସ୍ତକରେ, ସାହିତ୍ୟର ସ୍ରଷ୍ଟା ଅପେକ୍ଷା ଯେ ସାହିତ୍ୟର ଉତ୍ତମତର ବ୍ୟବସାୟୀ ମାତ୍ର, ସେପରି ଲୋକର ନାଁ ନଥିବାଟା ତ୍ରୁଟି ବୋଲି କୁହାଯାଉଛି। ଓଡ଼ିଆ ଏମ୍.ଏ. ପରୀକ୍ଷା ପାଇଁ ପାଠ୍ୟ ଥିବା କୌଣସି ଓଡ଼ିଆ ସାହିତ୍ୟର ଇତିହାସର ୭୨ ପୃଷ୍ଠାରେ ପାଠକେ ଲେଖାଥିବାର ଦେଖିବେ– ''ଏହି ମହିମାଧର୍ମରୁ ବୌଦ୍ଧଧର୍ମର ଉତ୍ପନ୍ନ ହେଲା।'' କିନ୍ତୁ ତା' ଆରପଟେ ୭୩ ପୃଷ୍ଠାରେ ପାଠକେ ମଧ୍ୟ ଦେଖିବେ– ''ଅଲେଖ ସଂପ୍ରଦାୟ ବୌଦ୍ଧ ସଂପ୍ରଦାୟରୁ ଆବିର୍ଭୂତ।'' ଯେଉଁ ଦେଶର ଅଧ୍ୟାପକଙ୍କ ଆଖିକି ଏ ପ୍ରକାର ପାଗଳାମି ମଧ୍ୟ ତ୍ରୁଟି ବୋଲି ଜଣାପଡ଼େ ନାହିଁ ଓ ତାହା ଏମ୍.ଏ.ରେ ନିର୍ବିବାଦରେ ପାଠ୍ୟ ରଖାଯାଏ, ଅଥଚ ଏକ 'ସାହିତ୍ୟର ଇତିହାସ'ରେ 'କଂସାଇ ନଈ'ଟାର ସ୍ଥାନ ନେଇହିଁ ଚିତ୍କାର କରାହୋଇଥାଏ, ସେହି ବରେଣ୍ୟ ପଣ୍ଡିତମାନଙ୍କଦ୍ୱାରା, ବିଧାତା ସେ ଜାତିର ଶିକ୍ଷା ଓ ସଂସ୍କୃତିକୁ ରକ୍ଷା କରନ୍ତୁ ବୋଲି ପ୍ରାର୍ଥନା କରିବାର କଥା।

ସେ ଯାହାହେଉ, ଆଗରୁ ନଥିବା ଏକ 'ସାହିତ୍ୟର ଇତିହାସ'କୁ ତ୍ରୁଟିଶୂନ୍ୟ ଓ ପରିପୂର୍ଣ୍ଣ କରି ଥୋଇବା ଅତି ସହଜ ବ୍ୟାପାର ବୋଲି କହିବା ଯେ କି ଅଜ୍ଞ ଆସ୍ପର୍ଦ୍ଧା, ତା'ର ଏକ ବ୍ୟକ୍ତିଗତ ଅଭିଜ୍ଞତା ଏଠାରେ କହିରଖେ। ସେତେବେଳକୁ ଜାତୀୟ ସାହିତ୍ୟ ଆକାଡେମୀ 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖିବାକୁ ମତେ ବରାଦ କରିସାରିଲେଣି। ମୁଁ ମନେ ମନେ ଯୋଜନା ମାତ୍ର କରୁଥାଏ ଓ ସେହି ଅନୁସାରେ କିଛି କିଛି ପଢ଼ାପଢ଼ି ବି ଆସ୍ତେ ଆସ୍ତେ ଆରମ୍ଭ କଲିଣି। ଲେଖା ଆଦୌ ଆରମ୍ଭ ହୋଇନଥାଏ। ଏହି ସମୟରେ କଟକ ଷ୍ଟେସନରେ ଜନୈକ ଓଡ଼ିଆ ଅଧ୍ୟାପକଙ୍କ ସହିତ ଦେଖାହେଲା ଏକ ଯାତ୍ରାର ସହପଥିକ ଭାବରେ। କଥାଭାଷା ଭିତରେ ଅଧ୍ୟାପକ ପଚାରିଲେ– ''ସାର୍, ଶୁଣିଲି ଆପଣ ଇଂରାଜୀରେ ଓଡ଼ିଆ ସାହିତ୍ୟର ଏକ ଇତିହାସ ଲେଖୁଛନ୍ତି କୁଆଡ଼େ!'' ମୁଁ କହିଲି– ''ଲେଖିନି, ଲେଖିବାକୁ ବରାଦ ପାଇଛି। ପଢ଼ାପଢ଼ି କରୁଛି।'' ଅଧ୍ୟାପକ– ''ମୁଁ ମଧ୍ୟ ଇଂରାଜୀରେ ଓଡ଼ିଆ ସାହିତ୍ୟର ଏକ ଇତିହାସ ଲେଖିଛି। ଆପଣଙ୍କ ଇତିହାସ କେତେ ପୃଷ୍ଠା ହେବ?''

ମୁଁ – "ଆକାଡେମୀର ନିର୍ଦ୍ଦେଶରେ ବହିଟି ୩୦୦ ପୃଷ୍ଠାରୁ ବେଶି ହେବନି।" ଅଧ୍ୟାପକ – "ତିନିଶହ ପୃଷ୍ଠାରେ କି ଇତିହାସ ହେବ? ମୋର ବହି ହଜାରେ ପୃଷ୍ଠା ଉପରେ ହେବ। ଆପଣ କେଉଁ ପର୍ଯ୍ୟନ୍ତ ଲେଖିସାରିଲେଣି?" ମୁଁ – "ମୁଁ ଲେଖା ଆରମ୍ଭହିଁ କରିନାହିଁ, କହିଲି ପରା!" ଅଧ୍ୟାପକ – "ମୁଁ ଭଞ୍ଜଙ୍କ ପର୍ଯ୍ୟନ୍ତ ଚାଲିଆସିଲିଣି।"

ଏ ପ୍ରାୟ ଆଜିକି ସାତବର୍ଷ ତଳର ଘଟଣା। ଏ ଭିତରେ ସେତେବେଳେ କେବଳ କଳ୍ପନାରେ ଥିବା ଏ ଅଧମର ବହି ଲିଖିତ, ସଂଶୋଧିତ, ପ୍ରକାଶିତ, ପ୍ରଚାରିତ ଓ ଆଲୋଚିତ ହୋଇସାରିଲାଣି ତିନି ବର୍ଷଧରି; କିନ୍ତୁ ଯେଉଁ ବହି ଭଞ୍ଜଙ୍କ ପର୍ଯ୍ୟନ୍ତ ଚାଲିଆସିଥିଲା ସାତବର୍ଷ ତଳେ, ସେ ବହି କାହିଁ?

ବାହୁସ୍ଫୋଟ ମାରିବା, ଚୁଗୁଲି ଉଠେଇବା, କୁତ୍ସା ପ୍ରଚାର କରିବା ଯେତେ ସହଜ, ଖଣ୍ଡେ ସମ୍ମାନଜନକ ପୁସ୍ତକ ଲେଖିବା ସେତେ ଯେ ସହଜ ନୁହେଁ, ଅଧ୍ୟାପକ ବୋଧହୁଏ ଏ ଭିତରେ ବୁଝିବେଣି। ଅନ୍ୟ ପକ୍ଷରେ ପାଠକମାନଙ୍କୁ ମଧ୍ୟ କହିରଖେ ଯେ ତିନିଶହ ପୃଷ୍ଠାରୁ କମ୍ ଓଡ଼ିଆ ସାହିତ୍ୟର ଏହି ଇତିହାସଟି ଲେଖିବାକୁ ମତେ କିନ୍ତୁ ଯେତେ କଷ୍ଟ ହୋଇଛି, ସେପରି କଷ୍ଟ ମୋର ଅନ୍ୟ କୌଣସି ଗ୍ରନ୍ଥ ଲେଖିବାରେ ହୋଇନାହିଁ। ଏହି ସାମାନ୍ୟ ବହିଟିର ଓଡ଼ିଆ ଓ ଅଣଓଡ଼ିଆ ଅଧିକାଂଶ ସମାଲୋଚକ ବହିଟି ମୂଳରୁ ଶେଷଯାଏଁ ଉପନ୍ୟାସ ପରି ପଢ଼ିହୋଇଯାଉଛି ବୋଲି କହିଛନ୍ତି। ବହିଟା କିନ୍ତୁ ଯେପରି ପଢ଼ିହୋଇଯାଉଛି, ସେପରି ଧାରାବାହିକ ଭାବରେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଲେଖାହୋଇନାହିଁ। ସେପରି ଲେଖିବା ମୋ ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ। ମୁଁ ବହିଟିକୁ ଏଠୁ ସେଠୁ ଖଣ୍ଡ ଖଣ୍ଡ କରି ଲେଖିବାକୁହିଁ ବାଧହୋଇଛି। ଜଣେ ଜଣେ ପ୍ରଧାନ ଲେଖକଙ୍କୁ ଠିଆକରାଇ, ଆସ୍ତେ ଆସ୍ତେ ସମଗ୍ର ଇତିହାସଟି ଗଢ଼ିଉଠିଛି ଆପେ ଆପେ। ହୁଏତ ପ୍ରଥମେ ଲେଖାହେଲେ ରାଧାନାଥ, ତା'ପରେ ସମ୍ପୂର୍ଣ୍ଣ କ୍ରମହୀନ ଭାବରେ ପରେ ହୁଏତ ଆସିଲେ ଭୀମ ଭୋଇ କି ଭଞ୍ଜେ ବା ଗୋପାଳକୃଷ୍ଣ। ଶେଷରେ ଗୋଟାଏ ଛାଞ୍ଚ ପକାଇ ସେଥିରେ ଏମାନଙ୍କୁ ଆସ୍ତେ ଆସ୍ତେ ଯୋଡ଼ିଲି। ଏହିପରି ଖଞ୍ଜା-ଭଙ୍ଗା-ଗଢ଼ା ରୀତିରେହିଁ ଠିଆହୋଇପାରିଛି ସାମାନ୍ୟ ମୋର ଏହି ପୁସ୍ତକ, କୌଣସି ପ୍ରକାର ଆସ୍ପର୍ଦ୍ଧା ବା କୌଣସି ପ୍ରକାର ଦାବି ନକରି।

**ଅନୁବାଦ –**

ଜାତୀୟ ସାହିତ୍ୟ ଆକାଡେମୀ ପ୍ରସ୍ତାବିତ ଭାରତୀୟ ସାହିତ୍ୟମାନଙ୍କର ଇତିହାସଗୁଡ଼ିକ ପ୍ରଥମେ ଇଂରାଜୀରେ ଲେଖାହୋଇ, ପରେ ଚଉଦଟିଯାକ ଭାରତୀୟ ଭାଷାକୁ ଅନୂଦିତ ହେବାର କଥା। ମୋର ଇଂରାଜୀ ବହିଟି ସେହିପରି ଅନ୍ୟ ଭାଷାମାନଙ୍କ ପରି ଓଡ଼ିଆକୁ ମଧ୍ୟ ଭାଷାନ୍ତରିତ ହେବାର୍ କଥା। ଅନେକ ବନ୍ଧୁ ମୁଁ ନିଜେହିଁ ଓଡ଼ିଆ ଅନୁବାଦ କରିଯିବାକୁ ଅନୁରୋଧ କରିବାରୁ, ମୁଁ ଏଥିରେ ହାତ ଦେଲି। କିନ୍ତୁ ନିଜ ବହି ନିଜେ ଅନୁବାଦ କରିବାକୁ ଯାଇ ଦେଖୁଛି ଯେ, ଏହାହିଁ ସାଧାରଣ ନିୟମ ହେବା ଉଚିତ। ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ଯିଏ କୌଣସି ଭାରତୀୟ

ସାହିତ୍ୟର ଇତିହାସ ଇଂରେଜୀରେ ଲେଖିବେ, ତାଙ୍କୁଇ କୁହାଯିବା ଉଚିତ ନିଜ ଭାଷାରେ ସେହିହିଁ ନିଜର ଇଂରାଜୀ ବହିଟି ଅନୁବାଦ କରିଯିବେ, ଯଦି ସେ ଆଗରୁ ନିଜେ ନିଜ ଭାଷାରେ ସେପରି ଇତିହାସ ଲେଖିନଥାନ୍ତି। କାରଣ ଯେଉଁ ଉପାଦାନ ସଂଗ୍ରହ କରି ସେ ଇଂରାଜୀ ବହିଟି ଠିଆକରେଇଛନ୍ତି, ତାହା ତାଙ୍କୁ ଅନ୍ୟମାନଙ୍କଠାରୁ ବେଶି ଜଣା। ନିଜ ଭାଷାକୁ ଅନୁବାଦ କଲାବେଳେ ତାଙ୍କୁ ସେସବୁ ସଂଗ୍ରହ କରିବା ଅନ୍ୟ ଅନୁବାଦକଠୁ ଅଧିକ ସୁବିଧାର ବିଷୟ ହେବ; ଯଦିଓ ମୋ ନିଜ କ୍ଷେତ୍ରରେ ଏହି ଅନୁବାଦ ସେତେ ସୁବିଧାର ବିଷୟ ହୋଇନାହିଁ। କାରଣ ଓଡ଼ିଆରେ ନିର୍ଭରଯୋଗ୍ୟ ଖଣ୍ଡିଏ ହେଲେ ସାହିତ୍ୟର ଇତିହାସ ନଥିବାରୁ, ମତେ ନାନା ଅଜ୍ଞାତ କୋଣରୁ ନାନା ଅଜ୍ଞାତ ଉପାଦାନ ସଂଗ୍ରହ କରିବାକୁ ହୋଇଥିଲା; ଯାହାକୁ କି ପୂର୍ବେ କେହି ବ୍ୟବହାର କରିନଥିଲେ। ବହି ଲେଖାସରିଲା ମାତ୍ରେ ଯେଉଁଠୁ ଓ ଯାହାଠୁ ଯେଉଁ ଯେଉଁ ପୋଥିପତ୍ର ଆଣିଥିଲି, ସେସବୁ ଫେରାଇ ଦେଇଥିଲି। ଅନୁବାଦ ବେଳକୁ ସେସବୁ ପୁଣି ଯୋଗାଡ଼ କରିବା ମୋ ପକ୍ଷରେ ଦୁଷ୍କର ବ୍ୟାପାର ହୋଇଉଠିଛି। ପୂର୍ବର କେତୋଟି ଉପାଦାନ ବହୁତ ଖୋଜି ମଧ୍ୟ ପାଇପାରିଲିନି। ଏହି ପୁସ୍ତକରେ ତାହା ଯଥାସ୍ଥାନରେ ସୂଚାଇଦିଆଯାଇଛି।

**ଏକ ନୂତନ ଗ୍ରନ୍ଥ –**

କିନ୍ତୁ ଏ ପୁସ୍ତକକୁ ମୂଳ ଇଂରାଜୀ ଗ୍ରନ୍ଥର ଅନୁବାଦ କୁହାଯିବା ସାଙ୍ଗେ ସାଙ୍ଗେ, ଏକ ମୌଳିକ ରଚନା ନହେଲେ ମଧ୍ୟ ଏକ ନୂତନ ଗ୍ରନ୍ଥ ବୋଲି ଧରାଯାଇପାରେ। ମୂଳ ଗ୍ରନ୍ଥରେ ପୃଷ୍ଠା ନିର୍ଦ୍ଦିଷ୍ଟ ଥିବାରୁ ଅନେକ ଜିନିଷ ଯାହା ମୁଁ ଦେବାକୁ ଚାହିଁଥିଲି, ତାହା ଦେଇପାରିନଥିଲି। ବହିଟି ବଡ଼ ହୋଇଯିବା ଆଶଙ୍କାରେ ଆକାଡେମୀ କର୍ତ୍ତୃପକ୍ଷ ମୋର ପାଣ୍ଡୁଲିପିରୁ ଶହେ ପୃଷ୍ଠା କାଟିଦେବାକୁ ମଧ୍ୟ ମତେ ବାଧ୍ୟ କଲେ। ଏହି ଅନୁବାଦରେ ତେଣୁ ମୂଳ ଗ୍ରନ୍ଥରେ ଯାହା ଥିଲା ତାହା ରଖି, ସେହି କାଟଖାଇଯାଇଥିବା ପଦାର୍ଥ ବା ତା'ଠୁ ମଧ୍ୟ ଅଧିକା କିଛି କିଛି ଜିନିଷ ମିଶିଯାଇଛି; କେଉଁଠି ଦର୍କାରବୋଧରେ ସାମାନ୍ୟ ପରିବର୍ତ୍ତନ ମଧ୍ୟ କରିଛି। ପୁଣି ନିନ୍ଦୁକମାନେ ବାହୁସ୍ଫୋଟ ମାରି ଦେଖାଇଥିବା ସକଳ ତଥାକଥିତ 'ତ୍ରୁଟି'ର ପ୍ରତ୍ୟେକଟିର ଯଥାଯଥ ଉତ୍ତର ମଧ୍ୟ ଯଥାଯଥ ସ୍ଥାନରେ ଫୁଟ୍‌ନୋଟ୍ ଭାବରେ ପାଠକେ ଏ ଗ୍ରନ୍ଥରେ ପାଇବେ। ଓଡ଼ିଆରେ ପରିପୂର୍ଣ୍ଣ ଓଡ଼ିଆ ସାହିତ୍ୟର ଇତିହାସ ନଥିବା ହେତୁ ମୋର ଇଂରାଜୀ ବହିରେ ଜଣେ ଦି'ଜଣ ଓଡ଼ିଆ ଲେଖକ, ଯାହାଙ୍କର ଆଲୋଚନା ନିଶ୍ଚୟ ରହିଥିବା ଦରକାର, ତାହା ପ୍ରମାଦକ୍ରମେ ଛାଡ଼ିଯାଇଥିଲି। ଏ ବହିରେ ସେମାନଙ୍କର ଆଲୋଚନା ପାଠକେ ପାଇବେ। ଫୁଟ୍‌ନୋଟ୍‌ରେ ଭ୍ରମ ସ୍ୱୀକାର କରାଯାଇଛି।

କିନ୍ତୁ ମତେ ଯଦି ଓଡ଼ିଆ ସାହିତ୍ୟର ଇତିହାସ ପ୍ରଥମରେ ଓଡ଼ିଆରେହିଁ ଲେଖିବାକୁ ବରାଦ ଦିଆହୋଇଥାନ୍ତା, ତାହା ମୋଟାମୋଟି ମୋର ଇଂରାଜୀ ବହିପରି ହିଁ ହୋଇଥାନ୍ତା। ସାହିତ୍ୟ ବା ଜାତୀୟ ଇତିହାସ ଯଦି ନାମ-ଧାମ-ଘଟଣାର ତାଲିକା ମାତ୍ର ବୋଲି

ଧରାଯାଏ, ତେବେ ତାହା ଯେକୌଣସି ଲୋକ ପାରନ୍ତେ। ସେଥିପାଇଁ ଲେଖକ ବାଛିବା ଦରକାର ପଡ଼ନ୍ତା କାହିଁକି? କିନ୍ତୁ ଏକ ସାହିତ୍ୟର ଇତିହାସ ଏକ ଜାତିର ଇତିହାସ, ସଂପୃକ୍ତ ଜାତିର ଆତ୍ମାର ଇତିହାସ। ଏଠି ଲେଖକ ପାଞ୍ଜିକାର ମାତ୍ର ନୁହେଁ। ଏ କ୍ଷେତ୍ରରେ ସେ ନିଜ ଜାତି ବା ସାହିତ୍ୟର ଗୁଣାଗୁଣର ପରୀକ୍ଷକ, ଗ୍ରାହକ ଓ ପ୍ରଚାରକ ଏବଂ ଦରକାର ପଡ଼ିଲେ ନିନ୍ଦୁକ ମଧ୍ୟ। ଯେକୌଣସି ଇତିହାସ କେବଳ ଏହି ଦୃଷ୍ଟିକୋଣରୁହିଁ ମୂଲ୍ୟବାନ୍। ମୂଳ ଇଂରାଜୀ ଓଡ଼ିଆ-ସାହିତ୍ୟର ଇତିହାସର ଭୂମିକାରେ ଜାତୀୟ ସାହିତ୍ୟ ଆକାଡେମୀର ସେକ୍ରେଟାରୀ ନିଜେ ଲେଖିଛନ୍ତି– "No History of Literature, unless it is a mere chronological catalogue of names, can wholly avoid critical estimates and qualitative preferences."

ଅବଶ୍ୟ ସେକ୍ରେଟାରୀ ଶ୍ରୀ କୃପାଳିନୀ ଏପରି ମୁଖବନ୍ଧ ଲେଖିବାର ବହୁ ପୂର୍ବରୁ, ଇତିହାସ କହିଲେ ଯେ ଏହାହିଁ ବୁଝାଯାଏ, ତାହା ଲେଖକକୁ ଜଣାଥିଲା ଓ ତା'ର ବହିଟିକୁ ସେ ସେହି ଅନୁସାରେହିଁ ଲେଖିସାରିଥିଲା।

ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶିତ ହେବା ପରେ, ଆଉ ଦୁଇଟି ଭାରତୀୟ ସାହିତ୍ୟର ଇତିହାସ ଇଂରାଜୀରେ ପ୍ରକାଶିତ ହୋଇଛି। ସେଥିରୁ ଅନ୍ୟତମ ଉର୍ଦ୍ଦୁ ସାହିତ୍ୟର ଇତିହାସ ଏକ ବିରାଟ ଗ୍ରନ୍ଥ; ଦାମ୍ ତିରିଶ ଟଙ୍କା। ତା'ର ପ୍ରକାଶକ ବିଶ୍ୱମାନ୍ୟ ପ୍ରକାଶନ ସଂସ୍ଥା 'ଅକ୍ସଫୋର୍ଡ ଇଉନିଭର୍‌ସିଟି ପ୍ରେସ'। ସେ ବହି ଏ. ଲେଖକ ଦେଖିନି ଏପର୍ଯ୍ୟନ୍ତ; କିନ୍ତୁ ପତ୍ରପତ୍ରିକାରେ ତା'ର ରିଭିଉ ଦେଖିଛି। ୧୯୬୫ ମସିହା ଅଗଷ୍ଟ ୮ ତାରିଖର 'ଷ୍ଟେଟ୍‌ସ୍‌ମ୍ୟାନ୍'ରେ ଏହି ବହିର ଯେଉଁ ରିଭିଉ ବାହାରିଥିଲା, ସେଥିରେ ସଂପୃକ୍ତ ସମାଲୋଚକ ଏହି ପୁସ୍ତକରୁ ଉର୍ଦ୍ଦୁ କବିତା ସମ୍ବନ୍ଧରେ ନିମ୍ନଲିଖିତ ପଙ୍‌କ୍ତିଗୁଡ଼ିକ ଉଦ୍ଧାର କରିଥିଲେ– "In Urdu poetry there is very little of a genuine affirmation of life, its themes are resignation, passivity, self-pity and the tyranny of fate."

ସୁପ୍ରସିଦ୍ଧ ଇଂରାଜୀ ମାସିକ 'Aryan Path'ରେ ଏ ବହିର ଯେଉଁ ରିଭିଉ ପ୍ରକାଶିତ ହୋଇଛି, ସେଥିରେ ବିଖ୍ୟାତ ଉର୍ଦ୍ଦୁକବି ଘାଲିବ୍‌ଙ୍କ ସମ୍ପର୍କରେ ଏହିପରି କୁହାଯାଇଛି– "The author's estimate of Ghalib is on the whole the best thing in the book. He rightly maintains that Ghalib was a greater poet than as a man; and that the exaggerated praise with which he is acclaimed as the greatest of all poets in Urdu and his Diwan, equated as an inspired scripture with the Gita, is utter nonsense."

ଘାଲିବ୍‌ଙ୍କ ପରି କବିର ଏ ପ୍ରକାର ରୁକ୍ଷ-କଠୋର ଏଷ୍ଟିମେଟ୍ ଦ୍ୱାରା ବା ମୋଟ୍ ଉପରେ ଉର୍ଦ୍ଦୁ କବିତାର କୃପଣ ସମାଲୋଚ଼ନା ଦ୍ୱାରା, ବକ୍ଷମାଣ ଉର୍ଦ୍ଦୁ ସାହିତ୍ୟର ଇତିହାସଯୋଗୁଁ ଉର୍ଦ୍ଦୁସାହିତ୍ୟ ବିଶ୍ୱଦରବାରରେ ନିନ୍ଦିତ ହୋଇଗଲା ବୋଲି କିନ୍ତୁ ଭାରତୀୟ ମୁସଲମାନ ସମାଜରେ କୌଣସି ଆନ୍ଦୋଳନ ବା ଲେଖକ ବିରୁଦ୍ଧରେ କୌଣସି କୁତ୍ସାଭିଯାନ ଏପର୍ଯ୍ୟନ୍ତ ଶୁଣାଯାଉନାହିଁ। ବିଚ଼ାରପ୍ରତିଷ୍ଠ ସମାଲୋଚ଼ନା ବିରୁଦ୍ଧରେ ସେ ପ୍ରକାରର ଆକ୍ରମଣ କେବଳ ମୂର୍ଖ ଓ ଗୁଣ୍ଡାହିଁ କରିବାର ଆଶା – ପ୍ରକୃତ ବୁଦ୍ଧିଜୀବୀ ନୁହେଁ।

ଅନ୍ୟ ବହିଟି ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ପ୍ରକାଶିତ ଆସାମୀ ସାହିତ୍ୟର ଇତିହାସ। ଏହି ପୁସ୍ତକର ଶେଷ କେତେକ ପଙ୍‌କ୍ତିରେ ଆସାମୀ 'ଆଧୁନିକ' କବିତା ଲେଖକମାନଙ୍କ ସମ୍ପର୍କରେ ଏହା କୁହାଯାଇଛି– "Unfortunately most of our young writers have neither the patience nor the ability to think clearly and write precisely because they trust in genius. When we survey their writings we are tempted to quote Dante – Therefore let the folly of these, who, devoid of art and knowledge and trusting in genius alone, rush forward to write poetry, be confuted."

କିନ୍ତୁ ଯା'ଦ୍ୱାରା ସମଗ୍ର ଆସାମୀ ସାହିତ୍ୟ ନିନ୍ଦିତ ହୋଇଗଲା ବୋଲି ଚିତ୍‌କାର ଉଠିଅଛି କି?

ଉର୍ଦ୍ଦୁସାହିତ୍ୟର ଇତିହାସ ଲେଖକ ମହମ୍ମଦ ସାଦିକ୍ ତ ମୁସଲ୍‌ମାନ୍। ନିଶ୍ଚୟ ସେ ଉର୍ଦ୍ଦୁଭାଷୀ ହୋଇଥିବେ। କିନ୍ତୁ ଯେଉଁ ମହମ୍ମଦ ସାଦିକ୍ ନିଜ ଭାଷା ଓ ଧର୍ମ ପାଇଁ ଅକାତରରେ ଜୀବନ ଦାନ କରିପାରନ୍ତି (ଯାହା ଇସଲାମ୍‌ର ସମଗ୍ର ଇତିହାସ ପ୍ରମାଣିତ କରେ), ସେ କିନ୍ତୁ ସାହିତ୍ୟ-ସମାଲୋଚ଼କ ଭାବରେ ଠିଆହୋଇ ଆନ୍ତର୍ଜାତିକ ସାହିତ୍ୟ-ସଂସାରରେ ପ୍ରାମାଣ୍ୟ ଚିନ୍ତାଧାରାକୁ ଅସମ୍ମାନ ନକରିବା ଆଦର୍ଶରେ ନିଜ ମାତୃଭାଷା ଉର୍ଦ୍ଦୁର ନିନ୍ଦା କରିବାରେ କୁଣ୍ଠିତ ହୋଇନାହାନ୍ତି। ଆଶା କରେ, ଓଡ଼ିଆ ଅଧ୍ୟାପକେ ଓ ପାଠକେ ଏଥିରୁ କିଛି ଶିଖିବେ। ସାଦିକ୍‌ଙ୍କର ଉର୍ଦ୍ଦୁ କବିତାର ନିନ୍ଦାବାଦ ଦ୍ୱାରା ତାଙ୍କ ପୁସ୍ତକର ପ୍ରାମାଣିକତା ଯେ ସୁପ୍ରତିଷ୍ଠିତ ହୋଇଛି, ଏହା ଯେକୌଣସି ଚିନ୍ତାଶୀଳ ଶିକ୍ଷିତ ପାଠକ ସ୍ୱୀକାର କରିବେ। କେବଳ ଅଜ୍ଞ ଭାବିପାରନ୍ତି ଓ ଏକତ୍ର ହୋଇ ଟାଉନ୍‌ହଲ୍‌ର ଛାତ ଫଟାଇ ବକ୍ତୃତା କରିପାରନ୍ତି ଯେ ଗୋଟିଏ ଜାତିର ସାହିତ୍ୟର ଇତିହାସ ଏକ ମାଦଳା ପାଞ୍ଜି ହେବ ଓ ପ୍ରତ୍ୟେକଟି ଲେଖକକୁ ସ୍ୱର୍ଗକୁ ଟେକିବାକୁ ହେବ! ହାୟରେ ଏ ଦେଶର ସାହିତ୍ୟ-ସଚେତନତା, ସାହିତ୍ୟ-ଅଧ୍ୟାପନା ଓ ସାହିତ୍ୟ-ଆଲୋଚ଼ନା!

ଏ ଦେଶର କେତେକ ପ୍ରଫେସର ଜାଣନ୍ତି ନାହିଁ ଯେ, ଇତିହାସ କହିଲେ ସନ-ଜନର ବା ରାଜା-ରାଣୀର କାଟାଲଗ୍ ମାତ୍ର ନୁହେଁ। ଏ ଧାରଣା ଆନ୍ତର୍ଜାତିକ

ଚିନ୍ତାକ୍ଷେତ୍ରରୁ ପଚାଶ ବର୍ଷ ହେଲା ବିଦାୟ ନେଲାଣି। ଏହି କାରଣରୁ ପରା ଏବେ ସ୍କୁଲମାନଙ୍କରେ ଇତିହାସକୁ ଆଉ ସ୍ୱତନ୍ତ୍ର ପାଠ୍ୟରୂପେ ସ୍ଥାନ ଦିଆଯାଉନାହିଁ– ତାହା ବର୍ତ୍ତମାନ 'ସାମାଜିକ ବିଜ୍ଞାନ'ର ଏକ ଅଙ୍ଗ ମାତ୍ର! ଜାତିର ଚିତ୍ତ ଓ ଚିନ୍ତାର ଚିତ୍ରହିଁ ଏକମାତ୍ର ପ୍ରକୃତ ଇତିହାସ। ଏହି ସାମାନ୍ୟ ଗ୍ରନ୍ଥଟି ଓଡ଼ିଆ ଜାତି ସମ୍ପର୍କରେ ସେହିପରି ଏକ ଚେଷ୍ଟା ଓ ଏତାବତ୍ ହୁଏତ ଏକମାତ୍ର ଚେଷ୍ଟା। ପାଠକେ ଆମେରିକାନ୍ ପଣ୍ଡିତ ଓ ସୁଲେଖକ ଉଇଲ୍ ଡୁରାଁଙ୍କର **"Story of Civilisation"** (ବିରାଟ ୫-୬ ଖଣ୍ଡ ବହି) ନପଢ଼ିଛନ୍ତି ଯଦି, ଥରେ ସଂଗ୍ରହ କରିଆଣି ତା' ଉପରେ ଆଖି ବୁଲେଇ ନିଅନ୍ତୁ। ଉଇନ୍‌ଷ୍ଟାନ୍ ଚର୍ଚ୍ଚିଲ୍‌ଙ୍କ 'ଇଂରେଜ ଜାତିର କାହାଣୀ' ମଧ୍ୟ ଆଣି ଦେଖିପାରନ୍ତି। ତାହାହେଲେ, ବର୍ତ୍ତମାନ 'ଇତିହାସ' କହିଲେ କ'ଣ ବୁଝାଏ, ତାହା ସେ ସହଜରେ ଜାଣିପାରିବେ। କେବଳ ବିଶେଷ ବିଶେଷ କ୍ଷେତ୍ରରେ ଗବେଷଣା ପାଇଁହିଁ ଜନ-ସନ ଓ ବହିର ତାଲିକା ଦରକାର। ସେଥିପାଇଁ ବିବ୍‌ଲିଓଗ୍ରାଫି (ପୁସ୍ତକ ତାଲିକା) ବୋଲି ଅଲଗା ଏକ ବିଭାଗ ଠିଆରହିଛି। ହିଷ୍ଟ୍ରି ଓ ବିବ୍‌ଲିଓଗ୍ରାଫି ଯେ ଏକା କଥା ନୁହେଁ, ଏହା ଏ ଦେଶର ତଥାକଥିତ ଅଧ୍ୟାପକଙ୍କୁ ମଧ୍ୟ ଯେ ବୁଝାଇବାକୁ ପଡ଼ିଛି, ତାହା କି ଶୋଚନୀୟ କଥା, ବିଦଗ୍ଧ ପାଠକମାତ୍ରେ ବୁଝିବେ। ଜାତୀୟ ସାହିତ୍ୟ ଆକାଡେମୀ ପ୍ରତ୍ୟେକ ଭାରତୀୟ ସାହିତ୍ୟର ଇତିହାସ ଲେଖାଇବା ସାଥେ ସାଥେ ଏକ ବିବ୍‌ଲିଓଗ୍ରାଫି ମଧ୍ୟ ତିଆରି କରାଉଛନ୍ତି। ଏ ଦେଶର ପଣ୍ଡିତମ୍ମନ୍ୟ ଲୋକେ ଜାତୀୟ ସାହିତ୍ୟ ଆକାଡେମୀକୁ ଚେତେଇ ଦେଉନାହାନ୍ତି କାହିଁକି ଜାତୀୟ ସମ୍ପଦର ଏପ୍ରକାର ଅପବ୍ୟୟ ନିମନ୍ତେ? ସାହିତ୍ୟର ଇତିହାସ ତ ଏକ ଉତ୍ତମ ମାଦଳାପାଞ୍ଜି ହୋଇଥାଆନ୍ତା; ଫେର୍ ଗୋଟାଏ ବିବ୍‌ଲିଓଗ୍ରାଫି କ'ଣ ?

ଉପରେ ଇତିହାସର ଯେଉଁ ପରିଚୟ ଦିଆଗଲା, ସେ ଦୃଷ୍ଟିରୁ ଓଡ଼ିଆ ଭାଷାରେ ଓଡ଼ିଆ ସାହିତ୍ୟର ଖଣ୍ଡିଏ ହେଲେ ଇତିହାସ ନାହିଁ। କିନ୍ତୁ ସେପରି ଏକ ଇତିହାସ ଲେଖିବାକୁ ବସିଲେ ମଧ୍ୟ ଜନ-ସନର ଏକ ତାଲିକା ଆଗରେ ରହିବା ଯେ ଦରକାର, ଏହା ମାନିବାକୁ ହେବ; ନଚେତ୍ ଅଭିବ୍ୟକ୍ତିର ଧାରା ଓଲଟ-ପାଲଟ ହୋଇଯିବାର ଆଶଙ୍କା। କିନ୍ତୁ ସେପରି ସଂପୂର୍ଣ୍ଣ ନିର୍ଭରଯୋଗ୍ୟ ତାଲିକା ମଧ୍ୟ ଓଡ଼ିଆରେ ଏପର୍ଯ୍ୟନ୍ତ ହୋଇପାରିନି। କେବଳ ଓଡ଼ିଆ ସାହିତ୍ୟର ଆଧୁନିକ ଅଂଶ ପାଇଁ ମାତ୍ର କୌଣସି ଓଡ଼ିଆ ଅଧ୍ୟାପକ ଏଇପରି ଏକ ତାଲିକା ଠିଆକରେଇବାରେ ଲାଗିଛନ୍ତି। କିନ୍ତୁ ସେପରି ଏକ ପାଞ୍ଜିକୁ 'ଓଡ଼ିଆ ସାହିତ୍ୟର ଇତିହାସ' ନାମ ଦେଇବସିଲେ ବିଦ୍ୟା ଓ ପାଠକ ଉଭୟଙ୍କୁ ପ୍ରତାରିତ କରାଯାଉଛି ବୋଲି କୁହାଯିବ। ଏ ଅଧ୍ୟାପକ କିନ୍ତୁ ସାଧାରଣ ରିସର୍ଚ୍ଚକୁ ସେହିପରି ଏକ ଗୌରବାନ୍ୱିତ ନାମଦ୍ୱାରା ପ୍ରଚାର କରିବାରେ ଲାଗିଛନ୍ତି। କାରଣ, ଏ ଦେଶରେ ମୂଲ୍ୟବୋଧର ପ୍ରାମାଣିକତା ପ୍ରତିଷ୍ଠିତ ହୋଇପାରିନାହିଁ ।

ଓଡ଼ିଆ ସାହିତ୍ୟର ଏକ ଟିପ୍‌ପଣୀ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି କରି ରଖିଛନ୍ତି ବୋଲି ଶୁଣି, ଇଂରାଜୀ ବହିଟି ଲେଖିବା ପୂର୍ବରୁ ସେଇଟି ଦେଖିବାପାଇଁ ତାଙ୍କୁ

ଅନୁରୋଧ କରିଥିଲି ଓ ସେ ମତେ ତାହା ଦେଇଥିଲେ। ମୋ ଗ୍ରନ୍ଥର କାଳ-ଭାଗ ଓ ଲେଖକ-ପରମ୍ପରା ଆର୍ତ୍ତବାବୁଙ୍କର ସେହି ଟିପ୍ପଣୀ ଅନୁଯାୟୀ। ତା' ଉପରେ ନିର୍ଭର କରି ଏକ ମୋଟାମୋଟି ଛାଞ୍ଚ ମୋ ନିଜ ଯୋଜନା ଅନୁଯାୟୀ ଗଢ଼ିସାରିଲା ପରେ, ଆର୍ତ୍ତବାବୁଙ୍କୁ ତାଙ୍କ ଟିପ୍ପଣୀଟି ଫେରାଇଦେଇଥିଲି। ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' (ପ୍ରଥମ ସଂସ୍କରଣ) ମଧ୍ୟ ମତେ ଏ ଦିଗରେ କିଛି ସାହାଯ୍ୟ କରିଥିଲା। କିନ୍ତୁ ସେ ମଧ୍ୟ ଥିଲା ଅପୂର୍ଣ୍ଣ ଓ ପୂର୍ବାନୁଚରିତ; କେବଳ ଆକାରରେ ଥିଲା ବଡ଼ ମାତ୍ର। ଓଡ଼ିଆ ସାହିତ୍ୟର ଇତିହାସକୁ ଓଡ଼ିଆ ଜାତିର ଆତ୍ମାର ଇତିହାସ କରି ଗଢ଼ିବାକୁ ମୂଳରୁ ମନସ୍ଥ କରିରଖିବାରୁ କେବଳ କାଳ-ସଂପୃକ୍ତ ସାହାଯ୍ୟ ଛଡ଼ା ଅନ୍ୟ କେଉଁଥିରେ ଏହି ବରେଣ୍ୟ ପୂର୍ବସୂରୀମାନଙ୍କୁ ଅନୁସରଣ ନକରି, ମୁଁ ନିଜର ସାମାନ୍ୟ ଗ୍ରନ୍ଥଟିକୁ ସଂପୂର୍ଣ୍ଣ ନିଜ ଭାବରେହିଁ ଲେଖିଚାଲିଲି ଏବଂ ଗ୍ରନ୍ଥଟି ଓଡ଼ିଶା ବାହାରେ ସମାଦୃତ ହେବାର ବିଶେଷ କାରଣ ବୋଧହୁଏ ଏହି ଯେ, ଏହା ଏହିପରି ଭାବରେ ଏକ ଐତିହାସିକ ଜାତିର ଆତ୍ମାର ଇତିହାସ ରୂପେହିଁ ଲିଖିତ। କୌଣସି ବିଶେଷ ରଥ, କର ବା ଷଡ଼ଙ୍ଗୀଙ୍କ ନାଁ ନଥିବାରୁ, ନିଜ ନିଜ ଅକ୍ତିଆରରେ ଥିବା କାଗଜରେ ଏହି ବରେଣ୍ୟମ୍ମନ୍ୟ ବନ୍ଧୁଗଣ ବହିଟିର ଯଥେଷ୍ଟ କୁତ୍ସା କରିପାରନ୍ତି। କିନ୍ତୁ ସେଥିରେ ଗ୍ରନ୍ଥକାର ବିଚଳିତ ନୁହେଁ, କି ଗ୍ରନ୍ଥର ମର୍ଯ୍ୟାଦା ପ୍ରତି ସାମାନ୍ୟତମ ଆଘାତ ସେଥିରୁ ଆସିନାହିଁ। ଏ ଗ୍ରନ୍ଥ ଚିତ୍ରଗୁପ୍ତର ପାଞ୍ଜି ନୁହେଁ ଯେ ଅଗା-ବଗା-ଖଗା ସମସ୍ତଙ୍କ ନାଁ ଏଥିରେ ରହନ୍ତା। ଏହା ଓଡ଼ିଆ ଜାତିର ଚିତ୍ତର ଏକ ଇତିହାସ। ସେଥିକି ଯଦି କିଛି ମୌଳିକ ଦାନ କେହି ଦେଇଥିବେ ତେବେ ତାଙ୍କ କଥା ସେଥିରେ ବଳେ ଆସିଯିବ। କିନ୍ତୁ କେବଳ ହାତରେ କାଗଜ ଅଛି ବୋଲି, ଭୟରେ, ତାଙ୍କର ବା ତାଙ୍କ ପିତା ବା ଜାମାତାଙ୍କ ନାମ ପୂରେଇଦେଇ ଉଭୟ ଗ୍ରନ୍ଥ ଓ ଜାତୀୟ ପ୍ରାଣର ଅମର୍ଯ୍ୟାଦା ଯିଏ କରିବାକୁ ଯାଏ, ସେ କ'ଣ ଐତିହାସିକର ମର୍ଯ୍ୟାଦା ପାଇବାକୁ ଆଶା କରିପାରେ? ସେ ହେବ ଭାଟ ଓ ଚାଟୁକାର ମାତ୍ର। ସଦ୍ୟ ବାହାବା ସେ ଦୈନିକ କାଗଜର ସ୍ତମ୍ଭରେ ପାଇପାରନ୍ତି; କିନ୍ତୁ କାଳର ନିକଷ ସେ ମିଥ୍ୟା ସ୍ତୁତିବାଚନକୁ ସ୍ୱୀକାର କରିବନି।

**ଆକାଡେମୀର ଲକ୍ଷ୍ୟ ଓ ନିର୍ଦ୍ଦେଶିକା –**

ଏହି ପର୍ଯ୍ୟାୟର ପ୍ରତିଷ୍ଠାତା ଓ ପ୍ରଚାରକ ସ୍ୱୟଂ ଜାତୀୟ ସାହିତ୍ୟ ଆକାଡେମୀ ମଧ୍ୟ 'ସାହିତ୍ୟର ଇତିହାସ' ନାମରେ ଗୁଡ଼ିଏ ପାଞ୍ଜିବିଡ଼ା ଯେ ଆଦୌ ଚାହାନ୍ତି ନାହିଁ, ତାହାର ସ୍ପଷ୍ଟ ସୂଚନା ଦେଇରଖିଛନ୍ତି। ଭାରତୀୟମାନଙ୍କର ପାରସ୍ପରିକ ଅଜ୍ଞତା ଦୂର କରିବା ପାଇଁହିଁ ଆକାଡେମୀ ବ୍ୟବସ୍ଥା କଲେ ଯେ ପ୍ରତ୍ୟେକ ଭାରତୀୟ ଭାଷା ଓ ସାହିତ୍ୟର ଇତିହାସ ପ୍ରକାଶିତ ହେଉ, ଯେପରିକି ଭାରତର ଭିନ୍ନ ଭିନ୍ନ ଅଞ୍ଚଳର ବୁଦ୍ଧିଜୀବୀ ଓ ସାଧାରଣ ପାଠକ ଅନ୍ୟ ଭିନ୍ନ ଭିନ୍ନ ଅଞ୍ଚଳର ସାହିତ୍ୟ ଓ ସଂସ୍କୃତିର ପରିଚୟ ପାଇ ପରସ୍ପର ପ୍ରତି ଅଧିକ ମର୍ଯ୍ୟାଦାବନ୍ତ ହେବେ।

ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇବା ପାଇଁ ଜାତୀୟ ସାହିତ୍ୟ ଆକାଡେମୀ ଲେଖକମାନଙ୍କୁ ଯେଉଁ ସର୍କୁଲାର୍ ବିତରଣ କରିଥିଲେ, ତାହାର ଦ୍ୱିତୀୟ ଓ ତୃତୀୟ ପାରାଗ୍ରାଫ୍‌ରେ ପ୍ରସ୍ତାବିତ ଭାରତୀୟ-ସାହିତ୍ୟ-ଇତିହାସ ପର୍ଯ୍ୟାୟ କି ପ୍ରକାର ହେବ ବା କିପରି ଲେଖାହେବ, ସେଥିପାଇଁ ଏହିପରି ସ୍ପଷ୍ଟ ସୂଚନା ଦିଆଯାଇଛି –

"ପ୍ରତ୍ୟେକ ଇତିହାସର ଆକାର କ୍ରାଉନ୍ ଅକ୍ଟାଭୋ ସାଇଜ୍‌ର ପ୍ରାୟ ୩୦୦ ପୃଷ୍ଠା ହେବ। ଯେହେତୁ ସଂପୃକ୍ତ ଭାଷାକୁ ଯେଉଁମାନେ ପ୍ରତ୍ୟକ୍ଷଭାବରେ ଜାଣନ୍ତି ନାହିଁ, ଏହି ଇତିହାସମାଳା ସେହିମାନଙ୍କ ପାଇଁହିଁ ଅଭିପ୍ରେତ; ତେଣୁ ଏ ପୁସ୍ତକସବୁ ଅନାବଶ୍ୟକ ନାନା ଛୋଟ ଛୋଟ କଥାରେ ଯେପରି ଭାରାକ୍ରାନ୍ତ ନହୁଅନ୍ତି, ସେଥିପ୍ରତି ଦୃଷ୍ଟି ରଖାଯିବ। ଏ ବହିର ଲକ୍ଷ୍ୟ ହେବ, ସଂପୃକ୍ତ ଭାଷାରେ କେବଳ କ୍ରମାଭିବ୍ୟକ୍ତିର ମୁଖ୍ୟ ସ୍ତର ଓ ଧାରାଗୁଡ଼ିକୁ ସ୍ପଷ୍ଟ ଓ ସରଳଭାବରେ ଉପସ୍ଥାପିତ କରିବା। ବିଶେଷ ଦୃଷ୍ଟି ନିବଦ୍ଧ କରାଯିବ କେବଳ ସେହି ଭାଷାର ସୃଜନମୂଳକ ସିଦ୍ଧିସମୂହ ଉପରେ ଏବଂ ତାହା ଯେପରି ପର୍ଯ୍ୟାପ୍ତ ଉଦାହରଣଦ୍ୱାରା ସ୍ପଷ୍ଟୀକୃତ ହୁଏ।"

"ଏହି ଇତିହାସ ପର୍ଯ୍ୟାୟର ଲେଖକମାନେ ତେଣୁ ସେମାନଙ୍କ ବହିଗୁଡ଼ିକୁ କେବଳ ଗୋଟିଏ ଗୋଟିଏ ନାମ-ତାଲିକା ମାତ୍ର କରି ଥୋଇଯିବାର ପ୍ରଲୋଭନକୁ ବରାବର ପ୍ରତିରୋଧ କରିବେ। ଯେହେତୁ ଏ ବହିର ଆକାର ହେବ ମାତ୍ର ୩୦୦ ପୃଷ୍ଠା, ତେଣୁ କେବଳ ସେହି ଲେଖକମାନଙ୍କ ବିଷୟହିଁ ଏଥିରେ ବର୍ଣ୍ଣିତ ହେବା ଉଚିତ, ଯାହାଙ୍କ ଲେଖାଦ୍ୱାରା ସଂପୃକ୍ତ ଭାଷାର ସମୃଦ୍ଧି ଓ ଅଭିବୃଦ୍ଧି ହୋଇଛି।"

ଏ ଗ୍ରନ୍ଥ ଏହି ଆଦର୍ଶରେହିଁ ଲେଖାଯାଇଛି। ଏ ବହିରେ ଯା ନାଁ ବା ତା' ନାଁ ନାହିଁ ବୋଲି ଏ ଗ୍ରନ୍ଥର ତାହା ବିରାଟ ତ୍ରୁଟି ବୋଲି ଦେଖାଇବାକୁ ଗଲାବେଳେ ସ୍ୱୟଂ ଆକାଡେମୀର ଆଦର୍ଶକୁ ସଂପୃକ୍ତ ଜନମାନଙ୍କ ପ୍ରତି ପ୍ରୟୋଗ କରି ନିଜେଇ ବିବେଚନା କରନ୍ତୁ।

ସେ ଯାହାହେଉ, ଚାରିବର୍ଷ ଲାଗି ବହିଟି ଲେଖା ଓ ଟାଇପ୍ ହେଲା ପରେ ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ନିୟମାନୁଯାୟୀ ଲେଖକର 'ଓଡ଼ିଆ ସାହିତ୍ୟର ଇତିହାସ' ଯାଞ୍ଚ ହେବାକୁ ଗଲା। ଓଡ଼ିଶାର ଯେଉଁ ତିନିଜଣ ବିଖ୍ୟାତ ସାହିତ୍ୟିକଙ୍କଦ୍ୱାରା ଏ ବହି ପରୀକ୍ଷିତ ହେଲା, ସେମାନେ ହେଉଛନ୍ତି– ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ। ସେମାନଙ୍କର ଏ ପୁସ୍ତକ ଉପରେ ଅଭିମତ ଅବିକଳ ସେଇମାନଙ୍କ ଭାଷାରେ ଦେଇଦେଉଛି।

(1)

"I have gone through considerable portions of Mansinha's History of Oriya Literature in English and find that it is on right lines. I recommend that this may safely be accepted in the proposed series of Histories for all Indian languages

under the auspices of the N. S. Akademi and may be published along with others."

10-11-1957 (Sd.) Artaballabh Mohanty

(2)

"We discussed the History of Oriya Literature also. Dr. Mansinha has agreed to rewrite the first chapter – that on "The Land and the People" as directed by me. He has agreed also to eliminate the few sentences and paragraphs that I have pointed out to him, as likely to give rise to controversies.

With these small changes, I recommend this book also for publication."

Bhubaneswar, 6-7-1958 (Sd.) H. K. Mahtab

(3)

Swapnapuri, Pithapur, Cuttack
Dated 6th August, 1959

My dear Dr. Mansinha,

I went through the manuscript of the History of Oriya Literature as suggested by the last meeting of the Advisory Board of the Sahitya Akademi. My warmest congratulations go to you for the labour you have taken to write the manuscript. It is really a very valuable scholastic work. Enclosed please find my comments on the manuscript for your information. I have also personally discussed with you the points noted down by me.* I regret it could not be possible for me to finish reading the manuscript as requested by you in your letter, dated 11-6-59.

(Sd.) Kalindi Ch. Panigrahi

---

* କାଳିନ୍ଦୀ ବାବୁ ବିଶେଷଭାବରେ ଆଲୋଚନା କରିଥିଲେ ପିଣ୍ଡିକ ଶ୍ରୀଚନ୍ଦନଙ୍କୁ ମୁଁ ଛାଡ଼ିଯାଇଥିବା ନେଇ। ମୁଁ କିନ୍ତୁ ତାଙ୍କୁ ସଫା କହିଦେଇଥିଲି ଯେ, ଶ୍ରୀଚନ୍ଦନ ବଙ୍ଗଳାରେ ଲେଖିଛନ୍ତି। ଓଡ଼ିଆ ସାହିତ୍ୟର ଇତିହାସରେ ତାଙ୍କୁ ସ୍ଥାନ ଦେବାକୁ ମୁଁ ତେଣୁ ପ୍ରସ୍ତୁତ ନୁହେଁ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ମହତାବ ଓ ଶ୍ରୀ ପାଣିଗ୍ରାହୀ ଏହି ପୁସ୍ତକ ସମ୍ବନ୍ଧରେ ଏପରି ମନ୍ତବ୍ୟ ଦେବାରୁ ଓ ଆକାଡେମୀର ଓଡ଼ିଆ-ଆଡ୍‌ଭାଇଜରୀ ବୋର୍ଡରେ (ଯେଉଁଥିରେ ଏ ତିନିହେଁ ମଧ ସଭ୍ୟ) ତାହା ସମଗ୍ର ଭାବରେ ପାସ୍ ହେବାରୁହିଁ ଏ ପୁସ୍ତକ ଛାପାଖାନାକୁ ଗଲା । ନଚେତ୍ ଏ ଗ୍ରନ୍ଥ ଛାପା ହେବାର ପ୍ରଶ୍ନହିଁ ଉଠିନଥାନ୍ତା । ଛାପାଖାନାରୁ ବାହାରି, ବଜାରକୁ ଆସିବାର ଅବ୍ୟବହିତ ପୂର୍ବରୁ ମଧ ଏ ପୁସ୍ତକ ପୁଣି ଆଉ ଥରେ ଓଡ଼ିଆର ଆଡ୍‌ଭାଇଜରୀ ବୋର୍ଡ ଆଗରେ ଉପସ୍ଥାପିତ ହେଲା, ତାଙ୍କର ଶେଷ ସମ୍ମତି ପାଇଁ । ତାହା ଉପରେ ଓଡ଼ିଆ ଆଡ୍‌ଭାଇଜରୀ ବୋର୍ଡର ଶେଷତମ ମନ୍ତବ୍ୟ ହେଉଛି ଏହି– (ଓଡ଼ିଆ ଆଡ୍‌ଭାଇଜରୀ ବୋର୍ଡର ଏକାଦଶ ଅଧିବେଶନର ବିବରଣୀର ସଂପୃକ୍ତାଂଶ)–

The eleventh meeting of the Advisory Board for Oriya was held in the office room of the Librerian, the National Library, Calcutta, on Wednesday, the 13th June, 1962 at 10.30 A.M.

Present:

1. Dr. Harekrushna Mahtab (in the Chair)
2. Sri Kalindi Charan Panigrahi
3. Sri Sochi RautRoy
4. Dr. Mayadhar Mansinha (Convenor)

Secretary and Assistant Secretary (Sri B. B. Agarwal) were in attendance. History of Oriya Literature (in English) written by Dr. Mayadhar Mansinha.

Regarding History of Oriya Literature, Secretary informed the Board that some letters had been received from Orissa expressing apprehension that the author might not have done adequate justice to his contemporaries and asking the Akademi to have the work scrutinised before publication. The Board observed that literary estimates, particularly relating to contemporary literature, were bound to differ, and since Dr. Mayadhar Mansinha's manuscript had already been properly read and approved, the work should be published as it is. It, however, recommended that a short Publisher's Note might be added to the volume to the effect that the views expressed in the work are those of the author's and Dr. Mahtab kindly agreed to read and approve the draft note for publication.

ପୂର୍ବେ କୁହାଯାଇଛି ଯେ, ଜାତୀୟ ସାହିତ୍ୟ ଆକାଡେମୀ ଭାରତୀୟ ସାହିତ୍ୟମାନଙ୍କର ଇତିହାସ ପର୍ଯ୍ୟାୟର ଲକ୍ଷ୍ୟରୂପେ କହିଛନ୍ତି: "ସଂପୃକ୍ତ ଭାଷାକୁ ଯେଉଁମାନେ ପ୍ରତ୍ୟକ୍ଷଭାବରେ ଜାଣନ୍ତି ନାହିଁ, ଏ ବହି ସେହିମାନଙ୍କ ପାଇଁ ଅଭିପ୍ରେତ। × × ×"

ଓଡ଼ିଶା ଦେଶର ପାଠକସାଧାରଣଙ୍କର ପ୍ରଥମ ଜିଜ୍ଞାସା ହେବା ସ୍ୱାଭାବିକ ଯେ, ଏ ବହି ସେହି ଲକ୍ଷ୍ୟକୁ ହାସଲ କରିବାରେ କୃତକାର୍ଯ୍ୟ ହୋଇଛି କି? ତାହା ହୋଇଛି ବୋଲି ଆମେ ନିଜେ ଏହି ଓଡ଼ିଶା ଦେଶରେ, କାଗଜମାନଙ୍କରେ ନିଜର ଡିଣ୍ଡିମ ବଜେଇଚାଲିଲେ ହେବ, ନା ସେ ଜିଜ୍ଞାସାର ପ୍ରକୃଷ୍ଟ ଉତ୍ତର ହେବ ଓଡ଼ିଶା ବାହାରର ବିଦ୍ୱଜ୍ଜନମାନଙ୍କ ମତ? ତେଣୁ ପାଠକମାନଙ୍କ ଆଗରେ ଜାତୀୟ ସାହିତ୍ୟ ଆକାଡେମୀ ପ୍ରକାଶିତ ଇଂରାଜୀ-ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ଉପରେ ଭାରତ ଓ ଭାରତ ବାହାରର କେତେକ ପ୍ରସିଦ୍ଧ ପତ୍ରପତ୍ରିକା ଓ ବିଶିଷ୍ଟ ବ୍ୟକ୍ତିଙ୍କର ମତାମତ, ସେମାନଙ୍କର ନିଜର ବିଚାର ପାଇଁହିଁ ଏଠାରେ ଥୋଇଯାଉଛି।

**Shankar's Weekly, 24th March, 1964 –**

Dr. Mansinha's History of Oriya Literature is both revealing and rewarding. He is fair and objective in his assessment of trends and individual authors, though, of course, he makes no secrecy of his own admiration for particular authors. The literary historian need not abdicate his aesthetic preferences, so long as these do not come in the way of his judgement. If he is a little harsh on the so called moderns, we may well-believe that he is so only because he sees literary jejuneness being palmed off as profoundity.

**The Times of India, Bombay, 2-6-1963 –**

So intensive has been the acculturation of the Indian mind by European traditions that most of us can come out with comments which would sound as if they meant something, on Garcia Lorca, Sartre, Kafka and Pasternak, random names that span a continent, while we know next to nothing about even the greatest figures in the literary traditions of peoples who are our closest neighbours in India. That ought to be a fantastically Dadaist and unreal situation, but we live with it and therefore fail to realise, how cock-eyed the set-up really is. We are really unreal people, may be.

Mercifully, the Sahitya Akademi is doing something about

this with its programme of translations and histories of regional leterature. The Akademi would count the present volume on Oriya literature as the third such history it has produced, but this reviewer can count it only as the second, as only one other, Sukumar Sen's history of Bengali literature, is available in English, the only language most of us understand. The history of Malayalam literature has been brought out only in Malayalam which, even an unbalanced chauvinist like the present reviewer has to admit, will be as intelligible to the Gujrati or Maharastrian as Portuguees to the Croat.

As futile as learning to swim through correspondence course is the attempt to learn something about a work of literature through a book which talks about it and about till you come out by the same door as in you went. Sen's book on Bengali literature creates this difficulty. Dr. Mansinha has been more kind. He has given us liberal quotations which convey some idea of the beauty of the original literary tissue far more effectively than any amount of an external narration. This is a book every Indian should read.

**The Sunday Statesman, May 5, 1963–**

Dr. Mayadhar Mansinha's History of Oriya Literature is a valuable addition to the publications of the Sahitya Akademi. Orissa was long ago called the Cinderella of the Indian provinces and Dr. Mansinha points out that the most outstanding characteristic of Oriya literature appears to be "the very gratifying fact that essentially it is a literature of the common people." He goes on to stress the fact that this may be the only literature in the Indo-Aryan family of North Indian languages to which the Adivasi has contributed so significantly. The blind Kond poet Bhima Bhoi's songs are "priceless treasures of this language". The Adivasi figures in the poetry of Orissa almost from the very beginning. Bhima, a fisherman, has left behind a ballad that "any erudite Sanskrit scholar would be proud of" and which is even now recited in almost every

village in the State. Yadumoni, the carpenter has become legendary in the land as a wit as well as a top-ranking rhetorical poet. Innumerable also are the most valued contributions to this literature from Orissa's genuine peasantry, the historic Odras.

**"Andhra Jyoti" April 21, 1963–**

Even though Oriya literature should justly occupy a prominent place in Indian literature, for some strange reason not much has been known to outsiders about it. This defect has largely been rectified by the appearance of Dr. Mayadhar Mansinha's treatise, published in an elegant format by the Sahitya Akademi. The learned author has given us a very vivid glimpse of Oriya literature right from the earliest times to the present day. Dr. Mansinha has very ably traced the successive transitions of the Oriya literature from the Asokan times, through the epic and medieval periods, right upto the present day, when Oriya is recognised as a highly evolved modern language with a perfectly equipped literature all her own. This brilliant survey whets our appetite to know more and more about a literature which is as vast as the ocean.

Achanta Janaki Ram

**Yojana, September 1, 1963–**

Dr. Mayadhar Mansinha's History of Oriya Literature is a valuable contribution to our understanding of a sister literature of India. His knowledge of his State, its people ar l culture and his acumen and zest make him a discriminating as well as an enthusiastic expounder of the wealth of Oriya life and letters.

× × × ×

What makes one happy to hear from Orissa is that the Adivasis like the Sabaras have contributed to its culture at the foundations. The thought that an unlettered Sudra like

Sarala Dasa and a Bhima Bhoi, have added magnificently is a matter for joy. The establishment of the Jagannath temple has been a composition product of the Bhudhist, Tantric, Sabara and Vaishnava elemets. One wishes that all the folklore, the songs and ballads of the people which Dr. Mansinha speaks of were collected and printed soon, and that even in this book he had given us a few specimens of Oriya poetry in a short anthology at the end. Then we could have got a direct experience of its lilt and cadence. The sea, one sees, has played a goodly part in the history of its people and if sea-songs are available they will be an invaluable addition to our wealth.

× × × ×

Yes, by and large, the Doctor's History is full, instructive and interesting. More, it is affectionate work. The range, the richness and the vitality of the Oriya literature, past and present, are considerable and earnest of a richer harvest in the years to come.

**Samakalina (An Avan Guardi Bengalee Periodical)–**

A full history of any literature cannot be complete with one man's labours. Looked at from this standpoint, Dr. Mansinha's History of Oriya Literature might be taken to be apparently incomplete; but, as it is, it is certainly indispensable to researchers both in Oriya and other Indian languages. The scholarship and perseverance the book exhibits of its author, deserves encomiums. Dr. Mansinha's way of saying things is spontaneous and for that reason this History of Oriya Literature has turned out to be a creative work. We repeat that this most informative as well as well-written book is indispensable.

**Hindustan Standard, December 15, 1963–**

Orissa is our neighbouring State and yet we know so little about its literature and culture. Thanks to Sahitya Adakemi,

we are gradually getting acquainted with the historical studies of the literatures of our various languages in India. The learned author in this present volume has tried to present the story of the Oriya literature in a way that has been both readable and informative.

It is not an easy task to unfold the history of any literature within a limited space and narrow compass. In that respect, the author has done a good job although it would have been better had he been a little more restrained in showering praises over the various literary celebrities. His overdose of superlatives and also his occasional flings towards a neighbouring State and its people are the only blemishes in an otherwise interesting book. –S.K.M.

**Aryan Path, October, 1963–**

Dr. Mansinha, the Chief Compiler of the Oriya Encyclopaedia, is no doubt ideally suited to undertake the not-so-easy task of introducing his literature to the common reader. In 275 pages he compresses neatly the existing history of almost a thousand years of Oriya literature. It is the unique glory of Oriya literature that the inscrutably mysterious Adivasi plays a significant role both as theme and as literary creator. This naturally heightens the unmistakably democratic character of Oriya literature and the synthetic pattern of Oriya culture.

Dr. Mansinha has treated his subject with scholarly detachment and critical acumen, and it is precisely because of these qualities which distinguish his writing that one may feel a jolt in finding here and there a tendency to catalogue names.

**Dr. Paul Engles, American Poet, March 28, 1963–**

Thank you for the admirable book on Oriya Literature. Already I have read parts of it and been much instructed. I like the fact that you keep an honest critical attitude and

do not emotionally praise every writer in Orissa; this is the only way in which literary standards can be maintained.

**E.G. Collins, B. D. (Hons.). T. C.,**
**Principal, Stewart Science College. Jan. 19, 1963 –**

I particularly appreciated some of his translations of the poems. They will enable non-Oriya speaking people to feel the living quality of some of these ancient works. The interweaving of religious, historical and personal factors is shown in a persuasive fashion and while some continuing controverses are mentioned, there is complete absence of any parochial or partizen spirit in Dr. Mansinha's judgements.

**P. V. Krishnamurti, the then Director, A.I.R. Cuttack –**

It is an extremely well-written volume and even for a person like me not too well acquainted with Oriya literature, it was interesting reading. In fact, it read almost like a novel and believe me, when I say that I finished it in one sitting! In addition it has kindled an interest to know more about the great literatures of Orissa and this in itself should be considered as great achievement.

Once again congratulating you on your fine achievement.

**Artur Isenberg, 10 Jorbagh, New Delhi – 3, 12th May, 1964 –**

Since my return from Orissa, I have read your "History of Oriya Literature", read it and greatly enjoyed it. What made it so enjoyable was the fact, rare in my experience, that you did not simple string together large number of names of authors, and titles, but did provide some information about the authors lives and the contents of their work. More important, you very rightly were bold enough to apply your own point of view to the whole panorama of Oriya Literature, past and more remarkable still present. Your approach makes your book extremely lively and of course, controversial, I am obviously totally incompetent to enter into the controversy

over your book. But I do congratulate you, cordially, on having produced a history of literature so lively that it seems still to be agitating the minds of all concerned. I consider this to be a very great achievement since that kind of controversy, which represents a clash of ideas, both testifies to the vitality of a literature and further enhances that vitality. For without conflicting opinions, there can be no literary criticism, only mutual garlanding societies pretending that the corpses and ghosts in their midst are alive, fleshed and boned. It is only when people care enough about their literature to formulate strong views, to defend and attack opinions, that the literature of a people is alive in any meaningful sense of that world.

So to me it is not a question of whether your critical appraisal of Oriya literature is right or wrong: that itself is a matter of debate for those qualified to do so. What I wish to congratulate you on, is the fact that you have made Oriya literature infinitely rich and interesting to me, and have greatly deepened my desire to read more Oriya writings, both of authors whom you praise and of others whom you attack. For that I wish to thank you.

**K. R. Kripalani, Secretary, Sahitya Akademi –**

This book will bring an increasing number of admirers for you. × × × Mr. Isenberg had already conveyed to me personally and verbally his warm appreciation of your History of Oriya Literature. Mr. Isenberg is a very intelligent and discerning scholar, and his appreciation of your book is accordingly valuable. As a matter of fact, I too had greatly enjoyed reading the book and I fully agree with what Mr. Isenberg has said. This has been generally the reaction of all non-Oriya readers who have read the book.

By the way, before we get this History translated into some other Indian languages, I should like to know if you have any corrections to make of any inadvertent errors of facts, so that the errors, if any, may be avoided in the

language-editions. If you have any such corrections, we should be glad to have them. I could send you an extra copy in which you could note in the margin all such corrections as you may like to insert.

**Hindusthan Times, June 9, 1963:**

Among the good things that the Sahitya Akademi has planned and done in recent years is its series on the history of modern Indian literatures in small readable volumes. The choice of author in this case would appear to be wise. Dr. Mansinha surveys the gamut of Oriya literature with dedication but without local chauvinism. He writes well and is never so carried aways by his eloquence that he cannot pause to take historic thought, comparing the achievements of great and little Oriyans with those of their contemporaries in India and other parts of the world. He is as abjective as man can be. If he takes sides at all, it is with the popular and productive movements of writing that override caste and clique, against the courtly, the inbread and the self-restricting.

The book has the additional merit of singling out for the reader, Indian and foreign (and it is to be hoped that a book such as this will have a foreign public) those features of Oriyan literary development that make it particularly appealing, it's essential humanity, its Adivasi contribution, its integrating quality between the north and south of India. Dr. Mansinha quotes in agreeable translation an Adivasi poem that 'smell...of any village in the hilly parts of Orissa.' Much of this is enchanting. It brings the countryside into the heart of the town and bridges the countries through the voice of the enduring peasant.

Of today Dr. Mansinha is sober. "The weakest branch in Oriya prose at present appears to be higher literary criticism. Lacking any deep acquaintance not only with international language but even with Sanskrit, their (the critics) mind habituated to the narrow limit of a single regional literature,

they take literary criticism to be merely long strings of quotations and unbalanced verbose encomiums or pontifical opinions based upon wrong assessment."

It is a wise bird that knows its nest.

MURIEL WASI

**Bhavan's Journal, September, 1963 –**

Written in chaste and delightful English, the book is rich in content and unbiased in judgement.

ଶେଷରେ ଚାଳିଶ ବର୍ଷ ଇଂଲଣ୍ଡ ଓ ୟୁରୋପରେ କଟାଇ ଏବେ ଭାରତ ଓ ୟୁରୋପ ଭିତରେ ସାଂସ୍କୃତିକ ପରିଚୟକୁ ଅଧିକ ନିକଟତର କରିବା ଲକ୍ଷ୍ୟରେ ଭାରତକୁ ଫେରିଥିବା ଜଣେ ମହାଶୂରୀୟ ବନ୍ଧୁଙ୍କର ଏ ପୁସ୍ତକ ଉପରେ ଅଭିମତ ମଧ୍ୟ ଦେଉଛି ।

Shantiniketan, 10, Vasant Nagar, August 11, 1965, Bangalore.

"I read it (History of Oriya Literature) through, without a stop, – it makes such an absorbing reading! Thanks to the comprehensiveness of its contents – 2000 years of Oriyas' cultural panorama so ably condensed without congestion, literary style characterised by simple, direct narration, with great clarity of expression, shot through and through with love, broad humanity, objectivity and sense of fairness and charity – as while dealing either with the still obscure writers like Krishna Chandra Tripathy, Chakradhara Mahapatro and so on, or the Sabujites, or at the other end, the soidisant, 'Leftists' and 'Exotics' entertaining, instructive and inspiring! I really was so 'thrilled' to read this great contribution of yours. With my 40 years' stay in Europe I am more familiar with European literature and Western literary criticism even when I try to keep myself in touch with Indian literary works. Your book, if I may say so, without scuding to be 'patronising', is atonce both an excellent literary history of Orissa and a model in literary criticism that others elsewhere in India should emulate. It reminded me (while reading it through) of D. P. Mukherjee's books with one (of literary

criticisms, I mean) qualification, that your book (which is both a history and a critical survey) is more objective and humanistic and 'constructive' and less pungent and less iconoclastic than Mukherjee's.

With best wishes,
Ayana Deva Angadi.

## ''ମଡର୍ଣ୍ଣ ରିଭିଉ''ର ନିନ୍ଦା –

୧୯୬୩ ଏପ୍ରିଲ ମାସରେ ପ୍ରସିଦ୍ଧ 'ମଡ଼ର୍ଣ୍ଣ ରିଭିଉ' ପତ୍ରିକାରେ ଜାତୀୟ ସାହିତ୍ୟ ଆକାଡେମୀ ପ୍ରକାଶିତ ଇଂରାଜୀ ଓଡ଼ିଆ-ସାହିତ୍ୟ-ଇତିହାସ ପୁସ୍ତକର ଓଡ଼ିଶା ବାହାରେ ଏକମାତ୍ର ନିନ୍ଦାତ୍ମକ ଓ ରୁକ୍ଷ ସମାଲୋଚ଼ନା ପାଠକେ ଦେଖିବାକୁ ପାଇବେ। ରିଭ୍ୟୁଅର୍ ଶ୍ରୀ ୟୁ. ଏନ୍. ଘୋଷାଲ ଜଣେ ପ୍ରସିଦ୍ଧ ବଙ୍ଗାଳୀ ଐତିହାସିକ ଓ ପଣ୍ଡିତଜନ ବୋଲି ଶୁଣିଲି। ସେ ତାଙ୍କ ରିଭିଉରେ କିନ୍ତୁ ବହିଟିର ସେତେ ନିନ୍ଦା କରିନାହାନ୍ତି, ଯେତେ କରିଛନ୍ତି ବହି ଭିତରେ ଲେଖକ ଜୋର୍‌ରେ କହିଥିବା ଗୋଟିଏ ଦୁଇଟି ଐତିହାସିକ ସତ୍ୟ ଓ ମତର। ବଙ୍ଗାଳୀ ପଣ୍ଡିତେ କ୍ରୁଦ୍ଧ ଓ ବିସ୍ମିତ ଯେ, ମେଦିନୀପୁର ଓଡ଼ିଶାର ଅଂଶ ଥିଲା ବୋଲି ଏ ବହିରେ ଏତେ ଦୃଢ଼ତାର ସହିତ କୁହାଯାଇଛି।

[ନୋଟ୍– ବଙ୍ଗାଳୀ ପଣ୍ଡିତଙ୍କ ଆଖିରେ ଏ ହେଲା ଐତିହାସିକ ମିଥ୍ୟା। କିନ୍ତୁ ସାହିତ୍ୟ ଆକାଡେମୀ ପ୍ରକାଶିତ 'ବଙ୍ଗଳା ସାହିତ୍ୟ ଇତିହାସ'ରେ ଲେଖକ ଶ୍ରୀ ସୁକୁମାର ସେନ, ତାଙ୍କ ନିଜ ଭାଷାର ପ୍ରସିଦ୍ଧ ଚୈତନ୍ୟଚରିତାମୃତର ସମ୍ବାଦକୁ ମଧ୍ୟ ଉଡେଇଦେଇ ଯେ ଲେଖିଛନ୍ତି– ଚୈତନ୍ୟ ଓ ଦକ୍ଷିଣ-ଓଡ଼ିଶାର ଶାସକ ରାମାନନ୍ଦ 'ଗଞ୍ଜାମ'ରେ ଭେଟ ହୋଇଥିଲେ, ଏହା ଉପରେ କାହିଁ ବଙ୍ଗାଳୀ ବା ଆମର ଅତି-ପଣ୍ଡିତମ୍ମନ୍ୟ ତ୍ରୁଟି-ଦର୍ଶନ-ସର୍ବସ୍ୱ ଓଡ଼ିଆ ଅଧ୍ୟାପକ କେହି ପାଟି ଫିଟାଇ ନାହାନ୍ତି? ଏ ବହିରେ କାହିଁକି, ଚୈତନ୍ୟ-ରାମାନନ୍ଦଙ୍କ ଭେଟ ସ୍ଥାନକୁ ବେଜୱାଡ଼ାକୁ ନେଇଛି (ଜାଣି ଜାଣି ଅଜ୍ଞାତରେ ନୁହେଁ) ତାହା ଅବଶ୍ୟ ଯଥାସ୍ଥାନରେ କୁହାଯାଇଛି।]

ବଙ୍ଗାଳୀ ପଣ୍ଡିତେ ଓଡ଼ିଆ ସାହିତ୍ୟ ଇତିହାସ ପ୍ରତି ଅତ୍ୟନ୍ତ ଅପ୍ରସନ୍ନତା ପୁଣି ଦେଖାଇଛନ୍ତି– ଏହି କାରଣରୁ ଯେ ସେଥିରେ ନୀଳକଣ୍ଠ ଦାସଙ୍କ କାବ୍ୟ-କବିତାର ଶୈଳୀ ବର୍ଣ୍ଣନା କଲାବେଳେ ବ୍ରାଉନିଂ ଓ ଟେନିସନ୍‌ଙ୍କ ନାମୋଚ୍ଚାରଣ କରିବାର ଅକ୍ଷମଣୀୟ ଅପରାଧ କରିପକାହୋଇଛି। ତାଙ୍କ ମତରେ ନୀଳକଣ୍ଠ ଦାସଙ୍କ ପରି 'ସ୍ୱଳ୍ପ-ଜ୍ଞାତ' ଓଡ଼ିଆ ଲେଖକମାନଙ୍କ ସମ୍ପର୍କରେ ବିଶ୍ୱବିଖ୍ୟାତ କବିମାନଙ୍କ ନାମୋଚ୍ଚାରଣ ଆସ୍ପର୍ଦ୍ଧା ମାତ୍ର।

ଅନ୍ୟ ପକ୍ଷରେ ଏହି ଲେଖକ ଆଦୌ ଲଜ୍ଜିତ ନୁହେଁ କହିବାକୁ ଯେ, ତା'ର ଓଡ଼ିଆ ସାହିତ୍ୟର ଇତିହାସରେ ଆଧୁନିକ ଓଡ଼ିଶାର ଏକକାଳର କେତେକ ପତ୍ରପତ୍ରିକା (ଯଥା– ସମାଜ, ମାତୃଭୂମି, ପ୍ରଜାତନ୍ତ୍ର) ସଂପୃକ୍ତ ଓ କେବଳ ସେଇ ସମ୍ପର୍କ

ଯୋଗୁଁହିଁ ଦେଶରେ ବର୍ତ୍ତମାନ ପ୍ରତିଷ୍ଠିତ ବା ପ୍ରଭାବାନ୍ୱିତ ଏପରି ବହୁ ବ୍ୟକ୍ତିଙ୍କର ନାମ ସେଥିରେ ନାହିଁ ବା ଯାହାଙ୍କ ନାମ ଅଛି, ତାଙ୍କ ରଚ଼ନା ଉପରେ ନିରପେକ୍ଷ ଅଭିମତ ଦେବାରେ ଲେଖକ ପଶ୍ଚାତ୍‌ପଦ ହୋଇନାହିଁ। ଏମାନେ ଯେ ସଙ୍ଘବଦ୍ଧଭାବରେ ଯେଉଁ ଓଡ଼ିଆ ଅଧ୍ୟାପକମାନଙ୍କ ନାମ ନାହିଁ ତାଙ୍କ ସହ ଏକ ହୋଇ ନିଜ ନିଜ ପତ୍ରପତ୍ରିକାରେ ଏ ପୁସ୍ତକକୁ ଆକ୍ରମଣ କଲେ, ତାହା ହୁଏତ ଆଦୌ ଅସ୍ୱାଭାବିକ ନୁହେଁ। ତାହା କିନ୍ତୁ ଘୋର ଲଜ୍ଜାକର ବିଷୟ; କାରଣ ସାହିତ୍ୟ ସମାଲୋଚ଼ନା କୌଣସି ସଭ୍ୟଦେଶରେ ଏପରି ବୀଭତ୍ସ ରୀତିରେ ପ୍ରକାଶିତ ହୋଇଥିବା ଜଣାଯାଏନାହିଁ। ଯେଉଁ ଓଡ଼ିଆ ଅଧ୍ୟାପକ ଏ ବହିର 'ତ୍ରୁଟି' ଖୋଜି ଖୋଜି ଲେଖା ଓ ବଚ଼ନ ବାଢ଼ିବାରେ ଖୁବ୍ ଆତ୍ମସନ୍ତୋଷ ଲାଭ କରିଛନ୍ତି, ଲେଖକର ଦୁର୍ଭାଗ୍ୟକୁ ସେମାନଙ୍କର ନାମ ମଧ୍ୟ ଏ ବହିରେ ନାହିଁ। 'ନାହିଁ'ର ଅର୍ଥ, ଏକ ଜାତୀୟ ସାହିତ୍ୟର ଇତିହାସରେ କିଏ ସ୍ଥାନ ପାଇବ, କେବଳ ସେହି ବିଚ଼ାରରୁହିଁ ନାହିଁ; ବ୍ୟକ୍ତିଗତ ଭାବବିହ୍ୱଳତାରୁ ନୁହେଁ।

**ସାଲ୍ୟୁଟ୍ କିଏ ପାଏ ? –**

ଏକ ଐତିହାସିକ ଜାତିର ସାହିତ୍ୟର ଇତିହାସରେ ଇତିହାସ ଲେଖକ ତା ଜାତିର କାହାକୁ ସାଲ୍ୟୁଟ୍ ଦେବ, ତାହାରି ଉପରେ ତେଣୁ ଦି'ପଦ କହି ଏ ନିବନ୍ଧ ଶେଷକରେ।

ଭାବ-ଜଗତରେ ଆମେ ଦୁଇପ୍ରକାର ଲୋକଙ୍କୁ ଭେଟୁ। ଜଣେ ମୌଳିକ ଚିନ୍ତକ ଯେ ପୃଥିବୀକୁ ନୂତନ ସତ୍ୟ, ନୂତନ ପନ୍ଥା ଦେଇଯା'ନ୍ତି। ସାଧାରଣତଃ ସେ ଦାରିଦ୍ର୍ୟ ଅନ୍ଧକାରେ ମରନ୍ତି। କିନ୍ତୁ ତାଙ୍କ ପଛରେ ଦଳେ ବାହାରନ୍ତି ଶିଷ୍ୟ ଓ ପ୍ରଚ଼ାରକ, ଯିଏ ଦାରିଦ୍ର୍ୟରେ ମରିଥିବା ମୌଳିକ ସ୍ରଷ୍ଟାର ବାନା ଦେଖାଇ ମଠ-ବାଡ଼ି, ଟଙ୍କା-ସୁନାର ମାଲିକ ହୋଇ ଜୀବନଟା ବେଶ୍ ସୁଖରେ କଟାଇନିଅନ୍ତି ଏବଂ ସମସାମୟିକ କାଳରେ କିଛି ପ୍ରଭାବ ମଧ୍ୟ ପକାଇଥାନ୍ତି— ଯଦିଓ ଏକାନ୍ତ ଅସ୍ଥାୟୀ।

ଏକ ଜାତିର ସାହିତ୍ୟର ଇତିହାସ ଯେ ହେଉଛି ମୌଳିକ ସ୍ରଷ୍ଟାମାନଙ୍କରହିଁ ଇତିହାସ, ତାହା ପୂର୍ବରୁ ସୂଚ଼ିତ ହୋଇଛି। ଏହି ଆତ୍ମାର ଇତିହାସରେ ସ୍ଥାନ-ସନର ବିଚ଼ାର ବା ନାମ-ଧାମର ତାଲିକା ଏକ ଇତର ଅବାନ୍ତରତା ମାତ୍ର। ବିଶ୍ୱବରେଣ୍ୟ କାଳିଦାସ ଓ ସେକ୍‌ସପିଅର୍‌ଙ୍କ ସ୍ଥାନ ଓ କାଳ ତ ଏପର୍ଯ୍ୟନ୍ତ ଅନିର୍ଦ୍ଦିଷ୍ଟ ଓ ଭ୍ରମସଙ୍କୁଳ। କିନ୍ତୁ ସେଥିଯୋଗୁଁ ତ ତାଙ୍କ ରଚ଼ନା ଭୋଗକରିବାରେ କିଛି ଅସୁବିଧା କାହାରି ହେଉନାହିଁ। ପୁଣି, ସମଗ୍ର ସଂସ୍କୃତ-ସାହିତ୍ୟର ଇତିହାସରେ କୌଣସିହେଲେ ଲେଖକ ଓ କୌଣସିହେଲେ ଗ୍ରନ୍ଥର ସନ ଏପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇପାରୁନି; ଅଥଚ଼ ସଂସ୍କୃତ-ସାହିତ୍ୟଚର୍ଚ୍ଚାରୁ ବିଶ୍ୱରେ ~~ନୂତନ~~ ନୂତନ ଜ୍ଞାନକ୍ଷେତ୍ରର ଉଦ୍ଭବ ହୋଇଛି। କିନ୍ତୁ ଦେଖୁଛୁ ଯେ, ସାହିତ୍ୟଚର୍ଚ୍ଚା ବୋଇଲେ ଓଡ଼ିଶାରେ ଦଳେ ଅଧ୍ୟାପକଙ୍କର ସନ-ସ୍ଥାନ ନାମ ନେଇ ବାଡ଼ିଆବାଡ଼ି ଛଡ଼ା ଅନ୍ୟ କିଛି ନାହିଁ। ଏ ଅଧ୍ୟାପକଙ୍କର ସାହିତ୍ୟିକ

ମୂଲ୍ୟବୋଧ ମଧ୍ୟ ଧୁଆ ଓ ଅଧୁଆ ମୂଳାର ପ୍ରଭେଦ ଦେଖିପାରେନା । ଓଡ଼ିଆ ସାହିତ୍ୟର ଇତିହାସରେ କେବଳ ନୁହେଁ, ତା'ର ସମଗ୍ର ରଚ଼ନାରେ ଏହି ଲେଖକ କିନ୍ତୁ କେବଳ ଶ୍ରେଷ୍ଠଙ୍କୁ ସାଲ୍ୟୁଟ୍ ଦେଇଆସିଛି । ତା' ଆଖିରେ ମାନବିକ ଶ୍ରେଷ୍ଠତ୍ୱର ମାନଦଣ୍ଡ ପାଞ୍ଚଟି : ଯଥା– ୧. ପ୍ରତିଭା (ଚନ୍ଦ୍ରଶେଖର, ଫକୀରମୋହନ, ମେହେର), ୨. ସାଧନା (ଗୋପୀନାଥ ନନ୍ଦ, ମୃତ୍ୟୁଞ୍ଜୟ ରଥ), ୩. ତ୍ୟାଗ (ଚକ୍ର ବିଶୋଇ, ମଧୁସୂଦନ ଦାସ), ୪. ଐଶ୍ୱର୍ଯ୍ୟମୟ ବ୍ୟକ୍ତିତ୍ୱ (ରବୀନ୍ଦ୍ରନାଥ, ଗୋପବନ୍ଧୁ), ୫. ସାଧୁତା (ଯେକୌଣସି ସାଧାରଣ ନାଗରିକ; ଯାହାଠି ଏହା ଦେଖାଯିବ, ସେ ଏହି ଲେଖକର ପୂଜ୍ୟ । ଓଡ଼ିଶାରେ 'ପ୍ରତିଭା' ସହିତ 'ସାଧୁତା'ର ପରିପୂର୍ଣ୍ଣ ମିଳନ ଦେଖାଦେଇଛି, କିନ୍ତୁ କେବଳ ସାମନ୍ତ ଚନ୍ଦ୍ରଶେଖର ଓ ମେହେରଙ୍କଠାରେ ।)

ଯେଉଁ ବନ୍ଧୁମାନେ ଏହି ଲେଖକ ଉପରେ ଏତେ କ୍ରୁଦ୍ଧ ଓ ବିରକ୍ତ, ସେମାନେ ଦୟାକରି ଏହି ମାନଦଣ୍ଡସବୁକୁ ନିଜ ପ୍ରତି ବା ନିଜ ପିତା ବା ଜାମାତାଙ୍କ ପ୍ରତି ଆରୋପ କରି ନିଜେଇ ବିଚାର କରନ୍ତୁ । କେବଳ ଆସନ ବା ପତ୍ରିକାର ଭୟରେ ଯେଉଁ ସାହିତ୍ୟର ଇତିହାସ ଲେଖକ ସଂପୃକ୍ତ ଅଭାଜନମାନଙ୍କୁ ମଧ୍ୟ ସାଲ୍ୟୁଟ୍ ଦେଇଚାଲିବ, ତାଙ୍କର ବହି ସଂପୃକ୍ତ ପତ୍ରପତ୍ରିକାମାନଙ୍କରେ ଲମ୍ବା ଓ ଉଚ୍ଛ୍ୱସିତ ପ୍ରଶଂସାପୂର୍ଣ୍ଣ (ଖୁବ୍ ସମ୍ଭବତଃ ନିଜେ ଲେଖକଦ୍ୱାରା ଲିଖିତ) ରିଭିଉ ବାହାରିପାରେ । କିନ୍ତୁ ପ୍ରଶଂସିତମାନଙ୍କ ଇତରତା ଯୋଗୁଁହିଁ ସେ ଇତିହାସ ଇତରହିଁ ରହିବ । ଏ ସମ୍ପର୍କରେ ପ୍ରସିଦ୍ଧ ପତ୍ରିକା 'ଏରିୟାନ୍ ପାଥ୍'ର ସମାଲୋଚ଼କଙ୍କ (ଶୁଣୁଛି ସେ ଇଂରାଜୀ ଭାଷାର ଜଣେ ଜଣାଶୁଣା ଅଧ୍ୟାପକ) ଅଭିମତ ପାଠକେ ଶୁଣନ୍ତୁ–

''ଡକ୍ଟର ମାନସିଂ ତାଙ୍କର ପୁସ୍ତକଟିକୁ ପଣ୍ଡିତଜନୋଚ଼ିତ ନିର୍ବ୍ୟକ୍ତିକତା ସହିତ ରଚ଼ନା କରିଛନ୍ତି । ତୀକ୍ଷ୍ଣ-ଦର୍ଶନ ସମାଲୋଚ଼ନା ମଧ୍ୟ ଏଥିରେ ପରିସ୍ଫୁଟ । କିନ୍ତୁ ଠିକ୍ ଏହି କାରଣରୁହିଁ ବହିର ଅତ୍ରତତ୍ର ନାମମାନଙ୍କର ଏକ ଏକ କାଟାଲଗ୍ ଭେଟିଲେ ପାଠକର ରସବୋଧ ହଠାତ୍ ଏକ ଧକ୍କା ପାଏ ।''

ଯେଉଁମାନେ ୟା'ର ନାଁ, ତାର ନାଁ (ପ୍ରକୃତରେ କିନ୍ତୁ ନିଜର ପିତାଙ୍କର ବା ଜ୍ୱାଇଁର ନାଁ) ନାହିଁ ବୋଲି ଚିତ୍କାର କରିଆସୁଛନ୍ତି, ସେମାନେ ୟା'ର ଉତ୍ତର ଦିଅନ୍ତୁ ।

ସାହିତ୍ୟ ଆକାଡେମୀ ପ୍ରକାଶିତ ଓଡ଼ିଆ ସାହିତ୍ୟର ଇତିହାସ ପ୍ରାୟ ତିନିଶ' ପୃଷ୍ଠାର । ଯଦି ଲେଖକକୁ କୁହାଯାଇଥା'ନ୍ତା ବହିଟି ୬୦୦ ପୃଷ୍ଠାରେ ଲେଖିବାକୁ, ସେ ୬୦୦ ପୃଷ୍ଠା ଆନନ୍ଦରେ ଲେଖିଥାନ୍ତା; କିନ୍ତୁ ତା'ର ଅର୍ଥ ନୁହେଁ ଯେ, ଯେଉଁମାନେ ସାହିତ୍ୟର ଇତିହାସରେ ଆସନ ପାଇବାର ଅଯୋଗ୍ୟ, କେବଳ ସେମାନଙ୍କର ସାଂପ୍ରତିକ ପଦ ଓ ପ୍ରଭାବ ଉପରେ ଆଖି ରଖି ସେହିମାନଙ୍କ ପରି ଗୁଡ଼ାଏ ଅଭାଜନ ନାମ ଭର୍ତ୍ତି କରି ବହିକି ମୋଟା କରାଯାଇଥା'ନ୍ତା । ଅନ୍ୟ ପକ୍ଷରେ ବହି ବଡ଼ ହୋଇଥାନ୍ତା– ଉପେନ୍ଦ୍ର, ଅଭିମନ୍ୟୁ, ରାଧାନାଥଙ୍କ ଉପରେ ହୁଏତ ଡବଲ ଲେଖାହୋଇ, କି ଲୋକଗାଥା ସମ୍ବନ୍ଧରେ ଏକ ଅଧ୍ୟାୟ ଯୋଗ କରାଯାଇ । କିନ୍ତୁ ଅଯୋଗ୍ୟ ଅଭାଜନଙ୍କ ନାମ

ପୂରେଇ ଏପରି ବହିର ମର୍ଯ୍ୟାଦା ନଷ୍ଟ କରାଯିବ କାହିଁକି? ପୁଣି ପାଠକେ ଟିକିଏ ତଳେଇ ଚିନ୍ତା କରନ୍ତୁ, ଆମର ସାଂସ୍କୃତିକ ଅଧଃପତନ କେତେ ତଳକୁ ଗଲାଣି। ଯେତେବେଳେ ଜାତି କାହାକୁ ପୂଜା କରିବ, ସେଥିପାଇଁ ସ୍ୱୟଂ ଜାତି ଭାବିବା ଆଗରୁ ପୁଅ, ପୁତୁରା, ଜ୍ୱାଇଁ, ଭଣଜା, ଶ୍ୱଶୁରର ଦଳ ଏକ ଏକ ଫଟୋ ନେଇ ବାଣୀପୀଠରେ ହାଜର। ଏ କୁତ୍ସିତ ଦୃଶ୍ୟରେ ଏ ଦେଶରେ ଆଜି କେହି ଲଜ୍ଜିତ ବା ଦୁଃଖିତ ଯେ ନୁହେଁ, ତାହାହିଁ ପ୍ରମାଣ କରେ ଆମର ଚାରିତ୍ରିକ ଅଧଃପତନ। ନୀଳମଣି ବିଦ୍ୟାରତ୍ନ ବା ମୃତ୍ୟୁଞ୍ଜୟ ରଥେ ପତ୍ରିକା ଛାଡ଼ିଯାଇନାହାନ୍ତି କି ବାର୍ଷିକ ଭୋଜି ଦେବାର ବ୍ୟବସ୍ଥା କରିଯାଇନାହାନ୍ତି ବୋଲି ଏ ଦେଶର ଶ୍ରେଷ୍ଠ ସାହିତ୍ୟପୀଠରେ ତାଙ୍କର ଚିତ୍ର ଲଟକା ହେବାର କଥା ତୁଣ୍ଡରେ କେହି ଧରିବାକୁ ନାହିଁ। କିନ୍ତୁ ଦୈନିକ ପତ୍ରିକାର ପୃଷ୍ଠପୋଷକତା ନଥିଲେ ସାହିତ୍ୟ-ଜଗତରେ ଯେଉଁମାନଙ୍କର ନାମ ଉଚ୍ଚାରିତ ହେବାର କୌଣସି ଆଶା ନଥିଲା ଓ ଯାହାଙ୍କୁ ଆମର ଛାତ୍ରାବସ୍ଥାରେ ଚେହେରା ଓ ଚରିତ୍ର ଉଭୟ ଯୋଗୁଁ ଆମେ ଓଡ଼ିଆ ସାହିତ୍ୟ-ଜଗତ୍‌ର କୁମୁଟି ମହାଜନ ବୋଲି କହୁଥିଲୁ, ତାଙ୍କ ଚିତ୍ର ସେହି ଶ୍ରେଷ୍ଠ ପୀଠରେ ନିଶ୍ଚୟ ଝୁଲିବ। ଚମତ୍କାର ଆଜି ଏ ଦେଶରେ ସାହିତ୍ୟିକ ମୂଲ୍ୟବୋଧ ଏବଂ ରୁଚି ଓ ନ୍ୟାୟ ସଚେତନତା! ଯିଏ କିନ୍ତୁ ଭଞ୍ଜ-ରାଧାନାଥ-ମେହେର-ବଡ଼ଯେନା-ଭୀମା ଭୋଇକୁ ସାଲ୍ୟୁଟ୍ ଦେଇ ସୁଧାସ୍ୱାଦର ଆନନ୍ଦ ପାଉଛି, ସେ ଏ ପ୍ରକାର କାସାର ଜଳ ପ୍ରତି ଦୃଷ୍ଟିଦେବ କାହିଁକି? ଆମ ପଣ୍ଡିତମ୍ମନ୍ୟ ଓଡ଼ିଆ ଅଧ୍ୟାପକେ ଜାତୀୟ ଆକାଡେମୀ ପ୍ରକାଶିତ ଇଂରାଜୀ ଓଡ଼ିଆ ସାହିତ୍ୟର ଇତିହାସରେ 'ମାଦଳାପାଞ୍ଜି' ଶବ୍ଦଟିର ସଂପୂର୍ଣ୍ଣ ସଙ୍ଗତ ଇଂରାଜୀ ଅନୁବାଦକୁ ଏକ 'ତ୍ରୁଟି' ବୋଲି ମିଥ୍ୟା ପ୍ରଚାର କରି ନର୍ତ୍ତନରତ। ତାଙ୍କୁ ଆଉ କିଛି ଦେଖାଗଲାନି। କିନ୍ତୁ ସେହି ବହିରେ ସେହି ମାଦଳାପାଞ୍ଜିରୁ ଉଦ୍ଧୃତ ଅନଙ୍ଗଭୀମ ଦେବଙ୍କ ବକ୍ତୃତାଟି ପଢ଼ି ବିଶ୍ୱବିଖ୍ୟାତ ପଣ୍ଡିତ ଓ ଭାରତର ଜାତୀୟ ଅଧ୍ୟାପକ ସୁନୀତି କୁମାର ଚାଟାର୍ଜି ଉଚ୍ଛ୍ୱସିତ ପ୍ରଶଂସା ଢାଳିଛନ୍ତି। ବହିରେ ଯଥାସ୍ଥାନରେ ତାହା ଉଦ୍ଧାର କରାଯାଇଛି। ପାଠକେ ସେଇଥିରୁ ଜାଣିବେ ମାନ୍‌ସିଂର ବହିଦ୍ୱାରା ଓଡ଼ିଆ ଜାତି ଓ ଭାଷା କିପରି ଅପମାନିତ ହୋଇଛି ଓ ସେଇଥିରୁହିଁ ଏ ଦେଶର ସନ-ଜନ-ନାମ-ଧାମସର୍ବସ୍ୱ ତ୍ରୁଟି-ସନ୍ଧାନୀ ଅଧ୍ୟାପକଙ୍କର ପାଣ୍ଡିତ୍ୟ ଓ ମୂଲ୍ୟବୋଧ ବିଚାର କରିବେ। ସମଗ୍ର ବହିଟି ଉପରେ ଡକ୍ଟର ସୁନୀତି କୁମାର ଚାଟାର୍ଜିଙ୍କ ମତ ମଧ୍ୟ ପାଠକେ ପରେ ଦେଖିବାକୁ ପାଇବେ।

## ନିରପେକ୍ଷ ମତ –

ବନ୍ଧୁଗଣ, ଦୟାକରି ମନେରଖିବେ ଯେ, ଓଡ଼ିଆ ସାହିତ୍ୟର ଇତିହାସ ଉପରେ ସର୍ବଭାରତୀୟ ପତ୍ରିକାମାନଙ୍କର ଯେଉଁସବୁ ଅନୁକୂଳ ମତ ସାମାନ୍ୟ ପୂର୍ବେ ଉପସ୍ଥାପିତ କରାଯାଇଛି, ସେସବୁ ଲେଖକ ନିଜେ ସଂଗ୍ରହ କରିନାହିଁ। ଜାତୀୟ ସାହିତ୍ୟ ଆକାଡେମୀ ସ୍ୱ-ପ୍ରକାଶିତ ପୁସ୍ତକର ଗୌରବ ଭାବରେହିଁ ସେସବୁ ସଂଗ୍ରହ କରି ପରେ ପରେ ତାର ଏକ ଏକ କପି ଲେଖକ ନିକଟକୁ ପଠାଇବାରୁହିଁ ସେସବୁ ଜାଣିବାକୁ ପାଇଲା।

ଆକାଡେମୀ ନିଜେଇ ଏହି ଅଭିମତଗୁଡ଼ିକରୁ କେତେକାଂଶ ଉଦ୍ଧାର କରି କାର୍ଡ ଛାପି ବାଣ୍ଟୁଛନ୍ତି।

ପୁସ୍ତକାଲୋଚନାରେ ସାଧୁତା, ସଜ୍ଜନତା, ବିଦ୍ୟା ଓ ମର୍ଯ୍ୟାଦା ସହିତ ନିଷ୍ଠୁର ନିରପେକ୍ଷତା ମଧ୍ୟ କିପରି ରହିପାରେ, ଓଡ଼ିଶାର ସାଧାରଣ ପାଠକମାନଙ୍କୁ ଏ ଦିଗରେ ସମ୍ୟକ୍ ଧାରଣା ଦେବାପାଇଁ ବିଶ୍ୱବିଖ୍ୟାତ ପତ୍ରିକା ଷ୍ଟେଟ୍‌ସ୍‌ମ୍ୟାନ୍‌ର କେତୋଟି ଦୃଷ୍ଟାନ୍ତ ଦିଏ। କାରଣ କେବଳ ସେହି ସର୍ବଭାରତୀୟ ପତ୍ରିକାଟିକୁହିଁ ଲେଖକ ଛାତ୍ର ଥିବାବେଳୁ ଏପର୍ଯ୍ୟନ୍ତ ପଢ଼ିଆସୁଛି। ଷ୍ଟେଟ୍‌ସ୍‌ମ୍ୟାନ୍‌ର ରବିବାରୀୟ ସମାଲୋଚନାର ସ୍ତର ଓ ପ୍ରକାର ଓଡ଼ିଆ ପତ୍ରପତ୍ରିକା ରାଜ୍ୟରେ ଏପର୍ଯ୍ୟନ୍ତ ଅକଳ୍ପନୀୟ।

ଏପର୍ଯ୍ୟନ୍ତ ଓଡ଼ିଆ-ଲେଖକ-ଲିଖିତ ପାଞ୍ଚଟି ମାତ୍ର ପୁସ୍ତକ ଷ୍ଟେଟ୍‌ସ୍‌ମ୍ୟାନ୍‌ରେ ରିଭିଉ ପାଇଥିବାର ଲେଖକର ଆଖିରେ ପଡ଼ିଛି। ସେମାନଙ୍କ ଭିତରେ ଅନ୍ୟତମ ମାତ୍ର ଜାତୀୟ ସାହିତ୍ୟ ଆକାଡେମୀ-ପ୍ରକାଶିତ ଓଡ଼ିଆ ସାହିତ୍ୟର ଏହି ଇତିହାସ। ତାହାରି ରିଭିଉ ତ ପୂର୍ବେ ଦିଆଯାଇଛି, ବାକି ଚାରିଖଣ୍ଡି ବହି ଭିତରୁ ଗୋଟିଏ ହେଲା ପଶ୍ଚିମ ଓଡ଼ିଶାର ଜଣେ ଐତିହାସିକ ବୀରଙ୍କ ଜୀବନୀ, ଯାହା ଉପରେ ଷ୍ଟେଟ୍‌ସ୍‌ମ୍ୟାନ୍ ଏଇପରି ଲେଖିଥିଲେ– "ଏଥିରେ ଗୁଡ଼ାଏ ଜାଣିବା କଥା ଅଛି ଅବଶ୍ୟ, ତେବେ ଏ ବହି ଉତ୍ତମତର ଭାବରେ ଲେଖା ହୋଇପାରିଥା'ନ୍ତା।" ଆଉ ଖଣ୍ଡିଏ ହେଲା, ଜନୈକ ତଥାକଥିତ ବିପ୍ଳବୀ ଓ ପ୍ରଗତିବାଦୀ ଓଡ଼ିଆ କବିଙ୍କର ବହୁ ବିଜ୍ଞାପିତ କବିତାବଳୀର ଇଂରାଜୀ ଅନୁବାଦ, ଯାହାଉପରେ ମତ ଦେବାକୁ ଯାଇ ଷ୍ଟେଟ୍‌ସ୍‌ମ୍ୟାନ୍ ଗୋଟିଏ ମାତ୍ର ବାକ୍ୟ ଛପେଇଥିଲେ ଓ ତାହା ଏହି– "ଏ ପୁସ୍ତକ ଆଦୌ ମୁଦ୍ରିତ ହେବାହିଁ ଉଚିତ ନଥିଲା।" ଏ ବହି ଓ ଲେଖକ କିଏ ତାହା ଜାଣିବାରେ ଓଡ଼ିଆ ପାଠକମାନଙ୍କୁ ଆଦୌ କଷ୍ଟ ହେବନାହିଁ ବୋଧହୁଏ। ବାଲେଶ୍ୱରର କୌଣସି ଓକିଲ କାଳିଦାସଙ୍କ ଉପରେ ଲେଖିଥିବା ବହିଟି ଉପରେ ଷ୍ଟେଟ୍‌ସ୍‌ମ୍ୟାନ୍‌ର ସଂକ୍ଷିପ୍ତ ଆଲୋଚନାରେ ଉପରେ ବର୍ଣ୍ଣିତ ଦୁଇଟି ପୁସ୍ତକ ପରି ଅପମାନଜନକ କିଛି ନଥିଲା କି ସ୍ତୁତି ମଧ୍ୟ କିଛି ନଥିଲା– ଥିଲା ସେହିପରି। ସେହିପରି କିନ୍ତୁ ଉତ୍କଳ ଦେଶର ଏବର ଜନୈକ ପ୍ରଭାବଶାଳୀ ପ୍ରଫେସରଙ୍କ ବହି ଉପରେ ଷ୍ଟେଟ୍‌ସ୍‌ମ୍ୟାନ୍ ଏହିପରି ମନ୍ତବ୍ୟ ଦେଇଥିଲେ।

Mr. D's doctoral thesis, now given the dignity of a cover, has a mass of facts, but lacks the treatment of a mature mind and surely he could have refrained from telling us that "my labours will be rewarded if at least one reader is successful in appreciating our constitution in its proper perspective." Mr. D. himself set a herculean task for his readers.

ଏକ ବିଖ୍ୟାତ ପତ୍ରିକାରେ, ଏକ ଦେଶର କବି ଓ ପ୍ରଫେସରଙ୍କ ବହି ଉପରେ

ଏପିରି ଅଭିମତ ସବୁ ପ୍ରକାଶିତ ହେଲେ ସେସବୁ ସଂପୃକ୍ତ ଜାତି ପ୍ରତି ଅପମାନଜନକ ନୁହେଁ– କିନ୍ତୁ ଯେଉଁ ବହି ପ୍ରଶଂସିତ ହେଲା, ତା'ର ଲେଖକ ଓଡ଼ିଆ ଜାତିର ସମ୍ମାନ ତଳକୁ ପକେଇଲା ବୋଲି ଚିତ୍କାର କରାଯାଇପାରେ; କାରଣ ହାତରେ କାଗଜ ଅଛି ଏବଂ ସଂପୃକ୍ତ ଲେଖକ ଓଡ଼ିଆ ଜାତିକି ଟେକିଧରିଥିଲେ ମଧ୍ଯ ତା'ର ଅକ୍ଷମଣୀୟ ଅପରାଧ ଏହି ଯେ, ପତ୍ରିକାର ସମ୍ପାଦକ ବା ତାଙ୍କ ପିତା ବା ଜାମାତାଙ୍କୁ ସେଥିରେ ସାଲ୍ୟୁଟ୍ ଦିଆଯାଇନାହିଁ ।

ଷ୍ଟେଟ୍‌ସ୍‌ମ୍ୟାନ୍ ପରି ଅନ୍ୟ ସର୍ବଭାରତୀୟ ପତ୍ରିକା ସବୁ; ଯଥା– ହିନ୍ଦୁସ୍ଥାନ ଟାଇମସ୍, ଟାଇମସ୍ ଅଫ୍ ଇଣ୍ଡିଆ ବା ସଙ୍କର୍‌ସ ଉଇକ୍ଲି ପ୍ରଭୃତି ମଧ୍ଯ ନିଜ ମତାମତର ଉଚ୍ଚ ନିରପେକ୍ଷତା ଓ ସ୍ୱାଧୀନତା ରକ୍ଷା କରିବାରେ ଜାଗ୍ରତ ଥିବେ ବୋଲି ମନେ କରିବାର କଥା। ଲେଖକ ସେଠବୁ କାଗଜ ପଢ଼େନା; ତେଣୁ ସେମାନଙ୍କର ରିଭିଉର ପରମ୍ପରା ଉପରେ କୌଣସି ମତ ସେ ଦେଇପାରୁନି। ତେବେ ଆକାଡେମୀ-ପ୍ରକାଶିତ ଓଡ଼ିଆ ସାହିତ୍ୟର ଇତିହାସ (ଇଂରାଜୀ) ଉପରେ ଏମାନଙ୍କର ସମାଲୋଚନାର ପ୍ରକାରରୁ ହିଁ ଜଣାପଡୁଛି ଯେ, ଷ୍ଟେଟ୍‌ସ୍‌ମ୍ୟାନ୍ ପରି ଅନ୍ୟ ସର୍ବଭାରତୀୟ ପତ୍ରିକାମାନଙ୍କର ସମାଲୋଚକ ସବୁ ନିଶ୍ଚୟ ଉଚ୍ଚଶିକ୍ଷିତ ଓ ପଣ୍ଡିତ ଲୋକ ହୋଇଥିବେ। ଲେଖକର ଇଂରାଜୀ ଓଡ଼ିଆ-ସାହିତ୍ୟ ଇତିହାସର ସବୁଠାରୁ କବିତ୍ୱପୂର୍ଣ୍ଣ ସମାଲୋଚନା ପ୍ରକାଶ ପାଇଛି ଦିଲ୍ଲୀର 'ହିନ୍ଦୁସ୍ଥାନ ଟାଇମସ୍'ରେ। (ପୂର୍ବରୁ ଦିଆଯାଇଛି, ଦେଖିନେଇପାରନ୍ତି) ସମାଲୋଚକ ନିଜ ନାମ ଦେଇ ତାହା ଲେଖିଥିଲେ। ପରେ ଜାଣିବାକୁ ପାଉଛି ଯେ, ସମାଲୋଚକ ଶ୍ରୀମତୀ ମୁରିଏଲ୍ ୱାସୀ, ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ଏମ୍.ଏ. ପାସ୍ କରି ବହୁକାଳ ଇଂରାଜୀ ସାହିତ୍ୟର ଅଧ୍ଯାପିକା ହେଲା ପରେ ଏବେ ଭାରତ ସରକାରଙ୍କ ଶିକ୍ଷାଦପ୍ତରରେ କୁଆଡେ ଏକ ପରାମର୍ଶଦାତ୍ରୀରୂପେ କାମ କରୁଛନ୍ତି।

ଏପରି ଲୋକର ମତକୁ ଏ ଦେଶର ତଥାକଥିତ ଶ୍ରେଷ୍ଠ ପତ୍ରିକା ଯେତେବେଳେ ଭୁରୁଡୁରେ ଉଡ଼ାଇ ଦେଇପାରନ୍ତି ଏହା କହି ଯେ– ''ସେସବୁ କେବଳ ବାହାରିଆ ଓଡ଼ିଆ-ଅନଭିଜ୍ଞ ଲୋକଙ୍କ ମତ,'' ତେବେ ବାଧ୍ଯ ହୋଇ କହିବାକୁ ପଡୁଛି ଯେ କେବଳ ଉନ୍ମତ୍ତ ମୂର୍ଖତାହିଁ ଏପ୍ରକାର ଆସ୍ପର୍ଦ୍ଧା କରିପାରେ। ମୁରିଏଲ୍ ୱାସୀ 'ଓଡ଼ିଆ ଅନଭିଜ୍ଞ' ହୋଇପାରନ୍ତି; କିନ୍ତୁ ସେ ତ ଆଉ 'ସାହିତ୍ୟ-ଅନଭିଜ୍ଞ' ନୁହନ୍ତି ? 'ସାହିତ୍ୟ' କ'ଣ ଜାଣିଥିଲେ ଏପରି ପ୍ରଳାପ ବୋଧହୁଏ କେହି କରିନଥାନ୍ତେ।

ତଥାପି, ଏହି ଅଶ୍ରୁତପୂର୍ବ ଭୁରୁଡୁର ମଧ୍ଯ ଯଥାଯଥ ଉତ୍ତରସ୍ୱରୂପ ଏଠାରେ ଜାତୀୟ ସାହିତ୍ୟ-ଆକାଡେମୀ ପ୍ରକାଶିତ 'ଓଡ଼ିଆ ସାହିତ୍ୟର ଇତିହାସ' ଉପରେ 'ଓଡ଼ିଆ-ଅଭିଜ୍ଞ' କେତେକ ପ୍ରବୀଣ ଓ ନବୀନ ଓଡ଼ିଆ ସାହିତ୍ୟିକଙ୍କ ମତାମତ ମଧ୍ଯ ପାଠକମାନଙ୍କ କୌତୂହଳାର୍ଥେ ଏଠାରେ ଦେଇଦେଉଛି। ଆଶା କରେ, 'ଓଡ଼ିଆ-ଅଭିଜ୍ଞ' ସମ୍ପାଦିକ ଓ ଅଧ୍ଯାପକମାନେ ଏହାର ପ୍ରତିବାଦ କରିବେ।

ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ଇତିହାସ ଲେଖକ ପଣ୍ଡିତ ବିନାୟକ ମିଶ୍ର –

ଶରଣକୁଳ, ୨୯.୮.୬୪

"ପ୍ରତ୍ୟେକ ଲେଖାର ନୂତନତ୍ୱ ଖୋଜି ତାହାର ଆଦର କରିବା ଉଚିତ। ଇଂରାଜୀରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖା ନହୋଇଥିବା ସ୍ଥଳେ *ଆଚାର୍ଯ୍ୟ ମାନସିଂହ ଓଡ଼ିଶାର ବାହାର ରାଜ୍ୟର ପାଠକମାନଙ୍କୁ ଜଣାଇ ଦେଇଅଛନ୍ତି ଯେ, ଓଡ଼ିଆ ଜାତି ଶିଶୁ ବା ମୃତ ନୁହେଁ। କାରଣ ତାହାର ସାହିତ୍ୟ ଥିଲା ଓ ଏବେ ବି ପ୍ରଗତିଶୀଳ, ଏକଥା ମାନସିଂହଙ୍କ ଓଡ଼ିଆ ସାହିତ୍ୟର ଇତିହାସ ପଢ଼ି ପ୍ରତ୍ୟେକ ପାଠକ ଉପଲବ୍ଧି କରିବେ। ତାହାଙ୍କର ଭାଷା ସୁଖପାଠ୍ୟ ବୋଲି ସମସ୍ତେ ସ୍ୱୀକାର କରିବେ।"

ହାସ୍ୟରସିକ ଶ୍ରୀ ସୁନୀଳ ମିଶ୍ର –

ସମ୍ବଲପୁର, ୩.୭.୬୪

"ଆପଣଙ୍କ ଓଡ଼ିଆ ସାହିତ୍ୟର ଇତିହାସ ଭ୍ରମପୂର୍ଣ୍ଣ ବିବେଚିତ ହେଲା ବୋଲି ଖବରକାଗଜରେ ପଢ଼ିଲି। ଯାହାହେଉ, ଏକ ସ୍ତରରୁ ଅନ୍ୟ ସ୍ତରକୁ ଆପଣଙ୍କର ପଦୋନ୍ନତି ହେଲା। ତେଣୁ ମୁଁ ମୋ ଶୁଭେଚ୍ଛା ଅର୍ପଣ କଲି। କାରଣ କଥାରେ ଅଛି, ମୁନୀନାଂ ଚ ମତିଭ୍ରମ। ଏଥର ଆପଣ 'ମୁନୀ' – 'ମୁନୀ ମାନସିଂହ'। ଆଜ୍ଞା, ଇତିହାସ ଚିରଦିନ ସଂଖ୍ୟାଗରିଷ୍ଠର ମର୍ଜି ଉପରେ ଲେଖାଯାଇଥାଏ। ଗଣଯୁଗର ଦାବି ହେଲା – 'ରାଜା, ବାଦଶା, ଉଜୀର, ଅମୀରଙ୍କୁ ପଛରେ ପକାଇ ସୁନୀଳ ମିଶ୍ର ବିଷୟ ଲେଖିବେ।' ସାହିତ୍ୟର ଇତିହାସ ହେଉ, ରାଜନୀତିର ଇତିହାସ ହେଉ, ଇତିହାସହିଁ ଇତିହାସ। ହେ କବି! ××× ଗାଲିଲିଓ ପାଗଳ ଥିଲା, ସକ୍ରେଟିସ୍ ବିଷ ପିଇଲା – ଆଉ ଆପଣ ?"

ଶ୍ରୀ ଶ୍ରଦ୍ଧାକର ସୁପକାର –

ସମ୍ବଲପୁର, ୧୭.୬.୬୪

"ଆପଣଙ୍କର ହିଷ୍ଟ୍ରି ଅଫ୍ ଓଡ଼ିଆ ଲିଟରେଚର ଏକ ମୌଳିକ ଉଦ୍ୟମ ଓ ସଫଳ ରଚନା। × × × ପ୍ରଜାତନ୍ତ୍ର-ବିଷୁବମିଳନ ପରେ ଏହି ବହି ଓ ଆପଣଙ୍କ ଉପରେ ଚତୁର୍ଦ୍ଦିଗରୁ ଆକ୍ରମଣ ହେଉଥିବାର ଦେଖି ବିସ୍ମିତ ହୋଇ, ବହିଟି ଖୁବ୍ ଭଲଭାବରେ ପୁଣି ଅଧ୍ୟୟନ କଲି। ପଢ଼ିଲା ପରେ ମୋର ବିସ୍ମୟର ମାତ୍ରା ବୃଦ୍ଧିପାଇଲା। ଅନେକ ସାହିତ୍ୟିକ-ବନ୍ଧୁମାନଙ୍କ ସହିତ ଏହି ଆକ୍ରମଣ ବିଷୟ ନେଇ ଆଲୋଚନା କରି ମୁଁ ବୁଝିଛି ଯେ, ଆପଣଙ୍କ ଉପରେ ଆକ୍ରମଣ କେବଳ ଈର୍ଷାମୂଳକ। ଆଧୁନିକ ଯୁଗରେ

---

* ପଣ୍ଡିତ ମହାଶୟଙ୍କ ଉକ୍ତିକୁ ସାମାନ୍ୟ ସଂଶୋଧନ କରୁଛି। ପୂର୍ବେ ଦେଖାଇ ଦିଆଯାଇଛି ଯେ ମାନସିଂହର ପୁସ୍ତକ ପ୍ରକାଶିତ ହେବାପୂର୍ବରୁ ଇଂରାଜୀରେ ଅନ୍ତତଃ ତିନିଟି ତଥାକଥିତ 'ଓଡ଼ିଆ ସାହିତ୍ୟ-ଇତିହାସ' ଥିଲା।

ଯେଉଁ ଲେଖକମାନଙ୍କର ନାମ ଆପଣ ଉଲ୍ଲେଖ କରିନାହାନ୍ତି ବା ଯେଉଁମାନଙ୍କର ଲେଖାଉପରେ ପ୍ରତିକୂଳ ମତ ଦେଇଛନ୍ତି, ସେହିମାନେ ଏହି କଟୁ ସମାଲୋଚନା କରୁଛନ୍ତି। ଏହି ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖି କୌଣସି ମାସିକ-ପତ୍ରକୁ ଦେବାର ଇଚ୍ଛା; ମାତ୍ର ଆଜିକାଲି ମାସିକ-ପତ୍ରରେ ସ୍ଥାନ ପାଇବା କଷ୍ଟକର ବୋଲି ମୋର ମନେହେଉଛି।''

**ଶ୍ରୀ ଚିତ୍ତରଞ୍ଜନ ଦାସ –**

ବାଗଲପୁର, ୨୫।୫।୬୪

(ଜର୍ମାନୀରୁ ଫେରି) ''ଓଡ଼ିଶା ସୀମା ଛୁଇଁବାମାତ୍ରେ ଆପଣଙ୍କ ଲିଖିତ 'ହିଷ୍ଟ୍ରି ଅଫ୍ ଓଡ଼ିଆ ଲିଟରେଚ଼ର' ବିଷୟରେ ନାନା ଲୋକଙ୍କଠାରୁ ନାନା କଥା ଶୁଣିବାକୁ ଲାଗିଲି। ଏହି ବିଷୟରେ ନାନା ସମ୍ବାଦପତ୍ରରେ କୁଆଡେ ବାଦବିବାଦମାନ ବାହାରିଥିଲା। ସେସବୁ ଦେଖିବାର ସୁଯୋଗ ମୁଁ ପାଇନାହିଁ। କଟକରେ ପହଞ୍ଚିବାମାତ୍ରକେ ଅତି ଆଗ୍ରହୀ ହୋଇ ମୁଁ ବହିଟିକୁ କିଣିଲି ଓ ଗତ ସପ୍ତାହରେ ଘରେ ବସି ସେଇଟିକୁ ପଢ଼ିସାରିବାପରେ ଆଜି ଆପଣଙ୍କୁ ଏହି ଚିଠି ଲେଖୁଛି।

ଅନ୍ୟମାନେ କ'ଣ ଭାବି ସେମାନଙ୍କର ମତ ଦେଇଛନ୍ତି କେଜାଣି, ମୁଁ ଆପଣଙ୍କୁ ସତ କହୁଛି ଯେ 'ବହିଟି ମତେ ଭାରି ଭଲଲାଗିଛି। ବିଶେଷତଃ ଓଡ଼ିଶାର ଐତିହାସିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିମାନଙ୍କର ଆଲୋଚ଼ନା କରାଯାଇଥିବା ପ୍ରଥମ କେତୋଟି ଅଧ୍ୟାୟରେ ଆପଣ ବିଷୟଟିର ଯେପରି ଚର୍ଚ୍ଚା କରିଛନ୍ତି, ମୁଁ କୌଣସି ଓଡ଼ିଶାବାସୀଙ୍କ ଲେଖାରେ ତାହା ଆଗରୁ ପଢ଼ିଛି ବୋଲି ମୋର ମନେହେଉନାହିଁ।

ପୁସ୍ତକର ବିଭିନ୍ନ ସ୍ଥାନରେ ଆପଣ ଯେଉଁ ମତମାନ ପୋଷଣ କରିଛନ୍ତି, ସେଥିରେ ଅନେକେ ହୁଏତ ଅସମ୍ମତ ହୋଇପାରନ୍ତି। ମୁଁ ମଧ୍ୟ ଆପଣଙ୍କର ସବୁ ସିଦ୍ଧାନ୍ତକୁ ସମର୍ଥନ କରିପାରୁଛି ବୋଲି କହିପାରିବି ନାହିଁ; କିନ୍ତୁ ଏହାହିଁ ହେବା ସ୍ୱାଭାବିକ। ସାହିତ୍ୟ ତ ଗଣିତ ନୁହେଁ! ତେଣୁ ସାହିତ୍ୟର ସମୀକ୍ଷାରେ ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ଓ ଅନୁଶୀଳନ ପଦ୍ଧତି ଗୋଟିଏ ପ୍ରକାର ହେବ କାହିଁକି?

ଓଡ଼ିଶାର ସାହିତ୍ୟ-ଇତିହାସ ବର୍ତ୍ତମାନ ସୁଦ୍ଧା ଯେପରି ତଥ୍ୟ-ଦରିଦ୍ର ଓ ଅପ୍ରସ୍ଥାପିତ ଅବସ୍ଥାରେ ରହିଛି, ସେଥିରେ ସାହିତ୍ୟର ସମାଲୋଚ଼ନା ନାଆଁରେ ଅନେକେ କେବଳ ଆପଣା ଆପଣାର ଭାବପ୍ରବଣତାଗୁଡ଼ିକର ଉଦ୍‌ଗାର କରିଥାଆନ୍ତି। ଆମର ଦୁର୍ଭାଗ୍ୟ, ଓଡ଼ିଶାରେ ଅନେକ ସମୟରେ ତାକୁହିଁ ସାହିତ୍ୟ-ସମାଲୋଚ଼ନାର ସ୍ୱୀକୃତି ଦିଆଯାଇଥାଏ। ଆପଣଙ୍କ ବହିଟିରେ ମୁଁ ଭାବପ୍ରବଣତାର ଗନ୍ଧ ଆଦୌ ପାଇନାହିଁ କହିଲେ ଚଳେ। ତାହାହିଁ ମୋ ମତରେ ବହିଟିର ସବୁଠାରୁ ବଡ଼ ବିଶେଷତ୍ୱ। ଆପଣଙ୍କ ସ୍ଥାନରେ ଓଡ଼ିଶାର ଆଉ କାହାରି ଉପରେ ଏହି ପୁସ୍ତକଟି ଲେଖିବାର ଭାର ନ୍ୟସ୍ତ ହୋଇଥିଲେ, ସେ ଏତେଦୂର ସଫଳ ହୋଇଥାନ୍ତେ ବୋଲି ମୁଁ ମନେକରୁନାହିଁ। ଆପଣଙ୍କର ବହିକୁ ଯିଏ ଭଲ ବା ମନ୍ଦ କହୁ, ଭବିଷ୍ୟତରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିଲାବେଳେ ସମସ୍ତେ ଏଇଟିକୁ ବ୍ୟବହାର କରିବେ ଓ ଏଥିରୁ ଯଥେଷ୍ଟ ଉପକୃତ ହେବେ। ଓଡ଼ିଆ

ସାହିତ୍ୟର ଇତିହାସ ସମ୍ବନ୍ଧରେ ଏପର୍ଯନ୍ତ ଯେ କେତୋଟି ବହି ଲେଖାହୋଇଛି, ସେଗୁଡ଼ିକୁ ମୁଁ ସାଧାରଣତଃ ବିବରଣପ୍ରଧାନ ବୋଲି କହିବି। ଆପଣଙ୍କ ବହିଟି ସାହିତ୍ୟ-ସମାଲୋଚ଼ନା ଗୋଷ୍ଠୀର ପ୍ରଥମ ପୁସ୍ତକ। ପଣ୍ଡିତ ନୀଳକଣ୍ଠଙ୍କର ଏହି ବିଷୟକ ଦୁଇଖଣ୍ଡଯାକ ବହି ଉପର୍ଯ୍ୟୁକ୍ତ କୌଣସି ପର୍ଯ୍ୟାୟରେ ପଡ଼ିବ ନାହିଁ।''

## ଅଧ୍ୟାପକ ବିନୋଦଚ଼ନ୍ଦ୍ର ନାୟକ –

''ମୁଁ ଏହାକୁ (History of Oriya Literature) ଆପଣଙ୍କର ଅନ୍ୟ ଏକ କବିକୃତି ଏବଂ କାବ୍ୟପରମ୍ପରା ପ୍ରତି ଏକ ସାର୍ଥକ ବିହଙ୍ଗାବଲୋକନରୂପେ ଗ୍ରହଣ କରୁଛି। ଏହି ଅନୁପାତରେ ଆପଣଙ୍କର ମୋ ପ୍ରତି ତିକ୍ତ ମନ୍ତବ୍ୟ ସବୁକୁ ମଧ ମୁଁ ସାଦରେ ଅଭିନନ୍ଦନ ଜଣାଉଛି।''

## ଅଧ୍ୟାପକ ଶ୍ରୀ ବଂଶୀଧର ମହାନ୍ତି –

''ଭାରତ ସାହିତ୍ୟ ଆକାଡେମୀ-ପ୍ରକାଶିତ ଆପଣଙ୍କର ଓଡ଼ିଆ ସାହିତ୍ୟର ଇତିହାସ ଆମୂଳଚୂଳ ପଢ଼ି ମୁଁ ଏକ ବିଶେଷ ଆନନ୍ଦ ପାଇଛି ଯେ, ଓଡ଼ିଆ ସାହିତ୍ୟର ଇତିହାସ ନେଇ ଇଂରାଜୀ ବା ଓଡ଼ିଆରେ ଏପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗ ବହିଖଣ୍ଡିଏ ନଥିଲା – ଏହି ବହିରେହିଁ ଆମେ ତା ପାଇଲୁ। ଯେଉଁ କେତୋଟି ପୁସ୍ତକ ଲେଖାହୋଇଛି, ତହିଁରେ ସାହିତ୍ୟର ଯଥାର୍ଥ ସମୀକ୍ଷା ପ୍ରତି ଦୃଷ୍ଟି ଦିଆଯାଇ ନାହିଁ– ଅଧିକାଂଶ କେବଳ କବି ତଥା ଗ୍ରନ୍ଥର ବିବରଣୀ। ଆପଣଙ୍କର ଇତିହାସକୁ କେନ୍ଦ୍ର କରି ଓଡ଼ିଆ ସାହିତ୍ୟର ବିଭିନ୍ନ ପତ୍ରପତ୍ରିକାରେ ଆଲୋଚ଼ନାର ଝଡ଼ତୋଫାନ ବହିଯାଇଛି। ସେ ସବୁକୁ ମୁଁ ଅନୁଧ୍ୟାନ କରୁଛି। ପୂର୍ବରୁ ଲେଖାଯାଇଥିବା ଓଡ଼ିଆ ସାହିତ୍ୟ ଇତିହାସ ସମ୍ବନ୍ଧୀୟ ଗ୍ରନ୍ଥଗୁଡ଼ିକରେ ଅମାର୍ଜନୀୟ ତ୍ରୁଟି ସବୁ ରହିଛି। ଏବେ ପଣ୍ଡିତ ବିନାୟକ ମିଶ୍ରଙ୍କର ଓଡ଼ିଆ ସାହିତ୍ୟର ଇତିହାସର ଦ୍ୱିତୀୟ ସଂସ୍କରଣଟି ପଢୁଥିଲି। × × × ଅନ୍ୟ ଜଣେ ଅଭିଜ୍ଞ ଅଧ୍ୟାପକ ତାଙ୍କର ଗ୍ରନ୍ଥକୁ ପୁଣି ସଂଶୋଧନ କରିଛନ୍ତି ଓ ସେ ପୁସ୍ତକ ପ୍ରକାଶ ନିମନ୍ତେ ଉତ୍ସାହ ଦେଇଛନ୍ତି। କିନ୍ତୁ ଏ ଗ୍ରନ୍ଥଟି ଯେକୌଣସି ଅଶ୍ଳୀଳ କାବ୍ୟ ବା ଉପନ୍ୟାସକୁ ବଳିଯାଇଛି; ଅଥଚ଼ ଏହା ଆମ ଦେଶର ଛାତ୍ର-ଛାତ୍ରୀଙ୍କର ପାଠ୍ୟପୁସ୍ତକ ଭାବରେ ଗୃହୀତ। ଏଭଳି ପୁସ୍ତକ କିପରି ଆମର ସମାଲୋଚ଼କଙ୍କ ଦୃଷ୍ଟି ଆକର୍ଷଣ କରିନାହିଁ, ତାହା ଭାବି ଆଶ୍ଚର୍ଯ୍ୟ ଲାଗୁଛି। ମୋର ବ୍ୟକ୍ତିଗତ ମତ ଯେ, ଏ ଧରଣର ଗ୍ରନ୍ଥ ଶୀଘ୍ର ବାଜ୍ୟାପ୍ତ ହେବା ଦରକାର। ଆପଣଙ୍କର ଗ୍ରନ୍ଥରେ କେଉଁଠି ବା କିପରି, ମୁଦ୍ରଣଗତ ବା ଅନ୍ୟାନ୍ୟ ତ୍ରୁଟି ଥାଇପାରେ। ତାହା ଆପଣ ଦ୍ୱିତୀୟ ସଂସ୍କରଣ ବେଳକୁ ସଂଶୋଧନ କରିନେଲେ ପୁସ୍ତକଟି ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ ହୋଇ ରହିବ। ପଣ୍ଡିତ ବିନାୟକ ମିଶ୍ରଙ୍କ ଇତିହାସର ଦ୍ୱିତୀୟ ସଂସ୍କରଣରେ ମଧ ବଳରାମ ଦାସଙ୍କ ରଚ଼ନାବଳୀ ଭିତରେ ଦିଆଯାଇଛି– ମହାଭାରତ, ଚଣ୍ଡିପୁରାଣ, ରାମବିଭା, ଗଣେଶବିଭୂତି, ନାମରତ୍ନ ଗୀତା, ଭକ୍ତିରସାମୃତସିନ୍ଧୁ, କୁରାଳ

ପୁରାଣ ଓ ସଭାବିନୋଦ (ପୃ. ୫୭)। ଯାକୁ ପୁଣି ଜଣେ ଅଭିଜ୍ଞ ଓଡ଼ିଆ ଅଧ୍ୟାପକ ସଂଶୋଧନ କରିଛନ୍ତି। ଆମ ଦେଶର ଏପରି ପଣ୍ଡିତମାନଙ୍କର ପୁଣି ଏପରି ସାଧାରଣ ଜ୍ଞାନର ଅଭାବ? ଏଭଳି ମାରାତ୍ମକ ପ୍ରମାଦ ସବୁ କିନ୍ତୁ ଆମ ସମାଲୋଚକଙ୍କ ଦୃଷ୍ଟିକୁ ଯେ ଆସୁନାହିଁ, ତାହାହିଁ ବିସ୍ମୟକର। ଆପଣଙ୍କର ନିରପେକ୍ଷ ଓ ତୀକ୍ଷ୍ଣ ସମାଲୋଚନା ଅସିରେ ଅନେକେ ଆଘାତପ୍ରାପ୍ତ; କିନ୍ତୁ ସ୍ୱାଧୀନ ମତ କଦାପି ଅବହେଳାର ବା ନିନ୍ଦା ବା ଦୋଷର ବିଷୟ ନୁହେଁ। × × × ଗ୍ରନ୍ଥର ଭାଷା ଉପରେ ମୋର କିଛିହିଁ କହିବାର ନାହିଁ। କାରଣ ଆପଣଙ୍କ ଗ୍ରନ୍ଥର ଶୈଳୀ ସମ୍ବନ୍ଧରେ ବହୁ ସ୍ୱଦେଶୀ ଓ ବିଦେଶୀ ଇଂରାଜୀ-ଅଧ୍ୟାପକ ବନ୍ଧୁ ଭୂରି-ଭୂରି ପ୍ରଶଂସା କରିଅଛନ୍ତି। ଈର୍ଷାପ୍ରଣୋଦିତ ସମାଲୋଚନା ସ୍ଥାୟୀ ନୁହେଁ।''

**ଲେଖକ ଶ୍ରୀ ଲକ୍ଷ୍ମୀଧର ନାୟକ –**

''ଗତ କେତେ ଦିନଧରି କଟକରେ ରହୁଥିବାବେଳେ ଆପଣଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ନେଇ ବିଭିନ୍ନ ସାହିତ୍ୟିକଙ୍କ ଭିତରେ ଆକ୍ଷେପ ଓ ଆଲୋଚନା ଏତେ ନିମ୍ନସ୍ତରକୁ ଯିବାର ମୁଁ କଳ୍ପନା କରିପାରିନଥିଲି। ବହିରେ ହୁଏତ କିଛି ଭୁଲ୍ ଅଛି; କିନ୍ତୁ ତାହାର ଆଦୌ ଉପାଦେୟତା ନାହିଁ ଏବଂ ସେ ବହିକୁ ପୋଡ଼ିଦେବା ଉଚିତ – ଏପରି ମନ୍ତବ୍ୟ କେତେଜଣ ପ୍ରତିଷ୍ଠିତ ସାହିତ୍ୟିକଙ୍କଠୁ ଶୁଣିବା ବଡ଼ ପରିତାପର କଥା। ଓଡ଼ିଶାର ସବୁ ସାହିତ୍ୟିକଙ୍କ ନାଁ ସେଥିରେ ନାହିଁ; କିନ୍ତୁ ଯେ କେହି ଏପରି ବହି ଲେଖିବ ତା' ପକ୍ଷରେ ବି ଛୋଟ ବଡ଼ ସବୁ ସାହିତ୍ୟିକଙ୍କ ନାଁ ସ୍ମରଣ କରି ଦେବା ସମ୍ଭବ ନୁହେଁ। ମୋ ପରି ଅନେକ ବିସ୍ମୃତ ସାହିତ୍ୟିକଙ୍କ ନାଁ ସେଥିରେ ନାହିଁ; ନଥିଲେ ମଧ୍ୟ ଆମେ କ୍ଷୁବ୍ଧ ନୋହୁଁ। ମୋର ଧାରଣା, କେତେ ଜଣ ସାହିତ୍ୟିକ ଆପଣଙ୍କ ସାହିତ୍ୟିକ କୃତିକୁ ମୁକାବିଲା କରିବାକୁ ସମର୍ଥ ନହୋଇ ଏପରି ଏକ ଅଭିଯାନ ଆରମ୍ଭ କରିଛନ୍ତି। ସେମାନେ ନିଜେ ସେଇମାନଙ୍କ ଛଡ଼ା ଓଡ଼ିଶାରେ ଆଉ କବି ଓ ଲେଖକ ନାହାନ୍ତି ବୋଲି ଅହଙ୍କାରରେ ବାହାସ୍ଫୋଟ ମାରୁଥିବାବେଳେ ଆପଣ ଯେ ଓଡ଼ିଶାର ବହୁ ସାହିତ୍ୟିକଙ୍କ ନାଁ ଉଲ୍ଲେଖ କରିଛନ୍ତି, ଏହାହିଁ ଆପଣଙ୍କର ସବୁଠୁ ବଡ଼ ଉଦାରତାର କଥା। ଏପରି ଆକ୍ରୋଶମୂଳକ ଅଭିଯାନ ବିରୁଦ୍ଧରେ କି କ୍ରିୟାନୁଷ୍ଠାନ କରାଯାଇପାରେ, ଭାବିବାର କଥା।''

**ଆଧୁନିକ-କବି ଶ୍ରୀ ଉମାଶଙ୍କର ପଣ୍ଡା –**

ସମ୍ବଲପୁର, ୨୯।୧୧।୬୪

''× × × ଗ୍ରନ୍ଥଟି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେ ଏକ ଉଜ୍ଜ୍ୱଳ ପ୍ରତିଭାର ସମ୍ମାନିତ ସାହିତ୍ୟ-କୀର୍ତ୍ତି, ଏ ସମ୍ପର୍କରେ ଦ୍ୱିରୁକ୍ତିର ଅବକାଶ ନାହିଁ। ଏଭଳି ଗ୍ରନ୍ଥ ହୁଏତ ଆପଣଙ୍କୁ ବାଦ୍ ଦେଲେ ଓଡ଼ିଶାରେ ଆଉ କାହାର ଲେଖନୀ ଦେଇପାରିଥାନ୍ତା କି ନା ସନ୍ଦେହ। ଯେଉଁମାନେ ହୁଏତ ଏହାର ବିରୂପ ସମାଲୋଚନା କରୁଛନ୍ତି, ସେମାନେ ଈର୍ଷା-ପ୍ରଣୋଦିତ। ଓଡ଼ିଆ କବିତାଗୁଡ଼ିକର ଯେଉଁ କେତୋଟି ପଙ୍‌କ୍ତି ଇଂରାଜୀରେ

ଅନୂଦିତ ହୋଇ ଦୃଷ୍ଟାନ୍ତ ସ୍ୱରୂପ ଗୃହୀତ ହୋଇଛି, ତାହା ଏତେ ଚମତ୍କାର ହୋଇଛି ଯେ, ମନେହେଲା ମୂଳ ଓଡ଼ିଆ ରଚନାଠାରୁ ତାହା ଆହୁରି ସୁନ୍ଦର ଓ ଭାବଗର୍ଭକ। × × × ହୁଏତ ଦିନ ଆସିବ, ଏହି ଗ୍ରନ୍ଥହିଁ (ଯାହା ଆପଣଙ୍କ ଅଞ୍ଚଳରେ ଆପଣଙ୍କୁ ସମାଲୋଚନାର ପାତ୍ର କରିଛି) ଆପଣଙ୍କୁ ଓଡ଼ିଶାର ଅପ୍ରତିଦ୍ୱନ୍ଦୀ ଶିଳ୍ପୀ ଓ କଳାକାର ରୂପେ ପରିଚିତ କରାଇବ।''

## ନୂତନ-କବି ମଙ୍ଗଳୁ ଚରଣ ବିଶ୍ୱାଳ –

''କେନ୍ଦ୍ର ସାହିତ୍ୟ ଏକାଡେମୀ-ପ୍ରକାଶିତ ଆପଣଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ନେଇ ଏକ ତୁମୁଳ ଆନ୍ଦୋଳନ ଓ ଅବାଞ୍ଛିତ ଅପପ୍ରଚାର ଦେଶସାରା ବହିଗଲା। କେତେକ ନ୍ୟସ୍ତସ୍ୱାର୍ଥ, ଆତ୍ମମ୍ଭରି, ଅପନିନ୍ଦୁକ ବ୍ୟକ୍ତି ବହିଟିର ପ୍ରତିକୂଳାଚରଣରେ ଲାଗିପଡ଼ିଲେ। ଓଡ଼ିଆ ସାହିତ୍ୟରେ ଏଭଳି କୁତ୍ସିତ ଦାରୋଗାଗିରି କେତେଦୂର ସ୍ୱାସ୍ଥ୍ୟକର ଓ ରୁଚିସମ୍ମତ, ମୁଁ କହିପାରିବି ନାହିଁ। ବହିଟିକୁ ମୁଁ ବଡ଼ ବିଶ୍ୱସ୍ତ ତଥ୍ୟାନୁସନ୍ଧାନୀ ଭାବେ ପାଠ କରିଛି। ମୋର ସ୍ୱଳ୍ପ ବୁଦ୍ଧି ଓ ବିଚାରଶକ୍ତି ଫଳରେ ସେ ବହିରୁ ମୁଁ ଯାହା କିଛି ବୁଝିଛି, ସେତକ ସଂକ୍ଷେପରେ ଆପଣଙ୍କୁ ଜଣାଉଛି। × × × ବହିଟିରେ ଯେପରି ଆଲୋଚନା ଆପଣ ଉପସ୍ଥାପିତ କରିଛନ୍ତି, ସେହି ଅଂଶଗୁଡ଼ିକର ପାଣ୍ଡିତ୍ୟ, ଭାଷା ଓ ବଳିଷ୍ଠ ଅବତାରଣା ନିଶ୍ଚୟ ଉଲ୍ଲେଖଯୋଗ୍ୟ। × × × ଗୁରୁ ମହାନ୍ତିଙ୍କ କେତୋଟି କବିତାର ଯେଉଁ ଇଂରାଜୀ ଅନୁବାଦ କରାଯାଇଛି, ଓଡ଼ିଶାରେ ଲୋକ ନାହିଁ ଯେ କି ସେହିଭଳି ଅନୁବାଦର ଦମ୍ଭ ପାଇବ। ମୋ ମତରେ ଗୁରୁ ମହାନ୍ତିଙ୍କ ମୂଳ କବିତାରୁ ଇଂରାଜୀ ଅନୁବାଦ ଆହୁରି ସରସ ଓ ସୁନ୍ଦର ହୋଇଛି। × × × ଆପଣଙ୍କୁ ଅନୁରୋଧ, ଏଇ ପ୍ରତିକ୍ରିୟାଶୀଳ ଗୋଷ୍ଠୀର ନିନ୍ଦାରେ ଆପଣ ବିବ୍ରତ ହେବେନାହିଁ।''

ବିଖ୍ୟାତ ଇଂରାଜୀ ପତ୍ରିକାମାନଙ୍କରେ ପ୍ରକାଶିତ ଏହି ଦୁଇଟି ରିଭିଉ ମଧ୍ୟ ଦୁଇଜଣ ଓଡ଼ିଆଙ୍କର –

## The Sunday Standard, Bombay-5, dated 23rd June 63 –

Dr. Mayadhar Mansinha is a most distinguished poet of Orissa and this book will certainly bring him the credit of being a most distinguished essayist of Orissa. Indeed, he is one of the few talented Indian writers who can write in delightful English.

× × × ×

The general reader will find this book very different from the usual ones of its class, because he will be tempted to

finish it in one breathtaking session, as the book takes him to the ancient peasant's hut, to the royal court, to the meeting of great spiritual and religious leaders, to the conference of great poets. All the time, he will feel as if he is experiencing the great creation. What a pleasure indeed!

**Geeta Das**

**Deccan Herald, October 13, Sunday, 1963–**

× × × The final chapter is devoted to the contemporary scene and has provoked hostile reaction in certain literary circles in Orissa. This is not surprising because attempts of this nature cannot completely eliminate individual judgements and qualitative preferences. But without sharing Dr. Mansinha's assessment of particular literatures, there will be broad agreement with his view that plagiarism is fairly widespread among the 'contemporaries', that, by and large, their achievement amounts to little and that the masses still turn for enlightment to earlier writers, ranging from Sarala Das (15th century) to Gopalkrishna Pattanayaka who died a hundred years ago.

Undoubtedly, Dr. Mansinha has produced a work of great interest and merit, the value of which is further enhanced by hitherto unpublished and copious translations of both Oriya prose and poetry.

And this book, the first of its kind in English, should succeed in introducing the wealth of Oriya literature to the descriminating scholar as well as to the lay reader. It has fixed Oriya firmly in the firmament of Indian literature and fulfilled a longfelt need.

**Padmaloya Das**

ଡକ୍ଟର ସୁନୀତିକୁମାର ଚାଟର୍ଜି –

ସର୍ବୋପରି, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ବକ୍ତୃତା ଦେବାପାଇଁ ଓଡ଼ିଶା ସରକାରଙ୍କଦ୍ୱାରା ନିମନ୍ତ୍ରିତ ହୋଇ ଆସିଥିବା ବିଶ୍ୱବିଖ୍ୟାତ ପଣ୍ଡିତ ସୁନୀତି କୁମାର ଚାଟାର୍ଜିଙ୍କ ଏହି ଗ୍ରନ୍ଥ ଉପରେ ଅଭିମତ ମଧ୍ୟ ପ୍ରଣିଧାନଯୋଗ୍ୟ।

14 January, 1965

Dear Dr. Mansinha,

I wished very much that you should have been present the other day in that "Artaballava Memorial Lecture" which was delivered by Dr. Suniti Kumar Chatterjee at Ramachandra Bhawan.

You will be glad to know that Dr. Chatterjee during the course of his speech, made several references to your book "The History of Oriya Literature" and quoted freely to support his arguments. As far as I remember, he even described the book as 'wonderful and monumental' work of Dr. Mansinha.

To me it appeared, as if he had based his speech "Orissa's Contribution to Indian Culture" entirely on your book. It is really surprising when the book is so much praised, appreciated and liked by people of the rank of Dr. Chatterjee, why some of our own men are making thankless attempts to belittle its importance.

I am sure, time alone will bear out the sincerity of your efforts.

With regards,

Yours sincerely,
Sd/ R.H. Mishra
Special Correspondent
THE LINK & THE PATRIOT

Tulsipur,
Cuttack,

ସହସ୍ର ସହସ୍ର ମୁଦ୍ରାର ପାରିତୋଷିକରେ ଆପ୍ୟାୟିତ କରି ଯାହାଙ୍କୁ ଓଡ଼ିଆ ଜାତିର ହୃତ୍‌ପିଣ୍ଡ କଟକ ନଗରରେହିଁ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ବକ୍ତୃତା ଦେବାକୁ ଅଣାଯାଇଥିଲା, ତାଙ୍କୁ ମଧ୍ୟ କ'ଣ 'ଓଡ଼ିଆ-ଅନଭିଜ୍ଞ' ବୋଲି ଭୁରୁଡ଼ୁ କରାଯିବ ?

ସେ ଯାହାହେଉ, ଗୋଟିଏ ପୁସ୍ତକର ଆଲୋଚନା ନାମରେ, କେବଳ ତ୍ରୁଟି ଖୋଜିବାର ମନୋବୃତ୍ତି କି ଗର୍ହିତ ଓ ଅନାକାଙ୍‌କ୍ଷିତ; ତାହା ସ୍ୱାମୀ ବିବେକାନନ୍ଦଙ୍କର ଏକ ଅଭିଜ୍ଞତାରୁ ସମ୍ପୃକ୍ତ ସମସ୍ତଙ୍କ ନିକଟରେ ସ୍ପଷ୍ଟୀକୃତ ହେବ ବୋଲି ଏଠାରେ

କହିରଖୁଛି।

ଥରେ ଦଳେ ଗୁଜୁରାଟୀ ପଣ୍ଡିତ ସ୍ୱାମୀଜୀଙ୍କ ସହିତ ଶାସ୍ତ୍ରାଲୋଚନା କରିବାକୁ ଆସିଲେ। ଆଲୋଚନା ହେଲା ସଂସ୍କୃତରେ। ସାଧାରଣ ପଣ୍ଡିତଦଳ ସ୍ୱାମୀ ବିବେକାନନ୍ଦଙ୍କ ପରି ଅନନ୍ୟସାଧାରଣ ମନୀଷାସମନ୍ୱିତ ବ୍ୟକ୍ତିଙ୍କ ସହିତ ପାରିଉଠିବେ କୁଆଡୁ? ସେମାନେ ଘର୍ମାକ୍ତ ହୋଇଉଠିଲେଣି। ଶେଷରେ ସ୍ୱାମୀଜୀଙ୍କ ବଚନରେ ଏକ ବ୍ୟାକରଣଗତ ଦୋଷ ବାହାରିପଡ଼ିଲା। ସଂକୀର୍ଣ୍ଣଚେତା ପଣ୍ଡିତବର୍ଗଙ୍କ ବିଜୟୋଲ୍ଲାସ ଆଉ ଦେଖେ କିଏ ? ଶାସ୍ତ୍ରାଲୋଚନା ବର୍ତ୍ତମାନ ଚୁଲିକି ଗଲା। ପଣ୍ଡିତମାନେ ତାଙ୍କର ସେହି ସାମାନ୍ୟ ବ୍ୟାକରଣଗତ ଦୋଷ ଦେଖାଇ ସ୍ୱାମୀଜୀଙ୍କୁ ତର୍କରେ ଜୟକରିଥିବାର ଭାବ ନଦେଖାଇ ଛାଡ଼ିନଥିଲେ।

ନରେନ୍ଦ୍ରନାଥ ଦତ୍ତ କୌଣସି ସଂସ୍କୃତ ଟୋଲରେ ପଢ଼ିନଥିଲେ। ପଣ୍ଡିତମାନଙ୍କ ପରି ତାଙ୍କର ସଂସ୍କୃତ କହିବାର ଅଭ୍ୟାସ ବା କାହିଁ ଥିଲା? ତେଣୁ ତାଙ୍କର ସଂସ୍କୃତ କଥାରେ ଗୋଟିଏ ଭୁଲ ରହିଯିବାରେ କି ବିସ୍ମୟ? କିନ୍ତୁ କେବଳ ସେହି ସାମାନ୍ୟ ଭ୍ରମଟିକୁ ଜବରଦସ୍ତ ଧରି, ସ୍ୱାମୀଜୀଙ୍କ ପରି ପ୍ରତିଭାଶାଳୀ ଲୋକଙ୍କୁ ଅପମାନିତ କରିବାକୁ ଯିବା ପାଣ୍ଡିତ୍ୟ ନା ଅଧମ ମନୋବୃତ୍ତିର ପରିଚ୍ୟ ଦିଏ? ସେଦିନ ଦଳେ ଭାରତୀୟ ପଣ୍ଡିତଙ୍କର ଏ ପ୍ରକାର ଇତର ବ୍ୟବହାର ସ୍ୱାମୀଜୀଙ୍କୁ ଘୋର ମାନସିକ କଷ୍ଟ ଦେଇଥିଲା। ସେ ସନ୍ନ୍ୟାସୀ ଭାଇମାନଙ୍କୁ କହିଥିଲେ ଯେ, ପାଶ୍ଚାତ୍ୟ ପଣ୍ଡିତ ସମାଜରେ ଏପ୍ରକାର ଇତରତା ଅକଳ୍ପନୀୟ।

ଜାତୀୟ ସାହିତ୍ୟ ଆକାଡେମୀ ପ୍ରକାଶିତ 'ଓଡ଼ିଆ ସାହିତ୍ୟର ଇତିହାସ'ର କେବଳ ତ୍ରୁଟି (ଅଧିକାଂଶ ମିଥ୍ୟା, ଅବାନ୍ତର, ଅଯଥା ଓ ଘୋର ସାହିତ୍ୟିକ ଅଜ୍ଞତାରହିଁ ପରିଚାୟକ) ଗୁଡ଼ିଏ ଠିଆକରାଇ ଓଡ଼ିଶାର ପତ୍ରପତ୍ରିକାମାନଙ୍କରେ ଯେଉଁ ପ୍ରକାର ତଥାକଥିତ 'ଆଲୋଚନା' ହେଲା, ତାହା କୌଣସି ସଭ୍ୟ ଦେଶ ବା ଭାଷାରେ କଳ୍ପନା କରାଯାଇନପାରେ।

## ଲିଙ୍କନ ଓ ମହମ୍ମଦଙ୍କ ବକ୍ତ୍ରବାଣୀ

କିନ୍ତୁ କୁତ୍ସାକାରୀ ବନ୍ଧୁଗଣଙ୍କୁ ତଥା ପାଠକବର୍ଗଙ୍କୁ ଲିଂକନ ଓ ମହମ୍ମଦଙ୍କର ଦୁଇଟି ବାଣୀ ଶୁଣାଇ ବିଦାୟନିଏ।

ଆବ୍ରାହମ୍ ଲିଂକନ୍‌ଙ୍କ ବାଣୀ– "କେହି କେତେ ଲୋକଙ୍କୁ କେତେ କାଳପାଇଁ ମିଥ୍ୟା କଥାରେ ଭୁଲାଇଥାଇପାରେ; କିନ୍ତୁ ସବୁଲୋକଙ୍କୁ ସବୁକାଳ ପାଇଁ ନୁହେଁ।"

ଇତିହାସର ବଡ଼ ବଡ଼ ଓ ଅପ୍ରତିହତ-ପ୍ରଭାବଶାଳୀ ସାମ୍ରାଜ୍ୟ ଓ ବିପୁଳ ଜନବିରୋଧୀ କୌଣସି ସତ୍ୟ ଓ ସାଧୁତାକୁ ବା କୌଣସି ଜୀବନ୍ତ ଓ ଶକ୍ତିଶାଳୀ ରଚନାକୁ କିପରି ବିନାଶ କରିପାରିନାହାନ୍ତି, ତାହା ମହମ୍ମଦଙ୍କ ଜୀବନର ନିମ୍ନଲିଖିତ ଅଭିଜ୍ଞତା ସୁପ୍ରମାଣିତ କରେ। ଯେତେବେଳେ ନିଜର ଜୀବନହିଁ ବିପନ୍ନ ଓ ଘରେ ବାହାରେ ଚାରିଆଡେ ନିନ୍ଦା, କୁତ୍ସା, ବିଦ୍ରୂପ ଓ ଶତ୍ରୁତା, ସେଦିନ ତରୁଣ ମହମ୍ମଦଙ୍କୁ ପିତୃବ୍ୟ

ଆବୁତାଲେବ୍ (ପିଲାଟିବେଳୁ ବାପ-ମା'ଛେଉଣ୍ଡ ଥିବାରୁ, ଏହି କକାହିଁ ମହମ୍ମଦଙ୍କୁ ପାଳି ମଣିଷ କରିଥିଲେ।) କହିଲେ– ''ଦେଖ ବାପା, ତମର ପ୍ରଚାରଯୋଗୁଁ ଆମ ପରିବାରର ତ ବର୍ତ୍ତମାନ ଚାରିଆଡେ ଶତ୍ରୁ; ଅଧିକନ୍ତୁ ଆମେ (ମକ୍କାର କ୍ୱେରେସଗୋଷ୍ଠୀ) ବର୍ତ୍ତମାନ ଦାରିଦ୍ର୍ୟର ସମ୍ମୁଖୀନ ହେବାକୁ ଯାଉଛୁ। (କାବା ମନ୍ଦିର କ୍ୱେରେସମାନଙ୍କ କର୍ତ୍ତୃତ୍ୱରେ ଥିଲା ଓ ଯାତ୍ରୀମାନଙ୍କଠାରୁ ଅର୍ଥ ଆଦାୟ ଥିଲା ସେମାନଙ୍କର ପ୍ରଧାନ ସମ୍ବଳ; କିନ୍ତୁ ମହମ୍ମଦ କାବାରେ ଥିବା ପ୍ରତିମାମାନଙ୍କ ଆରାଧନା ବିରୁଦ୍ଧରେ ପ୍ରଚାର ଆରମ୍ଭ କରିଥିଲେ।) ତମେ ତମ ପ୍ରଚାରକୁ ଲୁଚାଇ, ଘରଭିତରେ ହେଲେ କର; ପ୍ରକାଶ୍ୟରେ ପ୍ରଚାର ବନ୍ଦ କର।''

ତରୁଣ, କିନ୍ତୁ ସତ୍ୟ-ଉଦ୍‌ବୁଦ୍ଧ ମହମ୍ମଦ ଉତ୍ତର ଦେଇଥିଲେ– ''କକା, ମୁଁ ଯେଉଁ ସତ୍ୟ ଉପଲବ୍ଧି କରିଛି, ତାକୁ କେବଳ ତମେ ନୁହଁ, ମୋର ଏକପାଖେ ସୂର୍ଯ୍ୟ ଆରପାଖେ ଚନ୍ଦ୍ର ଆସି ଅନୁରୋଧ କଲେ ମଧ୍ୟ ମୁଁ ସେ ସତ୍ୟର ପ୍ରଚାର ବନ୍ଦ କରିପାରିବିନାହିଁ।''

ଏବର ଉତ୍କଳ ଦେଶରେ ଏକ ପୁସ୍ତକ ସଂକ୍ରାନ୍ତ ବିପୁଳ, ବ୍ୟାପକ, ବୀଭତ୍ସ ଅଭିଯାନରୁ ଟିକିଏ ଦୂରରେ ନୀରବ-ଦର୍ଶକ ଭାବରେ ମାତ୍ର ଠିଆହୋଇ, ଏହି ବାଣୀହିଁ ଆଜି ଏହି ଲେଖକର ଏକମାତ୍ର ପ୍ରେରଣା ଓ ଭରସା।

**ମାୟାଧର ମାନସିଂହ**

# ପ୍ରଥମ ଅଧ୍ୟାୟ

# ଓଡ଼ିଆ ଜୀବନ ଓ ଓଡ଼ିଆ ସାହିତ୍ୟ

**ସମାବେଶକ ଦୃଷ୍ଟି –**

ଏକପଟେ ସମୁଦ୍ର ଓ ଅନ୍ୟ ତିନିପଟେ ନିବିଡ଼ ଅରଣ୍ୟାବୃତ ପର୍ବତମାଳାଦ୍ୱାରା ପରିବେଷ୍ଟିତ ଓ ଅଗଣିତ ନଦନଦୀଦ୍ୱାରା ବହୁଧା ବିଭକ୍ତ ଓଡ଼ିଶା, ତାର ବିଶିଷ୍ଟ ଭୌଗୋଳିକ ଅବସ୍ଥାନ ଯୋଗୁହିଁ ନିଜର ଜାତୀୟ-ଜୀବନ, କଳା ଓ ସାହିତ୍ୟ ଇତ୍ୟାଦି, ସବୁଥିକୁ ଏକ ମନୋହର ସ୍ୱାତନ୍ତ୍ର୍ୟ ଦ୍ୱାରା ଅଳଂକୃତ କରି ଗଢ଼ିପାରିଛି । ଓଡ଼ିଶାର ଦେବଦେବୀ ଓ ଦେବାଳୟ, ତାର ଧର୍ମୀୟ ଓ ସାମାଜିକ ଛାଞ୍ଚ, ତା'ର ନୃତ୍ୟ ଓ ଗୀତ – ଏ ସବୁଥିରେ ସମଶ୍ରେଣୀକ ସର୍ବଭାରତୀୟତା ଭିତରେ ଏକ ଏକ ବୈଶିଷ୍ଟ୍ୟ ଓ ଭିନ୍ନତା ଆମେ ଦେଖିପାରିବା, ଯାହା ହିଁ କୌତୂହଳୋଦ୍ଦୀପକ ଓ ଚିତ୍ତାକର୍ଷକ ଭାବରେ ସେଗୁଡ଼ିକୁ ଦେଇପାରିଛନ୍ତି ଏକ ଅନନ୍ୟତା । ଭାରତର ପୂର୍ବ-ଉପକୂଳରେ, ଉତ୍ତରାପଥ ଓ ଦକ୍ଷିଣାପଥର ମଧ୍ୟବର୍ତ୍ତୀ ରହି, ଓଡ଼ିଶା ତା'ର କଳା, ସାହିତ୍ୟ ଓ ଜାତୀୟ ଜୀବନରେ ଅନନ୍ୟତା ରକ୍ଷାକରି ଏକପକ୍ଷରେ ଆର୍ଯ୍ୟ ଓ ଦ୍ରାବିଡ଼ ସହିତ, ଅନ୍ୟ ପକ୍ଷରେ ଆ'ଦିବାସୀ ଜୀବନ ଓ ସଂସ୍କୃତିରୁ ମଧ୍ୟ ବହୁ ଉପାଦାନକୁ ଯେପରି ଅଦ୍ଭୁତ ଭାବରେ ଏକୀଭୂତ କରିପାରିଛି, ତାହା ପ୍ରକୃତରେ ପ୍ରଶଂସନୀୟ । ଉତ୍କଳୀୟ ଜନତାର ପ୍ରାୟ ଏକ-ତୃତୀୟାଂଶ ଆଦିବାସୀ ଏବଂ ଓଡ଼ିଶାର ଜାତୀୟଜୀବନରୁ ସେମାନେ କେବେହେଲେ ଅଲଗା ନଥିଲେ । ଓଡ଼ିଶାର ଐତିହାସିକ, ସାମାଜିକ ଓ ଅର୍ଥନୈତିକ ଜୀବନ ଭିତରେ ଆଦିବାସୀ ଏକ ଅପରିହାର୍ଯ୍ୟ ଅଙ୍ଗ ଓ ଅଂଶ । ସମଗ୍ର ଭାରତୀୟ ସାହିତ୍ୟରେ ଏହା ହୁଏତ ଏକ ଅସାଧାରଣ ଘଟଣା ହୋଇପାରେ ଯେ, ଭାରତୀୟ ଭାଷାମାନଙ୍କ ଭିତରେ, କେବଳ ଓଡ଼ିଆ ଭାଷାର କାବ୍ୟ ଓ ପୁରାଣରେହିଁ ଐତିହାସିକ କାଳରୁ ଆଦିବାସୀ, ସାହିତ୍ୟିକ ସୃଷ୍ଟିର ଉପାଦାନ ମାତ୍ର କେବଳ ନୁହେଁ, ସାହିତ୍ୟ-ସ୍ରଷ୍ଟାର ଗୌରବାବହ ଭୂମିକାରେ ମଧ୍ୟ ଦେଖାଦେଇଛି । ଏହି ଗ୍ରନ୍ଥର ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଆମେ ଓଡ଼ିଆ ସାହିତ୍ୟର ଏହି ପ୍ରାତିପଦ ବିଭାବର ଅଧିକ ପରିଚୟ ପାଇବା । ପୁଣି ଯଦିଓ ଉତ୍କଳବାସୀର ଭାଷା ଇଣ୍ଡୋ-ଏରିଆନ (ଭାରତୀୟ-ଆର୍ଯ୍ୟ) ଗୋଷ୍ଠୀର ଅନ୍ତର୍ଗତ, ଓଡ଼ିଆମାନଙ୍କର ଜାତୀୟଜୀବନ ଓ ସଂସ୍କୃତିର ତିନି-ଚତୁର୍ଥାଂଶ ନିଶ୍ଚିତ ଭାବରେ ଦ୍ରାବିଡ଼ୀୟ । ନିମ୍ନସ୍ଥ ଏହି ନିବିଡ଼ ଦ୍ରାବିଡ଼ତା ଉପରେ ଆର୍ଯ୍ୟ-ସଂସ୍କୃତିର ଏକ ପତଳା ପଟି କେବଳ ଛାଇଦିଆଯାଇଛି; ଯାହାକୁହିଁ କୁହାଯିବ ଓଡ଼ିଆ ସଂସ୍କୃତି । ଓଡ଼ିଆ ଗୃହମାନଙ୍କରେ ନିତ୍ୟବ୍ୟବହୃତ ଅନେକ ଶବ୍ଦର ମୂଳ ଦ୍ରାବିଡ଼ ଭାଷାମାନଙ୍କରେହିଁ ମିଳିବ

ଏବଂ ଓଡ଼ିଆମାନଙ୍କର ରୀତିନୀତି ଓ ବେଶଭୂଷା ଉତ୍ତର-ଭାରତୀୟ ଅପେକ୍ଷା ଦକ୍ଷିଣ-ଭାରତୀୟ ଛାଞ୍ଚ ସହିତ ନିକଟତର ବା ଅଧିକ ଆତ୍ମିକ ।

**ଭାରତର ପୁଣ୍ୟଭୂମି –**

ଓଡ଼ିଶା ଦେବଦେବ ଜଗନ୍ନାଥଙ୍କ ପୀଠସ୍ଥାନ ଏବଂ ସେହି ହେତୁ ପବିତ୍ର ଦେଶ ଭାରତବର୍ଷରେ ପୁଣ୍ୟତମ ଭୂମି ବୋଲି ଗୃହୀତ । ଭାରତୀୟ ଉପମହାଦେଶର ସକଳ ପ୍ରାନ୍ତରୁ ରାଜପଥସବୁ ଓଡ଼ିଶାରେ ଆସି ମିଶିଛନ୍ତି, ଯାହାଦେଇ ମହାଭାରତ କାଳରୁ ଏପର୍ଯ୍ୟନ୍ତ କୋଟି କୋଟି ତୀର୍ଥଯାତ୍ରୀ ଏହି ପୁଣ୍ୟଭୂମିକୁ ଯୁଗ ଯୁଗଧରି ଟାଣିହୋଇ ଆସିଛନ୍ତି । ହିନ୍ଦୁଧର୍ମ ଭିତରେ ଯେତେ ଶାଖା ଅଛି, ତା'ର ପ୍ରତ୍ୟେକଟି ପାଇଁ ଓଡ଼ିଶାରେ ଏକ କେନ୍ଦ୍ର-ଦେବାୟତନ ଅଛି, ଯାହାର ଖ୍ୟାତି ଓ ପ୍ରତିପତ୍ତି ସର୍ବଭାରତୀୟ । ହିନ୍ଦୁ-ସ୍ମୃତିମାନଙ୍କ ଅନୁସାରେ ବୈତରଣୀ ନଦୀ କୂଳରୁ ଚିଲିକା ହ୍ରଦ ପର୍ଯ୍ୟନ୍ତ ଓଡ଼ିଶାର ପ୍ରତ୍ୟେକ ଯବ ମାଟି ପବିତ୍ର ।

ଓଡ଼ିଆମାନଙ୍କର ଜାତୀୟ ଜୀବନ ଏହିପରି ଭାବରେ ଏକ ମନୋହର ମିଶ୍ରଣ ବା ସମାବେଶ । ଅଷ୍ଟ୍ରିକା, ଦ୍ରାବିଡ଼ ଓ ଆର୍ଯ୍ୟ ଉପାଦାନମାନଙ୍କ ସଂଯୋଗରେ ଏକ ସ୍ୱତନ୍ତ୍ର, ସୁନ୍ଦର ସାଂସ୍କୃତିକ ଏକକର ଆବିର୍ଭାବ ଏଠାରେ ଘଟିଯାଇଛି । ଭାରତର ଅନ୍ୟ ଅନେକ ପ୍ରାନ୍ତମାନଙ୍କ ପରି ଓଡ଼ିଶାର ଜାତୀୟ ଜୀବନ ଇସଲାମ୍ ବା ଖ୍ରୀଷ୍ଟଧର୍ମ ପରି ବାହ୍ୟ ପ୍ରଭାବଦ୍ୱାରା ସେପରି ପ୍ରଭାବିତ ହୋଇନାହିଁ ଏବଂ ଉତ୍କଳରେ ବିଶୁଦ୍ଧ ଭାରତୀୟ ସଂସ୍କୃତିର ଏହି ସମ୍ମିଶ୍ରଣାତ୍ମକ ବିବର୍ତ୍ତନର ଉଦାର-ମନୋହର ପ୍ରତୀକ ହେଉଛି ପୁରୀର ଜଗନ୍ନାଥ ମନ୍ଦିର । ଆଦ୍ୟରେ ଶବର ଉପଜାତିର ଠାକୁରଭାବରେ ଯା'ର ଆବିର୍ଭାବ, ସେ ପରେ ପରେ ଜୈନ, ବୌଦ୍ଧ, ତାନ୍ତ୍ରିକ ଓ ବୈଷ୍ଣବ ଇତ୍ୟାଦି ସକଳ ଆର୍ଯ୍ୟ ଧର୍ମଶାଖାଦ୍ୱାରା ଗୃହୀତ ଓ ବରିତ ହୋଇ ଏବଂ ପ୍ରତ୍ୟେକଟି ବିଶ୍ୱାସର ଚିହ୍ନ ଏବେ ବି ଅସଂକୋଚ୍ ଭାବରେ ଧାରଣକରି ଜଗନ୍ନାଥ ସଗୌରବରେ ଦଣ୍ଡାୟମାନ । ଏହି ମହାମନ୍ଦିରର ଭିତରେ ଓ ବାହାରେ ଦୈନନ୍ଦିନ ଅନୁସୃତ ଅନେକ ଆଚାର-ବ୍ୟବହାର ପୁଣି ଅଧିକାଂଶ ଭାବରେ ଦକ୍ଷିଣା ବା ଦ୍ରାବିଡ଼ ଏବଂ ସବୁଠାରୁ ଅଧିକ ସର୍ବଭାରତୀୟ ଓ ପ୍ରିୟତମ ଏହି ହିନ୍ଦୁ-ଦେବତା ଓଡ଼ିଶାରେ ବିରାଜିତ ଥିବାରୁ ଓଡ଼ିଆମାନଙ୍କର ଜାତୀୟ ଜୀବନ ପରି ଓଡ଼ିଆ-ସାହିତ୍ୟରେ ମଧ୍ୟ ଏହାଙ୍କର ଗଭୀର ପ୍ରଭାବ ପଡ଼ିଆସିଛି । ଆଧୁନିକ କାଳ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଲେଖକ ନିଜ ଗ୍ରନ୍ଥର ଆରମ୍ଭ ବା ଶେଷରେ ଏହି ଦେବତାଙ୍କୁ ପ୍ରାଣର ପ୍ରାର୍ଥନା ଜଣାଇଛନ୍ତି । ଏହି ଜାତୀୟ ଦେବତାର କ୍ରମ-ବିବର୍ତ୍ତନ ଓ ତାହାର ଓଡ଼ିଆ-ସାହିତ୍ୟରେ ପ୍ରଭାବ, ଏହି ଗ୍ରନ୍ଥରେ ଯଥାସ୍ଥାନରେ ବର୍ଣ୍ଣିତ ହେବ ।

**କଳା ଓ ସ୍ଥାପତ୍ୟ –**

ପୁଣି, ଉପରେ ବର୍ଣ୍ଣିତ ଓଡ଼ିଶା ମାଟିର ତଥାକଥିତ ପୁଣ୍ୟତାରୁହିଁ ଉତ୍କଳୀୟ କଳା ଓ ସ୍ଥାପତ୍ୟର ବିସ୍ମୟୋତ୍ପାଦକ ଐତିହ୍ୟର ଆବିର୍ଭାବ ଘଟିଛି । ଦୀର୍ଘ ଐତିହାସିକ କାଳଧରି

ଓଡ଼ିଆମାନେ ଅସାଧାରଣ ଗଠନ-ସୃଜନ-ଶକ୍ତିର ପରିଚୟ ଦେଇପାରିଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସମ୍ରାଟ୍ ଖାରବେଳ ନିଜ ଓ ନିଜର ଧାର୍ମିକା ପଟ୍ଟମହିଷୀଙ୍କର ଜୀବନ-ସାୟାହ୍ନର ଶେଷ ଆଧ୍ୟାତ୍ମିକ ଦିନଗୁଡ଼ିକ ପାଇଁ ଖଣ୍ଡଗିରି-ଉଦୟଗିରିର ଯାମଳ-ଭୂଧର-ଗାତ୍ରରେ ନିରାଡ଼ମ୍ବର ଗୁହାବାସ ଖୋଦିତ କରିବାଠାରୁ ତ୍ରୟୋଦଶ ଶତାବ୍ଦୀର ସମ୍ରାଟ୍ ନରସିଂହ କଳା-ସମୃଦ୍ଧ କୋଣାର୍କ ମନ୍ଦିର ଠିଆକଲା ପର୍ଯ୍ୟନ୍ତ, ଏକାଦିକ୍ରମେ ୧୩ଶ ବର୍ଷଧରି ଓଡ଼ିଆଜାତିର ଚିତ୍ତଲୋକ ବିରାଟ ବିପୁଳ ରୀତିରେ ଭାଙ୍ଗିବା ଓ ଗଢ଼ିବା ପାଇଁ ଏକ ଅଭୂତପୂର୍ବ ମାଦକତାରେ ଯେପରି ଆଚ୍ଛନ୍ନ ରହିଥିଲା । ସେତେବେଳେ ଓଡ଼ିଆମାନେ ନଦୀମାନଙ୍କରେ ଏପରି ପୋଲ ଓ ବନ୍ଧ ବାନ୍ଧିଥିଲେ, ଯାହା ପ୍ରାଚୀନ ଓଡ଼ିଆମାନଙ୍କର ଅସାଧାରଣ ଇଞ୍ଜିନିୟରିଂ ଜ୍ଞାନର ପରିଚୟ ଘୋଷଣା କରି ଏପର୍ଯ୍ୟନ୍ତ ନିଖୁଣଭାବେ ଠିଆହୋଇ ରହିଛନ୍ତି ।[(୧)]

ଓଡ଼ିଆମାନେ ସେଦିନ ସେମାନଙ୍କର ମାତୃଭୂମିକୁ ନାନାବିଧ ମନ୍ଦିରଦ୍ୱାରା ମଣ୍ଡିତ କରିଚାଲିଥିଲେ କେବଳ ନୁହେଁ, ମନ୍ଦିର-ସ୍ଥାପତ୍ୟରେ ସେମାନେ ନିଜର ଏକ ସ୍ୱତନ୍ତ୍ର ସ୍ଥାନୀୟ ଶୈଳୀ ଆବିଷ୍କାର କରିଥିଲେ, ଯାହାକୁ କଳା-ସମାଲୋଚକମାନେ ସବୁଠାରୁ ଅବିମିଶ୍ର ଓ ବିଶୁଦ୍ଧ ଆର୍ଯ୍ୟ-ସ୍ଥାପତ୍ୟ ରୀତି ବୋଲି ଘୋଷଣା କରନ୍ତି ।[(୨)] ପ୍ରାଚୀନ ଓଡ଼ିଆମାନେ ରାକ୍ଷସ ପରି ଏଇ ସବୁ ବିରାଟ ଅଟ୍ଟାଳିକା ଠିଆକରାଇବା ସଙ୍ଗେ ସଙ୍ଗେ,

---

(୧) ଜନୈକ ବ୍ରିଟିଶ୍ ଶାସକ ଓଡ଼ିଆ ସ୍ଥପତିମାନଙ୍କର ଇଞ୍ଜିନିୟରିଂ କୌଶଳ ସମ୍ବନ୍ଧରେ ଏପରି କହିଛନ୍ତି – "ଭୁବନେଶ୍ୱର ଓ ଅନ୍ୟତ୍ର ଦେଖାଯାଉଥିବା ପ୍ରାଚୀନ କୀର୍ତ୍ତିମାନଙ୍କର ସଂଖ୍ୟା ଓ ସମୃଦ୍ଧତା ଏକ ଉଚ୍ଚକୋଟୀର ସଭ୍ୟତା ଓ ବୁଦ୍ଧିମନ୍ତ ରାଷ୍ଟ୍ରର ସ୍ଥିତି ଘୋଷଣା କରନ୍ତି ! ଏପରି ବିରାଟ ମନ୍ଦିରାବଳୀର ଯୋଜନା ଓ ଗଠନ କେବଳ ସ୍ଥାପତ୍ୟବିଦ୍ୟାର ପ୍ରଭୂତ ଉନ୍ନତିରୁ ସମ୍ଭବ ହୋଇପାରେ । ବିରାଟ ଶିଳାଖଣ୍ଡ ସବୁ ବିନା ସୁର୍କିରେ ଠିକ୍ ଠିକ୍ ସ୍ଥାନରେ ଯେପରି ରଖାଯାଇଛି, ତାହା ନିଃସନ୍ଦେହରେ ଶିଳ୍ପୀମାନଙ୍କର ଚତୁରତା ଓ ନୈପୁଣ୍ୟ ପ୍ରକାଶ କରେ । ପ୍ରାଣବନ୍ତ ଓ ଅତି ମନୋହର ଭାବରେ ଖୋଦିତ ନରନାରୀ, ଲତା-ବୃକ୍ଷ ଓ ଆଳଙ୍କାରିକ ଭାସ୍କର୍ଯ୍ୟ, ଯାହା ପ୍ରତ୍ୟେକଟି ମନ୍ଦିରକୁ ଦେଉଛି ଆକର୍ଷକ ମାଧୁର୍ଯ୍ୟ, ତାହା ମଧ୍ୟ ଶିଳ୍ପୀମାନଙ୍କର ଚତୁରତା ଓ ନୈପୁଣ୍ୟ ସମାନ ଭାବରେ ପ୍ରଚାର କରେ ।" (L.S.O. Malley I.C.S., ପୁରୀ-ଜିଲ୍ଲା ଗେଜେଟିୟାର୍, ପୃଷ୍ଠା-୨୮)

(୨) ଶ୍ରୀ ମନମୋହନ ଗାଙ୍ଗୁଲି ତାଙ୍କର ପ୍ରସିଦ୍ଧ ପୁସ୍ତକ 'Orissa and Her Remains'ରେ ଓଡ଼ିଶୀ ମନ୍ଦିର-ସ୍ଥାପତ୍ୟ ଉପରେ ଏହା କହିଛନ୍ତି – "ଭାରତର ଅନ୍ୟ ପ୍ରଦେଶମାନଙ୍କର ମନ୍ଦିରମାନଙ୍କ ଉପରେ ଗ୍ରନ୍ଥ ନ ଲେଖି ମୁଁ ଓଡ଼ିଶା ରାଜ୍ୟର ମନ୍ଦିରମାନଙ୍କ ଉପରେ କାହିଁକି ଲେଖିବାକୁ ଗଲି, ଏଥିପାଇଁ ମୋତେ କୈଫିୟତ ଦେବାକୁ ପଡ଼ିବ ନାହିଁ ବୋଲି ଆଶାକରେ । ଓଡ଼ିଶା-ମନ୍ଦିରାବଳୀର କାହାଣୀରେ ଯେଉଁ ସ୍ୱତନ୍ତ୍ରତା ଅଛି, ତାହା ଅନ୍ୟ କେଉଁ ପ୍ରଦେଶର କୀର୍ତ୍ତିମାନଙ୍କରେ ନାହିଁ, ପ୍ରତ୍ନତାତ୍ତ୍ୱିକ ବା ସ୍ଥାପତ୍ୟ, ଯେଉଁ ଦୃଷ୍ଟିରୁ ଦେଖ । ସ୍ଥାପତ୍ୟର ଅନୁଶୀଳକ ଏଠି ବିଶୁଦ୍ଧ ଆର୍ଯ୍ୟ-ଭାରତୀୟ କଳା ଦେଖିବାକୁ ପାଇବେ, ଯାହା କୌଣସି ବୈଦେଶିକ ରୀତିଦ୍ୱାରା ଆଦୌ ପ୍ରଭାବିତ ହୋଇନାହିଁ । ଏ ସ୍ଥାପତ୍ୟ ତା'ର ପ୍ରେରଣା ଓ ଅଭିବର୍ଦ୍ଧନ ପାଇଛି ତା'ର ନିଜର ମାଟିରୁ । ସ୍ଥାପତ୍ୟର ଇତିହାସରେ ଏହା ଏକ ବିସ୍ମୟକର ଘଟଣା, ଯାହା ଅନ୍ୟ

ସେଗୁଡ଼ିକର ପୃଷ୍ଠଦେଶକୁ ନିପୁଣ କଳାକାର ପରି ସୁନ୍ଦର-ଗମ୍ଭୀର ଭାସ୍କର୍ଯ୍ୟରେ ସଜ୍ଜିତ ରଖିଯାଇଛନ୍ତି । [୩] ପ୍ରତିବର୍ଷ ଆସୁଥିବା ବୈଦେଶିକ ଦର୍ଶକମାନେ କୋଣାର୍କ ବା ଲିଙ୍ଗରାଜ ମନ୍ଦିରକୁ ମଧ୍ୟଯୁଗର କଳା ଓ ସ୍ଥାପତ୍ୟର ନିଦର୍ଶନ ବା ଯୌବନ ଓ ସୌନ୍ଦର୍ଯ୍ୟର ଏକ ଏକ ଅନୁପମ କାବ୍ୟ ଭାବରେ ପଢ଼ି ପଢ଼ି ମୁଗ୍ଧ-ଚକିତ ହେବା ସ୍ୱାଭାବିକ; କିନ୍ତୁ କେବଳ ଜଣେ ଓଡ଼ିଆହିଁ ହୃଦୟଙ୍ଗମ କରିପାରିବ କି ଗଭୀର ଓ ଅର୍ଥଯୁକ୍ତ ଭାବରେ ଏହି ମୂକ ପ୍ରସ୍ତର-କୀର୍ତ୍ତିରାଜି ତା'ର ସଂସ୍କୃତି ଓ ସାହିତ୍ୟକୁ ପ୍ରଭାବିତ କରିଆସିଅଛନ୍ତି । ମଧ୍ୟଯୁଗରେ ଓଡ଼ିଆ କାବ୍ୟର ଗଠନାଦର୍ଶହିଁ ଥିଲା ଏକ କଳାଖଚିତ ମନ୍ଦିର । ମଧ୍ୟଯୁଗୀୟ ଓଡ଼ିଆ କବିମାନେ ଭାବୁଥିଲେ ଯେ କାବ୍ୟ ଏକପକ୍ଷରେ ହେବ ମନ୍ଦିରପରି ଦୃଢ଼ ଓ ସୁଗଠିତ ଓ ଅନ୍ୟ ପକ୍ଷରେ ଭାଷାର ଭାସ୍କର୍ଯ୍ୟଦ୍ୱାରା ତାହା ହେବ ଓତପ୍ରୋତ ଅଳଂକୃତ । ଓଡ଼ିଶାରେ କବିମାନେ ଓଡ଼ିଆ ଦେଉଳରୁ ଓ ଓଡ଼ିଶାର ସ୍ଥପତି-ଭାସ୍କରବର୍ଗ ଓଡ଼ିଶା କାବ୍ୟରୁ ପ୍ରେରଣା ସଂଗ୍ରହ କରୁଥିଲେ । ପୁଣି କେବଳ କାବ୍ୟ ନୁହେଁ; ଓଡ଼ିଶାର ନୃତ୍ୟ, ନାଟକ ଓ ସଙ୍ଗୀତ ମଧ୍ୟ ନିଃସ୍ୟନ୍ଦିତ ହୋଇଛି ଏହି ମନ୍ଦିରମାନଙ୍କରୁ । ମୋଟଉପରେ ଓଡ଼ିଶାର ମନ୍ଦିରଗୁଡ଼ିକ ଓଡ଼ିଆମାନଙ୍କର ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ଏକ କ୍ଷୁଦ୍ର ସୁନ୍ଦର ପ୍ରତିଭୂ । ଓଡ଼ିଆମାନଙ୍କର ସ୍ୱତନ୍ତ୍ର ଭୋଜନ ପ୍ରଣାଳୀ ମଧ୍ୟ କେବଳ ସେହି ମନ୍ଦିରମାନଙ୍କରେହିଁ ଆମେ ଦେଖିବାକୁ ପାଇବା ।

**ସୁସଙ୍ଗତ ସମଗ୍ରତା –**

ମୋଟଉପରେ ଆମେ ଦେଖିବାକୁ ପାଇବା ଯେ ପ୍ରାଚୀନ ଓଡ଼ିଆମାନେ ନିଜର ଏକ ସ୍ୱତନ୍ତ୍ର ଅଥଚ ସୁସଙ୍ଗତ ଜୀବନ ଛାଞ୍ଚ ଠିଆକରାଇପାରିଥିଲେ । ମଧ୍ୟଯୁଗୀୟ ଓଡ଼ିଆ ଗୀତ ସହିତ ଓଡ଼ିଶୀ ନାଚ ବା କୋଣାର୍କ-ଲିଙ୍ଗରାଜର ଛାୟା ତଳେ ଉପେନ୍ଦ୍ର ଭଞ୍ଜଙ୍କ କୌଣସି କାବ୍ୟର କୌଣସି ଏକ ଛାନ୍ଦ ଆବୃତ୍ତି ହେଲାବେଳେ ଯେକୌଣସି ଶିକ୍ଷାଭିଜ୍ଞ ବା ସାମାଜିକ ତତ୍ତ୍ୱ ଅନୁଶୀଳକ ସେ ସମସ୍ତଙ୍କ ଭିତରେ ରକ୍ତଗତ ବା କୌଟୁମ୍ବିକ ଏକ ଘନିଷ୍ଠ ସମ୍ବନ୍ଧ ସହଜରେ ବୁଝିପାରିବେ । ଓଡ଼ିଶୀ ମନ୍ଦିର ଓ ତା'ର ବୈଶିଷ୍ଟ୍ୟସମ୍ପନ୍ନ ଓଡ଼ିଶୀ ଭାସ୍କର୍ଯ୍ୟ,

---

କୌଣସିଠାରେ ଦେଖିବାକୁ ମିଳେନା । ପୁଣି ଓଡ଼ିଶାରେ ଏହି ସ୍ୱତନ୍ତ୍ର ମନ୍ଦିର-ଶୈଳୀ ଏକାଦିକ୍ରମେ ପାଞ୍ଚ-ଛଅଶହବର୍ଷ ଧରି ନିଜକୁ ଅସ୍ପୃଷ୍ଟ ଓ ଅବ୍ୟାହତ ଯେ ରଖିପାରିଲା, ତାହା ପୁଣି ବିସ୍ମୟ-ମୁଗ୍ଧ ବିଚାରର ଆଉ ଏକ କାରଣ ।''

(୩) ଇ.ବି. ହାଭେଲ୍ କୋଣାର୍କର ଅଶ୍ୱ ଓ ରଥଚାଳକ ଉପରେ ଏପରି ଲେଖିଛନ୍ତି – ''ଏହା ଉପରେ ଗ୍ରୀକ୍ ବା ରୋମାନ୍ ବୋଲି ଲେବୁଲ୍ ମାରିଦେଇପାରିଲେ, ୟୁରୋପ ବା ଆମେରିକାର ଯେକୌଣସି ରାଜଧାନୀର ମ୍ୟୁଜିୟମ୍‌ରେ ଏହା ଗର୍ବର ସମ୍ପଦରୂପେ ଠିଆହୋଇଥାଆନ୍ତା । × × × ଏଠାରେ ହିନ୍ଦୁ ଶିଳ୍ପୀ ପ୍ରମାଣ କରିଦେଇଛି ଯେ, ସେ ମଧ୍ୟ ତୁଙ୍ଗ ୟୁରୋପୀୟ ଶିଳ୍ପୀ ସହିତ ସମାନ ଭାବରେ ସମର-ବିଜୟର ଉତ୍ତେଜନା ଓ ଉଲ୍ଲାସ ନିପୁଣତାର ସହିତ ପ୍ରକାଶ କରି-ପାରିବ । ବରଂ କୋଣାର୍କର ଏହି ସମରାଶ୍ୱ ଓ ଯୁଦ୍ଧବିଜୟୀ ବୀରର ଗଠନ-ପରିପାଟୀ ଓ ପ୍ରାଣବନ୍ତ ସ୍ଫୂର୍ତ୍ତି ସହିତ ଏଲ୍‌ଗିନି ମାର୍ବଲ୍ (ବ୍ରିଟିଶ୍ ମ୍ୟୁଜିୟମ୍‌ରେ ସଂରକ୍ଷିତ ଗ୍ରୀକ୍ ଭାସ୍କର୍ଯ୍ୟ)ର ତଥାକଥିତ ହୋମରିକ୍ ମହିମା ତୁଳିତ ହୋଇନପାରେ ।''

ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତ ଓ ଓଡ଼ିଆ ଛାନ୍ଦ-କବିତା – ଏ ସବୁଥିରେ ଆମେ ଏକାନ୍ତଭାବରେ ଏକ ସ୍ଥାନୀୟ ଓ ବିଶିଷ୍ଟ ମନୋହାରିତା ଦେଖିପାରିବା, ଯାହା ନୁହେଁ ଉତ୍ତର-ଭାରତୀୟ ବା ଦକ୍ଷିଣ-ଭାରତୀୟ । ଓଡ଼ିଶୀ ମନ୍ଦିରଗାତ୍ରରେ ଖୋଦିତ ସୁନ୍ଦରୀମାନଙ୍କର ଅଳଙ୍କାରାଦି ଏବେ ବି ଉତ୍କଳ ପଲ୍ଲୀ ସୀମନ୍ତିନୀମାନଙ୍କଦ୍ୱାରା ବ୍ୟବହୃତ ଏବଂ ସମ୍ବଲପୁର ଓ ଆଖପାଖ ଅଞ୍ଚଳର ସୁସ୍ଥ ସୁଗଠିତ ବପୁ ଓ ବର୍ଣ୍ଣାଢ୍ୟ ବସନମଣ୍ଡିତା ଓ ଏପର୍ଯ୍ୟନ୍ତ ସଭ୍ୟତାଦ୍ୱାରା ଅସ୍ପୃଷ୍ଟ ସୁନ୍ଦର ସରଳ ନରନାରୀମାନଙ୍କୁ ଦେଖିଲେ ବୋଧହେବ, ଯେପରିକି ମଧ୍ୟଯୁଗର ଓଡ଼ିଶୀ ମନ୍ଦିରମାନଙ୍କ ଭାସ୍କର୍ଯ୍ୟରୁ ସେମାନେ ସିଧା ବାହାରି ଆସିଛନ୍ତି । ଓଡ଼ିଶାର ପଲ୍ଲୀଗ୍ରାମମାନଙ୍କର ସ୍ଥିର ସମାହିତ ବାତାବରଣ ଭିତରେ ଓଡ଼ିଆ ପୁରାଣମାନଙ୍କର ଆବୃତ୍ତି ଶୁଣିଲେ ମଧ୍ୟ ମନେହେବ, ଓଡ଼ିଶୀ ଜାତୀୟ ଜୀବନର ସମଗ୍ର ସାମାଜିକ ଶୈଳ୍ପିକ କଳ୍ପନାଟି ଯେପରି ଏଇ ଓଡ଼ିଶାର ନିଜ ମାଟିରୁହିଁ ଜନ୍ମଲାଭ କରିଛି ଓ ବଢ଼ିଉଠିଛି ଏକାନ୍ତ ଭାବରେ ଆପଣାର ନିଜସ୍ୱ ରୀତିକୁହିଁ ଆଶ୍ରୟ କରି ।

**ସାମାଜିକ ଓ ସାଂସ୍କୃତିକ ଜୀବନ –**

ସିଟି ବା ନଗର ବୋଲି ଯାହାକୁ ପ୍ରକୃତରେ କୁହାହେବାର କଥା ଏପରି ବସତି ଓଡ଼ିଶାରେ ନାହିଁ କହିଲେ ଚଳେ । କଟକ ଓ ଭୁବନେଶ୍ୱର ପରି ତଥାକଥିତ ରାଜଧାନୀ ମଧ୍ୟ କେବଳ ମାତ୍ର ଆଂଶିକ ଭାବରେ ସହର । ଓଡ଼ିଶା ଏପର୍ଯ୍ୟନ୍ତ ପ୍ରକୃତରେ ଏକ ଗ୍ରାମମୟ ରାଜ୍ୟ ହୋଇ ରହିଛି । ଏ ରାଜ୍ୟରେ ଛୋଟ ବଡ଼ ଗ୍ରାମର ସଂଖ୍ୟା ପ୍ରାୟ ପଚାଶ ହଜାର । ସାଧାରଣ ଓଡ଼ିଆକୁ ଏକ ଗ୍ରାମବାସୀ ବୋଲି ହିଁ ଧରିନେବାକୁ ହେବ । କିନ୍ତୁ କୌତୂହଳର ବିଷୟ ଏହି ଯେ, ଓଡ଼ିଆ ଗ୍ରାମଗୁଡ଼ିକ ମଧ୍ୟ ଓଡ଼ିଶାର ଏପଟେ ସେପଟେ ପ୍ରତିବେଶୀ ରାଜ୍ୟମାନଙ୍କରେ ଦେଖାଯାଉଥିବା ଗ୍ରାମମାନଙ୍କଠାରୁ ଗଠନ-ବିନ୍ୟାସରେ ସଂପୂର୍ଣ୍ଣ ଭିନ୍ନ । ପ୍ରାୟଶଃ, ଓଡ଼ିଆ ଗ୍ରାମଗୁଡ଼ିକ ଲଗାଲଗି ଦୁଇଶ୍ରେଣୀର ଚାଳଘରସମଷ୍ଟି । ଦୁଇଶ୍ରେଣୀର ମଝିରେ ଦାଣ୍ଡ, ଯାହାର ଏକପାଖେ ପୋଖରୀ ଓ ଦେବାଳୟ ଏବଂ ଅନ୍ୟପାଖେ ଭାଗବତଘର ବା ଗ୍ରାମର ସଭାଗୃହ । ଗ୍ରାମ୍ୟ ଘରଗୁଡ଼ିକର ବହିର୍ଭାଗ କୌଣସି ନା କୌଣସି ପ୍ରକାରର ଭିତ୍ତିଚିତ୍ରରେ ଅଳଂକୃତ ଓ ପ୍ରତ୍ୟେକ ଘର ପଛରେ ଥିବ ଏକ ଏକ ବଗିଚା । ଓଡ଼ିଶାର ଗ୍ରାମମାନଙ୍କରେ ଏପର୍ଯ୍ୟନ୍ତ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଓ ଗ୍ରାମ୍ୟ ପୁରୋହିତ, ଏ ଦୁହେଁ ଗୋଷ୍ଠୀଗତ ଓ ବ୍ୟକ୍ତିଗତ ଜୀବନକୁ ପ୍ରଭୁତ ପରିମାଣରେ ପ୍ରଭାବିତ କରିଥାଆନ୍ତି । ଗ୍ରାମର ପ୍ରଧାନ ପ୍ରଧାନ ପରିବାରରେ ବା ଗ୍ରାମର ଭାଗବତଘରେ ପ୍ରତି ସନ୍ଧ୍ୟାରେ ଜଗନ୍ନାଥ ଦାସଙ୍କ ଭାଗବତ ପାରାୟଣ ହେବାର ଆଶା କରାଯାଏ, ପୁଣି ବର୍ଷଯାକର ଶ୍ରମ ଶେଷରେ ଯେତେବେଳେ କୃଷକ ଅତି ନିକଟରେ ହୈମନ୍ତିକ ସ୍ୱର୍ଣ୍ଣ ଶସ୍ୟ ଘରକୁ ବୋହିଆଣିବାର ସ୍ୱପ୍ନରେ ପ୍ରଫୁଲ୍ଲଚିତ୍ତ ଥାଏ, ସେହି କାର୍ତ୍ତିକ ମାସଟି ନିର୍ଦ୍ଦିଷ୍ଟ ଥାଏ ପ୍ରତିବର୍ଷ ଏକ ଏକ ନୂଆ ଓଡ଼ିଆ ପୁରାଣ ସମଗ୍ର ଭାବରେ ଆବୃତ୍ତି କରେଇବା ଓ ଶୁଣିବା ପାଇଁ । ଅଭିଳଷିତ ସ୍ୱର୍ଣ୍ଣ ଶସ୍ୟ ବିଲରୁ ଆଣି ଘରେ ଗଚ୍ଛିତ ରଖିସାରିଲା ପରେ ଚୈତ୍ର ମାସରେ ଆରମ୍ଭ ହୋଇଯାଏ ଗ୍ରାମ୍ୟ ଦେବ ଓ ଦେବୀମାନଙ୍କର ମିଳନୋତ୍ସବ, ପୁଣି

ପାଲା, ଯାତ୍ରା, ଓଡ଼ିଶୀ, ଦାଶକାଠିଆ ନାଚ, ଯେଉଁ ପ୍ରତ୍ୟେକଟିରେ ଭରିରହିଥାଏ ସାହିତ୍ୟ, ସଙ୍ଗୀତ ଓ ନାଟକ ନିରକ୍ଷର ଓଡ଼ିଶୀ ଜନତାର ଚିତ୍ତ-ବିନୋଦନ ପାଇଁ । ପ୍ରାୟ ପ୍ରତ୍ୟେକ ଓଡ଼ିଆ ଗାଁରେ ଆମେ ଏକ ପାଠଚକ୍ର ଦେଖିବାକୁ ପାଇବା; ଯେଉଁଠି ଅବସରବେଳେ ଓଡ଼ିଶୀ ସଙ୍ଗୀତ, ଓଡ଼ିଆ କବିତା ଓ ଓଡ଼ିଆ ପୁରାଣମାନଙ୍କର ଆଲୋଚନା ହୁଏ । ଏହି ପାଠଚକ୍ରର ଭଗିନୀ ଅନୁଷ୍ଠାନ ଥିଲା ଗ୍ରାମ୍ୟ ଆଖଡ଼ା ବା ଜିମ୍ନେସିୟମ୍ । ଅନେକ ଗ୍ରାମରେ ଏ ଅନୁଷ୍ଠାନ ଏବେ ବି ବଞ୍ଚିରହିଛି, ତେବେ ପୂର୍ବପରି ଆଉ ଜୀବନ୍ତ ନୁହେଁ । ପୂର୍ବେ ପ୍ରତି ଗାଁର ଭାଗବତଘରେ ଓ ଗ୍ରାମର ପ୍ରଧାନ ପ୍ରଧାନ ପରିବାରରେ ତାଳପତ୍ର ପୋଥିର ଏକ ପୁସ୍ତକାଳୟ ଥିଲା; ଯାହାହିଁ ଦୃଢ଼ ପ୍ରମାଣ କରେ ପ୍ରାଚୀନ ଓଡ଼ିଆମାନଙ୍କ ଭିତରେ ଦିନେ ବିଦ୍ୟାନୁରାଗ ଓ ବିଦ୍ୟାନୁଶୀଳନର କି ଆନନ୍ଦ ଓ ଗର୍ବ ଦେଖାଦେଇଥିଲା । ବ୍ରିଟିଶ-ଶାସକମାନଙ୍କଦ୍ୱାରା ଜବରଦସ୍ତି ପ୍ରବର୍ତ୍ତିତ ଏକ ନୂତନ ବୈଦେଶିକ ଶିକ୍ଷାପ୍ରଣାଳୀ ଓ ଲାଭାନ୍ୱେଷୀ ମୁଦ୍ରଣଶିଳ୍ପର ଅଭ୍ୟୁଦୟ, ଓଡ଼ିଆ ପ୍ରାଣର ସେହି ସହଜାତ ଐତିହାସିକ ଆନନ୍ଦ ଓ ଗର୍ବକୁ ଚିରକାଳ ପାଇଁ ନଷ୍ଟ କରିଦେଇଛି; କିନ୍ତୁ ସରଳ ପଲ୍ଲୀବାସୀ ନିକଟରେ ସେହି ପ୍ରାଚୀନ ଲୌହ ଲେଖନୀ ଓ ତାଳପତ୍ରର ମହିମା ଏବେ ବି ଅବ୍ୟାହତ । ଧର୍ମୀୟ ଆଚାର-ଅନୁଷ୍ଠାନରେ ଛାପାବହି ବା ଏପରିକି କାଗଜ ବି ସମ୍ମାନନୀୟ ନୁହେଁ; ସେଠି କେବଳ ତାଳପତ୍ର ପୋଥିହିଁ ଏପର୍ଯ୍ୟନ୍ତ ଗୌରବାବହ ଆସନ ଅଧିକାର କରେ ।

**ଓଡ଼ିଶା, ଉତ୍କଳ, କଳିଙ୍ଗ –**

ଇଂରାଜୀରେ ଆମେ ଯେଉଁ 'ଓରିଆ' (Oriya) ଶବ୍ଦ ଦେଖୁଁ, ତାହାର ପ୍ରକୃତ ଉଚ୍ଚାରଣ 'ଓଡ଼ିଆ' । ସେହି 'ଓଡ଼ିଆ' ପୁଣି ଆସିଛି ଉଡ୍ର ବା ଓଡ୍ର ଶବ୍ଦରୁ । ଉଡ୍ର ବା ଓଡ୍ର ଏକ ଟ୍ରାଇବ୍ ବା ମାନବ-ଗୋଷ୍ଠୀ । ଓଡ଼ିଶାର ପ୍ରଲମ୍ବିତ କଟିବନ୍ଧରେ ବିଚ୍ଛୁରିତ, ଏବର ସଂଖ୍ୟାଗରିଷ୍ଠ କୃଷିଜୀବୀ 'ଓଡ୍ର'(ଚଷା)ମାନେହିଁ ଏହି ପ୍ରାଚୀନ ଓଡ୍ରଗୋଷ୍ଠୀ, ଯେଉଁମାନଙ୍କ ବାସଭୂମି ଯୋଗୁଁ ଏହି ରାଜ୍ୟ ଉଡ୍ରଦେଶ ବା ଓଡ଼ିଶା ହୋଇଛି; କିନ୍ତୁ ଯାହାକୁ ଆମେ ଆଜି 'ଓଡ଼ିଶା' କହୁଛୁ, ତାହା ପୂର୍ବେ 'ଉତ୍କଳ' ଓ 'କଳିଙ୍ଗ' ବୋଲି ମଧ ପରିଚିତ ଥିଲା । ଉଡ୍ରମାନଙ୍କ ପରି କଳିଙ୍ଗ ଓ ଉତ୍କଳମାନେ ମଧ ଏକ ଏକ ଟ୍ରାଇବ୍ ବା ସ୍ୱତନ୍ତ୍ର ଗୋଷ୍ଠୀ ଥିଲେ; କିନ୍ତୁ ହୁଏତ ଶତାବ୍ଦୀ ଶତାବ୍ଦୀ ଧରି ଜୀବନସଂଗ୍ରାମ ବା ଆଧିପତ୍ୟର ବାସନାରୁ ହେଉ ବା ପାରସ୍ପରିକ ସାଂସ୍କୃତିକ ବିନିମୟ ଫଳରେ ହେଉ, ପ୍ରାୟ ସପ୍ତମ ଶତାବ୍ଦୀରୁ କଳିଙ୍ଗ ଓ ଚତୁର୍ଦ୍ଦଶ ଶତାବ୍ଦୀରୁ ଉତ୍କଳମାନେ ଓଡ଼ିଶା ଇତିହାସର ପୃଷ୍ଠାରୁ ବିଦାୟ ନେଇଛନ୍ତି ଓ ଏହି ସମଗ୍ର ରାଷ୍ଟ୍ରକୁ ଛାଡ଼ିଯାଇଅଛନ୍ତି 'ଓଡ୍ର'ମାନଙ୍କ ଅଧିକାରରେ, ଯେଉଁମାନଙ୍କ ନାମରେହିଁ ଏହି ଐତିହାସିକ ଦେଶ ଆଜି ସର୍ବତ୍ର ପରିଚିତ; କିନ୍ତୁ ଗତ ଛଅ-ସାତ ଶତାବ୍ଦୀଧରି ଏହି ଦେଶ ଏପରିଭାବରେ କେବଳ ଓଡ଼ିଶା ବା ଓଡ୍ରଦେଶ ବୋଲି ସାଧାରଣରେ ବର୍ଣ୍ଣିତ ଓ କଥିତ ହୋଇଆସିଥିଲେହେଁ, ଏବର ଆଧୁନିକ ଓଡ଼ିଆ ପ୍ରାଣରେ ସ୍ୱ-ରାଷ୍ଟ୍ରର ସେହି ପ୍ରାଚୀନ ନାମ 'କଳିଙ୍ଗ' ଓ 'ଉତ୍କଳ' ନାମମାନ ପ୍ରତି ଏକ ସ୍ମୃତି-ପୂତ ଆକର୍ଷଣ ରହିଆସିଛି । ତେଣୁ ଓଡ଼ିଶାର ପ୍ରଥମ ବିଶ୍ୱବିଦ୍ୟାଳୟର ନାମ 'ଉତ୍କଳ ବିଶ୍ୱବିଦ୍ୟାଳୟ' ଏବଂ ଓଡ଼ିଶା ବାହାରେ କମ୍ ଲୋକ ଜାଣିଥିଲେ ଯେ, ପ୍ରତିବର୍ଷ

ଇଉନେସ୍କୋ (UNESCO) ଦ୍ୱାରା ପ୍ରଦତ୍ତ 'କଳିଙ୍ଗପୁରସ୍କାର' କଳିଙ୍ଗ ଏୟାର ୱେଜ୍ ଓ ଅନ୍ୟାନ୍ୟ ବହୁବିଧ କଳିଙ୍ଗ ଶିଳ୍ପ ଜଣେ ଦୁଃସାହସିକ ଓଡ଼ିଆ ଶିଳ୍ପପତି ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କ ଦ୍ୱାରାହିଁ ଅନୁଷ୍ଠିତ ଓ ପରିଚାଳିତ ।

## ଓଡ଼ିଆ ସାହିତ୍ୟରେ ସାମରିକ ଐତିହ୍ୟ –

ଏବର ଏହି ଓଡ଼ିଆ ବା ପ୍ରାଚୀନ କଳିଙ୍ଗମାନେ ଦିନେ ଯେ ଏକ ସମୃଦ୍ଧ, ବିଜୟୀ ଓ ସାମ୍ରାଜ୍ୟ-ନିର୍ମାପକ ଜାତି ଥିଲେ, ଇତିହାସର ପୃଷ୍ଠା ତାହାର ଯଥେଷ୍ଟ ସାକ୍ଷ୍ୟ ଯୋଗାଉଛି । ଏହା ଉଣାକଥାରେ ଐତିହାସିକ କଳିଙ୍ଗ-ଯୁଦ୍ଧ, ଅଶୋକଙ୍କ ସାମ୍ରାଜ୍ୟବାହିନୀର ବିଜୟ-ଗୌରବ ନେଇ ଇତିହାସରେ ବିଶ୍ୱବିଖ୍ୟାତ ହୋଇଉଠିନାହିଁ; ତାହା ପ୍ରଖ୍ୟାତ ହୋଇଉଠିଛି ଏକ ସ୍ୱାଧୀନତାପ୍ରିୟ କ୍ଷୁଦ୍ର ରାଜ୍ୟର ଅଧିବାସୀମାନଙ୍କର ଏକ ବିରାଟ ସାମ୍ରାଜ୍ୟର ସାମରିକ ଆକ୍ରମଣକୁ ଶେଷ ପର୍ଯ୍ୟନ୍ତ ଅକୁତୋଭୟ ଭାବରେ ପ୍ରତିରୋଧ ଦେବାରେ । ଐତିହାସିକ ରାଖାଲଦାସ ବାନାର୍ଜିଙ୍କ ଭାଷାରେ (ଓଡ଼ିଶା, ପ୍ରଥମ ଖଣ୍ଡ, ପୃ. ୬୩)– ''ମୃତ, ଧୃତ ଓ ବିପର୍ଯ୍ୟୟଗ୍ରସ୍ତ କଳିଙ୍ଗମାନଙ୍କର ସଂଖ୍ୟାରୁହିଁ ଉତ୍ତରାପଥର ସାମ୍ରାଜ୍ୟବାହିନୀକୁ ଏକ ସଂଖ୍ୟା-ଲଘୁ ଜାତି କି ପ୍ରକାର ବାଧା ଯେ ଦେଇଥିଲା, ତାହା ସହଜରେ ଜଣାପଡ଼େ । କେବଳ ଗୋଟିଏ ଯୁଦ୍ଧ ନୁହେଁ, ଅଶୋକ-ବାହିନୀର ପ୍ରତିରୋଧ କରି ମହୋଦଧିବେଳାଲମ୍ୱିତ ସେହି ଛୋଟ ରାଜ୍ୟଟିର ଲୋକେ ସୁବର୍ଣ୍ଣରେଖାର କୂଳରୁ କୃଷ୍ଣା କୂଳଯାଏ, ବହୁ ଯୁଦ୍ଧରେ ନିଜ ଦେଶପାଇଁ ପ୍ରାଣପାତ କରିଥିବେ ।'' ମୌର୍ଯ୍ୟ ସାମ୍ରାଜ୍ୟର ଆକ୍ରମଣକୁ ପ୍ରାଣପାତ ବିରୋଧ କରି ଯେଉଁ ସାମରିକ ଐତିହ୍ୟର ଆରବ୍ଧ ହୋଇଥିଲା, ତାହା ଓଡ଼ିଶାରେ ଜୀବନ୍ତ ରହିଥିଲା ପ୍ରାୟ ଦୁଇ ହଜାର ବର୍ଷଧରି । ସଂସ୍କୃତ ସାହିତ୍ୟର ପ୍ରସିଦ୍ଧ ଆଳଙ୍କାରିକ ଗ୍ରନ୍ଥ 'ସାହିତ୍ୟ ଦର୍ପଣ' କଳିଙ୍ଗମାନଙ୍କୁ ସାହସିକତାର ଯେଉଁ ବିଶିଷ୍ଟ ଗୌରବ ଦାନ କରିଛି, ତାହା ଅଯଥାର୍ଥ ମନେହେଉନାହିଁ । ପ୍ରତିବେଶୀ ବଙ୍ଗ ସହିତ ସମଗ୍ର ଉତ୍ତର-ଭାରତ ମୁସଲମାନମାନଙ୍କଦ୍ୱାରା ତିନିଶତ ବର୍ଷ ପର୍ଯ୍ୟନ୍ତ ବିଜିତ ଓ ଶାସିତ ହେଲା ପରେ ମଧ ଓଡ଼ିଶା କେବଳ ନିଜର ସ୍ୱତନ୍ତ୍ର ସ୍ୱାଧୀନତା ବଜାୟ ରଖିଥିଲା ନୁହେଁ, ସେହି ସମସ୍ତ କାଳଯାକ ଉତ୍ତର ଓ ଦକ୍ଷିଣ ଉଭୟ ଦିଗର ମୁସଲମାନ ଶାସକମାନଙ୍କ ପ୍ରତି ବାରମ୍ୱାର ଏକ ଆତଙ୍କର କାରଣ ଥିଲା । ଓଡ଼ିଶା ସେଦିନ ପୌନଃପୁନିକ ମୁସଲମାନ ଆକ୍ରମଣକୁ ହଟାଇଦେଇଥିଲା କେବଳ ନୁହେଁ, ଓଲଟି ମୁସଲମାନ ରାଜ୍ୟସବୁକୁ ଆକ୍ରମଣ କରି ସେଠାରେ ମୃତ୍ୟୁ ଓ ପରାଜୟ ବର୍ଷଣ କରିଆସିଥିଲା । ବାହମନୀ ସୁଲତାନଙ୍କ ସାମ୍ରାଜ୍ୟରେ ରାଜା କପିଳେନ୍ଦ୍ର ଦେବଙ୍କର (୧୪୩୫-୧୪୬୬) ଦୁର୍ଦ୍ଧାନ୍ତ ଅଭିଯାନ ଉପରେ ରାଖାଲଦାସ ବାନାର୍ଜି ଏଇପରି କହିଛନ୍ତି – ''ଉଭୟ ଫେରିସ୍ତା ଓ ବୁରାନ୍-ଇ-ମାସିଲ୍ ଏକମତ ଯେ, ଏହି ଓଡ଼ିଶା ରାଜା ବାହମନୀ ସାମ୍ରାଜ୍ୟ ଆକ୍ରମଣ କରିଥିଲେ ଓ ସୁଦୂର ବିଦର ଦୁର୍ଗର ଫାଟକ ନିକଟରେ ପ୍ରାୟ ପହଞ୍ଚିଥିଲେ । ଏଇ ବୋଧହୁଏ ଏକମାତ୍ର ଦୃଷ୍ଟାନ୍ତ ଯେଉଁଠି ମୁସଲମାନ ଐତିହାସିକ, ମୁସଲମାନ ରାଜାର ପରାଜୟ ସ୍ୱୀକାର କରିବାକୁ ବାଧ ହୋଇଛନ୍ତି ।'' (ଓଡ଼ିଶା, ପ୍ରଥମ ଖଣ୍ଡ, ପୃ. ୨୯୭) । ହଣ୍ଟର ମଧ ତାଙ୍କର

'ଓଡ଼ିଶା' ଗ୍ରନ୍ଥରେ (ପୃ. ୫) କହିଛନ୍ତି – ''ଓଡ଼ିଶା ମୁସଲମାନମାନଙ୍କ ନିକଟରେ ମାତ୍ର ତଥାକଥିତ ଭାବରେ ବଶତା ସ୍ୱୀକାର କରିବା ପୂର୍ବରୁ ତିନିଶହ ବର୍ଷଧରି ବହୁ ଅଭିଯାନ, ବହୁ ନିଷ୍ଫଳ ସନ୍ଧି ଓ ପାରସ୍ପରିକ ଅନାଚାର ଘଟିଚାଲିଥିଲା । ଆଫ୍‌ଗାନମାନେ ଉତ୍ତର-ଭାରତର ବହୁ ପ୍ରସିଦ୍ଧ ଐତିହାସିକ ରାଜବଂଶକୁ ଧୂଳିସାତ୍ କରିବାର ବହୁକାଳ ପରପର୍ଯ୍ୟନ୍ତ ଓଡ଼ିଶା ତାର ସ୍ୱାଧୀନତା ଓ ପ୍ରାଚୀନ ସନାତନ ଧର୍ମକୁ ବଞ୍ଚାଇରଖିଥିଲା । ଓଡ଼ିଶାର ସାମନ୍ତ ନରପତିମାନେ ଦେଶପ୍ରତି ଓ ଜାତିପ୍ରତି ବିଶ୍ୱାସଘାତକତା କରି ମୁସଲମାନମାନଙ୍କ ସହିତ ବନ୍ଧୁତା କରିବା ଫଳରେହିଁ ଓଡ଼ିଶା ଶେଷରେ ତା'ର ସ୍ୱାଧୀନତା ହରାଇଲା ।

ଅନେକେ ଜାତୀୟତାକୁ (Patriotism) ଭାରତର ଏକ ଆଧୁନିକ ଭାବ ବୋଲି ପ୍ରମାଣ କରିବାକୁ ଚେଷ୍ଟାକରନ୍ତି; କିନ୍ତୁ ଓଡ଼ିଶାର କୃଷକ-କବି ସାରଳା ଦାସଙ୍କ (୧୪-୧୫ଶ ଶତାବ୍ଦୀ) ମହାଭାରତ ପୃଷ୍ଠାରେ ଆମେ ମାତୃରାଷ୍ଟ୍ର ପାଇଁ ଏକ ଉଷ୍ମ ସନ୍ଦିତମାନ ଜାତୀୟତା ଦେଖିବାକୁ ପାଉ । ଆମେ ପରେ ଦେଖିବା, କିପରି ଏହି କୃଷକ-କବି ତାଙ୍କ ସମସାମୟିକ ଉପରିବର୍ଣ୍ଣିତ ଓଡ଼ିଆ ସମ୍ରାଟ୍ କପିଳେନ୍ଦ୍ରଦେବଙ୍କ ସାମରିକ ଅଭିଯାନଗୁଡ଼ିକର ପ୍ରତ୍ୟକ୍ଷ ଅଭିଜ୍ଞତାକୁ ପାଣ୍ଡବମାନଙ୍କ ଦିଗ୍‌ବିଜୟ ବର୍ଣ୍ଣନାରେ ଚତୁର ଭାବରେ ବ୍ୟବହୃତ କରିଯାଇଛନ୍ତି । ୧୭-୧୮ଶ ଶତାବ୍ଦୀର ବ୍ରଜନାଥ ବଡ଼ଯେନାଙ୍କ 'ସମରତରଙ୍ଗ' ନାନା ସାମୟିକ ବାଲାଡ୍ ଓ ନିକଟରେ ପ୍ରକାଶିତ ପଦ୍ୟ-ଲିଖିତ ସାମରିକ ଗ୍ରନ୍ଥ 'ପାଇକଖେଦା' ପ୍ରମାଣିତ କରେ ଯେ ଓଡ଼ିଆମାନଙ୍କର ସାମରିକ ଐତିହ୍ୟ ସେମାନଙ୍କର ସାହିତ୍ୟରେ ମଧ କିପରି ସ୍ପଷ୍ଟ ପ୍ରତିବିମ୍ବିତ ।

**ଅଶୋକ-ଅନୁଶାସନ –**

ଆଧୁନିକ ଓଡ଼ିଶା ରାଜ୍ୟର ସୀମା ଭିତରେହିଁ ଅଶୋକଙ୍କର ବିଶିଷ୍ଟ କଳିଙ୍ଗାନୁଶାସନ ଦେଖିବାକୁ ମିଳେ; ଯାହା ନିଃସନ୍ଦେହ ଭାବରେ ପ୍ରମାଣିତ କରୁଛି ଯେ, ଏବର ଓଡ଼ିଶାହିଁ ପ୍ରାଚୀନ କଳିଙ୍ଗ [୧] ଏବଂ ଏବର ଓଡ଼ିଶାହିଁ ସେହି କଳିଙ୍ଗ, ଯାହାକୁ ଅଶୋକ ଜୟ କରିଥିଲେ ଓ ଯେଉଁ 'ନବବିଜିତ' ରାଜ୍ୟର ସୁଶାସନ ପାଇଁ ସେ ବିଶେଷ ଅନୁଶାସନସବୁ ଖୋଳାଇ ରଖିଥିଲେ । ସେ ଯାହାହେଉ, ଅଶୋକଙ୍କ କଳିଙ୍ଗ ବିଜୟର ଧର୍ମୀୟ ଓ ରାଜନୈତିକ ପ୍ରଭାବ ଯାହା ଥାଉ, ତା'ର ଯେ ସାହିତ୍ୟିକ ମୂଲ୍ୟ ଅଛି, ତାହା ଆମେ ସାଧାରଣତଃ ବିଚାରକୁ

(୧) ଖୁବ୍ କମ୍ ଓଡ଼ିଆ ବୋଧହୁଏ ଜାଣନ୍ତି ଯେ ଆନ୍ଧ୍ରମାନେ ଓଡ଼ିଶା କଳିଙ୍ଗ ବୋଲି ଆଦୌ ସ୍ୱୀକାର କରନ୍ତିନାହିଁ । ସେମାନେ କହନ୍ତି ଯେ ସେହିମାନେହିଁ ଐତିହାସିକ 'କଳିଙ୍ଗ' । ଥରେ ଦିଲ୍ଲୀରେ ବସିଥିବା ଏକ ସାହିତ୍ୟିକ ପ୍ରଦର୍ଶନୀରେ ଲେଖକ-ଲିଖିତ ଇଂରାଜୀ ପୁସ୍ତିକା, ଯେଉଁଥିରେ ଓଡ଼ିଆ ସାହିତ୍ୟର ଇତିହାସ ସଂକ୍ଷିପ୍ତ ଭାବରେ କୁହାଯିବା ଭିତରେ କଳିଙ୍ଗ ଓଡ଼ିଶା ବୋଲି କୁହାଯାଇଥିଲା, ସେ ପୁସ୍ତିକାର ପ୍ରଚାର ଆନ୍ଧ୍ରମାନେ କର୍ତ୍ତୃପକ୍ଷଙ୍କୁ କୁହାବୋଲା କରି ବନ୍ଦ କରିଦେଇଥିଲେ । ଅବଶ୍ୟ ଏପରି ପୁସ୍ତିକା ଅନ୍ୟ କେଉଁ ଭାଷାପକ୍ଷରୁ ପ୍ରକାଶିତ ହୋଇନଥିଲା, ଏହା ଏକ କାରଣ ହେଲା; କିନ୍ତୁ ତା'ପୂର୍ବରୁ ଆନ୍ଧ୍ର ବନ୍ଧୁଗଣ ଓଡ଼ିଶା ଷ୍ଟଲ୍‌କୁ ଚାଲେଞ୍ଜ କଲେ ବୋଲି ଶୁଣିଲି । (ଏ ପାଦଟୀକା ମୂଳଗ୍ରନ୍ଥରେ ନାହିଁ; କିନ୍ତୁ ତାତ୍ପର୍ଯ୍ୟ ସ୍ପଷ୍ଟ ।)

ଆଣୁନା । ଅଶୋକ-ଅନୁଶାସନକୁହିଁ ଓଡ଼ିଶା ମାଟିରେ ପ୍ରାଚୀନତମ ମନୁଷ୍ୟଭାଷା ପ୍ରକାଶ ବୋଲି ଧରିବାକୁ ହେବ । ଧରିବାକୁ ହେବ ପୁଣି ଯେ, ଅଶୋକ-ଅନୁଶାସନର ଭାଷାହିଁ ଦୁଇହଜାର ବର୍ଷ ତଳେ ଏ ଅଞ୍ଚଳର କଥିତ ବା ବୋଧଗମ୍ୟ ଭାଷା ଥିଲା । ଓଡ଼ିଆ ଭାଷାର ଆଲୋଚନାବେଳେ ଆମେ ତେଣୁ ଏହାର ବିସ୍ତୃତ ଆଲୋଚନା କରିବା ।

## ଓଡ଼ିଆ ସାହିତ୍ୟରେ ସୈନ୍ଧବ ପ୍ରଭାବ –

ପ୍ରାଚୀନ କଳିଙ୍ଗ ବା ଉତ୍କଳମାନଙ୍କର ସମୁଦ୍ରଯାତ୍ରା, ସାମୁଦ୍ରିକ ବାଣିଜ୍ୟ, ଦକ୍ଷିଣ ବର୍ମା ଓ ଇଣ୍ଡୋନେସିଆ ଅଞ୍ଚଳରେ ସାଗରପାରି ବସତି ଥିବା ମଧ୍ୟ ସୁପ୍ରମାଣିତ । ଜାଭା ଦ୍ୱୀପର ପ୍ରସିଦ୍ଧ ବରୋବୁଦୁର ମନ୍ଦିରର ନିର୍ମାତା ଶୈଳେନ୍ଦ୍ର ରାଜବଂଶ କେନ୍ଦ୍ର ଓଡ଼ିଶାର କଙ୍ଗୋଦ ରାଜ୍ୟର ଶୈଳୋଦ୍‌ଭବ ବଂଶଜାତ ବୋଲି ଧରାଯାଉଛି ।[୧] ଖୁବ୍ ସମ୍ଭବତଃ ଏହି ରାଜବଂଶ ଦକ୍ଷିଣରୁ ଗଙ୍ଗ ଓ ଉତ୍ତରରୁ ଭୌମମାନଙ୍କର ଏକଶତବର୍ଷବ୍ୟାପୀ ସଣ୍ଡୁଆଶି ଆକ୍ରମଣଫଳରେ ବିପର୍ଯ୍ୟୟଗ୍ରସ୍ତ ହୋଇପଡ଼ିଲେ ଓ ଶେଷ ପନ୍ଥାରୂପେ ବୋଧହୁଏ ସପ୍ତମ ଶତାବ୍ଦୀକୁ, ପୂର୍ବରୁ ଦକ୍ଷିଣ-ପଶ୍ଚିମ ଏସିଆରେ ବସତି କରୁଥିବା କଙ୍ଗୋଦୀମାନଙ୍କ ଆହ୍ୱାନରେ ଏକାବେଳକେ ଏ ଦେଶ ପରିତ୍ୟାଗ କରି ସେଠାରେ ଯାଇ ରାଜତ୍ୱ ଆରମ୍ଭକଲେ । ସପ୍ତମ ଶତାବ୍ଦୀ ପରେ ଓଡ଼ିଶାର ଇତିହାସରେ ନାହିଁ କଙ୍ଗୋଦର ନା ଶୈଳୋଦ୍‌ଭବ ବଂଶର ନାମୋଚ୍ଚାରଣ ଶୁଣାଯାଉଛି । ପ୍ରାୟ ଠିକ୍ ସେହି କାଳରେ ସାଗରପାରିରେ ଆମେ ଶୈଳେନ୍ଦ୍ରମାନଙ୍କର ନାମ ଶୁଣୁଛେ । ତେଣୁ ଓଡ଼ିଶାରୁ ଦିନେ ଏକ ରାଜକୀୟ ସମୁଦ୍ର-ଯାତ୍ରା ଘଟିଥିଲା ବୋଲି ବିଶ୍ୱାସ ହେଉଛି ଏବଂ ଆମେ ପରେ ଦେଖିବା ଯେ ଓଡ଼ିଶାର ଲୋକ-କାହାଣୀ ଓ କାବ୍ୟ-କବିତାରେ ସାମୁଦ୍ରିକ ଅଭିଯାନସବୁ ଏକ ବିଚାରଣୀୟ ଭୂମିକା ବହନ କରିଛନ୍ତି ।

## ଅଧଃପତନ ଓ ପୁନରୁତ୍‌ଥାନ –

ପ୍ରାୟ ଷୋଡ଼ଶ ଶତାବ୍ଦୀରୁ ଓଡ଼ିଆମାନେ ସେମାନଙ୍କର ସାମୁଦ୍ରିକ ବାଣିଜ୍ୟ ହରାଇଲେ । ନଦୀମୁହାଣମାନ ପଟୁ ପଡ଼ି ପୋତିହୋଇଆସିବା ହେଲା ଏହାର ମୁଖ୍ୟ କାରଣ । ପ୍ରାୟ

(୧) ''ପୃଥିବୀବିଖ୍ୟାତ ବରୋବୁଦୁରର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ସହିତ ଏହି ଭୁବନେଶ୍ୱର ମନ୍ଦିରମାନଙ୍କର ସାଦୃଶ୍ୟ ପ୍ରମାଣ କରେଇବାକୁ ଯିବାର କୌଣସି ଆବଶ୍ୟକତା ଅଛି ବୋଲି ମନେହେଉନାହିଁ । ଏ ସାଦୃଶ୍ୟ କାକତାଳୀୟ ନୁହେଁ । ଅଷ୍ଟମରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଜାଭା ଶାସନ କରୁଥିବା ଶୈଳେନ୍ଦ୍ର ସମ୍ରାଟ୍‌ମାନେ ଓଡ଼ିଶାର ମହାଯାନ, ଶୈବ ଓ ବୈଷ୍ଣବ ଐତିହ୍ୟମାନଙ୍କୁ ପୂରାପୂରି ଜାଭା ମାଟିରେ ରୋପଣ କରିନେଇଥିବାରୁହିଁ ଏପରି ସାଦୃଶ୍ୟର ଉଦ୍ଭବ ହୋଇଛି । ଏହି ଶୈଳେନ୍ଦ୍ରମାନେ କଳିଙ୍ଗରେ ଭୌମମାନଙ୍କ ପୂର୍ବରୁ ଶାସନ କରୁଥିବା ଶୈଳୋଦ୍‌ଭବମାନଙ୍କର ଏକ ଶାଖା ବୋଲି ସୁପ୍ରମାଣିତ । ଭୁବନେଶ୍ୱରର ଶିଶିରେଶ୍ୱର ଓ ଜାଭାର ବରୋବୁଦୁର, ଉଭୟଙ୍କର କାଳ ଯେ ଅଷ୍ଟମ ଶତାବ୍ଦୀ ତାହା ସେମାନଙ୍କର ସାଦୃଶ୍ୟକୁ ଚିରକାଳ ପାଇଁ ସାବ୍ୟସ୍ତ କରି ରଖୁଛି ।'' ଉଇଲିୟମ୍ ଉଇଲେଟ୍‌ସ୍, ଇଲଷ୍ଟ୍ରେଟେଡ୍ ଉଇକ୍‌ଲି ଅଫ୍ ଇଣ୍ଡିଆ, ଜୁଲାଇ ୧୨, ୧୯୫୯ ।

ସେହି ସମୟକୁ ସେମାନେ ସେମାନଙ୍କର ରାଷ୍ଟ୍ରୀୟ ସ୍ୱାଧୀନତା ମଧ୍ୟ ହରାଇଲେ । କ୍ରମେ ପ୍ରାଚୀନ ଐତିହାସିକ ଓଡ଼ିଆ ରାଜ୍ୟ ଚାରିଖଣ୍ଡରେ ବିଭକ୍ତ ହୋଇଗଲା ଓ ପ୍ରତି ଖଣ୍ଡକୁ ପାର୍ଶ୍ୱବର୍ତ୍ତୀ ପଡ଼ୋଶୀ ରାଜ୍ୟର ଲାଞ୍ଜରେ ବାନ୍ଧିଦିଆଗଲା । ଓଡ଼ିଆମାନେ ପ୍ରାୟ ଚାରିଶହ ବର୍ଷ ଏହି ପ୍ରକାର ଯୁଗ୍ମ ଆର୍ଥିକ ଓ ରାଜନୈତିକ ଦୁର୍ଦ୍ଦଶା ଭିତରେ ବଞ୍ଚିଆସିଲେ । ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାରେ ଯାଇ ଓଡ଼ିଆ ଜାତିର ଏହି ସୁଦୀର୍ଘ ଜାତୀୟ ଅମା-ନିଶାର ଅବସାନ ହୋଇଛି ବୋଲି କୁହାଯିବ; କାରଣ ଏତେ ଶହ ବର୍ଷର ବିଖଣ୍ଡିତ ଜୀବନ ପରେ, ଓଡ଼ିଆମାନେ ବର୍ତ୍ତମାନ ଅନ୍ତତଃ ଗୋଟିଏ ଶାସନରେ ରହିବାର ସୁବିଧା ପାଇଲେ । ଓଡ଼ିଶାର ପ୍ରାକୃତିକ ସମ୍ପଦ ବ୍ୟାପକ ଓ ଅସାଧାରଣ; କିନ୍ତୁ ତାହାର ଯଥାର୍ଥ ବିନିଯୋଗ ହୋଇପାରିନାହିଁ । ସେହି ଲକ୍ଷ୍ୟରେ ହୀରାକୁଦ, ମାଛକୁଣ୍ଡ ଓ ରାଉରକେଲାଠାରେ ବିରାଟ ଯୋଜନାସବୁ ଆରମ୍ଭ ହୋଇଗଲାଣି । ଆଶା କରାଯାଉଛି ଯେ, ଓଡ଼ିଶା ପୁଣି ତା'ର ଆର୍ଥିକ ଓ ରାଜନୈତିକ ଗୌରବ ଶୀଘ୍ର ଫେରିପାଇବ ।

□□□

## ଦ୍ୱିତୀୟ ଅଧ୍ୟାୟ

# ଓଡ଼ିଆ ସାହିତ୍ୟର ସାଧାରଣ ଚରିତ୍ର

ଓଡ଼ିଆ ସାହିତ୍ୟକୁ ସମଗ୍ର ଭାବରେ ଦେଖିଲେ ଆମେ ଏହି ପ୍ରୀତିପ୍ରଦ ନିଷ୍କର୍ଷରେ ପହଞ୍ଚିବା ଯେ ମୁଖ୍ୟତଃ ଏହା ଏକ ଜନତାର ସାହିତ୍ୟ । ଅନ୍ୟ ସକଳ ଆଧୁନିକ ଭାରତୀୟ ଭାଷାମାନଙ୍କରେ, ସାହିତ୍ୟର ଆଦ୍ୟସ୍ରଷ୍ଟାଗଣ ସଂସ୍କୃତ ଭାଷାରେ ବିଦଗ୍ଧ ପଣ୍ଡିତ ଥିଲେ । ବିଚାରା ଓଡ଼ିଆ ସାହିତ୍ୟ ତା'ର ଭାରତୀୟ ଭଗିନୀମାନଙ୍କ ପରି ଉପରୁ ରାଜକୀୟ ପୃଷ୍ଠପୋଷକତା ବା ସଂସ୍କୃତ ବିଦ୍ୱାନ୍‌ମାନଙ୍କର ଶ୍ରଦ୍ଧାରୂପୀ ମୂଳ-ପତନ କୌଣସିଟି ନେଇ ଗର୍ବ କରିନପାରେ । ଭୌଗୋଳିକ ପରିସ୍ଥିତିଯୋଗୁଁ ଭାରତର ଅନ୍ୟ ଅଂଶଠାରୁ ପ୍ରାୟଶଃ ବିଚ୍ଛିନ୍ନ ଜୀବନ ଯାପନ କରିଆସୁଥିବା ଏକ ଅବହେଳିତ ଜାତିର ଅନ୍ତର୍ଗତ ସ୍ୱପ୍ନ, ଆକାଙ୍‌କ୍ଷା ଓ ଅନୁଭବ ସକଳ କିପରି ତାର ନିଜର ଦୈନିକ ଗୃହ-କଥିତ ଭାଷାରେହିଁ ପ୍ରକାଶ ପାଇବ, ତାହା ଦେଖିବାର ଦୁର୍ବାର ଅନ୍ତର୍ନିହିତ ପ୍ରେରଣାରୁହିଁ ଓଡ଼ିଆ ସାହିତ୍ୟର ଜନ୍ମ ଓ ଅଭିବୃଦ୍ଧି ଲାଭ କରିଆସିଛି ବୋଲି କହିବାକୁ ହେବ । ଅନ୍ୟ ଭାରତୀୟ ଭାଷାମାନଙ୍କରେ ରାଜା ମହାରାଜାମାନଙ୍କର ଉତ୍ସାହ ଓ ଆନୁକୂଲ୍ୟ ଯେଉଁ ପରିମାଣରେ ଲେଖକମାନଙ୍କ ଉପରେ ବର୍ଷିତ ହୋଇଛି, ଓଡ଼ିଆ ଭାଷାରେ ସେପରି ହୋଇନାହିଁ । କେବଳ ମଧ୍ୟଯୁଗ ଓ ଆଧୁନିକ ଯୁଗର ମୁଷ୍ଟିମେୟ କେତୋଟି ଦୃଷ୍ଟାନ୍ତ ଛାଡ଼ିଦେଲେ, ଓଡ଼ିଆ ଭାଷାରେ ବେଶି କିଛି ପ୍ରସିଦ୍ଧ ଗ୍ରନ୍ଥ ମୁକୁଟମଣ୍ଡିତମାନଙ୍କୁ ଉତ୍ସୃଷ୍ଟ ହୋଇଥିବାର ଜଣାନାହିଁ । ଓଡ଼ିଆ ସାହିତ୍ୟର ପ୍ରାରମ୍ଭିକ ଅବସ୍ଥାରେ କେବଳ ନୁହେଁ, ସର୍ବ ଅବସ୍ଥାରେ ଓଡ଼ିଆ କବି ଓ ଲେଖକବର୍ଗ ପ୍ରାୟଶଃ ହୋଇଆସିଛନ୍ତି ଜନତାର ଲୋକ । ମୋଟାମୋଟି ଭାବରେ ଅଧିକାଂଶ ନିଜ ଭାଷା ଓଡ଼ିଆ ଛଡ଼ା ଅନ୍ୟ କେଉଁ ଭାଷା, ଏପରିକି ସଂସ୍କୃତ ଭାଷା ସହିତ ଅପରିଚିତ ଥିଲେ ବୋଲି କୁହାଯାଇପାରେ ।[୧] ଭାରତର ସମସ୍ତ ଆଧୁନିକ ଭାରତୀୟ ଭାଷାମାନଙ୍କ ଭିତରେ ଓଡ଼ିଆ ତେଣୁ ସବୁଠାରୁ ଗଣତାନ୍ତ୍ରିକ ବୋଲି କୁହାଯାଇପାରେ – କାରଣ ଏହା ମୋଟରେ ଜନତା ପାଇଁ ଓ ଜନତାଦ୍ୱାରା ସୃଷ୍ଟ ଓ ପରିପୁଷ୍ଟ । ଏ ଭାଷା ଆଜି ଯେ ସଗର୍ବରେ ଦଣ୍ଡାୟମାନ, ତାହା ନିଶ୍ଚୟ ଶାସକବର୍ଗର ଉତ୍ସାହ ଓ ଆନୁକୂଲ୍ୟ ଯୋଗୁଁ ନୁହେଁ; ବରଂ

---

(୧) ଏହି ବାକ୍ୟଟିର କଦର୍ଥ କରି ନିନ୍ଦୁକ ବନ୍ଧୁଗଣ ଏହି ପୁସ୍ତକ ଉପରେ ବେଶ୍ କୃପା ବର୍ଷଣ କରିଛନ୍ତି । ଓଡ଼ିଆ ଲେଖକମାନଙ୍କର ଗୌରବାର୍ଥେହିଁ ଏହା କୁହାଯାଇଛି । କାରଣ ଯିଏ ପ୍ରକୃତ ସ୍ରଷ୍ଟା ତାହାର ବହୁ ଭାଷାବିଦ୍ ହେବାର କୌଣସି ଆବଶ୍ୟକତା ନାହିଁ । ସେକ୍‌ସପିଅର୍ କେତେଟା ଭାଷା ଜାଣିଥିଲେ ? ଜୀବିତ ଓଡ଼ିଆ ଲେଖକଙ୍କ ପ୍ରତି ମଧ୍ୟ ଏହା ପ୍ରୟୋଗ କରି ସତ୍ୟତା ଦେଖାଯାଉ । ଯତ୍ର-ତତ୍ର ଉଦ୍ଭଟ ସଂସ୍କୃତ ଶ୍ଲୋକ କେତେଟା ଗାଇ କେହି କେହି ଓଡ଼ିଆ ଅଧ୍ୟାପକ

ସେମାନଙ୍କର ବିରାଗ, ଅଶ୍ରଦ୍ଧା, ନିରପେକ୍ଷତା ଓ କୌଣସି କୌଣସି କାଳରେ ରୀତିମତ ବିଲୋପସାଧନର ପ୍ରଚେଷ୍ଟା ସହେ ବୋଲି ଦମ୍ଭର ସହିତ କୁହାଯାଇପାରେ । ଅନ୍ୟ କୌଣସି ଭାରତୀୟ ଭାଷାକୁ କେବଳ ନିଜର ସ୍ଥିତି ପାଇଁ ଏପରି କଠିନ ସଂଗ୍ରାମ କରିବାକୁ ପଡ଼ିନାହିଁ, ଯେପରି ଘଟିଛି ବିଚ୍ଚାରା ଓଡ଼ିଆ ଭାଷାର ଭାଗ୍ୟରେ । କୌଣସି ଭାରତୀୟ ଭାଷା ମଧ୍ୟ ପ୍ରତିବେଶୀ ଭଗିନୀ-ଭାଷାମାନଙ୍କ ଦୌରାତ୍ମ୍ୟ ଫଳରେ ନିଜର ଅଧିକାର-ଭୂମି ଏପରି ବିସ୍ତୃତ ଭାବରେ ହରାଇ ନାହିଁ, ଯେପରି ହରାଇଛି ବିଚ୍ଚାରା ଓଡ଼ିଆ ଭାଷା ।

କିନ୍ତୁ ଓଡ଼ିଆ ଜାତିର ଅନ୍ତର୍ନିହିତ ସଂଯୋଜନ ଗୁଣ ଫଳରେ ପଣ୍ଡିତ ଓ ଶାସକଶ୍ରେଣୀର ଏପ୍ରକାର ଧାରାବାହିକ ଅଶ୍ରଦ୍ଧା; ଉଦାସୀନତା ଓ ଚାରିପଟୁ ଅତ୍ୟାଚାର ଭୋଗି ମଧ୍ୟ ଓଡ଼ିଆ ଭାଷା, ତା'ର ଚରିତ୍ରର ଏକ ସାର୍ବଜନୀନ ଭାବ ବିସ୍ମୟଜନକ ଭାବରେ ବଞ୍ଚାଇ ରଖିଆସିଛି । ଏ ଭାଷା ଓଡ଼ିଶା ମାଟିର ଲୋକଙ୍କଦ୍ୱାରା ତ ସମୃଦ୍ଧ ହୋଇଛି, ଯାହା ହେବାର କଥା; କିନ୍ତୁ ସମୃଦ୍ଧ ହୋଇଛି ମଧ୍ୟ ବଙ୍ଗାଳୀ, ତେଲୁଗୁ, ମରାଠା, ରୋହିଲାଖଣ୍ଡୀ, ମୁସଲମାନ ଓ ଆଦିବାସୀମାନଙ୍କଦ୍ୱାରା । ପୂର୍ବ ଅଧ୍ୟାୟରେ ଯେପରି କୁହାଯାଇଛି, ଓଡ଼ିଆ ହୁଏତ ଉତ୍ତର-ଭାରତୀୟ ଭାଷାଗୋଷ୍ଠୀରେ ଏକମାତ୍ର ଭାଷା ଯେଉଁଥିରେ ଆଦିବାସୀ ଏକ ଅର୍ଥପୂର୍ଣ୍ଣ ଅଂଶ ଗ୍ରହଣ କରିଛି । ଅନ୍ଧ କନ୍ଧକବି ଭୀମ ଭୋଇଙ୍କର ଏକେଶ୍ୱରବାଦୀ ଭଜନାବଳି ଏ ଭାଷାର ଅମୂଲ୍ୟ ସଂପର୍କ । ଓଡ଼ିଆ କାବ୍ୟ-କବିତାର ଆଦିବାସୀ ଚରିତ୍ରରୂପେ ଦେଖାଦେଇଛି ଓଡ଼ିଆ ସାହିତ୍ୟର ପ୍ରାୟ ଆଦ୍ୟରୁ । କେଉଟ ଭୀମା (ଭୀମା ଧୀବର) ଏକ ଗାଥା (କପଟପାଶା) ଛାଡ଼ିଯାଇଛି, ଯାହା ଲେଖି ଯେକୌଣସି ସଂସ୍କୃତ ପଣ୍ଡିତ ଗର୍ବ କରିପାରନ୍ତେ ଓ ଯାହା ଏପର୍ଯ୍ୟନ୍ତ ଓଡ଼ିଶାର ପ୍ରତି ଗ୍ରାମରେ ଆଗ୍ରହ ସହିତ ଗୀତହୁଏ । ବଢ଼େଇ ଯଦୁମଣି ଏ ଦେଶରେ ପ୍ରତ୍ୟୁତ୍ପନ୍ନ ରସିକତା ପାଇଁ ଓ ବିଦଗ୍ଧ କାବ୍ୟରଚକ ଭାବରେ ଏକ କାହାଣୀରେ ପରିଣତ ହୋଇଯାଇଛନ୍ତି । ଓଡ଼ିଶାର ଅଗଣିତ କୃଷକସମାଜର, ଅର୍ଥାତ୍ ଐତିହାସିକ 'ଓଡ୍ର'ମାନଙ୍କର ଏ ଭାଷାକୁ ଦାନର ପରିମାଣ ମଧ୍ୟ ନଗଣ୍ୟ ନୁହେଁ ।

ଓଡ଼ିଆ ସାହିତ୍ୟର ଗଣତାନ୍ତ୍ରିକ ଚରିତ୍ରର ଆଉ ଏକ ପ୍ରମାଦ ପୁଣି ଏହି ଯେ, ଆମେ ଏହି ସାହିତ୍ୟର ଏକ କାଳରୁ କାଳାନ୍ତରମାନଙ୍କୁ ଗଲାବେଳେ ଦେଖିବା ଭିନ୍ନ ଭିନ୍ନ ରାଜବଂଶ ଅଧୀନରେ ଓଡ଼ିଆ ଜାତି ଏକ ଧର୍ମବିଶ୍ୱାସରୁ ଅନ୍ୟ ଧର୍ମବିଶ୍ୱାସକୁ ବରଣ କରିବା ସାଥେ ସାଥେ ଏହି ଜାତୀୟ ସାହିତ୍ୟ ସେହି ବିଶ୍ୱାସରେ ଅନୁରଞ୍ଜିତ ହୋଇଉଠିଛି । ପ୍ରଥମେ ଆସିଛି ଜୈନଧର୍ମ, ତା'ପରେ ବୌଦ୍ଧ, ତା'ପରେ ଶିବ-ଶକ୍ତି-ଆରାଧନା ଓ ସବା ପଛରେ ପହଞ୍ଚିଛି ବୈଷ୍ଣବଧର୍ମ; କିନ୍ତୁ ପଛରେ ଆସିଲେ ମଧ୍ୟ, ବୈଷ୍ଣବଧର୍ମହିଁ ରାମ ଓ କୃଷ୍ଣୋପାସନାର

---

ଯଦି ତାଳି ପାଉଥିବେ, ତେବେ ତାହା ପାଲାବାଲିଆ ଗୌରବ; ପଣ୍ଡିତଜନ ବା ସ୍ରଷ୍ଟାର ଗୌରବ ନୁହେଁ । ଓଡ଼ିଆ ଲେଖକର ବିଚାର ହେବ ତାଙ୍କର ଓଡ଼ିଆ ଭାଷାକୁ ଦେଇଯାଇଥିବା ଦାନ ଉପରେ । ସେ ଆଉ ବାରଟା କି କୋଡ଼ିଏଟା ଭାଷା ଜାଣିଥିବା ସହିତ ଆମର ସଂପର୍କ ନାହିଁ; ବରଂ ସେ ବହୁଭାଷାବିତ୍ ହୋଇ ଉପାଦାନସବୁ ସଂଗ୍ରହ କରିଥିବାଟା ତାଙ୍କର ରଚନାର ଗୁରୁତ୍ୱ କମେଇବ; ଯେପରି ଚେଷ୍ଟା ହୋଇଆସିଚି ରାଧାନାଥଙ୍କ କାବ୍ୟମାନଙ୍କ ସଂପର୍କରେ ।

ଦ୍ୱୈତ ଶାଖା ଦେଇ, ଓଡ଼ିଶାର ଜାତୀୟ ଚେତନାରେ ଗଭୀରତମ ଓ ବ୍ୟାପକତମ ମୁଦ୍ରା ରଖିଯାଇଛି । ତଳେଇ ଦେଖିଲେ ଆମେ ଅନୁଭବ କରିବା ଯେ ଓଡ଼ିଆମାନଙ୍କର ସ୍ୱତନ୍ତ୍ର, ନିଜସ୍ୱ, ମୌଳିକ ଧର୍ମବିଶ୍ୱାସ ହେଉଛି ବୌଦ୍ଧ-ବୈଦିକ-ମିଶ୍ରିତ ଏକ ମହାଯାନୀ ବୈଷ୍ଣବତତ୍ତ୍ୱ; ଯାହା ସାହିତ୍ୟରେ କେବଳ ନୁହେଁ, ସେମାନଙ୍କର ଭାସ୍କର୍ଯ୍ୟ, ସ୍ଥାପତ୍ୟ ଓ ନାନାଭାବରେ ତାଙ୍କ ଜାତୀୟ ଚରିତ୍ରରେ ମଧ୍ୟ ପ୍ରକାଶ ପାଇଆସିଛି ।

**ଗ୍ରାମମାନଙ୍କରେ ତାଳପତ୍ର ପୋଥି ପୁସ୍ତକାଳୟ –**

ଛାପାଖାନାର ଆବିର୍ଭାବ ପୂର୍ବରୁ ସମଗ୍ର ଓଡ଼ିଆ ସାହିତ୍ୟ ତାଳପତ୍ରାଶ୍ରିତ ଥିଲା । ଏକନିଷ୍ଠ ଲେଖନକାରମାନଙ୍କର ମାସ-ମାସ ବା ବର୍ଷ-ବର୍ଷବ୍ୟାପୀ ଅବିଚ୍ଛଳ ସାଧନାବଳରେ ସମଗ୍ର ସାହିତ୍ୟଟି ତାଳପତ୍ରରେହିଁ ଲିପିବଦ୍ଧ ହୋଇ ରହୁଥିଲା । ମୋର ମନେଅଛି, ପିଲାଦିନେ ଆମ ଗ୍ରାମରେ ଜଣେ ଧର୍ମପ୍ରାଣ କୃଷକ ତାର ସମଗ୍ର ମଧ୍ୟାହ୍ନଟିକୁ ବର୍ଷ-ବର୍ଷ-ଧରି ବିନିଯୁକ୍ତ କରୁଥିଲା କେବଳ ଗୋଟିଏ ଓଡ଼ିଆ ଗ୍ରନ୍ଥକୁ ତାଳପତ୍ରରେ ଉତାରିବାରେ । ସେ ଗ୍ରନ୍ଥଟି ହେଉଛି ଜଗନ୍ନାଥ ଦାସଙ୍କ ଭାଗବତ; ଯାହା ଥିଲା ସେହି କୃଷକ-ଜୀବନର ଆଧ୍ୟାତ୍ମିକ ସମୁଦ୍ରଯାତ୍ରାରେ ଧ୍ରୁବତାରା । ସେତେବେଳକୁ ମୋର ମନେହେଉଛି, ଆମ ଗ୍ରାମରେ ମଧ୍ୟ ଛାପା ଭାଗବତ ଦେଖାଦେଲାଣି; କିନ୍ତୁ ସେହି ଧର୍ମନିଷ୍ଠ ସରଳ କୃଷକ ଦୃଷ୍ଟିରେ କାଗଜ ସେପର୍ଯ୍ୟନ୍ତ ଥିଲା ଇତର । ମ୍ଲେଚ୍ଛ ଯନ୍ତ୍ର-ଉଦ୍ଭୂତ କାଗଜରେ ତାଳପତ୍ରର ସେହି ପୌରାଣିକ ପୁଣ୍ୟ ସୌରଭ ଆସିବ କାହୁଁ ?

ତାଳପତ୍ର ପୋଥି-ଲାଇବ୍ରେରି ଏବେ ବି ଓଡ଼ିଶାର ପ୍ରତି ଗ୍ରାମରେ ଆମେ ପାଇବା । ଗ୍ରାମର ପ୍ରାଚୀନ ସଂଗତିସଂପନ୍ନ ଗୃହସ୍ଥର ଏପରି ଏକ ପୁସ୍ତକାଳୟ ଥିଲା ଗୌରବାବହ ବଂଶାଧିକାର । ପୁରୁଷାନୁକ୍ରମେ ଏହିସବୁ ପୁସ୍ତକାଳୟର ଅଭିବୃଦ୍ଧି ମଧ୍ୟ ଘଟିଚାଲିଥିଲା । ଆଧୁନିକ ଗବେଷକ ଓ ଅନୁଶୀଳକମାନେ ଏହି ବିରାଟ ବନ୍ଦୀଭୂତ ସାହିତ୍ୟର ସୀମା ମାତ୍ର ଏପର୍ଯ୍ୟନ୍ତ ସ୍ପର୍ଶ କରିଛନ୍ତି ବୋଲି କହିବାକୁ ହେବ । ଏବର ଗ୍ରାମ୍ୟଲୋକେ, ଘୋର ମୂର୍ଖତାରେ ଏହି ପ୍ରାଚୀନ ଜ୍ଞାନାଧାରଗୁଡ଼ିକୁ 'ଗୁପ୍ତ'ବିଦ୍ୟାରୂପେ ଦେଖୁଛନ୍ତି ଓ ହାତଛଡ଼ା କରିବାକୁ ସାଧାରଣତଃ ଏକାନ୍ତ ନାରାଜ ।

ସମଗ୍ର ଓଡ଼ିଶାର ପ୍ରାୟ ପ୍ରତି ଗ୍ରାମ ଓ ପ୍ରତି ଗ୍ରାମର ମୁଖ୍ୟ ଗୃହସ୍ଥର ଘରେ ଏ ପ୍ରକାର ପୁସ୍ତକାଳୟମାନଙ୍କର ବ୍ୟାପକ ଅବସ୍ଥିତି ଓ ସେସବୁ ପୁଣି ବିଶେଷ ଭାବରେ ଦେଶର କୃଷକସମାଜଦ୍ୱାରାହିଁ ପରିପୋଷିତ – ଏହା ଓଡ଼ିଆ ସାହିତ୍ୟର ମନୋହର ସମ୍ମାନନୀୟ ଗଣତାନ୍ତ୍ରିକତାର ଆଉ ଏକ ଅଧିକ ପ୍ରମାଣ ନୁହେଁ କି ?

ଆଧୁନିକ ଭାରତୀୟ ଭାଷାମାନଙ୍କ ମାନଦଣ୍ଡରେ ଓଡ଼ିଆ ସାହିତ୍ୟକୁ ବେଶ୍ ବିସ୍ତୃତ-ବିପୁଳ ବୋଲି ମଧ୍ୟ କୁହାଯାଇପାରିବ । ଓଡ଼ିଆରେ ବିଭିନ୍ନ ରାମାୟଣର ସଂଖ୍ୟା ଅନ୍ତତଃ ତିରିଶଟି ଓ ମହାଭାରତର ସଂଖ୍ୟା ପ୍ରାୟ ପାଞ୍ଚଟି । ଭାରତୀୟ ସକଳ ପୁରାଣ ଓଡ଼ିଆ ଭାଷାରେ ଲିଖିତ ଅଛି; ପୁଣି ଏସବୁର ଓଡ଼ିଆ ଲେଖକମାନେ ନିଜର କଳ୍ପନାକୁ ଏପରି

ସ୍ୱାଧୀନତା ଦେଇଛନ୍ତି ଯେ ଏଗୁଡ଼ିକର ମୂଳ ସଂସ୍କୃତ ସହିତ ସମ୍ପର୍କ ନାମମାତ୍ର କହିଲେ ଚଳେ । ମଧ୍ୟଯୁଗର ଆଳଙ୍କାରିକ କାବ୍ୟକବିତା ମଧ୍ୟ ବେଶ୍ ପ୍ରଚୁର । ମୁଖ୍ୟତଃ ଚମତ୍କାର ଗାଳ୍ପିକ ଉପାଦାନ ଯୋଗୁଁହିଁ ପୁରାଣସବୁ ଜନତାର ଚିତ୍ତ-ଲୋକ ଅଧିକାର କରି ବସିଥିଲାବେଳେ ଭାଷାଗତ ସୌନ୍ଦର୍ଯ୍ୟ ପୁଣି ଶବ୍ଦ ଓ ଅର୍ଥର ଚିତ୍ରିତ ମଧୁର ସମ୍ବନ୍ଧ ଦେଇ ପ୍ରେମମୂଳକ କାହାଣୀସବୁର ବର୍ଣ୍ଣନା କରିଥିବାରୁ, ମଧ୍ୟଯୁଗର ଆଳଙ୍କାରିକ କାବ୍ୟ-କବିତା ଓଡ଼ିଶୀ ଜନତାର ଏକାଧାରରେ ଆନନ୍ଦ ଓ ପିପାସା ହୋଇରହିଛି । ଏକ ସ୍ୱତନ୍ତ୍ର ସଂସାରରୂପୀ ସମଗ୍ର ଏହି ପ୍ରାଚୀନ ଓଡ଼ିଆ ସାହିତ୍ୟ ଗ୍ରାମ୍ୟ ଜନତାର ଚିତ୍ତଲୋକକୁ ସମ୍ୟକ୍ ମୁଦିତ ଓ ଆଲୋକିତ କରିବାପାଇଁ ଏକାନ୍ତ ଉପଯୁକ୍ତ । ଏହି ସାହିତ୍ୟ ଗ୍ରାମ୍ୟଜନର ବୌଦ୍ଧିକ ସ୍ତର ଓ ପ୍ରକୃତି ସହିତ ସାମଞ୍ଜସ୍ୟ ରକ୍ଷାକରିହିଁ ନିଜକୁ ଗଢ଼ିଥିଲା । ଗ୍ରାମ୍ୟଜନର ଚିତ୍ତ ଯେଉଁ ପ୍ରକାରର ଅଳୀକତା, ଯେଉଁପରି ନୀତି ନିର୍ଦ୍ଦେଶ ଓ ଯେଉଁପରି ଧର୍ମ ଚାହେଁ ବା ବୁଝିପାରିବାର ଆଶା, ଏ ସାହିତ୍ୟ ସେଇଆହିଁ ପରିବେଷଣ କରିଆସିଛି । ଅଧିକନ୍ତୁ, ଜନଚିତ୍ତର ନିଗୂଢ଼ ସୌନ୍ଦର୍ଯ୍ୟ-ପିପାସା ମଧ୍ୟ ଏ ସାହିତ୍ୟ ପ୍ରଚୁର ପରିମାଣରେ ଶାନ୍ତ କରେ । ଏହି ପ୍ରାଚୀନ ସାହିତ୍ୟ ଜନଚିତ୍ତକୁ ଯେଉଁ ପରିମାଣରେ ନିଜର କରିପାରିଥିଲା ବା ଏବେ ମଧ୍ୟ କରୁଛି, ତଥାକଥିତ ଆଧୁନିକ ସାହିତ୍ୟ ତାହା କରିବାରେ ବ୍ୟର୍ଥ ହୋଇଛି । ବସ୍ତୁତଃ, ପ୍ରାଚୀନ ଓଡ଼ିଆ କବିମାନଙ୍କ ପରି ପ୍ରକୃତ 'ପିପୁଲ୍ସ ପୋଏଟ୍ସ୍' ବା 'ଗଣକବି' ଆମେ ଦ୍ୱିତୀୟ ପାଇବା ନାହିଁ । ଛାପାଖାନା, ଦୈନିକ କାଗଜ, ପତ୍ରପତ୍ରିକା ଓ ବ୍ୟାପକ ବିଚ୍ଛୁରିତ ସ୍କୁଲ କଲେଜ ସୁବିଧା ପାଇ ମଧ୍ୟ ଆଧୁନିକ ସାହିତ୍ୟ ଓଡ଼ିଆ କୃଷକର ଘରଭିତରେ ପଶିପାରିନାହିଁ । ଓଡ଼ିଆ ଜାତିର ସକଳ ଉତ୍‌ଥାନ ପତନ ଭିତରଦେଇ ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ କେନ୍ଦ୍ରାବାଦକ ନାଥଯୋଗୀ, ଗୋଟିପୁଅ ନାଚ଼ଦଳ, ଯାତ୍ରାବାଲା, ପାଲାବାଲା ଓ ଦାଶ୍‌କାଠିଆ ପ୍ରଭୃତି ହିଁ ପ୍ରାଚୀନ ସାହିତ୍ୟକୁ ଏପର୍ଯ୍ୟନ୍ତ ବଞ୍ଚାଇ ରଖିଛନ୍ତି ଏବଂ ସତ କହିଲେ ଆଧୁନିକ ମୁଦ୍ରାଯନ୍ତ୍ର ଆଧୁନିକ ସାହିତ୍ୟ ଅପେକ୍ଷା ପ୍ରାଚୀନ ସାହିତ୍ୟର ପ୍ରସାରରେହିଁ ଅଧିକ ସାହାଯ୍ୟ କରିଛି । ଏପର୍ଯ୍ୟନ୍ତ ଓଡ଼ିଆରେ ସବୁଠାରୁ ବେଶି ବିକ୍ରିତ ପୁସ୍ତକ ହେଉଛନ୍ତି ପୁରାଣ, ସାରଳାଙ୍କ ମହାଭାରତ ବା ବିଶ୍ୱନାଥ ଖୁଣ୍ଟିଆଙ୍କ ସଙ୍ଗୀତମୟ ବିଚିତ୍ର ରାମାୟଣ ।

□□□

# ତୃତୀୟ ଅଧ୍ୟାୟ

# ଓଡ଼ିଆ ଭାଷା

## ଜନ୍ମ ଓ ଶୈଶବ –

ବଙ୍ଗାଳୀ ଓ ଆସାମୀ ପରି ଓଡ଼ିଆ ଜର୍ମାନ୍-ଭାରତୀୟ ଭାଷାଗୋଷ୍ଠୀର ମାଗଧୀ ଉପଗୋଷ୍ଠୀ ଅନ୍ତର୍ଗତ । ଭାରତର ଉତ୍ତର-ପୂର୍ବ ସମୁଦ୍ର-ଉପକୂଳ ଧରି ପ୍ରଲମ୍ବିତ ଏକ ବିସ୍ତୃତ ଭୂଖଣ୍ଡରେ ବିକୀର୍ଣ୍ଣ ଓଡ଼ିଆ ଭାଷାଭାଷୀଙ୍କ ସଂଖ୍ୟା ହେବ ପ୍ରାୟ ଦୁଇକୋଟି । ଏହି ଭାଷାର ପ୍ରଭାବଭୂମିର ଉତ୍ତରକୁ ଭୋଜପୁରୀ ଓ ଦକ୍ଷିଣକୁ ତେଲୁଗୁ ଭାଷାର ଅଞ୍ଚଳ ଲାଗିଛି । ପଶ୍ଚିମକୁ ଓଡ଼ିଆ ଭାଷା ତା'ର ଏବର ରାଜନୈତିକ ମାନଚିତ୍ର ରେଖାର ଆରପଟେ ବହୁଦୂର ଯାଇ ଭାତ୍ରୀ, ହାଲବୀ ଓ ଛତିଶଗଡ଼ୀ ପ୍ରଭୃତି ମଧ୍ୟପ୍ରଦେଶର କଥିତ ଭାଷାମାନଙ୍କ ସହିତ ମିଶିଯାଇଛି । ବିହାର ରାଜ୍ୟ ଅନ୍ତର୍ଗତ ସିଂହଭୂମି ଜିଲ୍ଲା ପରି, ଏପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଓଡ଼ିଆଭାଷୀ ଲୋକ ରାଜନୈତିକ ଓଡ଼ିଶାର ବାହାରେ ବିଚ୍ଛିନ୍ନ ହୋଇ ରହିଛନ୍ତି । ଓଡ଼ିଆ ଭାଷାଭାଷୀଙ୍କ ପ୍ରାକୃତିକ ଭୂଖଣ୍ଡର ବିସ୍ତୃତି ପ୍ରାୟ ୮୦ ହଜାର ବର୍ଗମାଇଲ ହେବ । ଓଡ଼ିଆ ସାହିତ୍ୟର ସାଧାରଣ ବୈଶିଷ୍ଟ୍ୟର କଥା ପୂର୍ବ ଅଧ୍ୟାୟରେ କୁହାଯାଇଛି । ଓଡ଼ିଆ ଭାଷାର ବୈଶିଷ୍ଟ୍ୟ କ'ଣ ବା ଆସାମୀ, ହିନ୍ଦୀ, ବଙ୍ଗଳା ପ୍ରଭୃତି ଭଗିନୀ-ଭାଷାମାନଙ୍କଠାରୁ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ କ'ଣ, ତାହା କେବଳ ଏହି ସମସ୍ତ ଭାରତୀୟ ଭାଷା ନୁହେଁ, ବୈଦିକ ଓ ପର-ବୈଦିକ ସଂସ୍କୃତ ଭାଷା ଜାଣିଥିବା ଜଣେ ବୈଦେଶିକଙ୍କଠାରୁ ଶୁଣିବା ଅଧିକ ଯୁକ୍ତିଯୁକ୍ତ ହେବ ବୋଲି ତାଙ୍କରି ମତହିଁ ଏଠାରେ ଦିଆଯାଉଛି –

''ଓଡ଼ିଆ ଭାଷାର ବ୍ୟାକରଣ ବଙ୍ଗଳା ଭାଷାର ବ୍ୟାକରଣ ପରି; ତେବେ ଓଡ଼ିଆର ବୈଶିଷ୍ଟ୍ୟ ଏହି ଯେ, ଏ ଭାଷା ଯେପରି ଉଚ୍ଚାରିତ ସେହିପରି ଲିଖିତ ହୁଏ, ଯାହା ବଙ୍ଗଳାରେ ହୁଏନାହିଁ । ବଙ୍ଗଳାରେ ବହୁ ବ୍ୟଞ୍ଜନ ଉଚ୍ଚାରଣ ଅସ୍ପଷ୍ଟ ଓ ବହୁ ସ୍ୱରବର୍ଣ୍ଣ କେବଳ ଆଂଶିକ ଉଚ୍ଚାରିତ ହୁଏ । ତେଣୁ ବୈଦେଶିକମାନଙ୍କ ପକ୍ଷରେ ବଙ୍ଗଳା ଶିଖିବା ଏତେ କଷ୍ଟକର ହୋଇଥାଏ; କିନ୍ତୁ ଓଡ଼ିଆରେ ପ୍ରତ୍ୟେକ ପଦର ପ୍ରତ୍ୟେକ ଅକ୍ଷର ସ୍ପଷ୍ଟ ଉଚ୍ଚାରିତ ହୋଇଥାଏ । ଓଡ଼ିଆର କ୍ରିୟା-କଳାପ ଏକାଧାରରେ ସରଳ ଓ ସଂପୂର୍ଣ୍ଣ । ଓଡ଼ିଆ କ୍ରିୟାର କାଳସଂଖ୍ୟା ବହୁତ; ଅଥଚ ତାହା ଯୁକ୍ତିଯୁକ୍ତ ଭାବରେ ସଜ୍ଜିତ ଓ ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତକାଳସୂଚକ କ୍ରିୟା-ବିଶେଷ୍ୟମାନଙ୍କରେ ତାର ପ୍ରଭାବ ଲକ୍ଷଣୀୟ । ଲାଟିନ୍‌ରେ ଯାହା କେବଳହିଁ ଭାବ-ବଚନ ଦ୍ୱାରା ପ୍ରକାଶ କରାଯାଇପାରିବ, ଜଣେ ଓଡ଼ିଆ ସେହି ଭାବ ପ୍ରକାଶ କରିବାପାଇଁ ଯଥାଯୋଗ୍ୟ କ୍ରିୟା-ବିଶେଷ୍ୟଟିକୁ ଯଥାଯୋଗ୍ୟ କାରକ ବିଭକ୍ତି ଦେଇ ରୂପ କରିନେବ । ଓଡ଼ିଆରେ ଏହି କାରଣରୁ

'ଇନ୍‌ଫିନିଟିଭ୍' ବା ଭାବ-ବଚନ ନାହିଁ । ଏହା ସୂଚିତ କରୁଛି ଯେ, ଓଡ଼ିଆ ବ୍ୟାକରଣର ବିବର୍ତ୍ତନ ହୁଏତ ସାଧୁ (Classical)– ସଂସ୍କୃତର ବ୍ୟାକରଣଠାରୁ ଅଧିକ ପୁରାତନ ଏବଂ ଇଣ୍ଡୋୟୁରୋପୀୟ ଭାଷାଗୋଷ୍ଠୀରେ ଏହାର ସାମ୍ୟ ଆମେ ପାଇବା ହୁଏତ କେବଳ ବୈଦିକ ସଂସ୍କୃତରେ, ଯେତେବେଳେ ସେ ଭାଷା କଥିତ ଭାଷା ଥିଲା । × × × ଓଡ଼ିଆ ଭାଷା ଯେପରି ଭାବରେ ଉପ-ଭାଷା-ଶୂନ୍ୟ, ତାହା ମଧ ଭାଷାରାଜ୍ୟରେ ଏକ ଅସାଧାରଣ ବ୍ୟାପାର । ଉତ୍ତରଭାରତରେ ଯେଉଁ ପ୍ରବାଦ ଅଛି ଯେ ପ୍ରତି ଦଶ କୋଶରେ ଭାଷା ବଦଳେ ଓ ଯାହା ଅନେକାଂଶରେ ସତ୍ୟ, ତାହା କେବଳ ମାତ୍ର ଓଡ଼ିଶାରେ ସତ୍ୟ ନୁହେଁ । ଉଦାହରଣସ୍ୱରୂପ କଟକ, ପୁରୀ, ବାଲେଶ୍ୱର ସମେତ, ତଥାକଥିତ ସମଗ୍ର ମୋଗଲବନ୍ଦୀ ଅଞ୍ଚଳରେ ଏକକାର ଭାଷାହିଁ ଆମେ ଦେଖିବାକୁ ପାଇବା । × × × ଓଡ଼ିଆ ଭାଷାର ଏକମାତ୍ର ପ୍ରତିବନ୍ଧକ ହେଉଛି ତାର ଦୁଷ୍କର ଓ ଅକୁଶଳ ଲିପିମାଳା । ମୂଳତଃ ଏହା ଦେବନାଗରୀ ଲିପି । କିନ୍ତୁ ଲିପିକାରମାନେ ଏକ ଲୌହଲେଖନୀରେ ତାଳପତ୍ର ଉପରେ ଏହା ଲେଖିଥାନ୍ତି । ତାଳପତ୍ର ଅତ୍ୟନ୍ତ ଭଙ୍ଗୁର । ଲମ୍ବାବାଗରେ ତାଳପତ୍ରରେ ଗାର ପଡ଼ିଲେ ତାହା ଚିରିଯାଏ । ତେଣୁ ଦେବନାଗରୀ ଅକ୍ଷରମାଳାର ଉପରିସ୍ଥ ଦୀର୍ଘ ଲମ୍ବ ମାତ୍ରା ଓଡ଼ିଆରେ ସମ୍ଭବ ହୋଇନାହିଁ । ଓଡ଼ିଆ ଲିପିକାର କେବଳ ଏହି ଭଙ୍ଗୁର ମାଧ୍ୟମ ଯୋଗୁଁ, ଦେବନାଗରୀର ସିଧା ଗାର ପରିବର୍ତ୍ତରେ ପ୍ରତି ଅକ୍ଷର ଉପରେ ଗୋଟିଏ ଗୋଟିଏ ବକ୍ରରେଖା ଟାଣିବାକୁ ବାଧ୍ୟହୁଏ ।'' ('ଏଲ୍. ଏସ୍. ଏସ୍. ଓମା'ଲୀ, ପୁରୀ ଜିଲ୍ଲା ଗେଜେଟିୟର, ପୃ. – ୭୫-୭୬) ।

**ଓଡ଼ିଆ ଲିପି –**

ଏହି ଇଂରେଜ ପଣ୍ଡିତ ଓଡ଼ିଆ ଲିପିର ଆରମ୍ଭ କିପରି ହେଲା, ତାହାହିଁ କହିଛନ୍ତି । କେବଳ ଜାତକ ଛଡ଼ା ଅନ୍ୟ କୌଣସି କର୍ମ ପାଇଁ ଓଡ଼ିଶାରେ ଏବେ କିଏ ଆଉ ଲେଖନ ତାଳପତ୍ର ବ୍ୟବହାର କରନ୍ତି ନାହିଁ; କିନ୍ତୁ ଆମକୁ ମାନିବାକୁ ହେବ ଯେ, ଓଡ଼ିଆ ଲିପି ସେହି ତାଳପତ୍ରୀୟ ହୋଇ ଏପର୍ଯ୍ୟନ୍ତ ରହିଛି ଓ ସେହି କାରଣରୁ ରହିଛି ଦୁଷ୍କର ଓ ଦୁର୍ଲେଖ୍ୟ । ଓଡ଼ିଆ ଲିପି, ଆଜିର ମୁଦ୍ରାକରର ସତ୍ୟରେ ଏକ ଦୁଃସ୍ୱପ୍ନ ଏବଂ ଭାରତୀୟ ଭଗିନୀ-ଭାଷା ଓ ବୈଦେଶିକ ଭାଷାମାନଙ୍କ ତୁଳନାରେ ଓଡ଼ିଆ ସାହିତ୍ୟର ପ୍ରସାରରେ ଏହା ହୋଇଛି ମୁଖ୍ୟ ପ୍ରତିବନ୍ଧକ ।

କିନ୍ତୁ ଏତିକି ସାନ୍ତ୍ୱନା ଯେ, ଓଡ଼ିଶାର ସାମଗ୍ରିକ ସଂସ୍କୃତିରେ ଆମେ ଯେଉଁ ସାଂଯୋଗିକ ଗୁଣ ଦେଖୁଁ, ତାହା ମଧ ଦେଖୁ ଓଡ଼ିଆ ଲିପିରେ । ଏହି ଲିପିରେ ମଧ ଦକ୍ଷିଣ-ଭାରତ ଓ ଉତ୍ତର-ଭାରତ ଏକତ୍ରାବସ୍ଥାନ କରିଛନ୍ତି । ବ୍ରାହ୍ମୀ ଲିପିରୁ ଖ୍ରୀ:ପୂ: ୩ୟ ଶତାବ୍ଦୀରେ ଜନ୍ମଗ୍ରହଣ କରି କ୍ରମପରିବର୍ତ୍ତନ ଫଳରେ ଓଡ଼ିଆ ଲିପି ଆଜିର ରୂପ ଧାରଣ କରିଛି । ଦକ୍ଷିଣର କଳିଙ୍ଗଲିପି ଓ ଉତ୍ତରର ଗୁପ୍ତଲିପିର ପାରସ୍ପରିକ ସହଯୋଗ ଏହି ପରିବର୍ତ୍ତନ ଆଣିଛି । ଓଡ଼ିଆ ଲିପିର ସଂସ୍କାର ନେଇ ଗତ ଷାଠିଏ ବର୍ଷ ଧରି ଓଡ଼ିଶାରେ ଊଣା-ଅଧିକ

ଆନ୍ଦୋଳନ ଚାଲିଆସିଛି; କିନ୍ତୁ ପ୍ରାଚୀନ ଲିପିର ସଂସ୍କାର ବା ଅନ୍ୟ ଏକ କୁଶଳ ଲିପିର ପ୍ରବର୍ତ୍ତନ ଏପର୍ଯ୍ୟନ୍ତ ସମ୍ଭବ ହୋଇପାରିନାହିଁ ଓଡ଼ିଆମାନଙ୍କର ଆଞ୍ଚଳିକ ଜାତୀୟତା ଓ ରକ୍ଷଣଶୀଳ ଭାବଯୋଗୁଁ ।

**ଭାଷାର ଆରମ୍ଭ –**

ଆମେ ଭାରତର ପ୍ରାଚୀନ ଗ୍ରନ୍ଥମାନଙ୍କରେ ଓଡ୍ର ନାମକ ଏକ ବିଶିଷ୍ଟ ଜନଗୋଷ୍ଠୀର ଅସ୍ତିତ୍ୱ ଯେପରି ଜାଣିବାକୁ ପାଉଁ, ସେହିପରି ମଧ୍ୟ ଜାଣିବାକୁ ପାଉଁ ଏକ ବିଶିଷ୍ଟ ଓଡ୍ରଭାଷାର । ପ୍ରାଚୀନ ଗ୍ରନ୍ଥମାନଙ୍କରେ, ଏବର ଓଡ଼ିଶା ଅଞ୍ଚଳରେ ଦିନେ ପରିବ୍ୟାପ୍ତ ଥିବା କଳିଙ୍ଗ ବା ଉତ୍କଳ ଗୋଷ୍ଠୀମାନଙ୍କର କୌଣସି ସ୍ୱତନ୍ତ୍ର ଭାଷା ଥିବାର ଉଲ୍ଲେଖ କାହିଁ ହେଲେ ନାହିଁ । ତେଣୁ ପ୍ରାଚୀନ ଓଡ୍ରଭାଷାକୁହିଁ ଆମେ ଏହି ଅଞ୍ଚଳର ଆଦିମ ଓ ମୌଳିକ ଭାଷା ବୋଲି ଧରିନେବାକୁ ହେବ । ଭରତଙ୍କ ନାଟ୍ୟଶାସ୍ତ୍ରରେ ଓଡ୍ର କିନ୍ତୁ ଏକ ଭାଷା ନୁହେଁ, ତାହା ବିଭାଷା ବୋଲି ବର୍ଣ୍ଣିତ । ବିଭାଷା, ଆର୍ଯ୍ୟଭାଷା ସଂସ୍କୃତର ଆଞ୍ଚଳିକ ଆଦିମ ଭାଷା ସହିତ ମିଶ୍ରଣ ଫଳରେ ସମ୍ଭୂତ ଉପଭାଷାକୁ କୁହାଯାଏ । ସଂସ୍କୃତଭାଷୀ ଆର୍ଯ୍ୟ ଔପନିବେଶକ-ମାନଙ୍କର ଏ ଅଞ୍ଚଳର ଆଦିମ ଗୋଷ୍ଠୀ ଓଡ୍ର ଓ ଶବରମାନଙ୍କ ସହିତ ମିଶାମିଶି ଫଳରେ, ସେମାନଙ୍କର ଭାଷାରେ କିଛି ବିକୃତି ଘଟିଥିବା ଅସମ୍ଭବ ନୁହେଁ ଓ ତାହାହିଁ ଥିଲା ଦିନେ ଭରତଙ୍କ 'ଓଡ୍ର ବିଭାଷା' । ସେ ଯାହାହେଉ, କେବଳ ମାର୍କଣ୍ଡ ଦାସଙ୍କ ପ୍ରାକୃତସର୍ବସ୍ୱରେ ପଦେମାତ୍ର ଉଦାହରଣ ଛଡ଼ା, ଭରତଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ ଓଡ୍ର 'ବିଭାଷା'ର ଅନ୍ୟ ପରିଚୟ ଆମେ କାହିଁ ଆଉ ପାଉନାହୁଁ; କିନ୍ତୁ ପ୍ରାକୃତସର୍ବସ୍ୱର ସେହି ପଦକ ଦୃଷ୍ଟାନ୍ତ ମଧ୍ୟ ଭରତଙ୍କ ନାଟ୍ୟଶାସ୍ତ୍ରରେ ବିଭାଷାର ସଂଜ୍ଞାକୁ ନିଖୁଣ ଭାବରେ ପ୍ରତିପାଦିତ କରୁଛି । ସେ ପଦକୁ ଆମେ 'ଆଞ୍ଚଳିକ ସଂସ୍କୃତ' କହିପାରୁ, ଯେଉଁ ବିଶେଷଣଟି ଆଧୁନିକ ଓଡ଼ିଆଭାଷା ପ୍ରତି ମଧ୍ୟ ସମଗ୍ର ଭାବରେ ପ୍ରଯୁଜ୍ୟ ହୋଇପାରେ । ଓଡ୍ରମାନଙ୍କ ପରି, ଓଡ଼ିଶୀ ଜାତୀୟ ଜୀବନକୁ ସମଭାବରେ ପ୍ରଭାବିତ କରିଥିବା ଅନ୍ୟ ଆଦିମଗୋଷ୍ଠୀ ହେଉଛନ୍ତି ଶବର; କିନ୍ତୁ ଏହି ଶବରମାନେ ଓଡ଼ିଶାରେ ଏପର୍ଯ୍ୟନ୍ତ ଆଦିମ ଅବସ୍ଥାରେ ରହିଛନ୍ତି । ସେମାନଙ୍କର ସାହିତ୍ୟ ଦୂରେ ଥାଉ, ତାଙ୍କ ଭାଷା ଏପର୍ଯ୍ୟନ୍ତ ଲିପି-ହୀନ; କିନ୍ତୁ ସମକାଳୀନ ଓଡ୍ର ବା ଉଡ୍ର ଇତିମଧ୍ୟରେ ପରିପୂର୍ଣ୍ଣ ଭାବରେ 'ଆର୍ଯ୍ୟୀଭୂତ' ହୋଇଯାଇଛି କହିଲେ ଚଳେ । ସେହି ପ୍ରାଚୀନ ଓଡ୍ର ବା ଏବର ଓଡ଼ିଶାର ପରିବ୍ୟାପ୍ତ କୃଷକ-ସମାଜର ଓଡ଼ଚଷା ବା ସାଧାରଣ 'ଚଷା'ର କଥାକୁହିଁ ଭାଷାବିତ୍‌ମାନେ ଖାଣ୍ଟି ଓଡ଼ିଆ ବୋଲି ଧରୁଛନ୍ତି । ନିରକ୍ଷର ଓଡ଼ିଆ ଚଷା ତା'ର ଐତିହ୍ୟ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଚେତନ ଥିଲେହେଁ, ଏହା ସତ୍ୟ ଯେ ତା'ର ସେହି ନିରକ୍ଷର ଓ ସେହି କାରଣରୁ ଅବିମିଶ୍ର ବାଣୀରେହିଁ ଆମେ ଓଡ଼ିଶାର ଗାଁ-ଦାଣ୍ଡ, ଗାଁ-ଧାନବିଲ, ଗାଁ-ପୋଖରୀତୁଠ ଓ ଗାଁ-ତୋଟାର ସୌରଭ ପାଉଁ ଏବଂ ଧରିନେବା ଅଯୌକ୍ତିକ ବୋଧହେଉନାହିଁ ଯେ, ହୁଏତ ସେହି ଆଦିମ ଓଡ୍ରଗୋଷ୍ଠୀର ନିଜସ୍ୱ ଭାଷାହିଁ ଏହି ଅଞ୍ଚଳକୁ ଦେଇପାରିଛି ତାହାର ଅନନ୍ୟ ଜାତୀୟ ଓ ସାଂସ୍କୃତିକ ବ୍ୟକ୍ତିତ୍ୱ ।

ଅତି ପ୍ରାଚୀନ କାଳରେହିଁ ଆର୍ଯ୍ୟମାନେ ଓଡ଼ିଶା ମାଟିରେ ଆସି ବସତି ସ୍ଥାପନ କରିଥିବା ଜଣାଯାଉଛି; କାରଣ ମହାଭାରତବେଳକୁ ମଧ୍ୟ ଓଡ଼ିଶା ନାନା ତୀର୍ଥାନ୍ୱିତା ହୋଇ 'ପୁଣ୍ୟଭୂମି' ହୋଇସାରିଲାଣି । ମହାଭାରତର ବହୁ ପୂର୍ବରୁ ଓ ଦୀର୍ଘକାଳ ଧରି ବ୍ରାହ୍ମଣ-ସଂସ୍କୃତି ଦୃଢ଼ ସ୍ଥାପିତ ନହୋଇଥିଲେ ଏହା ସମ୍ଭବ ହୋଇନଥାନ୍ତା । ଉକ୍ତ ସଂସ୍କୃତିସମ୍ପନ୍ନ ବ୍ରାହ୍ମଣର ସାଧାରଣ ଜନର ଭାଷା ପ୍ରତି ତାଚ୍ଛଲ୍ୟ ସୁବିଦିତ । ସମଗ୍ର ପ୍ରାଚୀନକାଳରେ, କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତରେ, ଠିକ୍ ଏବପରି, ସାଧାରଣ ନାଗରିକ ନିରକ୍ଷର ହିଁ ଥିଲା । ତେଣୁ 'ପ୍ରାକୃତସର୍ବସ୍ୱ'ରେ ଦୃଷ୍ଟାନ୍ତସ୍ୱରୂପ ଦିଆଯାଇଥିବା ପଦେ କବିତା ଛଡ଼ା, ସେକାଳର ଓଡ଼ିଶାର ସାଧାରଣ କଥିତଭାଷା, ଭରତଙ୍କ 'ଓଡ୍ର ବିଭାଷା'ର ଯେକୌଣସି ସାହିତ୍ୟ ଆମକୁ ଆଜି ମିଳୁନାହିଁ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ଖୁବ୍ ସମ୍ଭବତଃ, ଏହି 'ବିଭାଷା' ଆର୍ଯ୍ୟ ଔପନିବେଶିକ ଓ ସ୍ଥାନୀୟ ଆଦିବାସୀ-ଗୋଷ୍ଠୀମାନଙ୍କ ଭିତରେ ଭାବବିନିମୟର ଏକ କଥିତ ମାଧ୍ୟମ ମାତ୍ରହିଁ ଥିଲା ।

**ଅଶୋକ-ଅନୁଶାସନ –**

ପତିତପାବନ ବୁଦ୍ଧଙ୍କର ଉଦାର ଓ ମାନବିକ ଗଣ-ଧର୍ମର ମହିମାର ଏହି ଦୃଢ଼ ସାକ୍ଷ୍ୟ ଯେ ତାଙ୍କର 'ଧମ୍ମ'-ନିହିତ କରୁଣାର ଉଷ୍ଣ ସ୍ପର୍ଶରେହିଁ ଭାରତର ସାଧାରଣ ଜନତା ପ୍ରଥମ କରି ବାଣୀବନ୍ତ ହୋଇପାରିଲେ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀବେଳକୁ ଓଡ଼ିଶା ମାଟିରେ କେତେକ ଐତିହାସିକ ବାଣୀ ଉଚ୍ଚାରିତ ହେବାର ଦେଖୁ; ଯାହାର ବାହନୀଭୂତ ଭାଷାକୁ ପୂର୍ବର ଓଡ୍ର ବିଭାଷା ନକହି କୁହାଯାଇଥାଏ ମାଗଧୀ-ପ୍ରାକୃତ । ପଣ୍ଡିତମାନଙ୍କ ମତରେ ଏହି ମାଗଧୀ-ପ୍ରାକୃତ ବା କେବଳ ପ୍ରାକୃତରୁହିଁ ଆସାମୀ, ବଙ୍ଗଳା, ଓଡ଼ିଆ ପ୍ରଭୃତି ପୂର୍ବ-ଭାରତୀୟ ଆଧୁନିକ ଭାଷାଗୋଷ୍ଠୀର ଉଦ୍ଭବ ହୋଇଛି । ଓଡ଼ିଶାର ଧଉଳି-ଶୈଳଗାତ୍ରରେ ଓ ଜଉଗଡ଼ର ଶୈଳ-ସ୍ତମ୍ଭରେ ଖୋଦିତ ଓ ଓଡ଼ିଶାର ସ୍ଥାନୀୟ ସମସ୍ୟା ଅନୁରଞ୍ଜିତ ସମ୍ରାଟ୍ ଅଶୋକଙ୍କର ଏହି ଅନୁଶାସନାବଳିର ଭାଷା, ପ୍ରକୃତରେ ସ୍ଥାନୀୟ ଓଡ୍ର-ବିଭାଷାଠାରୁ ଭିନ୍ନ, ଏକ ସଂପୂର୍ଣ୍ଣ ବୈଦେଶିକ ଭାଷା ଥିଲା କି ନାହିଁ ତାହା ସ୍ପଷ୍ଟ କହିନହେଲେ ମଧ୍ୟ ନିଶ୍ଚିତ ଯେ ଓଡ୍ର ଓ କଳିଙ୍ଗ-ଅଧ୍ୟୁଷିତ ଏହି ପୁରାଣ ଭୂମିରେ, ଅଶୋକ-ଅନୁଶାସନ-ଯୁଗ୍ମ ଯେ ଏପର୍ଯ୍ୟନ୍ତ ରହିଆସିଥିବା ଆଦ୍ୟତମ ସାହିତ୍ୟିକପ୍ରକାଶ, ଏଥିରେ କୌଣସି ସନ୍ଦେହ ନାହିଁ ।

ଧଉଳି ଓ ଜଉଗଡ଼ରେ ଅବସ୍ଥିତ ଦୁଇଟିଯାକ ଅନୁଶାସନ, କଳିଙ୍ଗର ନାଗରିକ ଓ କଳିଙ୍ଗ ସୀମାନ୍ତର ଉପଜାତିମାନଙ୍କ ପ୍ରତି ସମ୍ମାନ ଓ ସହାନୁଭୂତିଶୀଳ ସୁବ୍ୟବହାର କରିବାପାଇଁ ରାଜକର୍ମଚାରୀମାନଙ୍କ ପ୍ରତି ସ୍ୱୟଂ ସମ୍ରାଟ୍ ଅଶୋକଙ୍କର ଆଦେଶ; କିନ୍ତୁ ଏହି ରାଜକୀୟ ଆଦେଶ ଭିତରେହିଁ ଆମେ ଦେଖିପାରିବା ଏକ ବାଣୀ, ଯାହା ସମଗ୍ର ମାନବ ଇତିହାସରେ ଦେଖାଦେଇଥିବା ସକଳ ନରପତି ଓ ରାଷ୍ଟ୍ରପତିମାନଙ୍କର ଅଗଣିତ, ଅକଳିତ ବାଣୀପ୍ରବାହ ମଧ୍ୟରେ ନିଃସନ୍ଦେହରୂପେ ମହତ୍ତମ ଓ ଉଦାରତମ ବାକ୍ୟ । ''ସକଳ ମନୁଷ୍ୟ ମୋର ସନ୍ତାନ । ମୋର ନିଜ ପୁତ୍ରକନ୍ୟାମାନଙ୍କ ପରି ସେମାନଙ୍କର ମଧ୍ୟ ଇହ ଓ ପର,

ଉଭୟଲୋକରେ ମୁଁ ସେମାନଙ୍କର କଲ୍ୟାଣହିଁ କାମନା କରେ ।'' – ଏହି ବାଣୀ ଏକପକ୍ଷରେ ମହାନୁଭବ ସମ୍ରାଟ୍ ଅଶୋକଙ୍କ ସମଗ୍ର ବ୍ୟକ୍ତିତ୍ୱ ସହିତ ଯେପରି ସାମଞ୍ଜସ୍ୟ-ଯୁକ୍ତ, ସେହିପରି ସୁସଙ୍ଗତ ଓଡ଼ିଶାର ଚିରନ୍ତନ ବିଶ୍ୱଜନୀନ ସଂସ୍କୃତି ପ୍ରତି । ସେହି ବିଶ୍ୱବିଖ୍ୟାତ ଭାରତୀୟ ନରପତିଙ୍କ ମୁଖରୁ ଏ ପ୍ରକାର ଉଦାରତମ ବାକ୍ୟ ତାଙ୍କର ସେତେବେଳର ସୁବିସ୍ତୃତ ସାମ୍ରାଜ୍ୟ ମଧ୍ୟରେ କେବଳ ଏକ ସ୍ଥାନ, ଏହି ଓଡ଼ିଶା ମାଟିରେ ଯେ ଉଚ୍ଚାରିତ ହୋଇଥିଲା, ସେଥିଲାଗି ଗର୍ବାନୁଭବ କରାଯିବାର କଥା । ଅଶୋକଙ୍କର ଏହି ଉଦାରବାଣୀ ଆମେ ଆଜି ପୁରୀ ଜଗନ୍ନାଥ ମନ୍ଦିରଦ୍ୱାରରେ ମଧ୍ୟ ଅପୂର୍ବ ସୁସଙ୍ଗତି ରକ୍ଷାକରି ଖୋଦିତ କରିପାରୁ । ସକଳ ହିନ୍ଦୁତୀର୍ଥ ମଧ୍ୟରେ କେବଳ ଯାହାର ଦ୍ୱାର ଡେଇଁଲାମାତ୍ରେ ସକଳ ଗୋଷ୍ଠୀ, ସକଳ ଜାତିର ଭିନ୍ନତା ଉଭେଇଯାଇ, ସମସ୍ତେ ଏକ ଅଭିନ୍ନ ମାନବିକତାରେ ଏକ ହୋଇଉଠନ୍ତି, ଉତ୍କଳର ସେହି ଉଦାର ଜଗନ୍ନାଥଧାମହିଁ ଏହି ମହାନ୍ ଅଶୋକ-ବାଣୀ ଧାରଣର ଏକମାତ୍ର ଯୋଗ୍ୟ ଅନୁଷ୍ଠାନ, ସମଗ୍ର ଭାରତରେ ।

**ଖାରବେଳ-ଶିଳାଲିପି –**

ଅଶୋକଙ୍କ ମୃତ୍ୟୁ ପରେ ପରେ କଳିଙ୍ଗ (ଓଡ଼ିଶା) ପୁଣି ସ୍ୱାଧୀନ ରାଜ୍ୟ ହୋଇଉଠିଲା ଏବଂ ମାତ୍ର ଦେଢ଼ଶ' ବର୍ଷ ପରେ ଆମେ କଳିଙ୍ଗରେ ଖାରବେଳ ନାମଧାରୀ ଏକ ଦିଗ୍‌ବିଜୟୀ ସମ୍ରାଟ୍‌ଙ୍କର ଆବିର୍ଭାବ ଦେଖୁ; ଯାହାଙ୍କର ସାମ୍ରାଜ୍ୟ ଏହି ଭାରତୀୟ ଉପମହାଦେଶର ଦୁଇ-ତୃତୀୟାଂଶକୁ ମାଡ଼ିଯାଇଥିଲା । ଆମେ ଏବେ ବୋଧକରୁଛୁଁ ଯେ, ଏହି ସମ୍ରାଟ୍ ଖାରବେଳ ଥିଲେ ଜଣେ ଅତ୍ୟନ୍ତ ଜାତୀୟତାଭାବାପନ୍ନ କଳିଙ୍ଗୀ ବା 'ଡ଼ିଆ । ମଗଧରାଜ ଅଶୋକଙ୍କର କଳିଙ୍ଗ-ବିଜୟର ପ୍ରତିଶୋଧ ନେବାପାଇଁ ସେ କେବଳ ମଗଧ ଆକ୍ରମଣ ଓ ଜୟ କରିଥିଲେ ନୁହେଁ, ସେ ଏହି ପ୍ରତିଶୋଧମୂଳକ ବିଜୟର ଗାଥା ମଧ୍ୟ ଉତ୍‌କୀର୍ଣ୍ଣ କରିଗଲେ ଉଦୟଗିରି କଟିଦେଶସ୍ଥ ଗୁହାର ଛାତରେ; ଯାହା ଏକ ସିଧା ରେଖାରେ ଦୁଇକ୍ରୋଶ ଦୂରସ୍ଥ ଦୃଶ୍ୟମାନ ଧଉଳିଗାତ୍ରାଙ୍କିତ ଅଶୋକ-ଲିପିକୁ ଯେପରି ଏକ ପ୍ରତିବିଜୟର ଆନନ୍ଦ ଘୋଷଣା କରୁଛି ଶାଶ୍ୱତ କାଳଧରି ।

ଭାଷାଦୃଷ୍ଟିରୁ ଖାରବେଳଙ୍କ ହାତିଗୁମ୍ଫା ଶିଳାଲିପି ଅଶୋକାନୁଶାସନଠାରୁ କେବଳ ଭିନ୍ନ ନୁହେଁ, ତାହା ଆଧୁନିକ ଓଡ଼ିଆର ନିକଟତର । ତେଣୁ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର କଳିଙ୍ଗ-ସମ୍ରାଟ୍ ଖାରବେଳଙ୍କର ଏହି କ୍ଷୁଦ୍ର ଗାଥାଟିକୁ ଆମେ ଓଡ଼ିଶାର ଆଦ୍ୟତମ ନିଜସ୍ୱ ପ୍ରାଣ-ପ୍ରକାଶ ବୋଲି ଧରିବାକୁ ହେବ । ଅଶୋକଙ୍କ ଅନୁଶାସନମାନଙ୍କରେ ଉଦାର ମାନବିକତା ଦେଖାଦେଇଥିଲେହେଁ, ସେଗୁଡ଼ିକର ରଚନାଶୈଳୀ ଶୁଷ୍କ ଶାସନିକ ଆଦେଶପରି ହିଁ ପ୍ରତୀୟମାନ ହୁଏ; କିନ୍ତୁ ହାତିଗୁମ୍ଫା ଶିଳାଲେଖ ନିଶ୍ଚିତଭାବରେ ସେହିପରି ରଚନାଳଙ୍କାର-ଭୂଷିତ, ଯେପରି ତାହା ଏକ ଅସାଧାରଣ ରାଜାଧିରାଜର ଅସାମାନ୍ୟ ଦାନ ଓ ବୀରତ୍ୱର ଉପଯୁକ୍ତ ପ୍ରବନ୍ଧ ହେବାର କଥା । ଏହା ନିଃସନ୍ଦେହ ଯେ, ଦୁଇହଜାର ବର୍ଷତଳର ଏହି ପୁରାଣ ପ୍ରବନ୍ଧର ଅଜ୍ଞାତ ରଚୟିତାଙ୍କ ଭିତରେ ଲୁଚିରହିଥିଲା ଜଣେ କଳାକାର; କାରଣ

ଏହି ଗାଥା ଅଶୋକାନୁଶାସନର ସମ୍ପୂର୍ଣ୍ଣ ବିପରୀତଧର୍ମୀ । ଏହାକୁ କୁହାଯାଇପାରେ ବରଂ ଏକ ସାମରିକ ଜୟ-କାବ୍ୟ ଏବଂ ସେହି ନିଶ୍ଚିତ ଆଭିମୁଖ୍ୟରେ ଏହା ଆମୂଳଶେଷ ତୁଙ୍ଗ ଶୈଳୀରେ ଲିଖିତ । ଉଦାହରଣସ୍ୱରୂପ ନିମ୍ନାଂଶ ପାଠ କରନ୍ତୁ । [୧]

"ଖାରବେଳ ରାଜତ୍ୱର ଦ୍ୱାଦଶ ବର୍ଷରେ ଅସଂଖ୍ୟ ସୈନ୍ୟଙ୍କଦ୍ୱାରା ଉତ୍ତରାପଥର ରାଜାମାନଙ୍କୁ ସନ୍ତ୍ରସ୍ତ କରିଥିଲେ ଏବଂ ମଗଧବାସୀଙ୍କର ବିପୁଳ ଭୟ ଜାତ କରାଇ ଓ ନିଜର ଗଜ ଓ ଅଶ୍ୱମାନଙ୍କୁ ଗଙ୍ଗାସ୍ରୋତରେ ଜଳପାନ କରାଇ ମଗଧରାଜ ବୃହସ୍ପତି ମିତ୍ରଙ୍କ ଦ୍ୱାରା ସେ ନିଜର ଚରଣବନ୍ଦନା କରାଇଥିଲେ । ନନ୍ଦରାଜାଙ୍କ ଦ୍ୱାରା ଅପସାରିତ ହୋଇଥିବା କଳିଙ୍ଗ ଜୀନାସନକୁ ଅଙ୍ଗ ମଗଧରୁ କଳିଙ୍ଗକୁ ହସ୍ତୀ, ଅଶ୍ୱ, ସେନା ପ୍ରଭୃତି ଅସଂଖ୍ୟ ବାହନ ସାହାଯ୍ୟରେ ଅଣାଇଥିଲେ ।

ଖାରବେଳଙ୍କ ବିଜୟଗାଥା ହେବା ବ୍ୟତୀତ, ଏହି ହାତିଗୁମ୍ଫା ଶିଳାଲିପି ଭାରତର ସାଂସ୍କୃତିକ ଇତିହାସରେ ମଧ୍ୟ ଏକ ଅସାଧାରଣ ପ୍ରାଧାନ୍ୟ ଲାଭ କରିବସିଛି । କାରଣ ଏ ଦେଶର ଭବିଷ୍ୟତ ରାଜାମାନଙ୍କୁ କି ପ୍ରକାର କଠୋର ଓ ଗଭୀର ଶିକ୍ଷା ଦେଇ ନିଜର ଗୁରୁଦାୟିତ୍ୱ ପାଇଁ ଦୀକ୍ଷିତ କରାଯାଉଥିଲା, ଏହି ହାତିଗୁମ୍ଫା ଶିଳାଲିପିରୁ ଆମେ ତାହାର ସମ୍ୟକ୍ ଧାରଣା ପାଉଛୁ :

"ତତୋ ଲେଖରୂପଗଣନା ବ୍ୟବହାରବିଧି ବିଶାରଦେନ
ସର୍ବବିଦ୍ୟାବଦାତେନେନ ନବବର୍ଷାଣି ଯୌବରାଜ୍ୟଂ ପ୍ରଶାସିତମ୍ ।"

"ତତ୍ପରେ ଖାରବେଳ ଲେଖ (ଅଫିସାଲ୍ କରେସ୍‌ପଣ୍ଡେନ୍‌ସ), ରୂପ (ମୁଦ୍ରାତତ୍ତ୍ୱ), ଗଣନା (ଗଣିତବିଦ୍ୟା), ବ୍ୟବହାର (ଦଣ୍ଡବିଧାନ) ପ୍ରଭୃତି ସର୍ବବିଦ୍ୟାରେ ନିପୁଣତା ଲାଭକରି ନଅବର୍ଷଯାଏଁ ଯୁବରାଜ ଭାବରେ ରାଜ୍ୟ ଶାସନ କରିଥିଲେ ।"

ହାତିଗୁମ୍ଫା ଶିଳାଲିପି ମଧ୍ୟ କହେ ଯେ ସମ୍ରାଟ୍ ଖାରବେଳ ରାଜଧାନୀର ନାଗରିକ ଓ ବିଦେଶାଗତ ରସିକମାନଙ୍କ ଚିତ୍ତତୋଷଣ ପାଇଁ ନୃତ୍ୟ ଓ ନାଟ୍ୟାଭିନୟର ବ୍ୟବସ୍ଥା କରାଉଥିଲେ, ଯେଉଁଥିରୁ ଅନ୍ତତଃ ଏତିକି ବୁଝିବା ଭ୍ରମ ହେବନାହିଁ ଯେ, ଦୁଇହଜାର ବର୍ଷ ପୂର୍ବେ ମଧ୍ୟ ଏହି ଓଡ଼ିଶା ରାଜ୍ୟରେ ଏକ ଉଚ୍ଚକୋଟୀର ସାମାଜିକ ସଂସ୍କୃତି ବିରାଜମାନ ଥିଲା । ହାତିଗୁମ୍ଫା ଶିଳାଲିପିରେ ବର୍ଣ୍ଣିତ ଓ ଏପର୍ଯ୍ୟନ୍ତ ଦଣ୍ଡାୟମାନ ଶୈଳ-ଗାତ୍ର-ଖୋଦିତ ପ୍ରାସାଦ ଦୁଇହଜାର ବର୍ଷ ପୂର୍ବର ଓଡ଼ିଆମାନଙ୍କର ଉଚ୍ଚ ସାଂସ୍କୃତିକ ଜୀବନ ସପକ୍ଷରେ ଏବେ ମଧ୍ୟ ସାକ୍ଷ୍ୟ ଦେଉଛି । ଏହି ପ୍ରାସାଦର ଭିତ୍ତିଖୋଦିତ ଭାସ୍କର୍ଯ୍ୟମାଳା ବିସ୍ମୟକର ଭାବରେ ଜୀବନ୍ତ ଓ ସ୍ୱାଭାବିକ ଏବଂ ସେହି ପ୍ରାଚୀନ କାଳରେ ମଧ୍ୟ ଓଡ଼ିଆମାନଙ୍କର ଉଚ୍ଚ କଳାକୁଶଳତାର ସୁନ୍ଦର ପରିଚୟ ଦିଏ ।

---

(୧) ଇଂରାଜୀ ପୁସ୍ତକ ବଡ଼ ହୋଇଯିବା ଭୟରେ ଲେଖକର ମୂଳ ପାଣ୍ଡୁଲିପିରୁ ଯେଉଁ ଏକଶତ ପୃଷ୍ଠା କାଟିଦିଆଗଲା, ତା ଭିତରେ ଥିଲା ଖାରବେଳ-ଲିପିର ବିସ୍ତୃତ ଆଲୋଚନା । ଛାପା ବହିରେ ନଥିଲେହେଁ ଏହି ଅନୁବାଦ ବେଳକୁ ଏହି ଅଂଶକୁ କିଞ୍ଚିତ୍ ବିସ୍ତାରିତ କରିଦିଆଯାଇଛି ।

**ପାଲୀ କି ଓଡ଼ିଶାର ଭାଷା ? –**

ଜୈନ ଓ ବୌଦ୍ଧ ଧର୍ମର ଓ ପର ପର ଆସିଥିବା ସେହି ସେହି ଧର୍ମାବଲମ୍ବୀ ରାଜବଂଶମାନଙ୍କର ଶାସନର ବାହନରୂପେ ପାଲୀ-ପ୍ରାକୃତ ବା ପାଲୀହିଁ ହୁଏତ ହଜାରେ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାର ସାଂସ୍କୃତିକ ଭାଷା ହୋଇଥିବ । ପାଲୀ-ପ୍ରାକୃତକୁ ଓଡ଼ିଶାର ସ୍ୱତନ୍ତ୍ର ଦାନ କ'ଣ ତାହା ଠିକ୍ କହିହେଉନାହିଁ । ତେବେ ପୂର୍ବୋଲ୍ଲିଖିତ ଓ ପାଲୀ-ପ୍ରାକୃତର ପ୍ରସିଦ୍ଧତମ ବ୍ୟାକରଣ 'ପ୍ରାକୃତସର୍ବସ୍ୱ'ର ଲେଖକ ମାର୍କଣ୍ଡେୟ ଦାସ ଜଣେ ଓଡ଼ିଆ ଥିବାର କୁହାଯାଏ । ପୁଣି ଓଡ଼ିଶାର ଖାରବେଳଙ୍କ ଏହି ହାତିଗୁମ୍ଫା ଶିଳାଲିପି ସମଗ୍ର ଭାରତରେ ଏକମାତ୍ର ପାଲୀ-ଶିଳାଲିପି । ଏହି ଦୁଇ ମୁଖ୍ୟ ଘଟଣାରୁ ପାଲୀ ଏହି ଓଡ଼ିଶା ବା କଳିଙ୍ଗର ସ୍ଥାନୀୟ ଭାଷା ବୋଲି ମଧ୍ୟ କେତେକ ପଣ୍ଡିତ ମତବ୍ୟକ୍ତ କରନ୍ତି ଓ କହିଥାନ୍ତି ଯେ ଓଡ଼ିଶା ବା କଳିଙ୍ଗରୁହିଁ ଏହି ଭାଷା ବିସ୍ତୀର୍ଣ୍ଣ ପାଲୀସାହିତ୍ୟର ଏକମାତ୍ର ଆଧୁନିକ ଅଧିଷ୍ଠାନ ସିଂହଳଦେଶକୁ ନୀତ ହୋଇଥିଲା । ଏହି ହାତିଗୁମ୍ଫା ଶିଳାଲିପିଟି ବ୍ୟତୀତ ଆମର ବିରାଟ ଉପମହାଦେଶ ଭାରତବର୍ଷରେ ପାଲୀସାହିତ୍ୟର ଅନ୍ୟ କୌଣସି ହେଲେ ଅବଶେଷ ରହିଯାଇନାହିଁ । ପ୍ରସିଦ୍ଧ ଜର୍ମାନ୍ ଭାଷାତତ୍ତ୍ୱବିଦ୍ ପ୍ରଫେସର ଓଲଡନବର୍ଗ ପାଲୀ ଓଡ଼ିଶାର ଭାଷା, ଏହି ମତ ପ୍ରଥମେ ପ୍ରକାଶ କରିଥିଲେ ଓ ଏହା ଅନ୍ୟ ଅନେକ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଅନୁକୂଳତା ଲାଭ କରିଛି । ଏବେ ଓଡ଼ିଶାର ବୌଦ୍ଧଧର୍ମ ଓ ସଂସ୍କୃତିର ବିଶିଷ୍ଟ ତତ୍ତ୍ୱଜ୍ଞ ତରୁଣ ଓଡ଼ିଆ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ଏହି ମତବାଦକୁ ଦୃଢ଼ତାର ସହିତ ପ୍ରଚାର କରୁଛନ୍ତି ।

**ହୁଏନ୍‌ସାଂଙ୍କ ସମୟରେ ଓଡ଼ିଆ –**

ଖାରବେଳଙ୍କ ପରେ ଓଡ଼ିଆ ଭାଷାର ପରବର୍ତ୍ତୀ ସାକ୍ଷାତ ଆମେ ପାଉ ବିଖ୍ୟାତ ଚୀନା ପଣ୍ଡିତ ଓ ପର୍ଯ୍ୟଟକ ହୁଏନ୍‌ସାଂଙ୍କ ଭ୍ରମଣ-ବୃତ୍ତାନ୍ତରେ । ସେ ହେଲା ଖ୍ରୀଷ୍ଟ ସପ୍ତ ଶତାବ୍ଦୀ । ସେହି ବିଖ୍ୟାତ ପର୍ଯ୍ୟଟକ କହନ୍ତି, "ଉଡ୍ରଦେଶର ଭାଷା ଶବ୍ଦାବଳି ମଧ୍ୟ ଭାରତ ଅଞ୍ଚଳଠାରୁ ପୃଥକ୍ ଜଣାପଡ଼େ ।" ଏଥିରୁ ଅନୁମାନ କରାଯାଉଛି ଯେ ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ନିଜର ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଧାରଣ କରିସାରିଲାଣି । ଡକ୍ଟର ମହତାବ ତାଙ୍କର ଓଡ଼ିଶା ଇତିହାସରେ କହନ୍ତି, (ପ୍ରଥମ ସଂସ୍କରଣ, ପୃ – ୫୩) "ଓଡ଼ିଆ ଭାଷାର ଆରମ୍ଭ ବୋଧହୁଏ ଏହି କାଳରେ ଘଟିଥିଲା । ଭୌମ ରାଜାମାନଙ୍କର (୬ଷ୍ଠରୁ ୮ମ ଶତାବ୍ଦୀ ପର୍ଯ୍ୟନ୍ତ) ଲେଖ ଓ ଦାନପତ୍ର ଆଦି ସୁନ୍ଦର ସଂସ୍କୃତ ପଦ୍ୟରେ ଲେଖାଯାଇଥିଲେ ମଧ୍ୟ, ମଝିରେ ମଝିରେ ସଂସ୍କୃତ ଶବ୍ଦମାନ ଓଡ଼ିଆରେ ଉଚ୍ଚାରିତ ହେବା ରୀତିରେ ଲିପିବଦ୍ଧ ହୋଇଥିବାର ଦେଖାଯାନ୍ତି ।"

ବୋଧହୁଏ ଉତ୍ତର-ଭାରତରେ ଗୁପ୍ତ ସମ୍ରାଟ୍‌ମାନଙ୍କ ଅଧିକାରଦ୍ୱାରେ ଚତୁର୍ଥ ଖ୍ରୀଷ୍ଟାବ୍ଦରୁ ଯେଉଁ ବ୍ରାହ୍ମଣ୍ୟଧର୍ମର ପୁନରୁତ୍‌ଥାନ ଆରମ୍ଭ ହୋଇଯାଇଥିଲା, ତାହା ଓଡ଼ିଶାରେ ଏତେବେଳକୁ ବଦ୍ଧମୂଳ ହୋଇସାରିଲାଣି । ହୁଏନ୍‌ସାଂ ଓଡ଼ିଶାରେ ଯେଉଁ ଯେଉଁ ସ୍ଥାନକୁ

ଯାଇଥିଲେ, ସେଠାରେ ସେ ବୌଦ୍ଧ ବିହାର ଓ ହିନ୍ଦୁ ମନ୍ଦିର ପାଖାପାଖି ବିରାଜିତ ଥିବାର ଦେଖିଥିଲେ । ବୌଦ୍ଧଧର୍ମର ମହାଯାନ ଶାଖାହିଁ ଓଡ଼ିଶାରେ ଜନପ୍ରିୟ ଥିଲା ଓ ଏବର ଜଗନ୍ନାଥ ମନ୍ଦିର ପରି କୌଣସି ମହାଯାନ ପୀଠ ଶ୍ରମଣ ବ୍ରାହ୍ମଣାଦି ସକଳ ଧର୍ମ-ମତର ଲୋକଙ୍କୁ ଆକୃଷ୍ଟ କରିପାରୁଥିଲା ।

ଓଡ଼ିଶାର ଏହି କାଳର ଭୌମକର ରାଜାମାନେ ବାହାରକୁ ବୌଦ୍ଧ ଥିଲେହେଁ, ସେମାନଙ୍କର ଧର୍ମବିଶ୍ୱାସର ମର୍ମ ଥିଲା ବୈଦିକ । ସେମାନଙ୍କର ସକଳ ଦାନପତ୍ର ସୁନ୍ଦର, ଗମ୍ଭୀର ସଂସ୍କୃତ ଶ୍ଳୋକାବଳିରେ ରଚିତ । ସେସବୁ ନିଶ୍ଚୟ ବ୍ରାହ୍ମଣମାନଙ୍କର କୃତି । ଏହି ଭୌମକର ରାଜାମାନେହିଁ ଓଡ଼ିଶାରେ ବୈଭବମୟ ମନ୍ଦିରରାଜି ଠିଆକରେଇବାର ମହାନ୍ ଐତିହ୍ୟ ଆରମ୍ଭ କରିଦେଲେ, ଯାହାର ବିସ୍ମୟକର ପରିସମାପ୍ତି ହେଲା ତ୍ରୟୋଦଶ ଶତାବ୍ଦୀର କୋଣାର୍କ ।

କିନ୍ତୁ ସମାଜର ଉପରସ୍ତରରେ ଶାସକମାନେ ସଂସ୍କୃତ ଆଡ଼ିକି ଢଳିରେ କି ହେଲା, ନିମ୍ନ ସ୍ତରରେ ଓଡ଼ିଶାର ଜନତା ଓ ଜନତାର ବରାବର ନିକଟ-ସମ୍ପର୍କରେ ଥିବା ବୁଦ୍ଧିଜୀବୀଗଣ ନିଜର ଏକ ସ୍ୱାଭାବିକ ଭାଷାରେହିଁ ଆତ୍ମପ୍ରକାଶ କରୁଥିଲେ । ସେହି ଅପଭ୍ରଂଶ ଭାଷା ସେତେବେଳକୁ ମଧ୍ୟ ଅଶୋକ ବା ଖାରବେଳଙ୍କ ଶିଳାଲିପିଠାରୁ ଆଧୁନିକ ଓଡ଼ିଆ ଭାଷାର ବହୁ ନିକଟବର୍ତ୍ତୀ ହୋଇସାରିଲାଣି । ସେତେବେଳକୁ ଓଡ଼ିଆ ଜନତାର ସାଧାରଣ ଧର୍ମ ବୋଧହୁଏ ତନ୍ତ୍ର-ରଂଜିତ ବଜ୍ରଯାନ-ମହାଯାନର ଏକ ସମାହାର । ଏହି ତାନ୍ତ୍ରିକ ବଜ୍ରଯାନ ଓଡ଼ିଶାରେ ଜନ୍ମ ନେଇଥିବାର ଧରାଯାଇଥାଏ; କିନ୍ତୁ ସମଗ୍ର ଉତ୍ତରଭାରତରେ ବୌଦ୍ଧ ବିହାରମାଳାର ସ୍ମୃତି ଦେଖିବାକୁ ମିଳେ, ଯେଉଁଠି ଏହି ବୌଦ୍ଧତାନ୍ତ୍ରିକମାନଙ୍କର ନୂତନ ବଜ୍ରଯାନୀ-ସାଧନା ଗତିଶୀଳ ରହିଥିବାର ମନେହୁଏ । ସେମାନଙ୍କ ଭିତରୁ କେତେକ ତତ୍ତ୍ୱଜ୍ଞ ଜନତା ଭିତରେ ଜ୍ଞାନାଲୋକ ବିତରଣ ପାଇଁ, ସେମାନଙ୍କ ସାଧନାର ନିଗୂଢ଼ ରହସ୍ୟସବୁକୁ ସାଧାରଣ ଭାଷା ଓ ଉପମାଦି ତଳେ ଖଞ୍ଜିରଖି ଗୀତ ଓ ଭଜନାଦି ରଚନା କରୁଥିବେ । ଖୁବ୍ ସମ୍ଭବତଃ ଏହି ଗୀତ ଓ ଭଜନମାନଙ୍କର ଭାଷାହିଁ ଥିଲା ସେ କାଳର ସମସାମୟିକ ଓଡ଼ିଶୀ ଜନତାର ଭାଷା । କାରଣ ସେସବୁରେ ଦେଖାଦେଉଥିବା ଅଳଙ୍କାରାଦି, ଗତାନୁଗତିକ ବା ପୁସ୍ତକାହୃତ ନ ହୋଇ ମନୋରମ ଭାବରେ ସାଧାରଣ ନାଗରିକର ଦୈନନ୍ଦିନ ଜୀବନର ଅଭିଜ୍ଞତାରାଜିରୁ ସଂଗୃହୀତ ହେବାର ଆମେ ଦେଖୁଁ ।

ଆମେ ତେଣୁ ପରବର୍ତ୍ତୀ ଅଧ୍ୟାୟରେ ଏହି ବୌଦ୍ଧ-କବିତା ଓ ଭଜନଗୁଡ଼ିକର ବିସ୍ତୃତ ଆଲୋଚନା କରିବା ।

□□□

## ଚତୁର୍ଥ ଅଧ୍ୟାୟ

# ଓଡ଼ିଆ ଅପଭ୍ରଂଶରେ ବୌଦ୍ଧ କବିତା

ଏହି ଶତାବ୍ଦୀର ପ୍ରାରମ୍ଭରେ ନେପାଳ ରାଜ୍ୟର ରାଷ୍ଟ୍ରୀୟ ପୁସ୍ତକାଳୟରୁ ବଙ୍ଗଳାର ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏକ ବୌଦ୍ଧ କବିତାର ଗୁଚ୍ଛ ଆବିଷ୍କାର କରନ୍ତି । ଏହି କବିତାଗୁଡ଼ିକ ସମଗ୍ର ପୂର୍ବଭାରତୀୟ ଅଞ୍ଚଳର ଭାଷାମାନଙ୍କର ଅଭିବର୍ଦ୍ଧନ ଓ ଦିନେ ସେହି ଅଞ୍ଚଳରେ ପ୍ରଚଳିତ ଥିବା ଧର୍ମବିଶ୍ୱାସମାନଙ୍କ ଉପରେ ପ୍ରଚୁର ଆଲୋକପାତ କରୁଛି । ଆବିଷ୍କାରକ ପଣ୍ଡିତ ଶାସ୍ତ୍ରୀ ବଙ୍ଗଳାରେ 'ବୌଦ୍ଧଗାନ ଓ ଦୋହାଁ' ନାମରେ ଏହି କବିତାଗୁଡ଼ିକୁ ପ୍ରକାଶ କରି, ତାର ଭୂମିକାରେ (ପୃ.-୬) ଲେଖିଛନ୍ତି– "ଏହି କବିତାଗୁଡ଼ିକର ରଚୟିତା ହୁଏତ ବଙ୍ଗଳା ବା ପ୍ରତିବେଶୀ ରାଜ୍ୟର ଲୋକ ।" ସେହି ଭୂମିକାର ୧୭ ପୃଷ୍ଠାରେ ସେ ମଧ୍ୟ ସ୍ୱୀକାର କରିଛନ୍ତି ଯେ – "ଏମାନଙ୍କ ମଧ୍ୟରୁ ଜଣେ କବିର ବାସଭୂମି ଓଡ଼ିଶା; କାରଣ କବିତାଟି ଓଡ଼ିଆ ଭାଷାରେ ଲେଖା । ସେହିଟିକି ତେଣୁ ମୁଁ ଓଡ଼ିଆ କବିତା ବୋଲି ଧରିନେଇଛି ।"

କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ଶାସ୍ତ୍ରୀ ମହୋଦୟ ସେହି ଓଡ଼ିଆ କବିତା ବା ଓଡ଼ିଆ କବିଟିକୁ ତାଙ୍କ ପୁସ୍ତକର କୌଣସି ସ୍ଥାନରେ ନିର୍ଦ୍ଦିଷ୍ଟ ଭାବରେ ନାମିତ କରିବାକୁ ସମ୍ପୂର୍ଣ୍ଣ ଭୁଲିଯାଇଛନ୍ତି ।

କିନ୍ତୁ ଯଥାର୍ଥ ଭାବରେ ପ୍ରଶ୍ନତଃ ହୋଇପାରେ ଯେ, ଅନ୍ୟ ଭାଷାର ଏକ କବିତାଗୁଚ୍ଛ ଭିତରେ ଓଡ଼ିଆ ଅକ୍ଷରରେ ଲେଖା ଗୋଟିଏ ମାତ୍ର ଓଡ଼ିଆ କବିତା କିପରି ଗୁଞ୍ଜି ହୋଇ ରହିଗଲା ? ଏହି ସମଗ୍ର କବିତାଗୁଚ୍ଛରେ ବ୍ୟବହୃତ ଶତ ଶତ ଶବ୍ଦରୁ, କବିତାଗୁଡ଼ିକର ଐତିହାସିକ ଓ ସାମାଜିକ ବାତାବରଣରୁ ଏବଂ ସେଗୁଡ଼ିକର ଆତ୍ମିକ ସୌରଭ ଯାହା ଯୁଗଯୁଗଧରି ଆଜିପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ନିରବଚ୍ଛିନ୍ନ ଭାବରେ ପ୍ରବାହିତ ରହିଛି, ଏ ସମସ୍ତ ସ୍ପଷ୍ଟ ସ୍ୱରରେ ଘୋଷଣା କରୁଛନ୍ତି ଯେ ଏଗୁଡ଼ିକରୁ ଗୋଟିଏ ନୁହେଁ ଅନେକ, ଓଡ଼ିଆ ଭାଷାରେ ନହେଲେ ମଧ୍ୟ, ନିଶ୍ଚୟ ଓଡ଼ିଶାର ମାଟିରେ ରଚିତ ହୋଇଥିଲେ ।

ଯଦି ଏମାନଙ୍କର ଭାଷା ଓଡ଼ିଆ ନୁହେଁ ବୋଲି କୁହାଯାଏ, ତେବେ ସେମାନଙ୍କର ଭାଷା ବଙ୍ଗଳା କୁହାଯିବାର ମଧ୍ୟ କୌଣସି ଯୁକ୍ତି ନାହିଁ । କାରଣ ଯେଉଁ କାଳରେ ଏସବୁ ରଚିତ ହୋଇଥିଲେ ବୋଲି ଧରାଯାଏ, ସେ କାଳରେ ସମଗ୍ର ପୂର୍ବ-ଭାରତୀୟ ଅଞ୍ଚଳରେ ଯେଉଁ ଯେଉଁ ଭାଷାକୁ ଆମେ ଏବେ ବଙ୍ଗଳା ବା ଓଡ଼ିଆ ବା ଆସାମୀ ବୋଲି କହୁଛୁ, ସେ କେହି ହେଲେ ନଥିଲେ । ବସ୍ତୁତଃ ଏହି ବୌଦ୍ଧ କବିତାଗୁଡ଼ିକ ଉଭୟ ଆଧୁନିକ ବଙ୍ଗଳା ଓ ଆଧୁନିକ ଓଡ଼ିଆରୁ ଯେତିକି ଦୂରବର୍ତ୍ତୀ ଯେତିକି ଦୂରବର୍ତ୍ତୀ ଆଧୁନିକ ଯେକୌଣସି

ଇଂରାଜୀ ପୁସ୍ତକଠାରୁ ଲାଙ୍ଗଲାଣ୍ଡଙ୍କ 'ପିଂର୍ସ ପ୍ଲାଉମାନ୍' କାବ୍ୟ, ଯାହା ଦୁର୍ବୋଧ ଭାଷା ସତ୍ତ୍ୱେ, ଇଂରାଜୀ ଭାଷାର ପୁସ୍ତକ ବୋଲିହିଁ ଗଣ୍ୟ ହୁଏ । ଏହି ବୌଦ୍ଧ-କବିତାଗୁଡ଼ିକ ଉପରେ କୌଣସି ଭାରତୀୟ ଭାଷାର ଦାବୀ ଠିଆହୋଇପାରେ କେବଳ ପ୍ରଥମତଃ ଏସବୁରେ ବ୍ୟବହୃତ ଶବ୍ଦାବଳି ଉପରେ, ଯଦି ସେସବୁ ଏବେ ମଧ୍ୟ ସେହି ଭାଷାଭାଷୀ ଅଞ୍ଚଳରେ, ସେହି ପ୍ରାଚୀନ ଅର୍ଥରେହିଁ ବ୍ୟବହୃତ ହେଉଛନ୍ତି ଏବଂ ସେ ଶବ୍ଦସବୁ ସେହି ଅଞ୍ଚଳ ଛଡ଼ା ଅନ୍ୟ କୌଣସିଠାରେ ବ୍ୟବହୃତ ହେଉନଥାନ୍ତି; ଦ୍ୱିତୀୟତଃ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଅନୁକୂଳ ଐତିହାସିକ ବା ଭୌଗୋଳିକ ସାକ୍ଷ୍ୟ ଉପରେ ।

ଦୃଷ୍ଟାନ୍ତ ସ୍ୱରୂପ ଏହି ସମଗ୍ର କବିତାଗୁଚ୍ଛରେ ପ୍ରଣୟସରସ ଓ ମନୋହରତମ କବିତାଟିକୁ ଆଲୋଚନା କରାଯାଉ । ସେ କବିତାଟି ଏହି :[୧]

''ଉଁଚା ଉଁଚା ପାବତ, ତହିଁ ବସଇ ଶବରୀ ବାଳୀ
ମୋରଙ୍ଗୀ ପିଚ୍ଛ ପରହି ସବରୀ, ଗୀବତ ଗୁଞ୍ଜରୀ ମାଳୀ ।
ଉମତ ସବରୋ, ପାଗଳ ସବରୋ, ମାକର ଗୁଲୀ ଗୁହାଡ଼ି
ତୋହରି ଣିଅ ଘରଣୀ ସହଜ ସୁନ୍ଦରୀ ।
ଣାଣା ତରୁବର ମୌଳିଲାରେ, ଗଅଣତ ଲାଗେଲି ଡାଳି
ଏକଲ ସବର ଏ ବନ ହିଣ୍ଡଇ କର୍ଣ୍ଣକୁଣ୍ଡଳ ବଜ୍ରଧାରୀ ।
ତିଅ ଧାଉ ଖାଟ ପାଡ଼ିଲା ସବର ମହାସୁଖ ସେଜି ଛାଇଲି
ସବରୋ ଭୁଜଙ୍ଗ ଣଇଣାମଣି ଦାରୀ ପେଖିଖ ରାତି-ପୋହାଇଲୀ !
ହିଏ ତାବୋଲା ମହାସୁହେ କାପୁର ଖାଇ
ସୁନ ନିରାମଣି କଣ୍ଠେଲାଇଆ ମହାସୁହେ ରାତି ପୁହାଇ ।
ଗୁରୁବାକ ପୁଞ୍ଛଆ, ବିନ୍ଧଣିଅ ମଣୋ ବାଣେଁ ।
ଏକେ ଶରସନ୍ଧାନେ ବିନ୍ଧହ ବିନ୍ଧହ ପରମ-ଣିବାଣେଁ ।
ଉମତ ସବରୋ ଗରୁଆ ରୋଷେ,
ଗିରିବର ସଂଧି ପଇସନ୍ତେ, ସବରୀ ଲୋଡ଼ିବ କଇ ସେ ।''

ସାରଳାଦାସୀ ରୀତିରେ ଏହି କବିତାଟିର ଏହିପରି ଆଧୁନିକ ଓଡ଼ିଆ ଅନୁବାଦ ହୋଇପାରେ –

ଅତି ଉଞ୍ଚା ପର୍ବତେ ଯେ ରହିଛି ଶବରୀ
ମୟୂରପୁଚ୍ଛ ତା ମାଥେ, ବେକେ ଗୁଞ୍ଜାମାଳି ।
ଉନ୍ମତ୍ତ ଶବର ଆରେ କିମ୍ପା କରୁ ଗୋଳ
ଅନାରେ ନିଜ ଘରଣୀ, ସହଜ ସୁନ୍ଦର ।

---

(୧) ଇଂରାଜୀ ପୁସ୍ତକରେ ବୌଦ୍ଧ କବିତାବଳିର ଦୃଷ୍ଟାନ୍ତଗୁଡ଼ିକ କେବଳ ନାମ ବା ସରଳ ଗଦ୍ୟାନୁବାଦରେ ନିର୍ଦ୍ଦେଶିତ କରାଯାଇଥିଲା । ମାତ୍ର, ଅନୁବାଦରେ ମୂଳ କବିତା ଓ ତାର ଅନୁବାଦ ଦେବାର ଲୋଭ ସମ୍ବରଣ କରିପାରିଲି ନାହିଁ ।

ନାନା ତରୁ ମୁକୁଳିଲେ ଗଗନେ ମେଲି ଡାଳ
ଏକା କିମ୍ପା ବୁଲୁ ବଣେ ରେ ଶବର, କର୍ଣ୍ଣେ ତୋ କୁଣ୍ଡଳ ।
ନ ଶୁଣେ ଶବର ମତ୍ତ, ଖଟ ଧରି ଧାଏଁ
ମହାସୁଖ ଆଶାରେ ସେ ଶେଯକୁ ବିଛାଏ ।
ବିଟପ ସ୍ୱଭାବ ସେ ଶବର ଅତି ଭୋଳା
ନୈରାମଣି ଦାରୀ ପାଖେ ରାତି ପୁହାଇଲା ।
କର୍ପୂରମିଶା ତାମ୍ବୂଳ ମହାନନ୍ଦେ ଖାଇ
ସୁଖେ ନିଶି ଯାପେ ସେ ଶବର
ଶୂନ୍ୟ-ନୈରାମଣି ଗଳେ ଭୁଜ ଦେଇ ।
ଗୁରୁବାକ୍ୟ ଅନୁସରି ଛାଡ଼ିଲେ ମନ ବାଣ
ଗୋଟିଏ ଶରେ ଯେହ୍ନେ ଭେଦିବ ସୁଖଦ ନିର୍ବାଣ ।
ଉନ୍ମତ୍ତ ଶବର ସେ ଯେ ବିନ୍ଧିଣ ଗୁରୁ ରୋଷେ,
ଗିରିବର ଶିଖର ସନ୍ଧିରେ ଗଲା ମିଶି ଲୋ ଶବରୀ,
ଖୋଜିଲେ କାହୁଁ ଆସେ ?

ଏହି କବିତାଟିର ତାତ୍ପର୍ଯ୍ୟ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଗ୍ରନ୍ଥରେ ଏହିପରି ବର୍ଣ୍ଣିତ ହୋଇଅଛି – 'ସହଜ-ସୁନ୍ଦରୀ' ଏକ ଶବରୀ, ଉଚ୍ଚ ପର୍ବତସ୍ଥ ଅରଣ୍ୟରେ ତା'ର ସ୍ୱାମୀ 'ଉନ୍ମତ୍ତ' ଶବରକୁ ନିବେଦନ କରୁଛି, 'ନିଜ ପତ୍ନୀ' ଅର୍ଥାତ୍ ତା'ରି ପ୍ରତି ଦୃଷ୍ଟି ଦେବାକୁ । ମୟୂରପୁଚ୍ଛଭୂଷିତା ସେହି ଶବରୀ ଅରଣ୍ୟରେ ଏକାକୀ ବିଚରଣ କଲା ପରେ ଶବର ସୁଖରେ ରାତ୍ରିଯାପନ କରୁଛି 'ଦାରୀ' ନୈରାମଣି (ଅର୍ଥାତ୍ ସେହି ଶବରୀ) ସହିତ ।

ସୁପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ତାଙ୍କ ପୁସ୍ତକରେ 'ଦାରୀ' ନୈରାମଣିକୁ ସେହି ଏକ ଶବରପତ୍ନୀ ବୋଲି କି ଯୁକ୍ତିରେ ଯେ କହିପାରିଛନ୍ତି, ବୁଝିହେଉନାହିଁ । ପୁଣି ତାଙ୍କ ପୁସ୍ତକର ପଛରେ ଥିବା 'ଶବ୍ଦସୂଚୀ'ରେ ଶାସ୍ତ୍ରୀ ମହାଶୟ 'ଦାରୀ' ଶବ୍ଦର ଅର୍ଥ କରିଛନ୍ତି 'କନ୍ୟା' । କବିତାର ଶବର, ତା'ର କନ୍ୟା ସାଥିରେ ରାତ୍ରିଯାପନ କରିବା ଏକ ଜଘନ୍ୟ କଳ୍ପନା । ଭୁଜଙ୍ଗ ଶବ୍ଦର ଅର୍ଥ ବିଟପ ପୁରୁଷ । ତାହା ଦାରୀ ଶବ୍ଦ ସଙ୍ଗେ ଖାପଖାଇଯାଉଛି । ଶବର ନିଜ ପତ୍ନୀ ପାଖେ ଭୁଜଙ୍ଗ (ବିଟ) ହେବାର କୌଣସି ଔଚିତ୍ୟ ମଧ୍ୟ ନାହିଁ ।

କିନ୍ତୁ ଏହି ସମଗ୍ର ସୁନ୍ଦର କବିତାଟି ତା'ର ସ୍ୱାଭାବିକ ବର୍ଣ୍ଣାଢ୍ୟ ତାତ୍ପର୍ଯ୍ୟ ଫେରିପାଉଛି, ଆମେ ଯେତେବେଳେ ସେଥିରେ ଥିବା ମୁଖ୍ୟ ଶବ୍ଦ 'ଦାରୀ'ର ପ୍ରକୃତ ଅର୍ଥ ଜାଣିପାରୁଛୁ । 'ଦାରୀ' ଏକ ଖାଣ୍ଟି ଓଡ଼ିଆ ଶବ୍ଦ ଓ ଏବେବି ଓଡ଼ିଶାରେ ସର୍ବତ୍ର ସୁପରିଚିତ ଓ ନିତ୍ୟବ୍ୟବହୃତ । ଦାରୀ ଅର୍ଥ ଗଣିକା, ଅର୍ଥାତ୍ ପୁରୁଷଙ୍କୁ ଭୁଲେଇବା ନାରୀ । ଏହି କବିତାର ଆରମ୍ଭ ହେଉଛି, 'ସହଜ-ସୁନ୍ଦରୀ' ଶବରୀ ତା'ର ଉନ୍ମତ୍ତ ଶବରକୁ ତା'ରି ପାଖରେ ରାତି କଟେଇବା ପାଇଁ ଅନୁରୋଧ କରିବାରେ । କିନ୍ତୁ ସ୍ୱାଭାବିକ ସୌନ୍ଦର୍ଯ୍ୟ ଓ ବେଶଭୂଷାର ଆକର୍ଷଣ ସତ୍ତ୍ୱେ ବିଚାରୀ ଶବରୀକୁ ଏକା ରହିବାକୁ ପଡ଼ିଛି ଉଚ୍ଚ ପାହାଡ଼ରେ । ଉନ୍ମତ୍ତ ଶବର ତା'ର ସହଜ-ସୁନ୍ଦରୀ

ଶବରୀକୁ ପରିତ୍ୟାଗ କରି ରାତ୍ରିଯାପନ କଲା ଯାଇ ଦାରୀ ନୈରାମଣି ସଙ୍ଗେ । ନୈରାମଣି, ବୌଦ୍ଧିକ ନୈରାତ୍ମ୍ୟ ବା ନିର୍ବାଣ । ଶବର (ଯୋଗୀ), ସହଜ-ସୁନ୍ଦରୀ ପତ୍ନୀ ଶବରୀ (ଆପାତ ମନୋରମ ସଂସାର)କୁ ପରିତ୍ୟାଗ କରି ନିର୍ବାଣ ବା ନୈରାମଣି ନାମିକା କମ୍ ଆକର୍ଷଣୀୟା ଦାରୀର ଆଶ୍ରୟ ନେଲା ଓ ସେଠାରେ 'ଗିରିବର ଶିଖର ସନ୍ଧି'ରେ ମିଶିଗଲା; ଯାହା ଏକ ଅର୍ଥ ହେବ, ରତିସୁଖରେ ଦାରୀ ଅଙ୍ଗରେ ମିଶିଗଲା ଓ ଅନ୍ୟ ଅର୍ଥ ହେବ, ନିର୍ବାଣ-ସୁଖରେ ମଜ୍ଜି ଆଉ ସଂସାରକୁ ଫେରିଲାନାହିଁ ।

ପୁଣି ଶାସ୍ତ୍ରୀମହାଶୟଙ୍କ ଗ୍ରନ୍ଥରେ ଏହି କବିତାର ଶେଷ ପଙ୍କ୍ତିର ଶେଷାର୍ଦ୍ଧକୁ 'ଲଢ଼ଇ କିପରି' ବୋଲି ଯେପରି ଅର୍ଥ କରାଯାଇଛି, ତାହାର ମଧ୍ୟ କୌଣସି ସଙ୍ଗତିହିଁ ନାହିଁ । ପ୍ରକୃତ ଶବ୍ଦ 'ଲଢ଼ଇ' ନୁହେଁ, ଖାଣ୍ଟି ଓଡ଼ିଆ କ୍ରିୟା 'ଲୋଡ଼ଇ', ଯାହାର ଅର୍ଥ 'ଖୋଜିବା ପାଇଁ ଯିବା' । ପ୍ରତ୍ୟାଖ୍ୟାତା ଶବର-ପତ୍ନୀର 'ଲଢ଼ିବା'ର ବ୍ୟଞ୍ଜନା ଏଠାରେ ହାସ୍ୟକର । ପର୍ବତ ଶିଖର ସନ୍ଧିରେ ଶବର ହଜିଗଲା, ଅର୍ଥାତ୍ ଯୋଗୀ ନିର୍ବାଣ ସ୍ତରରେ ଲୀନ ହୋଇଗଲା । ଶବରୀ ତାକୁ 'ଲୋଡ଼ିଲେ' ଆଉ କାହୁଁ ପାଇବ ? ଏହାହିଁ ଏ ପଙ୍କ୍ତିର ଯୁକ୍ତିଯୁକ୍ତ ଅର୍ଥ । କବି ଶବରୀପାଦଙ୍କର ଏହି ମନୋହର କବିତାଟିର ମର୍ମବାଣୀ, ସହଜ ସୁନ୍ଦରୀ ସବରୀ (ସଂସାର) ଓ ଦାରୀ ନୈରାମଣି (ନୈରାତ୍ମ୍ୟ ବା ନିର୍ବାଣ) ଭିତରେ ଥିବା ସୂକ୍ଷ୍ମ ବୈପରୀତ୍ୟବୋଧ ଉପରେହିଁ ବିରାଜିତ । କବି ତାଙ୍କ କଳ୍ପନାର ସମସ୍ତ ଆଶୀର୍ବାଦ ଶବରୀ (ସଂସାର) ଉପରେ ଢାଳିଦେଇଛନ୍ତି ତା'ର ଆପାତଆକର୍ଷଣକୁ ପାଠକ ଆଗରେ ପରିବେଷିତ କରିବା ପାଇଁ ଏବଂ ଦାରୀ ନୈରାମଣି (ନୈରାତ୍ମ୍ୟ ବା ନିର୍ବାଣ)କୁ ବର୍ଣ୍ଣନା କରିଛନ୍ତି ପ୍ରାୟ ବର୍ଣ୍ଣହୀନ ତୂଳିକାରେ; ନିର୍ବାଣ ସାଧନାର କଠୋରତା ସହିତ ଯଥାର୍ଥତଃ ସଂଗତି ରକ୍ଷାକରି । ତଥାପି ଶବର (ଯୋଗୀ) ଅଳଙ୍କାରଭୂଷିତା ସହଜସୁନ୍ଦରୀ ସ୍ୱ-ପତ୍ନୀକୁ ତ୍ୟାଗକରି, ଅନୁରକ୍ତ ହୋଇଛି ଅମନୋହରା ନିର୍ବାଣ ବା ଦାରୀ ନୈରାମଣି ପ୍ରତି । ସଂସାର (ଶବରୀ) ପଛରେ ପଡ଼ିରହିଲା ଓ ଶବର (ଯୋଗୀ) ଅନ୍ତର୍ହିତ ହୋଇଗଲା ଗିରିବର ଶିଖର ସନ୍ଧିରେ, ଅର୍ଥାତ୍ ଅ· । ଚେତନା ସ୍ତରରେ । ଶବରୀର ଶବରକୁ 'ଲୋଡ଼ିବାକୁ' ଯିବା ବର୍ତ୍ତମାନ ସଂପୂର୍ଣ୍ଣ ବ୍ୟର୍ଥ ପ୍ରୟାସ ।

ଉପର୍ଯ୍ୟୁକ୍ତ କବିତାର 'ଦାରୀ' ଓ 'ଲୋଡ଼ଇ' ପରି, ଏହି ବୌଦ୍ଧ କବିତାଗୁଡ଼ିକରେ ଡଜନ୍ ଡଜନ୍ ଶବ୍ଦ ବ୍ୟବହୃତ ହେବାର ଦେଖାଯାଉଛି; ଯାହା ଏବେ ବି ଓଡ଼ିଶାରେ ନିତ୍ୟବ୍ୟବହୃତ; ଅଥଚ୍ ସେଗୁଡ଼ିକ ଭାରତର ଅନ୍ୟ କୌଣସି ଅଞ୍ଚଳରେ ବ୍ୟବହୃତ ହେଉଥିବାର ଜଣାନାହିଁ । ନୂତନ ଦୃଷ୍ଟାନ୍ତସ୍ୱରୂପ, 'ରାଉତ' ଶବ୍ଦଟିକୁ ନିଆଯାଉ । ଶ୍ରୀ ହରପ୍ରସାଦ ଶାସ୍ତ୍ରୀଙ୍କ ମତରେ, ଏହି ରାଉତ ଶବ୍ଦଟି 'ପୂର୍ବେ' ବଙ୍ଗଳାରେ ପ୍ରଚଳିତ ଥିଲା । କିନ୍ତୁ ଓଡ଼ିଶାର ରାଜନ୍ୟ ଓ ଯୋଦ୍ଧୃଜାତିର ସଂଜ୍ଞା ଭାବରେ ରାଉତ ଓ ରାଉତରାୟ ଆଜି ମଧ୍ୟ ସହସ୍ର ସହସ୍ର ଓଡ଼ିଆର ପଦବୀ । ଓଡ଼ିଶାର ପ୍ରଖ୍ୟାତ ସମ୍ରାଟ୍ କପିଳେନ୍ଦ୍ର ଦେବ ନିଜକୁ 'ରାଉତରାୟ' (କମାଣ୍ଡର-ଇନ୍-ଚିଫ୍) ବୋଲି ଗର୍ବ କରୁଥିଲେ । ଦେଖ, ପୁଣି ଏବର ପ୍ରସିଦ୍ଧ ଓଡ଼ିଆ କବି ସଚ୍ଚି ରାଉତରାୟ । ତେଣୁ ଏହି କବିତାଗୁଚ୍ଛର ଅନ୍ୟତମ ପ୍ରସିଦ୍ଧ କବି

ଭୁସୁକୁ ରାଉତ ଯେ ଓଡ଼ିଶାର ଲୋକ ଥିଲେ, ତାହା ଧରିନେବା ଏକାନ୍ତ ଯୁକ୍ତିଯୁକ୍ତ ହେବ । ଏହି ଭୁସୁକୁ, ତାଙ୍କର ସାଂସାରିକ ଜୀବନରେ ରାଜବଂଶଜ ଥିଲେ ଓ ତାଙ୍କର ସେ ଜୀବନର ନାମ ଶାନ୍ତିଦେବ ଥିଲା ବୋଲି କୁହାଯାଏ । ଓଡ଼ିଶାର କେନ୍ଦୁଝର ରାଜ୍ୟରେ (ପ୍ରାଚୀନ ଜହର ରାଜ୍ୟ) ଶାନ୍ତିଦେବ ନାମକ ଜଣେ ରାଜା (ଡାକନାମ ସଛେଇ ଭଞ୍ଜ) ସିଂହାସନ ଛାଡ଼ିଦେଇ ସନ୍ୟାସ ଗ୍ରହଣ କରିଥିବାର କିଂବଦନ୍ତୀ ଏବେ ବି ବଞ୍ଚିରହିଛି । ପ୍ରାଚୀନ ବୌଦ୍ଧବିହାରର ଭଗ୍ନାବଶେଷପୂର୍ଣ୍ଣ କେନ୍ଦୁଝରର ଏକ ଆରଣ୍ୟକ ଅଞ୍ଚଳରେ, ଶାନ୍ତିଦେବଙ୍କ ସାଧନାପୀଠ (ସଛେଇ ଭଞ୍ଜ ହୁଡ଼ି) ଭାବରେ, ଲୋକେ ଏପର୍ଯ୍ୟନ୍ତ ଶାନ୍ତିଦେବଙ୍କ ଗୁହା ଦେଖାଇଦେଇଥାନ୍ତି । ଭୁସୁକୁ ରାଉତଙ୍କ କବିତାଗୁଡ଼ିକ ମଧ ସେମାନଙ୍କର ରଚୟିତାଙ୍କର ଅଭିଜାତ-ଜନ୍ମ ଓ ପାଳନ, ପୁଣି ଶୃଙ୍ଖଳିତ ବିଦ୍ୟାଧ୍ୟୟନର ସ୍ପଷ୍ଟ ସୂଚନା ଦିଏ । ଏହି ସମଗ୍ର କବିତାଗୁଚ୍ଛରେ ଭୁସୁକୁଙ୍କ କବିତାମାନଙ୍କରେହିଁ ଆମେ ଶିକାରର ଉପମାଦି ପାଉ; ଯାହା ରାଜବଂଶୀୟମାନଙ୍କ ନିକଟରେ ସୁପରିଚିତ । ତାଙ୍କ ରଚିତ କବିତାଗୁଡ଼ିକର ସୌଖୀନତା ଓ ବିଦ୍‌ବତ୍ତା ତାଙ୍କର ଉଚ୍ଚବଂଶ ଓ ବିଧିବଦ୍ଧ ଶାସ୍ତ୍ରାଲୋଚନାର ସ୍ପଷ୍ଟ ପରିଚୟ ଦିଏ । ଭାଷାଗତ, ଭୌଗୋଳିକ ଓ କିଂବଦନ୍ତୀମୂଳକ ଏ ସମସ୍ତ ସାକ୍ଷ୍ୟକୁ ଉଡ଼େଇଦେଇ କବି ଭୁସୁକୁ ଓଡ଼ିଆ ନୁହନ୍ତି କହିବାହିଁ ଅଯୌକ୍ତିକ ହେବ ।

ଅଧିକନ୍ତୁ, ଏହି କବିତାମାନଙ୍କ ମଧ୍ୟରୁ ଅଧିକାଂଶ ଶବର ଓ ଶବରୀ ଭିତରେ କଥୋପକଥନ ବା ସେମାନଙ୍କ ପ୍ରତି ଉଦ୍ଦିଷ୍ଟ । ଏହା ମଧ ଏହି କବିତାଗୁଡ଼ିକୁ ଭାରତର ଅନ୍ୟ ଯେକୌଣସି ଅଞ୍ଚଳ ଅପେକ୍ଷା ଓଡ଼ିଶା ପ୍ରତି ନିକଟତର କରୁଛି । ପୂର୍ବରୁ ସୂଚିତ ହୋଇଛି ଯେ, ଓଡ଼ିଶା ମାଟିରେ ଉଡ୍ର (ଏବର ଓଡ଼ିଆ) ଓ ଶବର(ଶଅର)ମାନେ ଆବହମାନକାଳରୁ ଏକତ୍ର ବାସ କରି ଆସିଛନ୍ତି । ଏବେ ମଧ, ଓଡ଼ିଶାର ପ୍ରଧାନ ନଗର କଟକର ମାତ୍ର ବାରକ୍ରୋଶ ଭିତରେ ଆମେ ଶବର-ବସତି ଅବସ୍ଥିତ ଥିବାର ଦେଖିବା; ଯେଉଁଠି ଶବର-ଶବରୀ ଏବେ ବି ତାଙ୍କର ଆଦିମ କୌଳିକ ରୀତିରେହିଁ ଚଳିଆସୁଛନ୍ତି । ଓଡ୍ରମାନେ ଶବରମାନଙ୍କର ଗୋଷ୍ଠୀ-ଦେବତା ନୀଳମାଧବଙ୍କୁ ଏ ଅଞ୍ଚଳର ସାଧାରଣ ଦେବତା ଭାବରେ ଗ୍ରହଣ କରିନେବାରୁହିଁ ଜଗନ୍ନାଥିକ ବିବର୍ତ୍ତନ ଦେଇ ଏଠାରେ ହିନ୍ଦୁଧର୍ମ ଏକ ବିପ୍ଳବାତ୍ମକ ଭାବରେ ପ୍ରକାଶ ଲାଭ କରିଛି (ଦେଖ ଅଷ୍ଟମ ଅଧ୍ୟାୟ) । ଓଡ଼ିଶାର ବହୁ ଯାତ୍ରାରେ ଏବେ ବି ଶବର ଓ ଶବରୀ ପ୍ରଧାନ ନାୟକ ଓ ନାୟିକା ଭାବରେ ଅବତୀର୍ଣ୍ଣ ହୁଅନ୍ତି । ତନ୍ତ୍ରୋକ୍ତ ଏକ ପର୍ଣ୍ଣ-ଶବର ଓ ପର୍ଣ୍ଣ-ଶବରୀ (ପତରଶଉରା) ଦମ୍ପତିଙ୍କ ବନ୍ୟଜୀବନର ଦିନକର ଘଟଣା ଉପରେ ଖାଣ୍ଟି ଓଡ଼ିଶୀ ଦଣ୍ଡ-ଯାତ୍ରା ସୁଆଙ୍ଗ ପରିକଳ୍ପିତ । ବଙ୍ଗ ଦେଶରେ ଏ ପ୍ରକାର ଶବର ପ୍ରଭାବ କାହିଁ ? ବଙ୍ଗଳା-ଲିଖିତ କବିତାବଳି ଏପରି ଶବର-ଶବରୀମୟ କିପରି ଓ କାହିଁକି ହେବ ?

**ଭୌଗୋଳିକ ଭିତ୍ତି –**

ପୁଣି ଏହି କବିତାଗୁଡ଼ିକର ଭିତ୍ତିରୂପୀ ବୌଦ୍ଧତନ୍ତ୍ରର ଜନ୍ମଭୂମିର ଶାସ୍ତ୍ରୀୟ ନାମ ହେଲା ଉଡ୍‌ଡୀୟାନ । ଏହି ଉଡ୍‌ଡୀୟାନର ଆଧୁନିକ ଭୌଗୋଳିକ ଅବସ୍ଥିତି ନେଇ ପଣ୍ଡିତମାନେ

ବହୁ ଆଲୋଚନା କରିସାରିଛନ୍ତି । କିନ୍ତୁ ଆଧୁନିକତମ ଆଲୋଚନା, ବୌଦ୍ଧତନ୍ତ୍ର ବା ବୌଦ୍ଧ-ତାନ୍ତ୍ରିକ-କବିତାବଳିର ରଚୟିତାମାନଙ୍କ ବାସଭୂମି ସମ୍ବନ୍ଧରେ ଆମର ସକଳ ପୂର୍ବଧାରଣାକୁ ଓଲଟପାଲଟ କରିଦେଲାଣି । ଏହି କବିତାମାନଙ୍କର ଦାରିପା, ଢେଙ୍କିପା, ଲୁଇପା, କାହ୍ନୁପା, ଶବରୀପା ପ୍ରଭୃତି କବିଗଣଙ୍କର ସ୍ମୃତି ଓଡ଼ିଶାର ବହୁ ସ୍ଥାନ ଏବେ ମଧ୍ୟ ବହନ କରୁଛି । ତରୁଣ ଐତିହାସିକ ଡକ୍ଟର ନବୀନକୁମାର ସାହୁ ତାଙ୍କର ପୁସ୍ତକ 'ଓଡ଼ିଶାରେ ବୌଦ୍ଧଧର୍ମ'ରେ ଶକ୍ତିଶାଳୀ ଯୁକ୍ତି ଦ୍ୱାରା ପ୍ରାଚୀନ ଉଡ୍‌ଡୀୟାନ ଓଡ଼ିଶା ଛଡ଼ା ଅନ୍ୟ ଅଞ୍ଚଳ ହୋଇ ନ ପାରେ ବୋଲି ପ୍ରମାଣ କରିପାରିଛନ୍ତି । ଡକ୍ଟର ସିଲ୍‌ଭାଁ ଲେଭି ଓ ଡକ୍ଟର ପ୍ରବୋଧଚନ୍ଦ୍ର ବାଗ୍‌ଚୀଙ୍କ ସକଳ ପୂର୍ବଯୁକ୍ତି ଖଣ୍ଡନ କରି ସେ (ପୃ: ୧୫୨ – ୫୪) ଏହିପରି ଭାବରେ ନିଜର ସିଦ୍ଧାନ୍ତ ପରିବେଷିତ କରିଅଛନ୍ତି –

''ସରହ, ଲୁଇ, ଶବରୀପା ଓ ଅନ୍ୟାନ୍ୟ ବୌଦ୍ଧ ସିଦ୍ଧଗଣ ଯେଉଁମାନଙ୍କୁ ତିବ୍ବତୀ ଓ ଅନ୍ୟ ପ୍ରାମାଣିକ ଗ୍ରନ୍ଥମାନଙ୍କରେ ଉଡ୍‌ଡ୍ରୀୟାନର ଲୋକ ବୋଲି କୁହାଯାଇଛି, ସେମାନେ ବହୁସଂଖ୍ୟକ ଦୋହା ଓ ଗାନ ରଚନା କରିଥିବା ମଧ୍ୟ କୁହାଯାଏ; ଯାହାର ଭାଷା ଏବର ବଙ୍ଗଳା, ଓଡ଼ିଆ, ଆସାମୀ ଓ ମୈଥିଳୀ ଭାଷାମାନଙ୍କର ପୂର୍ବପୁରୁଷ ବୋଲି ଗଣିତ । ଉଡ୍‌ଡ୍ରୀୟାନ ଯଦି ଉତ୍ତର-ପଶ୍ଚିମ ଭାରତ (ଏବେ ପାକିସ୍ଥାନ)ର ସ୍ୱାତ-ଉପତ୍ୟକା ବୋଲି ଓ ତାହା ଏହି ସିଦ୍ଧମାନଙ୍କର ବାସଭୂମି ବୋଲି ଧରାଯାଏ, ତେବେ ଆମେ ବୁଝିବା କଷ୍ଟକର ହେଉଛି – ସେମାନେ ଉତ୍ତର-ପଶ୍ଚିମ ଭାରତରେ ସମକାଳୀନ ପ୍ରଚଳିତ ଭାଷାରେ ଗୋଟିଏ ସୁଦ୍ଧା କବିତା ନ ଲେଖି, ଉତ୍ତର-ପୂର୍ବ ଅଞ୍ଚଳର ଅପଭ୍ରଂଶ ଭାଷାରେ ଲେଖିବାକୁ ଗଲେ କିପରି ? ତେଣୁ ସୁସ୍ପଷ୍ଟଭାବରେ କହିବାକୁ ହେବ ଯେ, ଉଡ୍‌ଡ୍ରୀୟାନ ଭାରତର ଉତ୍ତର-ପଶ୍ଚିମରେ ସ୍ୱାତ-ଉପତ୍ୟକାରେ ନଥିଲା; ଥିଲା ଉତ୍ତର-ପୂର୍ବରେ । ପୁଣି ଜାଣିରଖିବାର କଥା ଏହି ଯେ, ସ୍ୱାତ-ଉପତ୍ୟକାରେ ଏପର୍ଯ୍ୟନ୍ତ ସାମାନ୍ୟ ମୂଲ୍ୟର ମଧ୍ୟ କୌଣସି ତାନ୍ତ୍ରିକ ପ୍ରତିମା ମିଳିନାହିଁ । × × × ବରଂ ଏହାହିଁ ବିସ୍ମୟର ବିଷୟ ଯେ, ତନ୍ତ୍ରଶାସ୍ତ୍ରୋକ୍ତ ଯୁଗ୍ମ ଦେବୀ କୁରୁକୁଲ୍ଲା ଓ ବଜ୍ରବରାହୀ; ଯାହାଙ୍କୁ ଉଡ୍‌ଡ୍ରୀୟାନର ଅଧିଷ୍ଠାତ୍ରୀ ଦେବତା କୁହାଯାଏ, ତାଙ୍କର ପ୍ରତିମା ସାରା ଭାରତବର୍ଷରେ ଏପର୍ଯ୍ୟନ୍ତ କେବଳ ଓଡ଼ିଶାରୁହିଁ ମିଳିଛି; ଭାରତର ଅନ୍ୟ କୌଣସି ଅଞ୍ଚଳରୁ ମିଳିନାହିଁ । × × × ତେଣୁ ଐତିହାସିକ, ସାହିତ୍ୟିକ, ପ୍ରତ୍ନତାତ୍ତ୍ୱିକ, କିମ୍ବଦନ୍ତିକ, ସକଳ ଦିଗରୁ ପ୍ରମାଣିତ ହୋଇଉଠିଚି ଯେ ବୌଦ୍ଧତନ୍ତ୍ରର ଜନ୍ମଭୂମି ଉଡ୍‌ଡ୍ରୀ-ୟାନ ସୁଦୂର ସ୍ୱାତ-ଉପତ୍ୟକା ନୁହେଁ, ତାହା ଓଡ଼ିଶା ବୋଲି ଗୃହୀତ ହେବା ସୁନିଶ୍ଚିତ ।

**ସୁସମଞ୍ଜସ ପରିବେଶ –**

ଏହି କବିତାଗୁଡ଼ିକ ଓଡ଼ିଶାରେ ଓ ବକ୍ଷ୍ୟମାଣ କାଳର ଓଡ଼ିଶାରେ ରଚିତ ହୋଇଥିବାର ଐତିହାସିକ ସମ୍ଭାବନା ମଧ୍ୟ ଅତ୍ୟନ୍ତ ପ୍ରବଳ ବୋଧ ହେଉଛି । ଏହି କବିତାଗୁଡ଼ିକର ସମସାମୟିକ କାଳ ଓଡ଼ିଶାର ଇତିହାସରେ ଏକ ଗୌରବ ଓ ସମୃଦ୍ଧିମନ୍ତ କାଳ କେବଳ ନଥିଲା, ତାହା ମଧ୍ୟ ଥିଲା ଓଡ଼ିଶାରେ ବିଶିଷ୍ଟ ବୌଦ୍ଧପ୍ରଭାବର ଯୁଗ । ଭୌମ-କର ରାଜାମାନଙ୍କ ପୃଷ୍ଠପୋଷକତାରେ ଓଡ଼ିଶାର କଳା ସାହିତ୍ୟ କିପରି ପ୍ରଥମକରି ପୁଷ୍ଟିତ

ହୋଇଉଠିଥିଲା, ତାହା ପୂର୍ବ ଅଧ୍ୟାୟରେ ସୂଚିତ ହୋଇସାରିଛି । ତାଙ୍କର ଓଡ଼ିଶା ଇତିହାସରେ (ପୃ-୫୩) ଡକ୍ଟର ମହତାବ ଯଥାର୍ଥ କହିଛନ୍ତି –

''ଭୌମ ରାଜତ୍ୱରେ ବୌଦ୍ଧ କଳା ଓ ସାହିତ୍ୟର ପ୍ରଭାବ ସମଗ୍ର ଉତ୍କଳରେ ବ୍ୟାପ୍ତ ହୋଇଉଠିଥିଲା । ଏହି ଯୁଗର ବୌଦ୍ଧ କୀର୍ତ୍ତିରାଜିର ଚିହ୍ନାବଳି ମୟୂରଭଞ୍ଜର ଖିଚିଂରେ, ବଉଦ ଓ ଚୌଦ୍ୱାରରେ, ପୁଣି ବିଶେଷଭାବରେ କଟକ ଜିଲ୍ଲାର ଉଦୟଗିରି ଓ ରତ୍ନଗିରିରେ ମିଳିଛି । ପଣ୍ଡିତ ସମାଲୋଚକମାନଙ୍କ ମତରେ ଏହି ଯୁଗର କଳାହିଁ ଓଡ଼ିଶାର ଶ୍ରେଷ୍ଠ କଳା । ଶିକ୍ଷା, ସଂସ୍କୃତି, ସଭ୍ୟତା, କଳା, ସ୍ଥାପତ୍ୟ ସବୁ କ୍ଷେତ୍ରରେ ଓଡ଼ିଶା ଏହି କାଳରେ ଅଭୂତପୂର୍ବ ଉନ୍ନତି କରିପାରିଥିଲା । ଆଧୁନିକ ଓଡ଼ିଶାରେ ସାମାଜିକ ଜୀବନ ମଧ୍ୟ ଭୌମ-କର ସଂସ୍କୃତିର ଚିହ୍ନ ସ୍ପଷ୍ଟତଃ ବହନ କରେ । ଏହି ଭୌମମାନଙ୍କ ରାଜତ୍ୱରେହିଁ ଏକ ସ୍ୱତନ୍ତ୍ର ଓଡ଼ିଆ ଜାତୀୟତାର ମୂଳପତ୍ତନ ପଡ଼ିଲା ।''

ଭାରତ ଇତିହାସର ପ୍ରତ୍ୟେକ ଛାତ୍ର ଜାଣନ୍ତି ଯେ, ଶାନ୍ତିକର ନାମକ ଜଣେ ଭୌମ ରାଜା ସ୍ୱହସ୍ତଲିଖିତ ଏକ ବୌଦ୍ଧଶାସ୍ତ୍ର ଚୀନ୍ ସମ୍ରାଟ୍‌ଙ୍କ ନିକଟକୁ ଉପହାରରୂପେ ପଠାଇଥିଲେ ଏବଂ ସେହି ଉପହାର ନେଇ ଚୀନ୍‌କୁ ଯାଇଥିଲେ ପ୍ରସିଦ୍ଧ ବୌଦ୍ଧ ପଣ୍ଡିତ ଓ ପ୍ରଚାରକ ପ୍ରାଜ୍ଞ । ଏଇ ପ୍ରକାର ବୌଦ୍ଧ ଜ୍ଞାନୀ ଓ କଳାକାରବୃନ୍ଦହିଁ ଭୌମ ରାଜତ୍ୱକୁ ଅଳଂକୃତ ଓ ଗୌରବ ଦାନ କରିଯାଇଅଛନ୍ତି । ଜ୍ଞାନ ଓ କଳାଚର୍ଚ୍ଚାର ସେହି ଅନୁକୂଳ ଭୌମ ବାତାବରଣରେ କାହ୍ନୁପାଦ, ଶବରପାଦ ଓ ଲୁଇପାଦ ପ୍ରଭୃତି ବୌଦ୍ଧ ସିଦ୍ଧ କବିମାନେ ମଧ୍ୟ ଯେ ଧାର୍ମିକ ସାଧନା ଓ କାବ୍ୟରଚନାରେ ଜୀବନ ଅତିବାହିତ କରିଥିବେ, ଏଥିରେ ବିସ୍ମୟର କାରଣ ନାହିଁ । ଖୁବ୍ ସମ୍ଭବତଃ ଭୌମ ରାଜାମାନଙ୍କ ପ୍ରତିଷ୍ଠିତ ରତ୍ନଗିରି, ଉଦୟଗିରି ପ୍ରଭୃତିର ବୌଦ୍ଧ ବିହାର ଓ ବିଦ୍ୟାପୀଠମାନଙ୍କରେ ଏହି ସାଧକ କବିମାନେ ଅବସ୍ଥାନ କରୁଥିଲେ । ସମଗ୍ର ଉତ୍ତର-ଓଡ଼ିଶା ଏହି ପ୍ରକାର ପ୍ରାଚୀନ ଅନୁଷ୍ଠାନମାନଙ୍କର ଭଗ୍ନାବଶେଷରେ ଆକୀର୍ଣ୍ଣ ରହିଛି ।

**ଓଡ଼ିଆ ସାହିତ୍ୟରେ ରହସ୍ୟବାଦର ଧାରା –**

ଆହୁରି ମଧ୍ୟ ଦେଖିବାର କଥା ଯେ, ଓଡ଼ିଆ ଜାତୀୟ ଚେତନାରେ ଯେଉଁ ନାଥ-ମହାଯାନୀ ଉପାଦାନ ଚିରକାଳ ଅନ୍ତଃସ୍ରୋତ ଭାବରେ ପ୍ରବାହିତ ଏବଂ ଯାହା ଏହି ବୌଦ୍ଧ କବିତାଗୁଡ଼ିକର ପ୍ରାଣ ଓ ସୌରଭ, ତାହା ଯୁଗେ ଯୁଗେ, ପୁନଃ ପୁନଃ ଅନବଚ୍ଛିନ୍ନ ଭାବରେ ଓଡ଼ିଆ ସାହିତ୍ୟରେ ଫୁଟି ବାହାରିଛି । ସପ୍ତମ-ନବମ ଶତାବ୍ଦୀର ଏହା ଚର୍ଯ୍ୟାପଦାବଳି, ଚତୁର୍ଦ୍ଦଶ ଶତାବ୍ଦୀର ଶିଶୁବେଦ, ପଞ୍ଚଦଶ ଶତାବ୍ଦୀର ପଞ୍ଚସଖାଙ୍କ ରଚନାବଳି, ସପ୍ତଦଶ ଶତାବ୍ଦୀର ଅରକ୍ଷିତ ଦାସଙ୍କ ମହୀମଣ୍ଡଳ ଗୀତା, ଅଷ୍ଟାଦଶ ଶତାବ୍ଦୀର ଭୀମ ଭୋଇଙ୍କ ଭଜନାବଳି ଏବଂ ଊନବିଂଶ ଶତାବ୍ଦୀର ଭକ୍ତକବି ମଧୁସୂଦନଙ୍କ କବିତାମାଳା ସ୍ପଷ୍ଟ ପ୍ରମାଣିତ କରୁଛି, କିପରି ଓଡ଼ିଆଜାତିର ସାମଗ୍ରିକ ଚେତନାର ଅନ୍ତର୍ଭୂମିରେ ଏହି ଶ୍ରେଣୀୟ ଧର୍ମୀୟ ତତ୍ତ୍ୱ-ଜିଜ୍ଞାସା ଅନାହତ ଧାରାରେ ପ୍ରବାହିତ ରହିଛି । ସପ୍ତମ-ନବମ ଶତାବ୍ଦୀର ଅପଭ୍ରଂଶ-ରଚିତ ଏହି ବୌଦ୍ଧ ପଦାବଳି ଏହି ଜାତୀୟ କବିତାର ଆରମ୍ଭ ମାତ୍ର, ଯାହା ଭିନ୍ନ ଭିନ୍ନ

ଯୁଗର ରୁଚି ଅନୁଯାୟୀ ଭିନ୍ନ ଭିନ୍ନ ପ୍ରକାରରେ ଓଡ଼ିଶାର ଆଧ୍ୟାତ୍ମିକ କବିମାନଙ୍କ ଦ୍ୱାରା ଆଧୁନିକତମ କାଳ ପର୍ଯ୍ୟନ୍ତ ପରିପୁଷ୍ଟ ହୋଇଆସିଛି ।

ସପ୍ତମ-ନବମ ଶତାବ୍ଦୀର ଏହି ବୌଦ୍ଧ କବିତାଗୁଚ୍ଛ ଭିତରୁ ଆଉ ଗୋଟିଏ ନିମ୍ନରେ ଦିଆଯାଇଛି; ଯାହା ଆଜି ମଧ୍ୟ ଓଡ଼ିଶାର ଯେକୌଣସି ଆଦିବାସୀ ଗ୍ରାମର ବର୍ଣ୍ଣନା ହୋଇପାରେ । ଏହି କବିତାଟିରେ ଯେପରି ବର୍ଣ୍ଣିତ, ଆଜି ମଧ୍ୟ ଓଡ଼ିଶାର ଆଦିବାସୀ ତା'ର ପ୍ରିୟ ଶସ୍ୟ କାଙ୍ଗୁ ଓ ଜହ୍ନା ଲଗେଇବା ପାଇଁ ସେହିପରି କୁରାଢ଼ି ସାହାଯ୍ୟରେ ବଣ କାଟି ଟଇଲା ଜମି ତିଆରି କରୁଛି । ତେଣୁ ହିଁ ଏହି ପ୍ରାଚୀନ ବୌଦ୍ଧ କବିତା ଓଡ଼ିଶାର ପାର୍ବତ୍ୟ ଅଞ୍ଚଳର ଯେକୌଣସି ଗ୍ରାମର ପ୍ରାକୃତିକ ପରିବେଶର ସୌରଭ ଆଜି ବି ଦେଇପାରୁଛି ।

''ଗଅଣତ ଗଅଣତ ଟଇଲା ବାଡ଼ୀ, ହେଁଛେ କୁରାଢ଼ି
କଣ୍ଠେ ନୈରାମଣି ବାଳି ଜାଗନ୍ତେ ଉପାଡ଼ି ।
ଛାଡୁ ଛାଡୁ ମାଆ ମୋହା ବିଷମ ଦୁନ୍ଦୋଳୀ
ମହାସୁହେ ବିଳସନ୍ତି ଶବରୋ ଲଇଆ ସୁଣମେହେଲୀ ।
× × × × ×
ଟଇଲା ବାଡ଼ିର ପାଂଶେରେ ଜୋହ୍ନା ବାଡ଼ୀ ଉଏଲା
ଫିଟେଲି ଅନ୍ଧାରିରେ ଆକାଶ ଫୁଲିଆ ।
କଙ୍ଗୁରି ପାକେଲା ରେ ଶବର ଶବରୀ ମାତେଲା
ଅଣୁଦିନ ଶବରୋ କିଂପି ନ ଚେବେଇ ମହାସୁହେଁ ଭୋଳା ।
ଚାରିବାସେଁ ଭାଇଲାରେ ଦିଆ ଚଞ୍ଚାଳି,
ତହିଁ ତୋଳି ଶବର ଡାହ କଏଲା, କାନ୍ଦଇ ସଗୁଣ ଶିଆଳୀ ।''

''ଗହନ ଅରଣ୍ୟ ଶବରର କୁରାଢ଼ି ଆଘାତରେ ଟଇଲା ଭୂମିରେ ପରିଣତ ହୋଇଛି । ଶବର ପାଖରେ ସବୁବେଳେ ଅଛି ତା'ର ସ୍ତ୍ରୀ ନୈରାମଣି, ଯେ ସବୁ ଅବାଞ୍ଛିତ ଗଛ-ଲତାକୁ ଉପାଡ଼ିପକାଏ । ସେହି କଣ୍ଟାବୁଦାରୂପକ ମାୟାମୋହରୁ ମୁକ୍ତ ଶବର ମାୟାବିନୀ ଶୂନ୍ୟ ସହିତ ମହାସୁଖରେ ବିଚରଣ କରୁଛି । × × × ଟଇଲା ଜମିର ଆରପଟେ ଅନ୍ଧକାର ଆକାଶରେ ଜ୍ୟୋତିଷ୍କ ପରି ଜହ୍ନାଶସ୍ୟ ଉଠିଛି । କାଙ୍ଗୁ ଓ ଜହ୍ନା ପାଚିଆସିବାର ଦେଖି ଶବର ଓ ଶବରୀମାନେ ବର୍ତ୍ତମାନ ମଦୋନ୍ମତ୍ତ ଏବଂ ଶବର ସେହି ମହାସୁଖ ପରିତ୍ୟାଗ କରି ଜାଗ୍ରତ ହେବାକୁ ଇଚ୍ଛା କରୁନାହିଁ । ଶବର ତା ଖେତର ଚାରିଆଡ଼େ ପଶୁ-ପକ୍ଷୀ-ତ୍ରାସକ-ଦଣ୍ଡ ସବୁ ପୋତି ରଖିଛି । ତେଣୁ ସେ ଯେତେବେଳେ ମଉଜରେ ପୋଡ଼ା-ମକା ଚୋବାଉଛି, ତା ଖେତ ବାହାରେ ଶିଆଳୀ କିଛି ଖାଇବାକୁ ନପାଇ ବିଳାପ କରୁଛି । [୧]

□□□

---

(୧) ଚର୍ଯ୍ୟାପଦଗୁଡ଼ିକର ଅର୍ଥବୋଧରେ ମୋର ସେତେବେଳର ସହକର୍ମୀ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ସହାୟତା ପ୍ରତି ଲେଖକ କୃତଜ୍ଞ ।

## ପଞ୍ଚମ ଅଧ୍ୟାୟ

# ସଂସ୍କୃତର ମଧ୍ୟକାଳୀନ ରାଜତ୍ୱ

ସପ୍ତମ-ନବମ ଶତାବ୍ଦୀର ଓଡ଼ିଆ ଅପଭ୍ରଂଶ-ଲିଖିତ ବୌଦ୍ଧ କବିତାବଳି ପରଠାରୁ ତ୍ରୟୋଦଶ-ଚତୁର୍ଦ୍ଦଶ ଶତାବ୍ଦୀର ଶିଶୁବେଦ ଓ ରୁଦ୍ରସୁଧାନିଧି ଯାଏଁ ଓଡ଼ିଶା ରାଜ୍ୟର ସାଧାରଣ ଭାଷାରେ ଅନ୍ୟ କୌଣସି ସାହିତ୍ୟିକ ଗ୍ରନ୍ଥ ଏପର୍ଯ୍ୟନ୍ତ ମିଳିନାହିଁ, ମିଳିବାର ଆଶା ମଧ୍ୟ କରାଯାଇ ପାରିବ ନାହିଁ; କାରଣ ଏହି ଚାରି-ପାଞ୍ଚଶତ ବର୍ଷ ସଂସ୍କୃତ-ନିର୍ଭର ବ୍ରାହ୍ମଣ୍ୟ-ଧର୍ମହିଁ ସମଗ୍ର ଓଡ଼ିଶା ରାଜ୍ୟରେ ଏକଚ୍ଛତ୍ର ପ୍ରଭୁତ୍ୱ ଭୋଗକରୁଥିଲା । ବୌଦ୍ଧ ଭୌମକରମାନେ ଅଚିରେ ବ୍ରାହ୍ମଣ୍ୟ-ଧର୍ମର ମଧ୍ୟ ପୃଷ୍ଠପୋଷକ ହୋଇ ସେହି ଧର୍ମର ସକଳ ଦେବଦେବୀଙ୍କର ଭକ୍ତ ହୋଇଉଠିଥିଲେ । କିଂବଦନ୍ତୀ ଓ ଐତିହାସିକ ପ୍ରମାଣ ସୂଚନା କରେ ଯେ, ଓଡ଼ିଶାର ଗଙ୍ଗ ଓ ସୌର ରାଜାମାନଙ୍କ ସମୟରେ ବ୍ରାହ୍ମଣ୍ୟ-ଧର୍ମାନ୍ଧତା ଓଡ଼ିଶାରେ ବୌଦ୍ଧଧର୍ମ ପ୍ରତି ରୀତିମତ ତାଡ଼ନ ଓ ବିତାଡ଼ନର ବ୍ୟବସ୍ଥା କରିଥିଲା । ଏଥିରେ ବିସ୍ମିତ ହେବାର ମଧ୍ୟ କାରଣ ନାହିଁ, ଯେହେତୁ ଏହି ବକ୍ଷମାଣ କାଳରେହିଁ ଘଟିଥିଲା ଐତିହାସିକ ବ୍ରାହ୍ମଣ୍ୟଧର୍ମର ପୁନରୁଦୟ ଏବଂ ଆବିର୍ଭାବ ଘଟିଥିଲା ଶଙ୍କର, ରାମାନୁଜ, ମାଧ୍ୱ, ନିମ୍ବାର୍କ ପ୍ରଭୃତି ବ୍ରାହ୍ମଣ୍ୟଧର୍ମର ବିରାଟ ନେତୃବୃନ୍ଦଙ୍କର । ଏମାନଙ୍କ ଭିତରୁ ପ୍ରତ୍ୟେକେ ଓଡ଼ିଶା ଆସିଥିଲେ ଓ ସମଗ୍ର ପୂର୍ବଭାରତୀୟ ଅଞ୍ଚଳରେ ନିଜ ନିଜ ମତର ପ୍ରଚାର ଓ ପ୍ରତିଷ୍ଠା ପାଇଁ ପୁରୀ, ଜଗନ୍ନାଥଙ୍କଠାରେ ସ୍ୱ-ସ୍ୱ ମଠ-ପୀଠ ସ୍ଥାପନ କରିଯାଇଅଛନ୍ତି ।

କିନ୍ତୁ ଏହି ପୁନର୍ଜୀବନର ମାଧ୍ୟମ ହେଲା ସଂସ୍କୃତ, ଯାହା ଭିତରକୁ ସାଧାରଣ ନାଗରିକର ପ୍ରବେଶ ଥିଲା ନିଷିଦ୍ଧ । ବ୍ରାହ୍ମଣ୍ୟ ପ୍ରଭାବର ଉଦୟ ଫଳରେ ବୌଦ୍ଧଧର୍ମ ଓ ତାର ସହଗାମୀ ଗଣତାନ୍ତ୍ରିକ ସଂସ୍କୃତି ଉଭେଇଗଲା ଏବଂ ବୌଦ୍ଧଜ୍ଞାନ ଓ ଧର୍ମ-ସାଧନାର କେନ୍ଦ୍ର ବୌଦ୍ଧବିହାରଗୁଡ଼ିକ ଧ୍ୱଂସଆଡ଼କୁ ଗତି କଲେ । ସେ ଐତିହାସିକ କାଳରେ ସାମାଜିକ ଓ ରାଷ୍ଟ୍ରୀୟ ଉଭୟ ଅତ୍ୟାଚାରରୁ ରକ୍ଷା ପାଇବା ଲକ୍ଷ୍ୟରେ ଓଡ଼ିଶାର ଉପକୂଳାଞ୍ଚଳର ସମଗ୍ର ବୌଦ୍ଧବସତି ସବୁ ଉଠିଯାଇଛନ୍ତି ପଶ୍ଚିମର ସୁଦୂର ଜଙ୍ଗଲାଞ୍ଚଳକୁ, ସେଠାରେ ଶାନ୍ତିରେ ବାସକରିବାପାଇଁ । କିନ୍ତୁ ଓଡ଼ିଶାର ଜନତା ପୂର୍ବର ବୌଦ୍ଧ ଦେବଦେବୀ ପରିବର୍ତ୍ତରେ ହିନ୍ଦୁ ଦେବଦେବୀଙ୍କୁ ପୂଜିବାକୁ ଲାଗିଲେହେଁ ତାଙ୍କର ସ୍ୱ-କଥିତ ପ୍ରାକୃତ ଭାଷାରେ ମହାନ୍ ବୁଦ୍ଧବାଣୀ ତାଙ୍କ ନିକଟରୁ ପ୍ରତ୍ୟକ୍ଷ ଆସି ସେମାନଙ୍କ ଆତ୍ମାକୁ ଯେପରି ଭାବରେ ସହଜରେ ଉଦ୍‌ବୁଦ୍ଧ କରୁଥିଲା, ତାହା ଆଉ ହେଲାନାହିଁ । ବୌଦ୍ଧସଙ୍ଘ ଜନସମାଜରେ ଯେଉଁ ଗଣତାନ୍ତ୍ରିକ ଧର୍ମ ଓ ସଂସ୍କୃତି ସ୍ଥାପନ କରିଥିଲେ, ବର୍ତ୍ତମାନ ଚିତ୍ର ତାର ଓଲଟା ହୋଇଗଲା । ବ୍ରାହ୍ମଣ୍ୟଧର୍ମରେ ଧର୍ମଯାଜକଙ୍କ ବାଣୀ ଜନତା ନିକଟରେ ରହିଲା ଓ ରହିଛି

ଅବୋଧ ଓ ରହସ୍ୟମୟ ।

ସଂସ୍କୃତର ଏହି ଏକଛତ୍ର ଅଗଣତାନ୍ତ୍ରିକ ଶାସନ ବିରୁଦ୍ଧରେ ଓଡ଼ିଆ ଜନତାର ଆତ୍ମା ଯେ ଗୁମରିଉଠୁଥିଲା ଓ ଧୀରେ ନୀରବରେ ତାର ନ୍ୟାଯ୍ୟ ଦାବି ଜଣାଉଥିଲା ସ୍ୱ-କଥିତ ଓ ସ୍ୱ-ବୋଧ ଭାଷାରେ ରଚିତ ସାହିତ୍ୟ ପାଇଁ, ତାହାର ସ୍ପଷ୍ଟ ସୂଚନା ମିଳୁଛି । ଉଦାତ୍ତଧ୍ୱନିକ-ସଂସ୍କୃତ-ବିରଚିତ ଅଗଣିତ ରାଜକୀୟ ଦାନ-ପତ୍ର ଭିତରେ ଆମେ ବୌଦ୍ଧ କବିତାବଳିର ପ୍ରାୟ ଏକଶତ ବର୍ଷ ପରେ ଏକାଦଶ ଶତାବ୍ଦୀରେ କଳିଙ୍ଗରାଜ ଅନନ୍ତବର୍ମା ବଜ୍ରହସ୍ତଙ୍କର ଅଭିଲେଖ ପାଉଁ, ଯେଉଁଥିରେ ଆମେ ଦେଖୁ ଆଧୁନିକ ଓଡ଼ିଆର ସଂକୋଚମୟ ପ୍ରଥମ-ପଦପାତ । ସମଗ୍ର ଉତ୍ତର-ଭାରତୀୟ ଭାଷାମାନଙ୍କ ଭିତରେ ଏହା ଆଦ୍ୟତମ ଖୋଦିତ ଲିପି ବୋଲି ଧରାଯାଉଛି ।[୧] ଭୁବନେଶ୍ୱରର ଶିଳାଲିପି ଓ ସେହି ସମୟର ଅନ୍ୟାନ୍ୟ ଗଦ୍ୟ ଓ ପଦ୍ୟ ରଚନାବଳିରୁ ଆମେ ଜାଣୁଛୁ ଯେ ଖ୍ରୀ: ଅ: ତ୍ରୟୋଦଶ ଶତାବ୍ଦୀକୁ ଆଧୁନିକ ଓଡ଼ିଆ ବେଶ୍ ମୁଣ୍ଡ ଟେକି ଆତ୍ମବିଶ୍ୱାସରେ ଠିଆହେଲାଣି ଏବଂ ଏହାକୁ ଏକ ବିପ୍ଲବ ବୁଝିବାକୁ ହେବ । ଏହି ବିପ୍ଲବ ମୁଣ୍ଡ ଟେକିଲା ଉତ୍କଳୀୟ ଜନ-ଚେତନାର ଦାବିରୁ, ତା'ର ସ୍ୱକଥିତ ଭାଷାର ଅନୁକୂଳରେ ଓ ସମାଜର ସାମାନ୍ୟ ମାତ୍ର ଅଂଶ ବୁଝୁଥିବା ଏକ ଭାଷାର ଏକଛତ୍ର ପ୍ରଭୁତ୍ୱ ବିରୁଦ୍ଧରେ । ଯେ ଯାହାହେଉ, ଓଡ଼ିଶାର ସଂଖ୍ୟାଲଘୁ ବୁଦ୍ଧିଜୀବୀ ସଂପ୍ରଦାୟର ଭାଷା ଏହି ସଂସ୍କୃତକୁ ଆଶ୍ରୟ କରିହିଁ ଏଇ ଚାରି-ପାଞ୍ଚ ଶତାବ୍ଦୀ ଭିତରେ ଏକ ବିପୁଳ ପରିମିତ ସାହିତ୍ୟ ଛାଡ଼ିଯାଇଛନ୍ତି । ଦେଖାଯାଉଛି ଯେ ଏକ ଏକ ବିଚକ୍ଷଣ ଉତ୍କଳୀୟ ବ୍ରାହ୍ମଣ ପରିବାର ପୁରୁଷ ପୁରୁଷଧରି ସଂସ୍କୃତ ପୁସ୍ତକ ରଚନା କରିଚାଲିଛନ୍ତି । ଦେଶର ରାଜାମାନେ ମଧ୍ୟ ସଂସ୍କୃତ ଭାଷାରେ ଲେଖକର ଗୌରବ ପାଇଁ ଲାଳାୟିତ ହୋଇଉଠିଛନ୍ତି । ଦୁଃଖର ବିଷୟ ଯେ, ଓଡ଼ିଆମାନଙ୍କ ବିରଚିତ ବିପୁଳ ପରିମିତ ସଂସ୍କୃତ ଗ୍ରନ୍ଥରାଜିର ଅଧିକାଂଶ ଏପର୍ଯ୍ୟନ୍ତ ଅପ୍ରକାଶିତ । କେବଳ ଦର୍ଶନ-ଶାସ୍ତ୍ର ଛଡ଼ା ମାନବିକ ଜ୍ଞାନର ଅନ୍ୟ ସକଳ ଶାଖାରେ ଓଡ଼ିଶୀ ପଣ୍ଡିତବର୍ଗ ସଂସ୍କୃତରେ ବହୁ ଗ୍ରନ୍ଥ ଛାଡ଼ିଯାଇଛନ୍ତି । ସଂସ୍କୃତ ସାହିତ୍ୟର ଅନେକ ପ୍ରଧାନ ପୁସ୍ତକ ଉପରେ ଏକାଧିକ ଭାଷ୍ୟ ଓଡ଼ିଶାରେ ସ୍ୱତନ୍ତ୍ର ଭାବରେ ଲେଖାହୋଇଥିବାର ଦେଖାଯାଉଛି । ଭାଷ୍ୟମାନଙ୍କ ପରି ସ୍ମୃତି-ଗ୍ରନ୍ଥ ମଧ୍ୟ ପ୍ରଚୁର । ଶେଷୋକ୍ତ ସାହିତ୍ୟର ପ୍ରାଚୁର୍ଯ୍ୟ ପୁରୋହିତ ସଂପ୍ରଦାୟର ଓଡ଼ିଶାର ସାମାଜିକ ଜୀବନ ଉପରେ ଅଭେଦ୍ୟ ପ୍ରଭାବହିଁ ସୂଚିତ କରେ ।

ଓଡ଼ିଆମାନେ ଛାଡ଼ିଯାଇଥିବା ଏହି ବିପୁଳ ସଂସ୍କୃତ ଗ୍ରନ୍ଥମାଳା ଭିତରୁ କେତେକ ଅନ୍ତତଃ ସମଗ୍ର ଭାରତରେ ଖ୍ୟାତି ଓ ସମ୍ମାନ ଲାଭ କରିପାରିଛନ୍ତି । ଊନବିଂଶ ଶତାବ୍ଦୀରେ ରଚିତ ଚନ୍ଦ୍ରଶେଖରଙ୍କ 'ସିଦ୍ଧାନ୍ତଦର୍ପଣ' ଓଡ଼ିଶାରେ ସଂସ୍କୃତ-ଚର୍ଚ୍ଚାର ମହନୀୟ ଐତିହ୍ୟକୁ ଆଧୁନିକ କାଳ ପର୍ଯ୍ୟନ୍ତ ଟାଣିଆଣିପାରିଛି । ସଂସ୍କୃତ ସାହିତ୍ୟର ଭିନ୍ନ ଭିନ୍ନ ଅଂଶରେ ସର୍ବଭାରତୀୟ ବା ବିଶ୍ୱସମ୍ମାନ ପାଇବା ଗ୍ରନ୍ଥ ଓ ଗ୍ରନ୍ଥକାରଗଣ ଏହି, ଯଥା –

---

(୧) ପ୍ରମାଣ – ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ 'ପ୍ରାଚୀନ ଓଡ଼ିଆ ଅଭିଲେଖ' । (ଓଡ଼ିଶା ସାହିତ୍ୟ ଆକାଡେମୀ ପ୍ରକାଶିତ)

ସୃଜନଶୀଳ ବିଭାଗରେ ଜୟଦେବଙ୍କ 'ଗୀତଗୋବିନ୍ଦ', ମୁରାରି ମିଶ୍ରଙ୍କ 'ଅନର୍ଘ-ରାଘବ' ନାଟକ, ଗୋବର୍ଦ୍ଧନାଚାର୍ଯ୍ୟଙ୍କ 'ଆର୍ଯ୍ୟାସପ୍ତଶତୀ', କୃଷ୍ଣାନନ୍ଦ ମହାପାତ୍ରଙ୍କ 'ସହୃଦୟାନନ୍ଦ ମହାକାବ୍ୟ', ଦିବାକର ମିଶ୍ରଙ୍କ 'ଭାରତାମୃତ ମହାକାବ୍ୟ' ଏବଂ ଜୀବଦେବାଚାର୍ଯ୍ୟଙ୍କ 'ଭକ୍ତିବୈଭବ' ନାଟକ ଉଲ୍ଲେଖଯୋଗ୍ୟ । ବ୍ୟାକରଣ ଓ ଅଳଙ୍କାର ଶାଖାରେ ଚାଙ୍ଗୁ ଦାସଙ୍କ ଚାଙ୍ଗୁକାରିକା, ବୈଜଳଦେବଙ୍କ ପ୍ରବନ୍ଧ-ଚନ୍ଦ୍ରିକା, ବିଶ୍ୱନାଥ ମହାପାତ୍ରଙ୍କ ସାହିତ୍ୟଦର୍ପଣ ଏବଂ ନେତ୍ରାନନ୍ଦ ସାହିତ୍ୟ-ପଞ୍ଚାନନଙ୍କର କୁମର ଦର୍ପଣ ସମଗ୍ର ଭାରତରେ ସୁବିଦିତ । ନୃତ୍ୟ ଓ ନାଟକ ବିଭାଗରେ କୃଷ୍ଣଦାସ ବଡ଼ଯେନା ମହାପାତ୍ରଙ୍କ ଗୀତପ୍ରକାଶ, ହଳଧର ମିଶ୍ରଙ୍କ ସଙ୍ଗୀତ କଳ୍ପଲତା, ପୁରୁଷୋତ୍ତମ ମିଶ୍ରଙ୍କ ସଙ୍ଗୀତ ନାରାୟଣ ଏବଂ ରଘୁନାଥ ରଥଙ୍କ ନାଟ୍ୟ ମନୋରମା ପ୍ରସିଦ୍ଧ । ଜ୍ୟୋତିଷଶାସ୍ତ୍ରରେ ଶତାନନ୍ଦ ଆଚାର୍ଯ୍ୟଙ୍କ ପଞ୍ଚସିଦ୍ଧାନ୍ତ ଭାସ୍ୱତୀ ଓ ଚନ୍ଦ୍ରଶେଖର ସିଂହଙ୍କର ସିଦ୍ଧାନ୍ତଦର୍ପଣ ବିଖ୍ୟାତ ଗ୍ରନ୍ଥ ।

କିନ୍ତୁ ଓଡ଼ିଶାର ମାଟିରେ ଓ ଓଡ଼ିଆ ସୁଧୀଜନଙ୍କ ରଚିତ ଯେଉଁ ଦୁଇଟି ସଂସ୍କୃତ ପୁସ୍ତକ ଓଡ଼ିଶାର ଧର୍ମ ଓ ସାହିତ୍ୟିକ ସଂସାରରେ ସବୁଠାରୁ ଗଭୀର ଓ ବ୍ୟାପକ ପ୍ରଭାବ ପକାଇପାରିଛନ୍ତି, ସେ ହେଉଛନ୍ତି ସମ୍ବଲପୁର ନୃପତି ଓ ବଜ୍ରଯାନର ପ୍ରବର୍ତ୍ତକ ରାଜା ଇନ୍ଦ୍ରଭୂତିଙ୍କର (ସପ୍ତମ ଶତାବ୍ଦୀ) ଜ୍ଞାନସିଦ୍ଧି ଓ ଜୟଦେବଙ୍କ ଗୀତଗୋବିନ୍ଦ । ଏହି ଗ୍ରନ୍ଥରେ (ଓଡ଼ିଆ ସାହିତ୍ୟର ଇତିହାସ) ଧର୍ମ ଆଲୋଚ୍ୟ ନୁହେଁ, ତେଣୁ ଜ୍ଞାନସିଦ୍ଧିର ଆଲୋଚନା ଏଠାରେ ହୋଇପାରିବ ନାହିଁ । କିନ୍ତୁ ଏହି ପୁସ୍ତକର ଅଷ୍ଟମ ଅଧ୍ୟାୟରେ ଓଡ଼ିଆ କବିତାର ବିବର୍ତ୍ତନରେ ଗୀତଗୋବିନ୍ଦର ପ୍ରଭାବ ବିଶେଷ ଭାବରେ ଆଲୋଚିତ ହେବ । ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତି ତାଙ୍କର ଗ୍ରନ୍ଥ ଜ୍ଞାନସିଦ୍ଧିର ପ୍ରାରମ୍ଭରେହିଁ ଜଗନ୍ନାଥଙ୍କୁ ନମସ୍କୃତି କ ୍ାଇଛନ୍ତି । ତାହାହିଁ ପ୍ରମାଣ କରୁଛି, ସେତେବେଳକୁ ଓଡ଼ିଶାର ମାଟିରେ ବୌଦ୍ଧ ଓ ବ୍ରା ୍ଣ୍ୟ ଧର୍ମ ଭିତରେ କିପରି ଏକ ସୁଖାବହ ଆପୋଷ ମିଶ୍ରଣ ଘଟିସାରିଲାଣି । କିନ୍ତୁ ଆମେ ଦେଖିବା ଯେ, ଏହି ଆପୋଷ ମୀମାଂସା ଭିତରେ ପ୍ରକୃତ ଜୟ ଘଟିଛି ବ୍ରାହ୍ମଣ୍ୟଧର୍ମର । ବ୍ରାହ୍ମଣ୍ୟଧର୍ମ ତା'ର ଉଦାର ଉଦରରେ ବୌଦ୍ଧ ପ୍ରତିଦ୍ୱନ୍ଦ୍ୱୀଟିକୁ ପୂରା ଜୀର୍ଣ୍ଣ କରିପକାଇଛି । ଆଗାମୀ ଏକ ଅଧ୍ୟାୟରେ ବ୍ରାହ୍ମଣ୍ୟଧର୍ମର ଏହି ପ୍ରକାର ଆତ୍ମୀକରଣ ଚେଷ୍ଟା ଓଡ଼ିଆ ସାହିତ୍ୟରେ କିପରି ପ୍ରକାଶ ଲାଭ କରିଛି, ତାହା ଆଲୋଚନା କରିବା ।

□□□

# ଷଷ୍ଠ ଅଧ୍ୟାୟ

# ପ୍ରାକ୍-ପ୍ରଭାତର କ୍ଷୀଣାଲୋକ

**ଆଧୁନିକ ଓଡ଼ିଆ ଭାଷାର ଆଦ୍ୟତମ ଗଦ୍ୟ ଓ ପଦ୍ୟ –**

ପୂର୍ବ ଅଧ୍ୟାୟରେ ସୂଚିତ ହୋଇଛି ଯେ ଏପର୍ଯ୍ୟନ୍ତ ମିଳିଥିବା ଆଧୁନିକ ଓଡ଼ିଆ ଭାଷାରେ ଲିଖିତ କଳିଙ୍ଗରାଜ ଅନନ୍ତବର୍ମା ବଜ୍ରହସ୍ତ ଦେବଙ୍କର ଶିଳାଲେଖ; ଯାହାର ସମୟ ଖ୍ରୀ: ୧୦୫୧ ବୋଲି ଧରାଯାଉଛି । ଉତ୍ତର-ଭାରତର ସମଗ୍ର ଇଂଡ଼ୋ-ଜର୍ମାନ୍ ଭାଷା-ଗୋଷ୍ଠୀ ଭିତରେ ଏହା ସର୍ବାଦ୍ୟ ଶିଳାଲେଖରୂପେ ମଧ୍ୟ ଗୃହୀତ । ତ୍ରୟୋଦଶ ଶତାବ୍ଦୀର ଭୁବନେଶ୍ୱର ଶିଳାଲିପି ସ୍ପଷ୍ଟ ପ୍ରମାଣ କରୁଛି ଯେ ଅନନ୍ତବର୍ମା ବଜ୍ରହସ୍ତଙ୍କ ସମୟଠାରୁ ମଧ୍ୟ ଓଡ଼ିଆ ଭାଷା ଧୀରେ ଧୀରେ ଆଧୁନିକତା ଆଡ଼କୁ ବିବର୍ତ୍ତିତ ହୋଇଆସୁଥିଲା । (୧) କିନ୍ତୁ ଯେଉଁ ଓଡ଼ିଆ ଆଜି ଆମେ କହୁଛୁ, ତାହା ସ୍ପଷ୍ଟଭାବରେ ଆମ ଆଗରେ ଦଣ୍ଡାୟମାନ ହୋଇଉଠିଛି ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ, ଯାହା ସାରଳା ଦାସଙ୍କର ମହାକାବ୍ୟ, ମାର୍କଣ୍ଡ ଦାସଙ୍କ ଗୀତିକା କେଶବ କୋଇଲି ଓ ଅବଧୂତ ନାରାୟଣଙ୍କ ଗଦ୍ୟ-କାବ୍ୟ ରୁଦ୍ରସୁଧାନିଧିର କାଳ । ଏଗୁଡ଼ିକ ପ୍ରାଚୀନତାର ସମସ୍ତ ମନୋହର ଚିହ୍ନ ବହନ କରି ମଧ୍ୟ ଆଜି ସାଧାରଣ ଓଡ଼ିଆ ପକ୍ଷରେ ସୁବୋଧ, ପୁଣି ଏ ପ୍ରତ୍ୟେକେ ସାମୟିକ ବିଭିନ୍ନ ଧର୍ମୀୟ ବିଶ୍ୱାସର ବାହକ ।

---

(୧) ଆଧୁନିକ ଓଡ଼ିଆ ଭାଷାର ସର୍ବାଦ୍ୟ ପ୍ରକାଶ କେବେ ଘଟିଥିଲା ? ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଆବିଷ୍କାର ଓ ପାଠକୁ ନିର୍ବିବାଦରେ ଧରାଗଲେ ମଧ୍ୟ ତାଙ୍କ ଦ୍ୱାରା ବାଲେଶ୍ୱରରେ ପ୍ରାପ୍ତ ଦଶମ ଶତାବ୍ଦୀର (ତାଙ୍କ ମତରେ) ମୂର୍ତ୍ତି ତଳେ ଲିଖିତ—'ଦେବକ ହିଁ ଭଗତି କରୁଣ, ଅଛନ୍ତି ଭୋ କୁମାର ସେଣ ।' ଏହି ଶ୍ଳୋକଟିକୁ ଆମେ ଠିକ୍ ଏବର ଓଡ଼ିଆ କହି ନପାରୁ । ଏହା ଚତୁର୍ଥ ଅଧ୍ୟାୟରେ ଆଲୋଚିତ ବୌଦ୍ଧ ଚର୍ଯ୍ୟାପଦାବଳୀର ଭାଷାର ନିକଟତର । ବଜ୍ରହସ୍ତ ଅନନ୍ତବର୍ମାଙ୍କ ଏକାଦଶ ଶତାବ୍ଦୀର ଅଭିଲେଖରେ ଏବର ଓଡ଼ିଆ କ୍ରିୟା ଦେଖାଦେଇଛି; କିନ୍ତୁ ତାହା ପୂରା ଓଡ଼ିଆ ଭାଷା ନୁହେଁ । ମାତ୍ର ତ୍ରୟୋଦଶ ଶତାବ୍ଦୀର ଭୁବନେଶ୍ୱର ଶିଳାଲିପିର "ସ୍ୱସ୍ତି ଶ୍ରୀ ବୀରନାରନାର ସିଂହ ଦେବଶ ପ୍ରବ୍ରଧମାନେ ବୀଜେ ରାଯେ ସମ୍ଭୃତ ୧୧ ଶାହି କାତ୍ରୀକ କ୍ରୀଷ୍ଣ ୭ ରବିବାରେ ଶ୍ରୀ କୀର୍ତ୍ତୀବାସ ଖେତ୍ରଂ ସାଧେଶ୍ୱର ମଠର ବଡ଼ନରସିଂହଦେବଙ୍କର ଆଶା କାମାର୍ଥ ପୂର୍ବକେ ବାଘମରା ବାରବାଟୀ ଭୂମି ଏଦାଶ ରଦ୍ର ଭୀକ୍ଷା ଦେବା ଭୂମୀ ସମ୍ୱନ୍ଧେ ତପରାଜ ମହାମୁନୀ ଦୁର୍‌ଗା ଭଟ୍ଟ ଆଚାର୍ଯ୍ୟଙ୍କେ ବନ୍ଧା ଦେଲା × × ×" ନିଃସନ୍ଦେହରେ ଆଧୁନିକ ଓଡ଼ିଆ । ଇଂରାଜୀ ଗ୍ରନ୍ଥରେ ଏସବୁ ଆଲୋଚନା ନ କରି ତେଣୁ ଆଧୁନିକ ଓଡ଼ିଆର ଆବିର୍ଭାବ କାଳ ତ୍ରୟୋଦଶ ଶତାବ୍ଦୀ ବୋଲିହିଁ ଲେଖିଥିଲି । ବର୍ତ୍ତମାନ ମତ ପରିବର୍ତ୍ତନର କୌଣସି କାରଣ ଦେଖୁନାହିଁ ।

## ପରିବର୍ତ୍ତନଶୀଳ ଜାତୀୟ ଧର୍ମ-ବିଶ୍ୱାସ –

ଖ୍ରୀ: ଅ: ସପ୍ତମ-ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିବା ଭୌମମାନଙ୍କ ପୃଷ୍ଠପୋଷକତାରେ ବୌଦ୍ଧ-କବିତା ଓ ବୌଦ୍ଧ-କଳା ଓଡ଼ିଶାରେ କିପରି ସମୃଦ୍ଧି ଲାଭ କରି ଥିଲା, ତାହା ପୂର୍ବେ ସୂଚିତ ହୋଇଅଛି । ଭୌମମାନଙ୍କ ପରେ ଆସିଲେ ସୋମବଂଶୀ ରାଜାଏ । ଏହି ସୋମବଂଶୀମାନେ ଉତ୍କଳକୁ ରାଷ୍ଟ୍ରୀୟ ସ୍ତରରେ ବ୍ରାହ୍ମଣ୍ୟଧର୍ମ ଆଣିଥିଲେ । କାରଣ, ଏହି ବଂଶର ଯଯାତିକେଶରୀ କାନ୍ୟକୁବ୍ଜରୁ ଏକ ସହସ୍ର ବିଶୁଦ୍ଧଶୋଣିତ ବ୍ରାହ୍ମଣଙ୍କୁ ଆଣି, ଉତ୍କଳର ବୈଦିକ ପରମ୍ପରା ସୁପ୍ରତିଷ୍ଠିତ କରି ଯାଇଛନ୍ତି ବୋଲି କୁହାଯାଏ । ଏହାର ପରେ ପରେ ଶୈବ ଶଙ୍କରାଚାର୍ଯ୍ୟ ଓଡ଼ିଶାକୁ ଆସି ପୁରୀରେ ତାଙ୍କର ଚାରି ପ୍ରଧାନ ମଠରୁ ଏକତମ ମଠ ସ୍ଥାପନ କରିଗଲେ ।

ଏହା ପୂର୍ବରୁ ସହସ୍ର ବର୍ଷ ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁ ବୌଦ୍ଧଧର୍ମ ରାଜତ୍ୱ କରୁଥିଲା, ତାହା ପ୍ରକୃତରେ ଥିଲା ସେହି ଧର୍ମର ମହାଯାନ ଶାଖା । ମହାଯାନତତ୍ତ୍ୱର ଦୀର୍ଘ ଓ ବ୍ୟାପକ ଆବିର୍ଭାବରୁହିଁ 'ଶୂନ୍ୟବାଦ' ଓ ଶୂନ୍ୟ-ଉପାସନା ଓଡ଼ିଶାର ଗଣଚେତନାର ଏକ ଅନବଚ୍ଛିନ୍ନ ଅଂଶ ହୋଇ ରହିଯାଇଛି । ଏହି ଗ୍ରନ୍ଥର ପରବର୍ତ୍ତୀ ଏକାଧିକ ଅଧ୍ୟାୟରେ ଆମେ ଏହି ଘଟଣାର ସମ୍ମୁଖୀନ ହେବା । ୮ମ–୯ମ ଶତାବ୍ଦୀ ବେଳକୁ ବୌଦ୍ଧ ମହାଯାନ ତନ୍ତ୍ର ସହିତ କିପରି ଏକୀଭୂତ ହୋଇଯାଇଥିଲା; ରତ୍ନଗିରି ଓ ଲଳିତଗିରିର ପ୍ରସିଦ୍ଧ ବୌଦ୍ଧ କୀର୍ତ୍ତିମାନଙ୍କର ଭଗ୍ନାବଶେଷରେ ପ୍ରାପ୍ତ ଅଗଣିତ ତନ୍ତ୍ର ଦେବ-ଦେବୀଙ୍କ ମୂର୍ତ୍ତି ତାହା ନିଃସନ୍ଦେହରେ ପ୍ରମାଣିତ କରୁଛି । ତେଣୁ ତନ୍ତ୍ର ବିକୃତ ମହାଯାନୀ ପନ୍ଥାରୁ ଉତ୍କଳୀୟ ଜନତାକୁ ହିନ୍ଦୁତନ୍ତ୍ରର ବିଶୁଦ୍ଧ ଶିବ-ଶକ୍ତି ଉପାସନାକୁ ଟାଣିଆଣିବାକୁ ସୋମବଂଶୀ ରାଜା ବା ଶଙ୍କରଙ୍କ ପରି ହିନ୍ଦୁ ପ୍ରଚାରକମାନଙ୍କ ପକ୍ଷରେ କିଛି କଷ୍ଟକର ବ୍ୟାପାର ହୋଇନଥିବ ।

ମୋଟଉପରେ ହଜାରେ ବର୍ଷର ବୌଦ୍ଧ ବିଶ୍ୱାସ ପରେ ଓଡ଼ିଶା ବର୍ତ୍ତମାନ ପ୍ରାୟ ପାଞ୍ଚଶ ବର୍ଷ ପର୍ଯ୍ୟନ୍ତ ଶିବ ଓ ଶକ୍ତିର ଦେଶ ହୋଇ ରହିଲା । ଉତ୍କଳରେ ମହାଯାନୀ ବୌଦ୍ଧ ବିଶ୍ୱାସ ନିଜକୁ ଯେପରି ଏକାଧାରରେ ସାହିତ୍ୟ ଓ ସାଡ଼ମ୍ବର ସ୍ଥାପତ୍ୟ ଭାସ୍କର୍ଯ୍ୟରେ ପ୍ରକାଶ କରିଥିଲା, ନବସ୍ଥାପିତ ଶୈବ ଧର୍ମ ମଧ୍ୟ ଠିକ୍ ସେହି ପନ୍ଥା ଧରିଲା । ମନ୍ଦିରମାଳିନୀ ପୁରାଣ ନଗରୀ ଭୁବନେଶ୍ୱର ଓଡ଼ିଆମାନଙ୍କର ସେହି ଯୁଗର ପ୍ରବଳ ଶୈବ ଆରାଧନାର ଉଦାର ମନୋରମ ଚିତ୍ରଶାଳା । ଆମେ ମଧ୍ୟ ଦେଖିବା, ଏହି କାଳର ଓଡ଼ିଆ ସାହିତ୍ୟକୁ ମଧ୍ୟ ଶିବ-ଶକ୍ତି ଉପାସନା ସମଗ୍ର ଭାବରେ କିପରି ଅନୁରଞ୍ଜିତ କରିରଖିଛି । ଯେଉଁ ସାହିତ୍ୟର ଆମେ ଆଲୋଚନା କରିବାକୁ ଯାଉଛୁ, ସେସବୁ ଏହି କାଳର ବୋଲି ଉତ୍କଳର ସୁଧୀବର୍ଗ ନିର୍ଦ୍ଦେଶ କରିବା ପାଇଁ, ଅନ୍ୟ ଆଭ୍ୟନ୍ତରୀଣ ସାକ୍ଷ୍ୟ ସହିତ ଏହି ଶିବ-ଶକ୍ତିପୂଜାର ପ୍ରାଧାନ୍ୟ ଏକତମ ।

## ନାଥ ସଂପ୍ରଦାୟ –

କିନ୍ତୁ ପୂର୍ବର ବୌଦ୍ଧ ପୂଜା ଓ ପରବର୍ତ୍ତୀ ପ୍ରକାଶ୍ୟ ଶିବ-ଶକ୍ତିପୂଜାର ମଧ୍ୟବର୍ତ୍ତୀ କାଳରେ ନାଥମାନେ ଦେଖାଦିଅନ୍ତି, ଯେଉଁମାନେ କି ଏ ଦୁଇ ମତ ଭିତରେ ଏକ ସୁନ୍ଦର ଆପୋଷ ସମାଧାନ ଆଣିପାରିଥିଲେ । ନାଥମାନେ ଓଡ଼ିଶାରେ ଏକ କ୍ଷୁଦ୍ର ଅଥଚ ସମ୍ମାନିତ ଗୋଷ୍ଠୀ ।

ଏମାନେ ଓଡ଼ିଶାର ଜାତୀୟ ଜୀବନକୁ କି ପରିମାଣରେ ଉର୍ବରା କରିଯାଇଛନ୍ତି, ତାହା ଆଜି ଏକ ବିସ୍ମୃତ ଘଟଣା । କିନ୍ତୁ ଆଧୁନିକ ଗବେଷଣା ଓ ଅନୁଶୀଳନରୁ ଜଣାପଡ଼ିଛି ଯେ, ଅନ୍ୟାନ୍ୟ ଭାରତୀୟ ଭାଷାମାନଙ୍କପରି ଓଡ଼ିଆ ଭାଷାରେ ମଧ୍ୟ ଏହି ନାଥମାନେହିଁ ଆଧୁନିକତା ଆଣିବାରେ ପ୍ରଥମ ପଥପ୍ରଦର୍ଶକ । ବହୁ ଶତାବ୍ଦୀ ଧରି ଏହି ତଥାକଥିତ ନାଥ-ଯୋଗୀମାନେ ପଲ୍ଲୀ-ଉତ୍କଳର ନୀତି-ଶିକ୍ଷକ ହୋଇଆସିଛନ୍ତି କହିଲେ ଚଳେ । କେନ୍ଦରା ନାମକ ଏକ ସରଳ ତାନ୍ତବ ବାଦ୍ୟ-ଯନ୍ତ୍ର ସହଯୋଗରେ ଏମାନେ ନୀତି ଓ ଆଧ୍ୟାତ୍ମିକତାପୂର୍ଣ୍ଣ ଗାଥା ଓ ଭଜନମାନ ଗାଇ ଗାଇ ଗ୍ରାମରୁ ଗ୍ରାମକୁ ଭିକ୍ଷା ମାଗିବୁଲନ୍ତି । କୌଣସି ଗ୍ରାମକୁ ନାଥ-ଯୋଗୀର ଆଗମନ ଓ ତା'ର କେନ୍ଦରା-ଧ୍ୱନି-ଅନ୍ୱିତ ଗାଥା-ଭଜନ-ଗାନ ଉତ୍କଳ ପଲ୍ଲୀବାସୀର ଏକ ଅବିସ୍ମରଣୀୟ ସ୍ମୃତି, ବିଶେଷତଃ ନିରକ୍ଷର କୁଳବାଳା ଓ ବାଳକ ବାଳିକାମାନଙ୍କ ପକ୍ଷରେ । ଯେଉଁ ଓଡ଼ିଆମାନେ ପରଜୀବନରେ ପଲ୍ଲୀମାଟିରୁ ବିଚ୍ଛିନ୍ନ ହୋଇ ସହରରେ ବାସ କରିବାକୁ ବାଧ୍ୟ ହୁଅନ୍ତି, ସେମାନଙ୍କ ସ୍ମୃତିରେ ନାଥ-ଯୋଗୀର କେନ୍ଦରା-ନିର୍ଭର ଭଜନଗାନ ଅନୁରଣିତ ହେଉଥାଏ । ମହାଯାନୀ ପ୍ରଭାବ ଓଡ଼ିଆର ଜାତୀୟ ଚେତନାରେ ଯେପରି ରଖିଯାଇଛି ଶୂନ୍ୟତତ୍ତ୍ୱ, ସେହିପରି ନାଥ-ଧର୍ମ ଛାଡ଼ିଯାଇଛି ପିଣ୍ଡ-ବ୍ରହ୍ମାଣ୍ଡତତ୍ତ୍ୱ । ସାଧାରଣ ଓଡ଼ିଆ ପଲ୍ଲିବାସୀର ସୃଷ୍ଟି ସଂପୃକ୍ତ ନିଜସ୍ୱ ଧାରଣା ଏହି ଦୁଇ ତତ୍ତ୍ୱର ଏକ ଗୋଳିଆ-ମାଳିଆ ମିଶ୍ରଣ ମାତ୍ର ।

ଏବେ ଜଣାପଡ଼ିଲାଣି ଯେ ଆଧୁନିକ ଓଡ଼ିଆର ଆଦ୍ୟତମ ଦୁଇ ପୁସ୍ତକ ନିଶ୍ଚିତ ଭାବରେ ଦୁଇ ଅଜ୍ଞାତ ନାଥ ସନ୍ୟାସୀଙ୍କ ଦ୍ୱାରା ଲିଖିତ । ସେ ଦୁଇଟି ହେଉଛନ୍ତି ଶିଶୁବେଦ ଓ ସପ୍ତାଙ୍ଗ ।[୧] ଶେଷୋକ୍ତ ପୁସ୍ତକଟିର ଲେଖକ ଗୋରଖନାଥ ବୋଲି କୁହାଯାଉଛି; କିନ୍ତୁ ଗୋରଖନାଥ ନିଶ୍ଚୟ ଓଡ଼ିଶାର ଲୋକ ନୁହନ୍ତି । ଖୁବ୍ ସମ୍ଭବତଃ କୌଣସି ଉତ୍କଳବାସୀ ନାଥ-ସନ୍ୟାସୀ ନିଜେ ଏ ଗ୍ରନ୍ଥଟି ଲେଖି, ନିଜକୁ ନିଜ ସଂପ୍ରଦାୟର ମହାଗୁରୁଙ୍କ ବ୍ୟକ୍ତିତ୍ୱ ସହିତ ସଂପୂର୍ଣ୍ଣ ଭାବରେ ମିଳାଇଦେବାର ଚେଷ୍ଟାରେ, ଗୋରଖନାଥଙ୍କୁ ଏହି ଓଡ଼ିଆ ରଚନାର ଲେଖକ ଭାବରେ ଠିଆକରାଇଦେଇଛନ୍ତି । କିନ୍ତୁ ପୁସ୍ତକଟିର କୌଣସିହେଲେ ସାହିତ୍ୟିକ ମୂଲ୍ୟ ଅଛି ବୋଲି କହିହେବନାହିଁ । ଏହା ଏକ ଗୂଢ଼ ତନ୍ତ୍ରସାଧନା ପୁସ୍ତକ । ବାର, ନକ୍ଷତ୍ରମାନଙ୍କର ବିଚାର ମଧ୍ୟ ଏଥିରେ ଅଛି । ଅସାହିତ୍ୟକ ହେଲେହେଁ, ଏହାର ପ୍ରାଚୀନ ଭାଷାହିଁ ଏହାକୁ ଏକ ପ୍ରାଧାନ୍ୟ ଦେଇପାରୁଛି ।

**ଶିଶୁବେଦ –**

ନାଥ-ସନ୍ୟାସୀକୃତ ଦ୍ୱିତୀୟ ଗ୍ରନ୍ଥ ଶିଶୁବେଦ ଏକାଧିକ ଦୃଷ୍ଟିକୋଣରୁ ଏକ ଅସାଧାରଣ ଗ୍ରନ୍ଥ । ଏହାର ଆତ୍ମା ଶୈବ; କିନ୍ତୁ ଭାଷାଦିଗରୁ ଦେଖିଲେ, ସପ୍ତମ-ନବମ ଶତାବ୍ଦୀର ବୌଦ୍ଧ ଅପଭ୍ରଂଶ କବିତାବଳି, ଯାହା ଆମେ ଚତୁର୍ଥ ଅଧ୍ୟାୟରେ ଆଲୋଚନା କରିଛେ,

---

(୧) ଏ ଦୁଇଟିଯାକ ପୁସ୍ତକ (ଅପ୍ରକାଶିତ ?) ତାଳପତ୍ର ଖେଦାରେ ମୁଁ ଦେଖିବାକୁ ପାଇଛି ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ସୌଜନ୍ୟରୁ । ଶ୍ରୀମାନ୍ ବଂଶୀ ହିଁ ମୋତେ ଓଡ଼ିଆ ସାହିତ୍ୟରେ ନାଥମାନଙ୍କ ଭୂମିକା ସମ୍ପର୍କରେ ଆଦ୍ୟ ସୂଚନା ଦେଇଥିଲେ ।

ତାହାର ଶେଷ ପ୍ରତିଧ୍ୱନି ଯେପରି ଆମେ ସେଥିରେ ଶୁଣିପାରୁଛେ । ସ୍ପଷ୍ଟତଃ, ଏହି ଶିଶୁବେଦ, ଯେପରି ପୂର୍ବଗାମୀ ସେହି ବୌଦ୍ଧକବିତାବଳି ଓ ପରବର୍ତ୍ତୀ ମାର୍କଣ୍ଡ ଦାସଙ୍କ କୋଇଲି ବା ସାରଳାଙ୍କ ରଚନା ଭିତରେ ଏକ ମୂଲ୍ୟବାନ୍ ଯୋଗସୂତ୍ରରୂପେ ବିରାଜିତ ଓ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ଖାରବେଳ-ଶିଳାଲିପିରେ ଯାହା ଆରବ୍ଧ ହୋଇଥିଲା, ଧୀରେ କ୍ରମିକ ସ୍ୱାଭାବିକ ବିବର୍ତ୍ତନ ନେଇ ତାହା ଆଧୁନିକ ଓଡ଼ିଆରେ କିପରି ପରିଣତି ଲାଭ କରିଛି, ତାହା ବୁଝିବାରେ ଆଜି ଆମକୁ ବେଶ୍ ସାହାଯ୍ୟ କରୁଛି ।

ଶିଶୁବେଦ ଗ୍ରନ୍ଥଟି ତନ୍ତ୍ରର ଗୂଢ଼ ନୀରସ ତତ୍ତ୍ୱ ପରିବେଷଣ କରିଥିଲେହେଁ ପୂର୍ବର ସେହି ବୌଦ୍ଧ-କବିତାଗୁଡ଼ିକର କେତେକ ଛନ୍ଦ ବ୍ୟବହାର କରିଥିବାରୁ ଏହା ପଢ଼ିବା ଓ ଶୁଣିବାକୁ ସୁଖକର ହୋଇଉଠିଛି । ଏଠାରେ ଗୋଟାଏ ଶ୍ଲୋକ ଉଦ୍ଧାର କରିରଖୁଛୁଁ –

''ଯେହ୍ନେକ ବକ ନ ହଲଇ ନୀର
ତେହ୍ନେକ ମନ ପବନ ଥିର ।
ବଗେ ମଛେ (ଛେ) ନୀରେ ସମ କରି ଜାଣ,
ତେବେ ସେ ପିଣ୍ଡକୁ ପରଚେ ପ୍ରାଣ ।'' (ଶ୍ଲୋକ, ୨୧)

ଶିଶୁବେଦର ଏହି ଜାତୀୟ ଶ୍ଲୋକାବଳି ଅପେକ୍ଷା, ପ୍ରତି ଶ୍ଲୋକର ଯେଉଁ ଗଦ୍ୟଟୀକା ସେଥିରେ ଦିଆଯାଇଛି, ତାହାର ମୂଲ୍ୟହିଁ ଅଧିକ ମନେହୁଏ । ସେହି ଗଦ୍ୟ ନିଜେଇ ତାର ପ୍ରାଚୀନତା ବହନ କରୁଛି । ଅଗ୍ରଗାମୀର କୁଣ୍ଠିତ ପଦକ୍ଷେପ ବା ପ୍ରଥମ ବାଣୀର ଅସ୍ପଷ୍ଟତା ସେଥିରେ ଆମେ ଦେଖୁଛୁ ଓ ଠିକ୍ ସେହି କାରଣରୁ ତାକୁ ତ୍ରୟୋଦଶ ଶତାବ୍ଦୀର ଭୁବନେଶ୍ୱର ଶିଳାଲିପି ସହିତ ଓଡ଼ିଆ ଭାଷାର ସର୍ବାଦ୍ୟ ଗଦ୍ୟରଚନା ବୋଲି ସମ୍ମାନିତ କରିବାରେ ଆମର ସନ୍ଦେହ ରହୁନାହିଁ । ଶିଶୁବେଦୀୟ ଗଦ୍ୟରଚନାର ଦୃଷ୍ଟାନ୍ତସ୍ୱରୂପ ଉପର-ଉଦ୍ଧୃତ ଶ୍ଲୋକର ଗଦ୍ୟ-ଭାଷ୍ୟକୁହିଁ ଏଠାରେ ଥୋଇରଖୁଛୁ –

''ବକ ଯେ ସେ ମନ, ମଛ ଯେ ସେ ପବନଟି, ନୀର ଯେ ବିନ୍ଦୁଟି । ମନ ପବନକୁ ଲଏ କଲେ ବକ ମଛ ହିଁ ଅଚଳ ହୋଇଟି । ଏହାକୁ ସହଜ ସମାଦି ବୋଲି ।''

ନାଥ-ପନ୍ଥା ଉତ୍କଳୀୟ ଜନତାରଧର୍ମ ଭାବନାକୁ ଗଭୀର ଭାବରେ ପ୍ରଭାବିତ କରିଯାଇଛି । ଏପରି ପ୍ରଭାବିତ କରିଛି ଯେ, ତାହା ନିଜର ସ୍ୱାତନ୍ତ୍ର୍ୟ ହରାଇ ଓଡ଼ିଶାର ଜାତୀୟ ସତ୍ତାରେ ନିଜକୁ ଲୀନ କରିଦେଇଛି । ନାଥ-ପନ୍ଥାର ମୁଖ୍ୟ ତତ୍ତ୍ୱଗୁଡ଼ିକ ଆଜି ସାଧାରଣ ଗ୍ରାମ୍ୟ ଓଡ଼ିଆର ଚିନ୍ତାକୋଷର ଅପରିହାର୍ଯ୍ୟ ସଞ୍ଚୟ । ପୁଣି ଏହା ନିଃସନ୍ଦେହ ଯେ ଭାଷାଦିଗରୁ ଦେଖିଲେ ଏହି ଦୁଇ ପୁସ୍ତକ ଆଧୁନିକ ଓଡ଼ିଆ ଆଡ଼କୁ ପ୍ରସାରିତ ହୋଇଆସୁଥିବା ସାହିତ୍ୟିକ ରାଜପଥରେ, ପ୍ରାଚୀନ ଓଡ଼ିଆର ଶେଷ କ୍ରୋଶଖୁଣ୍ଟ ଓ ସାରଳା ଦାସଙ୍କ ପୂର୍ବଗାମୀ ରଚନାମାନଙ୍କ ଭିତରେ ଅନନ୍ୟ ।

**ଆଦ୍ୟ ଗଦ୍ୟଗ୍ରନ୍ଥ –**

ସାରଳା ଦାସଙ୍କ ତଥାକଥିତ ପୂର୍ବଗାମୀ ରଚନାମାନ ଆଲୋଚନା କଲେ ଆମେ ଆଉ ଗୋଟିଏ ଅସାଧାରଣ ଘଟଣା ଦେଖି ବିସ୍ମିତ ହେବା । ଏହି ରଚନାଗୁଡ଼ିକର ସମସ୍ତ

ଆଭ୍ୟନ୍ତରୀଣ ସାକ୍ଷ୍ୟ ଜଣାଇ ଦେଉଛି ଯେ ଓଡ଼ିଆ ଭାଷାରେ ପଦ୍ୟ ଅପେକ୍ଷା ଗଦ୍ୟରଚନାଗୁଡ଼ିକହିଁ ପ୍ରାଚୀନତର, ଯାହା ସାଧାରଣତଃ ସାହିତ୍ୟରାଜ୍ୟରେ ଦେଖାଯାଏ ନାହିଁ । ପ୍ରାକ୍ ସାରଳାଯୁଗର ବୋଲି କୁହାଯାଉଥିବା ରଚନାବଳି ଭିତରେ ପଦ୍ୟଗୁଡ଼ିକର ଭାଷା, ପରବର୍ତ୍ତୀ ସାରଳା ମହାଭାରତର ଭାଷା ଅପେକ୍ଷା ଏପରି ଶିଷ୍ଟ ଓ ପରିଷ୍କୃତ ଯେ ସେମାନଙ୍କର ପ୍ରାଚୀନତାର ଗୌରବ ଆମେ ମାନିଯିବା କଷ୍ଟକର ହେଉଛି । ଅନ୍ୟପକ୍ଷରେ ଅଶୋକାନୁଶାସନ, ଖାରବେଳ-ଶିଳାଲିପି, ଭୁବନେଶ୍ୱର ଶିଳାଲିପି ଓ ଶିଶୁବେଦର ଗଦ୍ୟାଂଶ – ଏ ସମସ୍ତ ଓଡ଼ିଶାରେ ଗଦ୍ୟ-ସାହିତ୍ୟର ଏକ ପ୍ରାଚୀନ, ସୁଦୀର୍ଘ ଓ କ୍ରମାନ୍ୱିତ ଐତିହ୍ୟ ନିଃସନ୍ଦେହ ଭାବରେ ପ୍ରମାଣିତ କରୁଛି । ବସ୍ତୁତଃ ଆମେ ବର୍ତ୍ତମାନ ଆଲୋଚନା କରିବାକୁ ଯାଉଥିବା ଓଡ଼ିଆରେ ସର୍ବାଦ୍ୟ ପୂର୍ଣ୍ଣଗଦ୍ୟଗ୍ରନ୍ଥ 'ରୁଦ୍ରସୁଧାନିଧି'କୁ ଖ୍ରୀ:ପୂ: ୧ମ ଶତାବ୍ଦୀର ଖାରବେଳଗାଥାର ଏକ ଭଗିନୀ-ଗ୍ରନ୍ଥ କହିବା ଆଦୌ ଅତ୍ୟୁକ୍ତି ହେବନାହିଁ । ଏକ ଓଡ଼ିଆ ଓ ଅନ୍ୟଟି ପାଲୀରେ ଲେଖା ହେଲେହେଁ ଉଭୟ କାବ୍ୟଧର୍ମୀ ଗଦ୍ୟ । ସେମାନଙ୍କର କୌଟୁମ୍ବିକ ଏକତ୍ୱ ସୁସ୍ପଷ୍ଟ ।

### ଅବଧୂତ ନାରାୟଣ ସ୍ୱାମୀ ଓ 'ରୁଦ୍ରସୁଧାନିଧି' –

ଓଡ଼ିଆ ସୁଧୀବର୍ଗ ଏହି ଗଦ୍ୟ ଗ୍ରନ୍ଥଟିକୁ ଯେ ତ୍ରୟୋଦଶ ଶତାବ୍ଦୀରେ ନେଇ ଥୋଉଛନ୍ତି, ତାହା ବିଶେଷ ଭ୍ରାନ୍ତିମୂଳକ ବୋଲି ମନେହେଉନାହିଁ ଏବଂ ଏକ ଅଗ୍ରଗାମୀ ପୁସ୍ତକ ଭାବରେ ଏହାର ପୁଷ୍କଳତା ବିସ୍ମୟକର ।

ଭୁବନେଶ୍ୱରର ନାଗରିକ ଥିଲେ, ଏତିକି ଛଡ଼ା, ଏ ଗ୍ରନ୍ଥର ଲେଖକଙ୍କ ସମ୍ବନ୍ଧରେ ଆଉ ଅଧିକ କିଛି ଜଣାପଡ଼େ ନାହିଁ । କିନ୍ତୁ ବହିରୁ ଜଣାପଡୁଛି ଯେ ଅଭ୍ୟାସ ଓ ଅଧ୍ୟୟନଲବ୍ଧ ପାଣ୍ଡିତ୍ୟ ତାଙ୍କର ବେଶ୍ ଥିଲା । ତାଙ୍କ ନାମରୁ ପୁଣି ଜଣାପଡୁଛି ଯେ ସେ ସଂସାର ତ୍ୟାଗ କରି ହୁଏତ ଏକ ପରିବ୍ରାଜକ ଥିଲେ ବା ସ୍ଥାୟୀ ହୋଇ କୌଣସି ମଠରେ ଥିଲେ । ଶେଷୋକ୍ତ ଅବସ୍ଥିତି ଅଧିକ ସମ୍ଭାବିତ ବୋଧହେଉଛି; କାରଣ ଏପରି ଏକ ଗ୍ରନ୍ଥ ଲେଖିବାକୁ ଯେଉଁ ଧ୍ୟାନ ଓ ସମୟ ଦେବାର କଥା, ଜଣେ ଗୃହହୀନ ପରିବ୍ରାଜକପକ୍ଷରେ ତାହା ହୁଏତ ସମ୍ଭବ ହୋଇନଥାନ୍ତା । ସେ ଯେ ଶୈବ ଥିଲେ ଏବଂ ଏହି ଗ୍ରନ୍ଥ 'ରୁଦ୍ରସୁଧାନିଧି' ଯେ ଶୈବ-ମହିମା ପ୍ରଚାର ପାଇଁ ଲିଖିତ, ଏହା ନିଃସନ୍ଦେହ ।

ଗ୍ରନ୍ଥଟିର କଥାଟି ଏହିପରି – ଉତ୍ତମ ନରପତି ଅନଙ୍ଗପଦ୍ମାକର ସନ୍ତାନହୀନ ଥିଲେ; ତେଣୁ ଗୋଟିଏ ସନ୍ତାନ ପାଇଁ ସେ ଶିବଙ୍କୁ ପ୍ରାର୍ଥନା କଲେ । ରାଜାଙ୍କ ଭକ୍ତିରେ ଶିବ ସନ୍ତୁଷ୍ଟ ହୋଇ ସ୍ଥିରକଲେ ଯେ ତାଙ୍କ ପ୍ରତି ଭକ୍ତି ଓ ଯୋଗସାଧନାରେ ବିଶିଷ୍ଟତା ଅର୍ଜନ କରିଥିବା ତାଙ୍କର ଗଣ ନାମକ ଅନୁଚରମାନଙ୍କ ଭିତରୁ ଜଣକୁ ସେ ରାଜା ଅନଙ୍ଗପଦ୍ମାକରଙ୍କ ସୁସନ୍ତାନ ରୂପରେ ଧରାତଳକୁ ପଠାଇବେ । ନିର୍ବାଚନ ଲକ୍ଷ୍ୟରେ ପାର୍ବତୀଙ୍କି ଶିବ ଅନୁରୋଧ କଲେ ଯେ, ସେ (ପାର୍ବତୀ) ଏକ ସୁନ୍ଦରୀ ସୃଷ୍ଟି କରି ତାକୁ କହନ୍ତୁ, ସେ ଗଣମାନଙ୍କ ମଧ୍ୟରେ ଚଲାବୁଲା କରୁ । ଏହି ଲକ୍ଷ୍ୟରେ ସୁନ୍ଦରୀ କନ୍ୟା ତ୍ରୈଲୋକ୍ୟ-

ମୋହିନୀଙ୍କର ଜନ୍ମ ହେଲା । ଅଭିନବ-ଚୈତନ୍ୟ ନାମକ ଏକ ଗଣ ତାଙ୍କ ପ୍ରତି ଲୁବ୍ଧ ହେଲେ । ଶିବ ତେଣୁ ତାଙ୍କୁହିଁ ଆଦେଶ ଦେଲେ, ସେ ଧରାବତୀର୍ଣ୍ଣ ହେବେ; କାରଣ ତାଙ୍କର ଯୌଗିକପୂର୍ଣ୍ଣତା ବାକୀ ଥିବାର ଦେଖାଗଲା । ବିଚ଼ାରା ଅଭିନବ-ଚୈତନ୍ୟ ଘୋର ଅନୁତପ୍ତ ହୋଇ ବର୍ତ୍ତମାନ ପୁନର୍ବାର ମନୁଷ୍ୟଜନ୍ମ ପରି ଦୁଃଖ ତାକୁ ନ ଦେବାପାଇଁ କାକୁତି କରିବାକୁ ଲାଗିଲା । ଶିବ ତାକୁ ସାନ୍ତ୍ୱନା ଦେଇ କହିଲେ ଯେ ସେ ଧରାଧାମରେ ଜଣେ ଉତ୍ତମ ରାଜା ଓ ଭକ୍ତିମତୀ ରାଣୀର ସନ୍ତାନ ହେବେ ଓ ନିଜେ ଏକ ଉତ୍ତମ ରାଜା ଭାବରେ ଜୀବନଯାପନ କରି ଶେଷରେ କୈବଲ୍ୟଧାମକୁ ଫେରିବେ ।

ଉଭୟ ଗଦ୍ୟ ଓ ପଦ୍ୟର ଆତ୍ମିକ ମିଶ୍ରଣରେ ନିର୍ମିତ ଏହି ପୁସ୍ତକ ବସ୍ତୁତଃ ଅନନ୍ୟ । ଗଦ୍ୟ ଅପେକ୍ଷା ଏହା ପ୍ରକୃତରେ ଅଧିକ ଭାବରେ ପଦ୍ୟଗୁଣାତ୍ମକ । ଓଡ଼ିଆ ସାହିତ୍ୟରେ ଏହାର ମୂଲ୍ୟ କେବଳ ଏହାର ପ୍ରାଚ଼ୀନତା ଉପରେ ନିର୍ଭର କରୁନାହିଁ । ନିଜର ଶିଳ୍ପ, ସୃଜନୀଧର୍ମ ଓ କଳ୍ପନାର ସୁଷମା ଯୋଗୁଁହିଁ ଏହା ଅନନ୍ୟ ବିବେଚ଼ିତ ହେବାର କଥା । ମନୋରମ ସଙ୍ଗତି ଭିତରେ ଏହି ଗ୍ରନ୍ଥରେ ଆମେ ଏକତ୍ର ଅବସ୍ଥିତ ଥିବାର ଦେଖିପାଉଛୁ ପରସ୍ପର-ବିରୋଧୀ ସଂଯମ ଓ ପ୍ରଣୟ, ତ୍ୟାଗ ଓ ଭୋଗ, ଶାସ୍ତ୍ରୀୟ ଶିଷ୍ଟତା ଓ ଯୁବଧର୍ମୀ ସ୍ୱାଧୀନତା । ସନ୍ନ୍ୟାସୀ ହେଲେହେଁ ରୁଦ୍ରସୁଧାନିଧିର ଲେଖକ ଆତ୍ମାରେ ଥିଲେ ଏକ ନିବିଡ଼ ଯୁବଧର୍ମୀ କବି । ଯୋଗୀଶ୍ୱର ଶିବଙ୍କର ଏହି ଅବଧୂତ-ଭକ୍ତ ବାହାରେ ସର୍ବତ୍ୟାଗୀ ଥିଲେ ମଧ୍ୟ, ଭିତରେ ରହିଥିଲେ ଏକ ସୌନ୍ଦର୍ଯ୍ୟ-ପିପାସୁ ପ୍ରଣୟୀ । ତା ନ ହୋଇଥିଲେ, ଏ ଗ୍ରନ୍ଥରେ ଯେଉଁ ଅଳଙ୍କାର-ମଣ୍ଡିତ ଓ ବର୍ଣ୍ଣାଢ଼୍ୟ-ପରିବେଶ ସୃଷ୍ଟି କରାହୋଇଛି, ଯେପରି ସାବଲୀଳ ରୀତିରେ ଗ୍ରନ୍ଥକାର ଛନ୍ଦୋମୟ, କଳ୍ପନାବନ୍ତ ଶବ୍ଦ-ସଂଦୋହ ପ୍ରୟୋଗ କରିଚାଲିଛନ୍ତି ଏବଂ ସର୍ବୋପରି ଭିନ୍ନ ଭିନ୍ନ ସାମାଜିକ ପରିସ୍ଥିତିରେ ସେ ଯେପରି ଅନ୍ତର୍ଦୃଷ୍ଟିର ସୂଚ଼ନା ଦେଇଛନ୍ତି, ତାହା ସମ୍ଭବ ହୋଇପାରିନଥାନ୍ତା । ଏ ପୁସ୍ତକ ଗଦ୍ୟ ହେଲେହେଁ, ଏହାର ଏପରି କାବ୍ୟଭାବାକ୍ରାନ୍ତ ହୋଇପଡ଼ିଛି ଯେ, ଏଥିରେ ପ୍ରାୟ ତିନି ଚାରିଟି ଧାଡ଼ି ଶେଷକୁ ଆପେ ଆପେ ଯତିପାତନ ଘଟିଯିବାର ଦେଖାଯାଉଛି । ଏହା ହୁଏତ ଗ୍ରନ୍ଥକାରଙ୍କ ଅଜ୍ଞାତସାରରେ ଘଟିଛି ଏବଂ ଘଟିଛି ଆପେ ଆପେ, ସେ ଗ୍ରନ୍ଥର ଉଚ଼ିତ ମାଧ୍ୟମରୂପେ ଯେଉଁ ଅନୁପ୍ରାସମୟ ଗଦ୍ୟ ବ୍ୟବହାର କରିଛନ୍ତି, ତାରି ଫଳସ୍ୱରୂପ । କାବ୍ୟଦିଗରୁ ଦେଖିଲେ ଏହି ଗଦ୍ୟ-ଗ୍ରନ୍ଥ ଯେପରି ସିଦ୍ଧିଯୁକ୍ତ, ଗଦ୍ୟ-ଗ୍ରନ୍ଥରୂପେ ମଧ୍ୟ ସେହିପରି ଅସାଧାରଣ ଭାବରେ ପ୍ରକାଶନଶୀଳ । ସମଗ୍ର ଗ୍ରନ୍ଥ, ନିଜର ଏକ ବଳିଷ୍ଠ ବ୍ୟକ୍ତିତ୍ୱ ଘେନି ଆମ ଆଗରେ ଦଣ୍ଡାୟମାନ । 'ରୁଦ୍ରସୁଧାନିଧି'ର ରଚ଼ନାର ଦୃଷ୍ଟାନ୍ତସ୍ୱରୂପ, ସନ୍ନ୍ୟାସୀ-ଗ୍ରନ୍ଥକାର ଗଣମାନଙ୍କର ପ୍ରଲୋଭନ-ପରୀକ୍ଷା ପାଇଁ ସୁନ୍ଦରୀ ତ୍ରୈଲୋକ୍ୟମୋହିନୀଙ୍କୁ ଗଣ-ମାନଙ୍କ ତପସ୍ୟାଶ୍ରମରେ ଯେଉଁଠି ପ୍ରବେଶ କରାଇଛନ୍ତି, ପାଠକମାନଙ୍କ କୌତୂହଳାର୍ଥେ ତାହାହିଁ ଦେଉଛୁ –

''ଏମନ୍ତ ଦେଖି ସେ ସିଦ୍ଧ ରୁଦ୍ରଗଣସମୂହର ଅଗ୍ୟାନ ସମୁଦ୍ରେ ମଜ୍ଜିଲା ମନମତ୍ତ ହସ୍ତୀ । କି ମନ୍ମଥ ଫାଶେ ଆକର୍ଷିବାକୁ ଅତ୍ୟନ୍ତ ହରଷେ ହୋଇଅଛି ଯତ୍ନ, ଦିବ୍ୟ

ଅଳଙ୍କାରଯୁକ୍ତ ହୋଇ ଯୋଗ ବିଘ୍ନ କର୍ଣ୍ଣିବାପାଇଁ । କାମଦେବ ସଙ୍ଗତେ ବସନ୍ତ ଋତୁ ଅଇଲା । ମଇତ୍ରକୁ ସପକ୍ଷ ହୋଇବା ନିମନ୍ତେ ଆକାଶେ ଚନ୍ଦ୍ରମା ନିର୍ମଳ ହୋଇ ଉଇଁଲା । ଛଡ଼ଋତୁ ସହିତେ ମଳୟ ପବନ ବହିଲା । ଯୁବଜନମାନଙ୍କର ପୁନଃ ପୁନଃ କରି ଚିତ୍ତ ଦହିଲା । ଶୁଷ୍କ ପାଦପ ପଲ୍ଲବ ହୋଇଲା । ଭ୍ରମରେ ପଦ୍ମରେ ରମିଲେ । ଦିବ୍ୟାଙ୍ଗନାମାନଙ୍କର ସ୍ତନ ସଙ୍କଟେ ମଳୟ ପବନ ମନ୍ଦ ମନ୍ଦ ହୋଇ ପଶିଲେ । ଲଜ୍ଜା ଗଳିଲେ । କୋଇଲିମାନଙ୍କର କୁହୂ କୁହୂ ଶବଦ ବଳିଲେ । ଅଦିନରେ ସରସୀରେ ପକ୍ଷୀ ଭାସିଲେ । ଭ୍ରମରେ ପୁଷ୍ପ ଲେଉଟି ଚୁମ୍ବିବାରେ ସଲଜ୍ଜେ ମନ୍ଦ ମନ୍ଦ ହୋଇ ହସିଲେ ଓ ଏବଂଭୂତ ପ୍ରକାରେ ସେ ରୁଦ୍ର କ୍ରୀଡ଼ାବନରେ ଅଜୀବ ଜୀବ କାମାନ୍ଧକାରେ ମଜ୍ଜିଲେ ।''

ଗଦ୍ୟ ଓ ପଦ୍ୟର ମଧ୍ୟବର୍ତ୍ତୀ, ବାହ୍ୟରେ ବୟୋଗରିଷ୍ଠ; କିନ୍ତୁ ଅନ୍ତରରେ ଯୁବଧର୍ମୀ, ରୂପକଶୀଳ ଓ ଧର୍ମାଦର୍ଶ ଲକ୍ଷ୍ୟ, ଶୈବସନ୍ନ୍ୟାସୀ ଅବଧୂତ ନାରାୟଣ ସ୍ୱାମୀଙ୍କର ଏହି ଗ୍ରନ୍ଥ 'ରୁଦ୍ରସୁଧାନିଧି' ଓଡ଼ିଆ ସାହିତ୍ୟର ବିବର୍ତ୍ତନର ଇତିହାସରେ ଏକ ବିପୁଳ ବ୍ୟଞ୍ଜନାପୂର୍ଣ୍ଣ ଶଙ୍ଖ । ସପ୍ତମ-ନବମ ଶତାବ୍ଦୀର ବୌଦ୍ଧ ଅପଭ୍ରଂଶ କବିତାବଳି ପରେ ଓଡ଼ିଆ ଭାଷାର ଏହା ଏକ ସ୍ୱାଭାବିକ ପରବର୍ତ୍ତୀ ପଦକ୍ଷେପ; କିନ୍ତୁ ପ୍ରକୃତରେ ଏହି ଐତିହାସିକ ଗୌରବ ଛଡ଼ା, ଏହି ଗ୍ରନ୍ଥ ଓ ତାର ସନ୍ନ୍ୟାସୀ ଲେଖକ ଛଅଶତ ଶତାବ୍ଦୀ ପରେ ମଧ୍ୟ ଆଜି ଆମର ଭକ୍ତି ଓ ପ୍ରଣତି ଦାବି କରୁଛନ୍ତି, ଗ୍ରନ୍ଥଟିର ଯଥାର୍ଥ ଅନ୍ତର୍ନିହିତ ମହତ୍ତ୍ୱଯୋଗୁଁ । ବିଶ୍ୱର ଯେକୌଣସି ଭାଷାରେ 'ରୁଦ୍ରସୁଧାନିଧି' ଉତ୍କୃଷ୍ଟ ଗଦ୍ୟରଚନା ଭାବରେ ସମ୍ମାନିତ ହୁଅନ୍ତା ।

**ବ୍ରତ-କଥା –**

ଯା ପରେ ଆମେ ଯେଉଁ ପ୍ରାଚୀନ ଓଡ଼ିଆ ଗଦ୍ୟ-ସାହିତ୍ୟର ବିଚାର କରିବା, ସେସବୁ ଓଡ଼ିଶାରେ ସର୍ବତ୍ର ପ୍ରଚଳିତ ବ୍ରତାଦିର ଉପାଖ୍ୟାନମାଳା । ଏସବୁ କେବେ ଆରମ୍ଭ ହୋଇଥିଲା, ତାହା ନିର୍ଦ୍ଦିଷ୍ଟ ଭାବରେ କହିବାର ଉପାୟ ନାହିଁ । ସେମାନଙ୍କର ସ୍ରଷ୍ଟାମାନେ ଏପର୍ଯ୍ୟନ୍ତ ଅଜ୍ଞାତ । ଏଗୁଡ଼ିକର ଆଭ୍ୟନ୍ତରୀଣ ଭାଷାଗତ ଓ ଧର୍ମୀୟ ସାକ୍ଷ୍ୟରୁହିଁ ପଣ୍ଡିତମାନେ ଏଗୁଡ଼ିକୁ ତ୍ରୟୋଦଶ-ଚତୁର୍ଦ୍ଦଶ ଶତାବ୍ଦୀରେ ଥାପନା କରୁଛନ୍ତି । ତାହା ହୁଏତ ଏକାନ୍ତ ଭ୍ରାନ୍ତ ସିଦ୍ଧାନ୍ତ ନ ହୋଇପାରେ । ଯେ ପର୍ଯ୍ୟନ୍ତ ସେଗୁଡ଼ିକୁ ଅନ୍ୟ ଶତାବ୍ଦୀରେ ଆମେ ନିର୍ଦ୍ଦିଷ୍ଟ ଭାବରେ ଅବସ୍ଥାପିତ ନକରାଇପାରିଛେ, ସେ ପର୍ଯ୍ୟନ୍ତ ସେମାନଙ୍କୁ ଏହି ପ୍ରାଚୀନ କାଳରେ ରଖିବାରେ କାହାରି ବିଶେଷ ଆପତ୍ତି ନଥାଇପାରେ ।

ଏମାନଙ୍କ ମଧ୍ୟରୁ 'ସୋମନାଥ ବ୍ରତ' କଥା ଓ 'ନାଗଲଚଉଠି' କଥା ଶିବ-ମାହାତ୍ମ୍ୟ-ପ୍ରଚାର-ମୂଳକ; କିନ୍ତୁ ଏମାନଙ୍କଠାରେ ସମଧର୍ମୀୟ 'ରୁଦ୍ରସୁଧାନିଧି'ର ସାହିତ୍ୟିକ ମର୍ଯ୍ୟାଦା ଆଦୌ ନାହିଁ । ଏଗୁଡ଼ିକ ନିରାଡ଼ମ୍ବର କଥନ ମାତ୍ର, ଅଧିକ ରସାଳ କରି କଥାଟି କହିବାର କୌଣସି ଚେଷ୍ଟାହିଁ ସେମାନଙ୍କର ଦେଖାଯାଏ ନାହିଁ; କିନ୍ତୁ 'ନାଗଲଚଉଠି' ଗପଟି ଛୋଟ ଛୋଟ ବାକ୍ୟାବଳିଦେଇ କଥିତ ହେବାରେ ଏକ ସ୍ୱତନ୍ତ୍ର ମନୋରମତା ପାଇପାରିଛି; ଯଥା–

"ହେ ନରମାନେ, ଶୁଣ ନାଗଲଚଉଠି କଥା । ଏକ ଯେ ସାଧବ ଘର । ତା'ର ସାତ-ବୋହୂ । ସାନବୋହୂଟିକି କେହି ଦେଖିନପାରନ୍ତି । ଏରୂପେ କେତେହେକ ଦିନେ ଆସିଣ ଗଲା । କାର୍ତ୍ତିକ ହେଲା । ପିମ୍ପେଇ ଅମାବସ୍ୟା ଯିବାର ଚାରିଦିନେ ନାଗଲଚଉଠି ହେଲା । ଶାଶୂ ସଙ୍କାଳୁ ସ୍ନାହାନ କଲା । ସ୍ନାହାନ କରି ଓଷା ଦ୍ରବ୍ୟ ସଜାଡ଼ିଲା । ଆଖୁ ଦଣ୍ଡା ଗହନେ ଆଣିଲା । ଗୁଆକାନ୍ଧି ଗହନେ ଆଣିଲା । କଦଳୀକାନ୍ଧି ଗହନେ ଆଣିଲା । ନଡ଼ିଆକାନ୍ଧି ଗହନେ ଆଣିଲା । ଲିଆ ଭାଜିଲା । ଗଜାମୁଆଁ କଲା । ରାସି ଛଡ଼ାଇଲା । ଆଖୁ କାଟିଲା । କଦଳୀ ଛଡ଼ାଇଲା । ରାସି ଗଜା କଲା । ଉଆ ଚୁଡ଼ା କଲା ।" ଇତ୍ୟାଦି ।

**ତଅପୋଈ –**

କିନ୍ତୁ ଓଡ଼ିଶାରେ ପ୍ରଚଳିତ ସମସ୍ତ ବ୍ରତ-କଥା ଭିତରେ କାରୁଣ୍ୟମୟ ତଅପୋଈର ଗଳ୍ପଟି ସବୁଠାରୁ ହୃଦୟସ୍ପର୍ଶୀ । ଏ ଗଳ୍ପ ଯେ ଏ ଦେଶରେ ଶକ୍ତି (ଦେବୀ) ଉପାସନାର ପ୍ରଚାର ପାଇଁ ତିଆରି ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ଉତ୍କଳ ଦେଶରେ ଘରେ ଘରେ ଏହି କଥାନିର୍ଦ୍ଦିଷ୍ଟ ବ୍ରତ ପାଳିତ ହୋଇଆସୁଛି; କିନ୍ତୁ କେବଠୁ କେହି କହିପାରିବେ ନାହିଁ । ଅସାଧାରଣ ଜନପ୍ରିୟତା ହେତୁ ମୌଳିକ ଗଦ୍ୟ-ଗଳ୍ପଟି ଏକ ସାଦାସିଧା ପଦ୍ୟରେ ପରିଣତ ହୋଇଯାଇଛି ବୋଲି ମନେହେଉଛି । ଏ ଗଳ୍ପଟି ଅପେକ୍ଷାକୃତ ଦୀର୍ଘ ଓ ଘଟଣାବହୁଳ; ତେଣୁ ଗଦ୍ୟାବୃତ୍ତି ସୁଖକର ନହେବାର କଥା । ତେଣୁ ବୋଧହୁଏ ଅନ୍ୟ ବ୍ରତକଥାମାନଙ୍କ ପରି ଆଦ୍ୟରେ ଭିନ୍ନ ନଥିଲେହେଁ ପଥ ମଧ୍ୟରେ ପଦ୍ୟାକାର ଗ୍ରହଣ କରିପକାଇଛି । କିନ୍ତୁ ସେ ଯାହାହେଉ, ଏଇ ଗଳ୍ପ, ତା'ର ଘଟଣାବଳି ଓ ଚରିତ୍ରାବଳିରୁ ଏହା ବ୍ୟଞ୍ଜିତ ହେଉଛି ଯେ, ଏହାର କାଳ ନିଶ୍ଚୟ ସୁଦୂର । ଏହା ନିଶ୍ଚୟ ଯେ, ଦିନେ ଏଇ ଗଳ୍ପ ତିଆରି ହୋଇଥିଲା, ମନ୍ଦିର ଓ ପୂଜାର ଆଡ଼ମ୍ବର ଓ ବ୍ୟୟବହୁଳତା ପରିହାର କରି, ସରଳ ଭାବରେ ଦେବୀ (ଶକ୍ତି) ଉପାସନାକୁ ଏ ଦେଶରେ ଜନତା, ବିଶେଷତଃ ସ୍ତ୍ରୀଜନଙ୍କ ଭିତରେ କିପରି ପ୍ରଚାରିତ, ଗୃହୀତ ଓ ପ୍ରସାରିତ କରାଯାଇପାରିବ । ଗଳ୍ପର କେନ୍ଦ୍ର-ରୂପିଣୀ କାରୁଣ୍ୟରସ-ବିଗ୍ରହା-ନାୟିକା ଦୁଃଖିନୀ ତଅପୋଈ ଏ ଦେଶର ଜନନୀମାନଙ୍କର ଚିତ୍ତାଧିକାର କରିପାରିବାରୁ ଏହି ଗଳ୍ପ ଓ ଏହି ବ୍ରତ ସମଗ୍ର ଉତ୍କଳରେ ସୁପରିଚିତ ହୋଇଉଠିଛି । ଗଳ୍ପଟି ଏହିପରି –

ଜଣେ ସାଧବର ଥିଲେ ସାତ ପୁଅ ଓ ସାତ ବୋହୂ । ଏକମାତ୍ର କନ୍ୟା ତଅପୋଈ ଥିଲା ସବା ସାନ ସନ୍ତାନ । ସାଧବର ଧନ ଓ ପ୍ରତିପତ୍ତି କହିଲେ ନସରେ । ନିକଟରେ ଥିବା ଏକ ଦରିଦ୍ରା ବ୍ରାହ୍ମଣୀ ବିଧବାର ଅନ୍ତର କିନ୍ତୁ ସାଧବର ଶ୍ରୀ-ସଂପଦରେ ଈର୍ଷାରେ ଜଳିଉଠୁଥାଏ । ଦିନେ ସେ ବ୍ରାହ୍ମଣୀ ଦାଣ୍ଡରେ ତଅପୋଈ ସାଙ୍ଗ ଝିଅଙ୍କ ସାଥିରେ ବାଉଁଶକୁଲେଇ ଘେନି ଧୂଳି ଖେଳୁଥିବାର ଦେଖିଲା । ବ୍ରାହ୍ମଣୀ ତଅପୋଈକି କହିଲା – "ତୁ ସାଧବଘରର ପିଲା ହୋଇ ବାଉଁଶକୁଲେଇରେ ଖେଳୁଛୁ ? ବାପକୁ କହିଲେ ସେ ତୋ' ପାଇଁ ସୁନାଚାନ୍ଦ, ରୂପା-କୁଲେଇ ଗଢ଼ିଦିଅନ୍ତା ।" ସରଳା ତଅପୋଈ ସାଙ୍ଗେ ସାଙ୍ଗେ

ଅଳି କଲା ସୁନାଚାନ୍ଦ, ରୁପା-କୁଲେଇ ପାଇଁ । ବୃଦ୍ଧ ସାଧବ ଅର୍ଥର ଏ ପ୍ରକାର ଅପବ୍ୟୟକୁ ଅଧର୍ମ ବୋଲି ଭାବିଲେ । କିନ୍ତୁ ସରଳା ତଅପୋଇ ଜିଦ୍ ଧରିଲା ଓ ସ୍ନେହାକୁଳ ପିତାମାତା ରାଜିହୋଇଗଲେ; କିନ୍ତୁ ସୁନାଚାନ୍ଦ, ରୁପାକୁଲେଇ ତିଆରି ପୂରା ନହେଉଣୁ ବୁଢ଼ାବୁଢ଼ୀ ପ୍ରାଣ ହରାଇଲେ । ତା'ପରେ ପୁଅମାନେ ବାପର ସାମୁଦ୍ରିକ ବାଣିଜ୍ୟ ବ୍ୟବସାୟ ହାତକୁ ନେଲେ ଓ ବିଦେଶ ଯିବାକୁ ବାହାରିଲେ । ଯିବା ପୂର୍ବରୁ ସେମାନେ ତାଙ୍କ ସ୍ତ୍ରୀମାନଙ୍କୁ କିନ୍ତୁ କହିଦେଇଗଲେ ଅଲିଅଳ ଭଗିନୀ ତଅପୋଇର ଯେପରି ସାମାନ୍ୟତମ ଅଯତ୍ନ ନହୁଏ; ସେ ସ୍ୱର୍ଗତ ପିତା ଓ ମାତାଙ୍କୁ ଯେପରି ଭୁଲିଯାଏ ।

ସ୍ତ୍ରୀମାନେ ସ୍ୱାମୀମାନଙ୍କର ବଚନ ଅନୁଯାୟୀ ନଣନ୍ଦ ତଅପୋଇର ସେବା କରୁଥିଲେ; କିନ୍ତୁ ପୁଣି ସେଇ ବିଧବା ବ୍ରାହ୍ମଣୀ ଆସି ଦେଖାଦେଲା । ସେ ବୋହୂମାନଙ୍କୁ କହିଲା – ''ଏ ଝିଅ-ବକଟକୁ ସେବା ଯତ୍ନ କରିବାରେ ତମର ଦିନ ଚାଲିଯାଉଛି । ତମେ ସବୁ କି ମୂର୍ଖ ! ଭାଇମାନେ ଲେଉଟିଲେ ଏଇ ଟୋକୀ ତମମାନଙ୍କ ନାମରେ ନାନା କଥା କହି ତମ ଜୀବନ ଖାଇବ । ସେ ତ ତମର ଭଗାରି – ତାକୁ ସେବାକରୁଛ କ'ଣ ?''

ବର୍ତ୍ତମାନ ଚିତ୍ର ଏକାବେଳକେ ଓଲଟିଗଲା । ସାଧବର ଅଲିଅଳ କନ୍ୟା ତଅପୋଇକୁ ବର୍ତ୍ତମାନ ଛେଳି ଜଗିବାକୁ କୁହାଗଲା । ଅଳ୍ପକାଳ ଭିତରେ ଛେଳିପଲ ପଛରେ ନଖାଇ ନପିଇ ଜଙ୍ଗଲଯାକ ବୁଲି ବୁଲି ସେ କଳାକାଠ ପଡ଼ିଗଲା ଓ ଅଙ୍ଗ ଆବୃତ କଲା ଛିନ୍ନ-ମଳିନ ବସ୍ତ୍ରରେ । କେବଳ ସବା ସାନ ବୋହୂଟି ତା' ପ୍ରତି ମାୟା ରଖି ଲୁଚେଇ କରି ତା' କାନିରେ ଯେଉଁ ଅନ୍ନଗଣ୍ଡିଏ ବାନ୍ଧିଦିଏ, ସେଇଥିରେ ତଅପୋଇର ପ୍ରାଣରକ୍ଷା ହୁଏ । ଆଶ୍ୱିନ ମାସରେ ଭରା ନଦୀ ନାଳ । ସେତେବେଳେ ବଡ଼ବୋହୂର ଗେହ୍ଲା ଘରମଣି ନାମକ ଛେଳିଟି କୁଆଡ଼େ ହଜିଗଲା । ସେଦିନ ସନ୍ଧ୍ୟାରେ ତଅପୋଇ ଯେତେବେଳେ ଛେଳିପଲ ଧରି ବାହୁଡ଼ିଲା, ଦେଖାଗଲା ଯେ ଘରମଣି ନାହିଁ । ବଡ଼ବୋହୂ ତାକୁ ନିଷ୍ଠୁର ଭାବରେ ପିଟିଲା ଓ ସେହି ଅଖିଆଅପିଆ ଅବସ୍ଥା ଓ କାଦୁଅ ଗୋଡ଼ରେ ପୁଣି ବଣକୁ ପଠାଇଦେଲା ଛେଳି ଖୋଜିଆଣିବାକୁ । ବାହାରେ ଅନ୍ଧାର ରାତି ଓ ବର୍ଷା ହେଉଥିଲା । ବିଚାରୀ ତଅପୋଇ ଛେଳି ନାଁ ଧରି ବଡ଼ପାଟି କରି ଡାକୁଥାଏ ଓ ବଣରେ ଅମଡ଼ା ବାଟରେ ଚାଲିଥାଏ । ଏଇମିତି ବୁଲୁ ବୁଲୁ ସେ ଗ୍ରାମଦେବତୀ ମଙ୍ଗଳା-ପ୍ରତିମା ଉପରେ ଝୁଣ୍ଟିପଡ଼ିଲା ଓ ତାଙ୍କୁ ଜାଣିପାରି ସାନବୋହୂ କାନିରେ ବାନ୍ଧି ଦେଇଥିବା ଖୁଦଗଣ୍ଡାକ ତାଙ୍କୁ ନୈବେଦ୍ୟ କରି ପୂଜାକଲା ଏବଂ ନିଜ ଭାଗ୍ୟକୁ ନିନ୍ଦା କରି ଉଚ୍ଚରେ ବିଳାପ କରିବାକୁ ଲାଗିଲା । ରାତି କେତେ ହେଲାଣି ସେ ଜାଣିପାରିଲାନି, ସେ କେବଳ ବିଳାପ କରୁଛି । ଅଧରାତି ବେଳକୁ ତା'ର କ୍ରନ୍ଦନ ଧ୍ୱନିରେ ଆକୃଷ୍ଟ ହୋଇ ଜଣେ କେହି ସେଠାକୁ ଆସିବାର ଦେଖାଗଲା । ପ୍ରଶ୍ନ-ଉତ୍ତରରେ ଜଣାପଡ଼ିଲା ଯେ, ସେ ଆଉ କେହି ନୁହେଁ, ତଅପୋଇର ସାନଭାଇ । ସେ ଓ ଅନ୍ୟ ଭାଇମାନେ ବୋଇତ ଘେନି ଫେରିଛନ୍ତି । ସେମାନଙ୍କର ବୋଇତ ଅଦୂରରେ ଖଟାହୋଇଛି । ସାନଭାଇ ତଅପୋଇକୁ ବୋଇତକୁ ନେଇଗଲେ, ଗାଧୋଇଦେଲେ, ଲୁଗାପଟା ଓ ଆୟ-ଅଳଙ୍କାର ପିନ୍ଧାଇଦେଲେ । ସାଧବ ବୋହୂମାନଙ୍କୁ ଖବର ପଠାଗଲା

ଯେ ସେମାନେ ଆସି ସକାଳେ ବୋଇତ ବନ୍ଦେଇବେ । ସେମାନେ ଆସିଲେ । ଭାଇମାନେ ତଅପୋଇ କାହିଁ ବୋଲି ପଚାରିବାରୁ ଉତ୍ତରଦେଲେ ଯେ, ତଅପୋଇର ଦେହ ଭଲ ନାହିଁ, ସେ ଘରେ ଶୋଇଛି । ସବା ସାନବୋହୂ ଛଡ଼ା ଅନ୍ୟ ବୋହୂମାନଙ୍କୁ କୁହାଗଲା ଯେ, ବୋଇତ ପଛରେ ଥିବା ମଙ୍ଗଳାଙ୍କୁ [୧] ସେମାନେ ଯାଇ ବନ୍ଦାପନା କରି ଆସନ୍ତୁ । ବୋହୂମାନେ ଯାହାଙ୍କୁ ପୂଜାକରିବାକୁ ଗଲେ, ସେ ପ୍ରକୃତରେ ନୂତନ ବସ୍ତ୍ରାଳଙ୍କାରରେ ସଜ୍ଜିତା ତଅପୋଇ । ଭାଇମାନେ ଯେପରି ଆଗରୁ କହାଇ ଦେଇଥିଲେ, ସେ ବର୍ତ୍ତମାନ ଧରିଥିବା ଏକ ଛୁରୀରେ ସାନ ବୋହୂ ବ୍ୟତୀତ ଅନ୍ୟ ବୋହୂମାନଙ୍କର ନାକ କାଟି-ପକାଇଲା । ସେମାନେ ଲଜ୍ଜାରେ ନିକଟସ୍ଥ ଅରଣ୍ୟକୁ ପଳାଇଗଲେ ଓ ବ୍ୟାଘ୍ର-ଭୁକ୍ତ ହେଲେ । ତଅପୋଇ ଓ ଭାଇମାନେ ଘରକୁ ଫେରିଲେ । ଘରକୁ ନୂତନ ବୋହୂମାନେ ଅଣାହେଲେ ଓ ସମସ୍ତେ ସୁଖରେ ରହିଲେ ।

ଯେହେତୁ ତଅପୋଇ ଦେବୀ ମଙ୍ଗଳାଙ୍କୁ ଖୁଦ ଦେଇ ପୂଜାକରିଥିଲା, ତେଣୁ ଓଡ଼ିଶାରେ ଏହି ବ୍ରତର ନାମ ଖୁଦରକୁଣି ଉପବାସ । ଏହା ସାଧାରଣତଃ ଅବିବାହିତା କନ୍ୟାମାନେ, ତଅପୋଇ ତା'ର ଭାଇମାନଙ୍କର ସ୍ନେହ-ଯତ୍ନ ଯେପରି ପାଇଥିଲା, ନିଜ ଭାଇମାନଙ୍କର ସେହି ସ୍ନେହ ପାଇବାପାଇଁ ପାଳିଥା'ନ୍ତି ।

ପୂର୍ବେ ଯେପରି ସୂଚିତ ହୋଇଛି, ଏହି ତଅପୋଇ ଗଳ୍ପପରି ଓଡ଼ିଶାର ବହୁ ଲୋକ-ଗଳ୍ପରେ ସାମୁଦ୍ରିକ ବଣିକ (ସାଧବ) ଓ ସାଗର-ପାରି ବାଣିଜ୍ୟର କଥା ବାରମ୍ବାର ଦେଖିବାକୁ ମିଳେ । ଏହି ଖୁଦୁକୁଣି ବା ଖୁଦରକୁଣି ଉତ୍ସବର ଅଂଶରୂପେ ଓଡ଼ିଶାର ପଲ୍ଲୀଅଞ୍ଚଳର କୁମାରୀମାନେ ଘରଚଟାଣରେ ଏକ ବିରାଟ ସମୁଦ୍ରଗାମୀ ବୋଇତର ଛବି ଖଡ଼ି-ପାଣିରେ ଆଙ୍କନ୍ତି ଓ ମଙ୍ଗଳାଠାକୁରାଣୀଙ୍କୁ ତା' ଉପରେ ଠିଆକରାନ୍ତି । ତଅପୋଇ ଗଳ୍ପ ଏହା ମଧ୍ୟ ସୂଚିତ କରୁଛି ଯେ, ଓଡ଼ିଆ ନାବିକ-ବଣିକମାନେ ନୌବାଣିଜ୍ୟରେ ଘରୁ ଅନୁପସ୍ଥିତ ଥିଲାବେଳେ, କାହିଁ କାହିଁ ପାରିବାରିକ ବିଶୃଙ୍ଖଳା ମଧ୍ୟ ଦେଖାଦେଉଥିଲା । ବୋଧହୁଏ ଗାର୍ହସ୍ଥ୍ୟରେ ସେ ପ୍ରକାର ଅକଲ୍ୟାଣ ନଘଟିବା ପାଇଁ ନାବିକବର୍ଗ ଓଡ଼ିଶାର ବନ୍ଦରମାନଙ୍କରେ ମଙ୍ଗଳ-ଦାୟିନୀ ମଙ୍ଗଳାଙ୍କୁ ବସାଇ ଆରାଧନାର ବ୍ୟବସ୍ଥା କରିଥିଲେ ।

**ମାଦଳାପାଞ୍ଜି –**

ଏହି ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ସବୁଠାରୁ ବିବଦମାନ ଗଦ୍ୟ-ଗ୍ରନ୍ଥ ହୋଇ ରହିଛି । ତାଳପତ୍ର-ଲେଖା, ଓଡ଼ିଆ ରାଜାମାନଙ୍କର ଏହି ବିବରଣୀ, ଜଗନ୍ନାଥ ମନ୍ଦିରରେ ରକ୍ଷିତ ଅଛି । ତାଳପତ୍ରଗୁଡ଼ିକ ବନ୍ଧାହୋଇ ମାଦଳ (ମର୍ଦ୍ଦଳ) ଆକାରରେ ରଖା-ହେଉଥିବାରୁ ଏ ତାଳପତ୍ର ପୋଥିକୁ ମାଦଳାପାଞ୍ଜି ବୋଲି ଲୋକେ କହନ୍ତି । (ପଣ୍ଡିତ-

---

(୧) ଓଡ଼ିଶାର ସମଗ୍ର ଉପକୂଳ ଅଞ୍ଚଳରେ ଓଡ଼ିଆ ନାବିକମାନଙ୍କର ଇଷ୍ଟଦେବୀ ମଙ୍ଗଳାଙ୍କ ଅଧିଷ୍ଠାନସବୁ ଅବସ୍ଥିତ । କାକଟପୁରର ପ୍ରସିଦ୍ଧ ମଙ୍ଗଳାଠାକୁରାଣୀ ସେହି ପ୍ରାଚୀନ ବ୍ୟବସ୍ଥାର ସ୍ମୃତିବହନ କରୁଛନ୍ତି ।

ସୂର୍ଯ୍ୟନାରାୟଣ ଦାଶ, ଓଡ଼ିଆ ସାହିତ୍ୟର ଇତିହାସ, ପୃ. ୧୯୨ ଦ୍ରଷ୍ଟବ୍ୟ) । [୧] ଏହା ଦୁଇ ଅଂଶରେ ବିଭକ୍ତ । ଏକ ଅଂଶରେ ଜଗନ୍ନାଥଦେବଙ୍କ ଉପାସନାର ବିଧିବିଧାନ ଟିକିନିଖି ଭାବରେ ବର୍ଣ୍ଣିତ । ବହୁ ଶତାବ୍ଦୀଧରି ଏପର୍ଯ୍ୟନ୍ତ ସେସବୁ ପାଳିତ ହୋଇଆସୁଛି । ମନ୍ଦିରର ଭିନ୍ନ ଭିନ୍ନ ଗୋଷ୍ଠୀର ସେବକମାନଙ୍କର ଦାବି-ଅଧିକାର ପାଇଁ ଏହି ପାଞ୍ଜିହିଁ ଏପର୍ଯ୍ୟନ୍ତ ଶ୍ରେଷ୍ଠ ପ୍ରମାଣ ।

ଅନ୍ୟ ଅଂଶଟିରେ ଓଡ଼ିଶାର ଭିନ୍ନ ଭିନ୍ନ ରାଜବଂଶ ଓ ମୁଖ୍ୟ ରାଜାମାନଙ୍କ ରାଜତ୍ୱ ବର୍ଣ୍ଣିତ । ଏହି ରାଜାମାନେ ଉତ୍କଳୀୟ ଜନତା ଉପରେ ଏକ ରହସ୍ୟମୟ ପ୍ରଭୁତ୍ୱ ବିସ୍ତାର କରିପାରିଥିଲେ; କାରଣ ସମସ୍ତଙ୍କର ରାଜଶ୍ରୀର ମୂଳ ଉତ୍ସ ଜଗନ୍ନାଥଦେବ ବୋଲି ଧରିନିଆଯାଇଥିଲା । ଏହାର ଏକମାତ୍ର ତୁଳନୀୟ ଘଟଣା ହେଉଛି ଜାପାନୀ ଜନତା ଉପରେ ଜାପାନ-ସମ୍ରାଟ୍ ମକାଡ଼ୋଙ୍କ ପ୍ରଭାବ । ଉତ୍କଳର ସ୍ୱାଧୀନ ହିନ୍ଦୁରାଜାମାନେ ଜଗନ୍ନାଥଙ୍କର ଚଳନ୍ତି-ପ୍ରତିମା ବୋଲି ଧରାଯାଉଥିଲେ । ସେମାନଙ୍କର ଏବର ରାଜ୍ୟହୀନ ଉତ୍ତରାଧିକାରୀ ମଧ୍ୟ ସେହି ଭାବରେ ସମ୍ମାନିତ । ଓଡ଼ିଆ ରାଜାମାନଙ୍କର ଇତିହାସ ଏହି ମାଦଳାପାଞ୍ଜି; କିନ୍ତୁ ପୁରାଣମାନଙ୍କ ପରି ଆରମ୍ଭ ହୋଇଛି ସୃଷ୍ଟିର ଆରମ୍ଭରୁ ଓ ଯାହା ହୁଏତ ଏକ ସମ୍ମାନନୀୟ ଇତିହାସ ହୋଇପାରିଥାଆନ୍ତା, ତାହା ନାନା କଳ୍ପନା, ଅର୍ଦ୍ଧସତ୍ୟ, ଅତିରଞ୍ଜନ ଓ ମିଥ୍ୟା ଦ୍ୱାରା ବିକୃତ ଓ କଳୁଷିତ ହୋଇଉଠିଛି ।

ଏହି ପାଞ୍ଜି ଏକାଦଶ-ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗଦେବଙ୍କ ସମୟରେ ଆରବ୍ଧ ହୋଇଥିବାର କୁହାଯାଏ । ଜଗନ୍ନାଥ ମନ୍ଦିର ଛଡ଼ା ଆଉ ଦୁଇଟି କରଣ-ପରିବାରରେ ପାଞ୍ଜିର ଅନୁଲେଖ ପୁରୁଷ-ପୁରୁଷଧରି ରହିଆସୁଛି । କିନ୍ତୁ ପାଞ୍ଜିରେ ବର୍ଣ୍ଣିତ ବହୁ ଘଟଣାର

---

(୧) ଅନ୍ୟ ଗ୍ରନ୍ଥରୁ ଉଦ୍ଧୃତ, ଅର୍ଥାତ୍ ଆଦୌ ମୋ ନିଜର ମତ ନହେଲେ ମଧ, ଓଡ଼ିଶାର ନିନ୍ଦୁକ-ବନ୍ଧୁବର୍ଗ ମାଦଳାପାଞ୍ଜିର ନାମକରଣ ଏହି ବ୍ୟଞ୍ଜନାକୁ ନେଇ ମୋର ଗ୍ରନ୍ଥର କୁତ୍ସା ପ୍ରଚାର କରିବାରେ କୁଣ୍ଠିତ ହୋଇନାହାନ୍ତି । ସେମାନେ 'ମାଦଳ' ଅର୍ଥାତ୍ ମୁଣ୍ଡ-ପଦହୀନ ଦେବତା ଜଗନ୍ନାଥଙ୍କ ଗ୍ରନ୍ଥ ହୋଇଥିବାରୁ ତାହାକୁ ମାଦଳାପାଞ୍ଜି କୁହାଯାଏ ବୋଲି ଏକ ବୀଭତ୍ସ ଓ ଅଶ୍ରୁତପୂର୍ବ ଥିଓରି ମଧ ପ୍ରଚାର କରିବାକୁ ସାହସ କରିଅଛନ୍ତି । ଜଗନ୍ନାଥ ମାଦଳ ହେବେ କାହିଁକି ? ତାଙ୍କର ତ ହାତ, ମୁଣ୍ଡ, ଆଖି, ନାକ, କାନ ସବୁ ଅଛି ! ସୁନ୍ଦର ଶ୍ରୀକୃଷ୍ଣଙ୍କର କଳିଯୁଗୀୟ ଅବତାର ବୀଭତ୍ସ ମାଦଳ ହେବେ କିଆଁ ? ଦୀର୍ଘ ଓଡ଼ିଆ ସାହିତ୍ୟରେ କୌଣସି ଜଣେ କବିର ଲେଖା ବା କୌଣସି ଗୋଟିଏହେଲେ ଭଜନରେ ଜଗନ୍ନାଥ 'ମାଦଳ' ବୋଲି ବର୍ଣ୍ଣିତ ହୋଇଥିବାର ଜଣାନାହିଁ; ବରଂ ଭକ୍ତଗଣଙ୍କ ପରି (କଳା ଶ୍ରୀମୁଖ ବାରେ ଦେଖିବା ଚାଳରେ) ସବୁ ବୈଷ୍ଣବ-କବି ଜଗନ୍ନାଥଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁ କରୁହିଁ ବିଭୋର । ବନ୍ଧୁଗଣ ଜଣକର କୁତ୍ସା କରିବା ପାଇଁ ନିଜ ଦେବତାର ମୁଣ୍ଡ ହାତ ହାଣି ପକାଇବାକୁ ମଧ ପ୍ରସ୍ତୁତ ଦେଖୁଛି । ସର୍ବୋପରି ନିମ୍ନ ପ୍ରମାଣର କି ଉତ୍ତର ସେମାନେ ଦେବେ ?

"ମାଦଳାପାଞ୍ଜି— ଓଡ଼ିଶାର ପ୍ରାଚୀନ ଇତିହାସସ୍ୱରୂପ ମାଦଳା ପଞ୍ଜିକା ଲମ୍ବାଲମ୍ବ ଭାବେ ତାଳପତ୍ରେ ଲିଖିତ ହଇୟା ମର୍ଦ୍ଦଲାକାରେ ବଦ୍ଧ ଥାକାୟଓ ଇହାର ନାମ 'ମାଦଳାପାଞ୍ଜି' ହଇୟାଛେ । ଇହାତେ ଶ୍ରୀଜଗନ୍ନାଥ ଦେବେର ମନ୍ଦିରେର ଓ ଉଡ଼ିଶ୍ୟାର ନୃପତିଗଣେର ଇତିବୃତ୍ତ ଲିଖିତ ହଇ-ୟାଛେ ।" (ମହାମହୋପାଧାୟ ପଣ୍ଡିତ ସଦାଶିବ ମିଶ୍ର । ବଙ୍ଗଳା 'ଶ୍ରୀକ୍ଷେତ୍ର'ର ପାଦଟୀକା,ପୃ.୮)

ପ୍ରମାଣ ଅଭାବ, ଐତିହାସିକମାନଙ୍କ ଦ୍ୱାରା ଗୃହୀତ ହେଉନାହିଁ ଓ ଏ ପାଞ୍ଜି ମୋଟଉପରେ ଅବିଶ୍ୱାସ୍ୟ ବୋଲି କୁହାଯାଇଥାଏ । ଅନେକେ ଏ ପ୍ରକାର ଏକ ଗ୍ରନ୍ଥ ସୁଦୂର ଦ୍ୱାଦଶ ଶତାବ୍ଦୀରେ ଆରମ୍ଭ ହୋଇଥିବାରେ ମଧ୍ୟ ସନ୍ଦେହ ପ୍ରକାଶ କରନ୍ତି । ଡକ୍ଟର ମହତାବ କହନ୍ତି ଯେ, ଆକ୍‌ବରଙ୍କ ସେନାପତି ଓଡ଼ିଶା ଜୟ କଲାପରେ ଖୋର୍ଦ୍ଧା ରାଜ୍ୟ ପାଇଁ ଯେଉଁ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ଦେଖାଦେଲେ, ସେହି ପ୍ରତ୍ୟେକଙ୍କର ସ୍ୱତ୍ୱାସ୍ୱତ୍ୱ ପରିବେଷିତ କରିବା ଲକ୍ଷ୍ୟରେ ଏହି ପାଞ୍ଜି ଆରମ୍ଭ ହୋଇଥିଲା ।

ମାଦଳାପାଞ୍ଜିକୁ ପୂରା ଐତିହାସିକ ଗ୍ରନ୍ଥ କହିବା ଯେତିକି ହାସ୍ୟକର, ଶ୍ରୀ ମହତାବଙ୍କର ଏ ପ୍ରକାର ବିତଣ୍ଡା ମଧ୍ୟ ସେତିକି ଉପହାସ୍ୟ । ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ତିନି ବିଭିନ୍ନ ପାଞ୍ଜିଆ-କରଣଙ୍କ ଦ୍ୱାରା ଠିକ୍ ଏକାରକମର ପାଞ୍ଜି ଲେଖିଗଲେ କିପରି ? ପାଞ୍ଜିରେ ସମ୍ରାଟ୍ ଅନଙ୍ଗଭୀମଦେବ ସେକାଳର ଉତ୍କଳୀୟ ଏକତ୍ରିତ ସାମନ୍ତ ରାଜାମାନଙ୍କୁ ଦେଇଥିବା ଏକ ବକ୍ତୃତା ଅଛି । ଖୋର୍ଦ୍ଧା ରାଜ୍ୟ ପାଇବା ପାଇଁ ଏ ପ୍ରକାର ବକ୍ତୃତାର କୌଣସି ଆବଶ୍ୟକତା ନଥିଲା । ପୁଣି ଭିନ୍ନ ଭିନ୍ନ ପାଞ୍ଜିଆ ସେହି ବକ୍ତୃତାଟି ସଠିକ୍ ଭାବରେ ଲେଖିଯା'ନ୍ତେ ବା କିପରି ?

ମନେହୁଏ ଯେ, ସମସ୍ତ ଅର୍ଦ୍ଧସତ୍ୟ ବା ମିଥ୍ୟା ବା ଅତିରଞ୍ଜନ ବା କଳ୍ପନା ସତ୍ତ୍ୱେ, ଏହି ପାଞ୍ଜିର ପ୍ରାଚୀନତାକୁ ସ୍ୱୀକାର କରିବାକୁହିଁ ହେବ । ପାଞ୍ଜିରେ, ଦ୍ୱାଦଶ ଶତାବ୍ଦୀ ଅର୍ଥାତ୍ ଗଙ୍ଗମାନଙ୍କ ଆଗମନ ପରେ ବର୍ଣ୍ଣିତ ଘଟଣାମାନ ଐତିହାସିକ ସାକ୍ଷ୍ୟ ଦ୍ୱାରା ମୋଟଉପରେ ସମର୍ଥିତ ହେଉଥିବାରୁ, ଏହା ଚୋଡ଼ଗଙ୍ଗ-ପ୍ରବର୍ତ୍ତିତ ହୋଇଥିବାର ଯାହା କୁହାଯାଏ, ତାହା ଅସତ୍ୟ ବୋଲି ମଧ୍ୟ କୁହାଯାଇପାରୁନାହିଁ । (୧)

କିନ୍ତୁ ରୁଦ୍ରସୁଧାନିଧି ପରି ଏ ପାଞ୍ଜିର ପଶ୍ଚାତ୍‌ରେ କୌଣସି ଏକକ ପ୍ରେରଣା ନଥିବାରୁ ଓ ଏହା ପଢ଼ିଖିଆ ବା ଜାଗିରିଖିଆ ଚାକିରିଆଙ୍କ ଦ୍ୱାରା ଲେଖାହୋଇଥିବାରୁ, ଏହାର ବିଶେଷ ସାହିତ୍ୟିକ ମର୍ଯ୍ୟାଦା ଯେ ନାହିଁ, ଏଥିରେ ବିସ୍ମିତ ହେବାର କାରଣ ନାହିଁ । ତେଣୁ ଗ୍ରନ୍ଥଟିର ମୂଲ୍ୟ କେବଳ ଐତିହାସିକ ପ୍ରାଚୀନତାରେ । କିନ୍ତୁ ଇଂରାଜୀ ସାହିତ୍ୟର ହଲିନ୍‌ସେଡ଼ଙ୍କ ଇତିହାସ (Holinshed's Chronicles) ପରି ଏହି ଅମୁଦ୍ରିତ ଗ୍ରନ୍ଥ ମଧ୍ୟ ବହୁ ଓଡ଼ିଆ କାବ୍ୟ-କବିତାକୁ ଉପାଦାନ ଯୋଗାଇଆସିଛି । ପାଞ୍ଜିର ସାଧାରଣ ଭାଷା ସମ୍ପୂର୍ଣ୍ଣ ଶିଳ୍ପ-ଗୌରବହୀନ, ଅସାଧୁ ଓ ଅଶିଷ୍ଟ । ପ୍ରାଚୀନ ହେଲେହେଁ ସେଥିରେ ପ୍ରାଞ୍ଜଳ ସୌରଭ ନାହିଁ । ଛିନ୍ନବିଚ୍ଛିନ୍ନ ଭାବରେ ଆମେ ପାଞ୍ଜିର ପୃଷ୍ଠାମାନଙ୍କରୁ ପ୍ରାଚୀନ ଓଡ଼ିଶାର ଯେଉଁ କେତୋଟି ସାମାଜିକ ଚିତ୍ରାବଳୀ ପାଉଁ, ତାହାହିଁ ବୋଧହୁଏ ଏହି ଗ୍ରନ୍ଥର ଏକମାତ୍ର ସାହିତ୍ୟିକ ମୂଲ୍ୟ । ଉପରିଲିଖିତ ସମ୍ରାଟ୍ ଅନଙ୍ଗଭୀମଦେବଙ୍କର ବକ୍ତୃତା ଏହିପରି ଏକ ଉତ୍କୃଷ୍ଟାଂଶ । ଏହା ମଧ୍ୟଯୁଗୀୟ ଉତ୍କଳର ସାମନ୍ତିକ ସମାଜର ଏକ ଚିତ୍ର ଆମ ଆଗରେ ଥୋଇବା ସାଥେ ସାଥେ ବକ୍ତା, ବିଜୟୀ ସମ୍ରାଟ୍ ଅନଙ୍ଗଭୀମଙ୍କର ଉଦାର ବ୍ୟକ୍ତିତ୍ୱକୁ ମଧ୍ୟ ଆମ ଆଗରେ ପ୍ରକଟିତ କରି ରଖିଛି । ଏଠାରେ ତେଣୁ ତାହା ଉଦ୍ଧାର କରି ଦିଆଯାଉଛି ।

(୧) ଏ ସମ୍ପର୍କରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଦ୍ରଷ୍ଟବ୍ୟ ।

ସମ୍ରାଟ୍ ଅନଙ୍ଗଭୀମ କହୁଛନ୍ତି –

"ଭୋ ଭବିଷ ମହାରାଜାମାନେ, ଦେବତା ବ୍ରାହ୍ମଣଙ୍କୁ, ବଳଭଣ୍ଡାରକୁ, ରାଜନୀତିଟଏକୁ ମଧ କରି ମୁଁ ଯେମନ୍ତ ପ୍ରକାରେ ଭିଆଣ କରି ଦେଉଅଛି, ଏଥିକି ତୁମ୍ଭେମାନେ ନ ପୁଣି ବୋଲ, ସେ ଦେଇଗଲେ, ଆମ୍ଭର କି ଗଲା । ଆମ୍ଭେ କିମ୍ପା ଦେବୁ ଏମନ୍ତ ନ ବୋଲିବ । ଏ ତ ଓଡ଼ିଶା ରାଇଜ ଯେ କେଶରୀ ରାଜାମାନଙ୍କୁ ଆଦିକରି ଗଙ୍ଗବଂଶେ ଆମ୍ଭ ଛପାଟ ସରିକି ରାଜ୍ୟ ଆଏ ହେଉଥିଲା । ପୂର୍ବଦିଗେ ଅର୍କକ୍ଷେତ୍ରେ ସୋମୋଦ୍ର ତୀରଠାରୁ ପଶ୍ଚିମେ ଭୀମନଗର ଦଣ୍ଡପାଟ ସରିକି ଆଏ ହେଉଥିଲା । ମହୋଦଧି ଉତ୍ତର ତୀରଠାରୁ କାଆଁସା ସରିକି ଦକ୍ଷିଣେ ଆଏ ହେଉଥିଲା । ଉତ୍ତରେ (୧) କାଆଁସବାଁସ (ବର୍ତ୍ତମାନ ମେଦିନୀପୁର ଜିଲ୍ଲାରେ) ଠାରୁ ଦକ୍ଷିଣେ ଋଷିକୋଇଲା ନଦୀ ସରିକି । ଜିତ ସୁନା ୫ ଲକ୍ଷ ମାଢ଼େ ଏହି ଖଣ୍ଡମଣ୍ଡଳ ହୋଇ ଆଏ ହେଉଥିଲା । ଏମନ୍ତ ରାଜ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପଦାରବିନ୍ଦ ପ୍ରସାଦେ ବ୍ରାହ୍ମଣମାନଙ୍କର କଲ୍ୟାଣେ ଖଣ୍ଡାରେ ଯଶ କରି, ଭୂଇଁଆ ପୁରାଣମାନଙ୍କୁ ଜୟକରି ଆଏ କଲୁ । ଉତ୍ତର ଦିଗେ କାଆଁସବାଆଁସଠାରୁ ଦନାଇ ବୁଢ଼ୀ ନଈ ସରିକି, ଦକ୍ଷିଣେ ଜଏ କଲୁ ଋଷିକୋଇଲା ନଦୀଠାରୁ ରାଜମହେନ୍ଦ୍ର ଦଣ୍ଡପାଟ ସରିକି । ପଶ୍ଚିମେ ଜଏ କଲୁ ଭୀମନଗର ଦଣ୍ଡପାଟଠାରୁ ବଉଦ ସୀମା ସୁନୁପୁର ସରିକି । ଏ ତିନିଦିଗରୁ ରାଇଜ ଆଏ କଲି ଜିତ ସୁନା ୨୦ ଲକ୍ଷ ମାଢ଼ । ଗାଏ ଦୁଇ ପଦରୁ ଜିତ ସୁନା ୩୫ ଲକ୍ଷ ମାଢ଼ ଆଏ ହୋଇଲାକୁ ଦେବତା ବ୍ରାହ୍ମଣମାନଙ୍କୁ ନାନା ନିଯୋଗକୁ, ବଳ ପୋଷିବାକୁ, ରାଜନୀତି ଭଣ୍ଡାର ସରିବାକୁ ନାନା ବଏକୁ ମଧ କରି ଭିଆଣ କରିଦେଲୁ । ଭୋ ମହାରାଜାମାନେ, ତୁମ୍ଭେମାନେ ଏହା ଅନ୍ୟଥା ନକରିବ । ହରିଲାର ପାପଶ୍ରୁତି ସ୍ମୃତି ବଚନମାନରେ ଶୁଣୁଥିବ । ଏଥକୁ ତୁମ୍ଭେମାନେ ଯେବେ ବଳିଆର ପଣ କରି ଲୋଭବଶରେ ହରିବ, ତେବେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣକୁ ଦ୍ରୋହ କଲାରୁ ଯେ ପାପ, ତାହା ହୋଇବ । ମୁଁ ଯାହା ଯେଉଁ ପ୍ରକାରେ ଭିଆଣ କରି ଦେଉଅଛି, ଦେବତା ବ୍ରାହ୍ମଣଙ୍କୁ ଭୋଗ କରାଇ ସେ ପ୍ରକାରେ ପରିପାଳନ କରୁଥିବ । ସାଆନ୍ତମାନଙ୍କୁ କଉଡ଼ି ଭାଗ ବରତନ, ମାହନ୍ତମାନଙ୍କୁ ଦଶମାସି ଟଙ୍କା ବରତନ, ବାଣୁଆ ପାଇକମାନଙ୍କୁ ଦଶମାସି ଭୂମିଭାଗ ଓ ହରି ବରତନ, ନିଯୋଗ ସେବକଙ୍କୁ ଆଉ ସମସ୍ତ ସେବକମାନଙ୍କୁ ମଧ କରି ଭୂମିରେ ଜିତ

---

(୧) କୌଣସି ଓଡ଼ିଆ ଅଧ୍ୟାପକ ଅନଙ୍ଗଭୀମଙ୍କ ଉତ୍କଳ ସାମ୍ରାଜ୍ୟର ଉତ୍ତର ସୀମା ଏହି କାଁଶବାଁଶ ନଦୀ ମେଦିନୀପୁରରେ ନୁହେଁ, ବାଲେଶ୍ୱର ଜିଲ୍ଲା ସୋରୋ ନିକଟରେ ପ୍ରବାହିତ ଏକ ନଦୀ କହି ଲେଖକର ଇଂରାଜୀ ଗ୍ରନ୍ଥରେ ତାହା ଏକ ବିରାଟ ତ୍ରୁଟି ବୋଲି ବାହାସ୍ଫୋଟନ ସହ ଚିତ୍କାର କରିଛନ୍ତି । ଉତ୍କଳର ଉତ୍ତର ସୀମା ବାଲେଶ୍ୱର ଜିଲ୍ଲାର ଅଧାରେ ଆସିଥିଲା, ଏ ମହାନ୍ ସତ୍ୟ ଏ ଓଡ଼ିଆ ଅଧ୍ୟାପକ କେଉଁଠୁ ପାଇଲେ ? ଅଧିକ କିଛି କହିବା ଅନାବଶ୍ୟକ । ପାଠକମାନଙ୍କୁ ଅନୁରୋଧ, ସେମାନେ ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ଭାଷାର ଇତିହାସ'ର ସପ୍ତମ ଓ ଷୋଡ଼ଶ ପୃଷ୍ଠା ଉପରେ ଆଖି ବୁଲାଇନେବେ । ପଣ୍ଡିତ ବିନାୟକ ମିଶ୍ରଙ୍କୁ ଓଡ଼ିଶାର ଇତିହାସ, ଭୂଗୋଳ ଜଣା ବା ନଥିବ, ଏହି ବରେଣ୍ୟ ଅଧ୍ୟାପକଙ୍କ ବିବେଚନାରେ । ଏହି ଲେଖକ କିନ୍ତୁ ପଣ୍ଡିତ ବିନାୟକ ମିଶ୍ରଙ୍କ ପରି ଅଜ୍ଞ ଲେଖକଙ୍କର ବହି ପଢ଼ି ଏହା କହିବାକୁ ଯାଇଛି ।

ସୂନା ବର୍ତ୍ତନ ଦେଇ ପରିବାର ପୋଷୁଥିବ । ରାଜ୍ୟ ଯେଉଁପ୍ରକାର ଭଇଁ ଭଳିରେ ମାଢ଼ ମୂଳ କରି ସୁନା ଭିଆଁଇଲା ଅଛି ସେହି ପ୍ରକାର ପୃଷ୍ଟିନଷ୍ଟି ଦେଖି କର ଘେନି ପରଜାଙ୍କୁ ପରିପାଳନ କରି ପୃଥିବୀ ଭୋଗକରି ସୁଖେ ସ୍ୱର୍ଗକୁ ଯିବ । ଭୋ ମହାରାଜାମାନେ, ଏସବୁକୁ ଧର୍ମ ହିଁ କାରଣ । ଭୂୟାଁ ପୁରାଣମାନଙ୍କୁ ଭୁଜରେ ଜୟକରି ରାଜ୍ୟ ଜିଣି ଆଣିଲା ବାହାରେ, ଯେ ଭଣ୍ଡାର ଧନମାନ ଅଣା ହୋଇଲା ସୁନା ୪୦ ଲକ୍ଷ ୮୮ ହଜାର ମାଢ଼ । ରତନମାନ ଅଣା ହୋଇଲା । ଏ ଆମ୍ଭର ଅରଜିତ ପଦାର୍ଥ । ଏଥୁ ଆମ୍ଭେ ଥୋକାଏ ପ୍ରମେଶ୍ୱରଙ୍କ ଆଡ଼ତିରେ ଲଗାଇବାକୁ ଏମନ୍ତ କଳ୍ପନା କରିଅଛୁ । ଯଯାତି ରାଜା ଯେଉଁ ପାଟଳ ତୋଳାଇ ପ୍ରମେଶ୍ୱରଙ୍କୁ ବିଜେ କରାଇଛନ୍ତି ସେ ପାଟଳ ତିନିଗୋଟି ଅତି ବଇତମ ହୋଇଲା । ଏହା ଭାଙ୍ଗି ୧୦୦ ହାତେ ଉଚେ ପ୍ରାସାଦ ଗୋଟିଏ ତୋଳାଇବା । (୧)

---

(୧) ଏ ଦେଶର ଅଧ୍ୟାପକଶ୍ରେଣୀର ଲୋକେ ଲେଖକର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ମାଦଳାପାଞ୍ଜିର 'ମାଦଳ' ଶବ୍ଦର ବ୍ୟୁତ୍ପତ୍ତି ନେଇ ବିତଣ୍ଡାମୂଳକ କୁତ୍ସା-ବର୍ଷଣରେ ମତ୍ତ ଥିଲାବେଳେ ବିଖ୍ୟାତ ପଣ୍ଡିତ ଡକ୍ଟର ସୁନୀତିକୁମାର ଚାଟର୍ଜି ଲେଖକର ସେହି ଏକ ପୁସ୍ତକରେ ମାଦଳାପାଞ୍ଜିର ଆଲୋଚନା ଓ ଉଦ୍ଧୃତ ଅନଙ୍ଗଭୀମଦେବଙ୍କ ବକ୍ତୃତା ପଢ଼ି, ଠିକ୍ ସେହି ସମୟରେ ନିଖିଳ ଭାରତ ବଙ୍ଗ ସାହିତ୍ୟ ସମ୍ମେଳନର ଚତ୍ୱାରିଂଶତ୍ ଅଧିବେଶନ (କଟକ)ର ସଭାପତି ଭାବରେ ସ୍ୱ-ଅଭିଭାଷଣରେ ନିମ୍ନଲିଖିତ ମନ୍ତବ୍ୟ ଦେଇଥିଲେ –

''ଛୋଟ ଛୋଟ ବିଷୟରେ ଭୁଲ୍‌ଭ୍ରାନ୍ତି, ଦୋଷତ୍ରୁଟି ରହିଥିଲେ ମଧ୍ୟ ମାଦଳାପାଞ୍ଜିରେ ଯେ ଅନ୍ତତଃ ମଧ୍ୟଯୁଗୀୟ ଓଡ଼ିଆ ଗଦ୍ୟର ମୂଲ୍ୟବାନ୍ ନିଦର୍ଶନ ରକ୍ଷିତ ଅଛି, ତାହା ସ୍ୱୀକାର କରିବାକୁ ହେବ । × × × କେଶରୀବଂଶୀୟ ରାଜା ଯଯାତି ଦେବଙ୍କଦ୍ୱାରା ତିଆରି ପ୍ରାଚୀନ ମନ୍ଦିର ବିଧ୍ୱସ୍ତ ହୋଇଯିବା ଫଳରେ ତାହା ସ୍ଥାନରେ ଜଗନ୍ନାଥ ମନ୍ଦିରକୁ ଶତହସ୍ତ ଉଚ୍ଚକରି ଗଢ଼ିବାକୁ ରାଜା ଇଚ୍ଛାପ୍ରକାଶ କଲେ । ଯେଉଁ ଭାବରେ ରାଜା ଏହି ନୂତନ ଦେଉଳ ତୋଳିବାରେ ପ୍ରସ୍ତାବ କରନ୍ତି, ସେ ତାହାର ନିର୍ମାଣ ଓ ପରିଚାଳନା ପାଇଁ ଅର୍ଥର ବ୍ୟବସ୍ଥା କରିବାକୁ ଚାହିଁଥିଲେ, ସେ ବିଷୟ ସେ ତାଙ୍କର ସାମନ୍ତ ରାଜା ଓ ଅନ୍ୟାନ୍ୟ ମୁଖ୍ୟ ପ୍ରଜାମାନଙ୍କୁ ଡକାଇ ସଭା କରି ସେମାନଙ୍କ ଆଗରେ ନିଜ ପ୍ରସ୍ତାବ ଆଗତ କରିଥିଲେ ଏବଂ ଏହି ପୁଣ୍ୟ କର୍ମରେ ସେମାନଙ୍କର ସହଯୋଗିତା ଓ ପରାମର୍ଶ ମାଗିଥିଲେ । ସେହି କଥା ମାଦଳାପାଞ୍ଜିରେ ଉଦ୍ଧୃତ ବକ୍ତୃତାରୂପେ ପ୍ରଦତ୍ତ ହୋଇଅଛି । ମନ୍ଦିରର ପ୍ରତିଷ୍ଠାତା ଓଡ଼ିଶା ବିଜୟୀ ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କର ଶ୍ରୀମୁଖବାଣୀ ଅନେକ ପରିମାଣରେ ଯଥାଯଥ ଭାବରେ ରକ୍ଷିତ ହୋଇଛି ବୋଲି ମନେହୁଏ । (ଡକ୍ଟର ଚାଟର୍ଜି ମନେକରନ୍ତି ଯେ ଚୋଡ଼ଗଙ୍ଗଙ୍କ ବକ୍ତୃତା ଭୁଲ୍‌ରେ ଅନଙ୍ଗଭୀମଙ୍କ ନାଁରେ ପାଞ୍ଜିରେ ଉଠିଯାଇଛି; ଯାହା ଏହି ଲେଖକ ବିଶ୍ୱାସ କରୁନି ।) ଏହି ବକ୍ତୃତାକୁ ଏକ ଅମୂଲ୍ୟ ଐତିହାସିକ ଓ ବ୍ୟକ୍ତିଗତ ପ୍ରମାଣପତ୍ର ବୋଲି ଗ୍ରହଣ କରିବାରେ ବାଧା ନାହିଁ । ଏଠାରେ ରାଜମୁଖନିଃସୃତ ଏକାଦଶ-ଦ୍ୱାଦଶ ଶତକରେ ଓଡ଼ିଆଭାଷାର ପ୍ରାଞ୍ଜଳତା, ପ୍ରସାଦଗୁଣ ଓ ପ୍ରକାଶଶକ୍ତି ଦେଖି ସାଧୁବାଦ କରିବାକୁ ହେବ । ଯେଉଁ ଓଡ଼ିଆ ଜାତି ଭାରତ ତଥା ବିଶ୍ୱର ଦେବାୟତନ ଶିଳ୍ପର ଅନ୍ୟତମ ଗୌରବ, କେଶରୀ ଓ ଗଙ୍ଗ-ବଂଶୀୟ ରାଜାମାନଙ୍କର କୃତି ଦେବମନ୍ଦିର-ଗଠନରେ ଆତ୍ମନିଯୋଜିତ ହୋଇଥିଲା, ବାସ୍ତୁବିଦ୍ୟା ଓ ଭାସ୍କର୍ଯ୍ୟରେ ଯେ ଜାତି ଉନ୍ନତିର ପରାକାଷ୍ଠା ପ୍ରଦର୍ଶନ କରିଥିଲା, ଏ ଭାଷା ସେହିମାନଙ୍କର ଉପଯୁକ୍ତ । ମାଦଳାପାଞ୍ଜିର ଏହି ରାଜୋକ୍ତି ଭାରତୀୟ ସାହିତ୍ୟର ଏକ ବିଶେଷ ଲକ୍ଷଣୀୟ କୃତି ।''

**ଆଧୁନିକ ଓଡ଼ିଆରେ ପ୍ରାଥମିକ କବିତା –**

ଓଡ଼ିଆ ଭାଷାରେ କବିତା ଯେଉଁ କେତୋଟି ନିଜସ୍ୱ ଆକାର ଓ ପ୍ରକାର ଗ୍ରହଣ କରିଛି, ସେସବୁ ମଧ୍ୟ ଏହି କାଳରେ ଆରମ୍ଭ ହୋଇଯାଇଥିବାର ଅନୁମାନ କରାଯାଉଛି । ସେସବୁ ଏହି : (୧) ଚତୁର୍ଦ୍ଦଶାକ୍ଷର ପଦ୍ୟ ଓ ତାହାର ଦାଣ୍ଡୀ-ଶାଖା, (୨) କୋଇଲି, (୩) ଚଉତିଶା – ଏ ପ୍ରତ୍ୟେକଟି କିଞ୍ଚିତ୍ ଆଲୋଚନା ଦରକାର କରନ୍ତି ।

**(୧) ଚତୁର୍ଦ୍ଦଶାକ୍ଷର ପଦ୍ୟ** – ଆଶାବରୀ, କଳସା ବା କେବଳ 'ଚଉଦ-ଅକ୍ଷରୀ' ବୋଲି ନାମିତ ଏହି ସରଳ ପଦ୍ୟରୀତିଟିକୁ ମହା ଗୌରବ ଦେଇଯାଇଛନ୍ତି ପ୍ରଥମେ ସାରଳା ଦାସ ତାଙ୍କ ମହାଭାରତରେ ଓ ଏକ ଶତାବ୍ଦୀ ପରେ ବଳରାମ ଦାସ ତାଙ୍କ ରାମାୟଣରେ, ଓଡ଼ିଆ ସାହିତ୍ୟରେ ବର୍ଣ୍ଣନାର ଫଳବାନ୍ ଓ ଶକ୍ତିମାନ୍ ମାଧ୍ୟମରୂପେ । ଉଭୟ ଜନକବି ଏହି ସରଳ, ନିରହଙ୍କାର ଛନ୍ଦଟିକୁ ଯଥେଚ୍ଛା ବ୍ୟବହାର କରିବାରେ କୌଣସିଠାରେ କୁଣ୍ଠିତ ହୋଇନାହାନ୍ତି । ସେତେବେଳେ ଜନତା ଥିଲା ପ୍ରାୟଶଃ ନିରକ୍ଷର । ତେଣୁ ଏହି ପ୍ରକୃତ ଗଣ-କବିମାନେ ଧରିନେଇଥିଲେ ଯେ ତାଙ୍କ ଗ୍ରନ୍ଥକୁ ଜଣେ ବଡ଼ପାଟିରେ ପଢ଼ିବ ଓ ଗାଆଁଟିଯାକର ନିରକ୍ଷର ଲୋକେ ତାହା ଶୁଣିବେ । ଆଧୁନିକ ଲେଖକମାନଙ୍କ ପରି 'କଳ୍ପିତ ପାଠକ'ମାନଙ୍କ ଉପରେ ଆଖି ନରଖି, ସେମାନେ ଆଖି ରଖୁଥିଲେ 'ଗାୟକ' ବା 'ଆବୃତ୍ତିକାରୀ'ମାନଙ୍କ ଉପରେ । ଜଣେ କୁଶଳୀ ଆବୃତ୍ତିକାରୀ ଅଙ୍କ ଅକ୍ଷରକୁ କମେଇ ନେଇପାରେ । ତାର କେବଳ ଲକ୍ଷ୍ୟ, ବର୍ଣ୍ଣିତ ବିଷୟଟିକୁ ଶ୍ରୋତୃବର୍ଗଙ୍କ ନିକଟରେ ଫଳବାନ୍ ଓ କ୍ରିୟାବାନ୍ ଭାବରେ ଉପସ୍ଥାପିତ କରିବା । ଭାବ ଯଦି ଦର୍କାର କରୁଛି, ତେବେ ଚଉଦ ଅକ୍ଷର କୋଡ଼ିଏ ଅକ୍ଷର ହେଲେ କ୍ଷତି ନାହିଁ – ଯଦି ତଦ୍ୱାରା ଭାବ-ପରିବେଷଣଟି ଶ୍ରୋତାମାନଙ୍କ ନିକଟରେ ଅଧିକ ଚିତ୍ତାକର୍ଷକ ହୋଇଉଠେ । ଗ୍ରାମାଞ୍ଚଳରେ ଗୋସେଇଁମାନ ସାରଳା ମହାଭାରତ ପାଠ କଲାବେଳେ ଏହି ଛନ୍ଦାତିରିକ୍ତ ବର୍ଣ୍ଣଗୁଡ଼ିକହିଁ ପ୍ରକୃତରେ ଅଧିକ ମାଦକତା ସୃଷ୍ଟି କରିଥାନ୍ତି । ଏବର ଅସମାକ୍ଷର ବା ମୁକ୍ତଛନ୍ଦକ କବିତା ଓଡ଼ିଆ ଭାଷାରେ ତେଣୁ ଆଦୌ ନୂତନ ମାଲ ନୁହେଁ । ସାରଳାଙ୍କ ମହାଭାରତରେ ପ୍ରଥମ ପାଦ ୧୪ ଅକ୍ଷରବିଶିଷ୍ଟ ହେଲେ, ଦ୍ୱିତୀୟ ପାଦ ୩୪ ଅକ୍ଷରବିଶିଷ୍ଟ ଥିବାର ମଧ୍ୟ ଦେଖାଯାଇଛି । ଚତୁର୍ଦ୍ଦଶ-ଅକ୍ଷରର ଢିଲା ପୋଷାକ ଭିତରେ ସ୍ୱଚ୍ଛନ୍ଦ-ଗତିକ୍ଷମ, ସାରଳା-ବଳରାମଙ୍କ ମହାକାବ୍ୟାବଳିର ଏହି ପ୍ରିୟ ଛନ୍ଦ ଓଡ଼ିଶାରେ ସାଧାରଣତଃ 'ଦାଣ୍ଡୀବୃତ୍ତ' ନାମରେହିଁ ପରିଚିତ । ଏହି ନାମର ଯଥାର୍ଥ ତାତ୍ପର୍ଯ୍ୟ ନିଃସନ୍ଦେହ ଭାବରେ ସ୍ଥିରୀକୃତ ହୋଇନାହିଁ । ତେବେ, ଦୁଇସାଲ୍ଲା ଘରମାନଙ୍କ ମଧ୍ୟରେ ଥିବା ସିଧା ଫାଙ୍କା ଜାଗାକୁ ଓଡ଼ିଆରେ ଦାଣ୍ଡ କୁହାଯାଏ । ଦାଣ୍ଡ ସାଧାରଣତଃ ଲମ୍ବା । ଦାଣ୍ଡୀବୃତ୍ତର ତାତ୍ପର୍ଯ୍ୟ ଖୁବ୍ ସମ୍ଭବତଃ ଏହି ଦାଣ୍ଡ-ରୂପକରୁ ଆସିଛି । ଯେଉଁଠି ମନୁଷ୍ୟ ସ୍ୱଚ୍ଛନ୍ଦ ବିହାର କରିପାରେ (ଯେପରି ସେ କରିପାରେ ନାହିଁ ଗୃହର ଚାରି କାନ୍ଥ ଭିତରେ) ଏହିପରି ମୁକ୍ତ ଛନ୍ଦ ବ୍ୟବହାର କରିଥିବାରୁ ବଳରାମଙ୍କ ରାମାୟଣର ଅନ୍ୟ ନାମହିଁ 'ଦାଣ୍ଡୀ-ରାମାୟଣ' । କୁଶଳୀ ଓଡ଼ିଆ ପାଠକ ଓ ସାଧାରଣ ଶ୍ରୋତାଙ୍କ ନିକଟରେ ଦାଣ୍ଡୀ-ରୀତିର ବର୍ଣ୍ଣ-ବୈଷମ୍ୟ ଆଦୌ ଧରାହିଁ ପଡ଼େନା । ଅଧିକନ୍ତୁ ଏହା ଆବୃତ୍ତିର ଚମତ୍କାରିତାରେ ସାହାଯ୍ୟ କରିଥାଏ ।

(ନୋଟ୍ – ଏଇ ସମ୍ପର୍କରେ କୌଣସି ପଣ୍ଡିତମ୍ମନ୍ୟ ଓଡ଼ିଆ ଅଧ୍ୟାପକ ଯେଉଁ ଅଜ୍ଞ ସମାଲୋଚନା ପ୍ରଚାର କରିଛନ୍ତି, ତାହାର ଉତ୍ତର-ସ୍ୱରୂପ ଏଇ ଅଧ୍ୟାୟର ପରିଶିଷ୍ଟ ରୂପେ ଦାଣ୍ଡୀବୃତ୍ତ ଉପରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଲେଖକର ଟିପ୍ପଣୀ ଦିଆଗଲା ।)

(୨) **କୋଇଲି** – ସଂସ୍କୃତଭାଷାରେ ଦୂତ-କବିତା ପରି ଓଡ଼ିଆଭାଷାରେ ଗୁଡ଼ିଏ କୋଇଲି-କବିତା ବିଖ୍ୟାତ ଓ ଜନପ୍ରିୟ । ସାଧାରଣ ବିଚାର ଏହି ଯେ ସେଗୁଡ଼ିକ କୋଇଲି ବା ଭାରତୀୟ ସାହିତ୍ୟର ପ୍ରିୟତମ ପକ୍ଷୀ କୋକିଳକୁ ସଂବୋଧିତ ହୋଇଥିବାରୁ ସେସବୁର ଏପରି ନାମ । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ବଳିଷ୍ଠ ଯୁକ୍ତିରେ ପ୍ରତିପାଦିତ କରିଛନ୍ତି ଯେ, ଏଗୁଡ଼ିକ ପ୍ରକୃତରେ ପ୍ରାକୃତ 'ଓବୀ' ଓ 'ଲୋ' 'ଲି' ଗୀତର ଅନୁକରଣ ମାତ୍ର । ପ୍ରକୃତରେ ଏହି ଶ୍ରେଣୀୟ କବିତାରେ (ଚାରି ବା ଦୁଇ ପଦର) ଶେଷରେ 'ଲୋ' 'ଲି' ନାମକ ଏକ ସାଙ୍ଗୀତିକ ଧ୍ୱନି କରାଯାଇଥାଏ । ସେ ଯାହାହେଉ, ଓଡ଼ିଆରେ 'କୋଇଲି' ଏକ ସାର୍ବଜନୀନ ଲୋକ-ଗୀତି-ପ୍ରକାର । ନୂତନ ଯୁଗରେ ନୂତନ ଭାବାଦି ଜନତା ଭିତରେ ପ୍ରଚାର କରିବାପାଇଁ 'ଉତ୍କଳ କୋଇଲି' ଓ 'ଗାନ୍ଧି କୋଇଲି' ପ୍ରଭୃତି ମଧ୍ୟ ରଚିତ ହୋଇ ଓଡ଼ିଆ ସାହିତ୍ୟରେ ଏହି ରୀତିର ଜନପ୍ରିୟତା ସୂଚିତ କରୁଛି ।

(୩) **ଚଉତିଶା** – ଏହା ସାଧାରଣତଃ ଏକ ଗାଥା; ଯାହାର ଶ୍ଳୋକଗୁଡ଼ିକ ବର୍ଣ୍ଣମାଳାର ବର୍ଣ୍ଣାନୁକ୍ରମରେ ସଜ୍ଜିତ ଥାଏ; ଅର୍ଥାତ୍ ସାଧାରଣତଃ 'କ'ରେ ଆରମ୍ଭ ହୋଇ 'କ୍ଷ'ରେ ଶେଷ ହୁଏ । ଏହିପରି ଚଉତିରିଶଟି ବର୍ଣ୍ଣକୁ ଆଶ୍ରୟ କରି ରଚିତ ବୋଲି ଏହି ପଦ୍ୟ-ପ୍ରକାରର ନାମ ଚଉତ୍ରିଶା ବା ଚଉତିଶା । ଓଡ଼ିଆରେ ବହୁ ଚଉତିଶା ଦେଖିବାକୁ ମିଳେ । ପ୍ରାଚୀ ସମିତି ଶତ ଶତ ଚଉତିଶା ସଂଗ୍ରହ କରି [୧] ବହୁ ଖଣ୍ଡରେ ପ୍ରକାଶ କରିଛନ୍ତି । ବହୁ ଚଉତିଶା ହୁଏତ ଅପ୍ରକାଶିତ ରହିଛି ଏପର୍ଯ୍ୟନ୍ତ । କିନ୍ତୁ ମୋଟରେ ଏସବୁର ସାଧାରଣ ଉପଜୀବ୍ୟ ହେଉଛି କବିଚିତ୍ତର ପ୍ରଣୟିନୀ ପ୍ରତି ଭାବୋଚ୍ଛ୍ୱାସ, ଋତୁ-ପର୍ଯ୍ୟାୟ ବର୍ଣ୍ଣନା କିମ୍ବା ଇହସଂସାରର ଅନିତ୍ୟତା ନେଇ ଚିନ୍ତା । ୟୁରୋପୀୟ 'ସନେଟ୍'ର ସୀମାବଦ୍ଧତା କବିମାନଙ୍କର ଅନାବଶ୍ୟକ ଅନର୍ଗଳତାରେ ରଶ୍ମି ଦେଇ ଯେପରି ସଂଯମ-ଜନିତ ଏକ ଅନନ୍ୟ ସୁଷମା ସୃଷ୍ଟି କରିପାରିଥିଲା, ଚଉତିଶାର ବର୍ଣ୍ଣାନୁକ୍ରମିକ ବିନ୍ୟାସ ସେହି ପ୍ରକାର ଫଳ ଦେବା ସାଥେ ସାଥେ, ଶ୍ରୋତା ଓ ପାଠକମାନଙ୍କ ସ୍ମରଣ ଅଭ୍ୟାସ ପ୍ରତି ଅନୁକୂଳତା ଆଣିଦେଇଥିଲା । ସହଜ ସ୍ମରଣୀୟତା, ସଂଗୀତମୟତା ଓ ପ୍ରେମଧର୍ମିତା – ଏହି ତିନିଗୁଣ ଘେନି ଚଉତିଶା ଗୁଡ଼ିକ ଓଡ଼ିଶାରେ ଅତ୍ୟନ୍ତ ଜନପ୍ରିୟ । ପରବର୍ତ୍ତୀ

---

(୧) ମୂଳ ଗ୍ରନ୍ଥରେ ଚାରିଖଣ୍ଡ ଲେଖାଥିଲା । ନିନ୍ଦୁକ ଅଧ୍ୟାପକ ତାକୁଇ ଏକ ବିରାଟ ତ୍ରୁଟି ବୋଲି ଚିତ୍କାର ଛାଡ଼ିଛନ୍ତି । ପ୍ରାଚୀ ସମିତି ବା ଅନ୍ୟ ପ୍ରକାଶକ କିଏ କେତେ ଖଣ୍ଡ ଚଉତିଶା ଛାପିଛି, ତାର ହିସାବ ସାହିତ୍ୟର ଇତିହାସରେ ଖୋଜିପାରନ୍ତି କେବଳ ଏଇ ଶ୍ରେଣୀର ଅଧ୍ୟାପକ, ସମାଲୋଚକ ଓ ସାହିତ୍ୟିକ । ମୁଁ ଏପର୍ଯ୍ୟନ୍ତ ଜାଣିନି ପ୍ରାଚୀ ସମିତିର ଚଉତିଶା-ପର୍ଯ୍ୟାୟ କେତେ ଖଣ୍ଡ କିମ୍ବା ଜାଣିବା ଏକାନ୍ତ ଆବଶ୍ୟକ ମନେକରୁନି । ତା'ଦ୍ୱାରା ମୋର ଆଲୋଚନା ବାଧାପ୍ରାପ୍ତ ହୋଇନି ।

କାଳରେ ବୃହତ୍ତର କାବ୍ୟମାନଙ୍କର ଛାନ୍ଦସିକ ବେଶର ଆଦର୍ଶ ଯୋଗାଇଲା ବୋଧହୁଏ କେତେକ ପ୍ରସିଦ୍ଧ ଚଉତିଶା । ଦିନେ·ଅତ୍ୟନ୍ତ ଜନପ୍ରିୟ ଥିବା କେତେକ ଚଉତିଶା ଆଜି ବିଲୁପ୍ତ ହେଲେହେଁ, ସମସାମୟିକ ବା ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ସେମାନଙ୍କର ଉଲ୍ଲେଖ ସେମାନଙ୍କ ସ୍ମୃତିକୁ ବଞ୍ଚାଇରଖିଛି ।

**ସର୍ବାଦ୍ୟ କୋଇଲି ଓ ଚଉତିଶା –**

ଆଧୁନିକ ଓଡ଼ିଆରେ ଏପର୍ଯ୍ୟନ୍ତ ଯାହାକୁ ସର୍ବାଦ୍ୟ କବିତା ବୋଲି ଧରାଯାଏ, ସେଥିରେ ଆମେ ଓଡ଼ିଆ କାବ୍ୟର ଏହି ଯୁଗ୍ମ-ପ୍ରକାର, କୋଇଲି ଓ ଚଉତିଶା ଉଭୟହିଁ ଏକତ୍ର ଅବସ୍ଥାନ କରୁଥିବାର ଦେଖୁଁ । ତାହା ହେଉଛି ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' । ପ୍ରାଚୀନତମ ହେଲେହେଁ ଏହିଟି ଏପର୍ଯ୍ୟନ୍ତ ଓଡ଼ିଶାରେ ସବୁଠାରୁ ପ୍ରିୟତମ କୋଇଲି-ଗୀତ । ବସ୍ତୁତଃ 'କୋଇଲି' କହିଲେହିଁ ଲୋକେ କେଶବ କୋଇଲିକୁ ବୁଝନ୍ତି । ଏହାର ପ୍ରଥମ ପଙ୍‌କ୍ତି ହେଉଛି – 'କୋଇଲି, କେଶବ ଯେ ମଥୁରାକୁ ଗଲା ।' ଏହି କାରଣରୁ ଏହା ସାଧାରଣରେ 'କେଶବ କୋଇଲି' ନାମରେ ମଧ୍ୟ ପରିଚିତ ।

କେଶବ କୋଇଲିର ସ୍ରଷ୍ଟା ମାର୍କଣ୍ଡ ଦାସଙ୍କ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛି ହେଲେ ଜଣାଯାଇନାହିଁ । ଆହୁରି ବିସ୍ମୟର କଥା ଯେ, ଯେଉଁ କବି ଏଡ଼େ ମନୋହର କବିତାଟି ଲେଖିପାରିଲେ, ସେ ଯା'ଛଡ଼ା ଆଉ କିଛି ହେଲେ ଛାଡ଼ିଯାଇ ନାହାନ୍ତି କିପରି ? ପୁଣି ଏତେ କମ୍ ଦାନରେ ଅନ୍ୟ କୌଣସି ଓଡ଼ିଆ କବି ଏପରି ପ୍ରଶଂସ୍ୟ ଜନପ୍ରିୟତା ପାଇପାରିନାହାନ୍ତି, ଯେପରି ପାଇଛନ୍ତି କେଶବ-କୋଇଲିର କବି ମାର୍କଣ୍ଡ ଦାସ । କିନ୍ତୁ ଦାସଙ୍କ ଜନପ୍ରିୟତା ଆଦୌ ତାତ୍ପର୍ଯ୍ୟଶୂନ୍ୟ ବା ଅଭାଜନ ନୁହେଁ । ସେ ଯାହା ଛାଡ଼ିଯାଇଛନ୍ତି, କ୍ଷୁଦ୍ର ହେଲେହେଁ ତାହା ବ୍ରହ୍ମ-ଜାତି ହୀରକ ଛଡ଼ା ଆଉ କିଛି ନୁହେଁ ।

ବର୍ଣ୍ଣମାଳା ଆୟତ୍ତ କରିସାରିଲା ପରେ ଶତାବ୍ଦୀ ଧରି ଏହି କେଶବ-କୋଇଲିହିଁ ଓଡ଼ିଶାର ଚାଟଶାଳୀମାନଙ୍କରେ କିଶୋର ବିଦ୍ୟାର୍ଥୀମାନଙ୍କର ପ୍ରଥମ ପାଠ୍ୟପୁସ୍ତକ ଥିଲା । ସେକାଳରେ ପ୍ରତି ଅପରାହ୍ଣ ଚାଟମାନଙ୍କର କୋଇଲିଗାୟନରେ ମୁଖରିତ ହୋଇଉଠୁଥିଲା । ବାପ-ଦାଦିମାନେ ତାଙ୍କ ପିଲାର ପ୍ରଥମ କୋଇଲି-ଆବୃତ୍ତି ଶୁଣିବା ପାଇଁ ଚାଟଶାଳୀ ସମ୍ମୁଖରେ ଯାଉଁ ଯାଉଁ ଠିଆହୋଇଯାଉଥିଲେ ଓ ମା'-ଖୁଡ଼ୀମାନେ ଆଦରର ଶିଶୁ ପୁତ୍ର-କନ୍ୟାଙ୍କ ଲଳିତ କଣ୍ଠରେ କୋଇଲିର ଚିରଶ୍ରୁତିସୁଖାବହ ପଙ୍‌କ୍ତିଗୁଡ଼ିକ କିପରି ପରିସ୍ଫୁଟ ହେଉଛି ଜାଣିବାପାଇଁ ଦ୍ୱାର ଓ ବାତାୟନ ଦେଇ ଦାଣ୍ଡଆଡ଼ିକି ଝୁଙ୍କିପଡୁଥିଲେ ।

କେଶବ-କୋଇଲି ପ୍ରକୃତରେ ଏକ ମନୋହର କବିତା । କିଶୋର କୃଷ୍ଣ ମଥୁରାକୁ ଗଲେ । ଗଲାବେଳେ କହିଯାଇଥିଲେ ସେ ଶୀଘ୍ର ଗୋପକୁ ଫେରିଆସିବେ; କିନ୍ତୁ ସେଠାରେ ନିଜ ପିତାମାତାଙ୍କୁ ପାଇ ସେ ଆଉ ଗୋପ ଗ୍ରାମକୁ ଫେରିଲେ ନାହିଁ । ଏପର୍ଯ୍ୟନ୍ତ ନିଜ ପୁଅପରି ପରମ ସ୍ନେହରେ ବଢ଼େଇଆଣିଥିବା ଜନନୀ ଯଶୋଦା ଏହି ବିପର୍ଯ୍ୟୟ-ଜନିତ ଅନ୍ତର୍ବେଦନା କୋଇଲି ପକ୍ଷୀ ଆଗରେ ଏହି କବିତାରେ ଢାଳିଯାଉଛନ୍ତି । ଏକ ବୃଦ୍ଧା,

ଦୁଃଖିନୀ ଜନନୀର କରୁଣ ଅନୁଭବରାଜି ଏ ଗୀତିକାରେ ସ୍ୱାଭାବିକ, ସ୍ୱତଃସ୍ଫୂର୍ତ୍ତ ସାଧାରଣ ଓଡ଼ିଆ ଭାଷାରେ ସାବଲୀଳ ଭାବରେ ବର୍ଣ୍ଣିତ ହୋଇଯାଇଛି । ଦୁଃଖିନୀ ଯଶୋଦାଙ୍କ କରୁଣ ଶୋକଶ୍ଲୋକ ଭିତରେ ପୁଣି ଓଡ଼ିଆ ସମାଜର ନିଜସ୍ୱ ରୀତିନୀତି ବର୍ଣ୍ଣିତ ହୋଇଯାଇଛି; ଅଧିକନ୍ତୁ ସମଗ୍ର କବିତାଟି ହୋଇଉଠିଛି ମଧୁର ସଙ୍ଗୀତମୟ । ଏହିସବୁ କାରଣରୁହିଁ ବାଳକ-ବାଳିକାମାନଙ୍କର ନିଷ୍ପାପ ଲଳିତସ୍ୱରରେ ଏହାର ଆବୃତ୍ତି ଶୁଣିବା ପାଇଁ ଓଡ଼ିଶାର ସମାଜନାୟକମାନେ ଦିନେ ଏହି କବିତାଟିକୁ ଜାତିର ନୂତନ ବଂଶଧରମାନଙ୍କର ପ୍ରଥମ ପାଠ୍ୟ-ପୁସ୍ତକ କରି ଖଞ୍ଜିଥିଲେ । ଏହାର ବିଶିଷ୍ଟ ମନୋଜ୍ଞତା ଆସୁଛି ଏହାର ଓଡ଼ିଆ ଘରର ଭାଷା ଓ ଓଡ଼ିଆ ଘରର ସାଧାରଣ ପରିଚିତ ଚିତ୍ରରୁ । ଶୋକବିଧୁରା ବୃଦ୍ଧା ଜନନୀ ଯଶୋଦାଙ୍କର ଏହି ବାଣୀ କି କାରୁଣ୍ୟରସମୟ !

''କୋଇଲି, କେଶବ ଯେ ମଥୁରାକୁ ଗଲା,
କାହା ବୋଲେ ଗଲା-ପୁତ୍ର ବାହୁଡ଼ି ନଇଲା, ଲୋ କୋଇଲି ?
କୋଇଲି, ଖଣ୍ଡ-ଖିର ଦେବି ମୁଁ କାହାକୁ,
ଖାଇବାର ପୁତ୍ର ଗଲା ମଥୁରା-ପୁରକୁ, ଲୋ କୋଇଲି !
କୋଇଲି, ଘର ମୋର ନ ମଣନ୍ତି ନନ୍ଦ,
ଘଟଣ ନ ଦିଶେ ପୁର, ନଥିଲେ ଗୋବିନ୍ଦ, ଲୋ କୋଇଲି !''

କିନ୍ତୁ ପୁରୁଷ ପ୍ରତି ନାରୀର ଯେଉଁ ସହଜାତ ତାଚ୍ଛଲ୍ୟ ଓ ଧିକ୍କାର, ଯଶୋଦାଙ୍କ ଗଭୀର ଶୋକ ଭିତରେ କବି ତାହା ମଧ୍ୟ ଖଞ୍ଜିରଖିବାକୁ ଭୁଲିନାହାନ୍ତି ।

''କୋଇଲି, ନନ୍ଦ ହୃଦ ପାଷାଣେ ଗଢ଼ିଲା
ନୟନେ କଜଳ ଦେଇ ରଥେ ବସାଇଲା, ଲୋ କୋଇଲି !''

କିନ୍ତୁ ଜନନୀର ନ ବାହୁଡ଼ିବା ସନ୍ତାନ ପାଇଁ ସର୍ବମୟ ଶୋକ ଯଶୋଦାଙ୍କର ଅନ୍ୟ ସକଳ ଛୋଟ ଛୋଟ ଚିନ୍ତା-ଭାବନାରାଜିକୁ ବୁଡ଼ାଇଦେଇଛି । ସେହି ଘନୀଭୂତ ଶୋକ-ଯୋଗୁହିଁ ଯଶୋଦା ଆମ ଆଖିରେ ମହୀୟସୀ ଓ ଶୋକବିହ୍ୱଳା ଜନନୀର ପ୍ରତୀକ ହୋଇଉଠିଛନ୍ତି ।

''କୋଇଲି, ଥନ ଭାଙ୍ଗି କ୍ଷୀରପାନଦେଲି,
ଥବିର କାଳକୁ ପୁତ୍ର ଦେଖି ନ ପାରିଲି, ଲୋ କୋଇଲି !
କୋଇଲି, ଧନ୍ୟ ସେହି ଦଇବକୀ ନାରୀ,
ଧର୍ମ ଥିଲା, ପୁତ୍ର ଗୋଟି ହୋଇଲା ତାହାରି, ଲୋ କୋଇଲି !''

ପ୍ରାୟ ଦେଢ଼ଶତ ବର୍ଷ ପରେ ଆମେ ଦେଖୁଁ ଯେ ଓଡ଼ିଆ ଭାଗବତର ବରେଣ୍ୟ ସ୍ରଷ୍ଟା ଜଗନ୍ନାଥ ଦାସ କେଶବ କୋଇଲିର ଏକ ଆଧ୍ୟାତ୍ମିକ ବ୍ୟାଖ୍ୟା ଉପସ୍ଥାପିତ କରି 'ଅର୍ଥ କୋଇଲି' ନାମକ ଏକ ବହି ଲେଖିଛନ୍ତି । ସେ ଏକ ଉଦ୍ଭଟ ଚେଷ୍ଟା । କିନ୍ତୁ ମାର୍କଣ୍ଡଙ୍କ 'କେଶବ କୋଇଲି' ଯେ ସଙ୍ଗେ ସଙ୍ଗେ କି ଜନପ୍ରିୟତା ଲାଭ କରିଥିଲା, ତାହା ସୁପ୍ରମାଣିତ କରିଦେଉଛି ମାତ୍ର ।

**କଳସା ଚଉତିଶା –**

ଉପରେ ଯେପରି ସୂଚିତ ହୋଇଛି, କେଶବ କୋଇଲିରେ, କୋଇଲି ଓ ଚଉତିଶା, ଓଡ଼ିଆପଦ୍ୟର ଏହି ଦୁଇଟିଯାକ ପ୍ରକାର ମିଶିଯାଇଛି । ଖାଣ୍ଟି ଚଉତିଶା, ଯାହାକୁ ଓଡ଼ିଆରେ ପ୍ରାଚୀନତମ ବୋଲି ଧରାଯାଉଛି, ତାହା ହେଉଛି ବଚ୍ଛାଦାସଙ୍କ କଳସା ଚଉତିଶା ।

ମାଦଳାପାଞ୍ଜି ପରି, ବଚ୍ଛାଦାସଙ୍କ ଏହି କଳସା ଚଉତିଶା ଏପର୍ଯ୍ୟନ୍ତ ଏକ ବିବଦମାନ ପୁସ୍ତକ । ଏହାର ପ୍ରାଚୀନତାର ଏକମାତ୍ର ପ୍ରମାଣରୂପେ କୁହାଯାଉଛି ଯେ, ଏକଶତାବ୍ଦୀ ପରେ ଲେଖାହୋଇଥିବା ସାରଳାଙ୍କ ମହାଭାରତରେ ଏହାର ଉଲ୍ଲେଖ ଅଛି । କିନ୍ତୁ ସରଳାଦାସ କି ଅର୍ଥରେ 'କଳସା' ଶବ୍ଦ ବ୍ୟବହାର କରିଛନ୍ତି, ତାହା ମଧ ବିବାଦ୍ୟ । ପୁଣି ଏହି ଚଉତିଶାର 'କଳମଶା ଚଉତିଶା' ନାମ ହେବାର କୌଣସି ଆଭ୍ୟନ୍ତରୀଣ ହେତୁ ଦେଖାଯାଉନାହିଁ । ଏଥିରେ ଥିବା ଯାବନିକ ଶବ୍ଦ 'ଫର୍ମାନ୍' (ରାଜାଦେଶ) ଏହାର ପ୍ରାଚୀନତାକୁ ମଧ ଧୂଳିସାତ୍ କରୁଛି; କାରଣ ସେତେବେଳକୁ ଓଡ଼ିଶାରେ ମୁସଲମାନ ରାଜତ୍ୱ ଆରମ୍ଭ ଆହୁରି ଦୁଇଶ' ବର୍ଷ ବାକି ।

କିନ୍ତୁ ଏ ସନ-ତାରିଖର ବିବାଦ ପଣ୍ଡିତମାନେ କରନ୍ତୁ । ଏ ଗ୍ରନ୍ଥ କେବଳ ସାହିତ୍ୟର ଗଳ୍ପଟି କହିଯିବ, ଯେଉଁଠି ସାଲ-ରାଜତ୍ୱର ଗୁରୁତ୍ୱ ବା ପ୍ରାଧାନ୍ୟ ନଥାଏ । 'କଳସା ଚଉତିଶା' ମଧ ଏହି ଅଧ୍ୟାୟରେ ବର୍ଣ୍ଣିତ ରୁଦ୍ରସୁଧାନିଧି ଓ ସୋମନାଥ ବ୍ରତକଥାଦି ପରି ଶୈବ କାବ୍ୟ । ତେବେ ଲେଖକ କୌଶଳରେ ଓଡ଼ିଆ ଭାଷାରେ ଏହି ଶିବଚରିତ ନେଇ ପ୍ରଥମ କରି ହାସ୍ୟରସ ପରିବେଷଣ କରିବାକୁ ଯାଇଛନ୍ତି । ଏହାର ବର୍ଣ୍ଣନୀୟ ବିଷୟ ହେଉଛି ବୁଢ଼ା ଶିବଙ୍କର ହିମବନ୍ତନନ୍ଦିନୀ ସୁନ୍ଦରୀ ଉମାଙ୍କ ସହିତ ବିବାହ । ଯେତେବେଳେ ଏକ ହଡ଼ା ଷଣ୍ଢ ଉପରେ ବସି ବୁଢ଼ା ଶିବ ଧଇଁ ଗୀଣରେ ନଇଁ ନଇଁ ଓ ଭିକ୍ଷାପାତ୍ର ହାତରେ ଉମାଙ୍କୁ ନେବାକୁ ହିମବନ୍ତ-ରାଜଦ୍ୱାରରେ ସମାଗତ, ହିମବନ୍ତମହିଷୀ ତାଙ୍କର ଆଦରିଣୀ କନ୍ୟାକୁ ଏପରି ଗୋଟାଏ ଲକ୍ଷ୍ମୀଛଡ଼ା ବୁଢ଼ା ହାତରେ ସମର୍ପିଦେବାକୁ ନାରାଜ ହେଲେ । ଏପରିକି ବାପାଙ୍କର ଏପ୍ରକାର ବର ନିର୍ବାଚନରେ କୁମାରୀ ଉମା ବି ବିଦ୍ରୋହ କରିଉଠିଲେ; କିନ୍ତୁ ରାଜା ହିମବନ୍ତ କନ୍ୟା ଓ ପତ୍ନୀ ଉଭୟଙ୍କୁ ଧୈର୍ଯ୍ୟ ଧରିବାକୁ ବାରମ୍ବାର ଉପଦେଶ ଦେଲେ । ଦେବାଧିଦେବ ମହାଦେବ ନିଜର ସ୍ୱରୂପ ଦେଖାଇଲେ ଓ ଶେଷରେ ସୁଖରେ ବିବାହକର୍ମ ସମ୍ପନ୍ନ ହେଲା ।

କଳସା ଚଉତିଶାର ଭାଷାରେ ପ୍ରାକ୍ତନତା ଅବଶ୍ୟ ଲକ୍ଷଣୀୟ; କିନ୍ତୁ କାବ୍ୟଭାବରେ ଏ ଗ୍ରନ୍ଥର ଗୌରବ ସ୍ୱଳ୍ପ । ଆମ ପୁରାଣ-ସାହିତ୍ୟରେ ଉମା (ପାର୍ବତୀ) ଏକ ପରମ ମନୋହର ଓ ପରମ ମହିମାମୟ ସୃଷ୍ଟି । ଶିବଙ୍କୁ ପାଇବା ପାଇଁ ଉମାଙ୍କର ସେ ତପୋମୟ ପବିତ୍ର ସାଧନାର ତୁଳନା କାହିଁ ? ସେହି ଉମା ଏଠାରେ ବୁଢ଼ା ଶିବଙ୍କୁ ବିବାହ କରିବାକୁ ନାରାଜ ! ହୁଏତ ବଚ୍ଛାଦାସଙ୍କର ଆମର ଗରୀୟାନ୍ ପୁରାଣ-ସାହିତ୍ୟରେ ଗଭୀର ପ୍ରବେଶ ନଥିଲା ବା ଉମା-ଚରିତ୍ରର ସୂକ୍ଷ୍ମ କୋମଳ ସୁଷମା ପ୍ରତି ସମ୍ମାନ-ବୋଧ ଥିଲା ତାଙ୍କ ଶକ୍ତିର

ବାହାରେ । ଲେଖକ ଯେଉଁ ଉପହାସ ରସିକତାରେ କାବ୍ୟ ଆରମ୍ଭ କରିଥିଲେ, ତାକୁ ହଠାତ୍ ବନ୍ଦକରିଦେଇ ଏପରି ମିଳନାନ୍ତକ କରିଦେଲେ ବା କାହିଁକି ?

ଲେଖକ ବଚ୍ଛାଦାସଙ୍କ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛିହିଁ ଜଣାଯାଇନାହିଁ ।

ଏହି ପୁସ୍ତକର ଅଷ୍ଟମ ଅଧ୍ୟାୟରେ ଓଡ଼ିଆ ସାହିତ୍ୟର କୋଇଲି ଓ ଚଉତିଶା-କାବ୍ୟର ସାମଗ୍ରିକ ଭାବରେ ବିଚାର ହେବ; କାରଣ ସେତେବେଳକୁହିଁ ଆମେ ଏସବୁ ସମୃଦ୍ଧ ଅବସ୍ଥା ପାଇସାରିଥିବାର ଦେଖିପାରିବା । ବର୍ତ୍ତମାନ ଆରମ୍ଭ ମାତ୍ର ।

କିନ୍ତୁ ଆରମ୍ଭ ମାତ୍ର ହେଲେହେଁ, ଏହି ଛୋଟ କୋଇଲି, ଚଉତିଶା, ବ୍ରତକଥା ଇତ୍ୟାଦି ଗୋଟିଏ ଜାତୀୟ ସାହିତ୍ୟର ଆରମ୍ଭର ସମୁଚିତ ସୂଚନା ବୋଲି ଧରିବାକୁ ହେବ । ସେମାନଙ୍କର କ୍ଷୁଦ୍ରତାହିଁ ବିଶେଷ ବ୍ୟଞ୍ଜନାପୂର୍ଣ୍ଣ । ବିବାହ, ଶୋକବିଧୂରା ଜନନୀର ବ୍ୟଥା, ଦେବ-ଦେବୀ-ଅନୁଗ୍ରହ – ଏଇ ତ ସବୁ ଦେଶର ଜନତାର ସାଧାରଣତମ ପ୍ରଥମ ସମସ୍ୟା । ଓଡ଼ିଆ ସାହିତ୍ୟରେ ଏହି ଭାବଗୁଡ଼ିକର, ଗଦ୍ୟ ଓ ପଦ୍ୟରେ ଆଦ୍ୟପ୍ରକାଶ, ଏ ସାହିତ୍ୟରେ ଯଥାର୍ଥ ଜାତୀୟ ବିକାଶହିଁ ପ୍ରମାଣ କରେ । ମନୁଷ୍ୟର ଏହି ଛୋଟ ଛୋଟ ଦୁଃଖ-ସୁଖ ପ୍ରକାଶ କରିପାରି ଓଡ଼ିଆ ସାହିତ୍ୟର ଆଦ୍ୟତମ ଛୋଟ ସିଦ୍ଧିଗୁଡ଼ିକ ବୃହତ୍ ଜାତୀୟ ସୃଷ୍ଟି ପାଇଁ ବାଟ ଖୋଲିଦେଲେ । ରାଜାନୁଗ୍ରହ ନ ପାଇ ଓ ଉଚ୍ଚବର୍ଣ୍ଣମାନଙ୍କର ଅନପେକ୍ଷା ଓ ତାଚ୍ଛଲ୍ୟ ସତ୍ତ୍ୱେ ଏଗୁଡ଼ିକ ଓଡ଼ିଆ ଜନତାର ଆଦରଣୀୟ ହୋଇଉଠିଛନ୍ତି; କାରଣ ସେମାନଙ୍କ ଭିତରେ ଓଡ଼ିଆ ସମାଜହିଁ ପ୍ରତିବିମ୍ବିତ । କ୍ଷୁଦ୍ର ଓ କୌଣସି ପ୍ରକାର ଆସ୍ଫାଳନ-ଶୂନ୍ୟ ହେଲେହେଁ, ସମଗ୍ର ଭାବରେ ଏହିଗୁଡ଼ିକୁ ପରେ ଘଟିଥିବା ଏକ ବିରାଟ କାବ୍ୟ-ସୃଷ୍ଟିର ଅଯୋଗ୍ୟ ପଶ୍ଚାତ୍‌ପଟ ବୋଲି କହିହେଉନି । ଏହି ପଶ୍ଚାତ୍‌ପଟ ଯୋଗୁଁ ଯା' ପରେ ଆମେ ଓଡ଼ିଆ ସାହିତ୍ୟ-ରଙ୍ଗମଞ୍ଚରେ ଯେତେବେଳେ ଏକ ବିରାଟ ପ୍ରତିଭାର ଆଗମନ ଓ ବିହାର ଦେଖିବା, ସେତେବେଳେ ତାହା ଆଦୌ ଅସଙ୍ଗତ ବୋଧହେବନାହିଁ । ସେହି ପ୍ରତିଭାର ନାମ ସାରଳା ଦାସ; ଯିଏ ଏହି ଗ୍ରନ୍ଥର ପରବର୍ତ୍ତୀ ଅଧ୍ୟାୟର ଆଲୋଚ୍ୟ ବିଷୟ ।

## ଷଷ୍ଠ ଅଧ୍ୟାୟର ପରିଶିଷ୍ଟ : ଦାଣ୍ଡୀବୃତ୍ତ

ଦାଣ୍ଡୀବୃତ୍ତର ମୂଳ ଏପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇନଥିଲେହେଁ, ସେହି ବୃତ୍ତରେ ଲିଖିତ 'ସାରଳା ମହାଭାରତ' ଓ 'ଦାଣ୍ଡୀ ରାମାୟଣ'ପାଠରୁ ଜଣାଯାଏ ଯେ, ଏହାର ଚରଣମାନଙ୍କର ଅକ୍ଷରସଂଖ୍ୟା ସର୍ବତ୍ର ସମାନ ନୁହେଁ । ସେଗୁଡ଼ିକ ସାଧାରଣତଃ ୧୨, ୧୩, ୧୪, ପୁଣି କ୍ୱଚିତ୍ ତତୋଽଧିକ । ଆବୃତ୍ତି କାଳରେ ଗାୟକ ପାଦାଂତାନୁପ୍ରାସକୁ ଲକ୍ଷ୍ୟ ରଖି ବହ୍ୱକ୍ଷର ଓ ଅଳ୍ପାକ୍ଷର ଚରଣର ଆବୃତ୍ତିରେ ତାଳଗତ ସମତା ଆଣିବାକୁ ଦ୍ରୁତ ବିଳମ୍ବିତ ଲୟ ଅବଲମ୍ବନ କରିଥାନ୍ତି । ଏହା ମଧ୍ୟ ଅନୁଭୂତ ହୁଏ ଯେ, କେବଳ ଚଉଦଅକ୍ଷର-ବିଶିଷ୍ଟ ଚରଣର ଗାନହିଁ ସାବଲୀଳ । ତାହା ମଧ-ଲୟରେ ଗୀତ ହୁଏ ଓ ଶ୍ରୋତାକୁ ମଧ୍ୟ ଆନନ୍ଦ ଦିଏ । ତହିଁରୁ ଅଳ୍ପାକ୍ଷର ଚରଣର ଆବୃତ୍ତିବେଳେ ଗାୟକଙ୍କୁ କୌଣସି ଅକ୍ଷରରେ

ପ୍ରୟୋଜନାନୁସାରେ ସ୍ୱରକୁ ଦୀର୍ଘ ବା ପ୍ଲୁତ ଭାବେ ଉଚ୍ଚାରଣ କରି ବିଳମ୍ବିତ ଲୟର ଆଶ୍ରୟ ନେବାକୁ ପଡ଼େ ଓ ସେହିପରି ବହ୍ୱକ୍ଷର ଚରଣର ଆବୃତ୍ତି କାଳରେ ଗାୟକଙ୍କୁ ଅତି ଦ୍ରୁତ ଲୟ ଅବଲମ୍ବନ କରିବାକୁ ପଡ଼େ । ପୁଣି ଗାୟକପକ୍ଷରେ, ଦ୍ରୁତ ଲୟରେ ବହୁ ସମୟ ପର୍ଯ୍ୟନ୍ତ ବିସ୍ତୃତ ବର୍ଣ୍ଣନାର ଆବୃତ୍ତି ଯେପରି କଷ୍ଟକର, ମୁହୁର୍ମୁହୁଃ ରହି ବିଳମ୍ବିତ ଲୟରେ ଗାନ କରିବା ମଧ୍ୟ ସେହିପରି କଷ୍ଟକର । ଶ୍ରୋତାମାନଙ୍କ ପକ୍ଷରେ ଅର୍ଥବୋଧ ପାଇଁ ମଧ୍ୟ ଏହା ଅଯଥା ବିଳମ୍ବଜନକ । ଏଣୁ ମଧ୍ୟ-ଲୟରେ ପାଠ୍ୟ ୧୪ ଅକ୍ଷରୀ-ପାଦହିଁ ଏହାର ମୌଳିକ ରଚନାରୀତି ବୋଲି ମନେକରିବାର ଯଥେଷ୍ଟ କାରଣ ଅଛି ।

ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ ରୀତି-କାବ୍ୟର ଉଦ୍ଭବ ଘଟିଲାବେଳକୁ ସଙ୍ଗୀତ-ଶାସ୍ତ୍ର ଆଡ଼କୁ କବିମାନେ ସଂପୂର୍ଣ୍ଣଭାବେ ଆକୃଷ୍ଟ ହୋଇଥିଲେ । ତେଣୁ ସଙ୍ଗୀତ-ଶାସ୍ତ୍ରର ସ୍ୱର, ତାଳ ଓ ଲୟର ଅନୁଗାମୀ କରି ସେମାନେ କବିତା ରଚନା କଲେ । ପ୍ରାକୃତ ବା ଅପଭ୍ରଂଶ ଛନ୍ଦପରି, ଗୁରୁ-ଲଘୁ ମାତ୍ରା ଆମ ସାହିତ୍ୟରେ ମୁଖ୍ୟତା ଲାଭ ନକରି ଅକ୍ଷରସମତା ଓ ନିର୍ଦ୍ଦିଷ୍ଟ ସ୍ଥାନରେ ଯତିପାତ ପ୍ରତି ଦୃଷ୍ଟିଦେବା ରୀତି ହୋଇଥିଲା । ତହୁଁ ମଙ୍ଗଳ ପ୍ରଭୃତି ଚତୁର୍ଦ୍ଦଶାକ୍ଷର ଛନ୍ଦର ଉଦ୍ଭବ ଘଟିଲା । ଆମ୍ଭେମାନେ ଦେଖୁଁ ଯେ 'ବୈଦେହୀଶବିଳାସ'ର ୫୨ଗୋଟି ଛାନ୍ଦ ମଧ୍ୟରୁ ୧୩ ଗୋଟି ଛାନ୍ଦରେ ପ୍ରତି ପାଦର ଅକ୍ଷରସଂଖ୍ୟା ୧୪ । ସେହିପରି 'ଲାବଣ୍ୟବତୀ'ର ୪୮ ଗୋଟି ଛାନ୍ଦ ମଧ୍ୟରୁ ୧୧ ଗୋଟି ଛାନ୍ଦରେ ପ୍ରତି ପାଦର ଅକ୍ଷରସଂଖ୍ୟା ୧୪ । ଏଥିରୁ ଅନୁମିତ ହେବାର କଥା ଯେ, ରୀତି-ଯୁଗର କବିମାନେ ମଧ୍ୟ ଚଉଦ-ଅକ୍ଷରବିଶିଷ୍ଟ ଛନ୍ଦକୁ ବହୁଳଭାବେ ଗ୍ରହଣ କରୁଥିଲେ ।

ଅପଭ୍ରଂଶ ଛନ୍ଦ ଶାସ୍ତ୍ରରେ ଦ୍ୱିପଦୀ ଛନ୍ଦ ପ୍ରଥମ ଛନ୍ଦରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ଏଥିରେ ପ୍ରତି ଚରଣରେ ୨୮ ମାତ୍ରା ରହିବାହିଁ ବିଧି । ନିର୍ଦ୍ଦିଷ୍ଟ ସ୍ଥାନରେ ଷାଣ୍ମାତ୍ରିକ ଓ ଚାତୁର୍ମାତ୍ରିକ ଗୁଣର ନିବେଶ ମଧ୍ୟ ନିୟମର ଅନ୍ତର୍ଭୁକ୍ତ ହୋଇଛି । ସାଧାରଣ ନିୟମ ଅନୁସାରେ ପଦ୍ୟ ମାତ୍ରେ ଚାରିପଦବିଶିଷ୍ଟ ହେବାର କଥା । ତେଣୁ ଦ୍ୱିପଦୀର ପୂର୍ବାର୍ଦ୍ଧ ବା ପରାର୍ଦ୍ଧରେ ଥିବା ୨୮ ମାତ୍ରାକୁ ଦୁଇ ପାଦରେ ବିଭକ୍ତ କରିଦେଲେ ପ୍ରତି ପାଦରେ ଚଉଦ ମାତ୍ରା ପଡ଼ୁଛି । ଏହାହିଁ ଆମ ଚତୁର୍ଦ୍ଦଶାକ୍ଷର ଛନ୍ଦର ମୂଳ । ପ୍ରୋକ୍ତ ଦ୍ୱିପଦୀରେ ୨୮ ମାତ୍ରା ମଧ୍ୟ ୧୬ ମାତ୍ରାଠାରେ ଓ ତତ୍ପରେ ୧୨ ମାତ୍ରାଠାରେ ଯତିପାତ କରାଯାଏ । ୨୮ ମାତ୍ରାବିଶିଷ୍ଟ ଦ୍ୱିପଦୀ ଛନ୍ଦର ୧୬ ଓ ୧୨ ମାତ୍ରାରେ ଯତିପାତ ପରିବର୍ତ୍ତରେ ଦ୍ୱିପଦୀର ପ୍ରତି ଚରଣକୁ ଦୁଇଭାଗ କରି ପ୍ରତି ଭାଗକୁ ଚଉଦମାତ୍ରା ବା ବର୍ଣ୍ଣ-ବିଶିଷ୍ଟ ରୂପେ ଗ୍ରହଣ କରିଥିବା ଓଡ଼ିଆ ୧୪ ଅକ୍ଷରୀ ଛନ୍ଦରେ ୮ ଓ ୬ ଅକ୍ଷରଠାରେ ଯତି ନିର୍ଦ୍ଦେଶ କରାଯାଇଛି ଏବଂ ପାଦାନ୍ତରେ 'ତୁକ୍' (ସୋପଧ ଅନ୍ତ୍ୟବର୍ଣ୍ଣର ମିଳନ) ଘଟିଛି । ତେଣୁ ଓଡ଼ିଆରେ ଏହା ଦ୍ୱିପଦୀ ।

ପୌରାଣିକ ଆଖ୍ୟାନ ପ୍ରଭୃତିର ବର୍ଣ୍ଣନାକାଳରେ ଚଉଦ-ଅକ୍ଷରୀ ଛନ୍ଦର ବ୍ୟବହାର ଆମ ଦେଶରେ ପରମ୍ପରାସିଦ୍ଧ । ଏବେ ବି ଏହାର ପ୍ରଚଳନ ପାଲାବାଲା ଓ ଦାଶକାଠିଆ ଗାୟକମାନଙ୍କ ଗାୟନରେ ଦେଖାଯାଏ । ବର୍ଣ୍ଣନାକୁ ପ୍ରାଞ୍ଜଳ କରିବା ପାଇଁ 'ଚଉଦ-ଅକ୍ଷରୀ' ବଚନିକାକୁ ସେମାନେ ଉତ୍କୃଷ୍ଟ ମାଧ୍ୟମରୂପେ ବ୍ୟବହାର କରିଥାନ୍ତି; କିନ୍ତୁ

ବେଳେବେଳେ ଗୋଟିଏ ପୂର୍ଣ୍ଣାଙ୍ଗ ଅର୍ଥବୋଧ କରାଇବା ପାଇଁ ଚଉଦ ଅକ୍ଷର ମଧ୍ୟ ପର୍ଯ୍ୟାପ୍ତ ହୁଏ ନାହିଁ । ତେଣୁ ସେପରି ସ୍ଥଳରେ ପ୍ରୟୋଜନ ଅନୁସାରେ ଆଉ କେତେ ଅକ୍ଷର ବଢ଼ାଇଦେଇଥାନ୍ତି; କିନ୍ତୁ ପ୍ରାନ୍ତାନୁପ୍ରାସ ପ୍ରତି ସର୍ବଦା ସାବଧାନ ଥାଆନ୍ତି । ସାରଳାଙ୍କ ମହାଭାରତ ଓ ଦାଣ୍ଡୀ ରାମାୟଣ ପ୍ରଭୃତି ଏହି ରୀତିରେ ଲିପିବଦ୍ଧ ହୋଇଥିବାର ଦେଖାଯାଏ । ପାଲାବାଲା ପ୍ରଭୃତି ସେହି ରୀତିକୁ ଆଜି ସୁଦ୍ଧା ବଞ୍ଚାଇ ରଖିଅଛନ୍ତି । 'ଚଉଦ-ଅକ୍ଷରୀ' ବଚନିକାକୁ ପ୍ରାୟଶଃ ସମତାରକ୍ଷାପୂର୍ବକ ଯେଉଁ ପାଲାବାଲା ଅଭିଳଷିତ ରସର ପୋଷାକରୂପେ ବିଚକ୍ଷଣ ଭାବରେ ବ୍ୟବହାର କରିପାରେ, ସେହିହିଁ ପ୍ରଶଂସିତ ହୋଇଥାଏ । ଅକ୍ଷର ବୃଦ୍ଧି ବା ହ୍ରାସ ପ୍ରତି କେହି ଦୃଷ୍ଟି ଦିଅନ୍ତି ନାହିଁ । ରସାଭିବ୍ୟଞ୍ଜକ ଅଖଣ୍ଡ ଅର୍ଥ ପ୍ରକାଶ ପ୍ରତି ଶ୍ରୋତୃ-ମଣ୍ଡଳୀର ଧ୍ୟାନ ଥାଏ ଓ ଗାୟକ ପଦମାନଙ୍କର ଅକ୍ଷର-ସମତା ପ୍ରତି ଦୃଷ୍ଟି ନଦେଇ, ଶ୍ରୋତୃବର୍ଗଙ୍କ ମନସ୍ତୁଷ୍ଟି ପାଇଁ ହିଁ ସର୍ବଦା ଯତ୍ନଶୀଳ ହୋଇଥାଆନ୍ତି ।

ପୁରାଣ, ବେଦ ପରି ଶବ୍ଦ-ପ୍ରଧାନ ନୁହେଁ ବା ସଙ୍ଗୀତ ପରି ସ୍ୱର-ତାଳ-ଲୟ-ପ୍ରଧାନ ନୁହେଁ । ଏହା ଅର୍ଥ-ପ୍ରଧାନ । ତେଣୁ ଅର୍ଥ ବ୍ୟକ୍ତକୁ ମୁଖ୍ୟ ସ୍ଥାନ ଦେଇ ଯଥାସମ୍ଭବ ତାଳଲୟାନୁଗ କରି ଏହା ଆବୃତ୍ତ ହୋଇଥାଏ । ତେଣୁ ଅକ୍ଷରର ହ୍ରାସବୃଦ୍ଧି-ରୂପକ କବି-ସ୍ୱାତନ୍ତ୍ର୍ୟ ଏଥିରେ ଦୋଷ ନୁହେଁ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟତଃ ପ୍ରତୀତ ହେଉଛି ଯେ, ଆମ୍ଭେମାନେ ଯାହାକୁ ଦାଣ୍ଡୀବୃତ୍ତ ବୋଲି କହୁଁ, ସେଥିରେ ଚରଣଗୁଡ଼ିକ ଚଉଦ-ଅକ୍ଷରବିଶିଷ୍ଟ ହେବାହିଁ ତାହାର ମୌଳିକ ଧର୍ମ । କୌଣସି କୌଣସି ସ୍ଥଳରେ ତାହାର ବ୍ୟତ୍ୟୟ ଘଟିଥିଲେ ମଧ୍ୟ ମୌଳିକ ଧର୍ମକୁହିଁ ମୁଖ୍ୟମାର୍ଗରୂପେ ସ୍ୱୀକାର କରିବାକୁ ପଡ଼ିବ । ଦାଣ୍ଡୀ ଏକପ୍ରକାର 'ବୋଲି' ବା 'ଭଙ୍ଗୀ' । ଗୋଟିଏ ଦଣ୍ଡର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ମଧ୍ୟରେ ବିଚ୍ଛେଦ ବା ବିରାମ ନ ଥିଲାପରି, ଆବୃତ୍ତିବେଳେ ଏହାର ଚରଣ ଭିତରେ ଆଦୌ ବିରାମ ନଥାଏ; କେବଳ ପ୍ରାନ୍ତରେ ବିରାମ ଥାଏ । ସେଇଥିପାଇଁ ଏହାକୁ ଦାଣ୍ଡୀ କୁହାଯାଇଛି ବୋଲି ମନେହୁଏ । ଏହାର ସଂସ୍କୃତ ଦଣ୍ଡକବୃତ୍ତ ସହିତ ସେପରି ସମ୍ବନ୍ଧ ନାହିଁ । କାରଣ ଛନ୍ଦ-ଶାସ୍ତ୍ରର ନିୟମ ଅନୁସାରେ ଦଣ୍ଡକବୃତ୍ତର ପ୍ରତି ପାଦରେ ୨୭ ଅକ୍ଷର ରହିବାହିଁ ବିଧି । ଏଥିରେ ମଧ୍ୟ ଗୁରୁଲଘୁ ନିୟମ ସୁନିର୍ଦ୍ଦିଷ୍ଟ; ଅର୍ଥାତ୍ ପ୍ରଥମ ଛଅ ଅକ୍ଷର ଲଘୁ ଓ ଅନ୍ୟ ୨୧ ଅକ୍ଷର ମଧ୍ୟରୁ ପ୍ରତ୍ୟେକ ତ୍ରିକର ମଧ୍ୟ-ଅକ୍ଷର ଲଘୁ । ଏ ଛନ୍ଦ ସହିତ ଓଡ଼ିଆ ଚଉଦ-ଅକ୍ଷରୀ ବୃତ୍ତର କୌଟୁମ୍ବିକତା ସ୍ଥାପିତ ହୋଇନପାରେ ।

— ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ

ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଦାଣ୍ଡୀବୃତ୍ତ ସମ୍ବନ୍ଧରେ ଉପରେ ଯାହା କହିଛନ୍ତି, ତାହା ଯଥାର୍ଥ; କିନ୍ତୁ ଏହା ନିଶ୍ଚୟ ଯେ ସାରଳାଦାସ ଏ ପ୍ରକାର ଆଲୋଚନା କରି ଦାଣ୍ଡୀବୃତ୍ତରେ ଚତୁର୍ଦ୍ଦଶାକ୍ଷରୀ ଛନ୍ଦ ବ୍ୟବହାର କରିନଥିଲେ । ସେ କରିଥିଲେ ନିଶ୍ଚୟ କୌଣସି ପ୍ରତ୍ୟକ୍ଷ ଆଦର୍ଶକୁ ଅନୁସରଣ କରି । ସେଦିନ ଓଡ଼ିଶାରେ କବିତାର ସେ ଆଦର୍ଶ ବା ମଡ଼େଲ କୃଷକ-କବି କାହୁଁ ପାଇବେ ? ଚତୁର୍ଥ ଅଧ୍ୟାୟର ଅପଭ୍ରଂଶରଚିତ ବୌଦ୍ଧ କବିତାର

ସାରଳାଦାସୀୟ ଅନୁବାଦ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ଆମେ ଯେତେବେଳେ ଅନ୍ୟ ଚର୍ଯ୍ୟାପଦରେ ପଢ଼ୁଁ –

"ଚାରି ବାସେ ଭାଇଲାରେ ଦିଆ ଚଞ୍ଚାଲୀ,
ତହିଁ ତୋଲି ଶବରୋ ଡାହ କଏଲା କାନ୍ଦଇ ସୁଗୁଣ ସିଆଲୀ" –

ସେତେବେଳେ ଆମର ହୁଏତ ସ୍ମରଣ ହେବ, ଆମେ ଏହାର ସମଧ୍ୱନିକ କବିତା କେଉଁଠି ଶୁଣୁଛୁ ଯେପରି –

"ତୁହି ଯାହା କହିଦେଉ, ମୁଁ ତାହା ଲେଖଇ,
ସର୍ବଦା ସାରଳା ଦାସ, ମୂରୁଖ ଅଟଇ ।"

(ଆଦି-ପର୍ବ, ସାରଳା ମହାଭାରତ)

ପାଠକେ ଲକ୍ଷ୍ୟ କରିବେ ଯେ ଉପରିଲିଖିତ ଅପଭ୍ରଂଶ-କବିତାଂଶର ପ୍ରାନ୍ତାନୁପ୍ରାସ ସମ ଥିବା ସ୍ଥଳେ, ଅକ୍ଷରସଂଖ୍ୟା ବିଷମ; ଅଥଚ ତାହା ସାରଳାଙ୍କ ଚଉଦ-ଅକ୍ଷରୀ ଛନ୍ଦର ସମଧ୍ୱନିକ । ଲେଖକର ବିଶ୍ୱାସ କୃଷକ-କବିଙ୍କ ସମୟକୁ, ଆଜକୁ ଛଅଶ' ବର୍ଷ ତଳେ, ଅପଭ୍ରଂଶ-ରଚିତ ଚର୍ଯ୍ୟାପଦାବଳି ଉତ୍କଳୀୟ ସମାଜରେ ସୁପରିଚିତ ଓ ସୁପ୍ରଚଳିତ ଥିଲା । ରତ୍ନଗିରି ମହାବିହାର କବିଙ୍କ ଅଞ୍ଚଳରୁ ବେଶି ଦୂର ନୁହେଁ କହିଲେ ଚଳେ । ଖୁବ୍ ସମ୍ଭବତଃ କୃଷକ-କବି ରତ୍ନଗିରି ମହାବିହାରର ଭ୍ରାମ୍ୟମାଣ ମହାଯାନୀ ବୌଦ୍ଧ ଭିକ୍ଷୁମାନେ ଚର୍ଯ୍ୟାପଦ ଗାଉଥିବାର ଶୁଣିଥିବେ ଓ ଶୁଣିଥିବା ପଦ୍ୟରୀତିର ଅନୁକରଣରେହିଁ ସେ ନିଜ ଗ୍ରନ୍ଥ ରଚନା କରିବାର ଚେଷ୍ଟା କରିଥିବେ, ଅକ୍ଷର ବୈଷମ୍ୟ ପ୍ରତି ଧ୍ୟାନ ନଦେଇ । ଏହି ଅଧ୍ୟାୟରେ କଳସା-ଚଉତିଶାର ତଥାକଥିତ ପ୍ରାଚୀନତାକୁ ଲେଖକ ସ୍ୱୀକାର କରୁନାହିଁ । ତେଣୁ ଧରିବାକୁ ହେବ ଯେ, ଓଡ଼ିଆରେ ଚଉଦଅକ୍ଷରୀ ଛନ୍ଦ ବା ଦାଣ୍ଡୀବୃତ୍ତର ଆଦିସ୍ରଷ୍ଟାହିଁ ଓଡ଼ିଆ ସାହିତ୍ୟର ଆଦି ମହାକବି ସାରଳାଦାସ ।

□□□

## ସପ୍ତମ ଅଧ୍ୟାୟ

# ଓଡ଼ିଆ ମହାଭାରତ ଓ ତାହାର ଶୂଦ୍ରସ୍ରଷ୍ଟା

**ଐତିହାସିକ ପଞ୍ଚଭୂମି –**

ଷଷ୍ଠରୁ ଚତୁର୍ଦ୍ଦଶ ଶତାବ୍ଦୀ ଭିତରେ ଉତ୍ତର-ଓଡ଼ିଶାରେ ଭୌମକର ଓ କେଶରୀ ରାଜାମାନେ, କେନ୍ଦ୍ର ଓଡ଼ିଶାରେ ଶୈଳୋଦ୍‌ଭବ ରାଜାମାନେ ଓ ଦକ୍ଷିଣ-ଓଡ଼ିଶାରେ ଗଙ୍ଗ ରାଜାମାନେ, ଆମେ ଏବେ ଯାହାକୁ ଓଡ଼ିଆ ସଂସ୍କୃତି ବୋଲି କହୁଛୁ ତାର ମୂଳପତ୍ତନ ପକାଇଗଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଖାରବେଳ ଯେଉଁ ସ୍ଥାପତ୍ୟ ଗଠନ ଏ ଦେଶରେ ଆରମ୍ଭ କରିଦେଇଗଲେ, ତାହା ସୋମ ବା କେଶରୀମାନଙ୍କଦ୍ୱାରା ପ୍ରସାରିତ ହୋଇ, ଗଙ୍ଗମାନଙ୍କ ହାତରେ ବିସ୍ମୟକର ପରିଣତି ଲାଭକରିଥିଲା । ଲୂତାତନ୍ତୁ-ସୂକ୍ଷ୍ମଭାସ୍କର୍ଯ୍ୟ-ଭୂଷିତ, ପୁଣି ବାକ୍‌ରୋଧକାରୀ ଅତିକାୟ ଦେବାୟତନମାନଙ୍କଦ୍ୱାରା ଏ ଦେଶକୁ ଭରିଦେବାପାଇଁ ଓଡ଼ିଶାର ଭିନ୍ନ ଭିନ୍ନ ରାଜବଂଶର ଏହି ରାଜାମାନେ ଯୁଗ ପରେ ଯୁଗ ଯେପରି ପାରସ୍ପରିକ ପ୍ରତିଯୋଗିତାରେ ଲାଗିରହିଥିଲେ, ସେମାନେ ମଧ୍ୟ ଥିଲେ କବିତ୍ୱ ଓ ପାଣ୍ଡିତ୍ୟର ପରମ ପୃଷ୍ଠପୋଷକ; କିନ୍ତୁ ଦେଶର ଶିଷ୍ଟ ସମାଜର ଭାଷା ସଂସ୍କୃତିହିଁ ରହିଥିବାରୁ, ଏହି ଦୀର୍ଘକାଳଧରି ଓଡ଼ିଶାରେ ଏକ ସ୍ୱତନ୍ତ୍ର ସ୍ଥାନୀୟ ସାହିତ୍ୟର ଅଭ୍ୟୁଦୟ ସମ୍ଭବ ହୋଇପାରିନଥିଲା, ଯେପରି ହୋଇପାରିଥିଲା ମହନୀୟ ସ୍ଥାନୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ।

ଗଙ୍ଗ ରାଜାମାନେ ଯେପରି ଥିଲେ ପ୍ରସିଦ୍ଧ ମନ୍ଦିରନିର୍ମାତା, ସେହିପରି ଥିଲେ ସାମ୍ରାଜ୍ୟନିର୍ମାତା ଓ ସାମ୍ରାଜ୍ୟଶାସକ । ଏହି ଗଙ୍ଗମାନେହିଁ ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଓଡ଼ିଶାକୁ ଯେ ଏକ ଶାସନାଧୀନ କଲେ କେବଳ ନୁହେଁ, ଓଡ଼ିଶାର ରାଜନୈତିକ ସୀମାକୁ ଗଙ୍ଗାଠାରୁ ଗୋଦାବରୀଯାଏଁ ଶତାବ୍ଦୀ-ଶତାବ୍ଦୀଧରି ସଂପ୍ରସାରିତ କରି ରଖିଲେ ଏବଂ ଏହି ବହୁ-ବିସ୍ତୃତ-ସାମ୍ରାଜ୍ୟକୁ ଏପରି ଦକ୍ଷତା ସହିତ ଶାସନ କରିଥିଲେ ଯେ ତାର ଚିହ୍ନ ଓଡ଼ିଶାର ସାମାଜିକ ଜୀବନରେ ଆଜି ମଧ୍ୟ ଦେଖିବାକୁ ମିଳୁଛି । ମହାପାତ୍ର, ପଟ୍ଟନାୟକ, ଦଳାଇ, ଡରାଇ, ନାୟକ ପ୍ରଭୃତି ନିଜସ୍ୱ ଓଡ଼ିଶୀ ସାମାଜିକ ସଂଜ୍ଞାଗୁଡ଼ିକ ଗଙ୍ଗ-ମାନେ ପ୍ରବର୍ତ୍ତନ କରିଥିବା ଶାସନିକ ଓ ସାମରିକ ସଂସ୍କାର ଫଳରେହିଁ ଏ ଦେଶରେ ଏହି କାଳରେ ସୃଷ୍ଟ ହେଲା । ଏଗୁଡ଼ିକ ଆଜି ଓଡ଼ିଶାରେ କେବଳ କୌଳିକ ସଂଜ୍ଞା ମାତ୍ର; କିନ୍ତୁ ଏସବୁ ସେଦିନ ଥିଲେ ଏକଏକ ରାଷ୍ଟ୍ରୀୟ ପଦ, ଯାହାର ପ୍ରତ୍ୟେକର ବୃତ୍ତି, କ୍ଷମତା ଓ ଦାୟିତ୍ୱ ସୁନିର୍ଦ୍ଦିଷ୍ଟ ଥିଲା ।

ତିନିଶତ ବର୍ଷର ଗୌରବମୟ ରାଜତ୍ୱ ପରେ ଗଙ୍ଗବଂଶର ଶେଷ ହେଲା ଖ୍ରୀଷ୍ଟାବ୍ଦ ୧୪୧୫ରେ । ତା'ପରେ ସମ୍ରାଟ୍ କପିଳେନ୍ଦ୍ର ଦେବଙ୍କଠାରୁ ଆରମ୍ଭ ହେଲା ଅଧିକ ଗୌରବାବହ ସୌରବଂଶ ।

ଗଙ୍ଗବଂଶର ଆରମ୍ଭବେଳେହିଁ ଉତ୍ତର-ଭାରତ ମୁସଲମାନମାନଙ୍କଦ୍ୱାର ଆକ୍ରାନ୍ତ ହେଲା । ସେମାନେ ବଙ୍ଗଳା ଅଧିକାର କରିବା ପରେ ଓଡ଼ିଶା ଅଧିକାର ପାଇଁ ବାରମ୍ବାର ଆକ୍ରମଣ କଲେ; କିନ୍ତୁ ଓଡ଼ିଆମାନଙ୍କଦ୍ୱାରା ସେମାନେ କେବଳ ପରାସ୍ତ ହୋଇଥିଲେ ନୁହେଁ, ଓଡ଼ିଆ-ମାନେ ସେମାନଙ୍କୁ ନିଜ ରାଜଧାନୀ ପର୍ଯ୍ୟନ୍ତ ବାରମ୍ବାର ତଡ଼ିନେଇଥିଲେ । ଏହିପରି ସମଗ୍ର ଉତ୍ତର-ଭାରତ ମୁସଲମାନୀ ଶାସନ ଗ୍ରହଣ କରିବାର ଦୀର୍ଘ ତିନିଶତ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ସ୍ୱାଧୀନତାର ଗୌରବ-କେତନକୁ ଉଡ୍ଡୀନ ରଖିପାରିଥିଲା । ସୌର ରାଜାମାନେ ମଧ୍ୟ ପୂର୍ବବର୍ତ୍ତୀ ଗଙ୍ଗମାନଙ୍କ ପରି ଓଡ଼ିଶାର ଉତ୍ତର ସୀମାନ୍ତରେ ମୁସଲମାନ ଶକ୍ତିକୁ ବାରମ୍ବାର ବାଧାଦେଇଥିଲେ; କିନ୍ତୁ ସେମାନଙ୍କବେଳକୁ ତେଣେ ଓଡ଼ିଶାର ଦକ୍ଷିଣ-ପଶ୍ଚିମ ସୀମାକୁ ଲାଗି ମୁସଲମାନ ବାହମନୀ ରାଜ୍ୟ ପ୍ରତିଷ୍ଠିତ ହେଲାଣି । ସୌର ରାଜାମାନଙ୍କୁ ତେଣୁ ଉତ୍ତର ଓ ଦକ୍ଷିଣ ଉଭୟ ସୀମାରେ ମୁସଲମାନ ବାହିନୀର ସମ୍ମୁଖୀନ ହେବାକୁ ପଡ଼ିଲା ଓ ଉଭୟ ଦିଗର ରଣକ୍ଷେତ୍ରମାନଙ୍କରେ ସେମାନେ ବରାବର ବିଜୟଗୌରବ ନେଇ ଫେରିଥିଲେ ।

ଓଡ଼ିଆ ମହାଭାରତର କବି ସାରଳା ଦାସ ସୌରବଂଶର ପ୍ରତିଷ୍ଠାତା ଓ ଶ୍ରେଷ୍ଠ ଗୌରବ ସମ୍ରାଟ୍ କପିଳେନ୍ଦ୍ର ଦେବଙ୍କର ସମସାମୟିକ ଥିବା ଧରାଯାଏ । ଏହି କପିଳେନ୍ଦ୍ର ଦେବ ଓଡ଼ିଶାରେ ଏକ କାହାଣୀରେ ପରିଣତ ହୋଇଯାଇଛନ୍ତି । ସାମାନ୍ୟ ସୈନିକରୁ ନିଜର ଦକ୍ଷତା ଓ ପ୍ରତିଭା ବଳରେ ସେ ଦିନେ ଶେଷ ଗଙ୍ଗ ରାଜାଙ୍କର ସେନାପତି ହୋଇପାରିଥିଲେ ଓ ରାଷ୍ଟ୍ରର ଆବଶ୍ୟକତା ଅନୁଯାୟୀ ଦୁର୍ବଳ ଗଙ୍ଗ ରାଜାଙ୍କଠାରୁ ଦେଶର ଶାସନଭାର ନିଜ ହାତକୁ ନେଇଥିଲେ । ଏହି ସୈନିକ ସମ୍ରାଟ୍ ଓଡ଼ିଆ-ବାହିନୀର ବିଜୟକେତନ ଭାରତୀୟ ଉପମହାଦେଶର ଦକ୍ଷିଣକୁ କାବେରୀତଟଯାଏଁ ଓ ପଶ୍ଚିମରେ ମୁସଲମାନ ବାହମନୀ ସାମ୍ରାଜ୍ୟର ହୃତ୍‌ପିଣ୍ଡସ୍ୱରୂପ, ବିଦର ଓ ବାରଙ୍ଗଲ ଆଦି ଦୁର୍ଗଯାଏ ଉଡ଼ାଇପାରିଥିଲେ ।

ଏହିପରି ସେଦିନ ଏହି ସମଗ୍ର ଉପମହାଦେଶ ବିଦେଶୀ ଅଧିକୃତ ଓ ଶାସିତ ଥିଲାବେଳେ ଓଡ଼ିଶା ଉଭୟ ସ୍ୱାଧୀନତା ଓ ଉଜ୍ଜ୍ୱଳ ସାମରିକ ଯଶ ଭୋଗକରୁଥିଲା, ବହୁ ଶତାବ୍ଦୀ ଧରି । ସେଦିନ ଏହି ଦେଶ ଓଡ଼ିଆ ଜାତିର ସଂସ୍କୃତି ଓ ସଭ୍ୟତାର ସୂଚକରୂପୀ, ବିସ୍ମୟକର ମନ୍ଦିରମାନଙ୍କଦ୍ୱାର ଅଳଂକୃତ ହୋଇଥିଲା । ସତ୍ୟରେ, ସେଦିନ ଏ ଦେଶର ସମୃଦ୍ଧିର ତୁଳନା ନଥିଲା । ଏହି କାଳରେ ନିର୍ମିତ କୋଣାର୍କ ଓ ଭୁବନେଶ୍ୱରର ମନ୍ଦିରମାନଙ୍କ ଗାତ୍ରରେ ଏ ଦେଶର ମହାରଣାମାନେ ଯେଉଁ ଜାତିକି ଆଙ୍କିଯାଇଛନ୍ତି, ସେ ଜାତି କିପରି ଥିଲା ? ସେଦିନ ସେ ଜାତିର ଥିଲା ଜୀବନ ପ୍ରତି ଅସରନ୍ତି ଶ୍ରଦ୍ଧା । ସେ ଜାତି ମାତି-ରହିଥିଲା ଯୁଦ୍ଧ, ଶିକାର, ଖେଦା ଓ ବିଜୟ ଅଭିଯାନରେ କେବଳ ନୁହେଁ, ସେ ଉତ୍ତମ ଭାବରେ ଉପଭୋଗ କରୁଥିଲା ପ୍ରଣୟ, ସଙ୍ଗୀତ ଓ ନୃତ୍ୟ ଏବଂ ସମାଜର ସୁଧିଜନର ବାଣୀ ଅନୁଯାୟୀ ସର୍ବସ୍ୱ ସମର୍ପିବାର ମଧ୍ୟ ଜାଣିଥିଲା ତାର ଇଷ୍ଟଦେବତାର ପୀଠତଳେ । ଏ ଜାତି ସେଦିନ ନିଜକୁ, ତାର ରାଜାକୁ ଓ ତାର ଦେଶକୁ ନେଇ ପ୍ରକୃତ ଗର୍ବ ଅନୁଭବ କରୁଥିଲା ଏବଂ ଅହରହ ସ୍ୱପ୍ନ ଦେଖୁଥିଲା ସୁନ୍ଦରୀ ନାରୀର ।

ଓଡ଼ିଆ ମହାଭାରତର କବି ସାରଳା ଦାସ ଏହି ପ୍ରକାର ଅନୁକୂଳ ରାଜନୈତିକ ପରିବେଶ ଓ ସମୃଦ୍ଧ ଉଦାର କାଳରେ ଜନ୍ମଗ୍ରହଣ କରିଥିଲେ । ସାରଳା ଦାସ ଯେ ଜଣେ ପ୍ରକୃତ ଜାତୀୟ କବି, ତାର ପ୍ରକୃତ ପ୍ରମାଣ ଏହି ଯେ, ତାଙ୍କ ମହାଭାରତରେ ଆମେ ସେକାଳ ଓଡ଼ିଆ ଜାତିର ଏହି ସମସ୍ତ ସୁଖମୟ ପରିସ୍ଥିତିଗୁଡ଼ିକ ବାରମ୍ବାର ପ୍ରତିବିମ୍ବିତ ହେବାର ଦେଖିବା ।

ପୂର୍ବ ଅଧ୍ୟାୟରେ ଯେପରି ବର୍ଣ୍ଣିତ, ସାମାନ୍ୟ ହେଲେହେଁ ସାରଳାଙ୍କର ପୂର୍ବସୂରିମାନେ ଗଦ୍ୟ ଓ ପଦ୍ୟରେ ତାଙ୍କ ପାଇଁ ଯେ କ୍ଷେତ୍ର ପ୍ରସ୍ତୁତ କରିଦେଇଥିଲେ, ଏଥିରେ ସନ୍ଦେହ ନାହିଁ । ସଂସ୍କୃତ-ପ୍ରେମୀ ଗଙ୍ଗମାନଙ୍କ ଅମଳରେ ଲିଖିତ ସେହି ରଚନାଗୁଡ଼ିକରେ ଆମେ ଅବଶ୍ୟ ନବାରମ୍ଭର ସଂକୋଚ-କୁଣ୍ଠିତ ଅବସ୍ଥା ଦେଖୁଛୁ; କିନ୍ତୁ ଛୋଟ ହେଲେହେଁ, କେଶବ କୋଇଲି ବା କଳସା ଚଉତିଶାର ସୁଖଶ୍ରାବ୍ୟତା ବା ଜନପ୍ରିୟତାହିଁ ସେହି ଅର୍ଦ୍ଧଶିକ୍ଷିତ କୃଷକ-କବି ସାରଳାଙ୍କୁ ନିଶ୍ଚୟ ସାହସ ଓ ପ୍ରେରଣା ଯୋଗାଇଥିବ, ଏକ ଅବହେଳିତ ଓ ଅପରୀକ୍ଷିତ ଭାଷାରେ ଏକ ବିରାଟ ମହାକାବ୍ୟ ରଚନାରୂପକ ଦୁଃସାହସିକ ପଥରେ ମାଡ଼ିଚାଲିବାକୁ । ଜଣେ କୃଷକ ପକ୍ଷରେ ସାରଳାଙ୍କ ଓଡ଼ିଆ ମହାଭାରତ ପ୍ରକୃତରେ ଏକ ବିସ୍ମୟଜନକ ସିଦ୍ଧି; କିନ୍ତୁ ସେ ତ ସାଧାରଣ କୃଷକ ନଥିଲେ; ଥିଲେ ପ୍ରତିଭାଧାରୀ ଓ ଜନ୍ମ ନେଇଥିଲେ ମହାକାବ୍ୟୋପଯୋଗୀ ଯୁଗରେ । ସାରଳା ଦାସଙ୍କ ଓଡ଼ିଆ ମହାଭାରତ କାଳ ଓ ପ୍ରତିଭାର ଏକ ସୁବର୍ଣ୍ଣ-ସଂଯୋଗ କହିବାକୁ ହେବ ।

ସାରଳାଙ୍କ ଓଡ଼ିଆ ମହାଭାରତର ଏହି ସମୃଦ୍ଧ ଐତିହାସିକ ପରିବେଶ ଛଡ଼ା, ସେ ଗ୍ରନ୍ଥର ଅନ୍ତର୍ନିହିତ ସାକ୍ଷ୍ୟରୁ ମଧ୍ୟ ଗ୍ରନ୍ଥକାର ସାରଳା ଦାସ, ଆମ ଆଗରେ ଓଡ଼ିଆ ସାହିତ୍ୟର ପ୍ରଥମ ଐତିହାସିକ ଲେଖକ ଭାବରେ ଠିଆହେଉଛନ୍ତି । ସାରଳାଙ୍କ ପୂର୍ବରୁ ଆଧୁନିକ କାଳ ପର୍ଯ୍ୟନ୍ତ ଯେତେ ସବୁ ଓଡ଼ିଆ କବି ବା ଲେଖକ, ମୋଟାମୋଟି ସେମାନଙ୍କର ବ୍ୟକ୍ତିତ୍ୱ ଏପର୍ଯ୍ୟନ୍ତ କେବଳ ଛାୟା ଛାୟା ରହିଛି, ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଅଧିକାଂଶଙ୍କର ଜନ୍ମ, ବାସ, ମୃତ୍ୟୁ ଓ ଜୀବନ ସମ୍ବନ୍ଧରେ ଆମ ପାଖରେ କୌଣସି ହେଲେ ପ୍ରାମାଣ୍ୟ ସ୍ଥାନ ନାହିଁ । ସେ ସମସ୍ତଙ୍କ ମଧ୍ୟରେ ଏକମାତ୍ର ସାରଳା ଦାସ ଆମ ଆଗରେ ଠିଆହେଉଛନ୍ତି ଏକ ସାଧାରଣ ମନୁଷ୍ୟ ଓ ନାଗରିକ ଭାବରେ; ଯାହାର ଗାଁ ଥିଲା, ପରିବାର ଥିଲା, ଏକ ନିର୍ଦ୍ଦିଷ୍ଟ ଜୀବିକା ଥିଲା ଏବଂ ଯାହାର ରଚନାରେ ଆମେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସମସାମୟିକ ଐତିହାସିକ ଘଟଣାବଳୀ ପ୍ରତିବିମ୍ବିତ ହେବାର ଦେଖୁଁ । ସେ ଯେଉଁ ନଦୀମାନଙ୍କର, ଗାଁମାନଙ୍କର, ଦେବଦେବୀମାନଙ୍କର କଥା କହିଛନ୍ତି, ସେସବୁ ଏବେ ବି ଅଛନ୍ତି । ଏଇ ଛଅଶ' ବର୍ଷ ଭିତରେ ସେମାନଙ୍କର ବିଶେଷ ପରିବର୍ତ୍ତନ ଘଟିନାହିଁ ।

**ସତ୍ୟ ଓ କାହାଣୀ –**

ଆଧୁନିକ କଟକ ଜିଲ୍ଲାର ଝଙ୍କଡ଼ ଗ୍ରାମରେ ସାରଳା ଦାସ ଜନ୍ମହୋଇଥିଲେ । ତାଙ୍କ ରଚନା ଓ ଜନଶ୍ରୁତି ଏଥିରେ ପରସ୍ପରକୁ ସମର୍ଥନ କରୁଛନ୍ତି । ତାଙ୍କର ବଂଶଧର ଆଜି ବି

ଚାରିପଟର ଗାଁମାନଙ୍କରେ ବିକ୍ଷିପ୍ତ ହୋଇ ବାସକରନ୍ତି । କବିଙ୍କ ଜନ୍ମ-ଗ୍ରାମଠାରୁ ଏକ ମାଇଲ ଦୂରରେ କନକପୁର ଗ୍ରାମରେ ସାରଳା ଠାକୁରାଣୀଙ୍କ ମନ୍ଦିର ବିଦ୍ୟମାନ । କବି ଏହି ଦେବୀଙ୍କର ପରମଭକ୍ତ ଥିଲେ ବୋଲି କୁହାଯାଏ । ଏହି କନକପୁର ଗ୍ରାମର ନାମ କବିଙ୍କ ମହାଭାରତରେ ବାରମ୍ବାର ଉଲ୍ଲିଖିତ ହୋଇଛି । [୧] ଏଠାରୁ କିଛି ଦୂରରେ ଏକ ପ୍ରାଚୀନ ଓ ସୁପ୍ରସାରିତ ବଟବୃକ୍ଷ ତଳେ କବିଙ୍କର ସମାଧି ବିରାଜିତ । ତାହା ବର୍ତ୍ତମାନ ଏକ ତୀର୍ଥସ୍ଥଳୀ ହୋଇଉଠିଛି ।

ପ୍ରକୃତ ପ୍ରତିଭାର ଅଧିକାରୀ ଥିବା ହେତୁ କୃଷକ-କବି ସାରଳା ଦାସ ବିନୟର ଅବତାର ଥିଲେ । ସେ କୌଣସି ସ୍ଥାନରେ ନିଜକୁ ଏକ ସ୍ରଷ୍ଟା ବୋଲି ପରିଚୟ ଦେଇନାହାନ୍ତି, ନିଜର ସୃଜନ କ୍ଷମତାକୁ ସେ ସର୍ବତ୍ର ଆରୋପଣ କରିଚାଲିଛନ୍ତି ଦେବୀ ସାରଳାଙ୍କ ଅନୁକମ୍ପା ଉପରେ ।

''ଅଦୃଷ୍ଟିକି ଦୃଷ୍ଟି ମୁହିଁ କରାଇଲି ଆଣି
କୃପା କରିବାରୁ ମା ସାରଳା ଠାକୁରାଣୀ ।
ଏ ପଦ ରଚନେ ମୁଁ ନ କରେ ପ୍ରତିଜ୍ଞା
ଲେଖେ ସାରଳା ଦିଅନ୍ତି ମୋତେ ଯାହା ଆଜ୍ଞା ।
ଜନ୍ମହୁଁ ମୂରୁଖ ମୁଁ ପଢ଼ିନାହିଁ ବିଦ୍ୟା
ନ ଜାଣଇ ଜପମନ୍ତ୍ର ନୁହଁଇ ପ୍ରସିଦ୍ଧା ।
ସେ ମାତା ପ୍ରସାଦେ ଯାହା ମନେ ମୋର ସ୍ଫୁରେ,
ଲେଖଇ ଯେ ବସି ନୀଳ କଳ୍ପବଟ ମୂଳେ ।'' (ଦ୍ରୋଣ ପର୍ବ)

କବି ଓ କବି-ପରିବାର ସ୍ୱଗ୍ରାମାଞ୍ଚଳରେ ସଂଗତିସମ୍ପନ୍ନ ଗୃହସ୍ଥ ଥିବାର ଅନୁମିତ ହୁଏ । ତାଙ୍କ ବଡ଼ଭାଇ ପରଶୁରାମ ନିକଟବାହିନୀ ଚନ୍ଦ୍ରଭାଗାର ଘାଟିଆଳ ଥିବାର ମଧ୍ୟ ସୂଚନା ମିଳୁଛି । କବି ତାଙ୍କ ପିତାଙ୍କ ସମ୍ପର୍କରେ ବିସ୍ମୟକର ଭାବରେ ମୌନ; ଅଥଚ ସେ ଏଇ ବଡ଼ଭାଇଙ୍କ ନାମ ନିଜ ଗ୍ରନ୍ଥରେ ଏକାଧିକବାର ଉଲ୍ଲେଖ କରିଥିବାରୁ ଅନୁମାନ ହେଉଛି ଯେ, ଉଦାର ପ୍ରକୃତିକ ଅଗ୍ରଜ ଖୁବ୍ ସମ୍ଭବତଃ ପରିବାରର ସମସ୍ତ ଭାର ମୁଣ୍ଡେଇ, ଅସଂସାରୀ ସାନଭାଇଟିକୁ ସାରଳା ମନ୍ଦିରର ବରଗଛ ତଳେ ବସି ଦିନରାତି ଗପ କହିବା ଓ ଲେଖନ-ତାଳପତ୍ରରେ ଗପ ଲେଖିଚାଲିବା ପାଇଁ ଛାଡ଼ିଦେଇଥିଲେ ଏବଂ ପ୍ରତିଭାଧର ଅନୁଜ ସେଥିପାଇଁ ଅନ୍ତରରେ ବଡ଼ଭାଇ ପ୍ରତି ସନ୍ତତ କୃତଜ୍ଞ ଥିଲେ ।

କୃଷକ-କବି ଅସାଧାରଣ ପ୍ରତିଭା ସତ୍ତ୍ୱେ ଗଭୀର ବିନୟ ଓ ସମ୍ପୂର୍ଣ୍ଣ ଅସୂୟା-ଶୂନ୍ୟ ଭାବରେ ନିଜକୁ ବାରମ୍ବାର ନିଃସଙ୍କୋଚରେ ଏକ 'ଶୂଦ୍ର' ବୋଲି ପ୍ରଚାର କରିଛନ୍ତି । ଓଡ଼ିଶାର ଜନଚେତନାରେ କବି ଏବେ ମଧ୍ୟ 'ଶୂଦ୍ର ମୁନି' ସାରଳା ଦାସ ବୋଲି ସମ୍ମାନିତ;

---

(୧) କନକପୁରଠାରେ ବିରାଜିତ ସାରଳା ଦେବୀଙ୍କ ମନ୍ଦିର ଏକ ଅର୍ବାଚୀନ ସୃଷ୍ଟି । କୃଷକ କବି ଏହି ମନ୍ଦିର ପ୍ରାଙ୍ଗଣରେ ସାରସ୍ୱତ ଆରାଧନା କରୁଥିଲେ ବୋଲି କହିବା ଏକ ମିଥ୍ୟା ପ୍ରଚାର । କବି ଯେଉଁ ପ୍ରତିମୂର୍ତ୍ତି ଆରାଧନା କରୁଥିଲେ, ଏବର ମୂର୍ତ୍ତି ଯେ ସେହି, ଏଥିରେ ମୁଁ ସନ୍ଦିହାନ । ଶକ୍ତି ପ୍ରତିମା ହେଲେହେଁ ସାରଳା ମନ୍ଦିରରେ ନିରାମିଷ ଭୋଗର ପ୍ରଥା, ବୌଦ୍ଧ ସ୍ମୃତିହିଁ ଜାଗ୍ରତ କରୁଛି ।

କିନ୍ତୁ କବି ଯେ ଶୂଦ୍ର ଅର୍ଥାତ୍ କୃଷିଜୀବୀଶ୍ରେଣୀରେ ଜନ୍ମହୋଇଥିଲେ, ତାହା ଓଡ଼ିଆ ସାହିତ୍ୟ ଓ ତାଙ୍କ ନିଜ ପ୍ରତି ଏକ ପ୍ରଚ୍ଛନ୍ନ ଆଶୀର୍ବାଦ ବୋଲି ଆଜି ଧରିବାକୁ ହେବ । କାରଣ ତା'ରି ଫଳରେହିଁ ଏହି ସୃଜନଶୀଳ ପ୍ରତିଭା ଦେଶର ମାଟି ସହିତ ଘନିଷ୍ଠ ସମ୍ପର୍କରେ ଆସି ଜାତୀୟ ସଂସ୍କୃତିର ସକଳ ବିଭାବର ନିର୍ଯାସ ସହଜରେ ଆତ୍ମୀଭୂତ କରିପାରିଥିଲା । ମନେହେଉଛି ଯେ, ସେ ସଂସ୍କୃତ ଜାଣିନଥିଲେ ବା ମୋଟଉପରେ କୌଣସି ପ୍ରକାରେ ଏକ ଉଚ୍ଚବିଦ୍ୟାବାନ୍ ବ୍ୟକ୍ତି ନଥିଲେ ।[୧] ତାହା ମଧ୍ୟ ଥିଲା ତାଙ୍କ ପ୍ରତିଭା ପ୍ରତି ଆଉ ଏକ ଆଶୀର୍ବାଦ । ଏହିସବୁ ତଥାକଥିତ ମାନସିକ ଅଭାବରାଜିହିଁ ସାରଳା ଦାସଙ୍କ ରଚନାବଳୀକୁ ଦେଇପାରିଛନ୍ତି ସେହି ଦୃଢ଼ ବ୍ୟକ୍ତିତ୍ୱ, ସେହି ଓଡ଼ିଶୀ ମାଟିର ସ୍ୱତନ୍ତ୍ର ବର୍ଣ୍ଣ-ବିଭବ, ଓଡ଼ିଆ ଜାତିର ସାମଗ୍ରିକ ବ୍ୟକ୍ତିତ୍ୱ, ସେହି ନିଜସ୍ୱ ଗନ୍ଧ, ଯାହା ଉଚ୍ଚ ପାଣ୍ଡିତ୍ୟ ବରଂ ନଷ୍ଟକରିଦେଇଥାନ୍ତା ।

ତରୁଣ ସାରଳା ଦାସ ବିଲରେ ହଳ ବୁଲେଇଲାବେଳେ ମା' ସାରଳାଙ୍କର ପ୍ରତ୍ୟକ୍ଷ ଆଦେଶ ପାଇଲେ ମହାଭାରତ ଲେଖିବାକୁ ବୋଲି ଜନଶ୍ରୁତି ଦେଶରେ ବହୁକାଳରୁ ପ୍ରଚଳିତ । ବିଲରେ ହଳ ବୁଲେଇବା ସାଧାରଣତଃ ଏକ କ୍ଳାନ୍ତି-ଦାୟକ କର୍ମ । ଶ୍ରମର ପାରୁଷ୍ୟ ଭୁଲିଯିବା ପାଇଁ ପୃଥିବୀର ସବୁ ଦେଶର ଚଷା ହଳ କରୁ କରୁ ବେଳେବେଳେ ଗୀତ ଗାଇଥାଏ । ସ୍କଟଲାଣ୍ଡର ଶ୍ରେଷ୍ଠ କବି ରବର୍ଟ ବର୍ଣ୍ଣସ୍ ଚଷା ଥିଲେ ଓ ତାଙ୍କର ପ୍ରଥମ କାବ୍ୟ-ସ୍ଫୁର୍ତ୍ତି ଘଟିଥିଲା ବିଲରେ ହଳ କରୁ କରୁ । ଆମର କୃଷକ-କବିଙ୍କର ପ୍ରତିଭା ସେହିପରି ଭାବରେ ପ୍ରଥମକରି ଅଙ୍କୁରିତ ହୋଇଥିବ ଏବଂ ତାହାହିଁ ବୋଧହୁଏ ଉପରୋକ୍ତ ଜନଶ୍ରୁତିରେ ଦେବୀଙ୍କର ପ୍ରତ୍ୟକ୍ଷାଦେଶର ରୂପକ ଲାଭକରିଛି । ଓଡ଼ିଶା ସେତେବେଳେ ସ୍ୱାଧୀନ ଥିଲା । ସାମ୍ରାଜ୍ୟର ପ୍ରସିଦ୍ଧ କୃଷକବାହିନୀ ଗ୍ରାମେ ଗ୍ରାମେ ସଜ୍ଜିତ ରହିଥିଲେ । ଗ୍ରାମେ ଗ୍ରାମେ ଆଖଡ଼ାଘରସବୁ ଜୀବନ୍ତ ରହିଥିଲା । କବିଙ୍କର ବାଲ୍ୟକାଳ ବୋଧହୁଏ କଟିଥିଲା ଏକ ଦିଗରେ ଧାନକ୍ଷେତରେ ଓ ଅନ୍ୟ ଦିଗରେ ଗାଆଁର ଆଖଡ଼ାରେ; କାରଣ ସେତେବେଳେ ସାମ୍ରାଜ୍ୟର ପ୍ରତ୍ୟେକ ଯୁବକ ଯୁଦ୍ଧକୁ ଯିବା ଆଶା କରାଯାଉଥିଲା[୨] ଏବଂ ଦେଶର କୃଷକ-ସଂପ୍ରଦାୟହିଁ ଜାତୀୟବାହିନୀକୁ

---

(୧) ଓଡ଼ିଆ ସାହିତ୍ୟର ଏକ ଇତିହାସକୁ ଆଲୋଚନା କରିବାକୁ ବସି ଏ ଦେଶର ଜଣେ ବିଜ୍ଞ ଅଧ୍ୟାପକ ସାରଳା ଦାସେ ବା ଅନ୍ୟ ଓଡ଼ିଆ କବିଏ ସଂସ୍କୃତ ଜାଣିଥିଲେ ବା ଜାଣିନଥିଲେ ଏହି ଅବାନ୍ତର ତଥ୍ୟ ଉପରେହିଁ ବିତଣ୍ଡା ଯୁକ୍ତି କରିବାର ଦେଖି ଆଜି ଏ ଦେଶରେ ସାହିତ୍ୟାଲୋଚନାର ସ୍ତର କି ନିମ୍ନତାକୁ ଆସିଲାଣି ତାହା ଅନୁମାନ କରିହେବ । ବିଶେଷତଃ ଏ ପୁସ୍ତକରେ "ମନେହେଉଛି ଯେ ସେ ସଂସ୍କୃତ ଜାଣି ନଥିଲେ ।" — ଏହି ବାକ୍ୟର 'ମନେହେଉଛି' ଅଂଶଟିକୁ ଲୁଚାଇ ରଖି, ନିନ୍ଦୁକ ସମାଲୋଚକବର୍ଗ ସାରଳା ଦାସେ ସଂସ୍କୃତ ଜାଣିନଥିବାଟାକୁ ଏକ ଜାତୀୟ ଅପମାନ ରୂପେ ଓ ଏ ଗ୍ରନ୍ଥର ଏକ ବିରାଟ ତ୍ରୁଟିରୂପେ ଠିଆକରେଇବାକୁ ଚେଷ୍ଟା କରିଛନ୍ତି । ଧର ବା ଲେଖକର ଅନୁମାନ ଭ୍ରାନ୍ତ ଓ ସମାଲୋଚକଙ୍କ ଅନୁମାନ ଅନୁସାରେ ସାରଳା ଦାସେ ସଂସ୍କୃତରେ ବିରାଟ ପଣ୍ଡିତ ଥିବାର ପ୍ରମାଣିତ ହେଲା; ତାହା ଦାସଙ୍କ ଓଡ଼ିଆ ମହାଭାରତକୁ ବଡ଼ ନା ଛୋଟ କରିବ ?

(୨) ଜାତିବର୍ଣ୍ଣ-ନିର୍ବିଶେଷରେ ପ୍ରତ୍ୟେକ ଓଡ଼ିଆ ଯୁବକ ସେଦିନ ଦେଶର ସୈନିକ ଥିବାର ପ୍ରତ୍ୟକ୍ଷ ପ୍ରମାଣ ଆମେ 'ପାଇକ ଖେଦା' ନାମକ ଅପୂର୍ବ ଗ୍ରନ୍ଥଟିରୁ ପାଉଛୁ । ସୈନ୍ୟସଂଗ୍ରହ ବିଷୟରେ ଏହି ଗ୍ରନ୍ଥରେ ଲେଖାଅଛି —

ସର୍ବାଧିକ ସଂଖ୍ୟକ ସେନା ଯୋଗାଉଥିଲେ । ଧାନକ୍ଷେତ ଓ ଆଖଡ଼ା ବ୍ୟତୀତ ତରୁଣ କବିଙ୍କର ସନ୍ଧ୍ୟାଗୁଡ଼ିକ ବୋଧହୁଏ କଟୁଥିଲା ବ୍ରାହ୍ମଣ ପଣ୍ଡିତଙ୍କ ମେଳରେ, ଭାରତୀୟ କାବ୍ୟ-ପୁରାଣମାନଙ୍କର ଗପ ଶୁଣିବାଲାଗି । ସାରଳାଙ୍କ ମହାଭାରତରେ ଯୁଦ୍ଧାଭିଯାନ, ଦ୍ୱନ୍ଦ୍ୱଯୁଦ୍ଧ, ସାମରିକ କ୍ରୀଡ଼ା ଇତ୍ୟାଦି ଯେପରି ଜୀବନ୍ତ ଭାବରେ ବର୍ଣ୍ଣିତ, ସେଥିରୁ ମନେହେଉଛି ଯେ ଏଗୁଡ଼ିକ କବିଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଥିଲା ଓ ଖୁବ୍ ସମ୍ଭବତଃ ସମ୍ରାଟ୍ କପିଳେନ୍ଦ୍ର ଦେବଙ୍କର ଐତିହାସିକ ଦକ୍ଷିଣାଭିଯାନଗୁଡ଼ିକରେ କବି ନିଜେ ସୈନିକ ଭାବରେ ଯୋଗଦେଇଥିଲେ । ଗୋଦାବରୀ କୂଳସ୍ଥ ଓଡ଼-ଶିବପୁରୀ ତୀର୍ଥ ଯାହା ଦାସେ ନିଜ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, ତାହା ଏବେ ବି ଅଛି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନିଃସନ୍ଦେହ ଭାବରେ ପ୍ରମାଣ କରିଛନ୍ତି ଯେ, କବି ଐତିହାସିକ କୋଣ୍ଡାବିଡୁ, ଦେବରକୋଣ୍ଡା, ବାହମନୀ ଓ ବିଜୟନଗର ଇତ୍ୟାଦି ଦୁର୍ଗ ଓ ରାଜ୍ୟମାନଙ୍କର ଚିତ୍ର ହିଁ ପତଳା ପୌରାଣିକ ଛଦ୍ମାବରଣ ତଳେ ଛାଡ଼ିଯାଇଛନ୍ତି । କବି ନିଜେ ସେସବୁ ଅଭିଯାନମାନଙ୍କରେ ଯୋଗ ନ ଦେଇଥିଲେ ନିଜ ଗାଁରେ ବସି ଏ ଜ୍ଞାନ ସବୁ ପାଇପାରିନଥାନ୍ତେ ।

ଆନୁଷ୍ଠାନିକ ବିଦ୍ୟାଶିକ୍ଷା ବିଶେଷ ନଥିଲେ ମଧ୍ୟ ପ୍ରତିଭାର ସହଜାତ ଅନ୍ତର୍ଦୃଷ୍ଟି ଓ ପ୍ରତ୍ୟକ୍ଷ ବାସ୍ତବ ଅଭିଜ୍ଞତା ଫଳରେ ସାରଳାଦାସ ଜୀବନକୁ ସେହିପରି ଚିତ୍ରିଯାଇଛନ୍ତି, ସେ ଯେପରି ଜୀବନକୁ ଦେଖିଥିଲେ ଓ ଜାଣିଥିଲେ । ସେ ସଂସ୍କୃତ ପୁରାଣମାନଙ୍କର ଅତିମାନବମାନଙ୍କୁ ଆଙ୍କିବାକୁ ଯାଇନାହାନ୍ତି; ଆଙ୍କିଛନ୍ତି ରକ୍ତମାଂସର ପୁରୁଷ ଓ ସ୍ତ୍ରୀ । ସାରଳାଙ୍କ ଜଗତଟି ଗୋଟିଏ ସାଧାରଣ କୃଷକର ଜଗତ । ସେଠି ଦେବଦେବୀଙ୍କର ପଦ ମଧ୍ୟ ସାଧାରଣ ଜନପଥର ଧୂଳିରେ ଧୂସରିତ । ତାଙ୍କର ଅଭିଜାତ ନାୟିକାମାନଙ୍କର କୋମଳ କରପଲ୍ଲବ ମଧ୍ୟ ରୋଷେଇଶାଳାର ଧୂଆଁ ଓ ଅଳନ୍ଧୁ ବା ଗୃହର ବାସିପାଇଟି-ଯୋଗୁଁ ଅପରିଚ୍ଛନ୍ନ ଓ କଠିନୀଭୂତ । ସାରଳାଙ୍କ ରାଣୀ ଓ ରାଜକନ୍ୟାମାନେ ନାରୀଜନ୍ମର ସହଜାତ କ୍ଷୁଦ୍ର କ୍ଷୁଦ୍ର ଈର୍ଷା ପ୍ରକାଶ କରି ଗମ୍ଭୀର ପରିବେଶରେ ମଧ୍ୟ ହାସ୍ୟକର ହୋଇଉଠିଛନ୍ତି ।

କୃଷକ-କବିର ବାସ୍ତବ ଦୃଷ୍ଟିସମ୍ପନ୍ନ ପ୍ରତିଭା ମୂଳ ମହାଭାରତର ଗମ୍ଭୀର ଉଦାର ଚରିତ୍ରମାନଙ୍କୁ କିପରି ମନୋହର ପାର୍ଥିବତା ଦେଇପାରିଛି, ତା'ର ଦୁଇଟି ଉଦାହରଣ ଏଠାରେ ଦେଉଛୁ ।

---

"ମରଦ ଶରୀର ଭେଦ ବିଚାର ନଥିବ,
କଳା ଅବା ଗୋରା ତହିଁ ବରଜି ନ ଯିବ ।
ଅଛବ ହୋଇଲେ ମଧ୍ୟ ନଥିବ ବିଚାର,
ମାତରକ ଭୋଇମୂଳ ଆଦେଶ ହିଁ ସାର ।
ଏକ ଘର କରିଥିବ ଗ୍ରାମର ମଧର,
ଗୃହସ୍ଥ ନାମ ଯାହାର, ତାହାର ବିଚାର ।"

[ ପାଇକ ଖେଦା, ପହିଲି ଅଧ୍ୟାୟ ]

**ଗଙ୍ଗା** – ଦୃଷ୍ଟାନ୍ତସ୍ୱରୂପ, ସାରଳାଙ୍କର ଗଙ୍ଗା, ସଂସ୍କୃତ ମହାଭାରତ ବା ଭାରତୀୟ ପୁରାଣ ସାହିତ୍ୟର, ରାଜା ଶାନ୍ତନୁଙ୍କର ପ୍ରଣୟିନୀ ସୁନ୍ଦରୀ ଦେବୀ ଗଙ୍ଗା ନୁହନ୍ତି । ସାରଳା ମହାଭାରତରେ ସେ ହୋଇଉଠିଛନ୍ତି ଏକ ଅନମନୀୟା, ଅଦମନୀୟା, ପ୍ରଚଣ୍ଡା କଳିହୁଡ଼ୀ ପତ୍ନୀ । ମୂଳ ମହାଭାରତ ପଢ଼ିନଥିବାରୁ, କୃଷକ-କବି ଗଙ୍ଗାଙ୍କ ଚରିତ୍ର ବୋଧହୁଏ କଳ୍ପନା କରିଗଲେ ଦୁର୍ବାରଗତି, ବନ୍ୟାଭୀଷଣା ସେହି ଏକ ନଦୀର ବାସ୍ତବତାରୁ, ଯାହାର ନାମ ସେହି ଦେବୀ ବହନ କରିଥିଲେ । କୃଷକ-କବିଙ୍କ ପକ୍ଷରେ ଏହା ଏକ ସ୍ୱାଭାବିକ କଳ୍ପନା । ଗଙ୍ଗାଦେବୀ ଓ ଗଙ୍ଗାନଦୀ ଅଭିନ୍ନା । ବିଭୀଷିକାମୟୀ ଏକ ନଦୀ, ନାରୀରୂପ ଧରିଲେ, ଏକାବେଳକେ ସୁଶୀଳା ଓ ସୁନ୍ଦରୀ ହୋଇଉଠିବାହିଁ ଅସ୍ୱାଭାବିକ । ଏପରି ସବୁ କଳ୍ପନାରେ ଅଭ୍ୟସ୍ତ ସାଧାରଣ ହିନ୍ଦୁ ପାଠକ ପ୍ରତି ଏ ଚିତ୍ରଣ ଅସଙ୍ଗତ ବୋଧହୋଇପାରେ; କିନ୍ତୁ କୃଷକ-କବିର ଧର୍ମ-ନିରପେକ୍ଷ ସୃଜନଶୀଳ ଅନ୍ତର୍ଦୃଷ୍ଟି ଏକାବେଳକେ ଭ୍ରାନ୍ତ ବୋଲି କହିହେବ ନାହିଁ । ଅଧିକନ୍ତୁ ମୂଳ ମହାଭାରତର ବର୍ଣ୍ଣିତ ଗଙ୍ଗା ମନସ୍ତତ୍ତ୍ୱ ଦିଗରୁ ଏକ ଅସମ୍ଭବ ଚରିତ୍ର । ପ୍ରେମରୁ ଯାହାର ବିବାହ, ଏପରି ଏକ ଅର୍ଦ୍ଧାଙ୍ଗିନୀ, ପ୍ରିୟ-ପୁରୁଷର ସନ୍ତାନଗୁଡ଼ିକୁ ଜନ୍ମହେଲାକ୍ଷଣି ମାରିଦେବ କିପରି ?

କିନ୍ତୁ ସାରଳାଙ୍କ ଲେଖନୀରେ ଗଙ୍ଗାର ଶିଶୁହତ୍ୟା ଏକ ମନସ୍ତାତ୍ତ୍ୱିକ ଯୁକ୍ତିଯୁକ୍ତତା ପାଉଛି; କାରଣ ଏଠି ଗଙ୍ଗାଙ୍କର ବିବାହ ପ୍ରେମାତ୍ମକ ନୁହେଁ, ଏକ ବ୍ୟବସ୍ଥାପିତ ବିବାହ ମାତ୍ର; ଅର୍ଥାତ୍ ଯେଉଁ ବିବାହ ଗଙ୍ଗାଙ୍କ ଇଚ୍ଛା ବିରୁଦ୍ଧରେ ଘଟିଥିଲା । ବିବାହର ପ୍ରଥମରୁ ସାରଳାଙ୍କ ଗଙ୍ଗା ସ୍ୱାମୀଙ୍କୁ କହିଦେଇଛି ଯେ, 'ସେ ତାଙ୍କୁ ପିତାଙ୍କର ସତ୍ୟ ପାଳନ କରିବାକୁହିଁ ବାଧହୋଇ ବିଭାହୋଇଛି; ତେଣୁ ତା'ଠାରୁ ସେ ପ୍ରଣୟ ଆଶା ଯେପରି ନକରନ୍ତି !'

ପାର୍ଥିବ ନରନାରୀଙ୍କର ଜୀବନହିଁ ବର୍ଣ୍ଣନା କରେ ଯେଉଁ କାବ୍ୟ, ତାହା ସାରଳାଙ୍କ ଏପରି, ଏହି ନାୟିକା ଗଙ୍ଗାଙ୍କ ପରି ଅତିବାସ୍ତବ ହେବାହିଁ ସ୍ୱାଭାବିକ । ତେଣୁ ସାରଳାଙ୍କ ପଲ୍ଲୀ-ପ୍ରତିଭାରେ ସଂସ୍କୃତ ମହାଭାରତର ନାୟକ-ନାୟିକାବୃନ୍ଦ ହୈମାଳୟିକ ଉଚ୍ଚତାରୁ ଖସି, ଓଡ଼ିଶା ଗାଁର ଧାନବିଲ ଓ ଚାଳଘରମାନଙ୍କରେ ଯେପରି ସ୍ୱଚ୍ଛନ୍ଦ ଭାବରେ ଚଳାଚଳ ହୋଇଛନ୍ତି, ସେପ୍ରକାର ଦୁଃସାହସିକ ପରିବର୍ତ୍ତନ କେବଳ ପ୍ରଶଂସନୀୟ ନୁହେଁ, ତାହା କେବଳ ଉଚ୍ଚକୋଟୀର ସୃଜନୀ-ପ୍ରତିଭା ନିକଟରେହିଁ ସମ୍ଭବ ହୋଇଥାଏ ।

**ଦ୍ରୌପଦୀ**– ଏକ ଆଭ୍ୟନ୍ତରୀଣ ପଲ୍ଲୀଗ୍ରାମରେ, କୃଷକର ପରିବେଶରେ ଏବଂ ନଗର ଓ ଆଭିଜାତ୍ୟରୁ ବହୁଦୂରରେ ସାରଳା ଦାସ ବଢ଼ିଥିଲେହେଁ, ଆମେ ଦେଖି ନିରତିଶୟ ବିସ୍ମିତ ହେଉ ଯେ, ଏହି କୃଷକ-କବିର ପ୍ରତିଭା ସୂକ୍ଷ୍ମ, ପେଲବ ମାନବୀ ଓ ଦେବୀସୌନ୍ଦର୍ଯ୍ୟ ପ୍ରତି ମଧ କି ତୀବ୍ରଭାବରେ ସଚେତନ ଥିଲା ଏବଂ ତାଙ୍କ ସାମାଜିକ ଶ୍ରେଣୀର ବହୁ ଊର୍ଦ୍ଧ୍ୱରେ ବାସକରୁଥିବା ନର-ନାରୀଙ୍କର ଚରିତ୍ର ସମ୍ପର୍କରେ ତାଙ୍କର କି ଗଭୀର ଅନ୍ତର୍ଦୃଷ୍ଟି ଥିଲା । ମହାଭାରତର ନାୟିକା ଦ୍ରୌପଦୀହିଁ ଏହାର ପ୍ରକୃଷ୍ଟ ଦୃଷ୍ଟାନ୍ତ ।

ଭାରତର ତରୁଣ ରାଜକୁମାରବର୍ଗ ଦ୍ରୌପଦୀର ସୁଦୂର ଖ୍ୟାତ ରୂପଲୋଭରେ ପାଞ୍ଚାଳ ନଗରରେ ସମବେତ ଓ ଦ୍ରୌପଦୀଙ୍କ ମୁଖାବଲୋକନ ପାଇଁ ଉଚ୍ଛନ୍ନ । ଏଇ

ସମୟରେ ରାଜକୁମାରୀ ଦ୍ରୌପଦୀ ଏକ ଆବୃତ ହାନ୍ଦୋଳାରେ ସଭାସ୍ଥଳକୁ ଅଣାହେଲେ । ସେଥିରେ ସଭା ଅଧିକ ଉତ୍ତେଜିତ ଓ ଶଙ୍କାୟମାନ ହେବାକୁ ଲାଗିଲା । ସାହସ କରି ଦ୍ରୌପଦୀଙ୍କ ଭାଇ ଧୃଷ୍ଟଦ୍ୟୁମ୍ନଙ୍କୁ ଜରାସନ୍ଧ କହିଲେ, "ଶୁଣ ଧୃଷ୍ଟଦ୍ୟୁମ୍ନ, ମନର କଥା କେହି କହିପାରୁନାହାନ୍ତି । ତମେ ତମ ଭଉଣୀଙ୍କୁ ହାନ୍ଦୋଳା ଭିତରେ ଲୁଚାଇରଖିଲ, ତାଙ୍କୁ ତ କିଏ ଦେଖିଲେନି, ଏ ରାଜାଏ ଲାଖ ବିନ୍ଧିବେ କାହା ଲାଗି ? ତାଙ୍କୁ ବାହାରକୁ ଆଣ । ଏହି ସମବେତ ରାଜନ୍ୟ-ସଙ୍ଘକୁ ଶାନ୍ତ କରିବାର ସେଇ ଏକମାତ୍ର ଉପାୟ ।"

ଏହା ଶୁଣି ରାଜା ଦ୍ରୁପଦ କନ୍ୟାଙ୍କୁ ହାନ୍ଦୋଳାରୁ ଆଣି ସର୍ବସମକ୍ଷରେ ଠିଆହେବାକୁ ଆଦେଶ ଦେଲେ । କେଶିନୀ ଓ ଜୟସେନୀ ନାମିକା ଦୁଇ ସଖୀଙ୍କର ହାତ ଧରି ଦ୍ରୌପଦୀ ପ୍ରଥମ କରି ଭାରତର ସକଳ ତରୁଣ ରାଜା ଓ ରାଜକୁମାରମାନଙ୍କ ସମ୍ମୁଖରେ ବିରାଜିତା ହେଲେ । ସେମାନେ ଦ୍ରୌପଦୀଙ୍କର ସୌନ୍ଦର୍ଯ୍ୟ କଥା ଶୁଣିଥିଲେ; କିନ୍ତୁ ଇଏ କି ରୂପ ! ଉଦ୍ଭିନ୍ନଯୌବନା ଦ୍ରୌପଦୀଙ୍କର ରୂପ, ଗାତ୍ର ଓ ଅବୟବାଦିର ଅଲୋକ-ସାମାନ୍ୟ ସୁଷମା ଦେଖି ଅନେକଙ୍କର ସହସା ମାନସିକ ବିଭ୍ରମ ଘଟିଲା । ନିର୍ଝର ଦେଶର ରାଜା ଗଣପତି ସମ୍ଭାଳି ନ ପାରି କହିଉଠିଲେ – "ଏଭଳି ଏକ କନ୍ୟା ପାଇ ଏହି ରାଜା ଦ୍ରୁପଦର ସମଗ୍ର କୁଳହିଁ ଧନ୍ୟ ହେଲା ।"

"କୁଞ୍ଚିତ କେଶ ଏହାର କେଡ଼େ ମନୋହର
ବିହରନ୍ତି ପୁଷ୍ପଗନ୍ଧ ପାଇ ମଧୁକର ।
× × × ×
ଚାହାନ୍ତେ ବକ୍ରନୟନେ ହୃଦ ଯିବ ଫୁଟି
ଜନହିତେ ପୃଥିବୀରେ ରଖିଅଛି ଦୃଷ୍ଟି ।
କିଞ୍ଚିତ ମାତ୍ର ଏ ଯେବେ ଚାହିଁବ ସଭାକୁ
ଅନେକ ପୁରୁଷ ହତ୍ୟା ଲାଗିବ ଏହାକୁ ।"

ଦାମନର ରାଜା ନ ପଚାରି ରହିପାରିଲେ ନାହିଁ – "ଏ ରାଜକୁମାରୀର ଦେହରେ ଅଳଙ୍କାର ନାହିଁ କିପରି ?" ଦୁର୍ଯ୍ୟୋଧନ ଉତ୍ତର ଦେଲେ, "ତମେ ବାତୁଳ ହେଲ କି ? ଏ କଥା ବୁଝିପାରୁନାହଁ ? ଏପରି କୋମଳାଙ୍ଗୀ ଅଳଙ୍କାରର ଭାରା ସହିପାରିବ କି ?" କର୍ଣ୍ଣ ଥାଇ କହିଲେ, "ଏପରି ସୁନ୍ଦରୀର ସୁନାର ଅଳଙ୍କାରରେ କି ଆବଶ୍ୟକତା ? ତା'ର ନିଜର ସୌନ୍ଦର୍ଯ୍ୟ ସ୍ୱର୍ଣ୍ଣଠାରୁ ସହସ୍ର ଗୁଣ ଅଧିକ ମୂଲ୍ୟବାନ୍ !"

ଛଦ୍ମବେଶୀ ଅର୍ଜୁନ ଲାଖ ବିନ୍ଧି ଏହି ସ୍ୱପ୍ନ-ସୁନ୍ଦରୀକି ପାଇଲେ ଏବଂ ପାଣ୍ଡବ ଭାଇମାନଙ୍କ ସାଥିରେ ତାକୁ ନେଇଗଲେ ପାଞ୍ଚାଳନଗରର ବାହାରେ ଥିବା କୁମ୍ଭାରଶାଳାକୁ, ଯେଉଁଠି ଜନନୀ କୁନ୍ତୀ ଉଦ୍‌ବିଗ୍ନ ହୋଇ ସେମାନଙ୍କୁ ଅପେକ୍ଷା କରିଥିଲେ । ସେଠି ବିଳାସଲାଳିତା ସୁନ୍ଦରୀବରା ସେହି ରାଜକୁମାରୀଙ୍କୁ ବୃଦ୍ଧା ଶାଶୁ, ତାଙ୍କ ପୁଅମାନଙ୍କ ପରି, କୁମ୍ଭାରଶାଳାର ଅଗାର ପାଉଁଶ ଉପରେ ଶୋଇବାକୁ ଆଦେଶ ଦେଲେ । ରାଜପ୍ରାସାଦର ବିଳାସରୁ କୁମ୍ଭାରଶାଳାର ପାଉଁଶ-ଶଯ୍ୟାକୁ ଏ ଯେଉଁ ହଠାତ୍ ଓ ଅସମ୍ଭବ ପରିବର୍ତ୍ତନ,

ଅବସ୍ଥାର ଏହି ଭିନ୍ନତାକୁ ଅନୁଭବ କରିନଥିଲେ, ଆମେ ଦ୍ରୌପଦୀଙ୍କୁ ରକ୍ତମାଂସର ମନୁଷ୍ୟ ବୋଲି ମନେକରିନଥାନ୍ତୁ । ସାରଳାଙ୍କ ଲେଖନୀରେ ଏହି ସ୍ୱାଭାବିକ ନାରୀ କିନ୍ତୁ ହତାଶାରେ କାନ୍ଦିଉଠିଛି –

''ଦ୍ରୌପଧୀ ବିକଳ ହେଲେ ପାଉଁଶକୁ ଦେଖି
ହେ ଦଇବ, ମୋର କର୍ମେ ଏହା ଥିଲୁ ଲେଖି ।
ହଂସୁଲୀ ତୂଳୀର ମୁକ୍ତା ରତ୍ନ ଖଟ ଘେରି
ଖଟିଥାନ୍ତି ନିତ୍ୟ ଶତ ଶତ ପରିଚାରୀ ।
ସୁପାତି ଉପରେ ପୁଣି ଦାସୀ ନେତ ପାରି
ତହିଁ ଉପରେ କର୍ପୂରଗୁଣ୍ଡିକି ସିଞ୍ଚାଡ଼ି ।
ତହିଁ ଉପରେ ପଡ଼ଇ ଶରୀର ମୋହରି
କେମନ୍ତେ ଶୋଇବି ମୁଁ ଗୋ ପାଉଁଶ ଉପରି ।
ପାଞ୍ଚାଳ ରାଜାର ମୁହିଁ ଅଟଇ ଦୁଲଣୀ
ଦଇବପୁରୁଷ ମତେ ଏହା କଲା ଆଣି ।''

ଶାଶୁ କୁନ୍ତୀ ବୋହୂର ଥଙ୍ଗ-ଥଙ୍ଗ ଭାବ ଦେଖି କହିଲେ–

''କୁନ୍ତୀ ବୋଇଲେ ଭିକ୍ଷାଶୀ ଅଟନ୍ତି ମୋ ପୋଏ
ତୋ କର୍ମେ ଏହାଙ୍କୁ ତୁହି ପାଇଲୁ ଗୋ ମାଏ ।
ଯାହା ତୁ ଅରଜିଅଛୁ ତାହା ଭୋଗ କର
ସମ୍ପଦ ବିପଦ ଏ ଗୋ ସଂସାର ବେଭାର ।''

ମା'ଙ୍କ ସାଥେ ସାଥେ ଭୀମସେନ ମଧ୍ୟ ଗର୍ଜିଉଠିଲେ–

''ଏହା ଦେଖି ଭୀମସେନ ତରାଟିଣ ଚାହିଁ
କି ଚାହୁଁ ଦ୍ରୌପଦୀ; ଶୋଉ ନାହୁଁ ଲୋ କିପାଇଁ ?
ଦେଖି ମହାଭୟ କଲେ ଦ୍ରୁପଦକୁମାରୀ
ଏ ଦୁଷ୍ଟ ବ୍ରାହ୍ମଣ ମତେ ନପୁଣ ନ ମାରି ।''

ଦ୍ରୌପଦୀ ବର୍ତ୍ତମାନ ଭୟରେ ନିଦ୍ରା ଯିବାର ଛଳନା କରି ପାଞ୍ଚବରଙ୍କ ଗୋଡ଼ତଳେ ଶୋଇଗଲେ ଓ ମନେ ମନେ ବିଚାରିଲେ – 'ହାୟରେ ଭାଗ୍ୟ, ରାଜାର ଝିଅକରି ଜନ୍ମ ଦେଇ ଶେଷରେ ଭିକ୍ଷାଶୀ ବ୍ରାହ୍ମଣଙ୍କୁ ବିଭାକରାଇଲୁ !' ଏ ପ୍ରକାର ସୁନ୍ଦର, ମାନବିକ ବାସ୍ତବ ଚିତ୍ର ମୂଳ ମହାଭାରତରେ ଆଦୌ ନାହିଁ ।

ଏହି ଭୀରୁ ସୂକ୍ଷ୍ମ ସୁଷମାମଣ୍ଡିତା, ତନ୍ୱୀ ତରୁଣୀଙ୍କୁହିଁ ଆମେ ଦୁର୍ଯ୍ୟୋଧନ ରାଜସଭାରେ କିପରି ଦେଖୁ ? ସେଠାରେ ସେ କ୍ରୁଦ୍ଧା ନାଗୁଣୀ, ଝଟିକାର ଏକ ଜୀବନ୍ତ ମୂର୍ତ୍ତି । ସତ୍ୟ ଓ ନ୍ୟାୟ ପାଇଁ ତା'ର ଶରୀରର ପ୍ରତି ବିନ୍ଦୁ ବେପଥୁମାନ୍ । କୌରବ ଅତ୍ୟାଚାରରୁ ନିଜ ପତ୍ନୀକୁ ରକ୍ଷା କରିପାରୁନାହାନ୍ତି ଦେଖି ସେ ତା'ର ପାଞ୍ଚୋଟିଯାକ ବୀର ସ୍ୱାମୀଙ୍କୁ ଉପହାସରେ ଜର୍ଜରିତ କରୁଛି ।

ତା'ପରେ ଆମେ ଦ୍ରୌପଦୀଙ୍କୁ ଭେଟୁ ମହିମାମୟୀ ସାମ୍ରାଜ୍ଞୀରୂପେ । ସମ୍ରାଟ୍ ଯୁଧିଷ୍ଠିରଙ୍କ ସିଂହାସନର ଅର୍ଦ୍ଧେକ ଅଧିକାର କରି ସେ ମହାରାଣୀର ମୁକୁଟ ପରିଧାନ କରି ବିରାଜିତା; କିନ୍ତୁ ସଭାସ୍ଥଳକୁ ହଠାତ୍ ପ୍ରବେଶ କରିଆସେ, ଦ୍ରୌପଦୀର ସପତ୍ନୀ, ଭୀମଙ୍କ ଜାଙ୍ଗଳ ପତ୍ନୀର ପୁତ୍ର କୁମାର ଘଟୋତ୍କଚ । ସାରଳାଙ୍କ ଜୀବନ୍ତ ଲେଖନୀରେ, ସଉତୁଣୀ-ପୁଅକୁ ଦେଖିଦେଲାମାତ୍ରେ ଉଭେଇଗଲା ମହାରାଣୀ ଦ୍ରୌପଦୀଙ୍କର ରାଜକୀୟ ଗାମ୍ଭୀର୍ଯ୍ୟର କ୍ଷୀଣ ପ୍ରଲେପ । ସମଭାବରେ ଈର୍ଷାଳୁ ହିଡ଼ିମ୍ବିକାର ଶିଖାଣ ଅନୁସାରେ, ପୁଅ ଘଟୋତ୍କଚ ମଧ ସେହି ବିରାଟ ରାଜସଭାରେ ସମସ୍ତଙ୍କୁ ନମସ୍କାର ଜଣାଇଲା, କେବଳ ଛାଡ଼ିଗଲା ଦ୍ରୌପଦୀଙ୍କୁ । ଏଥିରେ ମହାରାଣୀଙ୍କର କ୍ରୋଧ ସମ୍ଭାଳି ହେଲାନାହିଁ ଓ ଘଟୋତ୍କଚର ଭଦ୍ରତାର ଅଭାବକୁ ଭର୍ତ୍ସନା କରିବା ସାଥେ ସାଥେ ତାକୁ ଅପମୃତ୍ୟୁର ଅଭିଶାପ ଦେଲେ । ହିଡ଼ିମ୍ବିକା ସଭାର ବାହାରେ ଠିଆରହି କାନଦେଇ ସବୁ ଶୁଣୁଥିଲା । ସେ ବର୍ତ୍ତମାନ ଏକ ତୋଫାନ ପରି ସଭାଗୃହକୁ ପଶିଆସିଲା ଏବଂ ଆରମ୍ଭ ହେଲା ଦୁଇ ସଉତୁଣୀଙ୍କ ଭିତରେ ଏକ ଜୀବନ୍ତ, ସ୍ୱାଭାବିକ, ନାରୀଜନୋଚିତ କଳି, ସ୍ଥାନ ଓ କାଳକୁ ଖାତିର ନ କରି । ଜାଙ୍ଗଳନାୟିକା ଗର୍ଜିଉଠିଲା –

"ଆଲୋ ତୁ ନିଜେ କ'ଣ ଭାବ୍, ମୋ ପୁଅକୁ ପୁଣି ଶାପ ଦେଲୁ ନିଜେ ଜଣେ ମା' ହୋଇ ? ପାଞ୍ଚଘଇତା ଯାର, ସେ ସ୍ତ୍ରୀକି ପୁଣି ସମ୍ମାନ କରିବେ ଲୋକ ? ମୋ ପୁଅ ତା' ରାଜ୍ୟରେ ରାଜା । ସେ କାହିଁକି ତତେ ମୁଣ୍ଡିଆ ମାରିବ ? ତୁ ପୁଣି ଆଣ୍ଠୁକୁଡ଼ୀ । ଆଣ୍ଠୁକୁଡ଼ୀ ମାଇକିନା ଅଶୁଭ, ୟା' କ'ଣ ତୁ ଜାଣିନୁ ? ଶୁଣ ଆଣ୍ଠୁକୁଡ଼ୀ, ଯଦିବା ତୋର କେବେ ପିଲା ହୁଏ, ଜାଣିଥା, ମୁଁ ତତେ ଓଲଟା ଶାପ ଦେଉଛି, ସେମାନେ ସାତବର୍ଷ ନହେଉଣୁ ମରିବେ ।"

ଏହା ମଧ ମୂଳ ମହାଭାରତରେ ନାହିଁ ।

**ସତ୍ୟାମ୍ର ଗଳ୍ପ –**

ବନପର୍ବରେ ସାରଳା ଦାସ ଏକ କୌତୂହଳୋଦ୍ଦୀପକ ଓ ବୋଧହୁଏ ଏକାନ୍ତ ନିଜସ୍ୱ ଏକ ମୌଳିକ ଗଳ୍ପ ଭର୍ତ୍ତିକରିଛନ୍ତି, ଯାହା ଅନ୍ତତଃ ସଂସ୍କୃତ ମହାଭାରତରେ ନାହିଁ । ଏହା ସତ୍ୟ-ଆମ୍ରର ଗଳ୍ପ । ପାଣ୍ଡବମାନେ ବାରବର୍ଷ କାଳ ବନରୁ ବନ ଓ ଦେଶରୁ ଦେଶାନ୍ତର ବୁଲୁଛନ୍ତି । ଦୁର୍ଯ୍ୟୋଧନଙ୍କ ଦରବାର ବେଳେ ଏହି ସମ୍ବାଦ ବିଚାରିତ ହେଲା ଯେ, ବନବାସୀ ପାଣ୍ଡବମାନେ ବଣେ ବଣେ ବୁଲି ବୁଲି ବୋଧହୁଏ ଜୀବନ ହରାଇସାରିଲେଣି । ସତ୍ୟ-ମିଥ୍ୟା ଜାଣିବାପାଇଁ ଜଣେ ବ୍ରାହ୍ମଣଙ୍କୁ ପଠାଗଲା; କାରଣ ଏହା ଜଣାଥିଲା ଯେ, ପାଣ୍ଡବମାନେ ବ୍ରାହ୍ମଣର ଯାଚ୍ନା କେବେ ପ୍ରତ୍ୟାଖ୍ୟାନ କରନ୍ତି ନାହିଁ । ଏହି ବ୍ରାହ୍ମଣ-ଦୂତକୁ ସେଥିପାଇଁ କୁହାଗଲା ଯେ ସେ ଅରତୁ ଫଳ ପରି କିଛି ଏକ ଅସମ୍ଭବ ଦ୍ରବ୍ୟ ଭିକ୍ଷା କରିବ । ବ୍ରାହ୍ମଣର ଭିକ୍ଷା ବୋଲି ଏହା ଯଦି କିଏ ଯେକୌଣସିମତେ ଯୋଗାଇଦେବ, ତେବେ ନିଶ୍ଚୟ ଜାଣିବା ଯେ ସେମାନେ ପାଣ୍ଡବ ।

ବ୍ରାହ୍ମଣ-ଦୂତ ଆଜ୍ଞାନୁସାରେ ଗଲା । ଏକ ଘୋର ବନରେ ସେ ଏକ ଗୋଷ୍ଠୀକି ଦେଖିଲା, ଯାହାଙ୍କୁ ସେ ଅନୁମାନ କଲା ପାଣ୍ଡବ ବୋଲି । ତେଣୁ ସେ ଭୀଷଣ କ୍ଷୁଧାର ଛଳନା କରି ଖାଦ୍ୟ ମାଗିଲା ଓ କ'ଣ ଖାଇବ ବୋଲି ପଚାରିବାରୁ କହିଲା ଯେ ସେ ପକ୍ୱ ଆମ୍ବ ଚାହେଁ । ତାହା ଥିଲା ଶରତ୍ କାଳ – ପକ୍ୱ ଆମ୍ବ ଆସିବ କାହୁଁ ? ତେଣୁ ପାଣ୍ଡବମାନେ ଘୋର ଭାଳେଣିରେ ପଡ଼ିଲେ । କ୍ଷୁଧାତୁର ବ୍ରାହ୍ମଣର ଅଭିଶାପରୁ ଉଦ୍ଧରିବା ପାଇଁ ସେମାନେ ଏ ସଙ୍କଟରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ଆସିଲେ ମଧ୍ୟ ଓ ପାଣ୍ଡବମାନଙ୍କୁ ଆଦେଶ ଦେଲେ ସଙ୍ଗେ ସଙ୍ଗେ ଏକ ଆମ୍ବ ଟାକୁଆ ମାଟିରେ ପୋତିବାକୁ; ଫଳରେ ଆମ୍ବଗଛଟିଏ ସଙ୍ଗେ ସଙ୍ଗେ ଠିଆହେଲା । ଶ୍ରୀକୃଷ୍ଣ କହିଲେ, ସେ ସିନା ଗଛ ଠିଆକରେଇଦେଲେ; କିନ୍ତୁ କେବଳ ସତ୍ୟର ଶକ୍ତିହିଁ ସେ ଗଛକୁ ଫଳବାନ୍ କରାଇପାରିବ । ସେ ପାଣ୍ଡବ ପାଞ୍ଚ ଭାଇ ଓ ଦ୍ରୌପଦୀ, ପ୍ରତ୍ୟେକଙ୍କୁ ସେ ଗଛ ଆଗରେ ନିଜ ନିଜର ପାପ ଓ ଦୁର୍ବଳତାକୁ ଅକୁଣ୍ଠଚିତ୍ତରେ ପ୍ରକାଶ କରିବାକୁ କହିଲେ ।

ପାଞ୍ଚ ଭାଇ ନିଁଜନିଜର ପାପ ଓ ଦୁର୍ବଳତାକୁ ପ୍ରକାଶ କଲେ । ସେ ସମସ୍ତର ବର୍ଣ୍ଣନାପାଇଁ ଏଠାରେ ସ୍ଥାନାଭାବ; କିନ୍ତୁ ସବୁଠାରୁ ବିସ୍ମୟକର ହେଉଛି, ଦ୍ରୌପଦୀଙ୍କର ସ୍ୱୀକାରୋକ୍ତି । ଶ୍ରୀକୃଷ୍ଣ ଓ ପଞ୍ଚସ୍ୱାମୀଙ୍କ ସମକ୍ଷରେ ଦ୍ରୌପଦୀ କହିଲେ ଯେ, ପଞ୍ଚସ୍ୱାମୀ ଥିଲେ ମଧ୍ୟ ତାଙ୍କର ବେଳେବେଳେ ବୀର ଓ ସୁନ୍ଦର କର୍ଣ୍ଣ ପ୍ରତି ଅଭିଳାଷ ହୁଏ ।(୧)

ଉତ୍କଳର ମହାନ୍ କୃଷକ-କବି ସାରଳା ଦାସ ସଂସ୍କୃତ ମହା-କାବ୍ୟର ନାୟକ-ନାୟିକା-ମାନଙ୍କୁ ଏହିପରି ନିଜସ୍ୱ ଜୀବନ୍ତ ରକ୍ତ-ମାଂସ-ରୀତିରେ ଚିତ୍ରିତ କରିଯାଇଛନ୍ତି । ତାଙ୍କର କୃଷକଚକ୍ଷୁ ସ୍ୱାଭାବିକ ଭାବରେ ଦେଶର ମୃତ୍ତିକାରୁ ଉପରକୁ ଉଠୁନଥିଲା । ତାଙ୍କ କୃଷକ-ଚିତ୍ତ ଜୀବନକୁ ରୋମାଣ୍ଟିକ୍ ବା ଦାର୍ଶନିକ ଦୃଷ୍ଟିକୋଣରୁ ଦେଖିବାରେ ଅଭ୍ୟସ୍ତ ନଥିଲା; କିନ୍ତୁ ଯା' ଦ୍ୱାରା ମହା-କାବ୍ୟର ନାୟକ-ନାୟିକାବୃନ୍ଦ ସତ୍ୟରେ ଆମ ଆଖିରେ କ୍ଷୁଦ୍ର ହୋଇ-ଉଠିଛନ୍ତି କି ? ସତ୍ୟ-ଆମ୍ବ ଗଳ୍ପରେ ତାଙ୍କର ସ୍ୱୀକାରୋକ୍ତି ବା ରାଜସୂୟ-ଦରବାରରେ ତାଙ୍କର ହିଡ଼ିମ୍ବିକା ସହିତ ସଉତୁଣୀ-କଳି ବା ବିବାହ-ରାତ୍ରିରେ କୁମ୍ଭାରଶାଳାରେ ତାଙ୍କର ରୁଦ୍ଧ ବିଳାପ-ଦ୍ୱାରା ଦ୍ରୌପଦୀଙ୍କର ବ୍ୟକ୍ତିତ୍ୱ ହୀନ ନହୋଇ ହୀରକର ବିଭିନ୍ନ ଉଜ୍ଜ୍ୱଳ ମୁଖପରି ବର୍ଣ୍ଣାଢ୍ୟ ହୋଇଉଠୁନାହିଁ କି ? ବରଂ ତାହାହିଁ ପ୍ରମାଣ କରୁନାହିଁ କି, ଆମର ଏହି ବରେଣ୍ୟ କୃଷକ-କବିଙ୍କର ଅସାଧାରଣ ସୃଜନୀ-ଶକ୍ତି, ରଚନାରେ ଦୁଃସାହସିକତା ଓ ମନୁଷ୍ୟ-ଚରିତ୍ରରେ ଗଭୀର ଅନ୍ତର୍ଦୃଷ୍ଟି ? ଦେବ-ଭକ୍ତିଶୀଳ କବି ନିଶ୍ଚୟ ଲଘୁଚିତ୍ତରେ ପୁରାଣର ପୂଜ୍ୟ ଚରିତ-

---

(୧) ସାରଳା ଦାସଙ୍କ ଓଡ଼ିଆ ମହାଭାରତ ପ୍ରତିବେଶୀ ଭାଷାମାନଙ୍କରେ କି ପ୍ରଭାବ ପକାଇ- ପାରିଥିଲା, ତାହାର ପ୍ରତ୍ୟକ୍ଷ ପ୍ରମାଣ ଯେ ସାରଳାଙ୍କ ଏହି ସତ୍ୟାମ୍ବ ଗଳ୍ପ ପ୍ରାୟ ଦୁଇଶହ ବର୍ଷ ପରେ ଲିଖିତ କାଶୀରାମ ଦାସଙ୍କ ବଙ୍ଗଳା ମହାଭାରତରେ ସ୍ଥାନ ପାଇଛି । ସଂସ୍କୃତ ମହାଭାରତରେ ଏହି ଘଟଣାରେ ଚିରକ୍ରୋଧୀ ଦୁର୍ବାସା ଦୁର୍ଯ୍ୟୋଧନଙ୍କଦ୍ୱାରା ପ୍ରେରିତ ହୋଇଅଛନ୍ତି; କିନ୍ତୁ ଦୁର୍ବାସାଙ୍କ କ୍ରୋଧ ପ୍ରକାଶ ପାଇବାପୂର୍ବରୁ ଶ୍ରୀକୃଷ୍ଣ ଅକ୍ଷୟ-ପାତ୍ର ସୃଷ୍ଟି କରି, ତାଙ୍କର ବୁଭୁକ୍ଷାର ବ୍ୟବସ୍ଥା କରିସାରିଥିଲେ ।

ରାଜିକୁ ବିକୃତ କରିବାକୁ ଯାଇନାହାନ୍ତି । ଆମ୍ଭମାନଙ୍କୁ ମନେ ରଖିବାକୁ ହେବ ଯେ, କବି ତାଙ୍କର ସମଗ୍ର ମହାକାବ୍ୟଟି ଜନୈକ ହିନ୍ଦୁ ଦେବତାର ଚକ୍ଷୁ ତଳେହିଁ ଲେଖିଚାଲିଥିଲେ । ତତ୍‌ସତ୍ତ୍ୱେ, ତାଙ୍କର କୃଷକ ପ୍ରତିଭା ଯେ ସ୍ୱ-ଧର୍ମ ଅନୁଯାୟୀ ସଂସ୍କୃତ ମହାକାବ୍ୟର ବିରାଟ ନାୟକ-ନାୟିକାମାନଙ୍କୁ ହୈମାଳୟିକ ଉଚ୍ଚତାରୁ ଗଣିଆଣି ଗ୍ରାମର ପଙ୍କିଳ ପଥ ଉପରେ ଚଳେଇପାରିଛି, ସେଥିପାଇଁ ଏହି ବିରାଟ ଶୂଦ୍ର ସମସ୍ତଙ୍କର ନମସ୍କାର ପାଇବାର କଥା ।

ସମଗ୍ର ଓଡ଼ିଆ ସାହିତ୍ୟରେ ସାରଳା ଦାସ ହେଉଛନ୍ତି ଏକମାତ୍ର ଲେଖକ, ଯାହାର ଲେଖନୀ 'ସାହିତ୍ୟ'ର ଅର୍ଥ ବୁଝିଥିଲା କେବଳ 'ଜୀବନ' । ସେ ସାହିତ୍ୟର ଅର୍ଥ ଦର୍ଶନ ବା ଧର୍ମ ବା ନୀତିଶିକ୍ଷା ବୋଲି ମାନିନାହିଁ । ସେ ପ୍ରତିଭା କୌଣସି ଆଦର୍ଶ ପ୍ରଚାର କରିବାର ଛଳନା କରିନାହିଁ । ସେ କେବଳ ଆମ ତମ ପରି ନାରୀ-ପୁରୁଷଙ୍କୁ ନେଇ ଗଳ୍ପ କହିବାକୁ ଉଦ୍ୟତ ଏବଂ ସେହି ଗଳ୍ପକୁ ହୃଦୟଗ୍ରାହୀ କରିବା ପାଇଁ ସ୍ୱାଭାବିକଭାବରେ ଅତିରଞ୍ଜିତ କରିବାକୁ ପ୍ରସ୍ତୁତ । ମୂଳ ମହାଭାରତରେ ଦାର୍ଶନିକ ଓ ତାତ୍ତ୍ୱିକ ଆଲୋଚନା- ସବୁକୁ ସାରଳା ଦାସ ତାଙ୍କର ଓଡ଼ିଆ ମହାଭାରତରୁ ସମ୍ପୂର୍ଣ୍ଣ ପୋଛିଦେଇଛନ୍ତି । ସାରଳା ମହାଭାରତରେ ସୁପ୍ରସିଦ୍ଧ 'ଭଗବଦ୍‌ଗୀତା'ର ଅଠର ଅଧାୟ, କହିବାକୁ ଗଲେ, ଅଠରଟି ପଂକ୍ତିରେ ଶେଷ । ମୂଳ ଅପେକ୍ଷା ଏହା ଅଧିକ ସ୍ୱାଭାବିକ; କାରଣ ଗୋଟାଏ ପୂରା ପୁସ୍ତକର ଅଠରଟିଯାକ ଅଧାୟର ପାରାୟଣ ସରିଲାଯାଏ ଯୁଦ୍ଧୋଦ୍ୟତ ଶତ୍ରୁ-ବାହିନୀ ଅପେକ୍ଷା କରି ରହିଥିବା କେହି ଆଶା କରିପାରେ କି ? ସାରଳାଙ୍କର ପାଣ୍ଡିତ୍ୟ ବା ବିଜ୍ଞତାର ସାମାନ୍ୟତମ ଅହଙ୍କାର ନଥିଲା । ସେ ବାରମ୍ବାର ନିଜର ନିମ୍ନଜନ୍ମ, ବିଦ୍ୟାହୀନତା ଓ ବୁଦ୍ଧିହୀନତାର କଥା ଉଲ୍ଲେଖ କରିଛନ୍ତି; କିନ୍ତୁ ସତ୍ୟ ବା ବିନୟର ତଳେ ଏକ ଉଚ୍ଚକୋଟୀର ସାହିତ୍ୟିକ ସୃଜନୀ-ଶକ୍ତି ତାଙ୍କ ଭିତରେ ଯେ ଜାଗ୍ରତ ଥିଲା, ତାହା ସେ ନିଜେ ହୁଏତ ଜାଣିନଥିଲେ ।

**ମୂଳ ଗ୍ରନ୍ଥ ଓଲଟପାଲଟ –**

ସାରଳା ଦାସ ମୂଳ ମହାଭାରତର ନାୟକ-ନାୟିକାମାନଙ୍କୁ ନିଜ ପ୍ରୟୋଜନ-ବୋଧରେ କେବଳ ପରିବର୍ତ୍ତନ କରିନାହାନ୍ତି, ସେ ମୂଳ ଗ୍ରନ୍ଥର କ୍ରମକୁ ମଧ ଭାଙ୍ଗି ଚୂରି ଯିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ମୂଳ ମହାଭାରତର ଅଠରଟି ବିଭାଗ ଓ ମୁଖ୍ୟ କଥାଟା ସମ୍ପର୍କରେ କୃଷକ-କବିଙ୍କର ଗୋଟାଏ ମୋଟାମୋଟି ଧାରଣା କେବଳ ଥିଲା ବୋଲି ମନେହେଉଛି । ତେଣୁ ମୂଳ ମହାଭାରତର ମାତ୍ର ଆଦ୍ୟ ଓ ଶେଷ ବିନ୍ଦୁ ଦୁଇଟି ଅପରିବର୍ତ୍ତିତ ରଖି ମଝିତକରେ ଓଡ଼ିଆ କବି ପୁରା ସ୍ୱାଧୀନ ହୋଇଉଠିଛନ୍ତି । ସାରଳାଙ୍କ ମହାଭାରତରେ ଆମେ ମୂଳରେ ଅନେକ ପ୍ରସିଦ୍ଧ ଗଳ୍ପ ଓ ଆଲୋଚନା ହରାଇଛୁ; କିନ୍ତୁ ପାଇଛୁ ମଧ ଅନେକ ନୂତନ ଗଳ୍ପ ଓ ଚରିତ୍ର, ଯେଉଁଗୁଡ଼ିକ ପ୍ରମାଣ କରୁଛି କବିଙ୍କର ଗଭୀର ବାସ୍ତବ-ଦୃଷ୍ଟି । ସାରଳା ଦାସ ବୋଧହୁଏ କୌଣସି ମୁହୂର୍ତ୍ତରେ ଭୁଲିଯାଇନାହାନ୍ତି ଯେ ତାଙ୍କ ମହାକାବ୍ୟ ଗ୍ରାମ୍ୟ ଜନ ପାଇଁହିଁ ସେ ଲେଖୁଥିଲେ । ମୂଳ ମହାଭାରତରେ ନଥିବା କଳି-ଅବତରଣାର ବର୍ଣ୍ଣନାଟି ଦୃଷ୍ଟାନ୍ତସ୍ୱରୂପ ନିଆଯାଇପାରେ ।

ଧର୍ମରାଜ ଯୁଧିଷ୍ଠିର ସ୍ୱର୍ଗଯାତ୍ରା ପାଇଁ ପ୍ରସ୍ତୁତ ହେଉଥିବା ସମୟରେ ତାଙ୍କ ରାଜ୍ୟର ଜନୈକ ବ୍ରାହ୍ମଣ ଭୂମ୍ୟାଧିକାରୀ ତାଙ୍କର ଶୂଦ୍ର ଭୃତ୍ୟକୁ ଆଦେଶ ଦେଲେ ଯେ, ସେ ତାଙ୍କ ଧାନଜମି ନିକଟରେ ଥିବା ଢିପଟାକୁ ଭାଙ୍ଗି ଜମି ସାଥିରେ ସମାନ କରିଦେଉ । ଭୃତ୍ୟ ତାହା କରିବାକୁ ଗଲା ଓ ଢିପ ହାଣୁ ହାଣୁ ଯୋଡ଼ିଏ ମାଣିକ୍ୟମଣ୍ଡିତ ସୁବର୍ଣ୍ଣ-କଙ୍କଣ ପାଇଲା । ଭୃତ୍ୟ ସେହି କଙ୍କଣଯୁଗଳ ବ୍ରାହ୍ମଣ-ସ୍ୱାମୀକୁ ଭେଟି ଦେଇ କହିଲା ଯେ, ଖୁବ୍ ସମ୍ଭବତଃ ତାହା ତାଙ୍କର କୌଣସି ପୂର୍ବପୁରୁଷ ସେଠାରେ ପୋତିଦେଇଥିଲେ; ବର୍ତ୍ତମାନ ସେ ତାହା ରଖନ୍ତୁ । ବ୍ରାହ୍ମଣ ସେ କଙ୍କଣ ନେବାକୁ ନାହିଁକଲେ । ସେ କହିଲେ, ସେ କେବଳ ଜମିର ଶସ୍ୟରେ ଭାଗୀ, ଜମି ନିମ୍ନସ୍ଥ ଦ୍ରବ୍ୟ ତାଙ୍କର ପାଇବାର ନୁହେଁ । ଭୃତ୍ୟ ନିଜେ ଖୋଳୁ ଖୋଳୁ ପାଇଛି ଯେତେବେଳେ ସେ ଦ୍ରବ୍ୟ ତା'ର । କିନ୍ତୁ ଭୃତ୍ୟ ଉତ୍ତର ଦେଲା ଯେ, ସେ କେବଳ ତା'ର ଦୈନିକ ମଜୁରି ପାଇବାକୁ ହକ୍‌ଦାର, ଅନ୍ୟ କୌଣସି ଧନରତ୍ନ ପାଇଁ ନୁହେଁ; ତେଣୁ କଙ୍କଣ ନେଇ ସେ ପାପଭାଗୀ ହେବାକୁ ଚାହେଁନା । ପ୍ରଭୁ ଓ ଭୃତ୍ୟ କୌଣସି ସମାଧାନରେ ପହଞ୍ଚି ନପାରି ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟକୁ ଗଲେ । ଯୁଧିଷ୍ଠିର ଏ କଳହ ଶୁଣି କୌତୂହଳାକ୍ରାନ୍ତ ହେଲେ; କିନ୍ତୁ ନିଜେ କୌଣସି ସିଦ୍ଧାନ୍ତକୁ ଆସି ନପାରି ବିଜ୍ଞ ମନ୍ତ୍ରୀ ସହଦେବଙ୍କ ଆଡ଼କୁ ଚାହିଁଲେ ।

ସହଦେବ ପ୍ରକାଶ କଲେ ଯେ, ଏହା ସତ୍ୟଯୁଗର ପ୍ରଭାବ । ଶ୍ରୀକୃଷ୍ଣଙ୍କ ଆଦେଶରେ ସେ କଳିକି ବାନ୍ଧି ରଖିଛନ୍ତି । କାରଣ ଶ୍ରୀକୃଷ୍ଣ ଚାହିଁଥିଲେ ଯେ, ଯୁଧିଷ୍ଠିରଙ୍କ ରାଜତ୍ୱର ଶେଷଦିନଯାଏଁ ଏ ଧରାରେ ସତ୍ୟଯୁଗହିଁ ବିରାଜିତ ରହୁ । ଯେଉଁ ଦିନ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପକ୍ଷରୁ ଦୌତ୍ୟ କରି ଦୁର୍ଯ୍ୟୋଧନଙ୍କ ରାଜସଭାକୁ ଯାଇଥିଲେ, ସେହି ଦିନ ଏ ଧରାକୁ କଳି ଅବତୀର୍ଣ୍ଣ ହେଲେ । ଶ୍ରୀକୃଷ୍ଣ ଓ ସହଦେବ ଉଭୟେ ତାହା ଦେଖିଥିଲେ । ଶ୍ରୀକୃଷ୍ଣ ସହଦେବଙ୍କୁ ଆଦେଶ ଦେଇଥିଲେ ଯେ, ସେ କଳିକି ଧରି ଗୋଟିଏ ଖମ୍ବରେ ବାନ୍ଧି ରଖନ୍ତୁ । ଯୁଧିଷ୍ଠିରଙ୍କ ରାଜତ୍ୱର ଶେଷ ଦିନ ପର୍ଯ୍ୟନ୍ତ ସେ ସେହିପରି ବନ୍ଧାହୋଇଥିବ । ବର୍ତ୍ତମାନ ପରୀକ୍ଷିତ ରାଜା ହେଲେଣି । ଯୁଧିଷ୍ଠିର ପୃଥିବୀ ତ୍ୟାଗ କରିବା ଉପରେ । ତେଣୁ ସେ କଳିକୁ ବନ୍ଧନମୁକ୍ତ କରିବାକୁ ଯାଉଛନ୍ତି ।

କଳି ବନ୍ଧନ-ମୁକ୍ତ ହେଲାକ୍ଷଣି, ବ୍ରାହ୍ମଣ-ସ୍ୱାମୀ ଓ ଶୂଦ୍ର-ଭୃତ୍ୟର ବିବାଦ ହଠାତ୍ ଅନ୍ୟ ରୂପ ଧାରଣ କଲା । ବ୍ରାହ୍ମଣ ବର୍ତ୍ତମାନ କଙ୍କଣଯୁଗଳକୁ ନିଜର ବୋଲି ଦାବିକଲେ; କାରଣ ତାହା ତାଙ୍କ ଜମିରୁ ବାହାରିଛି । ଭୃତ୍ୟ ଦାବିକଲା ଯେ ବ୍ରାହ୍ମଣ-ସ୍ୱାମୀ ଜମି ଉପର ଶସ୍ୟରେ ସିନା ହକ୍‌ଦାର, ଜମି ତଳେ ଥିବା ସଂପଦରେ ତାଙ୍କର ଅଧିକାର ନାହିଁ । ଅଧିକନ୍ତୁ ସେ ସେହି କଙ୍କଣ ନିଜେ ଖୋଳି ପାଇଛି । ସେ ତାକୁ ତା'ର ଶ୍ରମର ପୁରସ୍କାରରୂପେ ପାଇବାର କଥା ।

କଳିଯୁଗର ରାଜା ପରୀକ୍ଷିତ ବର୍ତ୍ତମାନ ସ୍ୱାମୀ-ଭୃତ୍ୟର ବିବାଦ ଶୁଣି ରାୟ ଦେଲେ ଯେ, କଙ୍କଣ ସ୍ୱାମୀର ନୁହେଁ କି ଭୃତ୍ୟର ନୁହେଁ; ତାହା ରାଜାର । ସେ ତତ୍‌କ୍ଷଣାତ୍ ମୂଲ୍ୟବାନ୍ କଙ୍କଣଯୋଡ଼ିକୁ ରାଜଗନ୍ତାଘରେ ରଖିଦେବାକୁ ଆଦେଶ ଦେଲେ ।

ଖୁବ୍ ସମ୍ଭବତଃ ମହାକବି ସାରଳା ଦାସ ନିଜ ଜୀବନକାଳରେ ଏପ୍ରକାର ହୁଣ୍ଡାକିଆ ନ୍ୟାୟ ବିଚାରର ଅନେକ ଦୃଷ୍ଟାନ୍ତ ଦେଖିଥିବେ ଓ ଦେଖି ବିଦ୍ରୋହୀ ହୋଇଉଠିଥିବେ ନିଜ ଅନ୍ତରରେ । ଏହି ଗଳ୍ପର ରୂପକଥା ତଳେ ଆମେ ହୁଏତ କବିଚିତ୍ତର ସେହି ଅବ୍ୟକ୍ତ ବିଦ୍ରୋହକୁ ଆଜି ଦେଖିପାରୁଛୁ ।

**ସାମାଜିକ ଦ୍ୱନ୍ଦ୍ୱର ଛାୟା –**

ସାରଳା ଦାସ ଯେ ତାଙ୍କର ସମଗ୍ର ମହାକାବ୍ୟଟି ଲେଖିବାରେ ନିଜର ସ୍ୱକୀୟ ପର୍ଯ୍ୟବେକ୍ଷଣ ଉପରେହିଁ ନିର୍ଭର କରିଥିଲେ ଏବଂ ନିଜର ଦୈନନ୍ଦିନ ଜୀବନର ଓ ସାମୟିକ କାଳର ରାଜନୈତିକ ଓ ଐତିହାସିକ ଘଟଣାବଳୀକୁ ଚତୁରତାର ସହିତ ନିଜ ସୃଷ୍ଟିରେ କାର୍ଯ୍ୟରେ ଲଗାଇପାରିଥିଲେ, ତାହା ଏହି ମାଣିକ୍ୟ କଂକଣ ଗଳ୍ପ କେବଳ ନୁହେଁ, ଏହିପରି ଅନେକ ଗଳ୍ପହିଁ ପ୍ରମାଣ କରେ । ଆଦିପର୍ବରେ ସେ ଯେଉଁ ବ୍ରାହ୍ମଣ ଓ ଚଣ୍ଡାଳ ସଂଗ୍ରାମ ବର୍ଣ୍ଣନା କରିଛନ୍ତି, ତାହା ସାମାଜିକ, ଐତିହାସିକ ଓ ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ଉଭୟ ଗୁରୁତ୍ୱପୂର୍ଣ୍ଣ ଓ କୌତୂହଳମୟ । ଏହା ହୁଏତ ବ୍ରାହ୍ମଣ-ଅବ୍ରାହ୍ମଣ ଦ୍ୱନ୍ଦ୍ୱ ବା ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟ ଅଭିଯାନ ବା କବିଙ୍କ ପୂର୍ବରୁ ଓଡ଼ିଶାରେ ଏକ ବ୍ରାହ୍ମଣ ରାଜବଂଶ ସ୍ଥାପନ ପରି କୌଣସି ଅସଂଲଗ୍ନ ଅଥଚ ସ୍ମରଣୀୟ ଘଟଣାର ପ୍ରତିବିମ୍ବ ପରି ବୋଧହେଉଛି । ଏହି ଗଳ୍ପଟିର ଯଥାର୍ଥ ତାତ୍ପର୍ଯ୍ୟ ପ୍ରକୃତରେ ରହସ୍ୟମୟ ଓ ବ୍ୟଞ୍ଜନାପୂର୍ଣ୍ଣ । ଏକାଧାରାରେ ଗଳ୍ପଟି ଏହିପରି –

ଅଜ୍ଞାତବାସ କାଳରେ ଭାରତସାରା ବୁଲୁ ବୁଲୁ ପାଣ୍ଡବମାନେ ଗୋଦାବରୀ ନଦୀ-କୂଳସ୍ଥ ତୀର୍ଥସ୍ଥାନ ଓଡ଼ାଦୀ ଶିବପୁରକୁ ଆସିଲେ । ଏ ସ୍ଥାନ ଏବେ ବି ଏକ ହିନ୍ଦୁତୀର୍ଥରୂପେ ବିରାଜିତ । ସେଠାରେ ମା' କୁନ୍ତୀ ସହିତ ପାଣ୍ଡବମାନେ ବିଷ୍ଣୁକର ପଣ୍ଡା ନାମକ ବ୍ରାହ୍ମଣ ଘରେ ରହିଲେ । ଏଇ ସମୟରେ ଗୌତମୀ ତୀର୍ଥରେ ବୁଡ଼ପଡ଼ିବା ଶୁଣି ବିଷ୍ଣୁକର ପଣ୍ଡାଙ୍କ ପାଖରେ ମା'କୁ ଛାଡ଼ିଦେଇ ସବୁ ପାଣ୍ଡବ ଭାଇ ଯିବାକୁ ବସିଲେ; କିନ୍ତୁ କୁନ୍ତୀ କହିଲେ ଯେ ସେମାନେ ଭୀମକୁ ସାଥିରେ ନନେଲେ ଭଲ ହୁଅନ୍ତା; କାରଣ ବୁଡ଼କୁ ଦୁର୍ଯ୍ୟୋଧନ ପ୍ରଭୃତି ଆସିଥିବେ, ତା ଯୋଗୁଁ ଗୋଳମାଳ ହୋଇପାରେ । ଶେଷରେ ତାହାହିଁ ହେଲା ।

ଦିନେ ଭୀମ ଦେଖିଲେ ଯେ କ୍ଷୁଦ୍ର ନଗର ଓଡ଼ାଦୀ ଶିବପୁରର ଶାନ୍ତ ବାତାବରଣ ଚଞ୍ଚଳ ହୋଇଉଠିଛି । ନଗରରେ ଯୁଦ୍ଧ ପାଇଁ ପ୍ରସ୍ତୁତି ଚାଲିଛି । ନାଗରିକମାନେ ଉଚ୍ଚସ୍ୱରରେ ଡାକହାକ କରି ଲଢ଼େଇ ପାଇଁ ସଜ ହେଉଛନ୍ତି । ଭୀମ ବିଷ୍ଣୁକର ପଣ୍ଡାକୁ କାରଣ ପଚାରିଲେ । ବିଷ୍ଣୁକର ପଣ୍ଡା ଏହିପରି ଉତ୍ତର ଦେଲେ –

'ବହୁକାଳ ପୂର୍ବେ ଶିବପୁରରେ ଜଣେ ପୁଣ୍ୟାତ୍ମା ବ୍ରାହ୍ମଣ ବାସକରୁଥିଲେ । ତାଙ୍କର ବିବାହିତା ବ୍ରାହ୍ମଣୀ ପତ୍ନୀଆଡୁ ଦୁଇଟି ପୁତ୍ର ଜାତ ହେବାପରେ ସେ ତୀର୍ଥଯାତ୍ରା କରିଗଲେ । ପୁଣ୍ୟତୋୟା ବୈତରଣୀରେ ସ୍ନାନ କରିବାକୁ ଯିବା ବାଟରେ ବୁଦ୍ଧକୂଟ ପର୍ବତ ନିକଟରେ ଏକ ପ୍ରଗଳ୍ଭା ଚଣ୍ଡାଳ-ଯୁବତୀ ସେହି ରୂପବନ୍ତ ବ୍ରାହ୍ମଣଙ୍କୁ ବଶ କରି ନେଇଗଲା । ସେ

ତାଙ୍କୁ ଦଶବର୍ଷକାଳ ମୋହଗ୍ରସ୍ତ କରି ରଖିଲା ଓ ତାଙ୍କ ଆଡୁ ଦଶଟି ପୁତ୍ର ଜନ୍ମ କଲା । ସେହିଦିନଠାରୁ ସେହି ବ୍ରାହ୍ମଣର ବ୍ରାହ୍ମଣୀଆଡ଼ର ପିଲା ଓ ଚଣ୍ଡାଳୀଆଡ଼ର ପିଲାଙ୍କ ଭିତରେ ସଂଗ୍ରାମ ଚାଲିଆସିଛି । ଚଣ୍ଡାଳମାନେ ଉଡ୍ରଦେଶରୁ (ଓଡ଼ିଶାରୁ) ଆସନ୍ତି । ସେମାନେ ଅତ୍ୟନ୍ତ ବର୍ବର ଓ ଅସଭ୍ୟ । ସେମାନେ କେବଳ ସମ୍ପତ୍ତି ଲୁଣ୍ଠନ କରନ୍ତି ନାହିଁ, ରୂପବତୀ ବ୍ରାହ୍ମଣ କନ୍ୟାମାନଙ୍କୁ ହରଣ କରି ନେଇଥାନ୍ତି । ପ୍ରତିବର୍ଷ ଶ୍ରାବଣ ମାସରେ ସେମାନେ ଏଇ ପ୍ରକାର ଲୁଣ୍ଠନ ପାଇଁ ଶିବପୁର ଆକ୍ରମଣ କରିଥାନ୍ତି । ଏହି ହେଉଛି ତାଙ୍କର ଆସିବା ବେଳ । ତାଆରି ପାଇଁ ଏ ଯୁଦ୍ଧ ଆୟୋଜନ ।'

ଉଡ୍ରଦେଶର ଚଣ୍ଡାଳମାନେ ସତରେ ଶିବପୁରକୁ ମାଡ଼ିଆସିଲେ । ବିଷ୍ଣୁକର ପଣ୍ଡା ସହିତ ଭୀମ ଦୂରରେ ଠିଆହୋଇ ଏ ଆକ୍ରମଣ ଦେଖୁଥିଲେ; କିନ୍ତୁ ଚଣ୍ଡାଳମାନେ ନିକଟତର ହୁଅନ୍ତେ, ବିଚରା ବିଷ୍ଣୁକର ପ୍ରାଣଭୟରେ ପଳାଇବାକୁ ବସିବାରୁ, ଭୀମ ତାଙ୍କୁ ବହୁ କଷ୍ଟରେ ଅଟକାଇ ରଖିଲେ ଓ ନିକଟସ୍ଥ ଏକ ବୃକ୍ଷ ଉତ୍ପାଟିତ କରି ଚଣ୍ଡାଳମାନଙ୍କ ଉପରକୁ ଝାମ୍ପିପଡ଼ି, ଏପରି ପ୍ରହାର ଦେବାକୁ ଲାଗିଲେ ଯେ, ସେମାନେ ଅଳ୍ପକାଳ ଭିତରେ ଚତୁର୍ଦ୍ଦିଗକୁ ବିକ୍ଷିପ୍ତ ଭାବରେ ପଳାୟନ କଲେ ।

ଯା' ପରେ ଶିବପୁରର ନାଗରିକମାନେ ଏକତ୍ର ହୋଇ ସେମାନଙ୍କର ରାଜା ନଥିବାରୁ ଭୀମଙ୍କୁ ରାଜା କଲେ । ଭୀମ ରାଜା ହେଲେ ଓ ବିଷ୍ଣୁକର ପଣ୍ଡାଙ୍କୁ ମନ୍ତ୍ରୀ ପଦରେ ନିଯୁକ୍ତ କଲେ । ଭୀମ ପ୍ରତିବେଶୀ ଅଞ୍ଚଳ ସବୁ ଆକ୍ରମଣ ଓ ଅଧିକାର କରି ଭାଇମାନେ ଫେରିଲାବେଳକୁ ଶିବପୁର ରାଜ୍ୟର ସୀମାକୁ ମଧ୍ୟ ବେଶ୍ ବିସ୍ତୃତ କରିପାରିଥିଲେ । ପାଣ୍ଡବମାନେ ତୀର୍ଥଯାତ୍ରାରୁ ଫେରିଆସନ୍ତେ, ଭୀମ ବିଷ୍ଣୁକର ପଣ୍ଡାଙ୍କୁ ସେହି ରାଜ୍ୟର ରାଜା କରିଦେଇ, ସେଠାରୁ ବିଦାୟନେଲେ । ଯୁଧିଷ୍ଠିରଙ୍କ ରାଜସୂୟ ଉତ୍ସବବେଳେ ଆମେ ବିଷ୍ଣୁକର ପଣ୍ଡାଙ୍କୁ ଦକ୍ଷିଣ-ଭାରତର ଜଣେ ବହୁମାନ୍ୟ ରାଜନ୍ୟ ଅତିଥିରୂପେ ଦେଖୁଁ ।

**କବିଙ୍କର ନିମ୍ନଜନ ପାଇଁ ଗଭୀର ମମତା –**

ଏହା ମଧ୍ୟ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ ଯେ ହିନ୍ଦୁ ସମାଜର ଏକ ନିମ୍ନ-ଶ୍ରେଣୀର ଲୋକ ହେଲେହେଁ, ସାରଳା ଦାସ ତାଙ୍କ ମହାଭାରତରେ ପତିତ ଜନତା ପାଇଁ ଉଦାର ସମ-ବେଦନା ପ୍ରଦର୍ଶନ କରିଯାଇଛନ୍ତି । ସମାଜର ଘୃଣ୍ୟଜନ ସଂଘରୁହିଁ ସେ ଆମ ଆଗରେ ସୁନାର ମାନବିକ ପ୍ରତିମାସବୁ ଗଢ଼ି ଥୋଇଛନ୍ତି । ଜାରା ଶବର ତାଙ୍କ ମହା-କାବ୍ୟରେ ସମଗ୍ର ଅନାର୍ଯ୍ୟ-ସଂସ୍କୃତିର ପ୍ରତୀକରୂପେ ଦଣ୍ଡାୟମାନ । ଅନାର୍ଯ୍ୟ ବୋଲି ଦ୍ରୋଣ ଯାହାକୁ ସମରବିଦ୍ୟା ଶିଖାଇବାକୁ ନାସ୍ତି କଲେ, ତା'ର ନାମ ଜାରା, ପରେ ହେଲା ସେ ଏକଲବ୍ୟ । ଜାରା ଶ୍ରୀକୃଷ୍ଣଙ୍କୁ ହତ୍ୟା କରେ । ଜାରା ପୁଣି ଶ୍ରୀକୃଷ୍ଣଙ୍କର ଭାସମାନ ଅଦଗ୍ଧ ହୃତ୍‌ପିଣ୍ଡକୁ ଅନିଷା କରି କରି ଭାରତୀୟ ଉପମହାଦେଶର ସମଗ୍ର ସାଗରବେଳା ଭ୍ରମି ଭ୍ରମି ପହଞ୍ଚେ ଆସି ପୁରୀରେ ଓ ସେଇଠି ତାକୁ ସମୁଦ୍ରଜଳରୁ ଓଟାରିଆଣେ । ସାରଳା ଦାସ

ନିଜେ ଏହା କଳ୍ପନା କରିଥାନ୍ତୁ ବା ଅନ୍ୟ କାହାର କଳ୍ପନାକୁ ପ୍ରଚାର କରିଥାନ୍ତୁ, କିନ୍ତୁ ଏହା ନିଶ୍ଚିତ ଯେ, ତାଙ୍କରି ମହାକାବ୍ୟରେ ସ୍ଥାନ ପାଇ ଓଡ଼ିଶାରେ ଏହା ଜାତୀୟ ଚେତନାରେ ସ୍ଥିର ସ୍ଥାନ ପାଇଯାଇଛି ଯେ ଜରା ଶବର-ଉଦ୍ଧୃତ ଶ୍ରୀକୃଷ୍ଣଙ୍କର ସେହି ଅର୍ଦ୍ଧଦଗ୍ଧ ହୃତ୍‌ପିଣ୍ଡହିଁ ଏବର ଜଗନ୍ନାଥ । ଅନ୍ୟ କଥାରେ, ଶ୍ରୀକୃଷ୍ଣହିଁ କଳିଯୁଗରେ ମାନବୋପକାର ପାଇଁ ଜଗନ୍ନାଥରୂପ ଧାରଣ କରିଛନ୍ତି ।

ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁପୂଜା ଉଦ୍ଦେଶ୍ୟରେ ବିଷ୍ଣୁ ପ୍ରତିମାର ସଂଧାନ ପାଇଁ ଯେତେବେଳେ ଚାରିଆଡ଼େ ଦୂତ ପଠାଇଲେ, ବ୍ରାହ୍ମଣ ବିଶ୍ୱାବସୁ ତାଙ୍କୁ ମହୋଦଧିକୂଳସ୍ଥ ନୀଳପର୍ବତର ଅରଣ୍ୟରେ ଜରା ଶବରଦ୍ୱାରା ଗୋପନରେ ସଂରକ୍ଷିତ ଓ ପୂଜିତ ହେଉଥିବାର ଦେଖିପାରିଲେ । ନାନା ଘଟନା ପରେ, ଶବର ଜରାର ଅରଣ୍ୟ କନ୍ଦରା ତ୍ୟାଗ କରି ରାଜା ଇନ୍ଦ୍ରଦ୍ୟୁମ୍ନ ନିର୍ମିତ ବିରାଟ ମନ୍ଦିରରେ ବିଷ୍ଣୁ ରହିବାକୁ ସ୍ୱୀକୃତ ହେଲେ । ବିଷ୍ଣୁ ରାଜାଙ୍କୁ ସ୍ୱପ୍ନରେ ଜଣାଇଲେ ଯେ, ସେ ଯେଉଁ ମୂର୍ତ୍ତିରେ ମନ୍ଦିରରେ ବିରାଜମାନ ହେବେ, ତାହା ତହିଁ ଆରଦିନ ପ୍ରାତଃକାଳରେ କୁଣ୍ଡରେ ଦେଖିବାକୁ ମିଳିବ । ତହିଁ ଆରଦିନ ପ୍ରାତଃକାଳରେ ସେହି କୁଣ୍ଡ-ଜଳର ନିମ୍ନରେ ସେହି ପ୍ରତିମା ଦେଖିବାକୁ ମିଳିଲା । ରାଜା ନିଜେ ତାକୁ କୁଣ୍ଡରୁ ଉଠାଇଆଣିବାକୁ ଚେଷ୍ଟାକଲେ; କିନ୍ତୁ ସେ ପ୍ରତିମା ଏତେ ଭାରୀ ବୋଧହେଲା ଯେ, ରାଜା ତ ରାଜା, ତାଙ୍କର ସୈନ୍ୟ-ସାମନ୍ତ ତାକୁ ଘୁଞ୍ଚାଇ ପାରିଲେ ନାହିଁ । ରାଜା ବାଧ ହୋଇ ଅଧାପଡ଼ିଲେ । ଦେବତା ତାଙ୍କୁ ପୁଣି ସ୍ୱପ୍ନରେ କହିଲେ — ରାଜା ବା ରାଜାର ସୈନ୍ୟବଳ ତାଙ୍କୁ ଘୁଞ୍ଚାଇ ପାରିବେ ନାହିଁ । ସେ ଘୁଞ୍ଚିବେ କେବଳ ଯଦି ଏକ ପଟେ ଅନାର୍ଯ୍ୟ ଜରା ଓ ଅନ୍ୟ ପଟେ ଆର୍ଯ୍ୟ (ବ୍ରାହ୍ମଣ) ବିଶ୍ୱାବସୁ ତାଙ୍କୁ ଧରି ଟେକିନିଅନ୍ତି ।

ସେୟାହିଁ ହେଲା ଓ ଜଗନ୍ନାଥ ବିଜେକଲେ; କିନ୍ତୁ ଜଣେ କୃଷକ-କବିର ଚତୁର୍ଦ୍ଦଶ-ପଞ୍ଚଦଶ ଶତାବ୍ଦୀରେ ଏ ପ୍ରକାର ଗଭୀର ଅନ୍ତର୍ଦୃଷ୍ଟି-ସମ୍ପନ୍ନ କଳ୍ପନା କଥା ଭାବିଲେ ଆଜି ଆମକୁ ବିସ୍ମୟରେ ଅଭିଭୂତ ହେବାକୁ ପଡୁଛି । କାରଣ ଏ କଳ୍ପନାରେ ସେହି କୃଷକ-କବି ଆଜିଠୁ ଛଅଶ' ବର୍ଷତଳେ ସକଳ ସାମାଜିକ ବିଭେଦର କ୍ଷୁଦ୍ରତାକୁ ଡେଇଁ ମୁକ୍ତକଣ୍ଠରେ ଘୋଷଣା କରିପାରିଛି ଦେବତାର ମୁଖରେ ଯେ, ଭାରତର ଆଧ୍ୟାତ୍ମିକ ପୁଷ୍ପୋଦ୍‌ଗମ କେବଳ ଘଟିପାରେ ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ସମ୍ମିଶ୍ରଣରେ ।

ସାରଳା ମହାଭାରତର ଏହି ଗଳ୍ପ ପରେ ଗାଥା ଓ ଯାତ୍ରା ଆକାରରେ ପଲ୍ଲବିତ ହୋଇ ଓଡ଼ିଶାରେ ପରିବ୍ୟାପ୍ତ ଭାବରେ ପ୍ରଚାରିତ ହୋଇଯାଇଛି । ଅଷ୍ଟମ ଅଧ୍ୟାୟରେ ଏହା ପୁଣି ଆଲୋଚନାର ବିଷୟ ହେବ । [୧]

---

(୧) ବଙ୍ଗଳା ମହାଭାରତର ଲେଖକ କାଶୀରାମ ଦାସଙ୍କ ଭାଇ ଗଦାଧର ଦାସ ସାରଳା ମହାଭାରତର ଏହି ଗଳ୍ପକୁ ଅବଲମ୍ବନ କରି 'ଜଗନ୍ନାଥ-ମଙ୍ଗଳ' କାବ୍ୟ ରଚନା କରିଛନ୍ତି । ଏହି କାବ୍ୟର ଭାଷା ଓଡ଼ିଆ ବାକ୍‌ଧାରା-ମୟ । ଏଇ ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ ସପ୍ତମ-ନବମ ଶତାବ୍ଦୀର ଅପଭ୍ରଂଶ-ଲିଖିତ ବୌଦ୍ଧ କବିତାବଳି ଆଲୋଚନା କଲାବେଳେ ଲେଖକ ସେଗୁଡ଼ିକ ବଙ୍ଗଳାର ପଦାର୍ଥ ନହୋଇ ଓଡ଼ିଶାର ବୋଲି ଦାବି କରିବା ଲକ୍ଷ୍ୟରେ, ସେଗୁଡ଼ିକ କିପରି ଶବର-

**ସାରଳାଙ୍କ ମହାଭାରତରେ ଜୈନ ଓ ବୌଦ୍ଧ ଧର୍ମର ଛାୟା –**

ଆମେ ଜାଣୁ ଯେ, ମହାଭାରତ ଏକ ସମର-କାବ୍ୟ । ମୂଳରୁ ଶେଷ ପର୍ଯ୍ୟନ୍ତ ଏଥିରେ ଅଗଣିତ କ୍ଷୁଦ୍ର ଓ ସର୍ବଶେଷରେ ମହାଯୁଦ୍ଧଜନିତ ଭୟାବହ ବିନାଶ-ଦୃଶ୍ୟ ଠିକ୍ ଆମ ସମାନ୍ତର କାଳରେ ଘଟିଥିବା ବିଶ୍ୱଯୁଦ୍ଧର ଧ୍ୱଂସକୁ ସ୍ମରଣ କରାଇଦିଏ । ନିଜର ସାମରିକ ଅଭିଜ୍ଞତାରୁ ହେଉ ବା ବର୍ଣ୍ଣିତ ବିଷୟର ସହଜାତ ଗୁଣରୁ ହେଉ, ଯୁଦ୍ଧାଦିର ବର୍ଣ୍ଣନା ସାରଳାଙ୍କ ଲେଖନୀରୁ ଯେ ଉତ୍ସାହ ଓ ଉନ୍ମାଦନା ନେଇ ଉତ୍ସାରିତ ହୋଇଆସିଛି, ଅନ୍ୟ କୌଣସି ବିଷୟର ସେ ଭାଗ୍ୟ ଘଟିନାହିଁ; କିନ୍ତୁ ଆଧୁନିକ କାଳର ଚତୁର୍ଦ୍ଦିଗବ୍ୟାପୀ ହିଂସାର ବାତାବରଣ ଭିତରେ ମହାତ୍ମା ଗାନ୍ଧିଙ୍କର ବାଣୀ ପରି, ସାରଳାଙ୍କ ମହାଭାରତର ସର୍ବବ୍ୟାପ୍ତ ସାମରିକ ଆୟୋଜନ ଭିତରେ ମଧ୍ୟ ଆମେ ବରାବର ଶାନ୍ତି ଓ ଅହିଂସାର ପ୍ରସ୍ତାବ ଶୁଣିବାକୁ ପାଉଁ । ଏହା ନିଃସନ୍ଦେହ ଯେ ଓଡ଼ିଆର ଜାତୀୟ ଚେତନାରେ ଉଭୟ ଜୈନ ଓ ବୌଦ୍ଧ ଧର୍ମ ଗଭୀର ଛାପ ରଖିଯାଇଛନ୍ତି । ସାରଳାଦାସଙ୍କ କାଳରେ ଏ ପ୍ରଭାବ ଏବେ ଅପେକ୍ଷା ଅଧିକ ଗଭୀର ଓ ସତେଜ ଥିବ । ସାରଳାଙ୍କ ଜନ୍ମସ୍ଥାନର ଅନତିଦୂରରେ ଅବସ୍ଥିତ ରତ୍ନଗିରି ମହାବିହାରର ସେହି ଅପଭ୍ରଂଶ ଓଡ଼ିଆରେ ରଚିତ ବୌଦ୍ଧଗାନଗୁଡ଼ିକର ଗାୟନ କବିଙ୍କ ବେଳକୁ ଏବକାଳ ପରି ପ୍ରତ୍ନତତ୍ତ୍ୱର ବିଷୟ ହୋଇଯାଇନଥିବ । ତେଣୁ ବୋଧହୁଏ, ସାରଳାଙ୍କ ମହାଭାରତରେ ଶାନ୍ତି, ଅବୈର, ଅହିଂସା, କରୁଣା ଇତ୍ୟାଦି ବୌଦ୍ଧ ଭାବଗୁଡ଼ିକ ନିଜସ୍ୱ ଉଦାର ସୌନ୍ଦର୍ଯ୍ୟ ଘେନି ବାରମ୍ବାର ଫୁଟିଉଠିଛନ୍ତି । ଦୃଷ୍ଟାନ୍ତସ୍ୱରୂପ ତାଙ୍କର ସଭାପର୍ବରେ ଏକ ସ୍ୱତନ୍ତ୍ର ଅହିଂସ-ଉପନିବେଶ ବର୍ଣ୍ଣିତ ହୋଇଛି । ରାଜା ବା ଉପନିବେଶର ନେତା ସିନ୍ଧୁ ଦେଶର ସମୁଦ୍ରକୂଳରେ ସମୁଦ୍ରକୁ ବନ୍ଧେଇ ଏହି ଉପନିବେଶ ରାଜ୍ୟ ସ୍ଥାପନ କରିଛନ୍ତି । ସେ ରାଜ୍ୟର ପ୍ରତିବେଶୀ କୌଣସି ରାଜା ସହିତ କୌଣସି ବିବାଦ ନଥିଲା । ଅନ୍ୟ ରାଜାର ରାଜ୍ୟ ଆକ୍ରମଣ କରିବା ତାଙ୍କ କଳ୍ପନାରେ ନଥିଲା । ରାଜା ଓ ତାଙ୍କର ପ୍ରଜାମାନେ କେବଳ ଅହିଂସାରେ ବିଶ୍ୱାସ କରୁନଥିଲେ, କରୁଥିଲେ ମଧ୍ୟ ଅପରିଗ୍ରହରେ । ଜୈନ ଭିକ୍ଷୁ ଜାନୁଘଣ୍ଟିଆଙ୍କ ପରି ରାଜା ଜାନୁରେ ଘଣ୍ଟି ବାନ୍ଧି ତାଙ୍କ ଦୈନନ୍ଦିନ ଖାଦ୍ୟ ଭିକ୍ଷା କରି ସଂଗ୍ରହ କରୁଥିଲେ । ଜନକଲ୍ୟାଣହିଁ ରାଜାଙ୍କର ବ୍ରତ ଥିଲା । ଏସବୁରୁ ମନେହେଉଛି

---

ଶବରୀ ସଂପୃକ୍ତ ଓ ତାହା କେବଳ ଓଡ଼ିଶାରେ ସମ୍ଭବ, ବଙ୍ଗଳାରେ ନୁହେଁ, ବୋଲି କହିଛି । ବୌଦ୍ଧ-କବିତାବଳିରେ ଶବର-ଭୂମିକା ସହିତ ଜଗନ୍ନାଥ-ଗାଥାରେ ଶବର-ଭୂମିକାକୁ ଏକତ୍ର ଦେଖିବା ପାଇଁ ପାଠକମାନଙ୍କୁ ଅନୁରୋଧ । ମନେହେଉଛି ଯେ, ଉତ୍କଳକୁ ଅଶୋକାଭିଯାନ ପରେ ପରେ ଅସଭ୍ୟ ଶବରମାନେ ମଧ୍ୟ ବୌଦ୍ଧ ହୋଇପଡ଼ିଥିଲେ । ହୀନଯାନ ବୌଦ୍ଧ ହେବା ସେମାନଙ୍କ ପକ୍ଷରେ ଅସମ୍ଭବ; କାରଣ ତାହା ପୂରାପୂରି ଦାର୍ଶନିକ । ତେଣୁ ସେମାନେ ନିଶ୍ଚୟ ଥିଲେ ମହାଯାନୀ ଓ ବୌଦ୍ଧ ତ୍ରିରତ୍ନ ବା କେବଳ ବୁଦ୍ଧଙ୍କର କୌଣସି ପ୍ରତୀକକୁ ପୂଜା କରୁଥିଲେ । ତାହାହିଁ ପରେ ବିଷ୍ଣୁରେ ପରିଣତ ହେଲା । କଳ୍ପନାବିଳାସୀ ସାରଳା ଦାସ ହିଁ କୃଷ୍ଣା ନଦୀକୂଳର ନୀଳମାଳାଇ ପର୍ବତମାଳାର ଶ୍ରୀଶୈଳସ୍ଥ ଦେବତା ଅନୁକରଣରେ କୃଷ୍ଣ ଓ ନୀଳମାଧବ ଗଳ୍ପ ସୃଷ୍ଟି କରିଥିବା ମନେହୁଏ ।

ଯେ, ସାରଳାଙ୍କ କୃଷକ ପ୍ରତିଭା ଛଅଶ' ବର୍ଷ ତଳେ ବିନୋବାଜୀଙ୍କ ଏବର ଭୂଦାନ, ଗ୍ରାମଦାନ ଓ ଜୀବନଦାନ ଆନ୍ଦୋଳନକୁ ଏକତ୍ର ରୂପ ଦେଇପାରିଥିଲା ।(୧)

**ସାରଳା ମହାଭାରତର ଜନପ୍ରିୟତା –**

କିନ୍ତୁ ସାରଳାଙ୍କ ମହାଭାରତରେ ଏହିପରି ବହୁ ଅନନ୍ୟ ଗୁଣ ଥିବା ସତ୍ତ୍ୱେ, ଆମକୁ ମାନିବାକୁ ହେବ ଯେ, ଏ ଗ୍ରନ୍ଥ ଏକ ସୁପରିକଳ୍ପିତ, ସୁଯୋଜିତ ଉଦ୍ୟାନ ନୁହେଁ; ଏହା ବରଂ ଏକ ଜଙ୍ଗଲ । ଦାସେ ପ୍ରତିଭାଧର ନିଶ୍ଚୟ ଥିଲେ; କିନ୍ତୁ ତାଙ୍କ ଭାଗ୍ୟରେ ବୋଧହୁଏ ଆନୁଷ୍ଠାନିକ ଜ୍ଞାନସାଧନା ଓ ଜ୍ଞାନାହରଣ ଘଟିନଥିଲା । ତାଙ୍କ ମହାଭାରତର ବର୍ଣ୍ୟ-ବିଭବରେ ଏହାହିଁ ସ୍ପଷ୍ଟଭାବରେ ପ୍ରତିଫଳିତ । ଆମେ ଭୁଲିଯିବା ଉଚିତ ନୁହେଁ ଯେ ପ୍ରତିଭା ମଧ୍ୟ ତାଲିମର ସଂଯମ ଓ ଶୃଙ୍ଖଳା ଦରକାର କରେ । ନଚେତ୍ ତାହା ଆମ ଦାସକବିଙ୍କ ରଚନା ପରି ଆରଣ୍ୟକ ହୋଇଉଠିବା ସ୍ୱାଭାବିକ; କିନ୍ତୁ ଠିକ୍ ଏହି କାରଣରୁହିଁ ସାରଳାଙ୍କ ମହାଭାରତ ଓଡ଼ିଆ ଜନତା ନିକଟରେ ଏତେ ପ୍ରିୟ । ଓଡ଼ିଆରେ ତିନୋଟି ପଦ୍ୟ ଓ ଗୋଟିଏ ଗଦ୍ୟ ମହାଭାରତ ଅଛି, ଯାହା ମୂଳ ମହାଭାରତର ପ୍ରାୟ ଅନୁବାଦ; କିନ୍ତୁ ଲୋକେ ମହାଭାରତର ସେସବୁ ସଠିକ୍ ପାଠରେ ଆଗ୍ରହୀ ନୁହଁନ୍ତି । ସାଧାରଣ ପାଠକ

---

(୧) ଇଂରାଜୀ ଗ୍ରନ୍ଥରେ ଏହି ସମ୍ପର୍କରେ ପାଦଟୀକାରେ ଏୟା ଲେଖାଥିଲା –

"ବିଖ୍ୟାତ ଓଡ଼ିଆ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ସହିତ ମୁଁ ଏକମତ ଯେ, କବି ସାରଳା ଦାସ ଏହି ଅହିଂସ-ଉପନିବେଶର କଳ୍ପନା ପାଇଥିବେ, ଖାରବେଳ ଓ ତାଙ୍କର ଅଗ୍ରମହିଷୀ ବାର୍ଦ୍ଧକ୍ୟରେ ଜୈନ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ହୋଇ ଜଞ୍ଜାଳମୁକ୍ତ ନିର୍ଜନ ଜୀବନ ଯାପନ କରିଥିଲେ ବୋଲି ଓଡ଼ିଶାରେ ଯେଉଁ ସ୍ମୃତି ରହିଯାଇଛି, ସେଥିରୁ । ଏହି ସ୍ମୃତିର ଐତିହାସିକ ପ୍ରମାଣ ବହନ କରି ଭୁବନେଶ୍ୱରସ୍ଥ ଉଦୟଗିରିରେ ରାଣୀହଂସପୁର ନାମକ ଦ୍ୱିତଳ ଗୁହାଗୃହ ଏବେ ବି ଦଣ୍ଡାୟମାନ ।"

ଓଡ଼ିଆ ସାହିତ୍ୟ ଓ ଇତିହାସ ଗ୍ରନ୍ଥମାନଙ୍କରେ ଥିବା ଏକ ସାଧାରଣ ଧାରଣାରେ ଭାସିଯାଇ ହିଁ ମୁଁ ସେତେବେଳେ ଏହା ଲେଖିପକାଇଥିଲି । ବର୍ତ୍ତମାନ ଉତ୍ତମତର ଆଲୋଚନା କଲା ପରେ ଦେଖୁଛି; ବିଜୟୀ ସମ୍ରାଟ୍ ଖାରବେଳ ଜୀବନର କୌଣସି କାଳରେ ସନ୍ନ୍ୟାସ ଗ୍ରହଣ କରିଥିବାର ସାମାନ୍ୟତମ ଐତିହାସିକ ପ୍ରମାଣ ନାହିଁ । ତେଣୁ କୃଷକ-କବିଙ୍କର ଅହିଂସ ରାଷ୍ଟ୍ର ଓ ସମାଜର ପରିକଳ୍ପନା ସଂପୂର୍ଣ୍ଣ ଭାବରେ ତାଙ୍କ ନିଜର ଏବଂ ସତରେ ସମ୍ବର୍ଦ୍ଧନାଯୋଗ୍ୟ ।

ହଣ୍ଟର୍ ସେତେବେଳେ ଲୋକମୁଖରୁ ଶୁଣି ତାଙ୍କ ଓଡ଼ିଶା ଇତିହାସରେ ଏହି ରାଣୀହଂସପୁର ନାମକ ଗୁହାଗୃହକୁ କେବଳ 'ରାଣୀ ନଅର' ବୋଲି ଲେଖିଥିଲେ । ଅନ୍ୟେ ରାଣୀହଂସପୁର କହୁଛନ୍ତି; କିନ୍ତୁ ରାଣୀହଂସପୁରରୁ 'ଅନ୍ତଃପୁର' ଅର୍ଥ କିପରି ଆସୁଛି ଜଣାଯାଉନାହିଁ । ରାଣୀପୁର ତ ସେହି ଅର୍ଥ ଦିଅନ୍ତା । ରଥର ଅନାବଶ୍ୟକ ପଞ୍ଚମ ଚକ୍ର ପରି 'ହଂସ' ଶବ୍ଦଟିର ଆଗମ କାହିଁକି ହେଉଛି ?

ମୁଁ ଅନୁମାନ କରିଆସିଛି ଯେ, ଏହି ଦ୍ୱିତଳାବାସ ସହିତ ଖାରବେଳଙ୍କର କୌଣସି ରାଣୀଙ୍କର ଯଦି ସମ୍ପର୍କ ଥିଲା, ତେବେ ତାଙ୍କର ନାମ ଏପରି କିଛି ହୋଇଥିବ; (ଯଥା – ଶକୁନ୍ତଳାର ରାଣୀହଂସପଦିକା) ଯାହା ଲୋକମୁଖରେ କେବଳ 'ହଂସ' ଶବ୍ଦରେହିଁ ବ୍ୟକ୍ତ ହେଉଥିଲା । ଖାରବେଳ ସକଳ ଭାରତୀୟ ରାଜାମାନଙ୍କ ପରି ବହୁପତ୍ନୀକ ଥିଲେହେଁ, ତାଙ୍କର କୌଣସି ରାଣୀର ନାମ ଏପର୍ଯ୍ୟନ୍ତ ସଠିକ୍ ଜଣାଯାଇନାହିଁ । ଜୟସ୍ୱାଲଙ୍କୁ ଅନୁସରଣ କରି ପଣ୍ଡିତ ନୀଳକଣ୍ଠ ତାଙ୍କ କାବ୍ୟ ଖାରବେଳରେ ଯେଉଁ 'ଧୃସୀ'କୁ ଠିଆକରେଇଛନ୍ତି, ତାଙ୍କର କୌଣସି ନିଃସନ୍ଦେହ

ସାହିତ୍ୟରେ ଦେଖିବାକୁ ଚାହେଁ ନିଜରହିଁ ରଞ୍ଜିତ ଚିତ୍ର । ସେ ନିଜେହିଁ ସହସ୍ରଗୁଣିତ ହୋଇ ଠିଆହେବାକୁ ଚାହେଁ । ସେ ଚାହେଁ ଜୀବନର ସକଳ ରୂଢ଼ ବାସ୍ତବତାହିଁ ଗ୍ରହଣୀୟ ମନୋରମତାରେ ସାହିତ୍ୟରେ ଚିତ୍ରିତ ହେଉ । ସାରଳା ମହାଭାରତର ଅରଣ୍ୟରାଜ୍ୟରେ ପାଠକ ଏସବୁର ପ୍ରଚୁର ସ୍ୱାଦ ପାଏ । ସାରଳାଙ୍କ ଗ୍ରନ୍ଥରେ ଆମେ ଏକପକ୍ଷରେ ଦେଖିବାକୁ ପାଉଁ ଜୀବନକୁ ଏକ କୃଷକର ବାସ୍ତବ ଦୃଷ୍ଟିକୋଣରୁ, ଅନ୍ୟପକ୍ଷରେ ମଧ ଦେଖୁ ମଧୁର ଅନାବିଳ ଅତିରଞ୍ଜନ, ଯାହା ଗ୍ରାମ୍ୟ-ଜନର ଚିତ୍ତବୃତ୍ତିର ଏକ ଅପରିହାର୍ଯ୍ୟ ଅଙ୍ଗ । ସାରଳାଙ୍କ କଲମରେ ସୈନ୍ୟମାନଙ୍କର ସଂଖ୍ୟା କୋଟି ଅର୍ବୁଦରୁ ତଳକୁ ଖସେନା । ଭୀମଙ୍କ ଆରଣ୍ୟ-ପତ୍ନୀ ହିଡ଼ିମ୍ବିକା ପୁତ୍ର ଘଟୋତ୍କଚକୁ ଧରି ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଆସିଲାବେଳେ ଶହେ ଶଗଡ଼ କସ୍ତୁରୀ, ଏକ ଲକ୍ଷ ଶଗଡ଼ ସୁଗନ୍ଧ ଅଁଳା, ପୁଣି ବହୁଲକ୍ଷ ଶଗଡ଼ ଆମ୍ବ ଆଣିଥିଲା । ସମ୍ରାଟ୍ କପିଳେନ୍ଦ୍ରଙ୍କ ସାମ୍ରାଜ୍ୟଯାକ ଦରାଣ୍ଡିଥିଲେ ହୁଏତ ଗାଡ଼ିଏ କସ୍ତୁରୀ ମିଳିଥାନ୍ତା କି ନାହିଁ ସନ୍ଦେହ; କିନ୍ତୁ ଏହିପ୍ରକାର ଅତିରଞ୍ଜନ ଓ ନିରଙ୍କୁଶ କଳ୍ପନା ଗ୍ରାମ୍ୟ କୃଷକ ଜନତାର ଅତ୍ୟନ୍ତ ସ୍ୱାଦ୍ୟ । ଗ୍ରାମ୍ୟ କବିର ପ୍ରତିଭା ସ୍ୱାଭାବିକ ଭାବରେ ତାହା ଜାଣିପାରି ପରିବେଷଣ କରିଚାଲିଲା ।

---

ଐତିହାସିକତା ଏପର୍ଯ୍ୟନ୍ତ ଜଣାପଡ଼ିନାହିଁ । ମନେ ମଧ ହେଉଛି ଯେ ଧୂସୀ କୌଣସି ଭାରତୀୟ ରାଜକନ୍ୟାର ଉପଯୁକ୍ତ ନାମ ହୋଇନପାରେ । ସେ ସ୍ଥାନରେ ହଂସପଦିକା, ହଂସଗତି, ରାଜହଂସୀ ଇତ୍ୟାଦି ନାମ ଅଧିକ ସଙ୍ଗତ । ହୁଏତ ହଂସୀ ସ୍ଥାନରେ ଧୂସୀ ପଢ଼ାଯାଇପାରିଥାଏ । ଖାରବେଳଙ୍କର ଯେଉଁ ପ୍ରିୟ ରାଣୀଙ୍କ ନାମ ବହନ କରୁଛି ଉଦୟଗିରିର ଦ୍ୱିତଳ ଗୁହା, ତାଙ୍କ ନାମରେ 'ହଂସ' ଶବ୍ଦ ଏହିପରି ଭାବରେ ହୁଏତ ଥିଲା । ଖାରବେଳଙ୍କ ଅଗ୍ରମହିଷୀ ବୋଲାଉଥିବା ରାଣୀ ଓ ତାଙ୍କ ପୁଅ ଉଦୟଗିରିର ଅନ୍ୟତ୍ର ଗୁହା ଖୋଳାଇଛନ୍ତି । ରାଜାମାନଙ୍କ ଉଆସରେ ବଡ଼ରାଣୀ ଦିନେ ପଛକୁ ଯିବା ଓ ସେ ଜାଗାରେ ସୁନ୍ଦରୀ ସାନରାଣୀ ରାଜାଙ୍କ ଆଦରିଣୀ ହୋଇ ଠିଆହେବା ଅତ୍ୟନ୍ତ ପରିଚିତ ଘଟଣା । ରାଣୀହଂସପୁର ହୁଏତ ଖାରବେଳଙ୍କ ସେହିପରି କୌଣସି ରାଣୀର, ଯାହାର ନାମରେ ଥିଲା 'ହଂସ' ଶବ୍ଦ ଓ ତେଣୁ ହିଁ ତାଙ୍କର (ତାଙ୍କ ନିଜ ପାଇଁ ହେଉ ବା ତାଙ୍କ ଦ୍ୱାରା ସନ୍ନ୍ୟାସୀମାନଙ୍କ ପାଇଁ ହେଉ) ଏହି ଗୁହାବାସ ତାଙ୍କ ନାମ ବହନ କରିଆସୁଛି । କେବଳ ସଉତୁଣୀ ଆଗରେ ନିଜର ବଡ଼େଇ ଦେଖାଇବା ପାଇଁ ଏପରି ବ୍ୟୟସାଧ ଓ ପ୍ରକୃତରେ ସୁଦୃଶ୍ୟ ଆବାସ ତିଆରି କରାଯାଇପାରିଥାଏ ।

ଇଂରାଜୀ ଗ୍ରନ୍ଥରେ ଏସବୁ ଆଲୋଚନା ନକରି ମୁଁ ତେଣୁ ରାଣୀହଂସପୁରକୁ ବର୍ତ୍ତମାନ ଆନ୍ତର୍ଜାତିକ ସାହିତ୍ୟରେ ସର୍ବଗୃହୀତ ଅର୍ଥର – ଓ୍ୱେଲି ରୀତିରେ ଶାବ୍ଦିକ ଅନୁବାଦ କରି ଲେଖିଥିଲି – Home of Queen Hansa । ଏହାକୁ କଳ୍ପନା ବା ଜିଜ୍ଞାସା କୁହାଯାଇପାରେ, ଅଜ୍ଞତା ବୋଲି ବୋଧହୁଏ କୁହାଯିବନି । ଯିଏ ଇଂରାଜୀରେ ଖଣ୍ଡିଏ ବହି ଲେଖିବାକୁ ଯାଉଛି, ଜାତୀୟ ସାହିତ୍ୟ ଆକାଡେମୀ ପାଇଁ, ତାକୁ ରାଣୀହଂସପୁରକୁ କେବଳ Queens' Home ବୋଲି ଅନୁବାଦ କରିବା ଜଣାନଥିଲା ବୋଲି ବନ୍ଧୁଏ ବିଶ୍ୱାସ କରିଅଛନ୍ତି ।

ଏମାନେ ନିଜେଇ କେବେ ପ୍ରଶ୍ନ ଉଠେଇବା ଉଚିତ ନଥିଲା କି, ରାଣୀହଂସପୁର ଶବ୍ଦ 'ଅନ୍ତଃପୁର' ବୁଝାଇବ କାହିଁକି ? ସନ୍ନ୍ୟାସିନୀ ବାସରୂପେ ଖୋଦିତ ଉଦୟଗିରିର ଚାରିଆଡ଼େ ମେଲା ଦ୍ୱିତଳ ଗୁହାକୁ 'ଅନ୍ତଃପୁର' ବା କିପରି କୁହାଯିବ ?

**ଜାତୀୟ ମହାକାବ୍ୟ –**

କିନ୍ତୁ ମହାକାବ୍ୟମାତ୍ରେ ଯଦି ସଂପୃକ୍ତ ଜାତିପ୍ରାଣକୁ ପ୍ରତିଫଳିତ କରିବାର କଥା, ତେବେ ନାନା ଦିଗରୁ ସାରଳାଙ୍କ ମହାଭାରତ ଯେ ସମଗ୍ର ଓଡ଼ିଆ ଜାତିର ମହାକାବ୍ୟ, ଏଥିରେ ସନ୍ଦେହ ନାହିଁ ଏବଂ ଏହା ଓଡ଼ିଶା ଓ ଓଡ଼ିଆଙ୍କ କାବ୍ୟ ନହୋଇ ଅନ୍ୟଥା ହେବାର ବାଟହିଁ ନଥିଲା । କାରଣ ଏହାର କବି ଓଡ଼ିଆ ଛଡ଼ା ବୋଧହୁଏ ଅନ୍ୟ କୌଣସି ଭାଷାରେ ବ୍ୟୁତ୍ପନ୍ନ ନଥିଲେ ଏବଂ ନିଜେ ଦେଶୀୟ ସମାଜ ଓ ପରିବେଶ ଛଡ଼ା ଅନ୍ୟ ସମାଜ ବା ପରିବେଶ ସହିତ ପରିଚିତ ନଥିଲେ; କିନ୍ତୁ ଅଭିଜ୍ଞତାର ସଂକୀର୍ଣ୍ଣ ପରସର ସତ୍ତ୍ୱେ, ସାରଳାଙ୍କ ଚିନ୍ତା ଓ କଳ୍ପନା ବୈଦ୍ୟୁତିକ-ଶକ୍ତିମୟ । ତାଙ୍କର ଉଗ୍ର-ଜାତୀୟତାର ତୀବ୍ରତାକୁ ଭାବିଲେ ଆମକୁ ଆଜି ବିସ୍ମୟାଭିଭୂତ ହେବାକୁ ହେଉଛି । ଜନ୍ମମାଟି ଓଡ଼ିଶାକୁ ଦେଶବାସୀଙ୍କ ଚକ୍ଷୁରେ ଭାରତର ଅନ୍ୟ ପୌରାଣିକ ରାଜ୍ୟମାନଙ୍କ ପରି ପୂତ ଓ ପ୍ରଧାନ କରି ଠିଆକରାଇବା ପାଇଁ ହିଁ ସେ ସୌରାଷ୍ଟ୍ରର ଶ୍ରୀକୃଷ୍ଣଙ୍କୁ ଆଣି ଯୋଡ଼ିଛନ୍ତି ପୁରୀର ଜଗନ୍ନାଥଙ୍କ ସହିତ ଓ ପାଣ୍ଡବମାନଙ୍କୁ ତୀର୍ଥଯାତ୍ରୀ କରି ଓଡ଼ିଶାର ସବୁ ତୀର୍ଥରେ ବୁଲାଇଛନ୍ତି କେବଳ ନୁହେଁ, ସେମାନଙ୍କୁ ବିଷ୍ଣୁକର ପଣ୍ଡା ଓ ଅନନ୍ତ ପ୍ରତିହାରୀ ପ୍ରଭୃତି ସାଧାରଣ ଓଡ଼ିଆ ନାଗରିକମାନଙ୍କ ସାଥିରେ ସାଧାରଣ ନାଗରିକ ପରି ବନବାସ କରାଇଛନ୍ତି । ସେତିକିରେ ସନ୍ତୁଷ୍ଟ ନ ହୋଇ, ଉଗ୍ର-କବି ସାରଳା, ବୃଦ୍ଧ ଯୁଧିଷ୍ଠିରଙ୍କୁ ଓଡ଼ିଆ ଝିଅର ସ୍ୱାମୀ କରାଇ ପାଣ୍ଡବମାନଙ୍କୁ ଓଡ଼ିଶାରେ ରଖାଇଛନ୍ତି ଦୀର୍ଘ ପଞ୍ଚସ୍ତରୀ ବର୍ଷ ।

ପୂର୍ବେ ଯେପରି କୁହାଯାଇଛି, ସାରଳା ତାଙ୍କ ଗ୍ରନ୍ଥରେ କୌଣସି ଦାର୍ଶନିକ ବା ତାତ୍ତ୍ୱିକ ଆଲୋଚ଼ନାକୁ ସ୍ଥାନ ଦେଇନାହାନ୍ତି । କୃଷକର ସ୍ୱାଭାବିକ ରୁଚି ଅନୁସାରେ ସେ ତାଙ୍କ ଗ୍ରନ୍ଥକୁ କେବଳ କର୍ମ ଓ ଘଟଣାର ଏକ ବନ୍ୟାକ୍ରାନ୍ତ ସ୍ରୋତ କରି ଛାଡ଼ିଯାଇଛନ୍ତି । କୃଷକ-କବି ତାଙ୍କର ସହଜାତ ବୁଦ୍ଧିରୁ ଜାଣିପାରିଥିଲେ ଯେ ମୂଳ ମହାଭାରତରେ ଥିବା ଦୀର୍ଘ ତାତ୍ତ୍ୱିକ, ଦାର୍ଶନିକ ଓ ଆଧ୍ୟାତ୍ମିକ ଆଲୋଚ଼ନାସବୁ ତାଙ୍କର ଗ୍ରାମ୍ୟ ଶ୍ରୋତୃବର୍ଗଙ୍କ ନିକଟରେ ଆଦରଣୀୟ ହେବ ନାହିଁ ଏବଂ ସେହି ହେତୁ ତାଙ୍କର ସମଗ୍ର ଗ୍ରନ୍ଥ ମଧ୍ୟ ଅନାଦୃତ ହୋଇପଡ଼ିବ । କବି ଯେଉଁ ପ୍ରାକୃତିକ ଜନପାଇଁ ତାଙ୍କ ଗ୍ରନ୍ଥ ପ୍ରାକୃତ ଭାଷାରେ ଲେଖି ବସିଥିଲେ, ସେମାନଙ୍କର ବୌଦ୍ଧିକ ସ୍ତରକୁ ସବୁବେଳେ ଆଖିରେ ରଖିବା ତାଙ୍କ ପକ୍ଷରେ ସ୍ୱାଭାବିକ ଥିଲା ।[୧]

କିନ୍ତୁ ମୂଳ ଗ୍ରନ୍ଥର ନୀରସ ତାତ୍ତ୍ୱିକ ଆଲୋଚ଼ନାକୁ ବାଦ୍ ଦେଲେ ମଧ୍ୟ କୃଷକ-କବି ନିଜ ଗ୍ରନ୍ଥର ନାନା ସ୍ଥାନରେ କୃଷକ-ଜନତାର ଉପଯୋଗୀ ସଦୁପଦେଶସବୁ ବଜାୟ ରଖିଯିବାକୁ ଭୁଲିନାହାନ୍ତି । ଏସବୁ ଜଣେ ବୁଦ୍ଧିମାନ୍, ଅଭିଜ୍ଞ ଓଡ଼ିଶୀ ଚଷାର ମୁହଁରୁ

(୧) ସଂସ୍କୃତ ମହାଭାରତରେ ଥିବା ଭଗବଦ୍‌ଗୀତା ପରି ଅଧିକାଂଶ ତାତ୍ତ୍ୱିକ ଆଲୋଚ଼ନା ଯେ ମୂଳଗ୍ରନ୍ଥରେ ବହୁ ପରେ ଯୋଡ଼ାହୋଇଛି, ଏହା ବର୍ତ୍ତମାନ ସର୍ବବାଦୀସମ୍ମତ । ମୂଳ ମହାଭାରତ ଥିଲା ଏକ 'ଜୟକାବ୍ୟ' ବା ଏକ ସାମରିକ ଗାଥା । ତାତ୍ତ୍ୱିକ ଆଲୋଚ଼ନାସବୁକୁ ବାଦ୍ ଦେଲେ ଯାହା ବାକି ରହିବ, ସେ ମହାଭାରତ ଓ ସାରଳା ମହାଭାରତ ଭିତରେ ଆତ୍ମିକ ପ୍ରଭେଦ ବିଶେଷ ନୁହେଁ ।

ବାହାରିବା ଯେପରି ସ୍ୱାଭାବିକ, ସେହିପରି ହୋଇଛି ଓ ଏସବୁ ସାରଳାଙ୍କର ନିଜସ୍ୱ । ଶାନ୍ତିପର୍ବରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ଦେଇଥିବା ଏହିପରି କେତେକ ଉପଦେଶ ଏଠାରେ ଉଦ୍ଧାର କରାଯାଉଛି –

"ବେଳ କାଳ ଜାଣି ଧନ ପ୍ରଜାଙ୍କୁ ଯେ ଦେବୁ
ଅଧାରିବିଜେ ନ କରି ବିଶ୍ୱାସ ନ ଯିବୁ ।
ପାରିଧିକି ଏକାବେଳେ ନ ତେଜିବୁ ରାଜା
ଦେବତା ବ୍ରାହ୍ମଣେ ନିତ୍ୟ କରୁଥିବୁ ପୂଜା ।
ଧାର୍ମିକଙ୍କୁ ଏକାଦଶୀ ବ୍ରତ କରାଇବୁ
ବିଦେଶୀ ଦୂତେ କଟକେ ପ୍ରବେଶି ନ ଦେବୁ ।
ପରଦାରା ପରଧନେ ଲୋଭ ନ କରିବୁ
ବିବାହିତା ନାରୀ ସଙ୍ଗେ କେବଳ ରହିବୁ ।
ରାଜ୍ୟଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନ ଦେବୁ ତାହାରେ ।
କୃଷିକର୍ମକାରୀ ଜନେ ନ ଦଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ି ଦେବୁ ବହୁ ସ୍ଥାନ ।
ତୀର୍ଥରେ ଲୋକମାନଙ୍କୁ ଦେବୁ ଅନ୍ନ ଦାନ,
ଉତ୍ତମ ସ୍ଥାନେ ରଖିବୁ ସେନାପତିଗଣ ।
ଗଜ ଅଶ୍ୱଙ୍କ ନିମନ୍ତେ ଦେଉଥିବୁ ଧନ,
ଗୋପାଳେ ବିଶ୍ୱାସ କରି ଅର୍ପିବୁ ଗୋଧନ ।
ଗୁଣୀଗୁଣ ଜାଣିକରି କରୁଥିବୁ ପୂଜା,
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।" ଇତ୍ୟାଦି

ଜଣେ ମୁମୂର୍ଷୁ ସୈନିକ ଏକ ଭବିଷ୍ୟତ ରାଜାକୁ ରାଜ୍ୟର ସୁଶାସନ ପାଇଁ ଯେଉଁ ଉପଦେଶ ଦେବାର କଥା, ସେଥିରେ ଉଦ୍ଧୃତ ପଦାବଳିର ଶେଷ ପଂକ୍ତିଦ୍ୱୟ ଅପ୍ରାସଙ୍ଗିକ ହେଉନାହିଁ କି ? ରାଜ୍ୟର ସୁଶାସନରେ କବିଜନର ସମ୍ମାନ କିପରି ଆବଶ୍ୟକ ହୋଇଉଠୁଛି ?

ତେଣୁ ମନେହେଉଛି, ଦୂରଦୃଷ୍ଟିସମ୍ପନ୍ନ ଉଦାରଚେତା କୃଷକ-କବି ଆପାତତଃ ଅପ୍ରାସଙ୍ଗିକ ହେଲେହେଁ, ଭୀଷ୍ମଙ୍କ ମୁଖରେ ଜାଣି ଜାଣି ଯୁଧିଷ୍ଠିର ରାଜ୍ୟର କବିମାନଙ୍କ ପ୍ରତି ସଶ୍ରଦ୍ଧ ହେବାର ଉପଦେଶ ପୂରାଇ ଦେଇଛନ୍ତି । ଯୁଧିଷ୍ଠିରଙ୍କ ସମକାଳରେ ଯେଉଁ କବି ବଞ୍ଚିଥିଲେ, ସେ ତ ସ୍ୱୟଂ କୃଷ୍ଣଦ୍ୱୈପାୟନ ମହାଭାରତର ମହାସ୍ରଷ୍ଟା ଓ ଶ୍ରୀକୃଷ୍ଣଙ୍କଠାରୁ ଶିଆଳ ପର୍ଯ୍ୟନ୍ତ ସମଗ୍ର ଜାତିର ସେ ଥିଲେ ନମସ୍ୟ । ତେଣୁ ଭୀଷ୍ମ ଏପରି ନିରର୍ଥକ ଉପଦେଶ ଦେବାର ତାତ୍ପର୍ଯ୍ୟ କ'ଣ ?

କିନ୍ତୁ ଓଡ଼ିଶାର କୃଷ୍ଣଦ୍ୱୈପାୟନ ସାରଳାଙ୍କ ବେଳେ କବିଜନ, ବିଶେଷତଃ ପ୍ରାକୃତଭାଷାର କବିମାନେ ରାଜା ଓ ରାଷ୍ଟ୍ରଦ୍ୱାରା ଅବହେଳିତ ଓ ଅସମ୍ମାନିତ ହେଉଥିବା ସ୍ୱାଭାବିକ ।

କାରଣ ସେ ପର୍ଯ୍ୟନ୍ତ ସଂସ୍କୃତହିଁ ଥିଲା ଏକମାତ୍ର ଭାଷା ଓ ରାଜସଭାରେ ସ୍ଥାନ ଥିଲା କେବଳ ସଂସ୍କୃତ ପଣ୍ଡିତମାନଙ୍କର । ଭାଷା-କବିର ସ୍ଥାନ ସେଠି ନଥିଲା । ସେ ହୁଏତ ରାଜଦର୍ଶନ ପାଉଥିଲା, ପ୍ରାସାଦାଙ୍ଗନର ଏକ ପ୍ରାନ୍ତରେ ଯୋଡ଼କର ଅବସ୍ଥାରେ । ବୋଧହୁଏ ସ୍ୱୟଂ କବିଙ୍କର ମଧ୍ୟ ସେହିପରି ଅଭିଜ୍ଞତା ଥରେ ଦି'ଥର ଘଟିଥାଇପାରେ ଏବଂ ଉଦାରମନା ମହାକବି ଚାହିଁନଥିଲେ ଯେ, ଭବିଷ୍ୟତରେ ତାଙ୍କର ଭାଇ-କବିମାନେ ଯେପରି ଏକ ପ୍ରକାର ତିକ୍ତ ଅନୁଭୂତି ପା'ନ୍ତୁ । ନିଜର ଚିର ଅବହେଳିତ ଲେଖକଗୋଷ୍ଠୀର ସମ୍ମାନ ଓ କଲ୍ୟାଣାର୍ଥେ ହିଁ ମହାକବି ମୁମୂର୍ଷୁ ଭୀଷ୍ମଙ୍କ ମୁଖରେ ଭବିଷ୍ୟତ୍ ଶାସକ ଯୁଧିଷ୍ଠିରଙ୍କ ପ୍ରତି କବି ଓ ଗୁଣୀଜନମାନଙ୍କ ପ୍ରତି ସଶ୍ରଦ୍ଧ ବ୍ୟବହାରର ଉପଦେଶ ଦେଇଯାଇଛନ୍ତି ।

**ଓଡ଼ିଆ ସାହିତ୍ୟ ଓ ଜୀବନ ଉପରେ ସାରଳା ମହାଭାରତର ପ୍ରଭାବ –**

ବଙ୍ଗଳାରେ ମହାଭାରତ ଲେଖାହେବାର ଦୁଇଶତ ବର୍ଷ ପୂର୍ବରୁ ସାରଳା ଦାସ ଓଡ଼ିଆରେ ମହାଭାରତ ଲେଖିପକାଇଥିଲେ । ତେଣେ ଆମର ଦକ୍ଷିଣ ପ୍ରତିବେଶିନୀ ତେଲୁଗୁ ଭାଷାରେ ମହାଭାରତ ଲେଖିଥିଲେ ତିନିପୁରୁଷର କବି-ପଣ୍ଡିତେ ଓ ତାହା ପୂର୍ଣ୍ଣହେଲା ଯାଇ ଅଷ୍ଟାଦଶ ଶତାବ୍ଦୀକି । ବୋଧହୁଏ ଅନ୍ୟ କୌଣସି ଆଧୁନିକ ଭାରତୀୟ ଭାଷାରେ ଏତେ ଅତୀତରେ ଲେଖାହୋଇନାହିଁ, ପୁଣି ଅନ୍ୟ କୌଣସି ଭାରତୀୟ ଭାଷାର ମହାଭାରତ ଲେଖାଯାଇନି ଓଡ଼ିଶାର ସାରଳାଦାସ ପରି କବିଦ୍ୱାରା, ଯେ ଥିଲା ମାତ୍ର ଏକ ଅର୍ଦ୍ଧଶିକ୍ଷିତ ଶୂଦ୍ର । ପୁଣି ଅନ୍ୟ କୌଣସି ଭାରତୀୟ ଭାଷାର ମହାଭାରତ ସଂପୃକ୍ତ ପ୍ରାଦେଶିକ ଜନତା ଉପରେ ଏପରି ଗଭୀର ପ୍ରଭାବ ପକାଇପାରିନି, ଯେପରି ପକାଇଛି ସାରଳାଦାସଙ୍କ ମହାଭାରତ ଓଡ଼ିଶୀ ଜନତା ଉପରେ ।[୧] ସାରଳା ମହାଭାରତର ଗଳ୍ପ ପଦ୍ୟାଂଶ ଓ ଚରିତ୍ର ଏବଂ ଉପଦେଶ ଓଡ଼ିଆ ଜାତୀୟ ଚେତନାର ଗଭୀରତମ ସ୍ତରରେ ସ୍ଥାନ ପାଇଛି । ସାମାନ୍ୟ ଏକ ଘଟଣା ବୃହତ୍ ବ୍ୟାପାରରେ ପରିଣତ ହେବାର ଦେଖିଲେ, ଓଡ଼ିଆ ପାଟିରୁ ନିଶ୍ଚୟ ବାହାରିପଡ଼ିବ – 'ଏ ଯେ ଝିମିଟି ଖେଳରୁ ମହାଭାରତ ଜାତ' – ଯାହା ସାରଳାଙ୍କ ନିଜସ୍ୱ କଳ୍ପନା । କୌରବ ଓ ପାଣ୍ଡବ ଭାଇମାନଙ୍କ ଭିତରେ ଜୀବନବ୍ୟାପୀ ପାରସ୍ପରିକ ବିଦ୍ୱେଷ ଡୁ-ଡୁ (ଝିମିଟି) ଖେଳରୁ ଆରମ୍ଭ ହେବାର ସାରଳା ମହାଭାରତର ସୂଚନା । ଛଦ୍ମଜନ ସାଧୁତା ଦେଖିଲେଇ ଓଡ଼ିଆ ଉଚ୍ଚାରଣ କରିବେ, 'ତୁଳାମୁହାଁ କାଙ୍କ' ବା 'ତୁଳସୀବଣ ବାଘ' । ପୁଣି, ସାଧାରଣ ଗ୍ରାମ୍ୟ ଉତ୍କଳୀୟ ନିକଟରେ ସାରଳାଙ୍କ ମହାଭାରତ କେବଳ ଦୃଷ୍ଟାନ୍ତ ବା ପ୍ରବଚନର ଆକାର ନୁହେଁ – ତାହା ମଧ୍ୟ ହୋଇଉଠିଛି ଏକ ପୁଣ୍ୟପ୍ରଦ ଗ୍ରନ୍ଥ । ଅପୁତ୍ରକ ଲୋକେ ଏହାର ପାରାୟଣଫଳରେ ପୁତ୍ର-

(୧) ଇଂରାଜୀ 'ଓଡ଼ିଆ ସାହିତ୍ୟର ଇତିହାସ' ପଢ଼ି ଜାତୀୟ ସାହିତ୍ୟ ଆକାଡେମୀର ମାଡ୍ରାସ-ଅଫିସର ତେଲୁଗୁ ସହକାରୀ ଜଣାଇଛନ୍ତି ଯେ, ତେଲୁଗୁ ମହାଭାରତ ମଧ୍ୟ ଚତୁର୍ଦ୍ଦଶ ଶତାବ୍ଦୀରେ ପୂର୍ଣ୍ଣ ହୋଇଥିଲା ଓ ଆନ୍ଧ୍ର ଜନତା ଉପରେ ତେଲୁଗୁ ମହାଭାରତର ପ୍ରଭାବ, ଓଡ଼ିଶା ଜନତା ଉପରେ ସାରଳାଙ୍କ ମହାଭାରତର ପ୍ରଭାବ ପରି ଅତି ବ୍ୟାପ୍ତ ।

ପ୍ରାପ୍ତ ହେବାର ବିଶ୍ୱାସ ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ପରିବ୍ୟାପ୍ତ । ବ୍ୟାପକ ଜନପ୍ରିୟତା ହେତୁ ଦିନେ ଏହି ଓଡ଼ିଆ ମହାଭାରତହିଁ ବଙ୍ଗଳାରେ ଅନୂଦିତ ହୋଇ ପଠିତ ହେଉଥିଲା । ଶୁଣାଯାଏ ଯେ ଇଣ୍ଡୋନେସିଆରେ ପ୍ରଚଳିତ ମହାଭାରତ ଗଳ୍ପାଦି ସାରଳା ମହାଭାରତରହିଁ ନିକଟତମ; କିନ୍ତୁ ଏହା ପ୍ରମାଣ ଅପେକ୍ଷା କରେ ।[୧]

ବସ୍ତୁତଃ, ସାରଳା ଦାସଙ୍କ ମହାଭାରତ ଗୋଟାଏ ସାମାନ୍ୟ ଗ୍ରନ୍ଥ ମାତ୍ର ନୁହେଁ । ଏହି ଗୋଟାଏ ଗ୍ରନ୍ଥ ଭିତରେ ଓଡ଼ିଶାର କୃଷକ-କବି ସାରଳା ଦାସ ଗୋଟିଏ ପୂରା ଜାତୀୟ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି ବୋଇଲେ ହେବ । ପ୍ରତିଭାବାନ୍ ଏକ ଚଷା ସେ ପର୍ଯ୍ୟନ୍ତ ରାଷ୍ଟ୍ର ଓ ପଣ୍ଡିତଜନ ଉଭୟଙ୍କ ଦ୍ୱାରା ଘୃଣିତ ହେଉଥିବା ଏକ ଅବଜ୍ଞାତ ଭାଷାରେ ଏପରି ଏକ ବିରାଟ ଗ୍ରନ୍ଥ ଲେଖି ଛାଡ଼ିଦେଇଗଲା ବୋଲିହିଁ, ପରେ ଓଡ଼ିଆ ବୋଲି ଏକ ସାହିତ୍ୟ ଗଢ଼ିଉଠିବା ସମ୍ଭବ ହେଲା । ଏହି ଶୂଦ୍ରର କୀର୍ତ୍ତିହିଁ ତା'ର ପରାଗତ ସତୀର୍ଥମାନଙ୍କୁ ସାହସ ଓ ପ୍ରେରଣା ଯୋଗାଇଥିଲା । ଆଧୁନିକ ସମୟ ପର୍ଯ୍ୟନ୍ତ ଓଡ଼ିଆ କବିମାନଙ୍କ ଉପରେ ସାରଳା ମହାଭାରତର ପ୍ରଭାବ ବ୍ୟାପକ ଓ ଗଭୀର । ପାଶ୍ଚାତ୍ୟ-ଶିକ୍ଷିତ ରାଧାନାଥ ଓ ମଧୁସୂଦନ ମଧ୍ୟ ସାରଳା ମହାଭାରତ ପାଖକୁ ଯାଇଛନ୍ତି ଉପାଦାନ ସଂଗ୍ରହ କରିବାକୁ ଏବଂ ଏହା ଓଡ଼ିଆ ସାହିତ୍ୟରେ ପ୍ରାୟ ସବୁକାଳରେ ଦେଖାଦେଇଛି ।

**ସାରଳାଙ୍କ ଅନ୍ୟ କୃତି –**

ମନେହେଉଛି ଯେ, ଆମର ଏହି କୃଷକ-କବି ଅସାଧାରଣ ଅଶାନ୍ତ ସୃଜନପିପାସା ନେଇ ଜନ୍ମହୋଇଥିଲେ । ମହାଭାରତ ପରି ଏକ ବିରାଟ ଗ୍ରନ୍ଥ ଲେଖିପକାଇବା ମଧ୍ୟ ତାଙ୍କ ପକ୍ଷରେ ଯଥେଷ୍ଟ ନଥିଲା । ତାଙ୍କର ଲେଖନୀ ଗୋଟିଏ ଦୁଃସାହସିକତାରୁ ଆଉ ଏକ ଦୁଃସାହସିକତାକୁ ଡେଇଁବାକୁ ଯେପରି ସବୁବେଳେ ଉଦ୍‌ଗ୍ରୀବ ଥିଲା । ଦାସେ ନିଜ ମହାଭାରତରେ ପୂରା ରାମାୟଣଟିକୁ ଏକ ସ୍ଥାନରେ ବର୍ଣ୍ଣିଯାଇଛନ୍ତି । ସେତେବେଳେ ଓଡ଼ିଆରେ ରାମାୟଣ ନଥିବା ସ୍ଥଳେ ଏହା ଅତ୍ୟନ୍ତ ଆବଶ୍ୟକ ଥିଲା; କିନ୍ତୁ ବାଲ୍ମିକି ରାମାୟଣର ଶାନ୍ତ-ମଧୁର ପରିବେଶ ସୈନିକ-କୃଷକ-କବିର ସଂଘର୍ଷ-ପ୍ରଣୟୀ ଚିତ୍ତକୁ ପାଣିଚିଆ ବୋଧହୋଇଥାଇପାରେ । ତେଣୁ ସେ ଲଙ୍କା ରାମାୟଣର ପୁନରାବୃତ୍ତି ନକରି, ବିଲଙ୍କା ରାମାୟଣ ଲେଖିଦେସିଲେ । ଏହା ମୂଳ ସଂସ୍କୃତରୁ ଉଦ୍ଭୂତ ରାମାୟଣ ହେଲେହେଁ, ସାରଳାଙ୍କ ରଚନା ମୂଳର ଅନୁବାଦ ନୁହେଁ ଏବଂ ପ୍ରଧାନ ଆକର୍ଷଣ ବୋଧହୁଏ ଥିଲା ସେଥିରେ ସଂଘର୍ଷର ପ୍ରାଚୁର୍ଯ୍ୟ, ଯାହା ସାରଳା-ପ୍ରତିଭାର ଥିଲା ପରମ ସ୍ୱାଦ୍ୟ ବସ୍ତୁ ।

ଲଙ୍କାର ଦଶଶିର ରାବଣର ମୃତ୍ୟୁଖବର ଯେତେବେଳେ ତାଙ୍କର ବନ୍ଧୁ, ବିଲଙ୍କାର ରାଜା ଶତଶିରା ରାବଣଙ୍କ କାନରେ ବାଜିଲା, ସେ ବନ୍ଧୁବଧର ପ୍ରତିହିଂସା ଚାହିଁଲେ । ରାମ ସେତେବେଳକୁ ଅଯୋଧ୍ୟାକୁ ଫେରିଆସିଲେଣି । ଶତଗ୍ରୀବ ରାବଣର ଅତ୍ୟାଚାରର ପ୍ରତିରୋଧ ପାଇଁ ରାମ ପରେ ପରେ ଶତ୍ରୁଘ୍ନ, ଲକ୍ଷ୍ମଣ ଓ ଭରତଙ୍କୁ ପଠାଇଲେ; କିନ୍ତୁ କେହି ଆଉ

(୧) ଲେଖକ ଏହି କଥା ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟରୁ ବହୁବାର ଶୁଣିଥିଲା ।

ଫେରିଲେ ନାହିଁ । ଏପରି କି ମହାବୀର ହନୁମାନ୍ ମଧ୍ୟ ଶତଶିରାର ପ୍ରଶ୍ୱାସରେ ଶତ ଶତ ଯୋଜନ ଦୂରକୁ ବିକ୍ଷିପ୍ତ ହୋଇଗଲେ । ଶେଷରେ ରାମ ସ୍ୱୟଂ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ; କିନ୍ତୁ ଦେଖାଗଲା ଯେ ସେ ମଧ୍ୟ ଶତଗ୍ରୀବଙ୍କୁ ସମକକ୍ଷ ହେଉନାହାନ୍ତି । ବର୍ତ୍ତମାନ ସୀତା ଠାକୁରାଣୀ ଦୈତ୍ୟ ବିନାଶର ଦାୟିତ୍ୱ ନେଲେ । ଚିରନ୍ତନୀ ନାରୀ ଭାବରେ ସେ ଦୈତ୍ୟର ସ୍ଥୂଳଶକ୍ତିକୁ ହୀନତେଜ କରିଦେଲା ପରେ, ରାମଙ୍କ ଶରରେ ଦୈତ୍ୟର ପ୍ରତୀକ ମୃତ୍ୟୁ ଘଟିଲା । ମହୀୟାନ୍ ସ୍ୱାମୀ ଓ ମହୀୟସୀ ପତ୍ନୀଙ୍କ ଭିତରେ ତେଣିକି ଥଟ୍ଟା ଶୁଣାଗଲା – ଦଶଶିରା ରାବଣକୁ କିଏ ମାରିଥିଲା କି ?

ସାରଳା ଦାସ ଓଡ଼ିଆରେ ପ୍ରଥମ ଚଣ୍ଡୀପୁରାଣ ମଧ୍ୟ ଲେଖିଯାଇଛନ୍ତି । ସେଥିରେ ପ୍ରତିପାଦ୍ୟ ବିଷୟ ମଧ୍ୟ ସେହି କଥା – ନାରୀର ସୂକ୍ଷ୍ମ ଶକ୍ତିଦ୍ୱାରା ସ୍ଥୂଳ ପୌରୁଷର ପରାଜୟ । ଏହି ଦୁଇ ପୁସ୍ତକ ସହିତ ତାଙ୍କ ମହାଭାରତକୁ ମିଶାଇ ସମଗ୍ର ଭାବରେ ଦେଖିଲେ ଆମେ କୃଷକ-କବିଙ୍କର ମାନସିକ ଉପାଦାନର ଆଧୁନିକତାରେ ନିଶ୍ଚୟ ବିସ୍ମିତ ହେବା । ଏହିଁ କୃଷକର ଅଶିକ୍ଷିତ ପ୍ରତିଭା କେବଳ ଆତ୍ମ-ଜ୍ଞାନ ବଳରେହିଁ ଜାଣିପାରିଥିଲା ଯେ, ନାରୀର ଶାନ୍ତ, ଅଦୃଶ୍ୟ-ପ୍ରସାରଣଶୀଳ ଗୁଣାବଳୀ ନିକଟରେ ପୁରୁଷର ଦାମ୍ଭିକତାମୟ ଆସ୍ଫାଳନ-ପ୍ରିୟ ସାଡ଼ମ୍ବର ପ୍ରକୃତି ତୁଳିତହିଁ ହୋଇନପାରେ । କବିଙ୍କର ସୀତା, ଚଣ୍ଡୀ ଓ ଦ୍ରୌପଦୀ ଏକାଧାରରେ ଅସାମାନ୍ୟା ସୁନ୍ଦରୀ ଓ ଅସାମାନ୍ୟା ଭୌତିକଶକ୍ତିସମ୍ପନ୍ନା ନାରୀ । ଏହି ନାୟିକାମାନଙ୍କ ବର୍ଣ୍ଣାଢ଼୍ୟ ଓ ନମନୀୟ ସାମର୍ଥ୍ୟ ଆଗରେ ନାୟକଗୁଡ଼ିକ ସାମାନ୍ୟ ବାମନ ଜନପରି ଦଣ୍ଡାୟମାନ । କବିଙ୍କ ନାୟିକାବର୍ଗ ସର୍ବତ୍ର ସିଦ୍ଧକାମ, ନିଜର ଅସାମାନ୍ୟ ସୁଷମାଯୋଗୁଁ କେବଳ ନୁହେଁ, ନିଜର ମୌଳିକ ଚିନ୍ତା ଓ କର୍ମ-ଶକ୍ତିଯୋଗୁଁ ମଧ୍ୟ ।

ସାରଳା ଦାସ ତେଣୁ କେବଳ ଜଣେ ମହାକବି ମାତ୍ର ନୁହନ୍ତି, ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସେ ଆଧୁନିକତମ କବି ବୋଲି ମଧ୍ୟ ଧରାଯିବେ । ଏ ଦୃଷ୍ଟିକୋଣରୁ ସେ ସମଗ୍ର ଭାରତୀୟ ସାହିତ୍ୟରେ ହୁଏତ ଅନନ୍ୟସାଧାରଣ ବୋଲି ଗୃହୀତ ହେବେ । ଓଡ଼ିଶାର ଏହି ଅର୍ଦ୍ଧଶିକ୍ଷିତ କୃଷକ-କବି ତେଣୁ ସକଳ ବିଚାରବନ୍ତ ସମୀକ୍ଷକମାନଙ୍କର ପ୍ରଣତି ଭାଜନ ।

□□□

# ଅଷ୍ଟମ ଅଧ୍ୟାୟ

## ସାରଳାଙ୍କ ପରବର୍ତ୍ତୀ ଯୁଗ

### ବହୁ ଆରମ୍ଭମୟ ଏକ ଶତାବ୍ଦୀ –

ସାରଳା ଦାସଙ୍କ ପ୍ରତିଭା ଥିଲା ମୋଟରେ ସାଂସାରିକ । ଧର୍ମ ସହିତ ତାହାର ନିବିଡ଼ ସମ୍ପର୍କ ନଥିଲା, ଯେପରି ଥିଲା ଚାକ୍ଷୁଷ ଜୀବନ ସହିତ । ଶହେ ବର୍ଷପରେ ଓଡ଼ିଆ ସାହିତ୍ୟରେ କିନ୍ତୁ ଆଉ ଦଳେ ଦାସ ଦେଖାଦେଲେ; ଯେଉଁମାନେ ଏବର ଓଡ଼ିଆମାନଙ୍କ ଧାର୍ମିକ ଜୀବନର ମୂଳପତ୍ତନ ପକାଇଯାଇଛନ୍ତି । ଏହି ଦୁଇପ୍ରକାର ଦାସଙ୍କ ତିରୋଭାବ ଓ ଆବିର୍ଭାବ ଭିତରେ ପ୍ରାୟ ଶହେବର୍ଷ କାଳ ଆମେ କେବଳ କେତେଗୁଡ଼ିଏ ଉପ-ସ୍ରଷ୍ଟାଙ୍କୁ ଭେଟିବା; ଯେଉଁମାନେ କିଛି ମହନୀୟ ଦେଇ ନ ଯାଇଥିଲେହେଁ, ଗୁଡ଼ିଏ ନବାରମ୍ଭ କରିଯାଇଛନ୍ତି, ଯାହା ପରବର୍ତ୍ତୀ ଯୁଗରେ ହୋଇପଡ଼ିଛି ବିପୁଳ-ପ୍ରସାରିତ । ବିଶ୍ଳେଷଣ କରି ଆମେ ଏବେ ଦେଖିପାରୁଛୁ ଯେ, ଏହି କ୍ଷୁଦ୍ର ଶକ୍ତିମାନ୍ କିନ୍ତୁ ଉତ୍ସାହୀ ଲେଖକମାନଙ୍କ ପଛରେ ତିନୋଟି ପ୍ରେରଣା କାର୍ଯ୍ୟ କରୁଥିଲା । ସେଗୁଡ଼ିକ –

(୧) ବୌଦ୍ଧ ଧର୍ମ ଓ କବିତାର ପ୍ରଭାବ,

(୨) ଜୟଦେବ ଓ ଗୀତଗୋବିନ୍ଦର ପ୍ରଭାବ, ପୁଣି

(୩) ସ୍ୱୟଂ ସାରଳା ଦାସଙ୍କ ପ୍ରଭାବ ।

ଆମେ ଏଗୁଡ଼ିକରୁ ପ୍ରତ୍ୟେକଟିକୁ ବର୍ତ୍ତମାନ ବିଚାର କରିବା ।

### (୧) ବୌଦ୍ଧ ପ୍ରେରଣା ଓ ଆତ୍ମଜ୍ଞାନୀ କବିଗଣ –

ଓଡ଼ିଆଭାଷାରେ ଆତ୍ମଜ୍ଞାନକୁ କେନ୍ଦ୍ରକରି ଏକ ବିପୁଳ ସାହିତ୍ୟ ଗଢ଼ିଉଠିଛି । ଛଅଶହ ବର୍ଷ ପରେ ଏବେ ମଧ୍ୟ ତାମିଲ ବୀରସିଂହଙ୍କ ଶୂନ୍ୟସଂହିତା[୧] ଓ ଚୈତନ୍ୟ ଦାସଙ୍କ ନିର୍ଗୁଣମାହାତ୍ମ୍ୟ ଓ ବିଷ୍ଣୁଗର୍ଭ ପୁରାଣ ପ୍ରଭୃତି ଗ୍ରନ୍ଥ ଓଡ଼ିଶାର ଜନସାଧାରଣଙ୍କ ଭିତରେ ଜୀବନ୍ତ ପୁସ୍ତକ । ଓଡ଼ିଶାର ଜନସାଧାରଣଙ୍କୁ ଏ ଦିଗରେ ଅନୁପ୍ରାଣିତ କରିବାପାଇଁ ଏହି କାଳରେହିଁ ଦୃଢ଼ ଚେଷ୍ଟା ଆରମ୍ଭ କରାଗଲା; କିନ୍ତୁ ଯଦିଓ ଓଡ଼ିଶାର କେତେକ ପଣ୍ଡିତ-ସମାଲୋଚକ ଏଇସବୁ ତତ୍ତ୍ୱାବଳୀକୁ ଶ୍ରେଷ୍ଠ ସାହିତ୍ୟ ଓ ଓଡ଼ିଆଭାଷାର ଗୌରବ ବୋଲି ପ୍ରତିଷ୍ଠାପିତ କରିବାକୁ ଚେଷ୍ଟା କରିଆସିଛନ୍ତି, କାବ୍ୟରସର କୌଣସି ପ୍ରକୃତ ପୂଜାରୀ

---

(୧) ଶୂନ୍ୟସଂହିତା, କେବଳ ଅଚ୍ୟୁତାନନ୍ଦ ଦାସଙ୍କର ଓ ତେଣୁ ଏ ସ୍ଥାନରେ ଏ ଗ୍ରନ୍ଥର ଉଲ୍ଲେଖ ଏକ ମହାଭ୍ରମ ବୋଲି ନିନ୍ଦୁକ ସମାଲୋଚକ ପ୍ରଚାର କରିଛନ୍ତି; କିନ୍ତୁ ଏହା ଭ୍ରମ ନୁହେଁ, ସତ୍ୟ । ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ନିକଟରେ ଏ ଗ୍ରନ୍ଥ ଅଛି । କୌତୂହଳୀ ଅନୁସନ୍ଧାନ କରିପାରନ୍ତି ।

ସେଗୁଡ଼ିକୁ ସାହିତ୍ୟଜଗତରେ ଶ୍ରଦ୍ଧାର ସ୍ଥାନ ଦେବେ ବୋଲି ଆଶା କରାଯାଏ ନାହିଁ । ଆମେ ଦେଖିବା ଯେ, ଏହି ଓ ଏହାର ପରବର୍ତ୍ତୀ ଶତାବ୍ଦୀ ମଧ୍ୟ ଓଡ଼ିଆରେ ଏହି ଆତ୍ମଜ୍ଞାନ-ଚର୍ଚ୍ଚା ନାନା ବିଶୃଙ୍ଖଳ ଚିନ୍ତାରେ ଭର୍ତ୍ତି ହୋଇଯାଇଛି । ବହୁ ଚେଷ୍ଟାକରି ମଧ୍ୟ ଚିନ୍ତା ଓ କଳ୍ପନାର ଏହି ବିସ୍ତୃତ ଅରଣ୍ୟରେ ଲେଖକ କୌଣସି ଏକ ଯୁକ୍ତିଯୁକ୍ତ ଓ ପ୍ରେରଣାଦାୟୀ ଦର୍ଶନର ସନ୍ଧାନ ପାଇପାରିନାହିଁ । ଏହି ଶ୍ରେଣୀର ପ୍ରତ୍ୟେକ ଗ୍ରନ୍ଥକାର ତାଙ୍କ ପୁସ୍ତକର କଳ୍ପିତ ପାଠକବର୍ଗଙ୍କୁ ସମ୍ବୋଧନ କରି କହିବାର ଆମେ ଦେଖିବା ଯେ, ସେ ଏ ଗ୍ରନ୍ଥ ସ୍ୱୟଂ ଭଗବାନଙ୍କ ଆଦେଶରେ ଲେଖିଛନ୍ତି ଓ ଗ୍ରନ୍ଥକୁ ପଢ଼ିବା ଦୂରେ ଥାଉ; ଖାଲି ଶୁଣିଲେଇ ମନୁଷ୍ୟ ସିଧା ସ୍ୱର୍ଗକୁ ଗତିକରିବ ଏବଂ ଏହି ସମଗ୍ର ଶ୍ରେଣୀର ଲେଖକେ ଶୂନ୍ୟ ଓ ଅଲେଖର ମହିମା ପ୍ରଚାର କରିବା ସାଥେ ସାଥେ ସେହି 'ଶୂନ୍ୟ'କୁ ଆଣି ଯୋଡ଼ିଛନ୍ତି ପୁରୀ ଜଗନ୍ନାଥଙ୍କ ଦାରୁମୂର୍ତ୍ତିଠାରେ ।

କିନ୍ତୁ ଏପ୍ରକାର ବିଶୃଙ୍ଖଳ ଓ ଆପାତ ଅଯୌକ୍ତିକ ଚିନ୍ତା ପାଇଁ କେତେକ ଐତିହାସିକ କାରଣ ଅଛି । ଏହି ମଧ୍ୟଯୁଗୀୟ ଓଡ଼ିଆ ଲେଖକମାନଙ୍କର କୌଣସି ପ୍ରକାର ଐତିହାସିକ ସଚେତନତା ନଥିଲେହେଁ, ସେହିମାନଙ୍କର ରଚନାବଳି ଭିତରୁହିଁ ଆମେ ଏକ ସ୍ପଷ୍ଟ ଐତିହାସିକ ପଶ୍ଚାତ୍ ଭୂମିକାର ସନ୍ଧାନ ପାଇପାରୁଛୁ । ପୂର୍ବ ଅଧ୍ୟାୟରେ ସାରଳା ଦାସଙ୍କ ଆଲୋଚନା ସମ୍ପର୍କରେ ଆମେ ଶବରପୂଜିତ ନୀଳପ୍ରସ୍ତର କିପରି ବିଷ୍ଣୁତ୍ୱ ଲାଭକଲା, ତାହାର କିଞ୍ଚିତ୍ ପରିଚୟ ପାଇଛେ; କିନ୍ତୁ ପରେ ଏକ ଖଣ୍ଡ ପଥର କିପରି ଦି'ଭାଇ ଓ ଏକ ଭଉଣୀ ଘେନି ବିଚିତ୍ର ତ୍ରୈକ (ତିନି ଯହି ଏକ) ଦେବତା ଜଗନ୍ନାଥ ଆବିର୍ଭୂତ ହେଲେ ତାହାର ସମ୍ୟକ୍ ଆଲୋଚନା ଦରକାର କରେ । ବର୍ତ୍ତମାନର ହିନ୍ଦୁ ଦେବମଣ୍ଡଳୀରେ ଜଗନ୍ନାଥ ପ୍ରକୃତରେ ଏକାଧାରରେ ପ୍ରସିଦ୍ଧତମ ଓ ବିଚିତ୍ରତମ ଦେବତା । ହିନ୍ଦୁର ପ୍ରିୟତମ ଦେବତା ହେଲେହେଁ ଜଗନ୍ନାଥଙ୍କ ମନ୍ଦିର ପ୍ରାଙ୍ଗଣରେ ହିନ୍ଦୁସମାଜର ଶ୍ରେଷ୍ଠ ବୈଶିଷ୍ଟ୍ୟ 'ଜାତି' ଉଭେଇଯାଏ ବା କିପରି ?

ଏବେ ଏହା ସର୍ବସମ୍ମତ ଭାବରେ ଗୃହୀତ ଯେ, ତ୍ରୈକ ଦେବତା ଜଗନ୍ନାଥ (ଦି'ଭାଇ ଓ ଭଉଣୀ) ବୌଦ୍ଧ ତ୍ରିରତ୍ନ(ବୁଦ୍ଧ, ଧମ୍ମ ଓ ସଙ୍ଘ)ର ବ୍ରାହ୍ମଣ୍ୟ ରୂପାନ୍ତର ଛଡ଼ା ଅନ୍ୟ କିଛି ନୁହେଁ । ଏବେ ଯାହା ଜଗନ୍ନାଥ ମନ୍ଦିର, ସେଠାରେ ଦିନେ ଏକ ମହାଯାନୀ ବୌଦ୍ଧ ପୀଠ ଥିବାର ଅନୁମାନ କରାଯାଏ ।[୧] ପ୍ରାୟ ପ୍ରତି ବାରବର୍ଷରେ (?) ଜଗନ୍ନାଥଙ୍କର ନବକଳେବର ଉତ୍ସବ ହୁଏ । ପୁରୁଣା ପ୍ରତିମାକୁ ପରିତ୍ୟାଗ କରି ତାଙ୍କ ସ୍ଥାନରେ ନୂତନ ପ୍ରତିମା ସ୍ଥାପନ କରାଯାଏ । ବସ୍ତ୍ରାବୃତ-ଚକ୍ଷୁ ଏକ ପୂଜକ ଜଗନ୍ନାଥଙ୍କ ପ୍ରାଚୀନ ପ୍ରତିମାର କୁକ୍ଷି-କନ୍ଦରରୁ କୌଷେୟ ବସ୍ତ୍ରାବୃତ କୌଣସି ରହସ୍ୟଜନକ ଦ୍ରବ୍ୟ କାଢ଼ିଆଣି, ନୂଆ ପ୍ରତିମାର ଠିକ୍ ସେହି ସ୍ଥାନରେ ରଖିଦିଏ । ପଣ୍ଡିତମାନେ ଅନୁମାନ କରନ୍ତି ଯେ, ଏହି ରହସ୍ୟଜନକ ବସ୍ତୁଟି କୌଣସି ବୌଦ୍ଧାବଶେଷ ଛଡ଼ା ଆଉ କିଛି ନୋହିପାରେ । ହିନ୍ଦୁ ଦେବଦେବୀମାନେ

(୧) ପ୍ରସିଦ୍ଧ ଭାରତୀୟ ଶିଳ୍ପତତ୍ତ୍ୱବିତ୍ ପର୍ସି ବ୍ରାଉନ୍ କହନ୍ତି ଯେ, ଜଗନ୍ନାଥ ମନ୍ଦିରର ଉଚ୍ଚାବସ୍ଥିତି ସ୍ପଷ୍ଟ ସୂଚନା କରୁଛି ଯେ ତାହା କୌଣସି ପ୍ରାଚୀନ କୀର୍ତ୍ତିର ଧ୍ୱଂସ ଉପରେହିଁ ଠିଆହୋଇଛି ।

ସାଧାରଣତଃ ସ୍ୱାଭାବିକ ନରରୂପଧାରୀ; ଯଥା– ରାମ, କୃଷ୍ଣ, ସରସ୍ୱତୀ ଇତ୍ୟାଦି; କିନ୍ତୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ସେହିପରି ନୁହନ୍ତି । ସେମାନଙ୍କ ଆକୃତି ଯାହା ତାଙ୍କୁ 'ଅ-ଲେଖ' ବା ଶୂନ୍ୟ କହିବା ଏକାବେଳକେ ଅଯୌକ୍ତିକ ହେବନାହିଁ । ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର 'ଓଡ଼ିଶା ଇତିହାସ'ରେ ଏହି ତିନି ମୂର୍ତ୍ତିକୁ ବୌଦ୍ଧ ତ୍ରି-ରତ୍ନର ପାଲୀ ସଙ୍କେତର କାଷ୍ଠମୟ ରୂପାନ୍ତର ମାତ୍ର ବୋଲି ସ୍ପଷ୍ଟ ପ୍ରମାଣିତ କରିଛନ୍ତି ।

କେତେକଙ୍କ ମତରେ ଓଡ଼ିଶା ବଜ୍ରଯାନର ଜନ୍ମଭୂମି ଓ ବଜ୍ରଯାନର ସନ୍ତାନ ସହଜଯାନର ଏକ ଉର୍ବର କ୍ଷେତ୍ର ଥିଲା । ପୂର୍ବେ (ଚତୁର୍ଥ ଅଧ୍ୟାୟରେ) ଆଲୋଚିତ ବୌଦ୍ଧଚର୍ଯ୍ୟାପଦଗୁଡ଼ିକ ବୁଦ୍ଧବାଣୀ ଓ ତନ୍ତ୍ରବାଦର ମିଳନରୁ ଉଦ୍ଭୂତ ଏହି ଶାଖାଧର୍ମମାନଙ୍କର ଫଳ । ଓଡ଼ିଆମାନଙ୍କ ଜାତୀୟ ସଂସ୍କୃତିରେ ଏଗୁଡ଼ିକ କିନ୍ତୁ ଅଲିଭା ଛାପ ଛାଡ଼ିଯାଇଛନ୍ତି । ମହାଯାନର ଶୂନ୍ୟବାଦ, ନାଥମାନଙ୍କର ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ ଓ କିଛି ହଠଯୋଗ, ଏହି ହେଲା, କେବଳ ଏହି ଯୁଗର ନୁହେଁ, ଓଡ଼ିଆ ସାହିତ୍ୟର ସମଗ୍ର ପୁରାତନ ବିଭାଗର ଆତ୍ମତତ୍ତ୍ୱ ଲେଖକମାନଙ୍କର ଧରାବନ୍ଧା ପୁଞ୍ଜି ଏବଂ ସେହି ତଥାକଥିତ ଆତ୍ମଜ୍ଞାନର ବିରାଟ ପ୍ରବାହର କ୍ଷୀଣାରମ୍ଭ ଘଟିଥିଲା ଅବଶ୍ୟ ଏହି କାଳରେ ।

## ନିର୍ଗୁଣ ମାହାତ୍ମ୍ୟ –

ଓଡ଼ିଆ ସାହିତ୍ୟର ଏହି କାଳରେ ଲେଖାଥିବା ଏହି ଶ୍ରେଣୀର ରଚନାବଳି ବିଶେଷ ଭାବରେ ମୂଲ୍ୟବାନ୍ ହୋଇଉଠିଛନ୍ତି ଏହି କାରଣରୁ ଯେ; ଆମେ ସେଥିରେ ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ଆପୋଷ-ମିଳନର ଶେଷ ପର୍ଯ୍ୟାୟଟି ବେଶ୍ ସ୍ପଷ୍ଟଭାବରେ ଦେଖି ପାରୁଛୁ । ଆମେ ଆଜି ଏହା ମଧ୍ୟ ଦେଖି ବିସ୍ମିତ ହେବା ଯେ, ସେଦିନ ଏ ଭୂମିରେ ବ୍ରାହ୍ମଣ୍ୟ ସଂସ୍କୃତି ବିରୁଦ୍ଧରେ ବହୁ ପ୍ରଚ୍ଛନ୍ନ ଓ ପ୍ରକଟ ପ୍ରତିବାଦ ଏବଂ ପ୍ରତିରୋଧ ଦେଖାଦେଇଥିଲା । ସାରଳା ମହାଭାରତରେ ଜୈନ-ବୌଦ୍ଧ-ସଂସ୍କୃତି ଯେପରି ମହନୀୟ ଭାବରେ ଚିତ୍ରିତ ହୋଇଛି, ମହାଭାରତର ମୁଖ୍ୟ ନାୟକ ଶ୍ରୀକୃଷ୍ଣଙ୍କ ବ୍ୟକ୍ତିତ୍ୱ ସେପରି ହୋଇଛି କି ? ସାରଳା ମହାଭାରତରେ ଶ୍ରୀକୃଷ୍ଣ ଏକ ସ୍ତ୍ରୈଣ ଓ ନୀତିଜ୍ଞାନବିରହିତ ଲୋକପରି ଚିତ୍ରିତ । ସାରଳାଙ୍କ ଅଳ୍ପ ପରେ ଆସୁଥିବା ଚୈତନ୍ୟ ଦାସଙ୍କ 'ନିର୍ଗୁଣ ମାହାତ୍ମ୍ୟ' ଗ୍ରନ୍ଥରେ ଗ୍ରନ୍ଥକାର ବୈଷ୍ଣବ ହେଲେହେଁ ବୁଦ୍ଧଙ୍କୁ କୃଷ୍ଣଙ୍କଠାରୁ ଉଚ୍ଚତର ବୋଲି ସ୍ପଷ୍ଟ ଘୋଷଣା କରନ୍ତି ।[୧] ସେ ତାଙ୍କ ବହିରେ (ଅଧ୍ୟାୟ ୧୬) କହୁଛନ୍ତି – "କୃଷ୍ଣ ଗୋପାଳ ଓ ଉଚ୍ଚବଂଶଜା ନାରୀମାନଙ୍କର

(୧) ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଠାରୁ ଆଣିଥିବା ନୋଟ୍‌ଖାତା ଏ ବହିର କାଳସହାର ଯେ ମୂଳଭିତ୍ତି ତାହା ଅନ୍ୟତ୍ର କହିଛି । ବହି ଲେଖାସରିଲା ପରେ ନୋଟ୍‌ଟିକୁ ଆର୍ତ୍ତବାବୁଙ୍କୁ ଫେରାଇ ଦେଇଥିଲି । ତାଙ୍କରି ନୋଟ୍ ଅନୁସାରେ ନିର୍ଗୁଣ ମହାତ୍ମ୍ୟକୁ ମୁଁ ଏହି କାଳରେ ଥୋଇଛି; କିନ୍ତୁ ଗ୍ରନ୍ଥକାରଙ୍କ 'ଚୈତନ୍ୟ' ନାମ ତାଙ୍କୁ ଚୈତନ୍ୟ-ପୂର୍ବ କି ବୋଲି ସନ୍ଦେହ କଲାବେଳକୁ ତାଙ୍କର ଆଲୋଚନା ଚୈତନ୍ୟ-ପର ହୋଇପାରେ କି ବୋଲି ମଧ୍ୟ ସନ୍ଦେହ ହେଉଛି । ଚୈତନ୍ୟ ଦାସ ଓ ତାଙ୍କ ନିର୍ଗୁଣ ମାହାତ୍ମ୍ୟ ସମ୍ପର୍କରେ ନିଶ୍ଚିତ କାଳ-ନିରୂପଣ ଯଦି ହୋଇଥାଏ; ତେବେ କେହି ପାଠକ ବା ଅଧ୍ୟାପକ ଜଣାଇଲେ ଲେଖକ କୃତଜ୍ଞ ହେବ ।

ସତୀତ୍ୱ ନଷ୍ଟ କରିଥିଲେ କେବଳ ନୁହେଁ, ସେ ନିଜର ମାନନୀୟା ନାରୀଜନଙ୍କୁ ମଧ୍ୟ ଭୋଗ କରିଥିଲେ । ସେ ଗୋହତ୍ୟାକାରୀ ଓ ନିଜର ମାତୃକ ହତ୍ୟାକାରୀ ।'' କିନ୍ତୁ ବୁଦ୍ଧଙ୍କ ସମ୍ପର୍କରେ ସେ କହୁଛନ୍ତି – ''ସେ ଯଜ୍ଞର ବିରୋଧ କରି, ବିଶୁଦ୍ଧ ବ୍ରହ୍ମଜ୍ଞାନହିଁ ପ୍ରଚାର କରିଛନ୍ତି । ଜପ, ତୀର୍ଥଯାତ୍ରା, ଆଚାରାଦି ବାହ୍ୟକର୍ମମାନଙ୍କ ଅପେକ୍ଷା ସେ ବ୍ରହ୍ମଜ୍ଞାନକୁହିଁ ଉଚ୍ଚତର ସ୍ଥାନ ଦେଇଛନ୍ତି । ବୁଦ୍ଧ-ନାରାୟଣ ଏହିପରି ସବୁ ମତ ପରିତ୍ୟାଗ କରି ଆତ୍ମଜ୍ଞାନକୁହିଁ ଶ୍ରେଷ୍ଠ ଧର୍ମ ବୋଲି ପ୍ରତିପାଦିତ କରିଯାଇଅଛନ୍ତି ।''

ଉତ୍କଳୀୟ ବୁଦ୍ଧିଜୀବୀମାନଙ୍କର ଏତାଦୃଶ ବିରୋଧରୁ କ୍ରମେ ପରସ୍ପର ସଂଗତି-ଶୂନ୍ୟ ବୁଦ୍ଧ, କୃଷ୍ଣ ଓ ଜଗନ୍ନାଥଙ୍କର ତିନି ବ୍ୟକ୍ତିତ୍ୱଯାକ ମିଶି ଗୋଟିଏ ଦେବତା କିପରି ସୃଷ୍ଟି ହୋଇପାରିଲା, ଧର୍ମ-ଜଗତର ତାହା ଏକ ପରମ ବିସ୍ମୟକର କାହାଣୀ । ସାରଳା ମହାଭାରତର ଏ ସଂପୃକ୍ତ ଆଲୋଚନାରେ ଏହି ବିବର୍ତ୍ତନର ଯେଉଁ ଅଂଶ ବର୍ଣ୍ଣିତ ହୋଇଛି, ଅର୍ଥାତ୍ ଜାରା-ଶବରର ମଧ୍ୟସ୍ଥତାରେ ଶ୍ରୀକୃଷ୍ଣ-ଜଗନ୍ନାଥ ମିଳନ, ତାହା ସୂଚିତ କରୁଛି ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ସମ୍ମିଶ୍ରଣ । ପୁରୀ, ଜଗନ୍ନାଥଙ୍କ ରହସ୍ୟମୟ ବ୍ୟକ୍ତିତ୍ୱର ଏ ହେଲା ଏକାର୍ଦ୍ଧ ମାତ୍ର । ତାହାର ଦ୍ୱିତୀୟାର୍ଦ୍ଧ ହେଲା ହିନ୍ଦୁ ଓ ବୌଦ୍ଧ ସଂସ୍କୃତିର ମିଳନ । ଏହି କାଳରେ ଲେଖା ବିପ୍ର ନୀଳାମ୍ବରଙ୍କର 'ଦେଉଳତୋଳା ସୁଆଙ୍ଗ' ଏହି ହିନ୍ଦୁ ବୌଦ୍ଧ ମିଶାମିଶିର ଏକ ବ୍ୟଞ୍ଜନାପୂର୍ଣ୍ଣ ଗୁରୁତ୍ୱପୂର୍ଣ୍ଣ ସାକ୍ଷ୍ୟ ।[୧]

**ଦେଉଳତୋଳା ସୁଆଙ୍ଗ –**

ବିପ୍ର ନୀଳାମ୍ବର ଯେ ଏ ପୁସ୍ତକ ଲେଖିବାପାଇଁ ପୂର୍ବସୂରି ସାରଳା ଦାସଙ୍କଠାରୁ ସଙ୍କେତ ଓ ପ୍ରେରଣା ଲାଭ କରିଥିଲେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ସାରଳାଙ୍କ ଗଳ୍ପକୁ ସେ ପଲ୍ଲବିତ କରିଛନ୍ତି ଓ ସେଥିରେ କେତେକ ନାଟକୀୟତା ମିଶାଇପାରିଛନ୍ତି, ଯାହା ଯୋଗୁଁ ତାଙ୍କର ଏହି କ୍ଷୁଦ୍ର ଗାଥାଟି ନାଥଯୋଗୀମାନଙ୍କର ଗାନ ବା ଗ୍ରାମ୍ୟ ଜନତାର ଅଭିନୟ ଦେଇ, ଉତ୍କଳର ପଲ୍ଲୀ ଅଞ୍ଚଳରେ ଏପର୍ଯ୍ୟନ୍ତ ଜନପ୍ରିୟ ଭାବରେ ପ୍ରସାରିତ ରହିଛି । ଏହି କାଳର ରାଶି ରାଶି ଆତ୍ମତତ୍ତ୍ୱଆଲୋଚନା ଭିତରେ ଏହି ଛୋଟ ଗାଥାଟି ହୁଏତ ଏକମାତ୍ର ସୃଷ୍ଟି ଯାହାକୁ ଆମେ 'ସାହିତ୍ୟ' କହିପାରିବା । ଏହାର ଗଠନଚାତୁରୀ ନାହିଁ କହିଲେ ଚଳେ; କିନ୍ତୁ ଏହାର ଅନ୍ତର୍ନିହିତ ରହସ୍ୟ ଓ ମାନବିକତା ଏବଂ ଅତି ଅତୀତ କାଳରେ ଉତ୍କଳୀୟ ଜନତାର ଧର୍ମବିଶ୍ୱାସର ପରିବର୍ତ୍ତନର ସୂଚନା ଏଥିରୁ ମିଳେ । ଦେଉଳତୋଳା ସୁଆଙ୍ଗର ଗଳ୍ପଟି ଏହିପରି –

---

(୧) କେହି କେହି ଏହାକୁ 'ସୁଆଙ୍ଗ' କହିବାରେ ଆପତ୍ତି ଉତ୍ଥାପନ କରିଛନ୍ତି; କିନ୍ତୁ ଏହା ଏପରି କ୍ଷୁଦ୍ର ଯେ ଏହା 'ପୁରାଣ'ର ସ୍ପର୍ଦ୍ଧା ରଖିନପାରେ । ପୁରାଣ କାହାକୁ କୁହାଯିବ ତାର ନିର୍ଦ୍ଦିଷ୍ଟ ସଂଜ୍ଞା ଅଛି, ଯାହା ଏହି ଚଟି ବହିଟିରେ ଆମେ ପାଇବା ନାହିଁ । ଏହାର ସେ ପ୍ରକାର ସାହିତ୍ୟିକ ମୂଲ୍ୟ ନାହିଁ । ଏହାର ସ୍ୱକୀୟ ଅନନ୍ୟ ସାର୍ଥକତାଯୋଗୁହିଁ ଏଠାରେ ଏହାର ଏପରି ବିସ୍ତୃତ ଆଲୋଚନା ପାଇପାରିଛି । ଲେଖକର ଗ୍ରାମାଞ୍ଚଳରେ ପୂର୍ବେ ଏହା ଯାତ୍ରା ଭାବରେ ଅଭିନୀତ ହେଉଥିଲା । ଯାହା ଅଭିନେୟ, ତାହା ସୁଆଙ୍ଗ । ପୁରାଣଟାଏ ଅଭିନୀତ ବା ହେବ କିପରି ?

ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁ-ଅର୍ଚ୍ଚନା ପାଇଁ ଚତୁର୍ଦ୍ଦିଗକୁ ବିଷ୍ଣୁ ଅନ୍ୱେଷଣରେ ଦୂତ ପଠାଇଲେ । ପୂର୍ବ ଦିଗକୁ ଯେ ଆସିଲେ, ତାଙ୍କ ନାମ ବିଦ୍ୟାପତି ଓ ସେ ଥିଲେ ବ୍ରାହ୍ମଣ । ପୂର୍ବଭାରତର ଘୋର ଜଙ୍ଗଲ ସବୁ ଅତିକ୍ରମ କରି ଶେଷରେ ସେ ପୂର୍ବ ଉପକୂଳରେ ଆସି ପହଞ୍ଚିଲେ ଓ ଜାଣିପାରିଲେ ଯେ, ଏକ ପାହାଡ଼ର ଗୋପନ ସ୍ଥଳରେ ବିଶ୍ୱାବସୁ ନାମକ ଶବର ଏକ ନୀଳପ୍ରସ୍ତର ରୂପରେ ବିଷ୍ଣୁଙ୍କର ପୂଜା କରୁଛି । ବିଶ୍ୱାବସୁ ବିଦ୍ୟାପତିଙ୍କୁ ଅତ୍ୟନ୍ତ ସୁନ୍ଦର ପୁରୁଷ ଦେଖି, ତାଙ୍କୁ ନିଜ ଝିଅ ସାଥିରେ ବାଧ କରି ବିବାହ କରାଇଦେଲା । ବିଦ୍ୟାପତି କିଛିକାଳ ସେଠାରେ ରହିଲେ ଓ ଶବର-ସ୍ତ୍ରୀଙ୍କ ସହାୟତାରେ ଦେବତାର ସନ୍ଧାନ ପାଇବା ପରେ ମାଳବକୁ ଫେରିଗଲେ ।

ରାଜା ଇନ୍ଦ୍ରଦ୍ୟୁମ୍ନ ବିଦ୍ୟାପତିଙ୍କଠାରୁ ସମ୍ବାଦ ପାଇ ସସୈନ୍ୟ ପୂର୍ବ ଉପକୂଳକୁ ଯାତ୍ରାକଲେ; କିନ୍ତୁ ଦେଖାଗଲା ଯେ, ପର୍ବତର ଗୋପନ ସ୍ଥାନରେ ପୂର୍ବର ନୀଳପ୍ରସ୍ତର ନାହିଁ । ରାଜା ଶବରପଲ୍ଲୀ ଅବରୋଧ କରି ବିଶ୍ୱାବସୁକୁ ବନ୍ଦୀ କଲେ । ଶବର କିନ୍ତୁ ନିଜର ନିରପରାଧତା ବ୍ୟକ୍ତ କଲା । ରାଜା ଆକାଶ-ବାଣୀ ଶୁଣିଲେ ଯେ, ଦେବତା ନୀଳମାଧବ (ନୀଳପ୍ରସ୍ତରର ନାମ) ରାଜାର ଅହମିକା ଯୋଗୁ ଉଭେଇଯାଇଛନ୍ତି । ଯଦି ରାଜା ତାଙ୍କ ପାଇଁ ଗୋଟିଏ ଉପଯୁକ୍ତ ଦେବାଳୟ ଗଢ଼ିବେ, ତେବେ ସେ ପୁଣି ଆବିର୍ଭୂତ ହେବେ । ରାଜା ଇନ୍ଦ୍ରଦ୍ୟୁମ୍ନ ସେଥିପାଇଁ ବିରାଟ ଜଗନ୍ନାଥ ଦେଉଳ ତୋଳାଇଲେ; କିନ୍ତୁ ଦେଉଳ ତ ପ୍ରତିଷ୍ଠା ହେବ । ଏହି ଜଙ୍ଗଲରେ ଉପଯୁକ୍ତ ବ୍ରାହ୍ମଣ କାହାନ୍ତି ? ରାଜା ମଧ ଭାବିଲେ ଯେ, ବିଷ୍ଣୁଙ୍କ ପାଇଁ ସେ ଯେଉଁ ବିରାଟ ମନ୍ଦିର ତିଆକରାଇଛନ୍ତି, ତାହାକୁ ପ୍ରତିଷ୍ଠା କରିବାକୁ ଏକମାତ୍ର ଯୋଗ୍ୟ ସ୍ୱୟଂ ବ୍ରହ୍ମା । ରାଜା ତେଣୁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ଗଲେ । ସେତେବେଳେ ବ୍ରହ୍ମା ଧ୍ୟାନରେ ବସିଥିଲେ । ରାଜା କିଛିକାଳ ଅପେକ୍ଷା କଲେ । ଧ୍ୟାନଭଙ୍ଗ ପରେ ବ୍ରହ୍ମା ରାଜାଙ୍କ ଅନୁରୋଧ ରକ୍ଷାକରି ପୃଥିବୀକୁ ଆସି ଇନ୍ଦ୍ରଦ୍ୟୁମ୍ନଙ୍କ ଦେଉଳ ପ୍ରତିଷ୍ଠା କରିବା ପାଇଁ ରାଜିହେଲେ ।

କିନ୍ତୁ ବ୍ରହ୍ମଲୋକରେ ରାଜା ଇନ୍ଦ୍ରଦ୍ୟୁମ୍ନ ଯେଉଁ କିଛିକାଳ ଅପେକ୍ଷା କଲେ, ସେହି କାଳ ଭିତରେ ପୃଥିବୀପୃଷ୍ଠରେ ବହୁ ଯୁଗ ବିତିଯାଇ ଇନ୍ଦ୍ରଦ୍ୟୁମ୍ନ-ନିର୍ମିତ ସମଗ୍ର ବିରାଟ ଦେଉଳଟି ବାଲିରେ ପୋତିହୋଇଯାଇଥିଲା । ଗାଲମାଧବ ନାମଧାରୀ ଏକ ନୂଆ ରାଜା ଦିନେ ଘୋଡ଼ାରେ ଚଢ଼ି ସମୁଦ୍ରକୂଳେ ଯାଉ ଯାଉ ତାଙ୍କର ଘୋଡ଼ା ଝୁଣ୍ଟିଲା । ସେ ଓହ୍ଲାଇ ଦେଖିଲେ ଯେ, ବାଲି ଭିତରୁ ଏକ ଚକ୍ର ଦେଖାଯାଉଛି । ସେ ସେହି ସ୍ଥାନ ଖୋଳାଇଲେ ଓ ଇନ୍ଦ୍ରଦ୍ୟୁମ୍ନ-ନିର୍ମିତ ସମଗ୍ର ଦେଉଳଟି ବାହାରିଲା । ଗାଲମାଧବ ସେ ମନ୍ଦିରର ପ୍ରତିଷ୍ଠା କରିବାକୁ ଗଲାବେଳକୁ ବ୍ରହ୍ମାଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନ ଆସି ହାଜର ହେଲେ ଏବଂ ଉଭୟେ ଏ ଦେଉଳ ମୋର ବୋଲି ଦାବି କରିବାକୁ ଲାଗିଲେ । ପୁରୀର ଇନ୍ଦ୍ରଦ୍ୟୁମ୍ନ ପୋଖରୀର ବିରାଟ କୂର୍ମମାନେ ଶେଷରେ ସାକ୍ଷ୍ୟଦେଲେ ଯେ, ଇନ୍ଦ୍ରଦ୍ୟୁମ୍ନ ରାଜା ଦେଉଳ ତୋଳାଇଛନ୍ତି, ସେମାନେ ସେ ଦେଉଳକୁ ପଥର ବୋହି ବୋହି କୂର୍ମ ହୋଇଯାଇଛନ୍ତି ।[୧]

(୧) ପୁରୀର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ଲକ୍ଷ ଲକ୍ଷ ଯାତ୍ରୀଙ୍କୁ କୌତୁକ ଯୋଗାଇଆସୁଥିବା, ଏହି ବିରାଟକାୟ କୂର୍ମଗୋଷ୍ଠୀ ନିକଟରେ ବିନଷ୍ଟ ହୋଇଯାଇଅଛନ୍ତି ବୋଲି ଶୁଣାଯାଏ ।

ଇନ୍ଦ୍ରଦ୍ୟୁମ୍ନ ତ ଦେଉଳ ଟେରିଟ ଇଲେ, ବ୍ରହ୍ମ ପ୍ରତିଷ୍ଠା କରିବାକୁ ପ୍ରସ୍ତୁତ; କିନ୍ତୁ ଦେବତା କାହାନ୍ତି ? କାହାର ପ୍ରତିଷ୍ଠା ସେ କରିବେ ? ରାଜା ଇନ୍ଦ୍ରଦ୍ୟୁମ୍ନ ଅଧା ପଡ଼ିଲେ ଓ ଦେବାଦେଶ ପାଇଲେ ଯେ ତହିଁ ଆରଦିନ ସେ ନିକଟବର୍ତ୍ତୀ ନଦୀମୁହାଣରେ ଏକ ଭାସମାନ କାଷ୍ଠଖଣ୍ଡରୂପେ ଦେଖାଦେବେ । ସକାଳେ କାଷ୍ଠଖଣ୍ଡ ଭାସୁଥିବାର ଦେଖାଗଲା; କିନ୍ତୁ ରାଜା ଓ ରାଜାଙ୍କ ସୈନ୍ୟସାମନ୍ତ କେହି ସେ କାଠକୁ ଘୁଞ୍ଚାଇ ପାରିଲେ ନାହିଁ । ରାଜାଙ୍କୁ ଶୂନ୍ୟାଦେଶ ହେଲା ଯେ, ଏତେ ପରିଶ୍ରମ ଦର୍କାର ନାହିଁ; ସେ ଶବର ବିଶ୍ୱାବସୁ ଓ ବ୍ରାହ୍ମଣ ବିଦ୍ୟାପତିଙ୍କୁ ଡାକିଆଣନ୍ତୁ, ଦୁହେଁ ଦୁଇପାଖ ଧରି ଟାଣିନିଅନ୍ତୁ । ସତକୁ ସତ ଭାରତର ଦେବତା ଆର୍ଯ୍ୟ ଓ ଅନାର୍ଯ୍ୟର ସହଯୋଗରେ ଚଳମାନ ହୋଇଉଠିଲେ ।

ଦେଉଳତୋଳା ଗାଥାର ଏ ହେଲା ପୂର୍ବାଂଶ । ତା'ର ଅପରାଂଶକୁ ଯିବା ପୂର୍ବରୁ ଏହି ଅଂଶ ସହିତ ସାରଳାଙ୍କ ଗଳ୍ପର ଭେଦାଭେଦ ଆମର ଦେଖିନେବା ଉଚିତ ।

ସାରଳାଙ୍କ ଗଳ୍ପରେ ଶବରର ନାମ ଜାରା ଓ ମାଳବାଗତ ବ୍ରାହ୍ମଣର ନାମ ବିଶ୍ୱାବସୁ; କିନ୍ତୁ ବିପ୍ର ନୀଳାମ୍ବରଙ୍କ ଗଳ୍ପରେ ଜାରା ନାହିଁ; ତା ସ୍ଥାନରେ ବିଶ୍ୱାବସୁ ଠିଆହୋଇଛି ଶବର ଭାବରେ । ବିଶ୍ୱାବସୁ କୌଣସିମତେ ଏକ ଶବରର ନାମ ହୋଇନପାରେ । ସାରଳାଙ୍କ ଗଳ୍ପ ତେଣୁ ମୌଳିକ ଏବଂ ବିପ୍ର ନୀଳାମ୍ବରଙ୍କ ଗଳ୍ପ, ସେତେବେଳକୁ ଉତ୍କଳୀୟ ସାମାଜିକ ଜୀବନ କିପରି ସମ୍ପୂର୍ଣ୍ଣ ଭାବରେ ହିନ୍ଦୁ ହୋଇଯାଇଛି, ତାହାହିଁ ସୂଚିତ କରେ । ବର୍ତ୍ତମାନ ଅପରାଂଶ କହିବା ।

ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ଖଣ୍ଡେ କାଠକୁ ଦେବତା କରିବା ପରିବର୍ତ୍ତରେ, ସେହି କାଠରୁ ମୂର୍ତ୍ତିଗଢ଼ିବାର ପ୍ରସ୍ତାବ କଲେ । ରାଜା ତେଣୁ ଉତ୍ତମ କାଷ୍ଠଶିଳ୍ପୀ ପାଇଁ ଡେଙ୍ଗୁରା ଦେଲେ । ଅନେକ ଆସିଲେ; କିନ୍ତୁ ସେ କାଠ ଏତେ ଶକ୍ତ ଥିଲା ଯେ, ସେମାନଙ୍କ ନିହାଣ ନଷ୍ଟ ହୋଇଗଲା । ସବାଶେଷରେ ଜଣେ ବୁଢ଼ା ବଢ଼େଇ ଦେଖାଦେଲେ । କହିଲେ, ସେ ସେହି ମୂର୍ତ୍ତି ଗଢ଼ିଦେବେ; କିନ୍ତୁ ଏଇ ସର୍ତ୍ତରେ ଯେ, ସେ ମନ୍ଦିର ଭିତରେ କାମ କରିବେ, ଏକୋଇଶ ଦିନ ଗତ ହେଲା ପର୍ଯ୍ୟନ୍ତ କେହି ମନ୍ଦିରର କବାଟ ଖୋଲିବେ ନାହିଁ ।

କିଛିଦିନଧରି ମନ୍ଦିର ଭିତରୁ ବଢ଼େଇ କାମ କରୁଥିବାର ଠକ୍ ଠକ୍ ଶବ୍ଦ ଶୁଣାଯାଉଥିଲା; କିନ୍ତୁ କ୍ରମେ ସମ୍ପୂର୍ଣ୍ଣ ନିରବତା ଦେଖାଦେଲା । ରାଣୀ ସନ୍ଦେହ କଲେ ଯେ, ବୁଢ଼ା ବଢ଼େଇଟି ବୋଧହୁଏ ମନ୍ଦିର ଭିତରେ ମରିଗଲାଣି ଏବଂ ରାଜା ଯେତେ ମନାକଲେ ମଧ ସେ ମନ୍ଦିର ଦ୍ୱାର ଖୋଲିଦେଲେ; କିନ୍ତୁ ଦେଖାଗଲା ଯେ ବଢ଼େଇ ନାହିଁ, କେବଳ ଅଧା-ଗଢ଼ା ତିନିଟି ମୂର୍ତ୍ତି ରହିଛି । ସେହି ତିନିମୂର୍ତ୍ତିହିଁ ଏବର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବା ବୌଦ୍ଧ ବୁଦ୍ଧ, ଧମ୍ମ, ସଂଘ । ପରେ ବୌଦ୍ଧ ସଦ୍ଧର୍ମଚକ୍ରକୁ ସୁଦର୍ଶନଚକ୍ରରୂପେ ରୂପାନ୍ତରିତ କରି, ବୌଦ୍ଧ-ବ୍ରାହ୍ମଣ୍ୟ ମିଳନକୁ ପରିପୂର୍ଣ୍ଣତା ଦେବାର ହୁଏତ ଚେଷ୍ଟା କରାଯାଇଛି ।

ଯାହାହେଉ ବ୍ରହ୍ମ ପ୍ରତିଷ୍ଠା ଉତ୍ସବ ସମାପନ କଲେ । ନବସ୍ଥାପିତ ଜଗନ୍ନାଥ, ନିଜ ମନ୍ଦିରରେ ନିମ୍ନଲିଖିତମତେ ସେବା-ପୂଜାର ବ୍ୟବସ୍ଥା କରିବାକୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଆଦେଶ ଦେଲେ —

(୧) ନୀଳମାଧବ ଭାବରେ ଯେଉଁ ଶବର ତାଙ୍କର ପୂଜା କରୁଥିଲା, ତାହାର ବଂଶଧରମାନେ ଦେଉଳରେ ସେବକ ହେବେ ।

(୨) ତାଙ୍କର ଆବିଷ୍କାରକ ବ୍ରାହ୍ମଣ ବିଦ୍ୟାପତିର ବ୍ରାହ୍ମଣୀ ଅଂଶର ବଂଶଧରମାନେ ଦେଉଳରେ ପୂଜାରୀ ହେବେ ।

(୩) ବିଦ୍ୟାପତିର ଶବରୀ-ପତ୍ନୀଜାତ ବଂଶଧରମାନେ ଦେଉଳରେ ସୂପକାର ହେବେ ।

ପୁରୀ ଜଗନ୍ନାଥ ଦେଉଳରେ ସେବା-ପୂଜାର ବ୍ୟବସ୍ଥା ଏହି ନିୟମରେ ଏବଯାଏଁ ଚାଲିଆସିଛି । ଜଗନ୍ନାଥଙ୍କ ସେବା-ପୂଜାରେ ଅନାର୍ଯ୍ୟମାନଙ୍କ ଅଧିକାର ଓ ଦେଉଳ-ପ୍ରାଚୀର ଆରପଟେ ହିନ୍ଦୁ ଜାତିପ୍ରଥାର ସଂପୂର୍ଣ୍ଣ ଅବସାନ, ଅତୀତରେ ଜଗନ୍ନାଥଙ୍କର ଆଦିବାସୀ ଓ ବୌଦ୍ଧ ଜୀବନ ସ୍ପଷ୍ଟ ପ୍ରମାଣ କରୁଛି ।

ଜଗନ୍ନାଥ ଶେଷରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏକ ବର ମାଗିବାକୁ କହିଲେ । ରାଜା ବର ମାଗିଲେ – ''ହେ ପ୍ରଭୁ, ଏହି ବର ଦିଅ ଯେ, ମୁଁ ସଂପୂର୍ଣ୍ଣ ନିର୍ବଂଶ ହୁଏ, ଯେପରି ମୋର କୌଣସି ମୂର୍ଖ ଉତ୍ତରାଧିକାରୀ ଗର୍ବରେ କହିବାକୁ ନଥିବ ଯେ, ତା'ର ପୂର୍ବପୁରୁଷ ଏ ଦେଉଳ ତୋଳାଇଥିଲା ।'' ପ୍ରଭୁ ଭକ୍ତର ସେହି ଉଦାର ପ୍ରାର୍ଥନା ଗ୍ରହଣ କରିଥିଲେ । ତେଣୁ ଏପର୍ଯ୍ୟନ୍ତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ୟକ୍ତିତ୍ୱ ରହସ୍ୟାବୃତ ହୋଇ ରହିଛି । (୧)

## (୨) ଗୀତଗୋବିନ୍ଦର ପ୍ରଭାବ –

ଜଣେ ଶିକ୍ଷିତ ଇଂରେଜ ନିକଟରେ ଲିରିକ୍ (Lyric) ଓ ବାଲାଡ୍ (Ballad) କଥା ବା ଗାଥା କବିତା କହିଲେ ଯାହା ବୁଝାଏ, ଓଡ଼ିଆ ନିକଟରେ କୋଇଲି ଓ ଚଉତିଶା (ଦେଖନ୍ତୁ ଷଷ୍ଠ ଅଧ୍ୟାୟ) ପ୍ରାୟ ସେଇଆହିଁ ବୁଝାଏ । ଅଧିକନ୍ତୁ କୋଇଲି ଓ ଚଉତିଶା ଉଭୟରେ ଆମେ ଇଂରାଜୀ ସାହିତ୍ୟର 'ଲିରିକ୍' ଓ 'ବାଲାଡ୍'ର ମିଶ୍ରିତ ରସ ପାଉଁ । ତେଣୁ ଏଗୁଡ଼ିକୁ 'ଲିରିକାଲ୍ ବାଲାଡ୍' ବା ଗୀତି-ଗାଥା କୁହାଯାଇପାରେ ।

କୋଇଲିର ସଂଖ୍ୟା ଓଡ଼ିଶାରେ ବେଶି ନୁହେଁ । ପୁଣି କୋଇଲିକି ଲକ୍ଷ୍ୟକରି ବୋଲା ହେଉଥିବାରୁ, ଏହି ଶ୍ରେଣୀର କବିତାବଳିକୁ ବିଶେଷ ଭାବରେ 'କୋଇଲି' କୁହାଗଲେ ମଧ୍ୟ ତଥାକଥିତ କୋଇଲି-କବିତା ମଧ୍ୟ ଏକପ୍ରକାର 'ଚଉତିଶା'; କାରଣ ପ୍ରକୃତ ଚଉତିଶା-ମାନଙ୍କ ପରି ପ୍ରତ୍ୟେକ କୋଇଲି-କବିତା ମଧ୍ୟ କ ଠାରୁ କ୍ଷ ପର୍ଯ୍ୟନ୍ତ ୩୪ ଅକ୍ଷରକୁ ଆଶ୍ରୟ କରି ରଚିତ । କୋଇଲି ଓ ଚଉତିଶାମାନଙ୍କର ବର୍ଣ୍ଣନୀୟ ବିଷୟମାନଙ୍କ ଭିତରେ ମଧ୍ୟ

---

(୧) ଏହି ଇନ୍ଦ୍ରଦ୍ୟୁମ୍ନ ଗୁଜୁରାଟର ପ୍ରତାପୀ ବୈଷ୍ଣବ ନରପତି ରୁଦ୍ରଦମନ ହୋଇପାରନ୍ତି ବୋଲି, ଓଡ଼ିଶା ମ୍ୟୁଜିୟମ୍‌ର କ୍ୟୁରେଟର ଶ୍ରୀ ଏସ୍.ସି. ଦେବଙ୍କର ସୂଚନା କୌଣସି ପ୍ରବନ୍ଧରେ ଲେଖକର ଦୃଷ୍ଟିକୁ ଆସିଛି । ଏହା ଇତିହାସଦୃଷ୍ଟିରୁ ବିଚାରଣୀୟ । ତେବେ ଗାଲମାଧବ କିଏ ? ହାତିଗୁମ୍ଫା ଲିପିରୁ ଅନୁମାନ ହେଉଛି ଯେ, ଖାରବେଳ ପୁରୀ ଓ ସେଠାରେ ଥିବା କୌଣସି ଦେବାୟତନର ସଂସ୍କାର କରିଥିଲେ । ସେହି କି ପରେ ଲୋକମୁଖରେ ଗାଲମାଧବ ପାଲଟିଛନ୍ତି ? ରିସର୍ଚ୍ଚ ନାମରେ ଜଗନ୍ନାଥଙ୍କୁ ନେଇ ଗୁଡ଼ାଏ ତାତ୍ତ୍ୱିକ ହଯବରଲ ଏ ଦେଶରେ ଦେଖାଦେଇଛି ମାତ୍ର । ପ୍ରକୃତ ଐତିହାସିକ ଆଲୋଚନା ଆରମ୍ଭହିଁ ହୋଇନାହିଁ ।

ବିଶେଷ ପ୍ରଭେଦ ନାହିଁ । ତେଣୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର କବିତାମାନଙ୍କର ଏକ ସାମଗ୍ରିକ ନାମ ଭାବରେ କେବଳ 'ଚଉତିଶା'କୁହିଁ ବ୍ୟବହାର କଲେ କିଛି କ୍ଷତି ହେବନାହିଁ ।

ଚଉତିଶା କିନ୍ତୁ ଓଡ଼ିଆଭାଷାର ଅନନ୍ୟ ଭାବର ନିଜସ୍ୱ ସଂପଦ ନୁହେଁ । ଏହା ସଂସ୍କୃତରୁହିଁ ଓଡ଼ିଆକୁ ଆସିଛି ଏବଂ ବୋଧହୁଏ ଓଡ଼ିଆପରି ଅନ୍ୟ ସମସ୍ତ ଭାରତୀୟ ଭାଷାମାନଙ୍କରେ ଅଳ୍ପ ବହୁତ ହୋଇ ଚଉତିଶା ଅଛି; କିନ୍ତୁ ଓଡ଼ିଆଭାଷାରେ ଚଉତିଶାର ଯେଉଁ ପ୍ରାଚୁର୍ଯ୍ୟ ଓ ଯେଉଁ ଆଗ୍ରହ ଦେଖାଯାଇଛି, ତାହା ବୋଧହୁଏ ଅନ୍ୟ କୌଣସି ଭାରତୀୟ ଭାଷାରେ ଦେଖିବାକୁ ମିଳିବ ନାହିଁ । ଅନ୍ତତଃ ସମୃଦ୍ଧ ପ୍ରତିବେଶିନୀ ବଙ୍ଗଳାଭାଷାରେ ଚଉତିଶାର ପ୍ରାଦୁର୍ଭାବ ସେତେ ଦେଖିବାକୁ ମିଳେନାହିଁ, ଯେପରି ମିଳେ ଓଡ଼ିଆରେ । ପ୍ରାଚୀନ ଓଡ଼ିଆ କବିମାନଙ୍କର ଚଉତିଶା ପ୍ରତି ଉତ୍ସାହ, ରେନେସାଁ ଯୁଗରେ ଓ ପରେ, ୟୁରୋପୀୟ ଭାଷାମାନଙ୍କରେ 'ସନେଟ୍' ପ୍ରତି ଦେଖାଦେଇଥିବା ଉତ୍ସାହକୁ ସ୍ମରଣ କରାଏ । ଚଉତିଶା, ଓଡ଼ିଆ ସାହିତ୍ୟର ସକଳ ଯୁଗରେ ରଚିତ ହୋଇଛି । ଏବେ ବି ନୂଆ ନୂଆ ଚଉତିଶା ଲେଖାହେଉଛି; କିନ୍ତୁ ଓଡ଼ିଆ ସାହିତ୍ୟରେ ସବୁଠାରୁ ବିଖ୍ୟାତ ଚଉତିଶାଗୁଡ଼ିକ ଖୁବ୍ ସମ୍ଭବତଃ ଏହି ଆଲୋଚ୍ୟମାନ କାଳରେ ଲେଖାହୋଇଥିଲା । ଓଡ଼ିଆ ସାହିତ୍ୟର ଚଉତିଶାମାନଙ୍କର ଏକ ସାମଗ୍ରିକ ବିଚାର ପାଠକଙ୍କ ଆଗରେ ଥୋଇବା ଲକ୍ଷ୍ୟରେ ଅନ୍ୟ ଅନ୍ୟ ସମୟରେ ଲିଖିତ ଚଉତିଶାମାନଙ୍କୁ ମଧ୍ୟ ମୁଁ ଏହିଠାରେ, ଏକା ସ୍ଥାନରେ, ଆଲୋଚନା କରିବାକୁ ଯାଉଛି ।

ସନେଟ୍ ପରି ଚଉତିଶା ମଧ୍ୟ କବିକୁ ଗୋଟିଏ ନିର୍ଦ୍ଦିଷ୍ଟ ସୀମିତ କ୍ଷେତ୍ର ଭିତରେ କାମ କରିବାକୁ ଆହ୍ୱାନ କରେ । ଏକ ଦିଗରୁ ଦେଖିଲେ ଏହା କବିଜନମାନଙ୍କ ପ୍ରତି ଅନ୍ତରାୟ ନ ହୋଇ ଏକ ସୁବିଧା ପ୍ରଦାନ କରେ । ଚଉତିଶାର ସୀମିତତା କବିର ଅନୁଭୂତି ଓ କଳ୍ପନାକୁ କେନ୍ଦ୍ରୀଭୂତ ଓ ନିବିଡ଼ ହେବାକୁ ଦିଏ । ପୁଣି ଅକ୍ଷରାନୁକ୍ରମିକ ରଚନା ଥିବାରୁ ଏହା ଅର୍ଦ୍ଧଶିକ୍ଷିତ ବା ଅଶିକ୍ଷିତ ଶ୍ରୋତାର ସ୍ମୃତିରେ ସହଜରେ ସ୍ଥାନ ପାଇଯାଏ । ଅନ୍ୟ ପକ୍ଷରେ ସନେଟ୍ ପରି ଚଉତିଶା ଲିରିକ୍-ଧର୍ମୀ ହେଲେହେଁ, ସନେଟ୍‌ଠାରୁ ୩-୪ ଗୁଣ ଦୀର୍ଘତର ହୋଇଥିବା ଚଉତିଶାର କେବଳ ଭାବ ନୁହେଁ, ଘଟଣା ବର୍ଣ୍ଣନା ପାଇଁ ମଧ୍ୟ କବିକୁ ସୁଯୋଗ ମିଳେ ।

ଓଡ଼ିଆ ଚଉତିଶାଗୁଡ଼ିକର ମୁଖ୍ୟ ଉପଜୀବ୍ୟ ବିରହୀ ଜନର ବିଳାପ ହେଲେହେଁ, ସେଗୁଡ଼ିକରେ ବୈଚିତ୍ର୍ୟର ଅଭାବ ନାହିଁ । ପ୍ରେମ-ବିରହାଦି ଭାବ ସାଧାରଣତଃ ରାଧା-କୃଷ୍ଣ କୈନ୍ଦ୍ରିକ ହେଲେହେଁ ବର୍ଣ୍ଣିତ ଅନୁଭୂତିର ବ୍ୟକ୍ତିଗତ ଉଷ୍ଣତା ଓ ନିବିଡ଼ତା ତଳେ ଆମେ କବିମାନଙ୍କର ନିଜ ନିଜ ମାନସୀମାନଙ୍କ ପାଇଁ ନିଜସ୍ୱ ବ୍ୟକ୍ତିଗତ ଭାବାକୁଳତା ଅନୁଭବ ନ କରି ରହିପାରୁନା । ଅନ୍ୟପକ୍ଷରେ ଜଗନ୍ନାଥଙ୍କର ସ୍ନାନଯାତ୍ରା ପ୍ରଭୃତି ଉତ୍ସବ ବା ଶ୍ରୀରାମଚନ୍ଦ୍ରଙ୍କ ଜୀବନର ଭିନ୍ନ ଭିନ୍ନ କାହାଣୀ ବର୍ଣ୍ଣନା କରି ଯେଉଁସବୁ ଚଉତିଶା ଲିଖିତ, ସେଗୁଡ଼ିକ ଏକାନ୍ତଭାବରେ ବିଷୟନିଷ୍ଠ । କେତେକ ଚଉତିଶା ପ୍ରାର୍ଥନାମୂଳକ (ଆର୍ତ୍ତତ୍ରାଣ ଚଉତିଶା) ଓ କେତେକ ସଂସାରର ଅନିତ୍ୟତା-ପ୍ରଚାରକ (ମନବୋଧ) । ଏଗୁଡ଼ିକ

କବିମାନଙ୍କର ଗଭୀର ଆତ୍ମ-ଭାବନା ଓ ଉଦାର ଦାର୍ଶନିକତାରେ ପୂର୍ଣ୍ଣ । 'ଜ୍ଞାନୋଦୟ କୋଇଲି' ଯୋଗତତ୍ତ୍ୱ ପରିବେଷଣ କଲାବେଳେ, ଅସାଧାରଣ ବା ଚଉତିଶା ସାମାଜିକ ରାଜନୈତିକ ଭବିଷ୍ୟ-ବାଣୀ ଶୁଣାଇଛି, ଯାହା ବିସ୍ମୟକର ଭାବରେ ଆମର ସମସାମୟିକ କାଳ ପ୍ରତି ମଧ୍ୟ ପ୍ରଯୁଜ୍ୟ ହୋଇପାରେ ।

ପ୍ରେମମୂଳକ ଚଉତିଶାଗୁଡ଼ିକରେ ଭାରତୀୟ ସାହିତ୍ୟରେ ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନାର ଗତାନୁଗତିକତା ସବୁ ଧରିରହିଛି । ଚଉତିଶାର ବିରହୀ ପ୍ରିୟ ପ୍ରବାସିନୀ ପ୍ରଣୟିନୀର ସୁନ୍ଦର ଆଖି, ନାକ, ଦନ୍ତ, ଗଣ୍ଡ, ଓଷ୍ଠ, ବକ୍ଷ, କଟି, ଜାନୁ, ପଦ ଓ ବାହୁକୁ ବାହୁନିଚାଲିଛି । ଭାରତୀୟ ସାହିତ୍ୟରେ ଏହି ଶ୍ରେଣୀର କବିତାରେ ଯେପରି ହୋଇଥାଏ, ସମଗ୍ର ଭାରତୀୟ ସାହିତ୍ୟହିଁ ଏଇ ପ୍ରକାର ବାହୁନାରେ ଭରପୂର କହିଲେ ଚଳେ; କିନ୍ତୁ ଏ ପ୍ରକାର ଗତାନୁଗତିକତାର ପ୍ରାଚୁର୍ଯ୍ୟ ସତ୍ତ୍ୱେ କେତେଗୋଟି ଚଉତିଶାରେ ବ୍ୟକ୍ତିଗତ ଅନୁଭବ ଓ ବାସ୍ତବ ପରିସ୍ଥିତି ଅନନ୍ୟଭାବରେ ଫୁଟିଉଠି ସେଗୁଡ଼ିକୁ କରିଦେଇଛି ପ୍ରକୃତରେ ଉତ୍କୃଷ୍ଟ ପ୍ରେମ-କବିତା । ଦୃଷ୍ଟାନ୍ତସ୍ୱରୂପ, ଦାଶରଥି ଦାଶଙ୍କ 'ଅଭିନ୍ନା' ଚଉତିଶାରେ ପ୍ରଣୟୀର ମର୍ମଭେଦୀ ଆର୍ତ୍ତନାଦ ଓ ପ୍ରିୟ ପ୍ରତ୍ୟର୍ପିତ ଭାବ ଦେଖନ୍ତୁ –

''ଲେଖି ଯେ ଥାଉ ଲେଖ ଲକ୍ଷାରସରେ ନାଗରୀ ଅକ୍ଷର ମାନସେ
ଲକ୍ଷ ଥର ଶିରେ ଲଗାଇ ମୁଖରେ ଦିଅଇ ଲକ୍ଷ ଚୁମ୍ବନ, ରେ ଅଭିନ୍ନା,
ଲୋଡ଼ିଲେ କେ ଦେବ ତତେ ସେ,
ଲେଶେ ମୁଁ ପାଶରୁ ଅନ୍ତର ନୋହିବି ଲେଉଟି ଆସିବି ଯେବେ ରେ । ୨୮ ।''

ବିଷ୍ଣୁ ଦାସଙ୍କ 'ମନ୍ଦାକିନୀ' ଚଉତିଶାରେ ପ୍ରବାସୀ ପ୍ରଣୟୀ ପୁନର୍ମିଳନବେଳର ମଧୁରତାକୁ ମନେ ମନେ ଆଙ୍କି କଳ୍ପନାମୟ ଆତ୍ମ-ସାନ୍ତ୍ୱନା ପାଉଛି କିପରି –

''ପ୍ରଣୟିନୀ ପ୍ରଣୟ ପ୍ରଣତଭାବ ବଶେ
ପାଶେ କି ହୋଇବି ପ୍ରବେଶ,
ପଲଙ୍କ ତଳେ ଥାଇ ପାଣି ବେନି ଯୋଡ଼ିବି
ହୋଇ ମୁଁ ହରଷ, ବିରସ, ରେ ମନ୍ଦାକିନୀ !
ପଦ୍ମନୟନୀ ମୁଖ ଦେଖି, ପଲକ ନପଡ଼ିବ ଆଖି,
ପବନେ ପତ୍ର ପ୍ରାୟ, ତନୁ କମ୍ପ ହୋଇବ
ଧଇର୍ଯ୍ୟ ନ ପାରିବି ରଖି, ରେ ମନ୍ଦାକିନୀ । ୨୧ ।''

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ 'ପ୍ରେମଚିନ୍ତାମଣି' ଚଉତିଶା ସମାଜ ଓ ସଂସାରର ସକଳ ବିଧି-ନିଷେଧକୁ ଉପେକ୍ଷା କରି ମାନବିକ ପ୍ରେମ, ବିଶୁଦ୍ଧାନୁଭବର ଉଚ୍ଚତମ ଶୀର୍ଷକୁ ସ୍ପର୍ଶ କରିଛି । ରାଧା କହୁଛନ୍ତି –

''ଖଳକୁ ନାହିଁ ମୋ ଡର ଖଟିବି ଚରଣେ ତାର
ଖସିଲା ଖସଣି କ୍ଷର କି ରହଇ
ମୋ ମନ ହେଲାଣି ତାର । ୨ ।

ଜ୍ଞାନ ଧ୍ୟାନ ସବୁ ମୋର ଗୋବିନ୍ଦ ନନ୍ଦକିଶୋର,
ଗୁପତେ ସିନା ମୁଁ ତୋତେ କହୁଅଛି
ପାପକୁ ନାହିଁ ମୋ ଡର । ୩ ।
ଘେନିଥା ମନରେ ଏତେ, ଘୋର ବିଜନ ବନସ୍ତେ
ଘନଶ୍ୟାମ ଚନ୍ଦ୍ର ମୁଖ ଦେଖୁଥିଲେ
ବୈକୁଣ୍ଠ ଛାର ବା କେତେ । ୪ ।''

ଇହସଂସାରର ଅନିତ୍ୟତାର ଚିତ୍ର ଆଙ୍କିବାରେ, ମାନବଚିତ୍ତକୁ ଆଧ୍ୟାତ୍ମିକ ଚିନ୍ତା ଆଡ଼କୁ ଉଦ୍‌ବୋଧିତ କରିବାରେ ଓ ଭଗବାନଙ୍କୁ ଶ୍ରେଷ୍ଠ ପ୍ରଣୟୀରୂପେ ଅନ୍ୱେଷଣ ପାଇଁ ପ୍ରଣୋଦିତ କରିବାରେ 'ମଥୁରାମଙ୍ଗଳ'ର ପ୍ରସିଦ୍ଧ କବି ଭକ୍ତଚରଣଙ୍କ 'ମନବୋଧ' ଚଉତିଶାର ପଟାନ୍ତର ନାହିଁ । ଓଡ଼ିଆ ଭାଷାର ଶତ ଶତ ଚଉତିଶା ମଧ୍ୟରେ ଏହି ମନବୋଧ ଚଉତିଶା ସବୁଠାରୁ ଜନପ୍ରିୟ । ଏହି ଚଉତିଶାରେ ଜଗତ ଓ ଜୀବନର ମୋହ ଓ ଅନିତ୍ୟତା ଏପରି ବର୍ଣ୍ଣିତ ଓ ଏହାର ଶ୍ଳୋକାବଳି ଏପରି ଲଳିତ ମନୋଜ୍ଞ ପଦଯୁକ୍ତ ଯେ, କେବଳ ଗୋଟିଏ ଏକତାରା ସହିତ ହେଉ ବା କୌଣସି ଯନ୍ତ୍ରର ସହାୟତା ନ ନେଇ ମଧ୍ୟ ଜଣେ ଗମ୍ଭୀର ପୁରୁଷକଣ୍ଠରେ ଏହା ଗୀତହେଲେ, ଓଡ଼ିଆମାନଙ୍କର ଯେକୌଣସି ଗୋଷ୍ଠୀ ଏହାକୁ ଶୁଣୁ ଶୁଣୁ ସ୍ତବ୍ଧ ବିସ୍ମୟରେ କେବଳ ତୃଷ୍ଣୀ ହୋଇହିଁ ରହିବେ । ଏହି ଚଉତିଶାର ଅନୁଭବ-ଜର୍ଜର ଓ ପ୍ରଜ୍ଜ୍ୱଳ ପଦାବଳିରୁ ଶାନ୍ତିରସର ବିମଳ ଧାରା ଉତ୍ସାରିତ ହୋଇ ଶ୍ରୋତୃବର୍ଗର ହୃଦୟରେ ଅହରହ-ଅଶାନ୍ତ ଥିବା ତୃଷ୍ଣାରାଜିକୁ ସହସା ଶାନ୍ତ କରାଇଦିଏ ଏବଂ ଥୋଇଦିଏ ସେମାନଙ୍କ ଆଗରେ ଏକ ମୁକୁର, ଜୀବନର ବିଶୁଦ୍ଧ ସତ୍ୟକୁ ଦେଖିବାପାଇଁ । ଏହି ବରେଣ୍ୟ କବିତାଟିର କେତେକ ଅତି ପରିଚିତ ଶ୍ଳୋକ ଏହି –

''କହଇ ମନ ଆରେ ମୋ ବୋଲ କର / କଳାଶ୍ରୀମୁଖ ବାରେ ଦେଖିବା ଚାଲ ରେ ।
କେତେ ଦିନକୁ ମନ କରିଛୁ ଆଣ୍ଟ / କି ଘେନି ଯିବୁ ତୋର ଛୁଟିଲେ ଘଟ ରେ ।
ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରାକାଠି / ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ।
ଖଟ ପଲଙ୍କେ ମନ ଶେଯାଇ ଶୋଉ / ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ ।
ଗଲେଣି ତୋ ସଙ୍ଗରୁ ଯେତେକ ଜନ/ ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ ରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ / ଗାଢ଼େ ମଜିଣ ନିତ୍ୟ ଧନ ଅର୍ଜିଲୁ ରେ ।
ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ / ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।
ଘରଘରଣୀ ଦେହ କିଳାଉଥିବ / ଘେନି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବ ରେ ।
ଚିତ୍ର ପ୍ରତିମା ପ୍ରାୟ ଦିଶୁ ସୁନ୍ଦର / ଚିରି ଭିତରେ ଦେଖ କି ନାରଖାର ରେ ।
ଚର୍ମ ବେଢ଼ିଛି ସିନା ଚଉରାଶିକି / ଚିତ୍ତ ତୁ ଦିଅ ନୀଳଗିରିବାସୀଙ୍କି ରେ ।''

ଦନାଇ ଦାସଙ୍କ 'ସାନ କାନାଡ଼ା' ଚଉତିଶାରେ ଆମେ ସୂକ୍ଷ୍ମ ଆଧ୍ୟାତ୍ମିକ ଚେତନାର ସନ୍ଧାନ ପାଉଁ । ମନବୋଧ ଚଉତିଶା ପରି ଏଥିରେ ସଂସାରକୁ ଅବଜ୍ଞା ପ୍ରଦର୍ଶନ ନକରି ଦନାଇ ଦାସେ ଚଉତିଶାଟିରେ ବ୍ୟକ୍ତିଗତ ପାପ-ପୁଣ୍ୟ ବିଚାର କରିଛନ୍ତି ଓ ଆମେ ଦେଖିପାରୁଛୁ, ସେଥିରେ ସେହି କବିଙ୍କ ଆତ୍ମାରେ ଅନ୍ତର୍ଜ୍ୟୋତିର ଆଲୋକ ପାଇଁ ଗଭୀର ବ୍ୟାକୁଳତା ।

''ନଜାଣଇ ସୁଖ ନିରନ୍ତରେ ଦୁଃଖ,
ନୟନ ଥାଉ ନ ଦିଶିଲା,
ନିଶି ତିମିର ପ୍ରାୟେ ଆଚ୍ଛାଦିଲା,
ନିଆଁ ଅଛି କତି, ନ ଜଳଇ ଦୀପ,
ନିଷ୍ଟୟେ ବୁଦ୍ଧି ମୋ ନାଶିଲା, ମନ ରେ । ୫ ।

× × × ×

ହୃଦୟ ଭିତରେ ଥୋଇଲା ଧନ ମୁଁ
ହଜାଇ ହେଉଅଛି ବଣା,
ହେତୁ ନ ପାଇ ଅଦକ୍ଷରେ ଗଣା,
ହୋଇଲି ହନ୍ତ- ସନ୍ତକୁ ଯୋଗ୍ୟ ମୁହିଁ
ହରି-ଭକ୍ତି କି ଯହୁଁ ଊଣା, ମନ ରେ । ୩୩ ।''

କିନ୍ତୁ ଓଡ଼ିଆ ଭାଷାର ସକଳ ଚଉତିଶା ମଧ୍ୟରେ ସବୁଠାରୁ କୌତୁକାବହ ଓ କୌତୂହଳୋଦ୍ଦୀପକ ଚଉତିଶା ହେଉଛି 'ବା-ଚଉତିଶା' ଯାହାର ଲେଖକ କୌଣସି ଏକ ଲୋକନାଥ । ଏହି ଚଉତିଶାଟି ସଂପୂର୍ଣ୍ଣ ଭାବରେ ଏକପକ୍ଷରେ ପ୍ରେମଗନ୍ଧ ଓ ଅପରପକ୍ଷରେ ଆତ୍ମ-ତତ୍ତ୍ୱ-ଶୂନ୍ୟ ଏବଂ ଏକାନ୍ତରେ ସାମାଜିକ-ରାଜନୈତିକ । ଆଭ୍ୟନ୍ତରୀଣ ସାକ୍ଷ୍ୟରୁ ମନେହେଉଛି ଯେ, ଏହା ଲେଖାହୋଇଛି ଓଡ଼ିଶା ମୁସଲମାନ-ବିଜିତ ଓ ମୁସଲମାନ-ଶାସିତ ହେଲା ପରେ, ଖୁବ୍ ସମ୍ଭବତଃ ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧରେ । ଓଡ଼ିଶାର ଏହା ଥିଲା ଏକ ଦୁର୍ଦ୍ଦିନତମ କାଳ । ସେ କାଳରେ ଏଠାରେ ଘଟିଚାଲିଥିଲା କେବଳ ଭ୍ରାତୃବିବାଦମୂଳକ ଯୁଦ୍ଧ, ହତ୍ୟା ଓ ବିଶ୍ୱାସଘାତକତା । ରାଷ୍ଟ୍ର ଓ ସମାଜ ଗତି କରୁଥିଲା ଏକ ଘୋର ବିଶୃଙ୍ଖଳ ଅନିଶ୍ଚିତ ଅବସ୍ଥା ଦେଇ । ଜାତିର ସେ ଦୁର୍ଦ୍ଦିନ, ସେ ଦୁରବସ୍ଥା ହୁଏତ କବି ଲୋକନାଥଙ୍କ ପ୍ରାଣକୁ ଗଭୀର ଭାବରେ ଆଘାତ କରିଥିଲା ଓ ହୁଏତ କବି ଏ ଚଉତିଶା ଲେଖିଥିଲେ ନିଜ ଲୋକଙ୍କୁ ସାବଧାନୀ ବାଣୀ ଶୁଣାଇଦେବାପାଇଁ । ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣିତ କଳି-ଅବତରଣ ଅବଶ୍ୟ ଏ ଚଉତିଶାର ଆଦର୍ଶ; କାରଣ ସାରଳାଙ୍କ ବର୍ଣ୍ଣନାନୁଯାୟୀ ଏଠି ମଧ୍ୟ ରାଜା ଯୁଧିଷ୍ଠିର 'କଳିଯୁଗ'ରେ ରାଷ୍ଟ୍ର ଓ ସମାଜର ଅବସ୍ଥା କ'ଣ ହେବ ବୋଲି ମନ୍ତ୍ରୀ ସହଦେବଙ୍କୁ ପଚାରୁଛନ୍ତି । 'ବା-ଚଉତିଶା' ହେଉଛି ସହଦେବଙ୍କ ଉତ୍ତର । ସପ୍ତଦଶ ଶତାବ୍ଦୀରେ ରଚିତ ହେଲେହେଁ ଆଧୁନିକ ରାଷ୍ଟ୍ର ଓ ସମାଜ ପ୍ରତି ଏହାର ପ୍ରଯୁଜ୍ୟତାହିଁ ସବୁଠାରୁ ବିସ୍ମୟଜନକ ।

''ଖଡ଼ି ଧରିଣ ସହଦେବ ବୋଲନ୍ତି, ଶୁଣ ତୁମ୍ଭେ ନୃପବର
କ୍ଷଣେ ରାଜା, ପରଜାଙ୍କୁ ଦୟା ନୋହିବ, ବହିଣ ନେବେ ସକଳ, ବା
ଖନ୍ଦ ଥାଉଁ ସାଧୁଥିବେ କର,
କ୍ଷଣେ ପରଜା ହେବେ ବାହାର, ବା ।

× × ×

ଛତ୍ରିଲୋକମାନେ ସଂଗ୍ରାମକୁ ଯାଇ ଜୀବକୁ କରିବେ ଆଶ,
ଛଛନ୍ଦେ ରଣେ ବଇକୁଣ୍ଠ ପ୍ରାପତ ଛାଡ଼ି ପଳାଇବେ ରଣ-ଯଶ, ବା
ଛଳେ ନୋହିବେ ଛତ୍ରିପଣ,
ଛତ୍ରି ହୋଇଣ ଛାଡ଼ିବେ ରଣ, ବା ।

× × ×

ଢାଳେହେଁ ବ୍ରାହ୍ମଣେ ସଂଧ୍ୟା ନ କରିବେ, ଅବିଦ୍ୟା ପାଠ କରିବେ
ଢମ କହୁଥିବେ ରାହ୍ମଣିଆପଣେ, ଶୂଦ୍ରଙ୍କ ସଙ୍ଗେ ବସିବେ ।
ଢାଳେ ପାଣି ଝରି ଘେନି ଛତା
ଢମେ ବୋଲେ ରାଜା ନମହତା, ବା ।

× × ×

ତିନି ତିନି ବର ଏକା ଯୁବତୀର ଲାଜକୁ ନ ଥାଇ ଡର,
ତିନି ଛାଡ଼ି ଚାରି ଗିରସ୍ତ ହୋଇଲେ, ପୁଣି ଦ୍ୱିତୀୟ ସ୍ୱୟଂବର ।
ସ୍ତିରୀ ନ ମାନିବେ ପୁରୁଷଙ୍କୁ,
ଚାରି ଗିରସ୍ତ ଏକା ଜଣକୁ, ବା ।

× × ×

ପୋଇଲୀ ମାଇପ ପଢ଼ି ଲେଖିଦେବ, ପଢ଼ିଆକୁ ଦେବେ କର,
ବୁଢ଼ାବୁଢ଼ୀକି ବାହାର କରିଦେଇ ପୁଅ ବୋହୂ କରିବେ ଘର ।
ପୁଅ ବାପକୁ କରିବେ ଲୋକ,
ପାପ ପୁଣ୍ୟକୁ ନ ଥିବ ଦକ, ବା ।

× × ×

ବଇଦମାନେ ବ୍ୟାଧିକି ନ ଚିହ୍ନିଣ ମଲୁକୁ କରିବେ ହେଳା,
ବିଶ୍ୱାସ ଲୋକେ ଅବିଶ୍ୱାସ ହୋଇବେ, ମିଛେ କରିଥିବେ ମେଳା ।
ବିଷ ବିଶ୍ୱାସେ କଲେଣ ଖାଇ,
ବୁଦ୍ଧିକି ଭୁଲିଣ ଭ୍ରମି ମରଇ, ବା ।''

ଏହି ଚଉତିଶାରେ ଏକମାତ୍ର ଐତିହାସିକ 'ରେଫରେନ୍ସ' ହେଉଛି ଏହି –

''ସହଦେବଙ୍କୁ ଯୁଧେଷ୍ଠି ଆଜ୍ଞା ଦେଲେ ଶୁଣ ତୁମ୍ଭେ ମନ୍ତ୍ରିବର,
ସକାଳ ଯେ ମୋତେ ଦର୍ଶନ କରିବ, ତାକୁ ଦେବି ରାଜ୍ୟଭାର ।
ସଜ କରିଣ ଆଣ ଅଶ୍ୱକୁ,
ଶାଢ଼ି ଦେଲେ ଡିଲୀ ପାଇଛାକୁ, ବା ।''

**ଚଉତିଶା ଓ ଗୀତଗୋବିନ୍ଦ –**

ଚଉତିଶାମାନଙ୍କର ଉପଜୀବ୍ୟ ବିଷୟାଦି ଉପରେ କିଛି ଆଲୋଚନା ପୂର୍ବରୁ ଦିଆଗଲା । କିନ୍ତୁ ଚଉତିଶାମାନଙ୍କର ବିଷୟ ପରି ସେମାନଙ୍କର ଆଙ୍ଗିକ ମଧ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ ।

କାରଣ, ଚଉତିଶାଗୁଡ଼ିକ (୧) ସଙ୍ଗୀତମୟ (୨) ସେମାନଙ୍କର ଭାଷା ଆଳଙ୍କାରିକ (୩) ସେଗୁଡ଼ିକ ପ୍ରଣୟପ୍ରଧାନ । ଚଉତିଶାମାନଙ୍କର ଏହି ତିନୋଟିଯାକ ଗୁଣ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ବ୍ୟାପକ ଓ ଗଭୀର ହୋଇଉଠିଥିଲା; କିନ୍ତୁ ସ୍ୱୟଂ ଚଉତିଶାମାନଙ୍କର ଏହି ସବୁ ବୈଶିଷ୍ଟ୍ୟର ଉତ୍ସ, ବୋଧହୁଏ ଥିଲା ଜୟଦେବଙ୍କ 'ଗୀତଗୋବିନ୍ଦ' । ଏ ସମ୍ପର୍କରେ ଜୟଦେବ ଓଡ଼ିଆ ବୋଲି ଓଡ଼ିଆ ବୁଦ୍ଧିଜୀବୀମାନେ ଯେ ଦାବି କରିଆସୁଛନ୍ତି, ତାହା ସାହିତ୍ୟିକ-ସାଂସ୍କୃତିକ ଦୃଷ୍ଟିକୋଣରୁ ସାମାନ୍ୟ ଭାବରେ ବିଚାର ବୋଧହୁଏ ଆଦୌ ଅପ୍ରାସଙ୍ଗିକ ହେବନାହିଁ ।

ସାଦା ଚଉଦ-ଅକ୍ଷରୀ ଛନ୍ଦରେ ଲିଖିତ କଳସା ଚଉତିଶା ବା ସାରଳାଙ୍କ ମହାଭାରତ ପଠନ ବା ଆବୃତ୍ତି ପାଇଁ ଉଦ୍ଦିଷ୍ଟ ଥିଲା; କିନ୍ତୁ ସେମାନଙ୍କ ପରେ ଯେଉଁ ଚଉତିଶାସବୁ ଓଡ଼ିଆ ସାହିତ୍ୟରେ ଦେଖାଦେଲେ, ସେମାନଙ୍କର ଚରଣେ ଚରଣେ ଥିଲା ସଙ୍ଗୀତର ଝଙ୍କାର ଓ ସେମାନଙ୍କର ସ୍ରଷ୍ଟାମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ସେଗୁଡ଼ିକ ହେବ 'ଗେୟ' । ସଙ୍ଗୀତ ଓ ସାହିତ୍ୟର ଏ ଯେଉଁ ଘନିଷ୍ଠ ମିତ୍ରତା ଏହି କାଳରେ ଦେଖାଦେଲା, ତା'ର ଊନବିଂଶ ଶତାବ୍ଦୀରେ ନବଯୁଗର ଆରମ୍ଭ ପର୍ଯ୍ୟନ୍ତ, ସମଗ୍ର ଉତ୍କଳ ସାହିତ୍ୟକୁ ବହୁ ଶତାବ୍ଦୀଧରି ସଂପୂର୍ଣ୍ଣ ପ୍ରଭାବିତ କରି ରଖିଲା । ଉପରବର୍ଣ୍ଣିତ ଚଉତିଶାଗୁଡ଼ିକ ବୋଧହୁଏ ଏହି 'ମିତ୍ରତା'ର ଥିଲେ ଏକ ଏକ ଆଦ୍ୟ ଏକ୍ସପେରିମେଣ୍ଟ । ଦୁଇଶ' ବର୍ଷ ପରେ ଆମେ ଦେଖିବା ଯେ ଓଡ଼ିଆରେ ଏକ ଏକ ମହାକାବ୍ୟ ଲେଖାହୋଇଛି ଏଇ ଚଉତିଶାମାନଙ୍କର 'ଗେୟ' ରୀତିରେ ଓ ସେଗୁଡ଼ିକ ମଧ୍ୟ ଯମକ, ଅନୁପ୍ରାସ ପ୍ରଭୃତି ନାନା ଅଳଙ୍କାରରେ ଭାରାକ୍ରାନ୍ତ ଏବଂ ମୂଳରୁ ଶେଷ ପର୍ଯ୍ୟନ୍ତ ଓ ଉତ୍ତରୋତ୍ତର ଭାବରେ ଯୌନ-ସଂଭୋଗ ନେଇହିଁ ବ୍ୟସ୍ତ । ଜୟଦେବଙ୍କର କ୍ଷୁଦ୍ରାବୟବ ଗୀତଗୋବିନ୍ଦ ଏହି ସବୁ ଗୁଣ-ଦୋଷରେ ଜର୍ଜରିତ ନୁହଁ କି ? ସାଧାରଣ ଭାବରେ ଯେହେତୁ ଓଡ଼ିଆ ଚଉତିଶାମାନଙ୍କର ସାଧାରଣ ଗୁଣସବୁ ମଧ୍ୟ ଏଇଆ, ଗୀତଗୋବିନ୍ଦ ସହିତ ଚଉତିଶା ଓ ଓଡ଼ିଶୀ ଛାନ୍ଦ-କାବ୍ୟମାନଙ୍କର କୁଟୁମ୍ବିତା ଅନସ୍ୱୀକାର୍ଯ୍ୟ । ଗୀତଗୋବିନ୍ଦ ଓଡ଼ିଶାର କଳା, ସମାଜ ଓ ସାହିତ୍ୟରେ ଯେପରି ଗଭୀର ଓ ବ୍ୟାପକ ପ୍ରଭାବ ପକାଇପାରିଛି, ତାହା ବୋଧହୁଏ ଭାରତର ଅନ୍ୟ କୌଣସି ଅଞ୍ଚଳରେ ଦେଖାଯାଏନାହିଁ । ଭୁବନେଶ୍ୱର ଓ କୋଣାର୍କ ମନ୍ଦିରଗାତ୍ରରେ ଆମେ ପ୍ରତିମାମାନ ଦେଖୁ, ଯାହା ହୁଏତ ଶିଳ୍ପୀମାନେ ଗଢ଼ିଥିବେ ଗୀତଗୋବିନ୍ଦର ପରିଚିତ ପଙ୍‌କ୍ତିମାନ ଅନ୍ତରରେ ଗାଇଗାଇ ।[୧] ଆନୁପ୍ରାସିକ ଭାଷା, ଶ୍ରୁତିରସାୟନ ସଙ୍ଗୀତ ଓ ମନୋଜ୍ଞ ଯୌନ ସଂକେତମୟ ତରୁଣ ରାଧାକୃଷ୍ଣ ପ୍ରେମ-ଚିତ୍ରଣ — ଏସବୁ ଗୀତଗୋବିନ୍ଦ ଓ ଚଉତିଶାମାନଙ୍କ ମଧ୍ୟରେ ସମାନଭାବରେ ବିରାଜିତ । ମଧ୍ୟଯୁଗର ଓଡ଼ିଆ କବିମାନେ, ଜଣେ ଓଡ଼ିଆ କବି

---

(୧) ଜୟଦେବ ଓ ଗୀତଗୋବିନ୍ଦ ଯେ ତ୍ରୟୋଦଶ ଶତାବ୍ଦୀର, ତାହା ଏହି ଗ୍ରନ୍ଥର ପର ଅଧ୍ୟାୟରେ ସ୍ପଷ୍ଟ କୁହାଯାଇଛି; କିନ୍ତୁ ଏ ସମ୍ପର୍କରେ ଲେଖକର ଅଜ୍ଞତା ନେଇ ବହୁଗଣ ସମାଲୋଚନା କରିଛନ୍ତି । କାରଣ ଲେଖକର ଆଲୋଚନା ଭିତରେ କୋଣାର୍କ ଓ ଭୁବନେଶ୍ୱରର ମନ୍ଦିରମାନଙ୍କୁ ଆଣି ଠିଆକରାଯାଇଛି; କୁହାଯାଇଛି ଯେ ମନ୍ଦିରସବୁ ଆଗେ ଓ ଜୟଦେବ ପଛେ । ଲେଖକର

ସଂସ୍କୃତରେ ଯେଉଁ ଅନବଦ୍ୟ କାବ୍ୟ ସୃଷ୍ଟି କରିଯାଇଥିଲା, ତାକୁହିଁ ପ୍ରାକୃତ ଭାଷାରେ ଅନୁକରଣ କରୁ କରୁ ଚଉତିଶାମାନ ଲେଖିବା ଆରମ୍ଭ କରିଥିବା ଏକାନ୍ତ ବିଶ୍ୱାସ୍ୟ ଘଟଣା । ଓଡ଼ିଆ କବିମାନଙ୍କ ଲେଖନୀରେ ସଂସ୍କୃତ ଗୀତଗୋବିନ୍ଦର ଏହି ପ୍ରାକୃତ ଅନୁକରଣ ସ୍ଥାନେ ସ୍ଥାନେ ଯେ ଆଦର୍ଶର ସମକକ୍ଷ ହୋଇପାରିଛି, ସେଇଥିପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବ କରିବାର କଥା । ଅଭିମନ୍ୟୁ, ଦୀନକୃଷ୍ଣ ଓ ଉପେନ୍ଦ୍ରଙ୍କର କେତେକ ଛାନ୍ଦ ସଂସ୍କୃତ-ଅନଭିଜ୍ଞ ଓଡ଼ିଆ କବିତାକୁ ଗତ କେତେ ଶତାବ୍ଦୀ ହେଲା, ସଂସ୍କୃତ ଗୀତଗୋବିନ୍ଦର ବର୍ଣ୍ଣ, ସୌରଭ ଓ ସ୍ୱାଦ ଯଥାର୍ଥ ଭାବରେ ପରିବେଷଣ କରିଆସୁଛନ୍ତି ।

ଗୀତଗୋବିନ୍ଦ ପୁରୀ ଜଗନ୍ନାଥ ମନ୍ଦିରର ଦୈନିକ 'ନୀତି' ଭାବରେ ପ୍ରତ୍ୟହ ଗୀତହୁଏ । କବି ଜୟଦେବ ଗଜପତି-ସାମ୍ରାଜ୍ୟର ପ୍ରଜା ହୋଇନଥିଲେ, ଜଗନ୍ନାଥ ମନ୍ଦିରରେ ଏ ସମ୍ମାନ ବୋଧହୁଏ ପାଇନଥା'ନ୍ତେ । କିଂବଦନ୍ତୀ କହେ ଯେ ଚୈତନ୍ୟ-ପନ୍ଥୀମାନେ ଜଗନ୍ନାଥ ମନ୍ଦିରରେ କୀର୍ତ୍ତନକୁ ଏହି ପ୍ରକାର ସମ୍ମାନ ଦେବାପାଇଁ ଚେଷ୍ଟା କରି ଏହି କାରଣରୁ ସଫଳକାମ ହୋଇପାରିନଥିଲେ । ଗୀତଗୋବିନ୍ଦର ଯେତେ ଅନୁବାଦ ଓଡ଼ିଆରେ ମିଳୁଛି, ସେତେ ବୋଧହୁଏ ଅନ୍ୟ କୌଣସି ଭାରତୀୟ ଭାଷାରେ ଦେଖାଯାଉନାହିଁ । ଅନୁବାଦକଙ୍କ ଭିତରେ କୁମ୍ଭାର (ଉଦ୍ଧବ ଦାସ) ଓ ଭଣ୍ଡାରି (ତ୍ରିଲୋଚନ) ଶ୍ରେଣୀୟ ଲେଖକ ଥିବାରୁ ଏ ପୁସ୍ତକର ସମଗ୍ର ଓଡ଼ିଆ ଜନତା ଉପରେ ଗଭୀର ପ୍ରଭାବ ସ୍ପଷ୍ଟ ସୂଚିତ ହେଉଛି । ଏହି କାଳରେ ଲିଖିତ ପ୍ରାୟ ଛଅଟି ଅନୁବାଦ ମଧ୍ୟରୁ ଦୁଇଟିକୁ 'ସାହିତ୍ୟ'ର ଗୌରବ ଦିଆଯାଇପାରେ ଏବଂ ସେ ଦୁଇଟି ଯଥାର୍ଥରେ ଗତ କେତେ ଶତାବ୍ଦୀଧରି ଓଡ଼ିଶାରେ ଜନପ୍ରିୟ ହୋଇଆସିଛନ୍ତି । ଏ ଦୁଇଟି ହେଉଛନ୍ତି ଧରଣୀଧରଙ୍କ 'ଗୀତଗୋବିନ୍ଦ' ଓ ବୃନ୍ଦାବନଙ୍କ 'ରସବାରିଧି' । ଧରଣୀଧର-ଅନୁବାଦ ଅଧିକ ମୂଳାନୁସାରୀ ଓ ସରଳ-ଭାବରେ ବ୍ୟକ୍ତ । ବୃନ୍ଦାବନ କିନ୍ତୁ ଅର୍ଥ ଓ ସଙ୍ଗୀତ ଉଭୟରେ, ମୂଳର ଯେତେ ନିକଟତର ରହିପାରିବେ, ତାହାର ଚେଷ୍ଟା କରିଛନ୍ତି । ପ୍ରତ୍ୟେକଟି ସର୍ଗ ଭାବାନୁରୂପ ଭାବରେ ଏକ ଏକ ନୂତନ ଜଟିଳ ଛନ୍ଦ ଓ ମନୋଜ୍ଞ ରାଗରେ ଲିଖିତ । ମନେହୁଏ ଯେ, ଓଡ଼ିଆରେ ଗୀତଗୋବିନ୍ଦର ଏଇ ପ୍ରକାର ଆଳଙ୍କାରିକ ସାଙ୍ଗୀତିକ ଅନୁବାଦରୁହିଁ ଆଗେ ଚଉତିଶା ଓ ଚଉତିଶାରୁ ଓଡ଼ିଆ ଭାଷାର ବିସ୍ତୃତ ଛାନ୍ଦସାହିତ୍ୟ ସୃଷ୍ଟି ହେଲା ।

---

ଦୃଷ୍ଟିରେ ଅଛି କିନ୍ତୁ ରାଜାରାଣୀ ମନ୍ଦିରର ଏକ ଅନବଦ୍ୟ ମୂର୍ତ୍ତି, ଯାହା ଗୀତଗୋବିନ୍ଦର "ମୁଖରମଧିରଂ ତ୍ୟଜ ମଞ୍ଜୀରଂ" ରୂପକ ଅପୂର୍ବ ପଦାବଳିର ପ୍ରତ୍ୟକ୍ଷ ଖୋଦିତ ରୂପ ପରି ମନେହୁଏ । ରାଜାରାଣୀ ମନ୍ଦିରର ଇତିହାସ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ରହସ୍ୟମୟ; କିନ୍ତୁ ତାର ପ୍ରତିମାଗୁଡ଼ିକର ଅପୂର୍ବ ଶିଳ୍ପ-ଚାତୁରୀ ସହିତ, ଏତାବତ୍ ସୁରକ୍ଷିତ ଥିବା ସତେଜ ଲାବଣ୍ୟ ନିର୍ଦ୍ଦେଶ ଦେଉଛି ଯେ ତାହା ହୁଏତ କୋଣାର୍କର ସମସାମୟିକ, ତା' ପୂର୍ବ ଶତାବ୍ଦୀର ନୁହେଁ; ଯାହା ଐତିହାସିକ ବନ୍ଧୁମାନେ କହୁଛନ୍ତି । ଲେଖକ ଏଠାରେ ତାର ନିଜର ଅବବୋଧ ଦେଇଛି । ସୁପରୀକ୍ଷିତ ପ୍ରାମାଣର ଅଭାବ ଥିଲାବେଳେ, ଐତିହାସିକ ବନ୍ଧୁମାନଙ୍କ ଅନୁମାନର ପ୍ରମାଣିକତା ସହିତ ଲେଖକର ଅନୁମାନର ପ୍ରାମାଣିକତା ମଧ୍ୟ ବିଚାରଣୀୟ ।

ଓଡ଼ିଆରେ ଗୀତଗୋବିନ୍ଦର ପ୍ରଚୁର ଅନୁବାଦ, ମଧ୍ୟଯୁଗର ଓଡ଼ିଆ କାବ୍ୟକବିତାରେ ସର୍ବମୟ ଗୀତଗୋବିନ୍ଦୀ ଛାନ୍ଦ ଓ ଚରିତ୍ର, ଓଡ଼ିଶୀ ସମାଜ ଓ ସାହିତ୍ୟରେ ଏହି ପୁସ୍ତକର ଗଭୀର ଓ ବ୍ୟାପକ ପ୍ରଭାବ, ପୁଣି କବି ଜୟଦେବଙ୍କ ଜୀବନରେ ଯାହା କିଛି ଅର୍ଥପୂର୍ଣ୍ଣ, ତାହା ପୁରୀ ଓ ଓଡ଼ିଶାରେ ଘଟିଥିଲା ଓ ଜଗନ୍ନାଥ ମନ୍ଦିରରେ ଏହି ଗ୍ରନ୍ଥକୁ ଅନନ୍ୟସାଧାରଣ ରାଜକୀୟ ସମ୍ମାନ ପ୍ରଦର୍ଶନ – ଏହି ସବୁ କାରଣରୁ ଭକ୍ତକବି ଜୟଦେବ ମଧ୍ୟଯୁଗୀୟ ଓଡ଼ିଶାର ଜାତୀୟ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ ଥିବାର ଓ ଓଡ଼ିଶା ରାଜ୍ୟର ନାଗରିକ ଥିବାର ଦାବି ବଳିଷ୍ଠ ଭାବରେ ଯୁକ୍ତିଯୁକ୍ତ ବୋଧହେଉଛି ।

## (ग) ସାରଳା-ପ୍ରଭାବ ଓ ଖଣ୍ଡକାବ୍ୟ –

ଦେଢ଼ଶ' ବର୍ଷ ପରେ ଓଡ଼ିଆ ସାହିତ୍ୟ ଏକାବେଳକେ କାବ୍ୟମୟ ହୋଇଉଠିବ; କିନ୍ତୁ ସେହି କାବ୍ୟଧାରାର ଜନ୍ମ ବୋଧହୁଏ ଏହି କାଳରେ, ଚଉତିଶାମାନଙ୍କର ବୃହତ୍ତର ଓ ମହତ୍ତର ଜନ୍ମାନ୍ତର ଭାବରେ । ଗୋଟିଏ ଗୋଟିଏ ପୌରାଣିକ ଘଟଣା ନେଇ ଏଗୁଡ଼ିକ ରଚିତ; କିନ୍ତୁ ବିଷୟଟି ଏଥିରେ ବର୍ଣ୍ଣିତ ଭିନ୍ନ ଭିନ୍ନ ରାଗ-ରାଗିଣୀରେ ଓ ବିଭିନ୍ନ ଛାନ୍ଦରେ । ଅର୍ଜ୍ଜୁନ ଦାସଙ୍କ 'ରାମବିଭା' ଓ ଶିଶୁଶଙ୍କରଙ୍କ 'ଉଷାଭିଳାଷ' ଏହି ନୂତନ ପ୍ରକାର ରଚନାର ଆଦ୍ୟ ପରୀକ୍ଷା (ଏକ୍‌ସପେରିମେଣ୍ଟ) ବୋଲି ଧରାଯାଏ । ଏ ଦୁଇଟିଯାକ ପୁସ୍ତକର ଗଳ୍ପାଂଶ ସାରଳା-ମହାଭାରତର ଗନ୍ତାଘରୁ ସଂଗୃହୀତ; କିନ୍ତୁ ପୂର୍ବପରି ଆବୃତ୍ତ ବା ପଠିତ ନ ହୋଇ ଗେୟ ବା ନାଟ୍ୟ ହେବା ଲକ୍ଷ୍ୟରେହିଁ ଲିଖିତ । ଏସବୁରେ ଶ୍ରୁତିମଧୁରତା ଓ ମନୋଜ୍ଞତା ଆଣିବା ପାଇଁ ଯମକ, ଅନୁପ୍ରାସ ଓ କୁଶଳ ଯତିପାତ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଛି ଏବଂ ଭାଷା, ଶିଷ୍ଟଜନର ଭାଷା; କିନ୍ତୁ ଏସବୁ ପାଇବା ସତ୍ତ୍ୱେ ଆମେ ଏଥିସହିତ ହରେଇଲୁ ସାରଳାଦାସୀୟ ଓଡ଼ିଆ ବାଣୀର ସ୍ୱାଭାବିକ ଜୀବନ୍ତତା ଓ ଓଜସ୍ୱୀତା; ଯାହା ପଣ୍ଡିତଜନ କାନକୁ ଅଶିଷ୍ଟ ବୋଧହେଲେହେଁ, ଅବିକୃତ ଥାଏ ଜନତାର ଭାଷାରେ । ଓଡ଼ିଆ ଭାଷାରେ ଏହି ନୂତନ ଆଳଙ୍କାରିକ ଶୋଭା ସେଥିପାଇଁ ଯଥେଷ୍ଟ କ୍ଷତିପୂରଣ ହୋଇପାରିଛି କି ନାହିଁ ସର୍ବଥା ବିଚାର୍ଯ୍ୟ; କିନ୍ତୁ ଆମେ ପରେ ଦେଖିବା ଯେ ଏହି ଶୋଭା ସୃଷ୍ଟି କରିବା ପାଇଁ କେବଳ ଶବ୍ଦଗୁଡ଼ିକୁ ସଜେଇବାହିଁ କବିମାନଙ୍କର ଏକମାତ୍ର ଲକ୍ଷ୍ୟ ଓ ଆଦର୍ଶ ହୋଇଉଠିଲା ।

### ଗଦ୍ୟ –

ଓଡ଼ିଆ ସାହିତ୍ୟରେ ଗଦ୍ୟ ରଚନାର ଧାରା ଏ କାଳରେ ମଧ୍ୟ ନିରବଚ୍ଛିନ୍ନ ଥିଲା । ତମ୍ବାପଟା ଦାନ ପ୍ରଭୃତି ତ ଚାଲିଥିଲା; କିନ୍ତୁ ଏହି କାଳର ସବୁଠାରୁ କୌତୂହଳୋଦ୍ଦୀପକ ଗଦ୍ୟରଚନା ହେଉଛି ଏକ ପାରିବାରିକ ପାଞ୍ଜି; ଯାହାର ନାମ ହେଉଛି 'ଚଇନୀଙ୍କ ଚକଡ଼ା' । ସେ ପୁସ୍ତକ ଏପର୍ଯ୍ୟନ୍ତ ଅପ୍ରକାଶିତ; କିନ୍ତୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପ୍ରଥମ ଖଣ୍ଡ (ଦ୍ୱିତୀୟ ସଂସ୍କରଣରେ ମଧ୍ୟ) ବିସ୍ତୃତ ଭାବରେ ତାହା ଆଲୋଚିତ ହୋଇଛି । ସମ୍ରାଟ କପିଳେନ୍ଦ୍ର ଦେବଙ୍କ ପୁତ୍ର ସମ୍ରାଟ୍ ପୁରୁଷୋତ୍ତମ

ଦେବଙ୍କ ଜୀବନ ରୋମାଞ୍ଚକ ଘଟଣାବଳିରେ ପୂର୍ଣ୍ଣ ଥିଲା । ତାଙ୍କର ଅଠର ଭାଇଙ୍କ ସହିତ ଯୁଦ୍ଧ, କାଞ୍ଚିର ରାଜା ସାଳୁଭ ନରସିଂହଙ୍କୁ ପରାସ୍ତ କରି ତାଙ୍କ କନ୍ୟା ସୁନ୍ଦରୀ ପଦ୍ମାବତୀଙ୍କୁ ବିବାହ ଓ ତାଙ୍କର ଦାକ୍ଷିଣାତ୍ୟର ହିନ୍ଦୁ ଓ ମୁସଲମାନ ରାଜାମାନଙ୍କ ସହିତ ଯୁଦ୍ଧ-ବିଗ୍ରହାଦି, ପୁଣି ବହୁ ବ୍ରାହ୍ମଣ ଶାସନ ସ୍ଥାପନ ଇତ୍ୟାଦି କାହାଣୀରେ ପରିଣତ ହୋଇଯାଇଛି । ସେ ହୁଏତ ସ୍ୱାଭାବିକ ଭାବରେ ଇଚ୍ଛା କରିଥିବେ ଯେ, ତାଙ୍କର ଘଟଣାବିଚିତ୍ର ଜୀବନ ଲିପିବଦ୍ଧ ହେଉ ଓ ଏହା କରିବାକୁ ସେ ତାଙ୍କର ଜଣେ ମନ୍ତ୍ରୀ ଗୁରୁଦାସ ଚଇନୀଙ୍କୁ ଆଦେଶ ଦେଇଥିଲେ ।[୧] ତେଣୁ ଏ ପାଞ୍ଜି ଆରମ୍ଭ ହେଲା ଓ ସେହି ଚଇନୀ ପରିବାରରେ ଚାରିପୁରୁଷ ଧରି ଚାଲିଲା । ଗ୍ରନ୍ଥର ଗଦ୍ୟଶୈଳୀ ଆସ୍ତେ ଆସ୍ତେ ପୁରୁଷରୁ ପୁରୁଷାନ୍ତରକୁ ଉନ୍ନତି କରୁଛି ପ୍ରତି ପୁରୁଷର ଲିଖନକାରର ବ୍ୟକ୍ତିତ୍ୱକୁ ଆଶ୍ରୟ କରି; କିନ୍ତୁ ଉନ୍ନତି କରିନାହିଁ ବର୍ଣ୍ଣିତ ଘଟଣାବଳିର ବିଶ୍ୱାସ୍ୟତା । ପ୍ରତି ଲେଖକ ନିର୍ବିକାର ଚିତ୍ତରେ ଯାହା ଅସମ୍ଭବ ଓ ଉଦ୍‌ଭଟ ତାକୁ ବାସ୍ତବ ଐତିହାସିକ ଘଟଣା ପରି ଲିପିବଦ୍ଧ କରିଯାଇଛନ୍ତି ଏବଂ ଓଡ଼ିଶାର ରାଜା ଓ ବ୍ରାହ୍ମଣମାନଙ୍କୁ ସକଳ ସଂକଟରୁ ଉଦ୍ଧାରିବା ପାଇଁ ଜଗନ୍ନାଥ ଚିରକାଳ ଅପେକ୍ଷମାଣ ଅବସ୍ଥାରେ ରହିଛନ୍ତି, ଏହାହିଁ ଗ୍ରନ୍ଥର ମୁଖ୍ୟ ଆଭିମୁଖ୍ୟରୂପେ ଠିଆହୋଇଛି ।

କିନ୍ତୁ ସବୁ ଚଇନୀଙ୍କ ଭିତରେ, ଫକିର ଚଇନୀ ନାମକ ଲେଖକ କିଞ୍ଚିତ୍ ବାସ୍ତବଧର୍ମୀ ଥିବାର ମନେହେଉଛି । ନିମ୍ନରେ ଏହି ଗ୍ରନ୍ଥର ଫକିର ଚଇନୀଙ୍କ ଅଂଶରୁ ଆମେ ଏକ ଅତ୍ୟନ୍ତ କୌତୂହଳପ୍ରଦ ବିବୃତି ଉଦ୍ଧାର କରି ରଖିଛୁ । ଗୋଟିଏ ଗ୍ରାମରେ ଦୁଷ୍ଟ ପିଲାଙ୍କ ଜଞ୍ଜାଳରୁ ନିଜକୁ ରକ୍ଷାକରିନପାରି ଜଣେ ବ୍ରାହ୍ମଣର ଆତ୍ମହତ୍ୟା ଏଠାରେ ବର୍ଣ୍ଣିତ । କୁହାଯାଇଛି ଯେ ଏହା ଘଟିଥିଲା ସମ୍ରାଟ୍ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ । ପୁରୁଷୋତ୍ତମ ଦେବ ଏକାଧାରରେ ପଣ୍ଡିତ, ବାସ୍ତବଧର୍ମୀ ଶାସକ ଓ କର୍ମୀ ପୁରୁଷ ଥିଲେ । ମଝିରେ ମଝିରେ ଚିତ୍ତବିନୋଦନରେ ଯୋଗ ଦେଉନଥିବେ, ଏପରି ନୁହେଁ । ନିମ୍ନବର୍ଣ୍ଣିତ ପରିହାସ ଶୋକାନ୍ତକ ହେଲେହେଁ, ଐତିହାସିକ ଉତ୍କଳର ବହୁ ମହୀୟାନ୍ ରାଷ୍ଟ୍ରୀୟ

---

* 'ଚଇନୀଙ୍କ ଚକଡ଼ା'ର କାଳ ନେଇ ବନ୍ଧୁଗଣ କୃପା ବର୍ଷଣ କରିଛନ୍ତି; ଅଥଚ ଇଂରାଜୀ ଗ୍ରନ୍ଥରେ ଲେଖକ ସ୍ପଷ୍ଟ ଉଲ୍ଲେଖ କରିଛି ଯେ, ସେ ଏ କ୍ଷେତ୍ରରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ପୁସ୍ତକକୁ ଅନୁସରଣ କରିଛି । ତେଣୁ ଚକଡ଼ାର କାଳ ଘେନି ଅଜ୍ଞତା ତାଙ୍କର ନ ହୋଇ, ଏ ଲେଖକର କିପରି ହେଲା ? ଲେଖକ ଦାସଙ୍କ ପୁସ୍ତକର ପ୍ରଥମ ସଂସ୍କରଣକୁ ଅନୁସରଣ କରିଥିଲା । ଏବେ ଦାସଙ୍କ ବହିର ଦ୍ୱିତୀୟ ପରିବର୍ଦ୍ଧିତ ଓ ପରିମାର୍ଜିତ ସଂସ୍କରଣ ପ୍ରକାଶିତ ହୋଇଛି; କିନ୍ତୁ ସେଥିରେ ମଧ୍ୟ ଚକଡ଼ାର ଏହି କାଳ ଅପରିବର୍ତ୍ତିତ ରଖାଯାଇଛି । ମହତାବଙ୍କ 'ଓଡ଼ିଶା ଇତିହାସ'ର ଦ୍ୱିତୀୟ ସଂସ୍କରଣରେ ମଧ୍ୟ ଚକଡ଼ାର କାଳ, ଦାସେ ଓ ମାନସିଂହ ଦେଇଥିବା କାଳ ସହିତ ସମାନ ରଖାଯାଇଛି । ଇଂରାଜୀ ପୁସ୍ତକରେ ଏସବୁ ଆଲୋଚନାର ସ୍ଥାନ ନଥିଲା । ପ୍ରାମାଣିକ ବୋଲି ଧରାଯାଉଥିବା ଓଡ଼ିଶାର ଅନ୍ୟ ଗ୍ରନ୍ଥମାନଙ୍କରେ ଯାହା ଥିଲା, ଲେଖକ ତା'ର ଇଂରାଜୀ ଗ୍ରନ୍ଥରେ ତାହାହିଁ ରଖିଥିବା ସମୀଚୀନ ମନେକରିଛି । ଆଗରୁ କୁହାଯାଇଛି ଯେ ଲେଖକ ସନ-କାଳ ସମ୍ପର୍କରେ ଏକାନ୍ତଭାବରେ, ଅନ୍ୟ ଉପରେ ନିର୍ଭର କରିଛି । ଓଡ଼ିଆ ସାହିତ୍ୟର ପ୍ରାଚୀନ ଭାଗର ସନ-କାଳ ଏପର୍ଯ୍ୟନ୍ତ ବିବାଦୀୟ ସ୍ତରରୁ ଉପରକୁ ଉଠିନାହିଁ ।

ଘଟଣାପ୍ରବାହ ଭିତରେ ଜଣେ ସାମାନ୍ୟ ନାଗରିକର ଏହି ଚିତ୍ର ଅତ୍ୟନ୍ତ ମୂଲ୍ୟବାନ୍ ହୋଇଉଠିଛି । ସେହି ହତଭାଗ୍ୟ ପ୍ରାଚୀନ ନାଗରିକ ଆଦିକନ୍ଦ ମିଶ୍ରଙ୍କ କରୁଣ କାହାଣୀ ପଞ୍ଜିର ଚଇନୀଙ୍କ ଭାଷାରେହିଁ ନିମ୍ନରେ ଦିଆଗଲା ।

"ଥରେ ବ୍ରାହ୍ମଣ-ଭୋଜନ ହେଉଥିଲା । ଆଦିକନ୍ଦ ମିଶ୍ର ନାମକ ଜଣେ ବ୍ରାହ୍ମଣ ସେ ବ୍ରାହ୍ମଣ-ଭୋଜନକୁ ଯାଇଥିଲା । ବ୍ୟଞ୍ଜନ ପରଷିବାବେଳେ ମାଳିସାହୀ ମହାଜନ ଆଦିକନ୍ଦ ମିଶ୍ର ବୋଇଲେ, 'କି ବ୍ୟଞ୍ଜନ ଦେଉଅଛ ?' ପିଲାମାନେ କହିଲେ, 'ମୁଗ ଦେଉଅଛୁଁ'। ମିଶ୍ରେ କହିଲେ 'ଆମ୍ଭଠାରେ ଅଣକେ ଦଅ ।' ତାହା ଶୁଣି ଅନ୍ୟ ମହାଜନମାନେ ପରିହାସ ଖିସା କଲେ । ଏହି ଦିନଠାରୁ ପ୍ରତ୍ୟହ ବ୍ରାହ୍ମଣ ଦେଖିଲେ ପରିହାସ କଲେ । ବ୍ରାହ୍ମଣ ସହିନପାରି ଶ୍ରୀ ମହାପ୍ରଭୁମଙ୍କ ଛାମୁରେ ଜଣାଇଲା– ମୋତେ ଖିସା ପରିହାସରେ ଏ ଶାସନ ମହାଜନମାନେ ରଖିଦେଉନାହାନ୍ତି । ଶ୍ରୀ ମହାପ୍ରଭୁମ ଆଜ୍ଞା ଦେଲେ, ବ୍ରାହ୍ମଣକୁ ପରିହାସ ନ କରିବ । ଜାଣିବା ବ୍ରାହ୍ମଣ, ଜ୍ଞାନଥିଲା ବ୍ରାହ୍ମଣ ପରିହାସ ନକଲେ । ଅଜ୍ଞାନ ବାଳକେ 'ଅଣକିଆ' ବୋଲି ଖିସା ପରିହାସ କଲେ । ପୁନର୍ବାର ଛାମୁରେ ଜଣାଇଲା–ଯେବେ ବାଳକେ ଖିସାରେ ରଖି ଦେଉନାହାନ୍ତି । ଆଜ୍ଞା ହୋଇଲା, ବାଳକଙ୍କୁ ଖଜା କଦଳୀ ମୁଆଁ ଦେଇ ନିବଡି କର । ବ୍ରାହ୍ମଣକୁ ନ ଚଳାଇବେ । ଏହି ମାଫିକେ ବାଳକଙ୍କୁ ଦିଲେ । ବାଳକେ ତୁଣ୍ଡେ ନ କହିଲେ । ବ୍ରାହ୍ମଣକୁ ଦେଖିଲେ ଗୋଡ଼ ବୃଦ୍ଧ ଅଙ୍ଗୁଷ୍ଠିରେ ମଣ୍ଡଳା ଗୋଟି ଲେଖି ଗାର ଗୋଟିଏ ଦିଅନ୍ତି । ତାହା ଦେଖି ସେ ବ୍ରାହ୍ମଣ ବହୁତ ବ୍ୟସ୍ତ ହେଲା । ପୁନର୍ପି ଶ୍ରୀ ମହାପ୍ରଭୁମଙ୍କ ଛାମୁରେ ଜଣାଇଲା– ଯେବେ ବାଳକେ ତୁଣ୍ଡେ ନ କହି ମୋତେ ଦେଖି ଗୋଡ଼େ ଲେଖୁଅଛନ୍ତି । ଏହା ଶୁଣି ଶ୍ରୀ ମହାପ୍ରଭୁମ ହସିଲେ । କିଛି ଆଜ୍ଞା ନ କଲେ । ବ୍ରାହ୍ମଣ ଲେଉଟି ଆସି ବ୍ୟସ୍ତରେ ରହିଲା । ମନରେ ବହୁତ କ୍ରୋଧ କରୁଥାଇ । ଶାସନ ଦାଣ୍ଡ କଦର୍ଜ୍ଜ ଦେଖି ଶ୍ରୀ ମହାପ୍ରଭୁମ ପାଞ୍ଜିଆ କରଣଙ୍କୁ ଆଜ୍ଞା କଲେ, ଦାଣ୍ଡେ ପଥର ବନ୍ଧାଅ । ଆଜ୍ଞା ପାଇ ପଶ୍ଚିମ ଖଣ୍ଡି ପୂର୍ବାନ୍ତୁ ପୂର୍ବଖଣ୍ଡି ଶ୍ରୀନୃସିଂହ ଦଣ୍ଡା ଯାଏ ବନ୍ଧାଉଥିଲେ । ବାଳକେ ନିର୍ବଂ ନୋହି ବ୍ରାହ୍ମଣକୁ ଗୋଡ଼େ ଲେଖି ଚଳାନ୍ତି । ସହିନପାରି ଦାଣ୍ଡେ ପଥରରେ ମୁଣ୍ଡମାରି ହତ୍ୟା ହେଲା ।" [୧]

□□□

(୧) ସୂର୍ଯ୍ୟନାରାୟଣ ଦାସଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପ୍ରଥମ ସଂସ୍କରଣରେ ଥିବା ଏହି ଅଂଶକୁହିଁ ମୁଁ ଇଂରାଜୀରେ ଅନୁବାଦ କରିଥିଲି । ଦାସଙ୍କର ସେ ସଂସ୍କରଣର ପୁସ୍ତକ ମୋ ନିକଟରେ ନାହିଁ । ମୁଁ ଦ୍ୱିତୀୟ ସଂସ୍କରଣ ପୁସ୍ତକରୁହିଁ ଏ ଅଂଶଟି ତେଣୁ ଏଠାରେ ଉଦ୍ଧାର କଲି । ଶାସନଦାଣ୍ଡ ପଥର-ଛିଆ ହେଲାପରେ ପିଲେ ଖଡ଼ି ଓ ଅଙ୍ଗାରରେ ଅଣକ ଆଙ୍କି ଆଦିକନ୍ଦ ମିଶ୍ରଙ୍କୁ ଚିଡ଼ାଉଥିବାର ଇଂରାଜୀରେ ଅଛି । ବୋଧହୁଏ ଦାସଙ୍କ ବହିର ପ୍ରଥମ ସଂସ୍କରଣରେ ସେପରି ଥିଲା; କିନ୍ତୁ ଦ୍ୱିତୀୟ ସଂସ୍କରଣରେ ସେପରି ନଥିବାର ଦେଖୁଛି ।

## ନବମ ଅଧ୍ୟାୟ

# ଧର୍ମୀୟ ଉତ୍ସାହର ଯୁଗ

### ଐତିହାସିକ ପଟ୍ଟଭୂମି

ଆମେ ବର୍ତ୍ତମାନ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ । ସାରଳା ଦାସ ତାଙ୍କର ମହାଭାରତ ଲେଖିଥିଲେ କପିଳେନ୍ଦ୍ର ଦେବଙ୍କ ରାଜତ୍ୱରେ (୧୪୩୫-୧୪୬୬ ଖ୍ରୀ : ଅଃ) । ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ଶେଷ ପୁସ୍ତକ 'ଚଉତୀଶ ଚକଡ଼ା' ଲେଖା ହୋଇଥିଲା ବୋଧହୁଏ କପିଳେନ୍ଦ୍ର ଦେବଙ୍କ ପୁତ୍ର ଓ ଉତ୍ତରାଧିକାରୀ ପୁରୁଷୋତ୍ତମ ଦେବଙ୍କ (୧୪୬୭-୧୪୯୭) ରାଜତ୍ୱରେ । ଏହି ସମ୍ରାଟ୍ ପୁରୁଷୋତ୍ତମ ଦେବ, ଓଡ଼ିଶାରେ ଏକ ଉପାଖ୍ୟାନ ହୋଇଉଠିଛନ୍ତି । ତାଙ୍କର ବିଜୟ ଓ ବିବାହ ଗତ ବହୁ ଶତାବ୍ଦୀଧରି ନାନା ଗାଥା, ନାଟକ, କାବ୍ୟ, କବିତା ଓ ଚିତ୍ରର ଉର୍ବର ଉତ୍ସ ହୋଇଆସିଛି, ବ୍ରିଟିଶ ରାଜତ୍ୱବେଳେ ରାମଶଙ୍କର, ଗୋଦାବରୀଶ ଓ ଭିକାରିଚରଣଙ୍କ ନାଟକମାନଙ୍କ ଦେଇ (ଦେଖ ପଞ୍ଚଦଶ ଅଧ୍ୟାୟ) । ଏହି ରାଜା ଓଡ଼ିଶୀ ଜାତୀୟତାର ମଧ୍ୟ ପ୍ରତୀକ ହୋଇଉଠିଥିଲେ । ଏହି ଅଧ୍ୟାୟର 'ପରିଶିଷ୍ଟ' ଭାବରେ ଏହି ସମ୍ରାଟ୍‌ଙ୍କର ପ୍ରସିଦ୍ଧ ପ୍ରଣୟ ଓ ତା'ର ଓଡ଼ିଆ ଜାତି ଉପରେ ପ୍ରଭାବ ବର୍ଣ୍ଣିତ ହୋଇଛି । ପୁରୁଷୋତ୍ତମ ଦେବଙ୍କ ପରେ ତାଙ୍କ ପୁତ୍ର ପ୍ରତାପରୁଦ୍ର ଓଡ଼ିଶା ସାମ୍ରାଜ୍ୟର ସିଂହାସନ ଆରୋହଣ କଲେ । ସେ ପିତାଙ୍କ ପରି ଏକ କୃତବିଦ୍ୟ ଲୋକ ଥିଲେ; କିନ୍ତୁ ନଥିଲେ ସେହିପରି ସୌଭାଗ୍ୟବାନ୍ । ତାଙ୍କ ରାଜତ୍ୱରେ ଉତ୍କଳ ଦେଶରେ ଉଭୟ ଧର୍ମ ଓ ସାହିତ୍ୟରେ ଯୁଗପଦ୍ ବିପ୍ଳବ ଦେଖାଦେଇଥିବାରୁହିଁ ଏହି ସାହିତ୍ୟର ଇତିହାସରେ ସେ ସ୍ମରଣୀୟ । ଏହି ଯୁଗ୍ମ ବିପ୍ଳବ ବୈଷ୍ଣବ ଧର୍ମକୁ ଉତ୍କଳର ଜାତୀୟ ଧର୍ମରୂପେ ସୁପ୍ରତିଷ୍ଠିତ କରିଦେଇଯାଇଛି; କିନ୍ତୁ ଓଡ଼ିଆ ଜାତିର ବୈଷ୍ଣବ ଧର୍ମରେ ମଧ୍ୟ ରହିଯାଇଛି ଭିନ୍ନତା ଓ ସ୍ୱକୀୟ ବୈଶିଷ୍ଟ୍ୟ; ଯାହା କିଞ୍ଚିତ୍ ଆଲୋଚନା ଦରକାର କରେ ।

### ଉତ୍କଳୀୟ ବୈଷ୍ଣବ-ଧର୍ମ –

ଗତ ବହୁ ଶତାବ୍ଦୀଧରି ବିଷ୍ଣୁ-ଉପାସନା ଓଡ଼ିଶାରେ ଧୀରେ ଧୀରେ ପ୍ରଭାବ ବିସ୍ତାର କରିଆସୁଥିଲେହେଁ ଦ୍ୱାଦଶ ଶତାବ୍ଦୀର ଶେଷଆଡ଼କୁ ପରମବୈଷ୍ଣବ ଆଚାର୍ଯ୍ୟ ରାମାନୁଜ ନିଜେ ଓଡ଼ିଶା ଆସିଥିଲେ ଓ ଓଡ଼ିଶାରେ ରହଣି ଭିତରେ ଅନ୍ୟ ମତବାଦୀ ଗୋଷ୍ଠୀ ଓ ଅନୁଷ୍ଠାନମାନଙ୍କୁ ନିଜ ମତକୁ ଆଣିବାକୁ କଠୋର ପ୍ରଯତ୍ନ କରିଥିଲେ । ତା'ପରେ ତ୍ରୟୋଦଶ ଶତାବ୍ଦୀରେ ପରମବୈଷ୍ଣବ ଜୟଦେବଙ୍କ କବିତା ଉତ୍କଳୀୟ ଜନତା ଉପରେ କୃଷ୍ଣ-ଚରିତ ପ୍ରତି କି ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲା, ତାହା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ

ହୋଇସାରିଛି । ତା'ପରେ କନଡ଼-ଭାଷୀ ରାଜ୍ୟରୁ ଆସିଲେ ନରସିଂହ ମୁନୀ ଓ ନରହରି ତୀର୍ଥ । ରାମାନୁଜ ଯେଉଁ ସୌଧର ନିର୍ମାଣ ଆରମ୍ଭ କରିଥିଲେ, ଏ ଦୁହେଁ ତା'ର ଚୂଳ ମାରିଲେ ବୋଲି କୁହାଯାଇପାରେ । ଆମେ ଯେଉଁ ସମୟରେ ଆସି ପହଞ୍ଚିଛୁ ସେତେବେଳକୁ ଉତ୍କଳର ଜାତୀୟ ଦେବତା ଜଗନ୍ନାଥ ଏକାଧାରରେ ବୁଦ୍ଧ, କୃଷ୍ଣ ଓ ରାମଙ୍କର ମିଶ୍ରଣ ରୂପେ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇସାରିଲେଣି । ବକ୍ଷ୍ୟମାଣ ସମୟକୁ ଉତ୍କଳୀୟ ଜନତା ମହାଯାନୀ-ତ୍ରିରତ୍ନ-ଉଦ୍ଭବ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ନବମ ଅବତାରରୂପେ ନିଃସନ୍ଦେହ ଭାବରେ ମାନି ନେଲେଣି । ପଞ୍ଚମ ଅଧ୍ୟାୟରେ ସୂଚିତ ହୋଇଛି ଯେ ସମ୍ବଲପୁରର ରାଜା ଇନ୍ଦ୍ରଭୂତି, ତାଙ୍କ ପ୍ରଚାରିତ ତତ୍ତ୍ୱ ବଜ୍ରଯାନ ଓ ତାଙ୍କ ଲିଖିତ ଗ୍ରନ୍ଥ 'ଜ୍ଞାନସିଦ୍ଧି' ଖୁବ୍ ସମ୍ଭବତଃ ଜଗନ୍ନାଥଙ୍କର ଏହି ନବଜନ୍ମ ପାଇଁ ଦାୟୀ । ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ବିପ୍ର ନୀଳାମ୍ବରଙ୍କ ଦେଉଳତୋଳା ସୁଆଙ୍ଗ ଜଗନ୍ନାଥଙ୍କର ଏହି ରୂପାନ୍ତରର ଏକ ରୂପକ ମାତ୍ର । ହୁଏତ ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀ ବେଳକୁ ଏହା ପୂରାଭାବରେ ଗୃହୀତ ହୋଇସାରିଥିଲା; ନଚେତ୍ ଜୟଦେବ ତାଙ୍କ ଗୀତଗୋବିନ୍ଦରେ ଏପରି ବିଶ୍ୱାସପୂର୍ଣ୍ଣ ମୁକ୍ତକଣ୍ଠରେ ଜଗନ୍ନାଥଙ୍କୁ ଅନାଇଁ ଯଜ୍ଞବିରୋଧୀ ବୁଦ୍ଧଙ୍କର ସ୍ତୁତିଗାନ କରିନଥାନ୍ତେ । ମନେହେଉଛି ଯେ, ବୁଦ୍ଧ ବିଷ୍ଣୁ (ଜଗନ୍ନାଥ) ମିଳନରେ ବଜ୍ରଯାନୀମାନେ ମୂଳଦୁଆ ପକାଇଯାଇଥିଲେ, ଯାହା ଉପରେ ରାମାନୁଜ ଗଢ଼ିଦେଇଗଲେ ପୁରୀ ଜଗନ୍ନାଥ ରୂପକ ଦୃଢ଼ ବୈଷ୍ଣବ ଅଟ୍ଟାଳିକା ।

କିନ୍ତୁ ଜାଣିବାର କଥା ଏହି ଯେ, ଶତାବ୍ଦୀ-ଶତାବ୍ଦୀଧରି ନାନା ଧର୍ମୀୟ ପରିବର୍ତ୍ତନ ଭିତରେ ଉତ୍କଳୀୟ ଜନତାର ଜାତୀୟ ଧର୍ମବିଶ୍ୱାସ ମୂଳତଃ ରହିଯାଇଛି ବୌଦ୍ଧ । ଓଡ଼ିଆ ସାହିତ୍ୟରେ, ୭ମ-୯ମ ଶତାବ୍ଦୀରେ ରଚିତ ବୌଦ୍ଧ-କବିତାବଳିଠାରୁ ଏପର୍ଯ୍ୟନ୍ତ, ମହାଯାନୀ ବୌଦ୍ଧତତ୍ତ୍ୱ ଓ ନାଥ ସଂପ୍ରଦାୟର ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱର ଆମେ ବାରମ୍ବାର ସମ୍ମୁଖୀନ ହେବା । ଭିନ୍ନ ଭିନ୍ନ କୌଣସି କାଳରେ ଯେକୌଣସି ଧର୍ମବାଦ ପ୍ରଭାବଶାଳୀ ହେଉନା କାହିଁକି, ଓଡ଼ିଆ ଜନତାର ଚେତନାରୁ ବୌଦ୍ଧ-ପ୍ରଭାବ କେବେହେଲେ ଉଭେଇଯାଇନାହିଁ ।

ବକ୍ଷ୍ୟମାଣ କାଳକୁ ଉତ୍କଳଭୂମିରେ ଦଳେ କବି ଓ ଧର୍ମ-ସଂସ୍କାରକ ଆବିର୍ଭୂତ ହୋଇଥିଲେ ଯେଉଁମାନଙ୍କୁ ବୈଷ୍ଣବ ଆଖ୍ୟା ଦିଆଯାଏ ସତ; କିନ୍ତୁ ଯେଉଁମାନେ ଠିକ୍ ସେହିପରି କାମ କରୁଥିଲେ, ଯେପରି କରିଥାନ୍ତେ ବୁଦ୍ଧଙ୍କର ପ୍ରତ୍ୟକ୍ଷ ଶିଷ୍ୟବର୍ଗ । ଏହି କବି-ସଂସ୍କାରକବର୍ଗର ମତବାଦର ସାଧାରଣ କେତେକ ବିଶେଷତ୍ୱ ଏହି –

୧ । ସେମାନେ ପ୍ରତିମାପୂଜାର ବିରୋଧୀ ଥିଲେ । ପ୍ରତିମା ପରିବର୍ତ୍ତରେ ଶୂନ୍ୟ ଓ ଅଲେଖଙ୍କ ଧ୍ୟାନ ପ୍ରଚାର କରୁଥିଲେ, ଯଦିଓ ବୁଦ୍ଧ-ଜଗନ୍ନାଥଙ୍କ ଦାରୁମୂର୍ତ୍ତି ଓ ନିଜର ଶୂନ୍ୟ-ଅଲେଖ ଭିତରେ କୌଣସି ଭିନ୍ନତା ସେମାନେ ଦେଖିପାରୁନଥିଲେ ।

୨ । ସେମାନେ ଇଷ୍ଟଦେବତା ନିକଟରେ ପରିପୂର୍ଣ୍ଣ ଆତ୍ମ-ସମର୍ପଣ ଅର୍ଥାତ୍ ଭକ୍ତିବାଦର ପ୍ରଚାର କରୁଥିଲେ ମଧ୍ୟ, ଆତ୍ମ-ଶୁଦ୍ଧିପାଇଁ କେତେକ ହଠ-ରାଜ-ଯୋଗୀୟ ପଦ୍ଧତି ଉପରେ ଜୋର୍ ଦେଉଥିଲେ ।

୩ । ସମସ୍ତେ ବାହ୍ୟ ଆଚାର-ବିଚାର ପ୍ରତି ଓ ବ୍ୟବସାୟୀ ପୁରୋହିତ ସମ୍ପ୍ରଦାୟ ପ୍ରତି ବୀତଶ୍ରଦ୍ଧ ଥିଲେ ।

୪ । ସେମାନେ ହିନ୍ଦୁ ଜାତିପ୍ରଥାର ମଧ୍ୟ ବିରୋଧୀ ଥିଲେ ଓ ବେଦ-ବେଦାନ୍ତ ପଢ଼ିବା ଓ ବୁଝେଇବାର ଅଧିକାର ଯେ ଶୂଦ୍ରର ମଧ୍ୟ ଅଛି, ସେଥିପାଇଁ ଦାବିକରୁଥିଲେ ।

୫ । ସେମାନେ ସାଧାରଣତଃ ନିରକ୍ଷର ଜନତାର କଲ୍ୟାଣ ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ସେମାନଙ୍କ ଭିତରେ କେତେକ ସଂସ୍କୃତରେ ସୁପଣ୍ଡିତ ଥିଲେ ମଧ୍ୟ ସେମାନେ ବୌଦ୍ଧମାନଙ୍କ ପରି ଜାଣି ଜାଣି, ଲୋକ-କଲ୍ୟାଣ ଲକ୍ଷ୍ୟରେ ଜନତାର ଭାଷାରେହିଁ ପୁସ୍ତକାଦି ଲେଖିଥିଲେ ।

ଏହିପରି ପାଞ୍ଚଜଣ କବି-ସଂସ୍କାରକ, ଘନିଷ୍ଠ ପାରସ୍ପରିକ ସାମାଜିକତା ଭିତରେ ଏହି ସମୟରେ ଦେଖାଦେଇଥିବାରୁ ସେମାନଙ୍କୁ ଓଡ଼ିଆ ସାହିତ୍ୟରେ ପଞ୍ଚସଖା* କୁହାଯାଏ । ସର୍ବଦାସ ବଳରାମ, ଜଗନ୍ନାଥ, ଅନନ୍ତ, ଯଶୋବନ୍ତ ଓ ଅଚ୍ୟୁତ – ଏହି ପାଞ୍ଚୋଟି ସାଙ୍ଗ, ଓଡ଼ିଆ ଭାଷାରେ ଏକ ବିପୁଳ ଧର୍ମୀୟ ସାହିତ୍ୟ ଛାଡ଼ିଯାଇଛନ୍ତି, ଯାହା ଏବେ ବି ଲକ୍ଷ ଲକ୍ଷ ଓଡ଼ିଆଙ୍କଦ୍ୱାରା ପ୍ରତ୍ୟହ ପଠିତ ଓ ସମ୍ମାନିତ ହୁଏ ।

**ଚୈତନ୍ୟ ଓ ଓଡ଼ିଶା –**

ଏହି ପାଞ୍ଚସଖାଗୋଷ୍ଠୀ ଭିତରେ ଆସି ହଠାତ୍ ଦେଖାଦେଲେ ବଙ୍ଗ ଦେଶରୁ ଚୈତନ୍ୟ ୧୫୧୦ ଖ୍ରୀ:ଅ:ରେ, ଏବଂ ପୁରୀର ଅନୁକୂଳ ହିନ୍ଦୁ-ବୈଷ୍ଣବ-ବାତାବରଣରେ ମୁଗ୍ଧ ହୋଇ ମୃତ୍ୟୁ ପର୍ଯ୍ୟନ୍ତ ସେହିଠାରେହିଁ ଅଧିବାସର ବ୍ୟବସ୍ଥା କଲେ । ଉପର୍ଯ୍ୟୁକ୍ତ ପଞ୍ଚସଖା, ଓଡ଼ିଶାରେ ପ୍ରାକ୍-ଚୈତନ୍ୟ ବୈଷ୍ଣବ ବା ସାଧାରଣ ଧର୍ମଚେତନାର ପୁଣ୍ୟ ପୁଷ୍ପପୁଞ୍ଜ ହୋଇ ସେହିମାନଙ୍କ ସୌରଭରେ ପୁରୀର ସେତେବେଳର ବାତାବରଣ ପୁଣ୍ୟଗନ୍ଧମୟ ହୋଇଉଠିଥିଲା, ଯାହା ବୋଧହୁଏ ଚୈତନ୍ୟଙ୍କୁ ସେ ସ୍ଥାନରେ ବିଶେଷ ଭାବରେ ଟାଣି-ରଖିଲା; କିନ୍ତୁ ଏପର୍ଯ୍ୟନ୍ତ ଏହା ଅନେକଙ୍କୁ ଅଜ୍ଞାତ ଯେ ଓଡ଼ିଶାର ସେ କାଳର ବୁଦ୍ଧିଜୀବୀ ମହଲରେ ଚୈତନ୍ୟଙ୍କ ଭାବପ୍ରବଣ ଭକ୍ତିବାଦ ବିରୁଦ୍ଧରେ ପ୍ରବଳ ବିରୋଧ ଦେଖାଦେଇଥିଲା । ଆଜି ମଧ୍ୟ ଓଡ଼ିଶାର ବ୍ରାହ୍ମଣ ସମ୍ପ୍ରଦାୟ ଚୈତନ୍ୟଧର୍ମ ଓ କୀର୍ତ୍ତନାଦି ତତ୍‌ସଂପୃକ୍ତ ଅନେକ ଆଚାରକୁ ପ୍ରାଣର ସହିତ ଘୃଣା କରନ୍ତି । ଓଡ଼ିଶାର ସାଂପ୍ରତିକ ସାହିତ୍ୟିକ ମଣ୍ଡଳୀର ବୟଃଶ୍ରେଷ୍ଠ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଗଦ୍ୟ-ରଚନାବଳିର ଅଧିକାଂଶହିଁ ଚୈତନ୍ୟଧର୍ମ ଓ ତା'ର ଉତ୍କଳୀୟ ସମାଜରେ ଅକଲ୍ୟାଣକର କ୍ରିୟା ବିରୁଦ୍ଧରେ ଆକ୍ରମଣ ଓ ପ୍ରଚାର; କିନ୍ତୁ ଏହା କୌଣସି ଜଣେ ଲୋକର ବ୍ୟକ୍ତିଗତ ମତ ବା ଅସାଧାରଣ ମନୋଭାବର ନିଦର୍ଶନ ନୁହେଁ । ଓଡ଼ିଶାର ବୁଦ୍ଧିଜୀବୀ ସଂପ୍ରଦାୟର ଚୈତନ୍ୟବାଦ

---

*ମୂଳ ଇଂରାଜୀ ଗ୍ରନ୍ଥ ପ୍ରକାଶିତ ହୋଇସାରିଲା ପରେ କୌଣସି କୌଣସି ଆଲୋଚନା ପାଠ କରି ଓଡ଼ିଆ ସାହିତ୍ୟର ଏହି ତଥାକଥିତ ପଞ୍ଚସଖାଙ୍କର ସମକାଳୀନତ୍ୱରେ ଲେଖକର ସନ୍ଦେହ ଜାଗ୍ରତ ହୋଇଛି; କିନ୍ତୁ ଏ ସମ୍ପର୍କରେ ନିଃସନ୍ଦେହ ସିଦ୍ଧାନ୍ତ ବହୁ ଗବେଷଣାକୁ ଅପେକ୍ଷା କଲେ ମଧ୍ୟ ଏ ଅଧ୍ୟାୟର ବିଷୟଗତ ଆଲୋଚନା ଅର୍ଥହୀନ ହୋଇଉଠିବାର କୌଣସି କାରଣ ନାହିଁ ।

ପ୍ରତି ଏହାହିଁ ସାଧାରଣ ମାନସିକ ପ୍ରତିକ୍ରିୟା । ବଙ୍ଗାଳୀ ଐତିହାସିକ ରାଖାଲଦାସ ବାନାର୍ଜିଙ୍କ 'ଓଡ଼ିଶା ଇତିହାସ'-(ପ୍ରଥମ ଖଣ୍ଡ)ରେ ସ୍ୱତନ୍ତ୍ର ଓ ଶକ୍ତିଶାଳୀ ଓଡ଼ିଆ ଜାତିର ଅଧଃପତନରେ ଚୈତନ୍ୟଙ୍କ ପୁରୀ-ଅଧିବାସ ଓ ତାଙ୍କ ଧର୍ମ କିପରି ସହାୟତା କରିଥିଲା, ସେହି କରୁଣ କାହାଣୀ ବିଶଦଭାବରେ ବର୍ଣ୍ଣିତ ରହିଛି ।

କିନ୍ତୁ ନିଜେ ମହାପୁରୁଷ ଚୈତନ୍ୟ, ପଞ୍ଚସଖା ନାମକ ସମକାଳୀନ ଓଡ଼ିଆ ଲେଖକମାନଙ୍କ ସହିତ ନିବିଡ଼ ବ୍ୟକ୍ତିଗତ ସଖ୍ୟରେ ଆବଦ୍ଧ ଥିବାର କଥିତ ହୁଏ । ଏମାନଙ୍କ ମଧ୍ୟରୁ ଜଗନ୍ନାଥ ଦାସ ଚୈତନ୍ୟଙ୍କର ପ୍ରାୟ ସମବୟସୀ ଥିଲେ ଓ ଚୈତନ୍ୟ ତାଙ୍କର କେବଳ ବନ୍ଧୁ ନଥିଲେ, ଥିଲେ ଏକ ଗୁଣସ୍ତାବକ । ଅନ୍ୟ ସଖାମାନଙ୍କର ସେ ବୋଧହୁଏ ଥିଲେ ମହାମାନ୍ୟ ଗୁରୁ ଏବଂ ସମସାମୟିକ ଉତ୍କଳୀୟ ଜନତାର ଚୈତନ୍ୟ ହୋଇଉଠିଲେ ଆଧ୍ୟାତ୍ମିକ ଉତ୍ସାହର ଏକ ଅଭୂତପୂର୍ବ ଉତ୍ସ । ଆଜି ମଧ୍ୟ ଲକ୍ଷ ଲକ୍ଷ ଓଡ଼ିଆଙ୍କ ଆତ୍ମାରେ ଚୈତନ୍ୟ ଏକ ଈଶ୍ୱର ଓ ଏକମାତ୍ର ଈଶ୍ୱର । ଅନ୍ୟପକ୍ଷରେ ଚୈତନ୍ୟଙ୍କୁ ସମକାଳୀନ ଓଡ଼ିଶା ସବୁଭାବରେ ମୁଗ୍ଧ କରିଥିଲା; କାରଣ ସେତେବେଳେ ମୁସଲମାନଶାସିତ ତାଙ୍କ ଜନ୍ମ-ଭୂମି ବଙ୍ଗ ଦେଶ ତୁଳନାରେ ଓଡ଼ିଶା ଥିଲା ସ୍ୱାଧୀନ ହିନ୍ଦୁରାଜ୍ୟ ଓ ତାଙ୍କ ଧର୍ମସାଧନାର ଅନୁକୂଳ ଭୂମି; ଦ୍ୱିତୀୟରେ ଏହା ଥିଲା ତାଙ୍କ ପୂର୍ବପୁରୁଷଙ୍କ ମାଟି ।* ସମ୍ରାଟ୍ କପିଳେନ୍ଦ୍ର-ଦେବଙ୍କ ସମୟରେ କୌଣସି ବ୍ୟକ୍ତିଗତ ଅତ୍ୟାଚାରଫଳରେ ତାଙ୍କର ପିତାମହ ସ୍ୱଗ୍ରାମ ଯାଜପୁର ଛାଡ଼ି ଚାଲିଯାଇଥିଲେ । ଚୈତନ୍ୟଙ୍କ ପରି ଓଡ଼ିଶୀ ବ୍ରାହ୍ମଣମାନଙ୍କର ଖାଣ୍ଟି ମିଶ୍ର କୁଳସଂଜ୍ଞା ଧାରଣ କରି ପ୍ରସିଦ୍ଧ ବ୍ରାହ୍ମଣ ପରିବାରସବୁ ଏପର୍ଯ୍ୟନ୍ତ ଯାଜପୁର ସମାଜ ଅଳଂକୃତ କରୁଛନ୍ତି । ଓଡ଼ିଶାରେ ଅବସ୍ଥାନ କାଳରେ ଚୈତନ୍ୟ ପୂର୍ବ-ପୁରୁଷଙ୍କ ଜନ୍ମମାଟି ଯାଜପୁରକୁ ବରାବର ଯାଉଥିଲେ ଏବଂ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ କେବଳ ନୁହେଁ, କୀର୍ତ୍ତନବେଳେ ଓଡ଼ିଆ ଗୀତ ଗାଉଥିଲେ । **

କିନ୍ତୁ ଏପର୍ଯ୍ୟନ୍ତ ହୋଇଆସୁଥିବା ଏକ ଅପପ୍ରଚାରର ପ୍ରତିବାଦରେ ଆମେ କହିପାରୁ ଯେ, ନିବିଡ଼ ସଖ୍ୟ ଓ ସାହଚର୍ଯ୍ୟ ସତ୍ତ୍ୱେ ଚୈତନ୍ୟ ଏଠିସେଠି ଏକ ମହାତ୍ମା ଭାବରେ ଉଲ୍ଲିଖିତ ହେବା ଛଡ଼ା ପଞ୍ଚସଖାମାନଙ୍କର ରଚନାବଳିକୁ ସେ କୌଣସି ଭାବରେ ପ୍ରଭାବିତ କରିଯାଇନାହାନ୍ତି । ଏହା ତେଣୁ ପ୍ରମାଣିତ କରୁଛି ଯେ, ସେ କାଳର ଓଡ଼ିଆ ଜାତୀୟତା ବାହାରକୁ ଚୈତନ୍ୟବାଦ ଗ୍ରହଣ କଲାପରି ଦେଖାଯାଉଥିଲେ ମଧ୍ୟ, ତାହା ତା'ର ପ୍ରାଣ-କେନ୍ଦ୍ରରେ, ଏହି ଭାବ-ପ୍ରବଣ ଜୀବନବାଦର ପ୍ରତିରୋଧ କରିଥିଲା । ବସ୍ତୁତଃ, ପଞ୍ଚସଖା-ମାନଙ୍କ ମଧ୍ୟରୁ ମୁଖ୍ୟ ଦୁଇଜଣ, ବଳରାମ ଦାସ ଓ ଜଗନ୍ନାଥ ଦାସ ନିଜନିଜର ଶ୍ରେଷ୍ଠ ଗ୍ରନ୍ଥସବୁ ଚୈତନ୍ୟ ଓଡ଼ିଶାକୁ ଆସିବା ପୂର୍ବରୁହିଁ ଲେଖିସାରିଥିଲେ ଏବଂ ସେମାନଙ୍କର

---

* ଏ ସମ୍ପର୍କରେ ପାଠକ ଡାକ୍ତର ଦୀନେଶଚନ୍ଦ୍ର ସେନଙ୍କ ଇଂରାଜୀ ଲେଖା 'ଚୈତନ୍ୟ ଏଣ୍ଡ ହିଜ୍ ଏଜ୍' (ଚୈତନ୍ୟ ଓ ତାଙ୍କ କାଳ) ଦେଖିନେବାକୁ ଅନୁରୋଧ ।

** ଏ ସମ୍ପର୍କରେ ରାମକୃଷ୍ଣ ମିସନ୍ ପ୍ରକାଶିତ ପ୍ରସିଦ୍ଧ ବଙ୍ଗଳା ପତ୍ରିକା 'ଉଦ୍‌ବୋଧନ'ର ଜୁନ୍, ୧୯୫୪ ସଂଖ୍ୟାରେ ସ୍ୱାମୀ ଜଗନ୍ନାଥାନନ୍ଦଙ୍କର ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ସମଗ୍ର ରଚନାବଳିରେ ଆମେ ଓଡ଼ିଆ ଧର୍ମଜୀବନର ସେହି ପ୍ରାଚୀନ ନିଜସ୍ୱ ଆଦର୍ଶ, ବୁଦ୍ଧ-ବୈଷ୍ଣବବାଦର ପ୍ରଚାରହିଁ ଦେଖୁଁ । ଅବଶ୍ୟ ଚୈତନ୍ୟଙ୍କର ପୁରୀ-ଅଧିବାସ ଓ ପଞ୍ଚସଖାଙ୍କ ସହିତ ତାଙ୍କର ନିବିଡ଼ ସମ୍ବନ୍ଧ ସେମାନଙ୍କର ରଚନାବଳିର ଆଦର ସମସାମୟିକ ଓଡ଼ିଶାରେ ତୁରନ୍ତ ପରିବ୍ୟାପ୍ତ ହେବାରେ ଯେ ସାହାଯ୍ୟ କରିଥିବ, ଏଥିରେ ସନ୍ଦେହ ନାହିଁ । ଚୈତନ୍ୟ-ପ୍ରଚାରିତ ଭକ୍ତି-ଧର୍ମର ଶ୍ରେଷ୍ଠ ଯୁକ୍ତି ଥିଲା, ତାଙ୍କର ନିଜର ସମଗ୍ର ଭାବରେ ଈଶ୍ୱର-ନିବେଦିତ ଜୀବନ, ଯାହାର ପ୍ରଚାର ପାଇଁ ହିଁ ପରେ ଏକ ସ୍ୱତନ୍ତ୍ର ସାହିତ୍ୟ ଗଢ଼ିଉଠିଲା ।

କିନ୍ତୁ ଓଡ଼ିଶାରେ ଆଜି ମଧ୍ୟ ଯେ ମୌଳିକ ଭାରତୀୟ ସଂସ୍କୃତିର କେତେକ ରମଣୀୟ ବିଭାବ ବଞ୍ଚିରହିଛି, ତାହା ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ଏହି ପଞ୍ଚସଖା ମିସନାରୀ ଭାବପ୍ରଣୋଦିତ ହୋଇ ଯେଉଁ ମହାନ୍ ସାଧନା ଆରମ୍ଭ କରିଯାଇଥିଲେ, କେବଳ ତାହାରି ପାଇଁ । ଯୌନ-ସମ୍ଭୋଗ, ଅବୈଧ-ପ୍ରେମର ସଂକେତମୟ ଚୈତନ୍ୟ-ଆଧ୍ୟାତ୍ମିକତା ସେପର୍ଯ୍ୟନ୍ତ ପୌରୁଷମୟ ଓଡ଼ିଆ ସାହିତ୍ୟ ଉପରେ କି ଅକୁଶଳ ପ୍ରଭାବ ବିସ୍ତାର କଲା, ତାହା ପରବର୍ତ୍ତୀ ଯୁଗରେହିଁ ଦେଖାପଡ଼ିବ । ସେତେବେଳକୁ ଓଡ଼ିଶା ଆଉ ସ୍ୱାଧୀନ ରାଜ୍ୟ ନଥିଲା ଓ ପଞ୍ଚସଖାମାନଙ୍କର ପବିତ୍ରାତ୍ମାରୁ ନିର୍ଗତ.ଲୋକ-କଲ୍ୟାଣମୟ ବାଣୀଧାରା ଶୁଷ୍କ ହୋଇଆସିଥିଲା । ଚୈତନ୍ୟଙ୍କ ଅବସାନର ମାତ୍ର ତିନି ଦଶନ୍ଧି ଭିତରେହିଁ ଏହି ବିପର୍ଯ୍ୟୟ ଏବୁ ଘଟିଗଲା ।

## ପଞ୍ଚସଖା ଓ ସେମାନଙ୍କର ଦାନ

### ବଳରାମ –

ପଞ୍ଚସଖାମାନଙ୍କ ମଧ୍ୟରେ ପ୍ରଥମ ଓଡ଼ିଆ ରାମାୟଣ-ରଚୟିତା ବଳରାମ ଦାସ କେବଳ ବୟସରେ ବଡ଼ ନଥିଲେ, ବୋଧହୁଏ ସମସ୍ତଙ୍କ ଭିତରେ ସେ ଥିଲେ ଅଧିକ ପ୍ରତିଭାବାନ୍ । ଖ୍ରୀ:ଅ: ୧୪୭୩ରେ ତାଙ୍କର ଜନ୍ମ ହୋଇଥିଲା ବୋଲି ଧରାଯାଉଛି ଓ ସେହି ଅନୁସାରେ ଚୈତନ୍ୟ ପୁରୀରେ ଆସି ବସବାସ କଲାବେଳକୁ ସେ ପ୍ରାୟ ମଧ୍ୟବୟସୀ ହୋଇଯାଇଥିଲେ କେବଳ ନୁହେଁ, ତାଙ୍କର ମୁଖ୍ୟ ଗ୍ରନ୍ଥାବଳିଗୁଡ଼ିକ ମଧ୍ୟ ଲେଖାସରିଥିଲା । ତାଙ୍କ ରଚନାବଳିରୁ ଜଣାଯାଉଛି ଯେ ସେ ସହଜାତ ଭାବରେ ଭକ୍ତିମାନ୍ ଧାର୍ମିକ ପୁରୁଷ ଥିଲେ । ଏହା ମଧ୍ୟ ଲକ୍ଷ୍ୟ କରିବାର କଥା ଯେ, ବାହ୍ୟ ନୈଷ୍ଠିକତା ତଳେ ତାଙ୍କର ଅନ୍ତରରେ ଏକ ସ୍ୱାଧୀନ ଚିନ୍ତାର ତୀବ୍ରାଲୋକଯୁକ୍ତ ବର୍ତ୍ତିକା ଜଳୁଥିଲା, ଦୁର୍ଭାଗ୍ୟବଶତଃ ଯାହା ସେ ଚୈତନ୍ୟଙ୍କ ସଂପର୍କରେ ଆସି ଭାବପ୍ରବଣତାକୁ ପ୍ରଶ୍ରୟ ଦେବାରୁ କ୍ରମେ କ୍ଷୀଣରୁ କ୍ଷୀଣତର ହୋଇ ଶେଷରେ ଏକାବେଳକେ ଲିଭିଗଲା । ଏହାରି ଫଳରେ ପୁରୀର ସାଧାରଣ ଜନତାର ଚକ୍ଷୁରେ ପୂର୍ବର କବି ବଳରାମ ଶେଷରେ ଉନ୍ମାଦଗ୍ରସ୍ତ 'ମତ୍ତ ବଳରାମ' ହୋଇଉଠିଲେ; କାରଣ ଶେଷ ବୟସରେ ସେ ନୂତନ ଗୁରୁ ଚୈତନ୍ୟଙ୍କ ଅନୁକରଣରେ ବୋଧହୁଏ, ଇଷ୍ଟଦେବତାକୁ ଖୋଜିବା ଲକ୍ଷ୍ୟରେ କମ୍ପନ, କ୍ରନ୍ଦନ ଓ ଇତସ୍ତତଃ ଧାବନାଦି ପାଗଳକ୍ରିୟାସବୁ ଆରମ୍ଭ କରିଦେଇଥିଲେ ।

କିନ୍ତୁ ବଳରାମ ଦାସ ଛାଡ଼ିଯାଇଥିବା ମୁଖ୍ୟ ତାତ୍ତ୍ୱିକ ଗ୍ରନ୍ଥମାନଙ୍କରେ ଆମେ ଦେଖୁଁ ଯେ ସେ ବରାବର କେବଳ ନିଜ ଅନ୍ତଃସ୍ଥ ଅନ୍ତର୍ଯ୍ୟାମୀଙ୍କର ଉପାସନାହିଁ ପ୍ରଚାର କରି-ଯାଇଛନ୍ତି ଓ ତାଙ୍କୁ ଅନୁଭବ କରିବାର ଉପାୟରୂପେ ସେ ଶାନ୍ତ ନିରୋଳ ଧ୍ୟାନ ଓ କଠୋର ଯୌଗିକ ସାଧନାହିଁ ନିର୍ଦ୍ଦେଶ କରିଯାଇଅଛନ୍ତି । କେବଳ ବଳରାମ ଏକା ନୁହନ୍ତି ପାଞ୍ଚଟିଯାକ ସଖାଙ୍କର ଏହାହିଁ ଥିଲା ମୁଖ୍ୟ ଧର୍ମାଦର୍ଶ; କିନ୍ତୁ ଏ ସମସ୍ତେ ନିଜ ନିଜ ଲେଖାରେ ବୌଦ୍ଧିକ ବିଶୃଙ୍ଖଳା ଓ ଅସଙ୍ଗତି ଡାକିଆଣିଛନ୍ତି, ଯେତେବେଳେ ସେମାନେ ଅନ୍ତର୍ବାସୀ ନିରାକାର ଶୂନ୍ୟ ଓ ଅଲେଖ ସହିତ ପାଖରେ ଥିବା ଜଗନ୍ନାଥଙ୍କ ସର୍ବବ୍ୟାପୀ ପ୍ରଭାବକୁ କୌଣସିମତେ ଏଡ଼ିନପାରି ତାଙ୍କୁ ଆଣି ସେଠି ଯୋଡ଼ିଛନ୍ତି । ଦୃଷ୍ଟାନ୍ତସ୍ୱରୂପ, ବଳରାମ ଦାସ ତାଙ୍କର ବେଦାନ୍ତସାରଗୀତା, ଗୁପ୍ତଗୀତା, ବିରାଟଗୀତା, ସପ୍ତାଙ୍ଗ ଯୋଗସାର ଟୀକା ଇତ୍ୟାଦି ଗ୍ରନ୍ଥରେ ବେଦାନ୍ତ ଓ ରାଜଯୋଗ ଏବଂ ହଠଯୋଗର ତତ୍ତ୍ୱମାନ ସରଳଭାବରେ ପ୍ରଚାର କରି ତେଣେ 'ବଟଅବକାଶ' ନାମକ ପୁସ୍ତକରେ ଜଗନ୍ନାଥ-ମହାତ୍ମ୍ୟ ବର୍ଣ୍ଣନା କରିବସିଛନ୍ତି । ଶେଷୋକ୍ତ ଗ୍ରନ୍ଥରେ ଜଗନ୍ନାଥଙ୍କ ଦରବାରକୁ ପୁରାଣର ତେତିଶକୋଟି ଦେବତାଙ୍କ ସହିତ ସମଗ୍ର ଓଡ଼ିଶାର ସକଳ ପ୍ରାନ୍ତର ସ୍ଥାନୀୟ ଦେବଦେବୀ ମଧ୍ୟ କିପରି ଆସି ଦର୍ଶନ କରୁଛନ୍ତି, ତାହାହିଁ ବର୍ଣ୍ଣିତ ବିଷୟ ।

ଯାହାହେଉ, ବଳରାମଙ୍କ ବ୍ୟକ୍ତିତ୍ୱର କବି ଓ ଭକ୍ତ ଅଂଶର ଶ୍ରେଷ୍ଠ ଅଭିବ୍ୟକ୍ତି ମିଳିଛି ବୋଧହୁଏ 'ଭାବ-ସମୁଦ୍ର' ନାମକ କ୍ଷୁଦ୍ର ଗ୍ରନ୍ଥରେ । ପୁରୀ ରଥଯାତ୍ରାବେଳେ ଜଗନ୍ନାଥଙ୍କ ରଥରେ ସ୍ଥାନ ପାଇବା ଏକ ସାମାଜିକ ସମ୍ମାନ । କାରଣ ଉତ୍କଳର ଗଜପତି ରାଜନ ସେହି ରଥରେ ବିଜେ କରୁଥିଲେ ଓ ଏବେ ତାଙ୍କର ଉତ୍ତରାଧିକାରୀ ମଧ୍ୟ ସେଇଆ କରୁଛନ୍ତି । ଯେତେବେଳେ ବଳରାମ ବୋଧହୁଏ କବି ଓ ପଣ୍ଡିତଜନ ଭାବରେ ଜଣାଶୁଣା ହୋଇନଥିଲେ, ସେହି ତରୁଣ ବୟସରେ ଓ ଭକ୍ତିଜନିତ ଉତ୍ସାହରେ ମାତିଉଠି, ସେହି ରଥରେ ସେ ଥରେ ଉଠିବାକୁ ଚେଷ୍ଟା କରିଥିଲେ କିନ୍ତୁ ସମବେତ ବିରାଟ ଜନତା, ଉତ୍କଳ ସମ୍ରାଟ୍ ଓ ତାଙ୍କର ପାତ୍ରମନ୍ତ୍ରୀଙ୍କ ସମ୍ମୁଖରେ ତରୁଣ କବି ପ୍ରହରୀମାନଙ୍କଦ୍ୱାରା ସେଠାରୁ ପ୍ରହାରିତ ଓ ବିତାଡ଼ିତ ହୋଇଥିଲେ । ତରୁଣ କବି ବଳରାମଙ୍କ କୋମଳ ଚିତ୍ତକୁ ଏହା ଯେ ଗୁରୁ ଆଘାତ ଦେଇଥିବ ଏହା ସହଜରେ କଳ୍ପନୀୟ । ତରୁଣ କବି ବଡ଼ଦାଣ୍ଡରୁ ପଳାଇଗଲେ ସମୁଦ୍ର ସିକ୍ତାର ନୀରବତାକୁ ଓ ସେହିଠାରେ ତାଙ୍କର କ୍ରୋଧ, ଅପମାନ, ବିଦ୍ରୋହ ଓ ନୈରାଶ୍ୟକୁ ଢାଳିଦେଇଗଲେ ୭୫୦ ଶ୍ଳୋକ-ସମନ୍ୱିତ ଏହି 'ଭାବସମୁଦ୍ର'ରେ । ଏ ଗ୍ରନ୍ଥର ତାହା ଯଥାର୍ଥ ନାମ । ଏ ଗ୍ରନ୍ଥରେ ଏକ କ୍ରୁଦ୍ଧ, ଅପମାନିତ, ନୈରାଶ୍ୟଜର୍ଜର ପ୍ରାଣର ଉତ୍ତାଳ ଅନୁଚିନ୍ତାରାଜି ଆମେ ଆଜି ମଧ୍ୟ ସ୍ପଷ୍ଟ ଅନୁଭବ କରିପାରୁଛୁ ।

ଏହି ଗ୍ରନ୍ଥଟିରେ ସବୁଠାରୁ ବିସ୍ମୟକର ଶ୍ଳୋକାବଳି ସେହି, ଯେଉଁଥିରେ କବି ନିଜର ଇଷ୍ଟଦେବଙ୍କୁ ତୁଚ୍ଛ ଓ ନିନ୍ଦିତ କରି ଠିଆକରାଇଛନ୍ତି । ତାହା ଏକାଧାରାରେ ଚିନ୍ତାର ନିର୍ଭୀକତା ସହିତ, ପ୍ରକୃତ ଭକ୍ତ-ପ୍ରାଣର ଇଷ୍ଟଦେବ ସହିତ ଅବିଚଳ ନିକଟତାହିଁ ସୂଚିତ କରୁଛି । ସୀତା ଅପହରଣ ନେଇ ବଳରାମ କହୁଛନ୍ତି –

''ହରିହୋ, ଆପଣା ଘୈଣୀ ପୋଷି ନ ପାରୁ
ଦୋଷ ଲଗାଇ ଅପରକୁ ମାରୁ
ନାଥ ସେ ତୋ ତହିଁ କଷ୍ଟ ପାଇଲେ
ଯହିଁରେ ସୁଖ ତାହାଠାକୁ ଗଲେ ।
ହରିହୋ, ତାହାଙ୍କ ମନକୁ ଯେହୁ ବଳିଲା
ବଳିଆ ବୋଲେ ସେ ତହିଁ ରହିଲା । ୩୦୭ ।
ହରିହୋ, ତୁ ନିକି ତାଙ୍କୁ ବରପଣେ ସରି,
ଯେତେ ସୁନ୍ଦର ଜନକକୁମାରୀ;
ନାଥ ତୁ ସେବକ ପ୍ରାଏ ତା ଦିଶୁ
ସେହି ଯେ କେଉଁ ଗୁଣେ ତୋତେ ରସୁ । ୩୦୮ ।''

ଭଗିନୀ ସୁଭଦ୍ରାଙ୍କୁ ସଙ୍ଗେ ଘେନି ଜଗନ୍ନାଥ ରଥଯାତ୍ରା କରନ୍ତି । ଲକ୍ଷ୍ମୀ ଠାକୁରାଣୀ ନିଜର ଅଲଗା ଦେଉଳରେ ଏକାକୀ ରହନ୍ତି । ଏହାକୁ ଲକ୍ଷ୍ୟ କରି ଭକ୍ତକବି କହିଛନ୍ତି –

''ହରିହୋ, ଭାରିଯା ଛାଡ଼ି ଭଗିନୀ ଆଣିଲୁ,
ଲକ୍ଷ୍ମୀଦେବୀକି ଅପମାନ ଦେଲୁ ।
ନାଥ ତୁ ଏକଥା କେମନ୍ତ କଲୁ,
ଗୁଣ୍ଡିଚାଘରକୁ ବିଜେ ତୁ ହେଲୁ ।
ହରିହୋ, ତେଣୁ ସୁଭଦ୍ରାକୁ ନପାରୁ ଛାଡ଼ି,
ଦାସ ବଳରାମ କହୁଛି ବଢ଼ି । ୩୨୬ ।''

ଜଗନ୍ନାଥ ଓଡ଼ିଶାରେ ଆସି କାହିଁକି ବସତି କଲେ, ତରୁଣ-କବି ତାହା ତାଙ୍କ ଇଷ୍ଟଦେବ ତାଙ୍କୁ ନିର୍ଭୀକ ଭାବରେ ପଚାରିଯାଇଛନ୍ତି –

''ହରିହୋ, ଜମ୍ବୁଦ୍ୱୀପରୁ ତୋ ଘର ବାହାର,
ସମୁଦ୍ର ଭିତରେ ଦ୍ୱାରକାପୁର ।
ନାଥ ତୁ ତହିଁ ବିହରିବୁ ଯାଇ
ଆମ୍ଭର ରାଜ୍ୟେ ଥାଉ କାହିଁପାଇଁ ?
ହରିହୋ, କାହୁଁ ଆସି ଦେଶ ମାଡ଼ିବସିଲୁ,
ଦାସ ବଳୀରେ ଅକୀର୍ତ୍ତି ଅର୍ଜିଲୁ । ୩୧୩ ।''

କିନ୍ତୁ ଗ୍ରନ୍ଥର ଅନେକ ସ୍ଥାନରେ କ୍ଷମାଶୀଳ, ଉଦାର, ଭକ୍ତିପ୍ରାଣର ନିଜର ଇଷ୍ଟ-ଦେବତା ସହ ପରମ ନିର୍ମଳ ସମ୍ବନ୍ଧ ଏହିପରି ପ୍ରକାଶ ଲାଭ କରିଛି –

''ହରିହୋ, ତୁ ମୋତେ ବାନ୍ଧିଲୁ ରାଜାର ହାତେ,
ମୁଁ ତୋତେ ବାନ୍ଧିଲି ମୋ ମନ ଗୁପ୍ତେ ।
ନାଥ ତୁ ବନ୍ଧା ହେଲୁଟିକି କହ,
ଏବେ ସନ୍ତୋଷ ହୋଇଲା ମୋ ଦେହ । ୧୮୨ ।''

### ଅନ୍ୟାନ୍ୟ କ୍ଷୁଦ୍ର ରଚନା –

ତାଙ୍କର ପ୍ରଧାନ କୀର୍ତ୍ତି ରାମାୟଣକୁ ଛାଡ଼ି ବଳରାମ ଏହି ଭାବସମୁଦ୍ର ପରି ଅନେକ ଛୋଟ ଛୋଟ ଗ୍ରନ୍ଥ ଛାଡ଼ିଯାଇଛନ୍ତି । ପ୍ରାୟ ସବୁଗୁଡ଼ିକ ଏପର୍ଯ୍ୟନ୍ତ ଜନପ୍ରିୟ ରହିଛନ୍ତି । ସବୁଠାରୁ ଜନପ୍ରିୟ କ୍ଷୁଦ୍ର ରଚନା ହେଉଛି ମୃଗୁଣୀସ୍ତୁତି ଓ ଲକ୍ଷ୍ମୀ ପୁରାଣ ସୁଆଙ୍ଗ । * ମୃଗୁଣୀ-ସ୍ତୁତି, ବିଷ୍ଣୁ-ପୂଜା ବା ଭକ୍ତିଧର୍ମର ଏକ ପ୍ରଚାରପୁସ୍ତକ । ଦାସଙ୍କ ଲକ୍ଷ୍ମୀପୁରାଣ କିନ୍ତୁ ଏକ ଅନନ୍ୟ ସାହିତ୍ୟିକ କୃତି । ପୁରୁଷର ଦର୍ପମୟ ଆସ୍ପର୍ଦ୍ଧା ଆଗରେ ନାରୀର ଶାନ୍ତ, ସୁନ୍ଦର, ସ୍ନେହସ୍ନିଗ୍ଧ ଶକ୍ତିର ଉତ୍କର୍ଷ ଦେଖେଇବା ଏ ବହିର ଲକ୍ଷ୍ୟ । ପଞ୍ଚଶତ ବର୍ଷପରେ ଆଜି ବି ଏ ବହିର ଗ୍ରାମ୍ୟାଭିନୟ ଚିତ୍ତବିନୋଦନ ଓ ନୈତିକ ଶିକ୍ଷା, ଉଭୟ ଦିଗରୁ ଓଡ଼ିଆ ଜନତାର ଆଦରଣୀୟ ହୋଇ ରହିଛି । ଏ ଗ୍ରନ୍ଥର ବିସ୍ତୃତ ଆଲୋଚନା ତେଣୁ କରାଯାଇଛି ପଞ୍ଚଦଶ ଅଧ୍ୟାୟରେ, ଯେଉଁଠି ଓଡ଼ିଆ ସାହିତ୍ୟର ନାଟକ ଓ ରଙ୍ଗମଞ୍ଚର କଥା ବିଚାରିତ ହୋଇଛି ।

### ପ୍ରଥମ ଓଡ଼ିଆ ରାମାୟଣ –

ଓଡ଼ିଆମାନଙ୍କର ଜାତୀୟ ଜୀବନକୁ ଗଢ଼ିଥିବା ତିନୋଟି ପୁସ୍ତକ ଭିତରୁ ବଳରାମ ଦାସଙ୍କ ରାମାୟଣ ଏକତମ; ଅନ୍ୟ ଦୁଇଟି ହେଉଛନ୍ତି ସାରଳାଙ୍କ ମହାଭାରତ ଓ ଜଗନ୍ନାଥ ଦାସଙ୍କ ଭାଗବତ । ବଳରାମଙ୍କ ରାମାୟଣର ସ୍ୱକୀୟ ବୈଶିଷ୍ଟ୍ୟ ହେଲା ଏହାର ଉତ୍କୃଷ୍ଟ ବର୍ଣ୍ଣନା ଓ ଜୀବନ୍ତ କଥୋପକଥନ । ମୂଳ ରାମାୟଣର ଚରିତ୍ରଗୁଡ଼ିକ ଦାସଙ୍କ ଲେଖନୀରେ ବହୁ ପରିମାଣରେ ସ୍ୱାଭାବିକ ନରନାରୀ ହୋଇଉଠିଛନ୍ତି । ଅନ୍ତତଃ ତୁଳସୀରାମାୟଣର ଚରିତ୍ର-ଚିତ୍ରଣ ଅପେକ୍ଷା ବଳରାମଙ୍କ ଚରିତ୍ର-ଚିତ୍ରଣ ନିକଟତର ଭାବରେ ମାନବିକ । ଅଧିକନ୍ତୁ, ଦାସଙ୍କ ରାମାୟଣ ହୋଇପଡ଼ିଛି ଏକ ଓଡ଼ିଶୀ କାବ୍ୟ । କଲିକତା ବିଶ୍ୱବିଦ୍ୟାଳୟ ପ୍ରକାଶିତ 'ଟିପିକାଲ୍ ସିଲେକ୍ସନ୍ ଫ୍ରମ୍ ଓରିୟା ଲିଟରେଚର୍'ର ସଂପାଦକ ଶ୍ରୀ ବିଜୟ ଚନ୍ଦ୍ର ମଜୁମଦାରଙ୍କ ଭାଷାରେ – "ଏକ ଜାତୀୟ କବି ଭାବରେ ବଳରାମ ନିଜ ଲୋକଙ୍କ ପାଇଁ ହିଁ କାବ୍ୟ ଲେଖିଯାଇଛନ୍ତି । ଉତ୍କଳକୁ ସେ ଏକ ସ୍ୱୟଂସଂପୂର୍ଣ୍ଣ କ୍ଷୁଦ୍ର ଜଗତରେ ପରିଣତ କରାଇ ନିଜ ଲୋକ, ନିଜ ଦେଶ ପ୍ରତି ସ୍ନେହଶ୍ରଦ୍ଧାନ୍ୱିତ ହେବାର ଆଦର୍ଶ ସେ ଥୋଇଯାଇଛନ୍ତି । ବଳରାମଙ୍କ ରାମାୟଣରେ ଉତ୍ତର ହିମାଳୟର କୈଳାସ ସେଠୁ ଆସି ଅବସ୍ଥାପିତ ହୋଇଛି ଢେଙ୍କାନାଳର କପିଳାସ ପର୍ବତରେ । ଓଡ଼ିଶାର ସମଗ୍ର ଗଡ଼ଜାତ ଅଞ୍ଚଳ ବନବାସୀ ଯାଯାବର ରାମ ସୀତାଙ୍କର ଚରଣ-ଚିହ୍ନାଙ୍କକୃତ ହୋଇଉଠିଛି କେବଳ ନୁହେଁ, ଓଡ଼ିଶାର ବନ୍ୟ ଆଦିବାସୀ ଗୋଷ୍ଠୀ ସବୁ ଶ୍ରୀରାମଙ୍କ ଲଙ୍କା-ଭିଯାନୀ ବାହିନୀର ଅଙ୍ଗ ହୋଇଉଠିଛନ୍ତି । କିଷ୍କିନ୍ଧ୍ୟାକାଣ୍ଡରେ ବଣାଇ ଓ ବାମଣ୍ଡାର ଜାଙ୍ଗଳ ଅଧିବାସୀମାନେ ଶ୍ରୀରାମଙ୍କ ସୈନ୍ୟରୂପେ ଦେଖାଦେଇଛନ୍ତି ।"

---

* ଏହି ଗ୍ରନ୍ଥ ସହିତ 'ସୁଆଙ୍ଗ' ଶବ୍ଦଟିର ପ୍ରୟୋଗକୁ କେହି କେହି ଆପତ୍ତି କରିଛନ୍ତି; କିନ୍ତୁ ଆପତ୍ତିକାରୀ 'ପୁରାଣ' ରଚନାର ଯେ ଏକ ବିଶିଷ୍ଟ ଧାରା ଅଛି, ତାହା ବୋଧହୁଏ ଜାଣନ୍ତି ନାହିଁ । କୌଣସି ପୁରାଣ ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣ ପରି ଚଟି ବହି ହୋଇନପାରେ । ଲେଖକର ଗ୍ରାମାଞ୍ଚଳରେ ଏପର୍ଯ୍ୟନ୍ତ ଦାସଙ୍କ ଏହି ବହି 'ସୁଆଙ୍ଗ' ଭାବରେ ଅଭିନୀତ ହେଉଛି ।

ବଳରାମଙ୍କ ରାମାୟଣରେ ସୀତା ଏକ ଆଦର୍ଶ ଓଡ଼ିଆଣୀ ବୋହୂ ଛଡ଼ା ଆଉ କିଛି ନୁହନ୍ତି । ସେ ସୁନ୍ଦରୀ ଓ ଚିରଦୁଃଖିନୀ । ଶାଶୁଙ୍କ ପ୍ରତ୍ୟେକ ଆଦେଶ ମାନି ମଧ ବସିଲେ ଉଠିଲେ ଶାଶୁଙ୍କ ତୀବ୍ର ବକା ତାଙ୍କୁ ସହିବାକୁ ହେଉଛି । ରାଜବଧୂ ହେଲେହେଁ, ସୀତା ତାଙ୍କର ପୁରୁଷୋତ୍ତମ ସ୍ୱାମୀଙ୍କ ପାଇଁ କେବଳ ନୁହେଁ, ତାଙ୍କର ପ୍ରତ୍ୟହାଗତ ଅତିଥିମାନଙ୍କ ପାଇଁ ମଧ ନିଜ ହାତରେ ରାନ୍ଧନ୍ତି ଖାଣ୍ଟି ଓଡ଼ିଶୀ ଅନ୍ନ-ବ୍ୟଞ୍ଜନ ଓ ପିଠାପଣା । କିନ୍ତୁ ବନବାସୀ ଜୀବନର ପ୍ରଥମ ରାତ୍ରିରେ ଚିତ୍ରକୂଟ ପାହାଡ଼ରେ ଏକ କଠିନ ଶିଳାସ୍ତରଣ ଉପରେ ଘାସ-ଶଯ୍ୟାରେ ଶୋଇପଡ଼ିଥିବା ରାଜନନ୍ଦିନୀ ସୀତାଙ୍କୁ ଚାହିଁ ଚାହିଁ, ପୁରୁଷୋତ୍ତମ ଶ୍ରୀରାମଙ୍କର ନୈରାଶ୍ୟପୂର୍ଣ୍ଣ ବାକ୍ୟାବଳି ଦେଇ ସେମାନଙ୍କ ପବିତ୍ର, ନିର୍ମଳ ଦାମ୍ପତ୍ୟ ପ୍ରଣୟ ଦାସଙ୍କ ଗ୍ରନ୍ଥରେ କି ଉଦାରଭାବେ ପ୍ରକାଶ ଲାଭ ନକରିଛି ?

"ଉପାୟ କରିଣ ଯେ ତରିଲେ ବେନି ପ୍ରାଣୀ *
ତେତେ ବୁଦ୍ଧି ଲକ୍ଷ୍ମଣ ରେ ଆମ୍ଭେ ନାହୁଁ ଜାଣି ।
ଅମନୁଷ୍ୟ କରି ମୋତେ ଧାତା ଜାତ କଲା
ମୋହର ପାଲଟେ କିପାଁ ବୃକ୍ଷେକ ନ କଲା ।
ଫଳ ହୋଇଥିଲେ ଭୋଗ କରନ୍ତେ ଯେ ପ୍ରାଣୀ
ଏ ଯେ ଜାନକୀ ରେ ବାବୁ ରାଜାର ଦୁଲଣୀ ।
ମୋର ହସ୍ତ ଧରି ହୋଇଲାକ ବଡ଼ ଦୁଃଖୀ
ଆଜି ତୃଣ ପାରି ଶୋଇଲାକ ଶଶିମୁଖୀ ।
ଏ କଥା ଦେଖି ଏ ଦେହ କେମନ୍ତେ ଧରିବି
ଏମନ୍ତ ବୋଲି ବୋଲନ୍ତି ରାଘବ ଯେ ଭାବି ।"

ବଳରାମଙ୍କ ରଚନାବଳିକୁ ସମଗ୍ରଭାବରେ ବିଚାର କଲେ ଏହା ସ୍ପଷ୍ଟ ପ୍ରତୀତ ହେଉଛି ଯେ, ଏହି ବରେଣ୍ୟ କବି ନିଜ ଅନ୍ତରରେ ଏକ ତୀବ୍ର ସମାଜସଂସ୍କାରକ ଥିଲେ । ସେ ପ୍ରକୃତରେ ଏକ ଜାତି-ଶ୍ରେଣୀହୀନ ସମାଜର ସ୍ୱପ୍ନ ଦେଖୁଥିଲେ ଓ ଖୁବ୍ ସମ୍ଭବତଃ ସେହି କାରଣରୁହିଁ, ଧର୍ମକୁ ବ୍ୟବସାୟ ରୂପେ ପରିଣତ କରିଥିବା ବ୍ରାହ୍ମଣ ପୁରୋହିତ ସଂପ୍ରଦାୟ ପ୍ରତି ତାଙ୍କର ବିଦ୍ୱେଷ ସ୍ଥିରଭାବରେ ତୀବ୍ର ହୋଇଉଠିଥିଲା । ପୁରୀବାସୀ ଥିବାରୁ କବି ନିଜ ଆଖିରେ ପଣ୍ଡାମାନେ ଯାତ୍ରୀମାନଙ୍କୁ କିପରି ଠକନ୍ତି ଓ ସେମାନଙ୍କ ଉପରେ ଅତ୍ୟାଚାର କରନ୍ତି, ସେସବୁ ସେ ନିଜ ଆଖିରେ ଦେଖୁଥିଲେ; କିନ୍ତୁ ସେ ଦିଗରେ କିଛି କରିନପାରି ଏକ ନିଃସହାୟ କ୍ରୋଧରେ ଜଳୁଥିଲେ । ତେଣୁ କବି, ଯେଉଁଠି ପାରିଛନ୍ତି ଧର୍ମବ୍ୟବସାୟୀ ପୁରୋହିତ ସଂପ୍ରଦାୟକୁ ଅତି ମଳିନ ବର୍ଣ୍ଣରେ ଚିତ୍ରିତ କରିବାକୁ ଛାଡ଼ିନାହାନ୍ତି । ରାମ, ସୀତା, ଲକ୍ଷ୍ମଣଙ୍କର ହିନ୍ଦୁତୀର୍ଥ ଗୟାର ଅଭିଜ୍ଞତା ଏ ସମ୍ପର୍କରେ ପରମ ଭୋଗ୍ୟ —

"ତୀର୍ଥେ ପିଣ୍ଡ ଦେଇ ବାହୁଡ଼ିବା ବେଳ ଜାଣି
ବ୍ରାହ୍ମଣେ ଓଗାଳିଲେ ଦକ୍ଷିଣା ମାଗି ପୁଣି ।

---

* ଅଯୋଧ୍ୟାକାଣ୍ଡର ଶୁଆ-ଶାରୀ ଉପାଖ୍ୟାନ ୍ରସଙ୍ଗରେ

ଶ୍ରୀରାମ ବୋଇଲେ ଆମ୍ଭେ ଅଟୁଁ ତପଚାରୀ
ଧନ ଘେନି ନ ଅଇଲୁ ଆମ୍ଭେ ତୀର୍ଥ କରି ।
ବନେ ବୁଲନ୍ତେଣ ଯେ ଦେଖିଲୁଁ ଆସି ଆମ୍ଭେ
କେବଣ କଥାକୁ ହୋ ଓଗାଳୁ ଅଛ ତୁମ୍ଭେ ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ରାଜାର କୁମର
ତୋତେ କିବା ଅପୂର୍ବ ଯେ ଅଟଇ ଭଣ୍ଡାର ।
ତୋହର ଦେଲେ ସକଳ ଧନ ଏଥେ ଅଛି
ନିସତ ପ୍ରକୃତି ତୁ ନ ଧର ରଘୁବଂସି ।
ମିଛେ ଯେ ବୋଲୁଛ ହେ ମୋହର ଧନ ନାହିଁ
ଏ ସ୍ଥାନରେ ମିଥ୍ୟା ତୁ ନ କହ ରଘୁସାଇଁ ।
ଏ ତୋହର ଘରଣୀ ଅଳଙ୍କାରମାନ
କାହିଁଣ ଥୋଇଣ ଅଛୁ କହ ଏହି ଧନ ।
ଆନନ୍ଦ ହୋଇଣ ତୁ ଦକ୍ଷିଣା ଯେବେ ଦେବୁ
ଏ ରତ୍ନମାନ କାହିଁକି ଆନେ ଥୋଇଥିବୁ ।
ଶ୍ରୀରାମ ବୋଇଲେ ସେ ଯୁବତୀଙ୍କ ବିତ୍ତ
ଅପୁରୁଷାର୍ଥ କଥାକୁ ନ ବଳେ ମୋର ଚିତ୍ତ ।
ଏତେ ବୋଲି ଶ୍ରୀରାମ ଯେ ବାଟ ଭାଙ୍ଗି ଗଲେ
ତୀର୍ଥବାସୀ ବ୍ରାହ୍ମଣେ ଯେ ପଛେ ଗୋଡ଼ାଇଲେ ।
ଏଥି, ଲୁହି [illegible]ମାନଙ୍କୁ ଉଛାଡ଼ନ୍ତି
ଶ୍ରୀ [illegible]ନଙ୍କୁ ନୀଳାଦ୍ରିକାନ୍ତ ଧ୍ୟେ ନ ଥିନ୍ତି ।
ବ୍ରାହ୍ମଣଙ୍କୁ କୋପ ନ କରନ୍ତି ରଘୁନାଥ
ବେଗ ବେଗ ହୋଇଣ ଯେ ବାହିଯାନ୍ତି ପଥ ।

× × × ×

ପଞ୍ଚକୋଶ ପରିଯନ୍ତେ ଗୋଡ଼ାଇଣ ଗଲେ
ମୂରୁଛି ନ ପାରି ପୁଣି ସୀତାଙ୍କୁ ଧଇଲେ ।
ହାତରୁ ଗୋଡ଼ରୁ ଅଳଙ୍କାର ଉଚ୍ଛୁଡ଼ନ୍ତି
ଏହି ରୂପେ ବ୍ରାହ୍ମଣେ ଯେ ବିରକ୍ତ କରନ୍ତି ।
ପଣତ ଯେ ଧରିଛନ୍ତି ପୁଣି ଜଣ ଚାରି
ବିକଳେ ମହାସତୀ ରୋଦନ ଉଚ୍ଚେ କରି ।
ରାମ ବୋଲନ୍ତି ବ୍ରାହ୍ମଣେ ଅଟ ଯେ ନିର୍ଦ୍ଦୟା
ଆମ ନିକଟକୁ ଆସ ଜନକତନୟା ।
ଆମ୍ଭଙ୍କୁ କଷ୍ଟ ଦେଲେ ଗୋ ଏ ବିପ୍ରେ ବହୁତ
ଗୋଡ଼ାଇଣ ଅଇଲେ ଗୋ ଏତେ ଦୂର ପଥ ।

ଯୁବତୀଙ୍କ ବିତ୍ତକୁ ଯେ କରିଛନ୍ତି ଆଶ
ଗୋଡ଼ାଇଣ ଅଇଲେଣି ଏହୁ ପଞ୍ଚ କୋଶ ।
ଧାଇଁଯାଇ ବ୍ରାହ୍ମଣେ ଯେ ସୀତାଙ୍କୁ ଧଇଲେ,
ଏହୁ ଅଳଙ୍କାର ଦିଅ ବୋଲିଣ କହିଲେ ।
ଶ୍ରୀରାମ ବୋଇଲେ ଏହୁ କଥା ଅବେଭାର
ପୁରୁଷ ଥାଉଣ ଯେ ସ୍ତିରୀଙ୍କି କିପାଁ ଧର ।
ଛାଡ଼ ଛାଡ଼ ସୀତାଙ୍କୁ ସେ ପାଇବନି ବ୍ୟଥା,
ଯୁବା ସୁକୁମାରୀ ସେ ଅଟଇ ମୋର ସୀତା ।
ଶ୍ରୀରାମର କଥା ଯେ ବ୍ରାହ୍ମଣେ ନ ଶୁଣନ୍ତି
ପଣତ ଧରିଣ ସେ ଯେ ଓଟାରୁ ଅଛନ୍ତି ।
ରଘୁନାଥଙ୍କୁ ଯାଇଣ କୋଳ କଲେ ସୀତା
ଦେଖି ଦାଶରଥି ଯେ ପାଇଲେ ମନେ ଚିନ୍ତା ।
ସୀତାର ପଣନ୍ତ ଉଚ୍ଛୁଡ଼ନ୍ତି କରେ ଧରି
ମଧ୍ୟରୁ କାଟ ଲକ୍ଷ୍ମଣ ବେନି ଖଣ୍ଡ କରି ।
ଶୁଣିଣ ଲକ୍ଷ୍ମଣ ଯେ ଖଡ଼ଗ କରେ ଧରି
ସୀତାଙ୍କ ପଣତ ଯେ ପକାଇଲେ ଚିରି ।
ସୀତାଙ୍କର ଅଙ୍ଗେ ଯେ ରହିଲା ବସ୍ତ୍ର ଅଧ
କୋପେଣ ଲକ୍ଷ୍ମଣ ଯେ ଧଇଲେ ଆୟୁଧ ।
ଶ୍ରୀରାମ ସୀତାଙ୍କୁ ଆଗ ଘେନିକରି ଗଲେ,
ପୁଣି ବ୍ରାହ୍ମଣେ ଯେ ପଛରେ ଗୋଡ଼ାଇ ଅଇଲେ ।
ଲକ୍ଷ୍ମଣ ଯେ ଓଗାଳିଲେ ଧନୁଶସ୍ତ୍ର ଧରି
ତେଣୁ ସେ ବ୍ରାହ୍ମଣେ ଯେ ରହିଲେ ଭୟ କରି ।
ଭଲା ପଳାଇଲା ବୋଲି ଉଚ୍ଚେ ଡାକ ଦ୍ୟନ୍ତି,
ଘେନି ଯାଉଅଛ ଯେ ଯୁବତୀ ରତ୍ନକାନ୍ତି ।
ଏ ଯେ ନାରୀ ଶିରୋମଣି, ତୁମ୍ଭେ ଜଟାଧାରୀ
ଚୋରି କରି ନେଉଅଛ କେହ୍ନେ ପରନାରୀ ।
ଦେଶ କଟକରେ ତୁମ୍ଭେ ରହି ନ ପାରିଲ,
ଏକ ଯୁବତୀକି ଦୁଇ ଗୋଟା ପତି ହେଲ ।
ଲାଜ ସଙ୍କୋଚମାନ କିଛି ତୁରେ ନାହିଁ,
ଯୁବତୀ ଶିରୋମଣିକି ନେଉଛ ଚୋରାଇ ।
ବିଭୂତି ବିଲେପନ, ଶିରରେ ଜଟା ବାନ୍ଧି,
ଧନୁଶସ୍ତ୍ର କରେ ଧରି କକ୍ଷାବସ୍ତ୍ର ପିନ୍ଧି ।
ନିଶ୍ଚୟ ଚୋର ରେ ଅଟ ତୁମ୍ଭେ ଜନ ବେନି
ଭଲା ପଳାଇଗଲ ରେ ଜୀବ ତୁମ୍ଭ ଘେନି ।

ତୁରନ୍ତ ନାଶ କରି ନିଅନ୍ତୁ ଏହି ନାରୀ,
ଶୁଣିଣ ଶ୍ରୀରାମ ଯେ ବୋଇଲେ କୋପ କରି ।
ବ୍ରାହ୍ମଣ ବୋଲିଣ ତୁମ୍ଭେ ମିଛେହେଁ ବୋଲାଅ,
ନୋହିଲେ ତ ଏତେ ବେଳଯାଏ କିପାଁ ଥାଅ ।

× × × ×

ବ୍ରାହ୍ମଣଙ୍କୁ ବୋଇଲେ ରେ ଯେତେ ଅରଜିବ,
ଆରଦିନକୁ ଗଣ୍ଡାଏ ମାଣେହେଁ ନ ଥିବ ।
ଏଡ଼େ ମହାପୁଣ୍ୟ ତୀର୍ଥ ତୁମ୍ଭେ ନାଶ କଲ,
ମୋତେ ପଞ୍ଚବିଂଶ କୋଶ ଗୋଡ଼ାଇ ଅଇଲ ।
ଏତେ ବୋଲିଣ ଶ୍ରୀରାମ ପଥ ବାହିଯାନ୍ତି,
ବ୍ରାହ୍ମଣମାନେ ସେଠାରୁ ବାହୁଡ଼ି ଆସନ୍ତି । *

କେବଳ ଯେ ବ୍ୟଙ୍ଗ-ବିଦ୍ରୂପ କରି କବି ସମାଜ-ସଂସ୍କାର କରିବାକୁ ଚେଷ୍ଟା କରିଥିଲେ ତାହା ନୁହେଁ, ମନେହେଉଛି, ତାଙ୍କ ବର୍ଣ୍ଣିତ ଚିତ୍ରମାନଙ୍କର ଶିକ୍ଷଣୀୟ ମାନବିକତା ଭିତର ଦେଇ ମଧ୍ୟ ସେ ଉଦାରତାର ସମାଜ ଗଢ଼ିବାର କଳ୍ପନା କରିଥିଲେ ।

ସୀତା-ହରଣ ପରେ ପୁରୁଷୋତ୍ତମ ରାମଚନ୍ଦ୍ର ବନେ ବନେ ଉଦ୍‌ଭ୍ରାନ୍ତ ପରି ବୁଲିବାକୁ ଲାଗିଲେ । ତାଙ୍କର ବିରହକାତର ବିଳାପରେ ସମବେଦନ ହୋଇ ଏକ ବକ ପକ୍ଷୀ ତାଙ୍କୁ ସୀତାଙ୍କୁ ରାବଣ ଲଙ୍କାକୁ ନେଇଯିବାର ସମ୍ବାଦ କେବଳ ଦେଲା ନୁହେଁ, ସାନ୍ତ୍ୱନା ମଧ୍ୟ ଦେଲା । ଶ୍ରୀରାମ ତା ଉପରେ ସନ୍ତୁଷ୍ଟ ହୋଇ ବରଦାନ କଲେ ଯେ, ଦୁର୍ଦ୍ଦିନବେଳେ ସେହି ଗଛରେ ରହି ହିଁ ଆହାର ପାଇବ – ସେ କେତେଦିନ ତାକୁ ତା ଘରଣୀ ଖାଦ୍ୟ ଆଣି ଦେବ । ଏ ବରରେ ପୌରୁଷ-ଗର୍ବୀ ବକ ସନ୍ତୁଷ୍ଟ ହେଲାନାହିଁ । ନିମ୍ନ-ଶ୍ରେଣୀର ଏକ ଜୀବ ନାରୀ, ତା'ର ଉଚ୍ଛିଷ୍ଟ ପୁଣି ସେ ଭକ୍ଷଣ କରିବ ? ପୁରୁଷୋତ୍ତମ ରାମଚନ୍ଦ୍ର ବକର ଭାବନା ଅନୁମାନ କରି ଏଇପରି କହିଥିଲେ –

"ଶ୍ରୀରାମ ବୋଇଲେ ତୁ ନ ଜାଣୁ ଖଗପତି,
ସେହି ପୁଣି ଯାହାର ହୋ ଅଟଇ ଯୁବତୀ ।
ଯେହୁ ପୁଣି ଏକକାୟ, ଧରି ମୂର୍ତ୍ତି ବେନି,
ଯୁଗେ ଯୁଗେ ଅବତାର ବଲ୍ଲଭ-ଭାବିନୀ ।
ସ୍ୱାମୀ ଭାରିଯା ଅଟନ୍ତି ଜାଣ ଏକ କାୟ
ତୁହି ପକ୍ଷୀ ବୁଝିଲୁ କି ବେଗଳ ପରାୟ ।"

ଦୀର୍ଘ ବନବାସ ପରେ ଅଯୋଧ୍ୟାରେ ପହଞ୍ଚି ରାମ ବନ୍ଧୁ ଓ ଅନୁଚରମାନଙ୍କୁ ଏକ ରାଜକୀୟ ଭୋଜ୍ୟଦ୍ୱାରା ଆପ୍ୟାୟିତ କରିଥିଲେ । ଦାସଙ୍କ ରାମାୟଣ ଅନୁସାରେ ନିଜେ ସୀତା ଦେବୀ ସେ ଭୋଜ୍ୟ ରାନ୍ଧିଥିଲେ ଓ ନିଜେ ପରଷିଥିଲେ । ବନ୍ଧୁ ଓ ଅନୁଚରବର୍ଗ

* ଇଂରାଜୀ ସଂସ୍କରଣରେ ଗଦ୍ୟରେ ଏହି ବର୍ଣ୍ଣନାରେ ଏକ ସାରାଂଶ ମାତ୍ର ଦିଆଯାଇଛି ।

ଯଥୋଚିତଭାବରେ ଆପ୍ୟାୟିତ ହୋଇସାରିଲା ପରେ, ରାଜାଧିରାଜ ରାମଚନ୍ଦ୍ର କି ଅନୁପମ ଭଦ୍ରତାରେ ଅଭାବ-ଅସୁବିଧା ପାଇଁ ସେମାନଙ୍କଠାରୁ କ୍ଷମା ଚାହିଁଛନ୍ତି – ''ବନ୍ଧୁଗଣ, ବହୁବର୍ଷ ପରେ ଘରକୁ ଫେରିଛି । ଘର ତ ଠିକ୍ ହୋଇନି; ତେଣୁ ସବୁ ସନ୍ତୋଷଜନକ ହୋଇପାରୁନି । କ୍ଷମା ଦେବେ ।''

''କାଲି ଯେ ଅଇଲୁ, ସଂଚ୍ଚା ଆମ୍ଭର ଯେ ନାହିଁ,
ଦୁଃଖ ପାଇଲ ବୋଲି ଯେ, ନ ଭାଳିବ କେହି ।
ଶୁଣି ରାଜାଗଣେ ଲାଜେ ଶିର ନୁଆଁଇଲେ,
ଲଜ୍ଜାଭର ହୋଇ କଥା କେହି ନ କହିଲେ ।''

ବଳରାମ, ଏହିପରି ଅନେକ ସାମାନ୍ୟ ସାମାନ୍ୟ ଘଟଣା ବର୍ଣ୍ଣନା କରି ତାଙ୍କ ମହାକାବ୍ୟର ନାୟକଙ୍କ ଚରିତ୍ରରେ ମହାନ୍ ମାନବିକତାର ସୁନ୍ଦର ସ୍ପର୍ଶ ରଖିଯାଇଛନ୍ତି ।

ଓଡ଼ିଆ ଭାଷାରେ ଥିବା ୪-୫ ଖଣ୍ଡ ମହାଭାରତ ଭିତରେ ସାରଳାଙ୍କ ମହାଭାରତ ସର୍ବାଧିକ ଜନପ୍ରିୟତା ପାଇଲା ପରି, ପ୍ରାୟ ଭିନ୍ନ ଭିନ୍ନ ୩୦ ପ୍ରକାର ରାମାୟଣ ଭିତରେ ବଳରାମଙ୍କ ରାମାୟଣହିଁ ଓଡ଼ିଶାରେ ସର୍ବାଧିକ ଜନପ୍ରିୟ । ଉତ୍ତର-ଭାରତୀୟ ଭାଷାମାନଙ୍କ ଭିତରେ ବଳରାମଙ୍କ ରାମାୟଣ ଆଦ୍ୟତମ ବୋଲି ଧରାଯାଉଛି । ହିନ୍ଦୀର ତୁଳସୀଦାସ ଓ ବଙ୍ଗଳାର କୃତ୍ତିବାସ୍ ବୋଧହୁଏ ବଳରାମଙ୍କର ଅର୍ଦ୍ଧଶତାବ୍ଦୀ ପରେ ଆସିଛନ୍ତି । ଅନ୍ୟ ଭାଷାର ରାମାୟଣ ଅପେକ୍ଷା ବଳରାମଙ୍କର ରାମାୟଣ ହୁଏତ ଅଧିକ ମୌଳିକ ଓ ଆଞ୍ଚଳିକ ସ୍ୱାତନ୍ତ୍ର୍ୟପୂର୍ଣ୍ଣ । ବଙ୍ଗ ସମାଲୋଚକ ବିଜୟଚନ୍ଦ୍ର ମଜୁମଦାର ସାରଳାଙ୍କ ମହାଭାରତ ଓ ବଳରାମଙ୍କ ରାମାୟଣକୁ ତାଙ୍କର 'ଟିପିକାଲ୍ ସିଲେକସନ୍ସ ଫ୍ରମ୍ ଓରିଆ ଲିଟରେଚର୍' ଗ୍ରନ୍ଥର ଭୂମିକାରେ, ଓଡ଼ିଆମାନଙ୍କ ବୌଦ୍ଧିକ ଉନ୍ନତି ଲକ୍ଷ୍ୟରେ ସମ୍ପୂର୍ଣ୍ଣ ଓଡ଼ିଆ ରୀତିରେ ଲେଖା ମୌଳିକ ଗ୍ରନ୍ଥ ବୋଲି ଯେ କହିଛନ୍ତି, ତାହା ଯଥାର୍ଥ । ବଳରାମ ଦାସେ ତାଙ୍କ ରାମାୟଣ ଦାଣ୍ଡୀବୃତ୍ତରେ ରଚନା କରିଯାଇଛନ୍ତି – ସେହି ବୃତ୍ତ, ଯାହା ସାରଳା ଦାସେ ତାଙ୍କ ଆଗରୁ ମହାଭାରତ ରଚନା ପାଇଁ ବ୍ୟବହାର କରିଥିଲେ । ଏହି ବୃତ୍ତର କଥା ଷଷ୍ଠ ଅଧ୍ୟାୟରେ ଆଲୋଚିତ ହୋଇଛି ।

## ଜଗନ୍ନାଥ ଓ ତାଙ୍କର ଓଡ଼ିଆ ଭାଗବତ

ପ୍ରସିଦ୍ଧ ପଞ୍ଚସଖାଙ୍କ ଭିତରେ ଦ୍ୱିତୀୟ ସଖା ଜଗନ୍ନାଥ ଦାସ ଅଧିକାଂଶ ଓଡ଼ିଆ ଲେଖକମାନଙ୍କର ଜାତିଗତ ବୈପରୀତ୍ୟ ଘେନି ଥିଲେ ବ୍ରାହ୍ମଣ ଓ ସଂସ୍କୃତଜ୍ଞ ପଣ୍ଡିତ । ସେ ବଳରାମଙ୍କଠାରୁ ବହୁବର୍ଷ କନିଷ୍ଠ ଓ ଚୈତନ୍ୟଙ୍କର ପ୍ରାୟ ସମବୟସ୍କ ଥିବାର କୁହାଯାଏ । ପୁଣି କୁହାଯାଏ ଯେ, ଚୈତନ୍ୟ ତାଙ୍କୁ ପ୍ରଥମେ ପୁରୀ ଜଗନ୍ନାଥ ମନ୍ଦିରବେଢ଼ା ଭିତରେ ଥିବା କଳ୍ପବଟ ତଳେ ବସି ଦୂରାଗତ ନିରକ୍ଷର ଗ୍ରାମ୍ୟ ଜନତାକୁ ନିଜର ସଦ୍ୟ ରଚିତ ଭାଗବତ ଶୁଣାଉଥିବା ଅବସ୍ଥାରେ ଭେଟିଥିଲେ । ଗ୍ରାମ୍ୟ ଜନତା ପରି, ବଙ୍ଗଦେଶାଗତ ସେହି ତରୁଣ ସନ୍ଥ ମଧ୍ୟ ଶ୍ରୀକୃଷ୍ଣଚରିତ ଏପରି କୋମଳ, ଆନୁପ୍ରାସିକ, ମଧୁସ୍ରାବୀ ଓ

ମଧୁନାଦୀ ପଦାବଳିରେ ଗାଥାୟିତ ହୋଇ ଚାଲିଥିବାର ଦେଖି ମୁଗ୍ଧ ହୋଇଯାଇଥିଲେ । ଉତ୍କଳରେ ସର୍ବଶ୍ରେଷ୍ଠ ଜନପ୍ରିୟ ପୁସ୍ତକ ଜଗନ୍ନାଥଙ୍କର ଭାଗବତଗ୍ରନ୍ଥର ଏହି ସବୁହିଁ ପ୍ରକୃଷ୍ଟ ଗୁଣାବଳି । ଚୈତନ୍ୟ ଜଗନ୍ନାଥ ଦାସଙ୍କ ଭିତରେ ସ୍ୱତଃ ଦେଖିପାରିଲେ ଏକ ଆତ୍ମିକ-ଏକତା, ଯାହା କ୍ରମେ ଜୀବନବ୍ୟାପୀ ପ୍ରଗାଢ଼ ବନ୍ଧୁତାରେ ପରିଣତ ହେଲା । ବଙ୍ଗଭାଷାରେ ଚୈତନ୍ୟଙ୍କ ପରି, ଓଡ଼ିଆଭାଷାରେ ଜଗନ୍ନାଥ ହେଉଛନ୍ତି ପ୍ରଥମ ବ୍ୟକ୍ତି, ଯାହାଙ୍କର ଜୀବନଚରିତ ଲେଖାଯାଇଛି । ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ବଙ୍ଗଳାରେ ଲେଖା ଚୈତନ୍ୟଙ୍କ ଜୀବନୀମାନଙ୍କ ପରି ଓଡ଼ିଆରେ ଲେଖା ଜଗନ୍ନାଥଙ୍କ ଜୀବନୀ ମଧ୍ୟ ଅତିମାତ୍ରାରେ ବିସ୍ମୟସୂଚକ ଓ ଅବିଶ୍ୱାସ୍ୟ ଗାଲଗଳ୍ପରେ ପୂର୍ଣ୍ଣ ହୋଇଯାଇଛି; କିନ୍ତୁ ତା'ରି ଭିତରୁ କେତେକ ଘଟଣା ସାଧାରଣରେ ଗ୍ରହଣୀୟ ନହେବାର କୌଣସି କାରଣ ନାହିଁ ।

**ଜନନୀର ଇଚ୍ଛା ଏକ ଜାତିର ରକ୍ଷାକବଚ –**

ଯେପରି ଜଣାଯାଉଛି, ଜଗନ୍ନାଥ ତାଙ୍କ ପିତା ଓ ଜନନୀଙ୍କଠାରୁହିଁ ନିଜ ଜୀବନର ପବିତ୍ରତା, ଲୋକହିତ ବ୍ରତ ଓ ବେଦ-ପୁରାଣରେ ଶ୍ରଦ୍ଧା ଉତ୍ତରାଧିକାର ଭାବରେ ପାଇଥିଲେ । କୁହାଯାଏ ଯେ, ତାଙ୍କ ପିତା ପୁରାଣ-ପଣ୍ଡା ଥିଲେ ଏବଂ ତାଙ୍କର ଜନନୀ ହିଁ ଆଦ୍ୟ ପ୍ରେରଣା ଦେଇଥିଲେ ସେହି ଗ୍ରନ୍ଥ ଲେଖିବାକୁ, ଯାହା ଫଳରେ ତାଙ୍କର ବରେଣ୍ୟ ସନ୍ତାନ, ଓଡ଼ିଆର ଜାତୀୟଚେତନାରେ ସର୍ବଶ୍ରେଷ୍ଠ ଲେଖକ ଭାବରେ ଓ ପ୍ରତି ଓଡ଼ିଆ ଗୃହରେ ସର୍ବାଧିକ ପରିଚିତ ନାମ ଭାବରେ ଆଜି ଦଣ୍ଡାୟମାନ । କୁହାଯାଏ ଯେ, ତାଙ୍କର ବିଧବା ଓ ନିରକ୍ଷରା ଜନନୀ ବାର୍ଦ୍ଧକ୍ୟରେ ପୁଣ୍ୟ ସଞ୍ଚୟ ଆଶାରେ ଉତ୍ତମ ଭାବରେ କୃଷ୍ଣଚରିତ ଶୁଣିବାକୁ ଇଚ୍ଛା କଲେ । ବରେଣ୍ୟ ପୁତ୍ର ଜନନୀଙ୍କର ଇଚ୍ଛା ପୂରଣାର୍ଥେ ସଂସ୍କୃତ ଭାଗବତକୁ ଅଧ୍ୟାୟ ଅଧ୍ୟାୟ କରି ଅନୁବାଦ କରି ତାଙ୍କୁ ଶୁଣାଇବାକୁ ଲାଗିଲେ । ସେତେବେଳେ ସେହି ନିରକ୍ଷରା ଜନନୀ କ'ଣ କଳ୍ପନା କରିଥିଲେ ଯେ, ତାଙ୍କର ଇଚ୍ଛାରୁ ଏପରି ଏକ ଧର୍ମଗ୍ରନ୍ଥର ଉଦ୍‌ଭବ ହେଲା, ଯାହା ପୁରୁଷ-ପୁରୁଷଧରି ଓଡ଼ିଶା ଓ ଓଡ଼ିଶା ବାହାରେ କୋଟି କୋଟି ଲୋକର ଆତ୍ମାକୁ ବ୍ୟକ୍ତିଗତ ଭାବରେ ମୁଗ୍ଧ-ମନ୍ଥିତ କେବଳ କରିଆସିନାହିଁ, ବହୁ ଶତାବ୍ଦୀଧରି ସେ ଗ୍ରନ୍ଥ ଏକ ଖଣ୍ଡ-ବିଖଣ୍ଡିତ ଜାତିକି ଦେଇପାରିଛି ସେ ଅପୂର୍ବ ଐକ୍ୟବୋଧ ଓ ହୋଇଉଠିଛି ସେ ଜାତିର ସର୍ବଶ୍ରେଷ୍ଠ ରାଜନୈତିକ ଲାଞ୍ଛନା ।

ଓଡ଼ିଶାରେ ଜଗନ୍ନାଥ ଦାସଙ୍କ ଭାଗବତର ପ୍ରଭାବର ଗଭୀରତା ଓ ବ୍ୟାପକତା ସହିତ ତୁଳିତ ହେବାପାଇଁ ସମଗ୍ର ଭାରତୀୟ ସାହିତ୍ୟରେ ଖୁବ୍ ଅଳ୍ପ ପୁସ୍ତକ ଥିବ । 'ଟିପିକାଲ୍ ସିଲେକ୍‌ସନସ୍ ଫ୍ରମ୍ ଓରିଆ ଲିଟରେଚର୍' ମୁଖବନ୍ଧରେ ବଙ୍ଗ-ସମାଲୋଚକ ବିଜୟଚନ୍ଦ୍ର ମଜୁମ୍‌ଦାର ଯଥାର୍ଥରେ କହିଛନ୍ତି –

''ଭାଗବତକୁ ଓଡ଼ିଆରେ ପରିବେଷିତ କରବାଦ୍ୱାରା ଦାସ ନିଜ ଜାତିର ସବୁ ଶ୍ରେଣୀର ଲୋକଙ୍କୁ ନିଜ ମାତୃଭାଷା ଓଡ଼ିଆକୁ ଶ୍ରଦ୍ଧାସହକାରେ ଶିଖିବା ପାଇଁ ଯେ ପ୍ରବର୍ତ୍ତାଇଲେ, ଏହା ବିନା ଦ୍ୱିଧାରେ କୁହାଯାଇପାରେ । ଜଗନ୍ନାଥଙ୍କ ଏହି ଗ୍ରନ୍ଥ ଓଡ଼ିଆ

ଜାତିର ନୈତିକ ଜୀବନକୁ ଗଢ଼ିଆସିଛି ଓ ଏବେ ମଧ୍ୟ ଗଢ଼ିଚାଲିଛି । ଭାଗବତ ହିନ୍ଦୁମାନଙ୍କର ପବିତ୍ରତମ ଗ୍ରନ୍ଥ । ଲୋକେ ଯେତେବେଳେ ଜାଣିଲେ ଯେ, ଏପରି ଗ୍ରନ୍ଥ ଓଡ଼ିଆଭାଷାରେ ପ୍ରାପ୍ତବ୍ୟ ହେଲାଣି ସେମାନେ ଅସାଧାରଣ ଉତ୍ସାହରେ ଲାଗିପଡ଼ିଲେ ଓଡ଼ିଆ ଶିଖିବାକୁ, କେବଳ ଜଗନ୍ନାଥଙ୍କ ଭାଗବତ ପଢ଼ିବାପାଇଁ । କେବଳ ଏହି କାରଣରୁ ବଙ୍ଗଳା ଅପେକ୍ଷା ଉତ୍କଳରେ ସାକ୍ଷରତା ଅଧିକ ବ୍ୟାପକ । ବହୁକାଳ ପୂର୍ବେ ସ୍କୁଲ ଇନିସ୍ପେକ୍ଟର ଶ୍ରୀ ଭୂଦେବ ମୁଖାର୍ଜି ଏହି ବ୍ୟାପାର ସରକାରୀ ରିପୋର୍ଟରେ ଲେଖି ଜଣାଇଥିଲେ – ''× × × ଜଗନ୍ନାଥ ଦାସ ଓଡ଼ିଆ ଜାତିର ନୈତିକ ଉନ୍ନତି ପାଇଁ ଯାହା କରିଯାଇଛନ୍ତି, ତାହା ପ୍ରକାଶ କରିବାପାଇଁ ଉପଯୁକ୍ତ ବିଶ୍ଳେଷଣ ମୁଁ ପାଉନି । ଅନ୍ୟ କୌଣସି ପ୍ରାଚୀନ କବି ସେ ପ୍ରକାର ଜନପ୍ରିୟତା ପାଇପାରି ନାହାନ୍ତି, ଯାହା ପାଇଛନ୍ତି ଜଗନ୍ନାଥ ଦାସ । ଓଡ଼ିଶାରେ ଏପରି କୌଣସି ହିନ୍ଦୁ ଗ୍ରାମ ନାହିଁ, ଯେଉଁଠି ଜଗନ୍ନାଥ ଦାସଙ୍କ ଭାଗବତ ରକ୍ଷିତ ଓ ନିତ୍ୟ ପଠିତ ହେଉନାହିଁ ।''

ଏହି ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ କୁହାଯାଇଛି ଯେ, ଓଡ଼ିଶାର ଗ୍ରାମ୍ୟ ଜୀବନରେ 'ଭାଗବତଘର' ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା ଏପର୍ଯ୍ୟନ୍ତ ଥିଲା ବା ଅଛି, ଏକତ୍ରାବସ୍ଥିତ ଏକ ବହୁମୁଖୀ ଅନୁଷ୍ଠାନ ଗ୍ରାମ୍ୟ ବିଦ୍ୟାଳୟ, ଗ୍ରାମ୍ୟ ସଭାଘର ଓ ଗ୍ରାମ୍ୟ ପୁସ୍ତକାଳୟ । ଓଡ଼ିଶାରେ ଗ୍ରାମ୍ୟ ଜନତାର ପ୍ରାଣକେନ୍ଦ୍ର ଥିଲା ଏହି ଭାଗବତଘର । ଆସାମୀ ସାହିତ୍ୟର ଜଗନ୍ନାଥ ଦାସ, ଶଙ୍କର ଦାସ, ଯେ କି ପୁରୀରେ ବହୁବର୍ଷ କଟାଇଥିଲେ, ବୋଧହୁଏ ଓଡ଼ିଶାର ଭାଗବତ-ଘରସବୁ ଦେଖି, ଆସାମରେ 'ନାମଘର' ଅନୁଷ୍ଠାନ ପ୍ରବର୍ତ୍ତିତ କରିଥିଲେ । ଓଡ଼ିଆ ଜାତିର ଘୋରତମ ଦୁର୍ଦ୍ଦିନରେ ଯେତେବେଳେ ଏହି ଐତିହାସିକ ଜାତି ଚାରିପଟର ପ୍ରଭାବଶାଳୀ ପ୍ରତିବେଶୀମାନଙ୍କ ଅଞ୍ଚଳରେ ଏକ ଏକ ସଂଖ୍ୟାଲଘୁ ଗୋଷ୍ଠୀ ମାତ୍ର ହୋଇ ଛିନ୍ନଭିନ୍ନ ହୋଇ ପଡ଼ିଥାଏ ଓ ସେହି ଭାବରେ ବଡ଼ଭାଇମାନଙ୍କଦ୍ୱାରା ଶୋଷିତ, ଅତ୍ୟାଚାରିତ ଓ ଅବହେଳିତ ହୋଇଚାଲିଥାଏ, ସେତେବେଳେ ଏହି ଏକମାତ୍ର ଭାଗବତ ଗ୍ରନ୍ଥହିଁ ଓଡ଼ିଆ ଜାତୀୟତାର ସ୍ଫୁଲିଙ୍ଗକୁ ଏପରି ବଞ୍ଚାଇରଖିଥିଲା, ଯେପରିକି ବହୁ ଶତାବ୍ଦୀର ଅତ୍ୟାଚାର ଓ ନିର୍ଯାତନା ପରେ ମଧ୍ୟ ଓଡ଼ିଆମାନେ ପୁଣି ଏକ ଭାଷାଭାଷୀ ଜାତିରୂପେ ଏକଶାସନାଧୀନ ହୋଇ ମୁଣ୍ଡ ଟେକି ଠିଆହୋଇପାରିଲେ । ଆଜି ମଧ୍ୟ ରାଜନୈତିକ ଓଡ଼ିଶାର ବାହାରେ ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶର ସହସ୍ର ସହସ୍ର ଗୃହରେ ଏହି ଗ୍ରନ୍ଥ ରକ୍ଷିତ ଓ ପଠିତ ହେବାର ଦେଖାଯିବ । ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଆ ଜାତୀୟତାର ସ୍ପଷ୍ଟତମ ଓ ସାଧାରଣତମ ପ୍ରତୀକ ।

ଅବଶ୍ୟ ସାହିତ୍ୟ-ସମାଲୋଚକର ଦୃଷ୍ଟିରୁ ଦେଖିଲେ, ଜଗନ୍ନାଥଙ୍କୁ ଆମେ ସାରଳା ବା ବଳରାମଙ୍କ ପରି ଏକ ସାହିତ୍ୟିକ 'ସ୍ରଷ୍ଟା' ବୋଲି ଗ୍ରହଣ କରିପାରିବା ନାହିଁ । ଏ ଉତ୍କଳଦେଶରେ ଜଗନ୍ନାଥଙ୍କ ଭାଗବତର ଜନପ୍ରିୟତା ଆମକୁ ସ୍ମରଣ କରାଏ ଇଂରାଜୀ-ଭାଷୀ ଜନତା ଭିତରେ ବାଇବଲର ସେହି ଇଂରାଜୀ ଅନୁବାଦ, ଯାହାକୁ କୁହାଯାଏ, 'ଅଥରାଇଜ୍‌ଡ଼ ଭର୍ସନ୍' । ଏହି ଅନୁବାଦ ଏପରି ବହୁ ସନ୍ଥ-ପଣ୍ଡିତଙ୍କ ସହଯୋଗରେ

କରାହୋଇଥିଲା, ଯେଉଁମାନଙ୍କର କବି ବା ଲେଖକ ଭାବରେ କୌଣସି ହେଲେ ଖ୍ୟାତି ନଥିଲା; କିନ୍ତୁ ବାଇବେଲ୍‌ର ଏହି ଅନୁବାଦ ଅସାଧାରଣ ମାଧୁର୍ଯ୍ୟମୟ ହୋଇଉଠିଛି । ଇଂରାଜୀରେ ତେଣୁ 'ବାଇବିଲୀୟ ବାକ୍‌ରୀତି' ବୋଲି ଏକ ଶୈଳୀର କଥା କୁହାଯାଏ; ଯାହା ସହଜରେ ବର୍ଣ୍ଣନୀୟ ନୁହେଁ । ଜଗନ୍ନାଥଙ୍କ ଭାଗବତ ଅନୁବାଦରେ ଆମେ ଏହି 'ବାଇବିଲୀୟ ବାକ୍‌ରୀତି'ହିଁ ଦେଖିବାକୁ ପାଉ । ଦାସଙ୍କ ଏହି ଓଡ଼ିଆ ଭାଗବତ ଏକ ଆନୁବାଦିକ ବିସ୍ମୟ । ଇଂରାଜୀ ବାଇବଲର 'ଅଥରାଇଜ୍‌ଡ଼ ଭର୍ସନ୍' ପରି, ଜଗନ୍ନାଥଙ୍କ ଭାଗବତର ଅନୁବାଦ ମଧ୍ୟ ଯଥାର୍ଥ ନୁହେଁ, ସୁନିର୍ଦ୍ଦିଷ୍ଟ ନୁହେଁ ଓ ସୁସ୍ପଷ୍ଟ ମଧ୍ୟ ନୁହେଁ; କିନ୍ତୁ ଇଂରାଜୀ ବାଇବଲ ପରି ଏଥିରେ ମଧ୍ୟ ଆମେ ପାଉଁ ସେହି ଏକ ପୁଣ୍ୟ-ଗନ୍ଧ, ସେହି ସୁକୁମାର ଗତିଶୀଳତା, ସେହି ସହଜାତ ଗାମ୍ଭୀର୍ଯ୍ୟ ଓ ନୈତିକତା ଓ ଆଧ୍ୟାତ୍ମିକତାର ସେହି ସମୁଚ୍ଚ ବାୟୁସ୍ତର, ଯାହା ଶ୍ରୋତା ଓ ପାଠକର ହୃଦୟକୁ ଅବାଧରେ ପ୍ରଭାବିତ କରିବସେ । ସମଗ୍ର ଓଡ଼ିଆ ସାହିତ୍ୟରେ ଏକମାତ୍ର ଏଇ ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ଭାଗବତରେହିଁ ଆମେ ସେହି ରହସ୍ୟମୟ, 'ବାଇବିଲିକ୍ ବାକ୍‌ସୃଷ୍ଟି' ଦେଖିବାକୁ ପାଉ । ପ୍ରତ୍ନ ଓ ଶିଷ୍ଟ ସଂସ୍କୃତ ପଦାବଳି ସହିତ କଥିତ ଓଡ଼ିଆର ପଦ ଓ ବାକ୍ୟାଂଶ ସବୁ ମିଶାଇ, ଅଥଚ କେବଳ ଯାହା ଶାଳୀନ ଓ ଶ୍ରୁତିସୁଖକର କେବଳ ତାହାକୁହିଁ ବ୍ୟବହାର କରି, ପାଣ୍ଡିତିକ ଯଥାର୍ଥତା ଅପେକ୍ଷା ଭାଷାରେ କଳାଗତ ସୁଷମା ପ୍ରତି ସ୍ୱତଃ ଦୃଷ୍ଟି ରଖି ଏବଂ ରଚନାର ସମଗ୍ରତାରେ ବିକୀର୍ଣ୍ଣ କରି ଏପରି ଏକ ସୂକ୍ଷ୍ମ ରହସ୍ୟମୟ ମାଦକତା, ଯାହା ଅର୍ଥପ୍ରତୀତି ନହେଲେ ମଧ୍ୟ ଶ୍ରୋତା ଓ ପାଠକକୁ ଆକର୍ଷିତ କରିରଖୁଛି । ଜଗନ୍ନାଥ ଦାସ ଏସବୁର ମିଶ୍ରଣରେ ଏପରି ଏକ ରଚନାଶୈଳୀ ଛାଡ଼ିଯାଇଛନ୍ତି, ଯାହା ଏପର୍ଯ୍ୟନ୍ତ ସମଗ୍ର ଓଡ଼ିଆଭାଷାରେ କାହାଦ୍ୱାରା ସିଦ୍ଧିର ସହିତ ଅନୁକାରିତ ହୋଇପାରିଛି ବୋଲି ମଧ୍ୟ କୁହାଯାଇପାରିବନାହିଁ । ଜଗନ୍ନାଥଙ୍କ ଭାଗବତରେ ବ୍ୟବହୃତ ଓଡ଼ିଆଭାଷାର ଶୁଦ୍ଧତା, ଶାଳୀନତା, ସୌନ୍ଦର୍ଯ୍ୟ ଓ ଗୁରୁଗମ୍ଭୀରତା ଅନ୍ୟତ୍ର କେଉଁଠି ହେଲେ ସମ୍ଭବ ହୋଇପାରିନାହିଁ । କେତୋଟି ମାତ୍ର ଦୃଷ୍ଟାନ୍ତ ଏଠାରେ ଦେଇରଖୁଛି । * ଭାଗବତ ଏକ ଅନୁବାଦ ଗ୍ରନ୍ଥ ହେଲେହେଁ, ଏହାର ଅସାଧାରଣ କାବ୍ୟିକ ସୌନ୍ଦର୍ଯ୍ୟ ଏଇ କେତୋଟି ଦୃଷ୍ଟାନ୍ତରୁ ପାଠକମାନଙ୍କ ନିକଟରେ ସ୍ପଷ୍ଟ ହେବ ବୋଲି ଆଶା ।

ଦଶମ ସ୍କନ୍ଧ ଦ୍ୱାରିକାଲୀଳାରୁ, ଏକ ବାଲ୍ୟବନ୍ଧୁକୁ ପାଇ ଶ୍ରୀକୃଷ୍ଣଙ୍କ ନିଜ ମୁଖରେ ବିଦ୍ୟାଳୟଜୀବନର ଏକ ଘଟଣାର ବର୍ଣ୍ଣନା ଏହିପରି –

''ହେ ବିପ୍ର ଶୁଣ ମିତ୍ର ମୋର । ମନେ କି ଅଛଇ ତୁମ୍ଭର ।
ଆମ୍ଭେ ଯେ ଗୁରୁଘରେ ରହି । ଗୁରୁକାମିନୀ ଆଜ୍ଞା ପାଇ ।
ଗୁରୁଙ୍କ ଅନ୍ନ ସିଦ୍ଧ ଅର୍ଥେ । ଅରଣ୍ୟେ ପଶିଲୁ ସମସ୍ତେ ।

---

* ଅନୁବାଦର ଅନୁବାଦ ହେବ ବୋଲି ଇଂରାଜୀ ଗ୍ରନ୍ଥରେ ଜଗନ୍ନାଥଙ୍କ ଭାଗବତର କୌଣସି ନମୁନା ଦିଆଯାଇନଥିଲା । ଓଡ଼ିଆ ସଂସ୍କରଣରେ ସେ ଆଶଙ୍କା ନଥିବାରୁ ପାଠକମାନଙ୍କ ପାଇଁ ଓ ଲେଖକର ନିଜର ଆନନ୍ଦରେ, ଦୃଷ୍ଟାନ୍ତ କେତୋଟି ଦିଆଗଲା ।

ଶୁଷ୍କ ଇନ୍ଧନ ଆଣିବାରେ । ମିଳିଲୁଁ ଘୋର ଅରଣ୍ୟରେ ।
ଏମନ୍ତ ଅନ୍ୟ ଋତୁକାଳେ । ଗଗନେ ମିଳି ମେଘମାଳେ ।
ଦିବସେ କରି ଅନ୍ଧକାର । ବାତ ବରଷା ମହାଘୋର ।
ନିର୍ଘୃଣ ବଜ୍ରାଘାତ ତ୍ରାସ । ବନେ ନ ଦିଶେ ଦଶଦିଶ ।
ତକ୍ଷଣେ ରବି ଅସ୍ତ ହେଲା । ଘୋର ତିମିର ପ୍ରକାଶିଲା ।
ଶୁଖିଲା କାଠ ଆଣିବାରେ । ଆମେ ଗମିଲୁଁ ବନ ଘୋରେ ।
ଜଳେ ପୂରିଲା ବନଭୂଇଁ । ସ୍ଥଳ ଗଭୀର ନ ଦିଶଇ ।
ଜଳ ପବନ ଅଙ୍ଗେ ବାଜି । ଆମ୍ଭେ ବୁଲିଲୁ ସ୍ଥାନ ଖୋଜି ।
ଏକ ଆରକେ ହସ୍ତ ଧରି । ଦିଗ ନ ପାଇ ଅନୁସରି ।
କାତରେ ଉଠି ବୃକ୍ଷ ଡାଳେ । ରାତ୍ରେ ବଞ୍ଚିଲୁଁ ଏକମେଳେ ।
ଏମନ୍ତେ ରଜନୀ ପାହିଲା । ରବି କିରଣ ପ୍ରକାଶିଲା ।
ଗୁରୁ, କାମିନୀ ସଙ୍ଗମେଳେ । ଆମ୍ଭକୁ ଖୋଜି ପ୍ରାତଃକାଳେ ।
ଡାକନ୍ତି ନାମ ମୁଖେ ଧରି । ଖୋଜନ୍ତି ଘୋର ବନେ ହେରି ।
ଶବଦ ଶୁଣି ଘୋରବନେ । ଆମ୍ଭେ ମିଳିଲୁ ସାବଧାନେ ।''

(ଦ୍ୱାରିକାଲୀଳା, ୮୬ ଅଧ୍ୟାୟ)

ଭକ୍ତିପ୍ରଧାନ ଏହି ଗ୍ରନ୍ଥରେ ଯାଦବ ବଂଶଧ୍ୱଂସରୂପୀ ବୀଭତ୍ସ ଘଟଣା ମଧ୍ୟ ଜଗନ୍ନାଥଙ୍କ ଲେଖନୀରେ ସମୁଚିତ ଓଜସ୍ୱୀତା ଓ ଗାମ୍ଭୀର୍ଯ୍ୟ ସହିତ ବର୍ଣ୍ଣିତ ହୋଇଛି ।

''ଦଇବ ଯୋଗେ ହତ ଜ୍ଞାନ । ଯାଦବେ କଲେ ମଦ୍ୟପାନ ।
କୃଷ୍ଣ ମାୟାରେ ବିମୋହିତ । ହୋଇଲେ ସର୍ବେ ମହାମତ୍ତ ।
ଫଳିଲା ବ୍ରହ୍ମଶାପ ଫଳ । ଅଦ୍ଭୁତେ ଉଠିଲା କନ୍ଦଳ ।
ବେଣୁ ଘର୍ଷଣେ ଅଗ୍ନି ଯେହ୍ନେ । ତକ୍ଷଣେ ଉଠେ ଘୋର ସ୍ୱନେ ।
ଶୂନ୍ୟେ ପଡ଼ିଲା ଥାଟେ ହୁରି । ଯାଦବେ କରେ ଶସ୍ତ୍ର ଧରି ।
ଗଦା, ମୁଦ୍‌ଗର, ଅସିବର । ଧନୁକ, ଭୂଷଣ୍ଡ, ତୋମର ।
ଏମନ୍ତେ ନାନା ଅସ୍ତ୍ର ଧରି । ଧାଇଁଲେ ଘୋର ନାଦ କରି ।
ଡାକନ୍ତି ଅତି ଭୟଙ୍କରେ । ଘୋର ସମର ନଦୀ ତୀରେ ।
ରଥେ କେ ଯୁଝେ ରଣମଧ୍ୟେ । କେ ଘୋରୁ ମହିଷର ସ୍କନ୍ଧେ ।
ଖର, ଉଷ୍ଟ୍ରର ସ୍କନ୍ଧେ ବସି । କେ ଯୁଝେ ଘୋର ରଣେ ପଶି ।
ମୂଷଳ, ମୁଦ୍‌ଗର ପ୍ରହାରେ । ରଜନୀ ଘୋର ଅନ୍ଧକାରେ ।
ଅଦ୍ଭୁତ ମୂଷଳ ସମରେ । ମୁଖେ ନ ଦିଶେ ଅନ୍ଧକାରେ ।
ସ୍ୱଭାବେ ମହାବୀରଗଣ । ରୋଷେ କରନ୍ତି ମହାରଣ ।

× × × × ×

ରୋଷେ ଯୁଝନ୍ତି ପିତା ପୁତ୍ରେ । ଦୁର୍ମଦ ଅନ୍ଧ ମିତ୍ର ମିତ୍ରେ ।

ସୋଦର ସୋଦରେ ନ ଚାହିଁ । କୋପେ ଯୁଝନ୍ତି ବେନି ଭାଇ ।
ମାତୁଳ ଭଗ୍ନୀର କୁମର । ଏମନ୍ତେ ଜ୍ଞାତି ସହୋଦର ।
ଲଜ୍ଜା ପୀରତି ତେଜି ଦୂରେ । ଯୁଝନ୍ତି ଘୋର ଅନ୍ଧକାରେ ।
ଦୁର୍ଗମ ପ୍ରହାରେ ପ୍ରଚଣ୍ଡେ । ଶସ୍ତ୍ରେ ଭାଜିଲେ ଖଣ୍ଡେ ଖଣ୍ଡେ ।
ଜନ୍ଧୁ ତୁଟିଲା ଧନୁଶର । ଗଦା ଖଡ଼ଗ ହେଲା ଚୂର ।
ଅରୁଣ ପ୍ରକାଶ ଗଗନେ । ମିଳିଲେ ଏରକାର ବନେ ।
କରେ ଧରନ୍ତି ମୁଷ୍ଟି ମୁଷ୍ଟି । ପ୍ରହାରେ ଛିଡ଼େ କୋଟି କୋଟି ।
ଏରକା ବନେ ଘୋର ରଣ । କରନ୍ତି ମିଳି ବୀରଗଣ ।''

(ଏକାଦଶ ସ୍କନ୍ଧ, ୩୧ ଅଧ୍ୟାୟ)

ଉତ୍କଳ ଦେଶର ଜନତା ମଧ୍ୟରେ ଜଗନ୍ନାଥଙ୍କ ଭାଗବତର ପଙ୍କ୍ତି ସବୁ କଥା-ପ୍ରସଙ୍ଗରେ ଯେତେ ଉଦ୍ଧୃତ ହୋଇଥାଏ, ସେପରି ଅନ୍ୟ କୌଣସି ଓଡ଼ିଆ ପୁସ୍ତକରୁ ହୋ ।ନଥାଏ । ପରେ ଚୈତନ୍ୟ-ପ୍ରଚାରିତ ରାଧା-କୃଷ୍ଣ ଧର୍ମ ଓଡ଼ିଶାକୁ ପରିପ୍ଲାବିତ କଲା ଓ ଓଡ଼ିଶୀ ସମାଜର ଦୃଢ଼ ନୈତିକ ଚରିତ୍ରକୁ ଦୁର୍ବଳ ଓ ବିପଥଗାମୀ କରାଇବାରେ ଏକ ଶାଶ୍ୱତ ଭୂମିକା ଗ୍ରହଣ କଲା । ଯଦି ଆଜି ଓଡ଼ିଆ ଜନତା ଭିତରେ ନୈତିକ ସ୍ୱାସ୍ଥ୍ୟର କିଛି ମୂଳ-ପଉନ ଅଛି, ତେବେ ତାହାପାଇଁ ଆମେ କୃତଜ୍ଞ ରହିବା ଜଗନ୍ନାଥ ଦାସଙ୍କ ଏହି ଭାଗବତ ପାଇଁ । ଏହା ମୂଳ ସଂସ୍କୃତ ଗ୍ରନ୍ଥର ଆକ୍ଷରିକ ଅନୁବାଦ ନୁହେଁ । ବରେଣ୍ୟ ଅନୁବାଦକ ଜାଣି ଜାଣି ବୋଧହୁଏ, ନିରକ୍ଷର ଓଡ଼ିଆ ଜନତା ନିକଟରେ ଗ୍ରହଣୀୟ ହେବା ଲକ୍ଷ୍ୟରେ ମୂଳ ଗ୍ରନ୍ଥକୁ ଭାଷାନ୍ତରିତ କରିଚାଲିଛନ୍ତି । ଡକ୍ଟର ଦୁର୍ଗବଲ୍ଲଭ ମହାନ୍ତିଙ୍କ ମତରେ – ''ଜଗନ୍ନାଥଙ୍କ ଭାଗବତ ଅନେକାଂଶରେ ମୂଳ ଭାଗବତଠାରୁ ଅଧିକ ମୂଲ୍ୟବାନ୍, କାରଣ ଏଥିରେ ମୂଳର ବହୁ ଗଳ୍ପ ପରିବର୍ତ୍ତରେ, ଅନୁବାଦକ, ବିଷ୍ଣୁ, ପଦ୍ମ ଓ ବ୍ରହ୍ମବୈବର୍ତ୍ତ ପୁରାଣାଦି ବୈଷ୍ଣବ ଗ୍ରନ୍ଥମାନଙ୍କର ଉତ୍ତମତର ବହୁ ଚଳ୍ପ ପୂରାଇ ଏହାକୁ ଅଧିକ ଶ୍ରୀସଂପନ୍ନ କରିପାରିଛନ୍ତି । (ଶ୍ରୀ ମହାନ୍ତିଙ୍କ ଅପ୍ରକାଶିତ ନୋଟ୍‌ରୁ) ଓଡ଼ିଆରେ ଭାଗବତର ସଠିକ ଅନୁବାଦର ଅଭାବ ନାହିଁ; କିନ୍ତୁ ଓଡ଼ିଆ ଜନତା ସେସବୁ ସଠିକ ଅନୁବାଦ ଅପେକ୍ଷା ଜଗନ୍ନାଥଙ୍କ ତ୍ରୁଟିପୂର୍ଣ୍ଣ ଗ୍ରନ୍ଥକୁହିଁ ଆଦର କରିଆସୁଛନ୍ତି; କାରଣ ସେମାନେ ପାଉଛନ୍ତି ଏକ ମୌଳିକ ମନର ଓ ଏକ ସାଧୁ, ନିଷ୍ପାପ, ନିର୍ମଳ ବ୍ୟକ୍ତିତ୍ୱର ଓତପ୍ରୋତ ସ୍ପର୍ଶ । ଏହି ଗ୍ରନ୍ଥର ଲେଖାସରିଲାବେଳକୁ ଓଡ଼ିଶାରେ ଚୈତନ୍ୟଙ୍କ ଆବିର୍ଭାବ ଓ ତଜ୍ଜନିତ ଏ ଦେଶରେ କୃଷ୍ଣାରାଧନାର ଅଭୂତପୂର୍ବ ପ୍ରସାର, ଏହି ଗ୍ରନ୍ଥ ପ୍ରତି ଏକ ସୌଭାଗ୍ୟ କୁହାଯିବ । ଚୈତନ୍ୟ-ସୃଷ୍ଟ ଜାତୀୟ ଉନ୍ମାଦନା ଓଡ଼ିଆରେ ସଦ୍ୟ-ଲିଖିତ ଏହି କୃଷ୍ଣଚରିତର ପ୍ରଚାରକୁ ଆପେ ଆପେ ହୁଏତ ସାହାଯ୍ୟ କଲା । ବିଶ୍ୱ-ସାହିତ୍ୟର ଇତିହାସରେ ଲେଖା, ଲେଖକ, ଅନୁକୂଳ କାଳ ଓ ପରିସ୍ଥିତିର ଏ ପ୍ରକାର ସମାହାର କ୍ୱଚିତ୍ ଘଟିଥାଏ, ଯେପରି ଘଟିଛି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ଭାଗ୍ୟରେ ।

**ଜଗନ୍ନାଥଙ୍କ ତାତ୍ତ୍ୱିକ ରଚନାବଳି –**

ଭାଗବତର ଅନୁପମ ଏହି ଅନୁବାଦଟିକୁ ଛାଡ଼ିଦେଲେ, ଜଗନ୍ନାଥଙ୍କ ଅନ୍ୟ କୌଣସି ଗ୍ରନ୍ଥ 'ସାହିତ୍ୟ' ଭାବରେ ବିଚାରଣୀୟ ନୁହେଁ । ମାର୍କଣ୍ଡ ଦାସଙ୍କର ସୂକ୍ଷ୍ମ, କୋମଳ କେଶବ-କୋଇଲିଟିର ଦାସେ ତଥାକଥିତ ଆଧ୍ୟାତ୍ମିକ ତାତ୍ପର୍ଯ୍ୟ କହି 'ଅର୍ଥ-କୋଇଲି' ନାମରେ ଶୁଷ୍କ ଅସମ୍ଭବ ହଯବରଲ ଯେ କାହିଁକି ସୃଷ୍ଟି କରିବାକୁ ଗଲେ, ବୁଝିହେଉନି । ସମସାମୟିକ କାଳରେ ରହସ୍ୟମୟ ହ୍ଲୀଂ-କ୍ଲିଂ ଆଦିର ଯେଉଁ ବ୍ୟାପକ ଚର୍ଚ୍ଚା ଓଡ଼ିଶୀ ସମାଜରେ ଦେଖାଦେଇଥିଲା; ମନେହୁଏ ଏହା ତାହାରି ପରିଣତି । ତାଙ୍କର ସମଶ୍ରେଣୀର ଅନ୍ୟ ପୁସ୍ତକ 'ତୁଳାଭିଣା'ରେ ମଧ୍ୟ ଦାସେ ଠିକ୍ ଏହିପରି ଅବୋଧ, ଅସଙ୍ଗତ, ଅନନ୍ୱିତ ଗୂଢ଼ାଏ ଅନର୍ଥକତା ପ୍ରଚାର କରିଛନ୍ତି । ଉଦାହରଣସ୍ୱରୂପ –

"ମଥୁରା ଯେ ମହାଶୂନ୍ୟ । ସେ ଜ୍ୟୋତିରୂପରୁ ଠୂଳ ହେଲା । ଠୂଳରୁ ଅର୍ଦ୍ଧମାତ୍ରା ହେଲା । ବିନ୍ଦୁ ଯେ ବସୁଦେବ । ସେ ଅର୍ଦ୍ଧମାତ୍ରା ଯେ ଦେବକୀ । ସେହି ଅର୍ଦ୍ଧମାତ୍ରାରୁ କ୍ଲୀଂ ଯେ କୃଷ୍ଣ ଜନ୍ମିଲେ । କଳା, ଶୁକ୍ଳ ଦୁଇ ରୂପ 'ରାମ' ଏ ଶବ୍ଦ କଲା । ମାତା ପଦରୁ ଦେହ ରଚିଲା । ଏ ଦୁଇ ଅକ୍ଷରଟି ରାଧା, କୃଷ୍ଣ । ମହାଶୂନ୍ୟ ସେଠାରୁ ଆସି ଗୋପପୁରେ ରହିଲା । ଗୋପପୁର ଦେହକୁ ବୋଲି ଏହି ଦେହରେ ଲୀଳା କରୁଅଛନ୍ତି ।" (ତୁଳାଭିଣା; ନବମ ଅଧ୍ୟାୟ)

ମୁଁ ଆଗରୁ କହିରଖିଛି ଯେ, ପଞ୍ଚସଖା ଛାଡ଼ିଯାଇଥିବା ରଚନାର ଅଧିକାଂଶ 'ସାହିତ୍ୟ'-ପଦବାଚ୍ୟ ନୁହେଁ ଓ ସାହିତ୍ୟ ଭାବରେ ବିଚାରିତ ହେବାର ନୁହେଁ । ସେ ମତ ମୋର ଏବେ ବି ଅପରିବର୍ତ୍ତିତ । ପଞ୍ଚସଖାଗଣ, ବିଶେଷକରି ମୁଖ୍ୟତମ ସଖା ଜଗନ୍ନାଥ ଦାସେ, ଜାତୀୟ ଭାଷାରେ ଜାତିର ଚିରାଚରିତ ଅଭିଜ୍ଞତାମାନ ଦେଇ ଜାତିର ଅନ୍ତଃସ୍ଥଳକୁ ପ୍ରବେଶ କରିବାର ଅଭିନନ୍ଦନୀୟ ପ୍ରଯତ୍ନ କରି ଏ ଜାତିର ଅଶେଷ କଲ୍ୟାଣ କରିଯାଇଛନ୍ତି । ଏ ହେଲା ତାଙ୍କର ଉଭୟ ସାହିତ୍ୟିକ ଓ ଜନକଲ୍ୟାଣକାରୀ ବିଭବ; କିନ୍ତୁ ସେମାନଙ୍କର ବୁଦ୍ଧିର ଆଉ ଏକ ବିଭାଗରେ ଗଢ଼ିଉଠିଥିଲା ଏକାନ୍ତ ଅନିର୍ଦ୍ଦିଷ୍ଟ, ଅସ୍ପଷ୍ଟ, ଅସଙ୍ଗତ, ରହସ୍ୟମୟ, କାଳ୍ପନିକ ଓ ଆଧିଭୌତିକ ତତ୍ତ୍ୱସବୁ, ଯାହା ମଧ୍ୟ ଉତ୍କଳୀୟ ଜନ-ଚେତନାରେ ତଦନୁସାରୀ ଅପ୍ରଶଂସ୍ୟ ଛାପସବୁ ଛାଡ଼ିଯାଇଛନ୍ତି । ତାହା ହେଉଛି ତଥାକଥିତ ନାଡ଼ୀ-ଗଣ୍ଠି-ଚକ୍ର-ବିନ୍ଦୁ-ନାଦମୟ ଶରୀରଭେଦ ।

କୁହାଯାଏ ଯେ, ଜଗନ୍ନାଥ ଦାସେ ବିବାହ କରିନଥିଲେ ଓ ଯୋଗାଭ୍ୟାସରେହିଁ ଜୀବନର ଅଧିକାଂଶ ସମୟ କାଟିଥିଲେ । ପୁରୀ ବେଳାର ଏକ ନିର୍ଜନ ଅଂଶରେ ନିଜର ତପ-ଧ୍ୟାନ ପାଇଁ ସେ ଯେଉଁ ଛୋଟ କୁଟୀରଟି ନିର୍ମାଣ କରିଥିଲେ ତାହା ନିକଟରେ ଆକସ୍ମିକ ଭାବରେ ଆବିଷ୍କୃତ ହୋଇଛି ବୋଲି ଧରାଯାଉଛି । ଜଗନ୍ନାଥଙ୍କ ନାମରେ ପୁରୀରେ ଏକ ବିଖ୍ୟାତ ମଠ ମଧ୍ୟ ଅଛି । ଚୈତନ୍ୟ ଜଗନ୍ନାଥଙ୍କୁ ଶ୍ରଦ୍ଧାରେ 'ଅତିବଡ଼' କହିଥିବାରୁ, ଜଗନ୍ନାଥଙ୍କ ସମ୍ପ୍ରଦାୟ ନିଜକୁ 'ଅତିବଡ଼ି' ସମ୍ପ୍ରଦାୟ ବୋଲି ପରିଚୟ ଦିଅନ୍ତି ଓ ଜଗନ୍ନାଥଙ୍କ ମଠ ସେହି ଅତିବଡ଼ି ସଂପ୍ରଦାୟର କେନ୍ଦ୍ର । ସେସବୁ ଯାହାହେଉ, ଦାସେ କିନ୍ତୁ ନିଜ ଭାଗବତ ଦେଇହିଁ ଏ ଦେଶରେ

ନିଜର ଅମ୍ଳାନ ଶାଶ୍ୱତ ଓ ଚିରପ୍ଲାବନ ସ୍ମୃତିମନ୍ଦିର ଛାଡ଼ିଯାଇଛନ୍ତି । ଓଡ଼ିଆ ବାଇବେଲ୍‌ର ଏହି ବରେଣ୍ୟ ସ୍ରଷ୍ଟା ଯେ ଜଣେ ଉଚ୍ଚକୋଟୀର ପ୍ରାକୃତ ଜାତୀୟ କବି ଓ ଜନତାର କବି, ଏଥିରେ ଦ୍ୱିମତ ନଥାଇପାରେ । ଭାରତରେ ସେ ତୁଳନୀୟ କେବଳ ହିନ୍ଦୀ ରାମଚରିତମାନସର କବି ତୁଳସୀ ଦାସ ଓ ତାମିଲ କାବ୍ୟ କୁରାଲ୍‌ର କବି ତିରୁଭାଲ୍ଲୁଭାରଙ୍କ ସହିତ ।

**ଅବଶିଷ୍ଟ ତିନି ସଖା –**

ପଞ୍ଚସଖାର ବାକି ତିନିଜଣଙ୍କ ମଧ୍ୟରୁ ଅନନ୍ତ ଓ ଯଶୋବନ୍ତ ଦାସ କେବଳ ମହତ୍ ଜନର ସଖ୍ୟଯୋଗୁହିଁ ବିଖ୍ୟାତ । ଏମାନଙ୍କର ବିଚାରଣୀୟ ସାହିତ୍ୟ-ସୃଷ୍ଟି ସେପରି କିଛି ନାହିଁ । ସେମାନେ ଯେଉଁ ରଚନା ଛାଡ଼ିଯାଇଛନ୍ତି, ସେସବୁ ସେଇ ଯୋଗ-ତନ୍ତ୍ରର ହଯବରଲ ବା ଭକ୍ତିର ଅଲୌକିକ ଅବିଶ୍ୱାସ୍ୟ ମହିମା । ଯଶୋବନ୍ତଙ୍କ ଗୋବିନ୍ଦଚନ୍ଦ୍ର ଗାଥା ନାଥ-ଯୋଗୀମାନେ ଓଡ଼ିଶାର ଗ୍ରାମେ, ନଗରେ ଭିକ୍ଷା କଲାବେଳେ ଗାଇଥାନ୍ତି । ଏହା ବଙ୍ଗଦେଶାଗତ ଏକ ଗଳ୍ପ, ଯେଉଁଥିରେ ଜଣେ ରାଣୀ ତାଙ୍କ ପୁତ୍ର ଯୁବରାଜକୁ ରାଜ୍ୟ, ଘର, ପତ୍ନୀ ଛାଡ଼ି ସନ୍ୟାସ ଅବଲମ୍ବନ ପାଇଁ ପ୍ରବର୍ତ୍ତାଇଛନ୍ତି । ଯୁବରାଜ ଗୋବିନ୍ଦଚନ୍ଦ୍ର (ବଙ୍ଗଳାରେ ଗୋପୀଚନ୍ଦ୍ର ?) ରାଜସିଂହାସନ ଛାଡ଼ି ହାଡ଼ିପା ନାମକ ଅସ୍ପୃଶ୍ୟ ଜାତିର ଏକ ଯୋଗୀର ଶିଷ୍ୟତ୍ୱରେ ଧର୍ମସାଧନା କରିଛନ୍ତି । ପଞ୍ଚସଖାଙ୍କ ବୈରାଗ୍ୟାନୁକୂଳ ବାତାବରଣରେ ଏ ପ୍ରକାର ଗଳ୍ପ ଅଭିନନ୍ଦିତ ହେବା ଉଚିତ ଏବଂ ହୁଏତ ଜନସମାଜରେ ଏହାର ପ୍ରଚାର ଲକ୍ଷ୍ୟରେ ତାଙ୍କ ଭିତରୁ ଜଣେ ସେ ଦାୟିତ୍ୱ ନେଇଥିଲେ । ଯଶୋବନ୍ତ ସେ ଦାୟିତ୍ୱ ଉତ୍ତମ ଭାବରେ ତୁଲେଇପାରିଛନ୍ତି । ଏହା ଆଜି ମଧ୍ୟ ନାଥ-ଗାୟକମାନଙ୍କର ପ୍ରଧାନ ସମ୍ବଳ ଓ ଏହା ଗୀତହେଲାବେଳେ ପ୍ରକୃତରେ ଏକ ବିଷାଦମୟ ବୈରାଗ୍ୟଭାବ ସୃଷ୍ଟି କରିଥାଏ ।

ଅନନ୍ତ, ଯଶୋବନ୍ତ, ତୃତୀୟ ଅଚ୍ୟୁତାନନ୍ଦ ଏହି ତିନି ସଖା ଆଉ ଏକ କ୍ଷେତ୍ରରେ ମଧ୍ୟ ଖ୍ୟାତି ଅର୍ଜନ କରିଛନ୍ତି । 'ମାଳିକା' ନାମକ ଭବିଷ୍ୟତ୍-ଦର୍ଶନସବୁ ଏ ପ୍ରତ୍ୟେକଙ୍କ ନାମରେ ପ୍ରଚାରିତ । ସେଗୁଡ଼ିକ ଏପରି ଅନିର୍ଦ୍ଦିଷ୍ଟ, ଅସ୍ପଷ୍ଟ ଓ ସାଧାରଣ ଯେ, ଯେକୌଣସି ଲୋକ ସେ ପ୍ରକାର ଭବିଷ୍ୟତ୍-ବାଣୀସବୁ କରିପାରେ । ସେଗୁଡ଼ିକ କେବଳ ବିଶୃଙ୍ଖଳ, ଅସ୍ପଷ୍ଟ କଳ୍ପନା ଏବଂ ହୁଏତ ଏହି ପଞ୍ଚସଖାମାନଙ୍କଦ୍ୱାରା ଲିଖିତ ହୋଇଥାଉ ବା ପରେ ସେମାନଙ୍କ ଭକ୍ତମାନଙ୍କ ଦ୍ୱାରା ଲେଖାହୋଇ ସେମାନଙ୍କ ନାମରେ ଛାପା ହୋଇ ବିକ୍ରି ହୋଇଥାଉ, ଏସବୁ ଦ୍ୱାରା ସମାଜର କି ମଙ୍ଗଳ ହୋଇଛି ବୁଝିବା ମୁସ୍କିଲ; କିନ୍ତୁ ମାଳିକାଗୁଡ଼ିକୁ ସମଗ୍ର ଭାବରେ ବିଚାର କଲେ, ସବୁଥିରେ ଯେଉଁ ଏକ ସାଧାରଣ ଉତ୍‌ପ୍ରେକ୍ଷା ଦେଖାଯାଏ, ତାହା ଏହି –

(୧) ଭବିଷ୍ୟତରେ ବ୍ରାହ୍ମଣମାନେ ଶୂଦ୍ରର ସ୍ତରକୁ ଅଧଃପତିତ ହେବେ ।

(୨) ଜାତିପ୍ରଥା ଉଠିଯିବ, ସମସ୍ତେ ସମାନ ହେବେ ।

(୩) ଅନେକ ବିପ୍ଳବ, ବିପର୍ଯ୍ୟୟ ଓ ବିଶୃଙ୍ଖଳା ପରେ ପୁଣି ଏକ ନୂତନ ଅବତାରଙ୍କ ଯୋଗେ ଧର୍ମ-ରାଜ୍ୟ ସ୍ଥାପିତ ହେବ ।

**ଅଚ୍ୟୁତାନନ୍ଦ ଓଡ଼ିଶାର ଶ୍ରେଷ୍ଠ ସାମାଜିକ କବି –**

ବସ୍ତୁତଃ ପଞ୍ଚସଖାଙ୍କ ଭିତରେ ସର୍ବକନିଷ୍ଠ ଅଚ୍ୟୁତାନନ୍ଦ ଓଡ଼ିଶାର ଜନସମାଜରେ ଏପର୍ଯ୍ୟନ୍ତ ଏହି ମାଳିକା ବା ଭବିଷ୍ୟତ୍-ବଚନମାନଙ୍କ ପାଇଁ ହିଁ ବହୁବିଦିତ ଓ ସମ୍ମାନିତ । ୧୯୫୫ରେ ଓଡ଼ିଶାରେ ଅଭୂତପୂର୍ବ ଜଳ-ପ୍ଲାବନ ଦେଖାଦେଇଥିଲା । ଶିକ୍ଷିତ ଲୋକେ ମଧ୍ୟ ଅଚ୍ୟୁତାନନ୍ଦଙ୍କ ମାଳିକାରୁ ପଙ୍କ୍ତି ଉଦ୍ଧାର କରି ଅଚ୍ୟୁତାନନ୍ଦ ସେହି ବର୍ଷର ସେହି ବଢ଼ି ହେବା କଥା ଆଗରୁ କହିଯାଇଛନ୍ତି ବୋଲି ପ୍ରମାଣିତ କରାଇବାର ଚେଷ୍ଟା କରିଥିଲେ ।

କିନ୍ତୁ ମାଳିକାମାନଙ୍କ ଅପେକ୍ଷା ଅଚ୍ୟୁତାନନ୍ଦ ଓଡ଼ିଆମାନଙ୍କର ଜାତୀୟ ଜୀବନକୁ ଅନ୍ୟ ବହୁଭାବରେ ମଧ୍ୟ ଋଦ୍ଧିମନ୍ତ କରିଯାଇଛନ୍ତି । ପଞ୍ଚସଖାମାନଙ୍କ ଭିତରେ ଏହି ନିମ୍ନବୟ ସଖା ଜଣକହିଁ ପ୍ରକୃତ ସମାଜସେବକ ଥିଲେ । ସଂଭ୍ରାନ୍ତ କରଣକୁଳରେ ଜନ୍ମଗ୍ରହଣ କରି ମଧ୍ୟ ସେ ଆଜି କୈବର୍ତ୍ତ ଓ ଗୋପାଳମାନଙ୍କର ଗୋଷ୍ଠୀ-ଗୁରୁ ଓ ଗୋଷ୍ଠୀ-ଦେବତାରୂପେ ଓଡ଼ିଶାର ଚାରିଆଡ଼େ ପୂଜିତ । ସେ ନିଜର ଜନ୍ମ-ଜାତିର ଅହମିକା ପରିତ୍ୟାଗ କରି ନିମ୍ନଶ୍ରେଣୀର ସେହିମାନଙ୍କ ମଧ୍ୟରେ ଏକତ୍ର ବାସକରିଥିଲେ ଓ ପ୍ରଥମଥର ପାଇଁ ସେହି ନିରକ୍ଷର, ଅବହେଳିତ ସଂପ୍ରଦାୟମାନଙ୍କୁ ସେ ପର୍ଯ୍ୟନ୍ତ – ଅଲଭ୍ୟ ମନ୍ତ୍ର ଓ ଶାସ୍ତ୍ର ଅଯାଚିତ ଭାବରେ ପରିବେଷିତ କରିଦେଇଥିଲେ । ସେପର୍ଯ୍ୟନ୍ତ ଏସବୁ କେବଳ ବ୍ରାହ୍ମଣ ଓ ଉଚ୍ଚ ସଂପ୍ରଦାୟମାନଙ୍କ ଭିତରେ ଆବଦ୍ଧ ଥିଲା । ଅଚ୍ୟୁତାନନ୍ଦ କୈବର୍ତ୍ତମାନଙ୍କ ଆଧ୍ୟାତ୍ମିକ ଉନ୍ନତି ପାଇଁ 'କୈବର୍ତ୍ତଗୀତା' ଓ ଗୋପାଳମାନଙ୍କ ସାମାଜିକ ଶିକ୍ଷା ପାଇଁ 'ଗୋପାଳଙ୍କ ଓଗାଳ' ପର୍ଯ୍ୟାୟ ଲେଖିଲେ । ସେକାଳରେ ବା ଯେଉଁ କାଳରେ ହେଲେ ଜଣେ ଲେଖକଠାରେ ଏପ୍ରକାର ସାମାଜିକ ସ୍ପର୍ଶକାତରତା ଅତ୍ୟନ୍ତ ବିରଳ । ଅନ୍ତତଃ ଓଡ଼ିଆ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ପ୍ରଚୁର ନୁହେଁ ।

କୈବର୍ତ୍ତ ଓ ଗୋପାଳଙ୍କର ବିଶେଷ ବିଶେଷ ଗୋଷ୍ଠୀ କେବଳ ନୁହେଁ, ଓଡ଼ିଶାର ସାଧାରଣ ଜନତାର ଚିନ୍ତାରାଜ୍ୟରେ ନୂତନ ଆଲୋକପାତ କରିବାପାଇଁ ମଧ୍ୟ ଅଚ୍ୟୁତାନନ୍ଦ ଜୀବନସାରା ଲେଖିଚାଲିଥିଲେ । ଡକ୍ଟର୍ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ଅଚ୍ୟୁତାନନ୍ଦ 'ଏକଲକ୍ଷ' ଗ୍ରନ୍ଥ ଲେଖିଯାଇଛନ୍ତି । ହୁଏତ 'ଗ୍ରନ୍ଥ'ର ଅର୍ଥ ଏଠାର ଶ୍ଳୋକ ବା ପଦ । ପୁଣି ଏକାଧିକ ଅଚ୍ୟୁତାନନ୍ଦ ଦାସ ଏ ଭିତରେ ଦେଖାଦେଇଥିବା ଅସମ୍ଭବ ନୁହେଁ । ଯାହାହେଉ ଶ୍ରୀ ମହାନ୍ତିଙ୍କ ବର୍ଣ୍ଣାନୁସାରେ ଅଚ୍ୟୁତାନନ୍ଦ ଦାସ ନାମକ ଲେଖକଙ୍କ "୩୬ଟି ସଂହିତା, ୭୮ଟି ଗୀତା, ୨୭ଟି ବଂଶାନୁଚରିତ ଛଡ଼ା ୭ଖଣ୍ଡ ହରିବଂଶ, ୧୨ଟି ଉପବଂଶ, ଏକଶତ ମାଳିକା, କେତେକ କୋଇଲି, କେତେ ଚଉତିଶା, ଟୀକା, ବିଳାସ, ନିର୍ଣ୍ଣୟ, ଓଗାଳ, ଗୁଜ୍ଜରୀ ଓ ଭଜନ ଲେଖିଯାଇଛନ୍ତି ।"

ସେ ଯାହାହେଉ, ଗୁରୁଭକ୍ତି ଗୀତା, ଅଣାକାର ସଂହିତା ଓ ଛୟାଳିଶି ପଟଳ ଇତ୍ୟାଦି ଗ୍ରନ୍ଥ ଯେ ଜଣେ ଅଚ୍ୟୁତାନନ୍ଦ ଦାସଙ୍କ ଦ୍ୱାରା ଲିଖିତ ଓ ସେ ପଞ୍ଚସଖାଙ୍କର ଏକତମ, ଏଥିରେ ସନ୍ଦେହ ରହୁନି । କାରଣ ଏସବୁ ଗ୍ରନ୍ଥ ଭିତରେ ଆମେ ଗୋଟିଏ ଲେଖକର ସାଧୁ, ଯୋଗୀ, ମାନବିକ ବ୍ୟକ୍ତିତ୍ୱର ଛାପ ଦେଖିପାରୁଛୁ । ଆମେ ଏହା ମଧ୍ୟ ଦେଖୁଛୁ ଯେ,

ଲେଖକ ଚୈତନ୍ୟଙ୍କ ଶିଷ୍ୟ ବୋଲି କୁହାଗଲେ ମଧ, ସେ ଅନ୍ତରରେ ଭାବପ୍ରବଣ ବୈଷ୍ଣବ ଅପେକ୍ଷା ଥିଲେ ବିଚାରଶୀଳ ବୌଦ୍ଧ ଓ ତାଙ୍କ ଲେଖନର ମୁଖ୍ୟ ପ୍ରଚାର ଥିଲା 'ଶୂନ୍ୟ' ବା 'ଅଲେଖ'ର ଉପାସନା ଏବଂ ଆତ୍ମା ଭିତରେହିଁ 'ଜଗତର ନାଥ'ଙ୍କୁ ଦେଖିବାର ଅଭ୍ୟାସ । ବସ୍ତୁତଃ ଓଡ଼ିଶାରେ ଦୁଇଶତ ବର୍ଷ ପରେ ଦେଖାଦେଇଥିବା ମହିମାଧର୍ମ, ଯାହାର ମହାଯାନ ବୌଦ୍ଧଧର୍ମ ସହିତ ବହୁ ସାଦୃଶ୍ୟ ଦେଖାଯାଏ, ତା'ର ଉଦୟ ଓ ଅଭ୍ୟୁଦୟର ଏକ ହେତୁରୂପେ, ଅଚ୍ୟୁତାନନ୍ଦଙ୍କ ମୂର୍ତ୍ତିହୀନ ଅଲେଖୋପାସନା ପ୍ରଚାରକୁ ଠିଆକରାଯାଉଛି ।

ପୁଣ୍ୟଗ୍ରନ୍ଥ ଭାବରେ ଓଡ଼ିଆ ଜନତା, ଜଗନ୍ନାଥଙ୍କ ଭାଗବତ ତଳକୁ, ସ୍ଥାନ ଦିଅନ୍ତି ଅଚ୍ୟୁତାନନ୍ଦଙ୍କ 'ହରିବଂଶ'କୁ । ଅଚ୍ୟୁତାନନ୍ଦଙ୍କ ହରିବଂଶ ସାରଳାଙ୍କ ମହାଭାରତ ଓ ବଳରାମଙ୍କ ରାମାୟଣ ପରି ଠିକ୍ ଅନୁବାଦ ନୁହେଁ । ତାହା ନାନା ମୌଳିକ କଳ୍ପନାରେ ପୂର୍ଣ୍ଣ । ବୋଧହୁଏ ଅବହେଳିତ ଗୋପାଳଗୋଷ୍ଠୀର ସାମାଜିକ ମାନ ଉଠେଇବା ପାଇଁ, ଅଚ୍ୟୁତାନନ୍ଦ ଗୋପାଳଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ ଜୀବନଚରିତରୂପକ ହରିବଂଶ ଲେଖିବାକୁ ଯାଇଥିଲେ । ଗ୍ରାମାଞ୍ଚଳରେ ଏପର୍ଯ୍ୟନ୍ତ 'ମାନସିକ' ପୂରଣ ପାଇଁ ବା 'ମାନସିକ' ପୂର୍ଣ୍ଣ ହେବାର ଉତ୍ସବସ୍ୱରୂପ 'ହରିବଂଶ' ବସାଇଥାନ୍ତି ।

ରଚନାବଳିର ବିଶାଳତା ସତ୍ତ୍ୱେ ଆମେ କିନ୍ତୁ ଅଚ୍ୟୁତାନନ୍ଦଙ୍କୁ ଏକ ସାହିତ୍ୟିକ କଳାକାର ବୋଲି ସମ୍ମାନ ଦେଇପାରିବା ନାହିଁ । ସେ ଓଡ଼ିଶାର ଜନଚେତନାରେ ଏକ ସନ୍ଥ ଓ ଲୋକଗୁରୁ ଭାବରେ ଯାହା ବଞ୍ଚିଆସିଛନ୍ତି, ତାହାହିଁ ତାଙ୍କ ଜୀବନର ପ୍ରକୃତ ତାତ୍ପର୍ଯ୍ୟ । ଅନ୍ୟ ବହୁ ଓଡ଼ିଆ ଲେଖକଙ୍କ ଅପେକ୍ଷା ଅଚ୍ୟୁତାନନ୍ଦ ନିଜ ଜୀବନ ସମ୍ବନ୍ଧରେ ବହୁ ତଥ୍ୟ ଛାଡ଼ିଯାଇଛନ୍ତି । ତାଙ୍କ ସମ୍ପର୍କରେ ଆସିଥିବା ଗ୍ରାମ ଓ ସ୍ଥାନସବୁ ଏବେ ବି ଅଛି ଏବଂ ଆଦିଗୁରୁଙ୍କର ବାଣୀର ରକ୍ଷକ ଓ ପରିବେଷକ ଭାବରେ ତାଙ୍କର ବଂଶଧରମାନେ ଏବେ ବି ସମ୍ମାନିତ ଜୀବନ ଯାପନକରନ୍ତି ।

## ପ୍ରକୃତ ଗଣକବି :

ସମସ୍ତଙ୍କୁ ମିଶାଇ, ଏହି ପଞ୍ଚସଖାଙ୍କୁ ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟସାଧାରଣ ସାହିତ୍ୟିକ ଗୋଷ୍ଠୀ କୁହାଯିବ । ସାରଳା ଦାସ ପଥପ୍ରଦର୍ଶକ, ପ୍ରତିଭାଧର ଓ ଆବିଷ୍କର୍ତ୍ତା । ସେ ଦେଖାଦେଇନଥିଲେ ଓ ବାଟ ଫିଟାଇନଥିଲେ ପଞ୍ଚସଖାଙ୍କର ଏ ପରିଚୟ ଆମେ ପାଇପାରିଥାନ୍ତୁ କି ନା ତାହା ବିଚାର୍ଯ୍ୟ; କିନ୍ତୁ ସାରଳା ସହଜାତ ପ୍ରତିଭାଦ୍ୱାରା ପରିଚାଳିତ ହୋଇ ହିଁ ଲେଖନୀ ଚାଳନା କରିଥିଲେ । ସେ ଯାହା ଲେଖିଚାଲିଥିଲେ, ଜନତାର ମନ ଓ ଚରିତ୍ରରେ ତାହା କି ପ୍ରତିକ୍ରିୟା ସୃଷ୍ଟି କରୁଛି ବା କରିବ, ଯା ଭାବିବାକୁ ସାରଳାଦାସଙ୍କର ଚେଷ୍ଟା ନଥିଲା । କିନ୍ତୁ ପଞ୍ଚସଖାଙ୍କ ଭିତରେ ଆମେ ପ୍ରଥମକରି ଦଳେ ଓଡ଼ିଆ ଲେଖକଙ୍କୁ ଭେଟୁଛୁ, ଯେ କି ଜାଣି ଜାଣି ଈଶ୍ୱର ଓ ଈଶ୍ୱରଙ୍କ ପ୍ରିୟପାତ୍ର ସାଧାରଣ ମନୁଷ୍ୟର ସେବାରେ ନିଜର ଲେଖନୀ ନିୟୋଜିତ କରିବାକୁ ଯାଇଛନ୍ତି । ଓଡ଼ିଶାର ନିରକ୍ଷର

ଜନସାଧାରଣଙ୍କୁ ଶିକ୍ଷିତ, ଦୀକ୍ଷିତ, ସମୁନ୍ନତ କରିବା ଦିଗରେ ସେମାନଙ୍କୁ ସେତେବେଳେ ଯେତେ ଉପାୟ ଜଣାଥିଲା, ସେ ସମସ୍ତ ଉପାୟରେ ସେମାନେ ଲେଖନୀ ଚାଳନା କରିଥିଲେ । ଯେଉଁ ଜ୍ଞାନ ସେପର୍ଯ୍ୟନ୍ତ ଅବୋଧ ସଂସ୍କୃତଭାଷାରେ ଆବଦ୍ଧ ଓ ଲୁକ୍କାୟିତ ହୋଇ ରହିଥିଲା, ପଞ୍ଚସଖାଏ ତାକୁ କୃଷକର ଦୀନ କୁଟୀରର ଦ୍ୱାରରେ ନେଇ ପହଞ୍ଚାଇଦେଲେ । ରାମାୟଣ, ଭାଗବତ, ହରିବଂଶ ଦେଇ ସଂସ୍କୃତନିବଦ୍ଧ ଜୀବନଦର୍ଶନକୁ ସେମାନେ ପୁସ୍ତକ-ଜ୍ଞାନଶୂନ୍ୟ ସାଧାରଣ ଓଡ଼ିଆର ହାତରେ ଥୋଇ, ତେଣେ ଅନ୍ତଃପୁରର କୁଳବାଳାମାନଙ୍କ ଆଧ୍ୟାତ୍ମିକ ଶିକ୍ଷଣ ପାଇଁ ଗାଥାସବୁ ମଧ ଲେଖିଗଲେ । ଏପର୍ଯ୍ୟନ୍ତ ଉତ୍କଳର ଗ୍ରାମାଞ୍ଚଳରେ ଭିକ୍ଷୁକ-ଗାୟକମାନଙ୍କର ପ୍ରଧାନ ଗେୟ ବସ୍ତୁ ସେହି ପଞ୍ଚସଖାଙ୍କ କୃତି ମୃଗୁଣୀସ୍ତୁତି, ଗୋବିନ୍ଦଚନ୍ଦ୍ର ବା ଲକ୍ଷ୍ମୀପୁରାଣ । କେନ୍ଦରା ସାହାଯ୍ୟରେ ଏଗୁଡ଼ିକ ଗ୍ରାମଦାଣ୍ଡରେ ଧ୍ୱନିତ ହୋଇଉଠିଲେ ଗ୍ରାମର ପୁରବାଳା ଓ ବାଳକ-ବାଳିକା ପୁର-ଦ୍ୱାରମାନଙ୍କରେ ଏବେ ବି ଆସି ରୁଣ୍ଡ ହୋଇଯାନ୍ତି । ଏଗୁଡ଼ିକର ଏପରି ଚିରନ୍ତନ ଆକର୍ଷଣର ଏକତମ କାରଣ ଏହି ଯେ, ଏଗୁଡ଼ିକ ପୁଣ୍ୟାତ୍ମାମାନଙ୍କଦ୍ୱାରା, ସାଧାରଣ ନାଗରିକର ଆତ୍ମିକ ଜାଗରଣ ଲକ୍ଷ୍ୟରେହିଁ ଲେଖାହୋଇଥିଲା । ଆଜି ମଧ ଓଡ଼ିଶାର ଗ୍ରାମାଞ୍ଚଳରେ ଯାହା କିଛି ଶୁଦ୍ଧତା ଓ ନୈତିକତା ଅଛି ବୋଲି ଧରାଯିବ, ତାହା ପାଞ୍ଚଶ' ବର୍ଷ ତଳର ଏହି ପଞ୍ଚସଖାଙ୍କର ପୁଣ୍ୟ ପ୍ରେରଣାରହିଁ ଫଳ ।

କିନ୍ତୁ ସାହିତ୍ୟର ଇତିହାସ ଲେଖକର ନିରପେକ୍ଷ ବିଚାରରେ ଏହା ମଧ କୁହାଯିବ ଯେ, ଏ ପଞ୍ଚ ସନ୍ଥ ଉତ୍କଳୀୟ ଜନତାର ବହୁ କଲ୍ୟାଣ ସାଥେ ସାଥେ, ଏକ ମୁଖ୍ୟ ବିଭାଗରେ ଘୋର ଅକଲ୍ୟାଣ ମଧ କରିଦେଇଯାଇଛନ୍ତି । ସେମାନେ ହୁଏତ ଚେଷ୍ଟା କରିଥିଲେ ଶୂଦ୍ର ଜନତାକୁ ବ୍ରାହ୍ମଣତ୍ୱ ଦେବାକୁ; କିନ୍ତୁ ସେମାନେ ଭୁଲିଯାଇଥିଲେ ଯେ ବ୍ରାହ୍ମଣଗୋଷ୍ଠୀ ବା ସମଗ୍ର ସମାଜ, ସ୍ୱ-ସ୍ୱ ଧର୍ମ ଆଚରଣ କରିବାରେ ସେମାନଙ୍କ ପଛରେ ଜଣେ କ୍ଷତ୍ରିୟ ଠିଆହୋଇଛି, ବହିଃଶତ୍ରୁର ବର୍ବର ହସ୍ତରୁ ସେମାନଙ୍କୁ ରକ୍ଷାକରିବାକୁ । ସେମାନେ ରଣୋନ୍ମତ୍ତ ସ୍ୱାଧୀନ ଓଡ଼ିଆକୁ ଶିଖାଇବାକୁବସିଲେ ଗୋଟିଏ ଗୋଟିଏ ଶାନ୍ତ, ଉତ୍ତମ ସୁଶୀଳ ନାଗରିକ ହେବାକୁ, ତ୍ୟାଗୀ ହେବାକୁ, ଧର୍ମୀ ହେବାକୁ ଓ ମାଳା ଜପିବାକୁ । ସମାଜ ଆଗରେ ସେମାନେ ଯେଉଁ ଆଦର୍ଶ ଠିଆକରାଇଲେ, ତାହା ମୋଟରେ ଏୟା ହିଁ; କିନ୍ତୁ ଏ ଆଦର୍ଶ ଭାରସାମ୍ୟହୀନ ଏକଦେଶଦର୍ଶୀ ଏବଂ ସମାଜ ଓ ପ୍ରକୃତିର ସ୍ଥୂଳ, ନିଷ୍ଠୁର ଚାହିଦାଗୁଡ଼ିକ ପ୍ରତି ଏହା ଏକାନ୍ତଭାବରେ ଭ୍ରୂକ୍ଷେପଶୂନ୍ୟ ବୋଲି କହିବାକୁ ହେବ । ଫଳରେ 'ସଖା'ମାନଙ୍କର ଜାତିକି ଉଠେଇବାର ପୁଣ୍ୟ ପ୍ରଯତ୍ନ ସତ୍ତ୍ୱେ, ସ୍ୱାଧୀନ ଓଡ଼ିଶା ସଖାମାନେ ଉଭେଇଯିବାର ଅଳ୍ପ କେତେକ ବର୍ଷ ଭିତରେହିଁ ବିଦେଶୀ ଓ ବିଧର୍ମୀମାନଙ୍କଦ୍ୱାରା ଆକ୍ରାନ୍ତ ଓ ବିଜିତ ହୋଇପଡ଼ିଲା । ଏକ ସ୍ୱାଧୀନ ରାଷ୍ଟ୍ର, ଯାହା ତିନିଶତ ବର୍ଷଧରି ଉତ୍ତର ଓ ଦକ୍ଷିଣରେ ଦୁର୍ଦ୍ଧର୍ଷ ଶତ୍ରୁମାନଙ୍କୁ ଅଟକାଇ ରଖିଥିଲା, ତାହାର ତୁରନ୍ତ ଅଧଃପତନ ପାଇଁ ଚୈତନ୍ୟଙ୍କ ସହିତ ଏହି ପଞ୍ଚସଖାଙ୍କୁ ମଧ ଏକପ୍ରକାରେ ଦାୟୀ ବୋଲି କୁହାଯିବ ।

ପାଞ୍ଚଶ' ବର୍ଷ ପରେ ଜଣେ ମହାତ୍ମା ଆମକୁ ଦେଖାଇଦେଲେ ଯେ, ଧର୍ମସାଧନା ଓ ସ୍ୱାଧୀନତାର ସଂଗ୍ରାମ ଏକାବେଳକେ ଓ ଏକାଧାରରେ କରାଯାଇପାରେ । ପାପ ସଙ୍ଗେ ସଂଗ୍ରାମହିଁ ଯେକୌଣସି ଧର୍ମର ମୁଖ୍ୟ ଲକ୍ଷ୍ୟ, କର୍ମ ଓ ଅଭ୍ୟାସ ଏବଂ ଏ ଜଗତରେ ଗୁରୁତମ ପାପ ହେଉଛି ସେହି କର୍ମ; ଯାହା ନିଜର ଗୃହ ଓ ମନ୍ଦିରକୁ ବିଦେଶୀ, ବିଭାଷୀ ବା ବିଧର୍ମୀଦ୍ୱାରା ଅପବିତ୍ର ହେବାକୁ ଦେଇଦିଏ । ପଞ୍ଚସଖା ଛାଡ଼ିଯାଇଥିବା ବିପୁଳ ରଚନାବଳି ଭିତରେ କୌଣସିଠାରେ ଏହି ବିଶେଷ ପାପ ବା ସାଧାରଣ ଭାବରେ ପାପବିରୋଧୀ ସଂଗ୍ରାମହିଁ ଯେ ପ୍ରକୃତ ଧର୍ମ, ତାହା ପରୋକ୍ଷରେ ହେଲେ କହିଥାନ୍ତେ ! କହିଥାନ୍ତେ ବା ପଦେହେଲେ କେଉଁଠି ପୌରୁଷର ପୁଣ୍ୟ ନେଇ !

## ନବମ ଅଧ୍ୟାୟର ପରିଶିଷ୍ଟ : ସମ୍ରାଟ୍ ପୁରୁଷୋତ୍ତମଙ୍କ ପ୍ରଣୟକାହାଣୀ ଓ ଜାତି ଉପରେ ତାର ପ୍ରତିକ୍ରିୟା –

କାଞ୍ଚିର ରାଜା ପୁରୀକୁ ରଥଯାତ୍ରା ଦେଖିବାକୁ ଆସିଲେ । ଦେବଦେବ, ଜଗନ୍ନାଥଙ୍କ ସମ୍ମୁଖରେ ନରନାଥ ଯେ ଏକ ସାମାନ୍ୟ ମନୁଷ୍ୟ ମାତ୍ର, ଏହା ପ୍ରଦର୍ଶିତ କରି ରଖିବାପାଇଁ ରଥଯାତ୍ରା ଆରମ୍ଭ ହେବା ପୂର୍ବରୁ ଉତ୍କଳ ଗଜପତି (ବା ତାଙ୍କ ପ୍ରତିନିଧି) ସୁନା ପହଁରାରେ ଦାଣ୍ଡ ପହଁରିବାର ବ୍ୟବସ୍ଥା ଅଛି । * କାଞ୍ଚିରାଜା, ଉତ୍କଳସମ୍ରାଟ୍‌କୁ ଏପରି କାମ କରିବାର ଦେଖି ମନେ ମନେ ଘୃଣାକଲେ; କିନ୍ତୁ ଇତିମଧ୍ୟରେ ତରୁଣ ଉତ୍କଳ ସମ୍ରାଟ୍ ପୁରୁଷୋତ୍ତମ ପିତାଙ୍କ ସାଥିରେ ଆସିଥିବା ସୁନ୍ଦରୀ କାଞ୍ଚିଜେମାଙ୍କୁ ଦେଖିଲେ ଓ ଉଭୟଙ୍କ ପକ୍ଷରେ ତାହା 'ପ୍ରଥମ ସାକ୍ଷାତ୍‌ରେ ପ୍ରେମ' ହୋଇଉଠିଲା । ରଥଯାତ୍ରା ପରେ ପରେ ଉତ୍କଳର ଦୂତ କାଞ୍ଚିରାଜସଭାରେ ଉପସ୍ଥିତ ହୋଇ ଉତ୍କଳର ତରୁଣ ସମ୍ରାଟଙ୍କ ପାଇଁ ସୁନ୍ଦରୀ କାଞ୍ଚିଜେମାଙ୍କ ପାଣି ଭିକ୍ଷାକଲେ; କିନ୍ତୁ କାଞ୍ଚିରାଜା, ଯେଉଁ ରାଜା ଚଣ୍ଡାଳର କାର୍ଯ୍ୟ କରେ ସେପରି

* ଓଡ଼ିଆ ସାହିତ୍ୟର ଏକ ଇତିହାସକୁ ଆଲୋଚନା କରିବାକୁ ବସି ଏ ଦେଶର ବିଜ୍ଞ ଅଧ୍ୟାପକ ଆଉ କିଛି ଗୁରୁତର ଦୋଷ ନପାଇ, 'ଛେରାପହଁରା'ର ଅର୍ଥ ନେଇହିଁ ଗ୍ରନ୍ଥର କୁତ୍ସା ଘୋଷଣା କରିପାରନ୍ତି । ପୁରୀର ରଥଯାତ୍ରାରେ ଏବେ ଯାହା ଘଟୁଛି, ତାକୁ ପ୍ରକୃତ ପ୍ରଥା ବୋଲି ମାନିଯିବାର କୌଣସି ଯୁକ୍ତି ନାହିଁ । ରଥାସୀନ ଜଗନ୍ନାଥଙ୍କ ଚାରିପାଖରେ ସ୍ୱର୍ଣ୍ଣ-ସମାର୍ଜନୀ ଚଳାଇବା ଦେଖି କେହି ଉତ୍କଳ ଗଜପତିଙ୍କୁ ଚଣ୍ଡାଳ ଭାବିବ ନାହିଁ; କିନ୍ତୁ ସମଗ୍ର କାଞ୍ଚି-କାବେରୀ ଘଟଣା ଏହି ତାତ୍ପର୍ଯ୍ୟ ଉପରେ ପ୍ରତିଷ୍ଠିତ । ଚଣ୍ଡାଳ ଦାଣ୍ଡ ଓଳାନ୍ତି; ଦେବତାର ରଥ ଉପରକୁ ଉଠି ଦେବାସନର ଚାରିପଟ ଓଳେଇବା କେବଳ ଅଧ୍ୟାପକଙ୍କ ସ୍ୱୀକୃତ ଶାସ୍ତ୍ରରେ ଥିବ । ଏଠାରେ 'ଚୈତନ୍ୟ-ଚରିତାମୃତ'ର ସଂପୃକ୍ତ ପଙ୍‌କ୍ତି ଏହିପରି –

'ତବେ ପ୍ରତାପରୁଦ୍ର କରେ ଆପନ ସେବନ,
ସୁବର୍ଣ୍ଣ ମାର୍ଜନୀ ଲୟାଁ କରେ ପଥ ସମ୍ମାର୍ଜନ ।'

ରାମଶଙ୍କରଙ୍କର ପ୍ରସିଦ୍ଧ 'କାଞ୍ଚି-କାବେରୀ' ନାଟକର ପଞ୍ଚମ ଅଭିନୟ ତୃତୀୟ ଦୃଶ୍ୟରେ ମଧ୍ୟ ଆମେ ଉତ୍କଳ ଗଜପତି ଦାଣ୍ଡ ଓଳେଇବାର ନିର୍ଦ୍ଦେଶ ଦେଖୁ । ଯଦି ଚୈତନ୍ୟ-ଚରିତାମୃତ ଓ ରାମଶଙ୍କର ତ୍ରୁଟିପୂର୍ଣ୍ଣ, ତେବେ ମାନସିଂହ ସେହିପରି ତ୍ରୁଟିପୂର୍ଣ୍ଣ ରହିବାକୁ ଚାହେଁ ।

ଲୋକକୁ ନିଜ କନ୍ୟା ଦେବାକୁ ରାଜି ହେଲେନାହିଁ । ପୁରୁଷୋତ୍ତମ ଏହାକୁ ସ୍ୱୟଂ ଜଗନ୍ନାଥଙ୍କ ପ୍ରତି ଅପମାନ ବୋଲି ଧରିନେଇ, କାଞ୍ଚି ବିରୁଦ୍ଧରେ ସଂଗ୍ରାମ ପାଇଁ ସଙ୍ଗେ ସଙ୍ଗେ ସୈନ୍ୟ ଚାଳନା କଲେ । କାଞ୍ଚିର ରାଜା (ନରସିଂହ ସାଲ୍ୱ) ପରାସ୍ତ ହେଲେ । କାଞ୍ଚି ଲୁଣ୍ଠିତ ହେଲା ଓ ଅମୂଲ୍ୟ ଲୁଣ୍ଠନ ଦ୍ରବ୍ୟ ହେଲେ ସ୍ୱୟଂ କାଞ୍ଚିଜେମା; କିନ୍ତୁ ନିରୀହା ରାଜକନ୍ୟାର ପିତାଙ୍କ ବିରୁଦ୍ଧରେ ପ୍ରତିହିଂସା ପାଇଁ ପୁରୁଷୋତ୍ତମ ପ୍ରତିଜ୍ଞା କଲେ ଯେ, କାଞ୍ଚିଜେମାଙ୍କୁ ସେ ପ୍ରକୃତରେ ଏକ ଚଣ୍ଡାଳ ସହିତ ବିବାହ ଦେବେ ଏବଂ ମୁଖ୍ୟମନ୍ତ୍ରୀଙ୍କୁ ଆଦେଶ ଦେଲେ ସେହିପରି ଏକ ବିବାହର ବ୍ୟବସ୍ଥା କରିବାକୁ ।

ପୁଣି ରଥଯାତ୍ରା ଆସିଲା । ପୁରୁଷୋତ୍ତମ ନିଜ ଅନ୍ତରରେ କାଞ୍ଚି-ଜେମାଙ୍କ ପାଇଁ ଝୁରି ହେଉଥିଲେ ମଧ, ପ୍ରକୃତ ରାଜାଭାବରେ ତାହାର ସାମାନ୍ୟତମ ଚିହ୍ନ ବାହାରକୁ ଦେଖାଉ ନଥିଲେ; କିନ୍ତୁ ଚତୁର ମୁଖ୍ୟମନ୍ତ୍ରୀଙ୍କୁ ଏକଥା ଅଛପା ନଥିଲା । ରଥଯାତ୍ରାବେଳେ ପୁରୁଷୋତ୍ତମ ପହଁରୁଥିବାବେଳେ ଉତ୍କଳର ମୁଖ୍ୟମନ୍ତ୍ରୀ ଦୁଃଖିନୀ କାଞ୍ଚିଜେମାଙ୍କୁ ସନ୍ତର୍ପଣରେ ରାଜ-ଛାମୁରେ ଭେଟିସ୍ୱରୂପ ଠିଆକରାଇଦେଲେ । ସମ୍ରାଟ୍ ପୁରୁଷୋତ୍ତମ ଏହା ଦେଖି କପଟ କ୍ରୋଧରେ ଜଳିଉଠିଲେ; କିନ୍ତୁ ମନ୍ତ୍ରୀ ଉତ୍ତରକଲେ, ''ମହାରାଜ, ଆପଣ ବର୍ତ୍ତମାନ ଚଣ୍ଡାଳଠାରୁ ଭିନ୍ନ ନୁହନ୍ତି; ତେଣୁ ଆପଣଙ୍କ ଆଦେଶ ଅନୁଯାୟୀହିଁ କାଞ୍ଚି-ଜେମାଙ୍କୁ ଶ୍ରେଷ୍ଠ ଚଣ୍ଡାଳ ହାତରେ ସମର୍ପଣ କରିଦେଉଛି ।'' ଉପସ୍ଥିତ ବିରାଟ ଜନତା ମୁଖ୍ୟମନ୍ତ୍ରୀଙ୍କ ଚାତୁର୍ଯ୍ୟକୁ ଉଚ୍ଚସ୍ୱରରେ ଅଭିନନ୍ଦନ ଜଣାଇଲେ ଓ କାଞ୍ଚି-ଜେମାଙ୍କୁ ଗ୍ରହଣ କରିବାକୁ ସମ୍ରାଟ୍‌ଙ୍କୁ ଅନୁରୋଧ କଲେ । ତରୁଣ ସମ୍ରାଟ୍ ଧୀରେ ସୁନ୍ଦରୀ ଜେମାଙ୍କ ମନୋରମ ଅଙ୍ଗୁଳିଗୁଡ଼ିକୁ ନିଜର ଦୃଢ଼ହସ୍ତରେ ଧରିନେଲେ ଓ ଉଭୟଙ୍କ ଗଣ୍ଡ ସହସା ଅଶ୍ରୁସ୍ନାତ ହେବାର ଦେଖାଗଲା । କାଞ୍ଚିର ଜେମା ସହସା ହୋଇଉଠିଲେ ଉତ୍କଳର ସାମ୍ରାଜ୍ଞୀ । ସପ୍ରଶଂସ ରାଜପ୍ରଣୟୀ ଓ ଏକ ଶ୍ରଦ୍ଧାବାନ୍ ଜାତି ଜେମାଙ୍କର ଘରନାମ 'ରୂପାମ୍ବିକା'କୁ ପରିବର୍ତ୍ତିତ କରି ନୂତନ ନାମ ଦେଲେ ପଦ୍ମାବତୀ; ଯେଉଁ ନାମରେହିଁ ଓଡ଼ିଶାର ଜାତୀୟ ଚେତନା ଓ କାବ୍ୟ-ସାହିତ୍ୟରେ ସେ ଅମରତ୍ୱ ଲାଭକରିଛନ୍ତି ।

**ଭକ୍ତରାଜା ପ୍ରତାପରୁଦ୍ର –**

ସମ୍ରାଟ୍ ପ୍ରତାପରୁଦ୍ର ଏହି ରସ-ମୟ ପ୍ରଣୟ ଓ ପରିଣୟରହିଁ ଫଳ । ସୁନ୍ଦରୀ ପଦ୍ମାବତୀ ଯେ ଦିନେ କିପରି ଅବର୍ଣ୍ଣନୀୟ ମାନସିକ ଓ ସ୍ନାୟବିକ ଯନ୍ତ୍ରଣା ଦେଇ ଦୀର୍ଘକାଳ କାଟିଥିଲେ ତାହା ସହଜରେ ଅନୁମେୟ । ସେହି ଅନିଶ୍ଚିତ ଦିନଗୁଡ଼ିକରେ ଭୟ, ଆଶଙ୍କା, ଲଜ୍ଜା, ଅପମାନରେ ସେହି ସୁକୁମାରୀ ରାଜନନ୍ଦିନୀଙ୍କର ଆତ୍ମା ଛିନ୍ନଭିନ୍ନ ହୋଇଯାଉଥିବ । ଏକ ତାମିଲ-ରାଜନନ୍ଦିନୀ ଭାବରେ ସେ ତାମିଲ ସନ୍ଥକବି ଆଲବାରମାନଙ୍କର ଭକ୍ତି-କୋମଳ ପ୍ରଭାବ ମଧ ସାଥିରେ ଧରି ଆସିଥିବେ । ଚାରିତ୍ରିକ ଉତ୍ତରାଧିକାର ଓ ଲାଳନ-ପାଳନ ଦେଇ କୁମାର ପ୍ରତାପରୁଦ୍ର ଜନନୀଙ୍କଠାରୁ ଅଜ୍ଞାତସାରରେ ଏହି ଗୁଣଗୁଡ଼ିକ ପାଇଥିବାର କଥା । ପିତା ଓ ମାତା ଉଭୟଙ୍କ ଦାୟ ଯୋଗୁଁ ପ୍ରତାପରୁଦ୍ର ଏକ ଅସାଧାରଣ

ସୁନ୍ଦର ପୁରୁଷ ଥିବାର କଥିତ ହୁଏ । ପିତା ପୁରୁଷୋତ୍ତମଙ୍କ ପରି ସେ ମଧ ପଣ୍ଡିତ ଲୋକ ଥିଲେ ଓ କବି ପଣ୍ଡିତମାନଙ୍କର ମହତ୍ ପୃଷ୍ଠପୋଷକ ଥିଲେ । ଅନେକ ପ୍ରସିଦ୍ଧ ସଂସ୍କୃତ ଗ୍ରନ୍ଥର ଲେଖକ ବୋଲି ତାଙ୍କୁ ଧରାଯାଏ ।

ସଂଗ୍ରାମଚାଳକ ଭାବରେ ମଧ ତାଙ୍କର କ୍ଷମତା କମ୍ ନଥିଲା; କିନ୍ତୁ ରାଜୋଚିତ ଏସକଳ ଗୁଣ ଭକ୍ତିପ୍ରଭାବିତ କୌଣସି ଏକ ଚାରିତ୍ରିକ ଦୁର୍ବଳତା ହେତୁ ଫଳହୀନ ହୋଇଉଠୁଥିଲା; ଯାହା ସେ ନିଜର ମାତା, ଦକ୍ଷିଣ ରାଜନନ୍ଦିନୀ ପଦ୍ମାବତୀଙ୍କଠାରୁ ହିଁ ପାଇଥିଲେ । ନିଜେ ପଦ୍ମାବତୀ ଜାତ ଓ ଲାଳିତପାଳିତ ହୋଇଥିଲେ ସେହି କାଞ୍ଚି ନଗରୀରେ; ଯାହା ଭକ୍ତି-ଧର୍ମର ଆଦ୍ୟ ଓ ମୁଖ୍ୟ ପ୍ରଚାରକ ରାମାନୁଜଙ୍କର ଥିଲା ପ୍ରଧାନ କର୍ମକ୍ଷେତ୍ର । ଓଡ଼ିଶା ସମ୍ରାଟ୍ ପ୍ରତାପରୁଦ୍ରଙ୍କଠାରେ ମାତୃଦତ୍ତ ଏହି ଭାକ୍ତିକ ଦୁର୍ବଳତା ସମଗ୍ର ଜାତି ପ୍ରତି ଅନିଷ୍ଟକାରୀ ହୋଇଉଠିଲା । ସେପର୍ଯ୍ୟନ୍ତ ବହୁ ଶତାବ୍ଦୀଧରି ଓଡ଼ିଶା କୃଷ୍ଣାନଦୀ ପର୍ଯ୍ୟନ୍ତ ସମଗ୍ର ଆନ୍ଧ୍ର ସମତଳ ଭୂମିକୁ ଶାସନ କରିଆସୁଥିଲା କେବଳ ନୁହେଁ, ବରାବର ଏକ ବିଜୟୀ ରାଷ୍ଟ୍ର ଥିଲା; କିନ୍ତୁ କୃଷ୍ଣଦେବ ରାୟଙ୍କ ବିଜୟନଗର ସାମ୍ରାଜ୍ୟ ଓ ପ୍ରତାପରୁଦ୍ର ଦେବଙ୍କ ଗଜପତି ସାମ୍ରାଜ୍ୟ ଭିତରେ ଯେଉଁ ଛଅବର୍ଷବ୍ୟାପୀ ଯୁଦ୍ଧ ଚାଲିଲା, ସେଥିରେ ଓଡ଼ିଶା ବରାବର ହାରି ହାରି ଶେଷରେ ସମଗ୍ର ଆନ୍ଧ୍ର ସମତଳାଞ୍ଚଳକୁ ଚିରକାଳଲାଗି ହରାଇବସିଲା । ମନେହେଉଛି ଯେ ସମ୍ରାଟ୍ ପ୍ରତାପରୁଦ୍ରଙ୍କର ଅନ୍ତରତମ ବାସନା ଯେପରି ଥିଲା ଏକ ଭକ୍ତରୂପେହିଁ ଇତିହାସରେ ରହିଯିବାକୁ, ପୂର୍ବପୁରୁଷମାନଙ୍କ ପରି ବିଜୟୀ ବା ସାମ୍ରାଜ୍ୟ ନିର୍ମାତା ଭାବରେ ନୁହେଁ । ତାଙ୍କର ପାତ୍ର-ମନ୍ତ୍ରୀମାନଙ୍କର ଉପଦେଶ ବିରୁଦ୍ଧରେ ଏ ରାଜା ଚୈତନ୍ୟଙ୍କ ମୋହନ-ବ୍ୟକ୍ତିତ୍ୱ ନିକଟରେ ନିଜକୁ ସମର୍ପଣ କଲେ ଓ ଘୋର ଅନିଷ୍ଟ ଡାକିଆଣିଲେ ନିଜ ସାମ୍ରାଜ୍ୟ, ନିଜ ଜାତି ଓ ବୋଧହୁଏ ନିଜ ପ୍ରତି ମଧ ।

□□□

## ଦଶମ ଅଧ୍ୟାୟ

# ପୁରାଣ ଓ ଆଳଙ୍କାରିକ କବିତା

**ପଶ୍ଚାତ୍‌ପଟ : ସାହିତ୍ୟ ଓ ସାମନ୍ତପରିଷଦ –**

ଚୈତନ୍ୟଙ୍କ ଅନ୍ତର୍ଦ୍ଧାନର ମାତ୍ର ତିନିଦଶକ ମଧ୍ୟରେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ମୁକୁନ୍ଦଦେବ ନିଜ ରାଜ୍ୟ ଓ ମାତୃଭୂମିକୁ ରକ୍ଷା କରୁ କରୁ ୧୫୬୮ ଖ୍ରୀ.ଅ.ରେ ଯାଜପୁର ନିକଟସ୍ଥ ଗୋହିରିଟିକିରା ରଣକ୍ଷେତ୍ରରେ ଆତ୍ମବଳି ଦେଲେ । ସେହି ଦିନଠାରୁ ପ୍ରାୟ ଅଢ଼େଇଶ' ବର୍ଷଧରି ଓଡ଼ିଶା ଯୁଧମାନ ବାହିନୀ ଓ ଲୁଣ୍ଠନକାରୀମାନଙ୍କର ଏକ ପ୍ରିୟ ଆଖଡ଼ା ହୋଇଉଠିଲା । ସେଦିନର ସ୍ୱାଧୀନ ଓ ଦୁର୍ଦ୍ଧର୍ଷ ଓଡ଼ିଶା ଆଫଗାନ, ମୋଗଲ ଓ ମହରହଟ୍ଟାମାନଙ୍କଦ୍ୱାରା ପରେ ପରେ ବିଧ୍ୱସ୍ତ ଓ ଲୁଣ୍ଠିତ ହେବାକୁ ଲାଗିଲା । ଏହିସବୁ କୌଣସି ବୈଦେଶିକ ଶାସନରେ ଓଡ଼ିଆମାନେ ଏକ ବର୍ଷ ହେଲେ ଶାନ୍ତିରେ ନଥିଲେ । ଓଡ଼ିଶା ହୋଇଉଠିଲା ରଣ, ଲୁଣ୍ଠନ ଓ ଦୁର୍ଭିକ୍ଷର ଏକ କରାଳ ଚିତ୍ରପଟ ।

ଶକ୍ତିଶାଳୀ କେନ୍ଦ୍ର ଶାସନ ଅପସୃତ ହୋଇଯାନ୍ତେ, ଓଡ଼ିଶା-ସାମ୍ରାଜ୍ୟ ବର୍ତ୍ତମାନ ନାନା କ୍ଷୁଦ୍ର କ୍ଷୁଦ୍ର ପ୍ରାୟ-ସ୍ୱାଧୀନ ସାଁମନ୍ତ ରାଜ୍ୟରେ ବିଭକ୍ତ ହୋଇପଡ଼ିଲା । ସାମ୍ରାଜ୍ୟଯୁଗର ଉଚ୍ଚ ଅଭିଳାଷ ସବୁ ଉଭେଇଗଲା । ସାମନ୍ତ ରାଜାମାନେ ବର୍ତ୍ତମାନ କେବଳ ପରସ୍ପର ସହିତ ଯୁଦ୍ଧ କଲେ ବା ସମୟ କଟେଇଲେ ହାରେମରେ କିମ୍ବା ଅନୁଗୃହୀତ ଲେଖକମାନଙ୍କଦ୍ୱାରା ନିଜ ଖୁସି ମୁତାବକ କାବ୍ୟକବିତା ଲେଖେଇବାରେ । ଅନ୍ୟର ପୁସ୍ତକରେ ନିଜ ନାମରେ ଭଣିତା ରଖେଇ ଅମରତ୍ୱ ଲାଭର ପିପାସା ବର୍ତ୍ତମାନ ସାମନ୍ତମାନଙ୍କ ଭିତରେ ବ୍ୟାପ୍ତ ହୋଇପଡ଼ିଲା । ସାମନ୍ତ ଓ ସାହିତ୍ୟର ଏ ମିଳନ ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ନଥିଲା ଓ ତାହା ଏକପ୍ରକାର ଭଲ ଥିଲା; କିନ୍ତୁ ଏହି ମିଳନର ବିଷକ୍ରିୟାକୁ ଆମକୁ ଅଳ୍ପ ସମୟ ପରେ ଆଲୋଚ଼ନା କରିବାକୁ ପଡ଼ିବ । ସାମନ୍ତ ଦରବାରମାନଙ୍କରେ ସାଳଂକୃତ ଯୌନଧର୍ମ ଇତିମଧ୍ୟରେ ଧର୍ମୀୟ ସମର୍ଥନ ପାଇଯାଇଥିଲା ନବବୈଷ୍ଣବବାଦର କୃଷ୍ଣଗୋପୀ ସଂସ୍କୃତିରୁ ଓ ଏକ ସୁଖମୟ ବାଣୀବାହନ ପାଇଯାଇଥିଲା ଗୀତଗୋବିନ୍ଦର ଶବ୍ଦତାନ୍ତ୍ରିକ କବିତାରୁ । ଏହି ଉଭୟ ପ୍ରଭାବ ଓଡ଼ିଆ ଚେତନାର ଗଭୀରତମ ସ୍ତରରେ ପ୍ରବେଶ କରି, ଓଡ଼ିଆମାନଙ୍କର ଜାତୀୟ ସାହିତ୍ୟ ଓ ଜାତୀୟ ଚରିତ୍ରର କମ୍ ଅନିଷ୍ଟ କରିନାହାନ୍ତି ।

ଅବଶ୍ୟ ଏହି ଯୁଗର ପ୍ରତ୍ୟେକ କବି ଜଣେ ସାମନ୍ତ ବା ସାମନ୍ତର ପୃଷ୍ଠପୋଷିତ ଜନ ନ ଥିଲେ । ଅନେକେ ସାରଳା ଦାସଙ୍କ ପରି ସାଧାରଣ ନାଗରିକ ଥିଲେ ଓ ସମ୍ଭବତଃ ସେହି କୃଷକକବିଙ୍କର ଐତିହ୍ୟକୁହିଁ ପ୍ରଚଳିତ କରିରଖିଥିଲେ । ସାରଳାଙ୍କ ମହାଭାରତ ଅନୁକରଣରେ ଏହି ସାଧାରଣ ନାଗରିକ-ଲେଖକମାନଙ୍କଦ୍ୱାରାହିଁ ଏହି ଯୁଗରେ ଅଧିକାଂଶ ପୁରାଣ ରଚିତ ହୋଇଥିଲା ।

ପଞ୍ଚସଖା ଯେଉଁ ଆଧ୍ୟାତ୍ମିକ ଓ ଧର୍ମୀୟ ଉତ୍ସାହ ସାହିତ୍ୟରେ ଛାଡ଼ିଯାଇଥିଲେ, ଏକ ଶ୍ରେଣୀର ଲେଖକ ତାକୁ ମଧ୍ୟ ବଞ୍ଚେଇ ରଖିଥିଲେ । ସେମାନଙ୍କ ଭିତରେ ବିଚିତ୍ର-ବ୍ୟକ୍ତିତ୍ୱସଂପନ୍ନ ଅରକ୍ଷିତ ଦାସ ଓ ଭୀମ ଭୋଇ ମୁଖ୍ୟ ।

ଚୈତନ୍ୟ-ପ୍ରସାରିତ ବୈଷ୍ଣବ-ବାଦର ପ୍ରତିକ୍ରିୟା ଏହି ଯୁଗରେହିଁ ଓଡ଼ିଆ ସାହିତ୍ୟରେ ଏକ ଉତ୍ତମ ଫସଲ ରୂପେ ଦେଖାଦେଇଥିଲା । ରାମ ଓ କୃଷ୍ଣଙ୍କର ଜୀବନର ଘଟଣାବଳି ନେଇ, ବିଶେଷ କରି କୃଷ୍ଣଙ୍କର ଅନେକ କାବ୍ୟ ଲେଖାହେଲା । ବୈଷ୍ଣବ-ଭକ୍ତିବାଦର ପ୍ରକୃଷ୍ଟ ପ୍ରକାଶ ରୂପେ ଅଗଣିତ ସଙ୍ଗୀତ ମଧ୍ୟ ଏହି ଯୁଗରେ ଫୁଟିଉଠିଥିଲା; ଯାହାର ମଧୁରତମ ପରିଣତି ଆମେ ପାଇବା ଗୋପାଳକୃଷ୍ଣଙ୍କ ସହଜ-ସୁନ୍ଦର ବାଣୀରେ ।

ମୋଟଉପରେ, ଏହି ଯୁଗ ମୌଳିକତା ପାଇଁ ସେତେ ସମ୍ମାନନୀୟ ନୁହେଁ; ଯେତେ ଯାହା ଥିଲା ପୂର୍ବରୁ ଆରବ୍ଧ, ସେସବୁର ପ୍ରସାରଣ ପାଇଁ । ପୁରାଣକାରମାନେ ସାରଳା ଓ ପଞ୍ଚସଖାଙ୍କ କୃତିତ୍ୱକୁ ଓ ଆଳଙ୍କାରିକ କବିମାନେ ପୂର୍ବର ଚଉତିଶାମାନଙ୍କୁ ହିଁ ସଂପ୍ରସାରିତ କରିଚାଲିଲେ । ଅରକ୍ଷିତ ଦାସ, ଭୀମ ଭୋଇ ପ୍ରଭୃତି ଆତ୍ମ-ଜ୍ଞାନୀ କବିମାନେ ବୌଦ୍ଧ ଚର୍ଯ୍ୟାପଦରୁ ଆରମ୍ଭ ହୋଇଥିବା ଓଡ଼ିଆ ସାହିତ୍ୟର ନିଜସ୍ୱ, ପୁରାତନ ଐତିହ୍ୟକୁହିଁ ପ୍ରବହମାନ କରିରଖିଲେ । ତେଣୁ ଏହି ଯୁଗକୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ସଂପ୍ରସାରଣ ଯୁଗହିଁ କୁହାଯିବ । ଏହି ଯୁଗ ଶେଷ ହୋଇ ଏକ ସମ୍ପୂର୍ଣ୍ଣ ନୂତନ ଯୁଗ ଦେଖାଦେବ ଓଡ଼ିଶାରେ ବ୍ରିଟିଶ୍ ରାଜତ୍ୱ ପ୍ରତିଷ୍ଠିତ ହେବାର ପଚାଶ ବର୍ଷ ପରେ ।

କିନ୍ତୁ ଏ ଯୁଗରେ ମଧ୍ୟ ଆମେ ଏପରି ଏକ ବିଚକ୍ଷଣ ଲେଖକଙ୍କୁ ଭେଟିବା; ଯାହାଙ୍କୁ ଆମେ କୌଣସି ଶ୍ରେଣୀରେ ପକାଇପାରିବା ନାହିଁ ଓ ଯିଏ ପ୍ରାଚୀନକାଳର ଅନ୍ୟ ସକଳ ଓଡ଼ିଆ ଲେଖକଙ୍କଠାରୁ ଭିନ୍ନ; ସେ ହେଉଛନ୍ତି 'ସମରତରଙ୍ଗ'ର ଲେଖକ ବ୍ରଜନାଥ ବଡ଼ଜେନା । ବଡ଼ଜେନେ ତାଙ୍କ ନିଜ କାଳରେ ନିଜେଇ ନିଜର ସ୍ୱତନ୍ତ୍ର ଏକ ଶ୍ରେଣୀ ବା ତାଙ୍କୁ ଆମେ କହିପାରୁ ଯେ, ସେ ବହୁ ଆଗରୁ ଜନ୍ମହୋଇପଡ଼ିଥିବା ଏକ 'ମଡ଼ର୍ଣ୍ଣ ବା ଆଧୁନିକ' ।

ତେଣୁ ଆମେ ଏହି ଯୁଗର ଓଡ଼ିଆ ସାହିତ୍ୟକୁ ନିମ୍ନଲିଖିତ ଶିରୋନାମା ତଳେ ବିଚାର କଲେ ସୁବିଧା ହେବ ବୋଲି ଆଶାକରେ –

(୧) ପୁରାଣାବଳି, (୨) ଅଳଂକୃତ କାବ୍ୟ-କବିତା ଓ ଉପେନ୍ଦ୍ର ଭଞ୍ଜ, (୩) ଅଳଂକୃତ ବୈଷ୍ଣବ-କାବ୍ୟ ଓ ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି, ଦେବଦୁର୍ଲଭ ଓ ଭୂପତି ପଣ୍ଡିତ, (୪) ବୈଷ୍ଣବ ସଙ୍ଗୀତର କବିଗଣ – କବିସୂର୍ଯ୍ୟ, ଗୋପାଳକୃଷ୍ଣ ଓ ବନମାଳୀ, (୫) ଆତ୍ମଜ୍ଞାନୀ କବିଗଣ – ଅରକ୍ଷିତ ଦାସ ଓ ଭୀମ ଭୋଇ, (୬) ବ୍ରଜନାଥ ବଡ଼ଜେନା, (୭) କେତେକ ନବାବିଷ୍କୃତ ପ୍ରାଚୀନ ପୋଥି, (୮) ଶେଷ ବାଣୀ ।

**ଓଡ଼ିଆ ସାହିତ୍ୟର ପୁରାଣାବଳି –**

ସଂସ୍କୃତ ସାହିତ୍ୟରେ ଥିବା ଅଧିକାଂଶ ପୁରାଣ ଓଡ଼ିଆରେ ଅନୁବାଦ ହୋଇଯାଇଛି । ସେଗୁଡ଼ିକର ଅଧିକାଂଶ ପୁଣି ଏଇ ଯୁଗରେ ଲେଖାଯାଇଥିଲା; କିନ୍ତୁ କେତେକ ଆଦୌ

'ପୁରାଣ' ନୁହନ୍ତି, ଅତି ଅର୍ବାଚୀନ । ଓଡ଼ିଆ ଜନତା ଭିତରେ ପୁରାଣ ପ୍ରତି ଆଗ୍ରହ ଲକ୍ଷ୍ୟ କରି ଏକାଧିକ ଅବିବେକ ପ୍ରକାଶକ ଏଇ ଭିତରେ ହିନ୍ଦୀ, ବଙ୍ଗଳା ଇତ୍ୟାଦିରୁ ବହୁ ପୁରାଣ ଅନୁବାଦ କରାଇ ଛାପିଚାଲିଛନ୍ତି । ସେ ଯାହାହେଉ, ଓଡ଼ିଆ ଭାଷାରେ ପୁରାଣଗୁଡ଼ିକ ଯେ ପ୍ରକୃଷ୍ଟ ସାମାଜିକ ସାହିତ୍ୟ ସେଥିରେ ଦ୍ୱିମତ ନଥାଇପାରେ । ଜଗନ୍ନାଥଙ୍କ ଭାଗବତକୁ ସ୍ମରଣ କଲେ, ଆମେ ସହଜରେ ହୃଦୟଙ୍ଗମ କରିପାରିବା, ଓଡ଼ିଶାରେ ଜନସାଧାରଣଙ୍କ ଭିତରେ ସାକ୍ଷରତା ପାଇଁ ସହଜ ପ୍ରେରଣା ଭାବରେ ଓ ସମାଜରେ ନୈତିକ ଚେତନାକୁ ଜାଗ୍ରତ କରି ରଖିବା ଦିଗରେ, ଓଡ଼ିଆ ପୁରାଣଗୁଡ଼ିକ କିପରି ଏକାଧାରରେ ଉତ୍କୃଷ୍ଟ ଉପାୟ ଓ ଉପାଦାନ ! ପୁରାଣଗୁଡ଼ିକ ସହଜ ଭାଷା ଓ ସାବଲୀଳ ପଦ୍ୟରେ ଲେଖା । ପୁରାଣ ସବୁ ଦେବଦେବୀଙ୍କର ଚରିତ୍ର ବର୍ଣ୍ଣନା କରନ୍ତି; କିନ୍ତୁ ସାଧାରଣ ପରିଚିତ ନରନାରୀର ବେଶରେ । ପୁଣି ପୁରାଣସବୁ ସେହି ଦେବଦେବୀଙ୍କ ମୁହଁରେ ସାଧାରଣ ନରନାରୀର ସାଧାରଣ ସମସ୍ୟାଗୁଡ଼ିକର ଚର୍ଚ୍ଚା ହିଁ କରିଥାନ୍ତି । ଶେଷରେ ପୁରାଣଗୁଡ଼ିକ ଅଧର୍ମକୁ ପରାଜୟ ଓ ଧର୍ମକୁ ଜୟ ଦେଇଥାନ୍ତି । ଏହି ସବୁ କାରଣରୁ ଗ୍ରାମ ଓ ନଗରରେ ସରଳ ଓଡ଼ିଆ ଜନତା ପକ୍ଷରେ ଏହି ପୁରାଣ ହୋଇଉଠିଛି ଉଭୟ ଶିକ୍ଷା ଓ ବିନୋଦନର ଏକ ଶାଶ୍ୱତ ଉତ୍ସ । ସରଳ ଓଡ଼ିଆର ମାନସିକ ସଂସାରରେ ଗାନ୍ଧି-ନେହେରୁଙ୍କ ପରି ଜାତୀୟ ବୀରମାନଙ୍କ ଅପେକ୍ଷା, ପୁରାଣର ରାବଣ ହନୁମାନ୍ ଅଧିକ ନିକଟତର, ଅଧିକ ପରିଚିତ ଓ ଅଧିକ ଜୀବନ୍ତ । ସରଳ କୃଷକ ଓ ନଗରବାସୀ ଦୈନନ୍ଦିନ ଜୀବନର ରୂଢ଼ ବାସ୍ତବତା ପରିବର୍ତ୍ତରେ ଏକ କଳ୍ପଲୋକ ଚାହେଁ; ଯେଉଁଠି ଅସମ୍ଭବ ଘଟଣାମାନହିଁ ଅବାଧରେ ଘଟିଚାଲିଥିବ; ଯାହା ତାଙ୍କର ଦୈନନ୍ଦିନ ଜୀବନରେ ଘଟିନଥାଏ ବା ପାରେନା । ବିଶ୍ୱାସ ଓ ବିଚାରକୁ ଜାଣି ଜାଣି ହଜାଇବାରେହିଁ ତାର ଏକ ପରମ ମାନସିକ ତୃପ୍ତି । ପୁରାଣସବୁ ସେମାନଙ୍କୁ ଏହି ମାନସିକ ତୃପ୍ତି, ଯଥେଷ୍ଟରୁ ଅଧିକ ଦେଇ ମୁଗ୍ଧ କରିରଖନ୍ତି ।

ଓଡ଼ିଆ ପୁରାଣକାରମାନଙ୍କ ଭିତରେ ତିନୋଟି ନାମ ଆମ ଆଗରେ ମୁଖ୍ୟ ହୋଇ ଦେଖାଯାନ୍ତି । ସେ ହେଉଛନ୍ତି, ମହାଦେବ ଦାସ (୧୮ଶ ଶତାବ୍ଦୀ), ପୀତାମ୍ବର ଦାସ ଓ କୃଷ୍ଣଚନ୍ଦ୍ର ପଟ୍ଟନାୟକ । ମହାଦେବ ଦାସଙ୍କ ପୁରାଣ-ସୃଷ୍ଟି ପ୍ରଚୁର । ମାର୍କଣ୍ଡେୟ ପୁରାଣ, ବିଷ୍ଣୁକେଶରୀ ପୁରାଣ, ପଦ୍ମପୁରାଣ, ପୁଣି କାର୍ତ୍ତିକ ମାହାତ୍ମ୍ୟ, ବୈଶାଖ ମାହାତ୍ମ୍ୟ, ମାଘ ମାହାତ୍ମ୍ୟ, ଆଷାଢ଼ ମାହାତ୍ମ୍ୟ, ଦ୍ୱାଦଶୀ ମାହାତ୍ମ୍ୟ ଓ ନୀଳାଦ୍ରି ମହୋଦୟ ଇତ୍ୟାଦି ସେହି ଶ୍ରେଣିକ ବହୁ ଗ୍ରନ୍ଥର ଲେଖକ ହେଉଛନ୍ତି ମହାଦେବ ଦାସ । କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କର ବାମନ ପୁରାଣ, କଳ୍କି ପୁରାଣ ଆଦି ମହାଦେବ ବା ପୀତାମ୍ବର ଦାସଙ୍କ ରଚନାବଳି ପରି ସେତେ ଜନପ୍ରିୟ ହୋଇପାରିନାହାନ୍ତି । ସେ ଯାହାହେଉ ଏ ସକଳ ଗ୍ରନ୍ଥର ଆଲୋଚନା ଏଠାରେ ସମ୍ଭବ ନୁହେଁ ।

**ବରେଣ୍ୟ ପୌରାଣିକ ପୀତାମ୍ବର ଦାସ –**

କିନ୍ତୁ ଓଡ଼ିଆ ସାହିତ୍ୟରେ ଦେଖାଦେଇଥିବା ସବୁ ପୁରାଣକାରମାନଙ୍କ ଭିତରେ, ଗୋଟିଏ ମାତ୍ର ପୁରାଣ, ନୃସିଂହପୁରାଣର ଲେଖକ ପୀତାମ୍ବର ଦାସ (ଜନ୍ମ ୧୭୩୭)

ସମସ୍ତଙ୍କଠାରୁ ବାରି ହୋଇ ଯାଉଛନ୍ତି । ପୀତାମ୍ବରଙ୍କ ଓଡ଼ିଆ ନୃସିଂହ ପୁରାଣ ଏକ ମୌଳିକ ରଚନା ବୋଲି ମନେହୁଏ । ଏପରି ଏକ ଉପାଖ୍ୟାନ ସଂସ୍କୃତ ସାହିତ୍ୟରେ ଥିବାର ଜଣାଯାଇନାହିଁ । ଅବଶ୍ୟ, ଓଡ଼ିଆରେ ପୁରାଣ-ସାହିତ୍ୟ ନେଇ ବିଚାରଣୀୟ ଆଲୋଚନା ଏପର୍ଯ୍ୟନ୍ତ ବିଶେଷ ଭାବରେ ହୋଇନାହିଁ । ତେବେ, ନୃସିଂହଚରିତ କହିଲେ ଆମେ ସାଧାରଣତଃ ବୁଝୁ ପ୍ରହ୍ଲାଦ-ହିରଣ୍ୟକଶିପୁ ଉପାଖ୍ୟାନ । ମହାଦେବ ଦାସ ଓ ଅନ୍ୟ ଲେଖକଙ୍କର ରଚନାରେ 'ବିଷ୍ଣୁକେଶରୀ' ପୁରାଣ ନାମରେ ଏହି ଉପାଖ୍ୟାନ ଓଡ଼ିଆରେ ସୁଲଭ; କିନ୍ତୁ ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ ଆମେ ବିଷ୍ଣୁ ଓ ତାଙ୍କର ଶୟନ-ସର୍ପ ଶେଷଙ୍କର ଅବତାର ଭାବରେ ଶେଷ ଓ ନୃସିଂହ ନାମରେ ଦୁଇ ଭାଇଙ୍କର କୀର୍ତ୍ତିକଳାପ ଦେଖିବାକୁ ପାଉଁ । ବଦ୍ରିକାର ଧାର୍ମିକ ବ୍ରାହ୍ମଣ ରାଜା କୃଷ୍ଣବଲ୍ଲଭଙ୍କ ପୁତ୍ର ଭାବରେ ସେମାନେ ଜନ୍ମଲାଭ କରିଥିଲେ । ସ୍ୱର୍ଗ ଓ ପୃଥିବୀକୁ ଆତଙ୍କିତ କରି ରଖିଥିବା ଦୁଇ ଅସୁର-ଭାଇ ମୁର ଓ ଦାରୁଣଙ୍କୁ ବିନାଶ କରି ସୃଷ୍ଟିକୁ ଆତଙ୍କମୁକ୍ତ କରିବା ହେଲା ସେ ଦୁଇଭାଇଙ୍କର ମୁଖ୍ୟ କୀର୍ତ୍ତି । ରାମାୟଣରେ ରାମଭକ୍ତ ହନୁମାନ୍ ପରି ପୀତାମ୍ବରଙ୍କ ନୃସିଂହ ପୁରାଣରେ ବିଷ୍ଣୁଙ୍କର ଭୃତ୍ୟ ଓ ବାହନ ଭାବରେ ଗରୁଡ଼ ଏକ ଅଦ୍ଭୁତକର୍ମା ଉପନାୟକ ଭାବରେ ଦେଖାଦେଇଛି । ପୁଣି ମହାଭାରତ ପରି ଏ ଗ୍ରନ୍ଥରେ ମଧ୍ୟ ଧନୁର୍ବିଦ୍ୟାର ଜଟିଳ କୌଶଳ ଦେଖାଇ ସାଗରପତି ବରୁଣଙ୍କ ସୁନ୍ଦରୀ ଜେମା ଲକ୍ଷ୍ମୀଙ୍କର ପାଣିଗ୍ରହଣର ବ୍ୟବସ୍ଥା ହୋଇଛି । ରାଜକୁମାର ନୃସିଂହ ସେହି ପ୍ରତିଯୋଗିତାରେ ବିଜୟୀ ହୋଇ ଲକ୍ଷ୍ମୀଙ୍କୁ ବିବାହ କରିଛନ୍ତି । କବି ପୀତାମ୍ବର ଏ କଳ୍ପନା ବୋଧହୁଏ ପୁରୀ ଜଗନ୍ନାଥ ମନ୍ଦିରର ଅବସ୍ଥାନରୁ ପାଇଲେ (ରଚନାକାଳ ୧୭୬୯) । କାରଣ, ଜଗନ୍ନାଥ ମନ୍ଦିର ପଛପଟେ ଲକ୍ଷ୍ମୀଙ୍କ ମନ୍ଦିର ଓ ମାତ୍ର ଅର୍ଦ୍ଧକ୍ରୋଶ ଦୂରରେ ଲକ୍ଷ୍ମୀଠାକୁରାଣୀଙ୍କ ବାପଘର, ବରୁଣ-ରାଜ୍ୟ ସମୁଦ୍ର ।

ମୋଟଉପରେ ନୃସିଂହ ପୁରାଣକୁ ଓଡ଼ିଆ ଭାଷାରେ ଏକ ଅନନ୍ୟସାଧାରଣ ପୁସ୍ତକ ରୂପେ ନିଆଯିବାର କଥା । ଏକେ ଉପାଖ୍ୟାନଟି ଯେତେଦୂର ସମ୍ଭବ ମୌଳିକ, ଦ୍ୱିତୀୟରେ କବି ପୀତାମ୍ବର ଦାସ ଏଥିରେ ଚରିତ୍ରଚିତ୍ରଣ, କଳ୍ପନା-ବିଳାସ ଓ ବାସ୍ତବଜ୍ଞାନ ଦେଇ ଗ୍ରନ୍ଥଟିକୁ ମନୋଜ୍ଞ ଭାବରେ ସମୃଦ୍ଧ କରି ଠିଆକରାଇଛନ୍ତି । କବିଙ୍କ ଲିଖନ-ଚାତୁରୀ ଯୋଗେ ନାରୀର ନିନ୍ଦା ଓ ପ୍ରଶଂସା ଉପଭୋଗ୍ୟ ହୋଇଉଠିଛି । ପୁରାଣମାନଙ୍କରେ ସାଧାରଣତଃ ତିନିଗୋଟି ମୁଖ୍ୟ ଉପାଦାନ ଦେଖିବାକୁ ମିଳେ; ଯଥା – (୧) ଯୁଦ୍ଧ-ବର୍ଣ୍ଣନା, (୨) ନରନାରୀର ସଂବନ୍ଧ, (୩) ସାମାଜିକ ବିଧି ଓ ନିଷେଧ ଆଦିର ପ୍ରଚାର । ପୀତାମ୍ବରଙ୍କ ନୃସିଂହ ପୁରାଣରେ ଏହି ତିନି ଉପାଦାନଯାକ ପ୍ରଚୁର ପରିମାଣରେ ଭର୍ତ୍ତି ହୋଇଛି । ଏ ଗ୍ରନ୍ଥରେ ସାମାଜିକ ନୈତିକତାସବୁର ବର୍ଣ୍ଣନାରେ ଏକ ସୂକ୍ଷ୍ମ ଦୃଷ୍ଟି ପର୍ଯ୍ୟବେକ୍ଷକ ଓ ଏକ ଉଚ୍ଚ କଳ୍ପନାବନ୍ତ ଦୂରଦ୍ରଷ୍ଟା ଜ୍ଞାନୀର ପରିଚୟ ଆମେ ପାଉଁ । ଏ ପୁରାଣରେ ସୁନ୍ଦରୀ ତରୁଣୀ ଅପ୍ସରା ମେନକାର ତରୁଣ ତପସ୍ୱୀ ଶୁକଙ୍କୁ ନିଜର ଯୌବନ ଯାଚିବା ଓ ଶୁକଙ୍କର ତାହା ପ୍ରତ୍ୟାଖ୍ୟାନ, ମନୁ ବ୍ରାହ୍ମଣର ଅହଙ୍କାର ଭଙ୍ଗ, ପୁଣି ଜୀବ

ଓ ପରମର କଥୋପକଥନ ଆଦି ଅଂଶଗୁଡ଼ିକ ଅବିସ୍ମରଣୀୟ । ମୁର ଓ ଦାରୁଣ ବିପକ୍ଷରେ ନୃସିଂହ ଓ ଶେଷଙ୍କର ଦୀର୍ଘ ସଂଗ୍ରାମର ଏକ ସଙ୍କଟ କାଳରେ କବି ପୀତାମ୍ବର ଦଳେ ନାରୀ-ସୈନିକଙ୍କୁ ଆଣି ଠିଆକରେଇଛନ୍ତି । ଶେଷ ଓ ନୃସିଂହ ଯୌନସୁଖ-ପ୍ରାପ୍ତ; ତେଣୁ ଅପେକ୍ଷାକୃତ ନିର୍ବୀର୍ଯ୍ୟ । ଗରୁଡ଼ ପୂର୍ଣ୍ଣ ବ୍ରହ୍ମଚାରୀ । ସେହିହିଁ ତେଣୁ ସେହି ଚିତ୍ରାଙ୍ଗଦା ବାହିନୀକୁ ପରାସ୍ତ କରିପାରିଥିଲେ ।

ନୃସିଂହ ପୁରାଣର ଦ୍ୱିତୀୟ ପୁସ୍ତକରେ ମନୁ ବ୍ରାହ୍ମଣର ଯେଉଁ ଗଳ୍ପ ପୀତାମ୍ବର ଦାସେ ଖଞ୍ଜିଛନ୍ତି, ତାକୁ ପାଠକବର୍ଗ ଶ୍ରଦ୍ଧା ଦେଖାଇବେ ବୋଲି ଆଶାକରେ ।

ମନୁ ନାମକ ଏକ ବ୍ରାହ୍ମଣ ଥିଲା । ବିଷ୍ଣୁଙ୍କ ପ୍ରତି ଭକ୍ତିଫଳରେ ଘୋର ଦାରିଦ୍ର୍ୟରୁ ସେ କ୍ରମେ ବିତ୍ତ ଓ ଯଶର ସ୍ତରକୁ ଉଠିଲା । କବିଙ୍କ ଭାଷାରେ –

"ପଦାର୍ଥ ରଖିବାକୁ ନ ପାଇ ଗୃହେ ଜାଗା
କାହିଁ କେତେ ଦ୍ରବ୍ୟ ରହିଥାଏ ହୋଇ ଫୁଙ୍ଗା ।"

ତାର ଘରର ବର୍ଣ୍ଣନା ଏହିପରି –

"ଗୃହ ମହିମା କହିବା ତୁମ୍ଭ ଆଗେ ଶୁଣ,
ସୁବର୍ଣ୍ଣରେ ଖୁମ୍ବ ସବୁ ହୋଇଛି ନିର୍ମାଣ ।
ସୁବର୍ଣ୍ଣର ରୁଅ ବତା ସୁନା ଶ୍ରେଣୀ କରି,
ବାନ୍ଧିଛି ଚାରିପାଖରେ ସୁନାର ପାଚେରି ।
ଗୃହକୁ ଉଠିଯିବାକୁ ସୁବର୍ଣ୍ଣ ପାବଛ,
ଉପରେ ଚାନ୍ଦୁଆ ଅଛି ସୁବର୍ଣ୍ଣ ନିଘଣ୍ଟ ।
ସୁବର୍ଣ୍ଣ ପୀଢ଼ ଉପରେ ବସେ ମହାଜନ,
ସୁବର୍ଣ୍ଣ ଥାଳି ଗିନାରେ କରଇ ଭୋଜନ ।"

ଧନବନ୍ତ ଗୃହସ୍ୱାମୀର ଏପରି ଘରେ ପୁଣି ସୁସ୍ଥ, ସୁନ୍ଦର ପାଞ୍ଚ ପାଞ୍ଚ ପୁଅ, ସେମାନଙ୍କର ବୋହୂ ଓ ପୁତ୍ର କନ୍ୟା ଭର୍ତ୍ତି ହୋଇଛନ୍ତି । ଦିନେ କିନ୍ତୁ ବ୍ରାହ୍ମଣ ଅନ୍ଧାରରେ କଠାଉ ମାଡ଼ି ଯାଉ ଯାଉ ଏକ ନବଜାତ ବାଛୁରୀର ବେକରେ ତା ଗୋଡ଼ଟା ପଡ଼ିଗଲା ଓ ବାଛୁରୀଟି ସଙ୍ଗେ ସଙ୍ଗେ ପ୍ରାଣତ୍ୟାଗକଲା । ବ୍ରାହ୍ମଣ ସେହି ସ୍ଥାନରେ ସଙ୍ଗେ ସଙ୍ଗେ ଜାନୁପାତ କରି ବିଷ୍ଣୁଙ୍କୁ ପ୍ରାର୍ଥନା କଲା; ଅଜ୍ଞାନରେ ଘଟିତ ଗୋହତ୍ୟା ପାତକରୁ ତାକୁ ମୁକ୍ତ କରିବାକୁ । ତା'ପରେ ବ୍ରାହ୍ମଣର ଆଉ କିଛି ଅନିଷ୍ଟ ହେବାର ଦେଖାଗଲାନାହିଁ ।

ଏହି ବିସ୍ମୟକର କ୍ଷମାର ଖବର କିନ୍ତୁ ସ୍ୱର୍ଗରେ ପହଞ୍ଚିଲା । ଦେବତାମାନେ ପରସ୍ପର ମୁଖକୁ ଚାହାଁଚାହିଁ ହେଲେ । ଜଗତରେ ଏକ ପାପ ଘଟିବ, ଅଥଚ କେହି ଦୁଃଖ ଭୋଗ କରିବେ ନାହିଁ, କେହି ଦଣ୍ଡିତ ହେବେ ନାହିଁ, ଏ କିପରି କଥା ? ସୃଷ୍ଟି ତେବେ ରହିବ ତ ? କିନ୍ତୁ ତେଣେ ଦେଖାଗଲା ଯେ, ବିଷ୍ଣୁ ହଠାତ୍ ବାଧକାରେ ପଡ଼ିଲେ ଓ ବାଧକା ନଛାଡ଼ି ଆସ୍ତେ ଆସ୍ତେ ଗୁରୁତର ହେଲା । ସେ କ୍ରମେ ରକ୍ତହୀନ ଓ ଦୁର୍ବଳ ହୋଇପଡ଼ିଲେ । ଶେଷରେ ସ୍ୱର୍ଗ-ବୈଦ୍ୟ ଅଶ୍ୱିନୀକୁମାରଙ୍କୁ ଡକାହେଲା । ସେ ପରୀକ୍ଷା

କରି କହିଲେ ଯେ, ବିଷ୍ଣୁଙ୍କ ଶରୀର ଭିତରେ କୌଣସି ଗୋଳମାଳ ନାହିଁ । ଗୋ-ଘାତକ ବ୍ରାହ୍ମଣକୁ କ୍ଷମା ଦେଇଦେବାରୁ ସେ ପାପ ବିଷ୍ଣୁଙ୍କ ଦେହକୁ ଆସିବା ଫଳରେହିଁ ବିଷ୍ଣୁଙ୍କ ବାଧା ଘଟିଛି । ଏହାର ସତ୍ୟ ମିଥ୍ୟା ଜାଣିବା ପାଇଁ ବିଷ୍ଣୁ ଭିକ୍ଷାକାରୀ ବ୍ରାହ୍ମଣ ବେଶରେ ପୃଥିବୀକୁ ଆସିଲେ ଓ ମନୁ ବ୍ରାହ୍ମଣକୁ ଭେଟିଲେ । ବିଷ୍ଣୁଙ୍କ ପ୍ରତ୍ୟେକ ପ୍ରଶ୍ନରେ ମନୁ ବ୍ରାହ୍ମଣ ଉତ୍ତର ଦେଲା– ଏ ଘର ମୋର, ଏ ସମ୍ପତ୍ତି ମୋର, ଏ ପୁତ୍ର-କନ୍ୟା ମୋର, ଏ ସ୍ତ୍ରୀ ମୋର ଇତ୍ୟାଦି ।

ଅହମିକାଗ୍ରସ୍ତ ବ୍ରାହ୍ମଣକୁ ଶିକ୍ଷା ଦେବାପାଇଁ ବର୍ତ୍ତମାନ ଛଦ୍ମବେଶୀ ବିଷ୍ଣୁ ପଚାରିଲେ – ସବୁ ତ ତମର, ତେବେ ଗୋହତ୍ୟାଜନିତ ପାପଟା ଅନ୍ୟର ହେବ କିପରି ?

ଯା'ପରେ ବ୍ୟାଧି ବିଷ୍ଣୁଙ୍କ ଦେହରୁ ବ୍ରାହ୍ମଣ ଦେହକୁ ଆସିଲା ।

ନୃସିଂହ ପୁରାଣର ପ୍ରଥମ ରତ୍ନାକରରେହିଁ (କବି ନିଜ ପୁରାଣର ପ୍ରତି ଖଣ୍ଡକୁ 'ରତ୍ନାକର' କହିଛନ୍ତି) ଶୁକ-ପ୍ରଲୋଭନ ବର୍ଣ୍ଣିତ । ଶୁକ ଓ ମେନକାର ଚମତ୍କାର କଥୋପକଥନ ଦେଇ ଆମ୍ଭେମାନେ ଓଡ଼ିଆ ସାହିତ୍ୟରେ ପ୍ରଥମ କରି ଚିରନ୍ତନୀ ନାରୀର ପରିଚୟ ପାଉଁ । ତରୁଣୀ ମେନକା ତା'ର ସମର୍ପିତ ସୌନ୍ଦର୍ଯ୍ୟ ଓ ଯୌବନକୁ ଗ୍ରହଣ ନ କରିବାରୁ, ବ୍ରହ୍ମଚାରୀ ଶୁକଙ୍କର ପୌରୁଷକୁ ଧିକ୍କାର କଲା । ତପୋବନ୍ତ ଶୁକ ସେ ଧିକ୍କାରରେ ଉତ୍ତର ଦେଲେ –

''ଏ ଦେହ ଗୋଟି ଯେ ମଳମୂତ୍ରର ଆଧାର
ପୂଯନାଳ, ସ୍ୱେଦନୀର, ଆବର ରୁଧିର ।
ହାଡ଼, ନାଡ଼, ମାଂସ, କୃମି ଅଙ୍ଗଯାକ ଜଡ଼ି,
ଚର୍ମ ଢାଙ୍କୁଣୀ ରଖିଛି ଉପରେ ସଜାଡ଼ି ।
ଜାଣିଶୁଣି ଏ ଦେହକୁ କରୁଥାନ୍ତି ସ୍ନେହ,
ନାନା ଯୋନିରେ ଜନମି ହେଉଥାନ୍ତି ମୋହ ।
'ମୋହର ରମଣୀ' ବୋଲି କରନ୍ତି ସେ କୋଳ,
ମାୟା ସଂସାରରେ ପଡ଼ି ହୁଅନ୍ତି ଦୁର୍ବଳ ।
ମରନ୍ତି ମୂତ୍ର ପୁରୀଷ ଦ୍ୱାରେ ଘାଣ୍ଟି ହୋଇ,
ନିରନ୍ତର ପ୍ରାଣୀ ମୋହ ହୋଇଥାନ୍ତି ତହିଁ ।
ଏକେ ତ ଦୁର୍ଗନ୍ଧ ଦେହ, ଦୁର୍ଗନ୍ଧରେ ମିଳି,
ମୁଁ ଏଥିକୁ ଯୋଗ୍ୟ ନୁହେଁ, ବେଗେ ଯାଅ ଚଳି ।''

ଏଥିକି ନାରୀ ମେନକାର ଜବାବ ଏହି –

''ଦେଖ ମୋହର ଶରୀରେ ଅମୃତ ପୂରିଛି
ଦେଖିଲେ ଯୁବାପୁରୁଷ ନ ପାରିବେ ମୂର୍ଚ୍ଛି ।
ଭୋ ମୁନି ସ୍ତିରୀମାନଙ୍କୁ ନିନ୍ଦିଲ ବହୁତ,
ହେଉଛି ସଂସାର ସ୍ତିରୀ ଘେନି ଆତଯାତ ।

ସ୍ତିରୀ ନଥିଲା ପୁଂସକୁ କାହିଁରେ ନ ଗଣି,
ସ୍ତିରୀ ଲାଗି ସଂସାରରେ ଜନମନ୍ତି ପ୍ରାଣୀ ।
ସ୍ତିରୀକି ଛାଡ଼ି କେହୁ ଅଛଇ ସଂସାରେ,
ସ୍ତିରୀମାନେ ସୁଖଦାତା ଅଟନ୍ତି ପୁଂସରେ ।
ସ୍ତିରୀ ଗୃହଲକ୍ଷ୍ମୀ ପୁଣି କରେ କୁଳୋଦ୍ଧାର,
ପିତୃଏ କରନ୍ତି ସ୍ତିରୀ ଘେନି ପିଣ୍ଡାହାର ।
ସ୍ତିରୀ ଘେନି ପୁରୁଷଟି ବୋଲାଏ ଗୃହସ୍ଥ,
ସ୍ତିରୀ ଯୋଗୁ ପୁତ୍ରପୌତ୍ରୀ ହୁଅନ୍ତି ବିଖ୍ୟାତ ।
ଉଜ୍ଜ୍ୱଳ ହୁଅଇ ସ୍ତିରୀ ଲାଗି କୁଳଯାକ,
ପୁରୁଷ ଅଟଇ ସ୍ତିରୀ ଘେନି ବଡ଼ଲୋକ ।
ଆଦ୍ୟରେ ସ୍ତିରୀ ଜନମ କଲା ପରମେଷ୍ଠୀ,
ପଛେ ସିନା ରଚିଲା ଏ ଚରାଚର ସୃଷ୍ଟି ।

× × × ×

ଆମ୍ଭେ ସ୍ତିରୀଜାତି ଯେ ସବୁକାଳେ ଥାଉ,
କାମନାରେ ଥିବା ଯୋଗୁ କାମିନୀ ବୋଲାଉ ।

× × × ×

ପଞ୍ଚଶର ସ୍ତିରୀଙ୍କର ନେତ୍ରେ ପରକାଶି,
ଚାହାନ୍ତେ କାମ ପୀଡ଼ଇ ପୁରୁଷକୁ ଆସି ।
ସ୍ତିରୀ ଏହି ସଂସାରରେ ଅଟଇ ଯେ ମୂଳ,
କେ ଅବା ସ୍ତିରୀମାନଙ୍କୁ ନ କରିଛି କୋଳ ।
ସ୍ତିରୀ ନଥିଲେ ହୁଅନ୍ତ ତୁମ୍ଭେ କାହୁଁ ଜନ୍ମ,
ନିନ୍ଦା ନ କର ସ୍ତିରୀଙ୍କୁ ଏଣୁ ଶୁକ ବ୍ରହ୍ମ ।''

ଜ୍ଞାନୀ, ତପସିଦ୍ଧ ଚିର-ବ୍ରହ୍ମଚାରୀ ଶୁକ ଏହାର ଏକ ଧୀର ମନୋହର ଉତ୍ତର ଦେଲେ—

''ମେନକା କହିବା ବାଣୀ ଶୁଣି ଶୁକଦେବେ,
ବୋଇଲେ ବାଳି, କହିବା ତୋତେ ଶୁଣ ଏବେ ।
ତୁମ୍ଭେ ତ ସକଳ ନାରୀ ଅଟ ଏକ ମୂର୍ତ୍ତି,
ମୁହିଁ ତ ତୁମ୍ଭ ଗର୍ଭରୁ ହୋଇଛି ଉତ୍ପତ୍ତି ।
ବୁଝିଲେ ମାତା ପରି ତୁ ହେଲୁ ଆସି ମୋର,
ମାତାକୁ ପୁତ୍ର କେସନ କରିବ ଶୃଙ୍ଗାର ।
ମୁହିଁ ତ କାହାର ପୁଣି ନୁହଇଁ ବଇରି,
ତୋତେ କିମ୍ପା ପେଷିଲେ ମୋ ପାଶେ ଗିରିଧାରୀ ?

ତୁହି ଏବେ ମାତା ଏଥୁ ବହନ ଗୋ ଚଳ,
ମୋର ମନ ହରିନାମ ଭଜନେ କେବଳ ।''

ସପ୍ତମ ରତ୍ନାକରରେ କବି ଗଭୀର ରହସ୍ୟମୟ ତତ୍ତ୍ୱସବୁ ଅବୋଧ ଭାଷାରେ ପ୍ରକାଶ କରିଛନ୍ତି; ଯାହା ଏପର୍ଯ୍ୟନ୍ତ ଏ ଦେଶରେ ଆଲୋଚ଼ିତ ହୋଇନାହିଁ । ମୋ ନିକଟରେ ସେ ସବୁ ଏକାନ୍ତ ଦୁର୍ଭେଦ୍ୟ । ତେବେ, ପୀତାମ୍ବରଙ୍କ ଗ୍ରନ୍ଥରେ ଏସବୁ ଏକ ଦୀର୍ଘ ଦାର୍ଶନିକ ବକ୍ତୃତାର ଏକ ସାମାନ୍ୟ ଅଂଶ ମାତ୍ର । ନିମ୍ନରେ ଏକ ନମୁନା ଦେଲି –

''ହଳ ବୁଲୁଥିଲା, ହଳିଆ ନ ଥିଲା ଇଚ୍ଛାରେ ହେଉଛି ଚାଷ,
ପୁଅ ମଲେ ବୋହୂ ବିଧବା ନୁହଇ ଏକଥା ବଡ଼ ସନ୍ଦେଶ ।
ଢିଙ୍କିକି କରିଛି ପିତ୍ତ ଶିଳଷେମା କୁଲାକୁ କରିଛି ଜର,
ଚାଲୁଣି ବାପୁଡ଼ା ମାଥା ଘର ଗଲା ଛାଞ୍ଚୁଣି ଜଗିଛି ଘର ।
ପଥରକୁ କଲା ସନ୍ନିପାତ ଜର ପାଣିକୁ କଲା ପିଆସ,
ଅଗ୍ନି ବାପୁଡ଼ାକୁ ଶୀତ କରୁଅଛି ଶୁଣ ଆହେ ପଣ୍ଡୁଶିଷ୍ୟ ।'' ଇତ୍ୟାଦି ।

ଏହି କାଳର ଅନେକ ଓଡ଼ିଆ ଲେଖକଙ୍କ ସମ୍ପର୍କରେ ଯାହା କୁହାନଯାଇପାରେ ପୀତାମ୍ବର ଦାସଙ୍କ ସମ୍ବନ୍ଧରେ ତାହା କୁହାଯାଇପାରେ ଯେ, ସେ ସଂସ୍କୃତ ଭାଷାରେ ବ୍ୟୁତ୍ପନ୍ନ ଥିଲେ । ତାଙ୍କର ପଦ-ସଂଯୋଜନ ସାଧୁ ଓ ପ୍ରକାଶନଭଙ୍ଗୀ ଅଜଟିଳ । ଆମେ ସାରଳାଙ୍କ ସମଗ୍ର ମହାଭାରତରେ ଯେଉଁ ଚଷାଳିଆ ସ୍ଥୂଳ ସ୍ପର୍ଶ ବରାବର ପାଉ, ପୀତାମ୍ବରଙ୍କ ରଚ଼ନାରେ ତାହା କାହିଁ ଦେଖୁନା; କିନ୍ତୁ ଅନ୍ୟପକ୍ଷରେ ସାରଳା ମହାଭାରତରେ ଆମେ ମାଟିର ଯେଉଁ ସ୍ପନ୍ଦମାନ ଜୀବନ୍ତତା ପାଉଁ, ପଣ୍ଡିତ ପୀତାମ୍ବରଙ୍କ ରଚ଼ନାରେ ତାହା ଅନୁପସ୍ଥିତ ।

ସେ ଯାହାହେଉ, ଏହି ଅସାଧାରଣ ବିଚ଼କ୍ଷଣ କବିଙ୍କୁ ଯେ ଭିକ୍ଷାଦ୍ୱାରା ଅର୍ଥସଂଗ୍ରହ କରିବାକୁ ପଡୁଥିଲା, ଏହା ଜାଣିଲେ ବଡ଼ ଦୁଃଖ ଆସୁଛି ମନରେ । କିନ୍ତୁ ଦରିଦ୍ର ହେଲେହେଁ ନୃସିଂହ ପୁରାଣ ନେଇ ପୀତାମ୍ବର ଏକ ଅବିନଶ୍ୱର କୀର୍ତ୍ତି ଛାଡ଼ିଯାଇଛନ୍ତି ଏବଂ ସେ ରଖି ମଧ୍ୟ ଯାଇଥିଲେ ପ୍ରତିଭାର ଉତ୍ତରାଧିକାର ପରପୁରୁଷମାନଙ୍କୁ । ତାଙ୍କର ପୁଅ ଓ ନାତି ମଧ୍ୟ ଏହି କାଳରେ ଲେଖକ ଭାବରେ ଖ୍ୟାତିଲାଭ କରିଥିଲେ ।

### ରାମାୟଣ ଓ ମହାଭାରତାବଳି –

ଓଡ଼ିଆ ଜନତା ଉପରେ ଭାରତର ଯୁଗ୍ମ-ମହାକାବ୍ୟ ରାମାୟଣ ଓ ମହାଭାରତ ଯେଉଁ ଗଭୀର ପ୍ରଭାବ ବିସ୍ତାର କରିଆସିଛନ୍ତି, ତାହାର ପ୍ରଚୁରତମ ପ୍ରମାଣ ଆମେ ଏହି କାଳ ଭିତରେହିଁ ପାଉଁ । ତିନିପ୍ରକାର ମହାଭାରତ ଓ ପ୍ରାୟ ପଚ଼ାଶ ପ୍ରକାରର ବିଭିନ୍ନ ରାମାୟଣ ଓଡ଼ିଆରେ ବିଦ୍ୟମାନ । ଅଧ୍ୟାତ୍ମ ରାମାୟଣହିଁ ତିନି ଭିନ୍ନ ଲେଖକଙ୍କର ଅଛି । ସେମାନଙ୍କ ଭିତରୁ ଜଣେ ପୁଣି ଆନ୍ଧ୍ର, ଲୋକମୁଖରେ 'ତେଲେଙ୍ଗା ଗୋପାଳ' । ଗୀତିରାମାୟଣ ହୁଏତ ଅଧଡଜନ ଉପରେ, ଯାହା ସବୁ ଗୀତ ବା ଅଭିନୀତ ହୁଅନ୍ତି । ଏମାନଙ୍କ ଭିତରେ ସର୍ବାଧିକ

ଜନପ୍ରିୟ ହେଉଛି, ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ' । ଖୁଣ୍ଟିଆ ପୁରୀବାସୀ ଥିଲେ । ଗଞ୍ଜାମ ଜିଲ୍ଲା ପାଲୁରଗଡ଼ ନିବାସୀ କେଶବ ପଟ୍ଟନାୟକଙ୍କ ନୃତ୍ୟ-ରାମାୟଣ ଦକ୍ଷିଣ-ଓଡ଼ିଶାରେ ବିଚିତ୍ର ରାମାୟଣଠାରୁ ଅଧିକ ଜନପ୍ରିୟ । କେଶବ ରାମାୟଣର ଯାତ୍ରାଭିନୟ ଅତୀବ ଚିତ୍ତାକର୍ଷକ । ନୃତ୍ୟ-ରାମାୟଣ ବା କେଶବ ରାମାୟଣ ଏକ ସ୍ୱାଭାବିକ କବିର ସ୍ୱର୍ଣ୍ଣ-ସ୍ପର୍ଶରେ ମନୋହର ହୋଇଉଠିଛି ।*

ଏହି କାଳରେ ଲିଖିତ ମହାଭାରତମାନଙ୍କ ମଧ୍ୟରେ ଗଞ୍ଜାମ ଧରାକୋଟର ରାଜା କୃଷ୍ଣସିଂହ କରାଇଥିବା ସଂସ୍କୃତ ମହାଭାରତର ଅନୁବାଦ ପ୍ରଧାନ । ଓଡ଼ିଶାରେ ଏହା 'କୃଷ୍ଣସିଂହ ମହାଭାରତ' ନାମରେ ପରିଚିତ । ଜନପ୍ରିୟତାରେ ଏହା ସାରଳା ମହାଭାରତର ଠିକ୍ ପଛକୁ ।

**ଆଳଙ୍କାରିକ ବା ସାମନ୍ତୀୟ କବିତା ଓ ଉପେନ୍ଦ୍ର –**

ପୂର୍ବେ କୁହାଯାଇଛି ଯେ ଓଡ଼ିଆ ଭାଷାରେ ସାଳଂକୃତ କବିତା ବୋଧହୁଏ ଜୟଦେବଙ୍କ ଗୀତଗୋବିନ୍ଦର ପ୍ରତ୍ୟକ୍ଷ ଫଳ । ଗୀତଗୋବିନ୍ଦର ଅଷ୍ଟପଦୀ ବୋଧହୁଏ ଧାରଣା ଦେଲା ଚଉତିଶାସୃଷ୍ଟିର ଓ ଚଉତିଶାରୁ କ୍ରମେ ସଂପ୍ରସାରିତ ହୋଇଉଠିଲେ ଛାନ୍ଦ-ଅଳଙ୍କାରମୟ କାବ୍ୟାବଳି । ୯ମ-୧୦ମ ଶତାବ୍ଦୀର ଅବସାନଧର୍ମୀ ସଂସ୍କୃତ କାବ୍ୟସବୁ ମଧ୍ୟ କବିତାରେ ଆଳଙ୍କାରିକ ଅତିଶୟତାର ଆଦର୍ଶ ଯୋଗାଇଥିଲେ । ଜୟଦେବଙ୍କ ଗୀତି-କାବ୍ୟର ଖ୍ୟାତି କବି-ଯଶପ୍ରାର୍ଥୀମାନଙ୍କ ଆଗରେ ଦୁଇଟି କାବ୍ୟଗତ ଆଦର୍ଶ ଥୋଇ ରଖିଲା : (୧) କବିତା କେବଳ ପାଠ୍ୟ ନୁହେଁ ଗେୟ, ମଧ୍ୟ ହେବ ବା ହେବା ଉଚିତ, (୨) ଯୌବନକାଳର ମାନବିକ ଯୌନ ବ୍ୟବହାର କାବ୍ୟ-କବିତାର ଏକମାତ୍ର ଉର୍ବର ଉତ୍ସ ଓ ଉପାଦାନ । ନୈଷଧୀୟଚରିତମ୍ ବା ଶିଶୁପାଳବଧକାବ୍ୟମ୍ ପରି ଅବସାନଯୁଗର ସଂସ୍କୃତ କାବ୍ୟାବଳି ଏକ ତୃତୀୟ ଆଦର୍ଶ ଠିଆକଲେ । ତାହା ଏହି ଯେ, ପାଦିକ ଯାଦୁକ୍ରିୟା ଆଭିଧାନିକ ଚିତ୍ରରଚନା ବା କେବଳ ଶବ୍ଦର ଆଡ଼ମ୍ବରମୟ ପ୍ରଚାର ମଧ୍ୟ କବିତାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିବ ।

ଏହି ଯୁଗର ଓଡ଼ିଆ ରୀତି ବା ଆଳଙ୍କାରିକ କବିତାରେ ଏ ତିନିଗୁଣଯାକର ଆଶାତିରିକ୍ତ ପ୍ରାଚୁର୍ଯ୍ୟ ଆମେ ପାଇବା । ଓଡ଼ିଆ ଭାଷାରେ ରୀତି ବା ଆଳଙ୍କାରିକ କବିତାର ଆଦ୍ୟ ପ୍ରବର୍ତ୍ତକ କିଏ, ତାହା ନିଶ୍ଚିତ ଭାବରେ କହିହେଉନି । ତେବେ ପୂର୍ବେ ଯେପରି କୁହାଯାଇଛି, ଅନୁଚ୍ଚାଭିଳାଷୀ, ଅନଭିମାନୀ ଚଉତିଶା-ଲେଖକଗୁଡ଼ିକ ବୋଧହୁଏ ଏ କ୍ଷେତ୍ରରେ ଆଦ୍ୟ ମାର୍ଗଶୋଧକ ଓ ମାର୍ଗଗଠକ । ଓଡ଼ିଆର ଚଉତିଶିକ କବିଗଣ ସାଧାରଣ ଓଡ଼ିଆ ପଦ୍ୟରେ ସଙ୍ଗୀତର ଅଗ୍ନି ପ୍ରବର୍ତ୍ତିତ କଲେ । ଅର୍ଥର ଯଥାର୍ଥତା କ୍ଲିଷ୍ଟତା ପ୍ରତି ଭ୍ରୂକ୍ଷେପ ନକରି ଅକ୍ଷର ଓ ପଦମାନଙ୍କର ନବ ନବ ସମାବେଶରେ ପଦ୍ୟର ସାଧାରଣ

* ବିଶ୍ୱନାଥ ଖୁଣ୍ଟିଆ ୧୮ଶ ଶତାବ୍ଦୀର ପ୍ରଥମ ପାଦରେ ଏବଂ କେଶବ ପଟ୍ଟନାୟକ ୧୮ଶ ଶତାବ୍ଦୀର ଶେଷ ପାଦରେ ଜନ୍ମଲାଭ କରିଥିବା ଅନୁମାନ କରାଯାଏ ।

ଯତିପାତ କିପରି ମନୋହର ଝଂକୃତିମୟ ହୋଇପାରେ, ତାହା ମଧ୍ଧ ସେମାନେ ଦେଖାଇଦେଲେ । ସଂସ୍କୃତରେ ଏହି ଶ୍ରେଣୀର ଶବ୍ଦାଳଙ୍କାର ମୁଖ୍ୟ କାବ୍ୟମାନଙ୍କୁ ଚିତ୍ରକାବ୍ୟ କୁହାଯାଏ । ଓଡ଼ିଆରେ ଏହି ଚିତ୍ରକାବ୍ୟ ସବୁ, ଚଉତିଶାରେ ଏକ ଯୁବକ ଓ ଯୁବତୀର ପ୍ରଣୟକାହାଣୀକୁ ପୂରାଇଦେଲେ ଯେଉଁ ସଂପ୍ରସାରିତ ଅବସ୍ଥା ଆସିବ, ତାହା ଛଡ଼ା ଆଉ କିଛି ନୁହନ୍ତି । ଗୀତଗୋବିନ୍ଦ ମଧ୍ୟ ଏହି ତରୁଣ-ତରୁଣୀ-ସମ୍ବନ୍ଧର କାହାଣୀ । ମଧ୍ୟଯୁଗର ଓଡ଼ିଆରେ ଗୀତଗୋବିନ୍ଦର ବ୍ୟାପକ ଅନୁବାଦ ମଧ୍ୟ ଏଇ ଧରଣର କାବ୍ୟସୃଷ୍ଟି ପାଇଁ ଉଦ୍‌ବୋଧନ ଯୋଗାଇଥିବ ।

ସେ ଯାହାହେଉ, ଚିତ୍ରକାବ୍ୟ ବା ଆଳଙ୍କାରିକ କବିତା ଏକ କ୍ଷୁଦ୍ର ସୀମା ଭିତରେ ଏକ ବିଶିଷ୍ଟ ସୁନ୍ଦରାନୁଭୂତି ଯେ ସୃଷ୍ଟି କରିଥାଏ, ଏଥିରେ ସନ୍ଦେହ ନାହିଁ । ଶବ୍ଦ ଓ ଅର୍ଥର ଲୁଚକାଳି ଏକପ୍ରକାର ମାନସିକ ଆନନ୍ଦ ଦେଇଥାଏ । ତେଣୁ ଏ ଧରଣର କବିତାକୁ ପ୍ରକୃତରେ ଭାଷାର ଅଳଙ୍କାର କୁହାଯିବା କଥା । ସଂପୃକ୍ତ ଭାଷାର ପରିବ୍ୟାପ୍ତ ଓ ଅବହେଳିତ କଞ୍ଚାମାଲରୁ ଏହି କବିତା ସର୍ବୋତ୍‌କୃଷ୍ଟ ସୁନ୍ଦରାନନ୍ଦ ସୃଷ୍ଟି କରିଥାଏ ଓ ଯଦି କବିତାର ଏକ ସଂଜ୍ଞା ହୁଏ ଭାଷାର କାରିଗରି, ତେବେ କେବଳ ଓଡ଼ିଆ ନୁହେଁ; ସକଳ ଭାଷାରେ ଏହି ଶ୍ରେଣୀୟ କାବ୍ୟ-କବିତା ଏକ ବିଶିଷ୍ଟ ଆସନ ଦାବିକରିପାରେ; କିନ୍ତୁ ଏ ଦାବି ଅଧିକାଂଶ ସ୍ଥଳରେ କ୍ଷୁଣ୍ଣ ହୁଏ, ଯେତେବେଳେ ଏହି କାବ୍ୟକବିତା ରୁଚିବନ୍ତ ଉତ୍ସାହକୁ ପରିଣତ କରେ ଏକ ରୁଗ୍ଣ ବିକୃତ, ଅର୍ଥହୀନ ଆତିଶଯ୍ୟରେ, ଯେଉଁ ପଦ୍ୟର ଗୋଟାଏ ପ୍ରକାର ମାତ୍ରାକୁ କବିତାର ନିଜସ୍ୱ ଓ ଏକାନ୍ତ ପ୍ରକୃତି ବୋଲି, ଭ୍ରମକୁ ସତ୍ୟ ବୋଲି ଗ୍ରହଣ କରାଯାଏ । ଓଡ଼ିଆ ରୀତି ବା ଆଳଙ୍କାରିକ କାବ୍ୟ-କବିତାରେ ଏହି ଶ୍ରେଣୀୟ କାବ୍ୟ-କବିତାର ସକଳ ଦୋଷ ଓ ସକଳ ଗୁଣର ଆମେ ବ୍ୟାପକ ପ୍ରାଚୁର୍ଯ୍ୟ ଦେଖିବାକୁ ପାଇବା —ବେଶି ଦୋଷ, କମ୍ ଗୁଣ ।

ଦେଖାଯାଉଛି ଯେ ଓଡ଼ିଆ ଭାଷାର ଚଉତିଶା ଲେଖକ ଅଧିକାଂଶ ଉତ୍ତର-ଓଡ଼ିଶାର । କିନ୍ତୁ ରୀତିକାବ୍ୟର ଲୀଳାସ୍ଥଳୀ ହେଉଛି ଦକ୍ଷିଣ-ଓଡ଼ିଶା; ଯେଉଁଠି ଗତ କେତେ ଶତ ବର୍ଷଧରି ଏହି ଶ୍ରେଣୀୟ ରଚନାର ମୁଖ୍ୟ ପ୍ରତୀତି ଓ ପ୍ରଦୀପରୂପେ ବିରାଜିତ, ଅଧୁନା ବିଲୁପ୍ତ ଘୁମୁସର ରାଜ୍ୟର ପ୍ରାଚୀନ ରାଜବଂଶ ।

ଓଡ଼ିଶା ଇତିହାସରେ ରାଜତ୍ୱ କରିଆସିଥିବା ସକଳ ରାଜବଂଶ ଭିତରେ ଭଞ୍ଜ ରାଜବଂଶ ସବୁଠାରୁ ବିଖ୍ୟାତ ଓ ଐତିହାସିକ । ରାଖାଲ ଦାସ ବାନାର୍ଜୀ ଯଥାର୍ଥ କହିଛନ୍ତି ଯେ, ଇତିହାସପ୍ରସିଦ୍ଧ ରାଜପୁତ୍ ଗୋଷ୍ଠୀମାନଙ୍କର ପୂର୍ବପୁରୁଷେ କେନ୍ଦ୍ର ଏସିଆର ତୃଣପୂର୍ଣ୍ଣ ଷ୍ଟେପି-ପ୍ରାନ୍ତରମାନଙ୍କରେ ଶରୀରକୁ ବର୍ଣ୍ଣାଂକିତ କରି ଯାଯାବର ଭାବରେ ମେଷ ଚାରଣ କରାଉଥିଲାବେଳେ, ଭଞ୍ଜମାନେ ପୂର୍ବଭାରତରେ ସମୃଦ୍ଧ ରାଜ୍ୟ ଓ ସାମ୍ରାଜ୍ୟ ସବୁ ଶାସନ କରୁଥିଲେ । ବର୍ତ୍ତମାନ ମଧ୍ୟ ସେମାନେ ସାରା ଓଡ଼ିଶାରେ ପରିବ୍ୟାପ୍ତ । ସେମାନଙ୍କ ମଧ୍ୟରେ ଉତ୍ତରରେ ମୟୂରଭଞ୍ଜ ଓ ଦକ୍ଷିଣରେ ଘୁମୁସରର ଭଞ୍ଜବଂଶ, କଳା ଓ ସାହିତ୍ୟର ସ୍ରଷ୍ଟା ଓ ପରିପୋଷକ ଭାବରେ ଓଡ଼ିଆ ଜାତୀୟ ଚେତନାର ଅବିଚ୍ଛେଦ୍ୟ ଅଂଶ ହୋଇପଡ଼ିଛନ୍ତି ।

ହତ୍ୟା, ଶଠତା, ଷଡ଼ଯନ୍ତ୍ର ଓ ଅକଥନୀୟ ଅନୈତିକତାର ପରିବେଶ ଭିତରେ ଘୁମୁସରର ରାଜବଂଶ ନିଜ ପରିବାର ଭିତରେ ସାହିତ୍ୟ-ଚର୍ଚ୍ଚାର ଏକ ପରମ୍ପରାକୁ ବଞ୍ଚାଇ ରଖିଥିଲେ । ଉପେନ୍ଦ୍ର ଭଞ୍ଜ ସେହି ପରମ୍ପରାର ଶେଷ ପରିଣତି ମାତ୍ର । ସେ କୌଣସି ପ୍ରକାର ମୌଳିକତାର ଅଧିକାରୀ ନଥିଲେ । ତାଙ୍କ କକା ଓ ଗୋସେଇଁବାପାମାନେ ଯେଉଁ ରୀତି ସବୁ ଆଗରୁ ଆରମ୍ଭ କରି ଦେଇଥିଲେ, ଉପେନ୍ଦ୍ର ସେହି ରୀତିଗୁଡ଼ିକୁ ଏକ ଆଡ଼ମ୍ବରମୟ ସମାପ୍ତିହିଁ ଦେଇଯାଇଛନ୍ତି । କେବଳ ନିଜ ପରିବାରର ପୂର୍ବଗାମୀ ନୁହେଁ, ଏ କ୍ଷେତ୍ରରେ ଉପେନ୍ଦ୍ର ସମଗ୍ର ଓଡ଼ିଆ ସାହିତ୍ୟରେ ଅନ୍ୟ ସମସ୍ତଙ୍କୁ ନିଷ୍ପ୍ରଭ କରିପକାଇଛନ୍ତି । ଫଳରେ; ଓଡ଼ିଆ ସାହିତ୍ୟରେ ଆଳଂକାରିକ କବିତାର ଚରମ ଆଦର୍ଶରୂପେ ଉପେନ୍ଦ୍ରହିଁ ଦଣ୍ଡାୟମାନ । ଆଳଂକାରିକ କବିତାର ଆଦର୍ଶ ପ୍ରତିଭୂରୂପେ ଉପେନ୍ଦ୍ରଙ୍କ ପ୍ରଭାବ ସାଂପ୍ରତିକ କାଳ ପର୍ଯ୍ୟନ୍ତ ବିସ୍ତୃତ ।*

ଆମେ ଯଦି କିଂବଦନ୍ତୀ ବା ଏପରିକି ଉପେନ୍ଦ୍ରଙ୍କ ନିଜ ବଚନକୁ ବିଶ୍ୱାସ କରିବା, ତେବେ ଆମକୁ ଧରିନେବାକୁ ହେବ ଯେ, ଉପେନ୍ଦ୍ର ସ୍ୱତଃସ୍ଫୂର୍ତ୍ତ କବି ନଥିଲେ । ସେ ଯୋଗ ବା ତନ୍ତ୍ର ସାଧନା ଫଳରେ କବିତ୍ୱ-ଶକ୍ତି ଲାଭକରିଥିବାର କହିବାରୁ ଆମକୁ ବୁଝିବାକୁ ହେବ ଯେ, ଅନ୍ତର୍ନିହିତ ପ୍ରେରଣା ଅପେକ୍ଷା ତାଙ୍କର ଚମକପ୍ରଦ ରଚନାବଳି ପାଇଁ ସେ ସାଧନା ନିକଟରେ ଅଧିକ ଋଣୀ; କିନ୍ତୁ ଏପରି କହିବା ସେକାଳର ଏକପ୍ରକାର ସାହିତ୍ୟିକ ସୌଜନ୍ୟ ହୋଇପାରେ ବା ହୋଇପାରେ ମଧ ଦୈବତ ସମର୍ଥନ ଦେଇ ନିଜ ରଚନାବଳିର ସୁପ୍ରଚାର । ଉପେନ୍ଦ୍ର ଯେ ପ୍ରଚୁର ପରିମାଣରେ ବିଶୁଦ୍ଧ କବି-ଶକ୍ତିର ଅଧିକାରୀ ଥିଲେ, ଏହାର ବହୁ ନିଦର୍ଶନ ସେ ଛାଡ଼ିଯାଇଛନ୍ତି; କିନ୍ତୁ ମନେହୁଏ ଯେ ଏକ ଭ୍ରାନ୍ତ ଉତ୍ସାହର ଆତିଶଯ୍ୟ ଏହି ସହଜ କବିଙ୍କ ଅନ୍ତଃସ୍ଥଳର ସୁକୁମାରୀ ସରସ୍ୱତୀଙ୍କୁ କବିତା ନାଁରେ ନିର୍ବୋଧ ପାଣ୍ଡିତ୍ୟର ଗୁଡ଼ାଏ ଭାରି ଗଦା ତଳେ ଚାପିଦେଇ, ନିଃଶ୍ୱାସ ଚିପି ମାରିଦେଇଥିଲା । ସେ ଛାଡ଼ିଯାଇଥିବା ବିପୁଳ ରଚନାବଳିର ଅଧିକାଂଶ ଏହାହିଁ ପ୍ରମାଣିତ କରେ । ତାଙ୍କର ଅଧିକାଂଶ ଗ୍ରନ୍ଥର କୌଣସି ହେଲେ ଏକ ପୃଷ୍ଠା ବିନା ଅଭିଧାନ ବା ଟୀକାର ସହାୟତାରେ, ଉଚ୍ଚଶିକ୍ଷିତ ଲୋକର ମଧ ବୁଝିବା ଅସମ୍ଭବ । କବି ଯାହା ସହଜ, ସରଳ ଓ ସାଧାରଣ ତାକୁ ଯମକ, ଅନୁପ୍ରାସ ଓ ଶ୍ଳେଷାଦି ଭାରତୀୟ ସାହିତ୍ୟର ସୁପରିଚିତ ଅଳଙ୍କାରାଦି ଦ୍ୱାରା ଆବୃତ କରି ପାଠକମାନଙ୍କ ଆଗରେ ସେସବୁକୁ ଅସାଧାରଣ ବା ଅଭିଜାତ କିଛି ବୋଲି ପରିବେଷିତ କରିବାକୁ ଚେଷ୍ଟା କରିଛନ୍ତି । ଉପେନ୍ଦ୍ର ଏପରି ପୂରା ଛାନ୍ଦସବୁ ଲେଖିଯାଇଛନ୍ତି ଯାହାର ପ୍ରତି ପଦର ଅକ୍ଷର କାଢ଼ିନେଲେ ତାହା ମୌଳିକ ରଚନା ପରିବର୍ତ୍ତରେ ଅନ୍ୟ ଏକ ଛନ୍ଦ ଓ ଅନ୍ୟ ଏକ ବିଷୟ ବା ଗତୁକୁ ବୁଝାଇବ । ଯଦି ଦ୍ୱିତୀୟ ଅକ୍ଷରକୁ ନେଇଯିବା, ତେବେ ଛନ୍ଦ ହେବ ଅନ୍ୟ ଓ ବିଷୟ ହେବ ଅନ୍ୟ । ତାଙ୍କ ଗୋସେଇଁବାପଙ୍କ କୃତ 'ରାଘବବିଳାସ'ର ଅନୁକରଣରେ ଉପେନ୍ଦ୍ର 'ବୈଦେହୀଶବିଳାସ' ଲେଖିଲେ, ଯାହା କେବଳ

* ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ମତରେ ଉପେନ୍ଦ୍ରଙ୍କ ଜନ୍ମ ଖ୍ରୀ: ୧୬୭୦, ମୃତ୍ୟୁ ଖ୍ରୀ:୧୭୨୦ ।

ସେହି ପୁରୁଣା ରାମାୟଣ କଥା, କେବଳ ରଚନା-ରୀତି ଆଳଙ୍କାରିକ । ଉପେନ୍ଦ୍ରଙ୍କ ଏହି ବୈଦେହୀଶବିଳାସକୁ ଓଡ଼ିଆ ଭାଷାରେ ଚିତ୍ରକାବ୍ୟର ଆଦର୍ଶରୂପେ ନିଆଯାଇପାରେ । ନାମ ପରି, ବିରାଟ ମହାକାବ୍ୟର ପ୍ରତ୍ୟେକଟି ପଙ୍‌କ୍ତି ମଧ୍ୟ 'ବ'ରେ ଆରବ୍ଧ । କେବଳ ସେତିକି ନୁହେଁ, ପ୍ରତି ଛାନ୍ଦର ଶ୍ଳୋକସଂଖ୍ୟା ସେହି ସେହି ଅଙ୍କ ଯାହାର ପ୍ରଥମ ଅକ୍ଷର 'ବ' । ଏହି ବିରାଟ ବହି ବ-ରୀତିର ସମ୍ମାନ ରକ୍ଷା କରିବା ପାଇଁ ବାର-ମାସ ବା ଏକବର୍ଷ ଭିତରେ ସମାପ୍ତ ହୋଇଥିବାର କଥିତ ହୁଏ ।

ବୈଦେହୀଶବିଳାସର 'ବ'-ଅନୁପ୍ରାସର ଦୃଷ୍ଟାନ୍ତରୂପେ କେତୋଟି ଶ୍ଳୋକ ଦିଆଗଲା ।*

''ବିଧାନ ହୋଇଛି ଯା ନାମ ସୀତା, ବର୍ଣ୍ଣନେ ଶୋଭା ଅତି ମଧୁରତା;
ବୁଡ଼ି ନେତ୍ର ଆଜ ହେବ ପବିତ୍ର, ବିଶେଷ କର୍ଷିଦେଇ ହୃଦକ୍ଷେତ୍ର,
ବୁଣିଲାଣି ସ୍ନେହ ବୀଜ ଯେ,
ବିଚାରୁଁ ଏମନ୍ତ ଜନକ ସମ୍ମତି ଶୁଣିଲେ ସଖୀ ସମାଜ ଯେ ।
ବେଶକାରୀ ଡାକି ପୀଠେ ବସାଇ, ବେଶ ବିରଚିଲେ ଚିତ୍ତ ରସାଇ,
ବିମ୍ବ ଦେଖାଇଲେ ଛାମୁରେ କେହି, ବିଦ୍ୟାଧରୀ ଆଡ଼ମ୍ବରକୁ ବହି,

---

*ଅନୁବାଦର ସୌକର୍ଯ୍ୟ ପାଇଁ ଇଂରାଜୀ ଗ୍ରନ୍ଥରେ କେବଳ 'ବଧିର ନୁହଇ ବୀର' ଶ୍ଳୋକଟି ଦିଆଯାଇଥିଲା । ତାହା ଏତେ ପରିଚିତ ଯେ, ଓଡ଼ିଆ ସଂସ୍କରଣରେ ତାକୁ ଛାଡ଼ି ସେତେ-ପରିଚିତ ନୁହେଁ କେତୋଟି ଶ୍ଳୋକ ଏଠାରେ ଦିଆଗଲା, କିନ୍ତୁ ଯେଉଁ ଓଡ଼ିଆମାନେ ଭ୍ରାନ୍ତଜ୍ଞାନ ଓ ଉତ୍ସାହରେ ମନେକରନ୍ତି ଯେ ଉପେନ୍ଦ୍ରଙ୍କର ଏହି ପ୍ରକାର ଆଭିଧାନିକ କଳାକୌଶଳହିଁ 'କବିତା' ବା ଏପରି 'କବିତା' ଅନ୍ୟ କୌଣସି ଭାଷାରେ ନାହିଁ, ସେମାନଙ୍କର ନିମ୍ନରେ ଉଦ୍ଧୃତାଂଶ ପଠନୀୟ ।

''ଅନ୍ୟ ନାନା ଗ୍ରନ୍ଥ ଏହି ସମୟରେ ରଚିତ ହୋଇଛି; ଯାହା କେବଳ ପଦ୍ୟଲିଖନ ବା ଶବ୍ଦ ଗଠନର ନାନା ଅଭ୍ୟାସ ମାତ୍ର ବୋଲି କୁହାଯିବ । ମାର୍ଗୁଣ୍ଟି ଶ୍ରୀ ନାଗରାଚାର୍ଯ୍ୟ ଯେଉଁ ଆଳଙ୍କାରିକ ରାମାୟଣ ଲେଖିଯାଇଛନ୍ତି, ତାହା ଦଶରଥ ରାଜନନ୍ଦନଚରିତମ୍ ବା ନିର୍ଲିପ୍ତ ରାମାୟଣମ୍ ନାମରେ ପରିଚିତ । ଏହି ସମଗ୍ର ଗ୍ରନ୍ଥରେ ପାଠକ ଗୋଟିଏ ହେଲେ ଓଷ୍ଠ୍ୟ ବର୍ଣ୍ଣ ପାଇବେ ନାହିଁ । ଏପରି ଶବ୍ଦ-ଗଠନ ବିଳାସ ଏତେ ଦୂରକୁ ଗଲା ଯେ, କୌଣସି କୌଣସି କବି କେବଳ ଗୋଟିଏ ବର୍ଣ୍ଣ ବ୍ୟବହାର କରି କାବ୍ୟ ଲେଖିଲେ । ଷୋଡ଼ଶ ଶତାବ୍ଦୀର କବିଗଣ ବନ୍ଧକବିତ୍ୱମ୍ ଓ ଗର୍ଭକବିତ୍ୱମ୍ ନାମକ ଆଳଙ୍କାରିକ ବସ୍ତୁ ସବୁ ଦେଖାଇ କାବ୍ୟମାନ ମଧ୍ୟ ଛାଡ଼ିଯାଇଛନ୍ତି; କିନ୍ତୁ ପର ଶତାବ୍ଦୀମାନଙ୍କରେ ଏହା ଅତିଶୟ ହୋଇପଡ଼ିଲା । ବନ୍ଧକବିତ୍ୱରେ ଶ୍ଳୋକସବୁ ଏକ ଏକ ଚିତ୍ର ବା ନକ୍‌ସା ରଚନା କରନ୍ତି । ଉଦାହରଣ ସ୍ୱରୂପ, ଏକ କର୍ଣ୍ଣମୟ ବୃତ୍ତର ପ୍ରତି କର୍ଣ୍ଣରେ ଏକ ଏକ ପାଦ ଥିବ ଓ ସବୁ ପାଦକୁ ଅର୍ଥବାନ୍ କରୁଥିବ କେନ୍ଦ୍ରସ୍ଥ ଗୋଟିଏ ଅକ୍ଷର । ଗର୍ଭକବିତ୍ୱମ୍‌ରେ ଗୋଟିଏ ଶ୍ଳୋକରେ ଆଉ ଏକ ଅର୍ଥ ଧାରଣା କରି ଆଉ ଏକ ଶ୍ଳୋକ ଲୁଚିରହିଥିବ । ଏସବୁ ଏକାନ୍ତରେ କାବ୍ୟିକ ଗୁଣହୀନ ଏବଂ ଏସବୁ ଦେଖାଦେଇଥିଲା ସପ୍ତଦଶ, ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀମାନଙ୍କରେ ।''

— ପି.ଇ.ଏନ୍. ପ୍ରକାଶିତ ପି.ଟି. ରାଜଙ୍କର 'ତେଲଗୁ ସାହିତ୍ୟ' ପୃ – ୪୩ ।

''ଭାରବିଙ୍କଠାରେ ସୁରୁଚିର ଏପରି ଅଭାବ ସବୁ ଦେଖାଯାଏ; ଯାହା କାଳିଦାସଙ୍କଠାରେ ଆମେ ଖୋଜି ପାଇବା ନାହିଁ । ବିଶେଷକରି ପଞ୍ଚଦଶ ସର୍ଗରେ ସେ ନିଜର ଯେଉଁଭଳି ନିର୍ବୋଧ ନିପୁଣତା ଦେଖାଇବାକୁ ଯାଇଛନ୍ତି, ତାହା ଆଲେକଜାଣ୍ଡ୍ରିଆର ଗ୍ରୀକ୍ କବିମାନଙ୍କର ଶବ୍ଦାଡ଼ମ୍ବର

ବିବଂଧ କଲେ କୁନ୍ତଳ ଯେ,
ବିଚିତ୍ର ମଣି ନୀଳମଣି-ପ୍ରତିଭା, ଊର୍ଦ୍ଧ୍ୱପ୍ରକାଶିତ ତଳ ଯେ ।''

× × × ×

''ବନେ ଅଇଲ ତିନି, ବେନି ରହିଲେ ଏକ ଗଲା ଏକା ହୋଇ
ବୋଲିବାକୁ ଆହା, କେହି ନାହିଁ ସାହା, ସେ ଜନ ବଞ୍ଚିବ କେହି ସେ ।
ବଲ୍ଲଭେ, ବନପ୍ରିୟ କହ ଏତେ ଯେ,
ବ୍ରହ୍ମାଣ୍ଡନାଥ ହାତ ଧରି ଅନାଥ କି ଶୁଭ ଅଛି ଜଗତେ ।
ବୋଲିବେ ଅବା ସେ ଛାଡ଼ିଗଲା ସିନା, ଆୟତେ ମୁଁ ଆସିନାହିଁ,
ବେନି ପିଣ୍ଡ ଏକ ଜୀବନ ବିଚ୍ଛେଦ ପାଇଁ ବିହିଥିଲା ବିହି ।
ବଲ୍ଲଭେ, ବନପ୍ରିୟ କହ ଏତେ ଯେ,
ବିଗୁଣ ସେବକୀରେ ପ୍ରଭୁ ଘେନିଲେ, ସେ ଭଲ ହେବ କେମନ୍ତେ ।''

ଉଦ୍ଧୃତାଂଶମାନଙ୍କରୁ ଆମ୍ଭମାନଙ୍କୁ ମାନିବାକୁ ହେବ ଯେ, ଭ୍ରାନ୍ତ ଏକ ଉତ୍ସାହରେ ମାତି ବହୁସ୍ଥାନରେ ଉପେନ୍ଦ୍ର ପାଣ୍ଡିତ୍ୟ ପ୍ରଦର୍ଶନ ଓ ଶବ୍ଦ କସରତ୍‌କୁ କବିତାର ଆସନରେ ବସାଇଥିଲେ ମଧ୍ୟ, ସେ ଆମକୁ ବିଚଳିତ କରିପକାନ୍ତି । ତାଙ୍କର ଅସାଧାରଣ ଛାନ୍ଦସିକ କୌଶଳ ଓ ତାଙ୍କ ପଦ୍ୟର ପଙ୍‌କ୍ତିମାନଙ୍କର ଗଭୀର ସାଙ୍ଗୀତିକ ଗୁଣ ଦେଇ, ପୁଣି ତାଙ୍କ କବିତାର ପଠନ ବା ଆବୃତ୍ତି ମାତ୍ରେ ଶ୍ରୋତା ଓ ପାଠକଙ୍କ ସମ୍ମୁଖରେ ଯୌବନ, ସୌନ୍ଦର୍ଯ୍ୟ ଓ ପ୍ରଣୟର ଏକ ଯାଦୁକାରୀ ସଂସାରକୁ ମେଲାଇଦେଇ ଶବ୍ଦସବୁକୁ କିପରି ଥୋଇଲେ ସେମାନଙ୍କର ଅନ୍ତର୍ନିହିତ ଅଜ୍ଞାତ ସୌନ୍ଦର୍ଯ୍ୟ ଫୁଟିଉଠିବ, ଏ କୌଶଳରେ ଉପେନ୍ଦ୍ର ଅପ୍ରତିଦ୍ୱନ୍ଦ୍ୱୀ କହିଲେ ଚଳେ । ଯୌବନକାଳର ଇନ୍ଦ୍ରିୟଧାରୀ ପ୍ରଣୟର ସୌନ୍ଦର୍ଯ୍ୟ ଚିତ୍ରିତ କରିବାରେ ଓ ପଦମାନଙ୍କର ଏକ ସାମଗ୍ରିକ ଐକତାନିକ ମିଳିତ ସଙ୍ଗୀତ ସୃଷ୍ଟି କରିବାରେ ଉପେନ୍ଦ୍ର ମଧ୍ୟ ଅପ୍ରତିଦ୍ୱନ୍ଦ୍ୱୀ । ଏହିସବୁ ଗୁଣ ହେତୁ ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଗତ ଦୁଇଶତ ବର୍ଷଧରି ଏକ ଏକଚ୍ଛତ୍ର ପ୍ରଭାବ ବିସ୍ତାର କରିଆସିଛନ୍ତି । ତରୁଣ ବୟସରେ ପଣ୍ଡିତ ଗୋପବନ୍ଧୁ ଉପେନ୍ଦ୍ରଙ୍କ ସମ୍ବନ୍ଧରେ ଯାହା କହିଥିଲେ, ତାହା ଅତି ଯଥାର୍ଥ –

---

ଆତିଶଯ୍ୟକୁହିଁ ସ୍ମରଣ କରାଏ । ଭାରବି ଶ୍ଳୋକ ଲେଖିଛନ୍ତି; ଯାହାର ପ୍ରଥମ ଓ ତୃତୀୟ, ପୁଣି ଦ୍ୱିତୀୟ ଓ ଚତୁର୍ଥ ପାଦ ସଂପୂର୍ଣ୍ଣ ଭାବରେ ଏକ । ଆଉ ଏକ ଶ୍ଳୋକରେ ଚାରିଟିଯାକ ପାଦ ଏକାପରି । ଆଉ କେଉଁଠି କେବଳ 'କ' ବର୍ଣ୍ଣ, କେଉଁଠି କେବଳ ସ, କ, ୟ ଓ ଲ ବ୍ୟବହୃତ ହେବାର ଦେଖିବା । କେଉଁ ଶ୍ଳୋକର ଆଗ ପାଦକୁ ପଛଆଡୁ ପଢ଼ିଲେ ଯାହା ହେବ, ପଛ ପାଦଟି ସେୟା । ପୂରା ଏକ ଶ୍ଳୋକରୁ ମଧ୍ୟ ପଛଆଡୁ ପଢ଼ିଲେ ଯାହା ହେବ, ପର ଶ୍ଳୋକଟି ସେୟା । ଗୋଟିଏ ଶ୍ଳୋକରୁ ତିନି ପ୍ରକାର ଅର୍ଥ ବାହାରିବ, ଆଉ ଏକ ଶ୍ଳୋକରେ ଓଷ୍ଠ୍ୟବର୍ଣ୍ଣ ଆଦୌ ନାହିଁ; କିମ୍ବା ଏପରି ଶ୍ଳୋକ ଅଛି ଯାହାକୁ ଆଗଆଡୁ ବା ପଛଆଡୁ ପଢ଼ ସେହି ଏକା – ଅର୍ଥ ।''

ଏ. ବି. କୀଥ୍ – 'ସଂସ୍କୃତ ସାହିତ୍ୟର ଇତିହାସ' – ପୃ. ୧୧୪ ।

ବିରାଟ ଇଂରେଜ-ପଣ୍ଡିତ ଏହି କୀଥ୍, ସଂସ୍କୃତ-କବି ମାଘଙ୍କ ଉପରେ ଏହି ପ୍ରକାର ମନ୍ତବ୍ୟ ପ୍ରକାଶ କରିଛନ୍ତି, ଯଦିଓ ମାଘ ଓ ଭାରବିଙ୍କ ପ୍ରତିଭାର ଅନ୍ୟାନ୍ୟ ଦିଗ ପ୍ରତି ସେ ପ୍ରଶଂସମାନ ।

"ଗାଏ ତୁମ୍ଭ ଗୀତ          ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ବିଲେ ଗାଏ ଚଷା,          ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଗତାନୁଗତିକତାର ବିପୁଳ ପ୍ରଚୁରତା ଭିତରେ ମଧ୍ୟେ ମଧ୍ୟେ ବିକ୍ଷିପ୍ତ ଯଥେଷ୍ଟ ପ୍ରମାଣ ଆମେ ପାଉଛୁ ଯେ ଉପେନ୍ଦ୍ର ଭଞ୍ଜ ନରନାରୀର ସରଳ ବାସନାରାଜିକୁ ହୃଦୟସ୍ପର୍ଶୀ ସାରଲ୍ୟରେ ପ୍ରକାଶ କରିବାର ବିଚକ୍ଷଣ ଶକ୍ତିର ଅସାଧାରଣ ଅଧିକାରୀ ଥିଲେ । 'ପ୍ରେମସୁଧାନିଧି' କାବ୍ୟର ରାଜପୁତ୍ର ନାୟକ, ନାୟିକା ରାଜପୁତ୍ରୀ ନିକଟକୁ ଲେଖିଥିବା ପ୍ରଣୟ-ପତ୍ରଟି ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ଆଶ୍ୱିନର ପରିଚ୍ଛନ୍ନ ଚନ୍ଦ୍ରମା ନିର୍ମଳ ନୈଶ ଆକାଶରେ ଉଦିତ ହୋଇ ଏହି ମୃତ୍ତିକାର ଧରଣୀକୁ ଯେତେବେଳେ କୁହୁକ ରାଜ୍ୟରେ ପରିଣତ କରିଦିଏ, ସେତେବେଳେ ଏପରି ଶିକ୍ଷିତ ଓଡ଼ିଆ କମ୍ ଥିବେ; ଯାହାଙ୍କ ମୁଖରୁ ଶଙ୍କରାଭରଣ ବୃତ୍ତରଚିତ ଏହି ମନୋରମ ଛାନ୍ଦର ପ୍ରଥମ କେତୋଟି ଶ୍ଳୋକ ସ୍ୱତଃ ବାହାରିନପଡ଼େ –

"ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜି,
ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି,
ତାହିଁ କୁମର କାତର,
ଲେଖି ଆରମ୍ଭିଲା ବସି ବିନୟ ପତର ।
ଜାନକୀବଲ୍ଲଭ ପଦ୍ମପାଦେ ଚିତ୍ତ ଥାଉ,
ରାଜବାଳା ପ୍ରୀତିକଉଶଳାକୁ ଚିତାଉ–
ଏବେ ମରୁଅଛି ଝୁରି,
ଦରିଦ୍ର ରତନ ପାଇ ହରାଇଲାପରି ।" (ଚତୁର୍ଦ୍ଦଶ ଛାନ୍ଦ)

ଭଞ୍ଜଙ୍କର ସବୁଠାରୁ ଜନପ୍ରିୟ କାବ୍ୟ 'ଲାବଣ୍ୟବତୀ'ରେ ଥିବା ମାଲୁଣୀର ବର୍ଣ୍ଣନା, ଐନ୍ଦ୍ରଜାଲିକର ବର୍ଣ୍ଣନା ଏବଂ ନାୟକ ଓ ନାୟିକାମାନଙ୍କର ଆଦ୍ୟ-ପ୍ରଣୟ-ଦିବସଗୁଡ଼ିକର ବର୍ଣ୍ଣନା ମଧ୍ୟ ଏହିପରି ପ୍ରସାଦଗୁଣସମ୍ପନ୍ନ କବିତ୍ୱର ସୁନ୍ଦର ଦୃଷ୍ଟାନ୍ତ ।

କେବଳ ଉପେନ୍ଦ୍ରଙ୍କର ରଚନାବଳିର ନୁହେଁ, ସମଗ୍ର ଓଡ଼ିଆ ସାହିତ୍ୟରେ ଦେଖାଦେଇଥିବା ଆଳଙ୍କାରିକ କାବ୍ୟ ସଂଗ୍ରହ ଭିତରେ, ଉପେନ୍ଦ୍ରଙ୍କ ଲାବଣ୍ୟବତୀକୁ ଆମେ ଏହି ଶ୍ରେଣୀୟ କବିତାର ଶ୍ରେଷ୍ଠ ପ୍ରତୀକ ବୋଲି ଧରିନେଇପାରିବା । ଏ ବିଭାଗର ଛାଞ୍ଚ ଏକାନ୍ତଭାବରେ ଏକରୂପ । ଉପେନ୍ଦ୍ର କୌଣସି ହେଲେ ମୌଳିକତା ନ ଦେଖାଇ ସେହି ଚିରାଚରିତ ଆଦର୍ଶକୁହିଁ ମାନିନେଇଛନ୍ତି । ତାଙ୍କର ପ୍ରଶଂସ୍ୟତା ଆସୁଛି କେବଳ ସୌଷ୍ଠବମୟ ସମ୍ପାଦନାରୁ । ଶବ୍ଦଯୋଜନାରେ, ଉଷ୍ଣତାମୟ ଯୌନବିଳାସ ଓ ଯୌବନୋଚିତ ପ୍ରଣୟବର୍ଣ୍ଣନାରେ ଏବଂ ଓଡ଼ିଆ ଭାଷାରେ ଯେତେ ପ୍ରକାର ଛାନ୍ଦ ଅଛି, ସେ ପ୍ରତ୍ୟେକଟିର ସୁନିପୁଣ ପ୍ରଯୋଜନାରେ ଉପେନ୍ଦ୍ର ଏ କ୍ଷେତ୍ରରେ ଅବତୀର୍ଣ୍ଣ ସକଳ କବିଙ୍କୁ ଟପିଯାଇଛନ୍ତି । ପୁଣି ଏସବୁ ଉପାଦାନଗୁଡ଼ିକ ଲାବଣ୍ୟବତୀ କାବ୍ୟରେ ଯେପରି

ବାସନ୍ତିକ ସୁଷମା ଘେନି ପ୍ରସ୍ଫୁଟିତ ହୋଇଉଠିଛନ୍ତି ଏବଂ ସେହି କାରଣରୁ ଉପେନ୍ଦ୍ରଙ୍କ ଲାବଣ୍ୟବତୀକୁ ଓଡ଼ିଆ ଭାଷାର ଆଦର୍ଶ ଆଳଙ୍କାରିକ କାବ୍ୟ ଭାବରେ ଗ୍ରହଣ କରାଯାଇପାରେ । ଲାବଣ୍ୟବତୀର କାବ୍ୟ-କାହାଣୀହିଁ ପାଠକମାନଙ୍କ ଆଳଙ୍କାରିକ କାବ୍ୟ ଛାଞ୍ଚ ସମ୍ବନ୍ଧରେ ଧାରଣା ଦେବ ।

କୌଣସି ଅପକର୍ମର ପ୍ରାୟଶ୍ଚିତ୍ତରୂପେ ସ୍ୱର୍ଗବାସୀ ପତି-ପତ୍ନୀ ଧରାବାସୀ ହୁଅନ୍ତି । ପତ୍ନୀ ଜନ୍ମଗ୍ରହଣ କରନ୍ତି ସିଂହଳର ରାଜକନ୍ୟାରୂପେ ।* ପତି ଜନ୍ମ ହେଲେ କର୍ଣ୍ଣାଟକର ଯୁବରାଜରୂପେ । ଯୁବରାଜଙ୍କ ନାମ ହେଲା ଚନ୍ଦ୍ରଭାନୁ ଓ ସିଂହଳର ରାଜଜେମାଙ୍କ ନାମ ହେଲା ଲାବଣ୍ୟବତୀ । କାବ୍ୟର ପ୍ରଥମ କେତୋଟି ଛାନ୍ଦରେ ନାୟକ ଓ ନାୟିକାଙ୍କର ବାଲ୍ୟ, କୈଶୋର ଓ ଯୌବନର କ୍ରମାଭିବୃଦ୍ଧି ବର୍ଣ୍ଣିତ । ଯୌବନପ୍ରାପ୍ତା ଲାବଣ୍ୟବତୀର ବିବାହ ପ୍ରସଙ୍ଗ ଉଠନ୍ତେ ଜଣେ ସନ୍ନ୍ୟାସୀ ସେହି ସୁନ୍ଦରୀ ରାଜଜେମାର ଚିତ୍ରପଟ ଘେନି ଭିନ୍ନ ଭିନ୍ନ ରାଜସଭାରେ ଯାଇ ପହଞ୍ଚିଲେ । ଚିତ୍ରପଟ ଦେଖିହିଁ କୁମାର ଚନ୍ଦ୍ରଭାନୁ ଲାବଣ୍ୟବତୀ ପ୍ରତି ପ୍ରଣୟାସକ୍ତ ହୋଇପଡ଼ନ୍ତି । ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ପରସ୍ପରକୁ ସ୍ୱପ୍ନରେ ଦେଖି ପ୍ରଣୟ-ସଙ୍କେତ ବିନିମୟ କରନ୍ତି ଓ ପରସ୍ପରକୁ ପାଇବା ଲାଗି ଝୁରିହୁଅନ୍ତି । ସନ୍ନ୍ୟାସୀଙ୍କ ସହାୟତାରେ ଦୁହିଁଙ୍କ ଭିତରେ ପତ୍ର ବିନିମୟ ମଧ୍ୟ ହୁଏ । ପରେ ପ୍ରସିଦ୍ଧ ରାମେଶ୍ୱରମ୍ ମନ୍ଦିରରେ ଦୁହିଁଙ୍କର ଚାକ୍ଷୁଷ ଭେଟ ମଧ୍ୟ ଘଟେ । ପିତାମାତା କୁମାର ଓ କୁମାରୀଙ୍କର ଏହିପରି ପରସ୍ପରାନୁରାଗ ଜାଣିପାରି ସେମାନଙ୍କର ବିବାହରେ ସମ୍ମତି ଦାନକଲେ ଓ ବିବାହ ହୋଇଗଲା । ଯା ପରେ ଆମେ ଯୁବକ-ଯୁବତୀଙ୍କ ପ୍ରଥମ ଯୌନସ୍ୱାଦର ସେହି ଉଷ୍ମ ମାଦକମୟ ବର୍ଣ୍ଣନା ସବୁ ପାଉଁ, ଯେଉଁଥିପାଇଁ ଉପେନ୍ଦ୍ରଙ୍କ ଲେଖନୀ ବିଖ୍ୟାତ । ନବପ୍ରଣୟକୁ ତୀବ୍ରତର କରେଇବା ପାଇଁ କବି ରାଜକୁମାର ଚନ୍ଦ୍ରଭାନୁଙ୍କୁ ରାଜ୍ୟରେ ତସ୍କରତାଡ଼ନ ବ୍ୟପଦେଶରେ, ନବପରିଣୀତା ପ୍ରଣୟିନୀଠାରୁ ବର୍ଷେକାଳ ପାଖରୁ ଛଡ଼ାଇନିଅନ୍ତି । ଯା ଫଳରେ ଆମେ ପାଉ ଭିନ୍ନ ଭିନ୍ନ ଋତୁମାନଙ୍କରେ ବିରହିତ ପ୍ରଣୟୀ ଓ ପ୍ରଣୟିନୀର ଋତୁ-ଅନୁସାରୀ କାମବିଳାସ କଳ୍ପନା ଓ ସେସବୁର ଦୁର୍ଲଭତା-ଜନିତ ହା-ହୁତାଶ-ଭାବ । ଶେଷରେ ଦୁଇ ବିଚ୍ଛିନ୍ନ ଆତ୍ମାର ପୁନର୍ମିଳନ ଘଟେ । ଚନ୍ଦ୍ରଭାନୁ ଲାବଣ୍ୟବତୀ କର୍ଣ୍ଣାଟକର ରାଜା ଓ ରାଣୀ ଭାବରେ ଅଭିଷିକ୍ତ ହୁଅନ୍ତି ଓ କାବ୍ୟର ସମାପ୍ତି ଘଟେ ସର୍ବମୟ ସୁଖରେ ।

ଉପେନ୍ଦ୍ରଙ୍କ ଅନ୍ୟାନ୍ୟ ସମସ୍ତ କାବ୍ୟ ଓ ଅନ୍ୟ କବିମାନଙ୍କର ଏହି ଶ୍ରେଣୀର ଶତ ଶତ କାବ୍ୟର କାହାଣୀ ଏଇଆ — କେବଳ ନାୟକ ଓ ନାୟିକାମାନଙ୍କର ନାମହିଁ ଯାହା ନୂତନ । ଗଳ୍ପ କେବଳ ଏକା ନୁହେଁ, ଏକା ମଧ୍ୟ ଗଳ୍ପର କାବ୍ୟିକ ବ୍ୟବହାର । ଏକ ସମଗ୍ର ଶ୍ରେଣୀର ରଚନାରେ ଏ ପ୍ରକାର ଏକାନ୍ତ ଏକରୂପତା ପ୍ରକୃତରେ ଲଜ୍ଜାକର ।

---

* ଲେଖକ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଠାରୁ ଏକାଧିକବାର ଶୁଣିଥିଲା ଯେ ଏକ ଚିତ୍ରିତ ଓଡ଼ିଆ ଭାଷା ଲିଖିତ ଲାବଣ୍ୟବତୀ ପୋଥି କେତେକ ବର୍ଷ ତଳେ ସିଂହଳରୁ ମିଳିଥିଲା; କିନ୍ତୁ ସେହି ପୋଥିର ସଠିକ ସନ୍ଧାନ ସେ ଦେଇପାରୁନଥିଲେ ।

ଉପେନ୍ଦ୍ର ୭୦ରୁ ୮୦ ଖଣ୍ଡ ପୁସ୍ତକ ଲେଖିଯାଇଛନ୍ତି ବୋଲି କୁହାଯାଏ । ସେଥିରୁ ଅନେକ ଏପର୍ଯ୍ୟନ୍ତ ବୋଧହୁଏ ଅପ୍ରକାଶିତ । ଲାବଣ୍ୟବତୀ ଓ ବୈଦେହୀଶବିଳାସକୁ ଛାଡ଼ିଦେଲେ, କବିଙ୍କର ଅନ୍ୟ ଅତି-ପରିଚିତ ଗ୍ରନ୍ଥ ହେଉଛନ୍ତି – ପ୍ରେମସୁଧାନିଧି ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ; କିନ୍ତୁ ସାଧାରଣ ପାଠକପକ୍ଷରେ ଏସବୁକୁ ସହଜରେ ପଢ଼ି ବୁଝିବା ଓ ଉପଭୋଗ କରିବା ସମ୍ଭବ ନୁହେଁ ।

ଗତ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ନବଯୁଗ ଆରମ୍ଭ ହେବା ପରଠାରୁ ଏପର୍ଯ୍ୟନ୍ତ ମଧ୍ୟଯୁଗର ଏହି କବି ଉପେନ୍ଦ୍ର କ୍ରମାଗତ ପ୍ରଭଞ୍ଜନମୟ ଆଲୋଚନାର କେନ୍ଦ୍ର ହୋଇ ଆସିଛନ୍ତି । ଐତିହ୍ୟବାଦୀଗଣ ତାଙ୍କୁ କାବ୍ୟଶ୍ରେଷ୍ଠ ଆଦର୍ଶ ବୋଲି ଧରିଲାବେଳେ ଆଧୁନିକମାନେ ତାଙ୍କୁ ପିଲାଳିଆ-ଶବ୍ଦ-କ୍ରୀଡ଼ାରତ, ଗୋକାଳିଆ ଯୌନଚିନ୍ତାମୂଢ଼ ଜଣେ କେବଳ ପଣ୍ଡିତମ୍ମନ୍ୟ କବି ବୋଲି ମନେକରନ୍ତି । ଗତ ଶତାବ୍ଦୀର ଶେଷ ଦଶକରେ ବିରୋଧ ଏତେ ଗରମ ହୋଇଉଠିଲା ଯେ, ଦୁଇ ବିରୋଧୀଦଳ 'ଇନ୍ଦ୍ରଧନୁ' ଓ 'ବିଜୁଳି' ନାମରେ ଦୁଇଟି ପତ୍ରିକା ପ୍ରକାଶ କରି ମନ-ସନ୍ତୋଷକ୍ରମେ ପରସ୍ପରକୁ ଗାଳିଦେଇଚାଲିଲେ । ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ସ୍ଥାପିତ କଳିଙ୍ଗଭାରତୀ ପ୍ରକାଶିତ ପୁସ୍ତିକାମାନ ଓ ଅନୁଷ୍ଠିତ ସଭାସମିତି ନେଇ ଉପେନ୍ଦ୍ରାନୁକୂଳ ସଂଗ୍ରାମ ଓଡ଼ିଆ ଭାଷାରେ ଏପର୍ଯ୍ୟନ୍ତ ବି ଚାଲୁରହିଛି ।

ଆଧୁନିକ ବିଶୁଦ୍ଧବାଦୀମାନେ କିନ୍ତୁ ସ୍ମରଣ ରଖିବା ଉଚିତ ଯେ, ଏମିଲ୍ ଜୋଲା ବା ଡି.ଏଚ୍. ଲରେନ୍ସଙ୍କ ବିଶ୍ୱବିଖ୍ୟାତ ଉପନ୍ୟାସମାନଙ୍କରେ ଯୌନ-ବ୍ୟବହାର ବା ମାନବିକ ପ୍ରଣୟ-ବ୍ୟାପାର ଯେପରି ଭାବରେ ବିଶ୍ୱଜନ ଆଗରେ ପରିବେଷିତ ହୋଇଛି, ସେ ତୁଳନାରେ ଉପେନ୍ଦ୍ରଙ୍କ ବର୍ଣ୍ଣନାରେ କୌଣସି ଅପରାଧ ଧର୍ତ୍ତବ୍ୟହିଁ ନୁହେଁ । ଶବ୍ଦ-କସରତ୍ ମଧ୍ୟ ଏକା ଉପେନ୍ଦ୍ରଙ୍କ ପାପ ନୁହେଁ । ସଂସ୍କୃତ ଓ ଭାରତୀୟ ଭାଷାମାନଙ୍କରେ ଏ କ୍ଷେତ୍ରରେ ଦେଖାଦେଇଥିବା ଏକ କବିସଂଘ ଭିତରେ ଉପେନ୍ଦ୍ର ଜଣେ ମାତ୍ର । ଶବ୍ଦାଳଙ୍କାର ଭାରତୀୟ ସାହିତ୍ୟରେ କାବ୍ୟର ଏକ ସର୍ବମାନ୍ୟ ଗୁଣ । ହୁଏତ ସମଗ୍ର ଭାରତୀୟ ସାହିତ୍ୟରେ ଓଡ଼ିଶାର ଉପେନ୍ଦ୍ର ଭଞ୍ଜ ଏହି ଗୁଣର ଗୁଣୀସତ୍ତମ ବୋଲି ଧରାଯାଇପାରନ୍ତି । ସଂସ୍କୃତ ଚିତ୍ରକାବ୍ୟର ଯେତେ ପ୍ରକାର ଚାତୁର୍ଯ୍ୟ, ସେ ସମସ୍ତଙ୍କୁ ଓଡ଼ିଆ ଭାଷାରେ ସିଦ୍ଧିସହକାରେ ପ୍ରକାଶ କରିପାରିଛନ୍ତି । ସେ କବିତା ଲେଖିଚାଲିଛନ୍ତି କେବଳ ଦନ୍ତ୍ୟବର୍ଣ୍ଣ ବା ଓଷ୍ଠ୍ୟବର୍ଣ୍ଣ ବ୍ୟବହାର କରି ଓ କବିତା ବି ଲେଖିଛନ୍ତି ଏ ଦୁଇ ବର୍ଣ୍ଣକୁ ଆଦୌ ବ୍ୟବହାର ନକରି । କାବ୍ୟମାନଙ୍କ ଭିତରେ ଶବ୍ଦାଧିକାରସୂଚକ ଯେତେ 'ବନ୍ଧ' କଳ୍ପନା କରାଯାଇପାରେ, ଉପେନ୍ଦ୍ର ସେସବୁ ଅବଲୀଳାକ୍ରମେ କରିଚାଲିଛନ୍ତି । ବ-ନିୟମ ରଚିତ ବିରାଟ ବୈଦେହୀଶବିଳାସ ମହାକାବ୍ୟ କଥା ତ କୁହାଯାଇଛି । ସେହି ରାମାୟଣ ଗଳ୍ପକୁ କବି ପୁଣି ବକାର ବିନା-ସାହାଯ୍ୟରେ 'ଅବନା ରସତରଙ୍ଗ' କାବ୍ୟରେ ପରିବେଷିତ କରିଛନ୍ତି । 'ସ' ଅନୁପ୍ରାସରେ ପୁଣି 'ସୁଭଦ୍ରା-ପରିଣୟ' ଅଛି ।

ଏହା ମଧ୍ୟ ସ୍ମରଣ ରଖିବାକୁ ହେବ ଯେ ଉପେନ୍ଦ୍ର କେବଳ ଜଣେ ସୌଖୀନ କବି ନ ଥିଲେ, ସେ ବୋଧହୁଏ ଓଡ଼ିଆ ଭାଷାରେ ଏକମାତ୍ର କବି; ଯିଏ କବିତାକୁ ଜୀବନର

ଏକ ଉଦ୍ଦେଶ୍ୟରୂପେ ଦେଖିଥିଲେ । ସେ କବିତା କହିଲେ ଯାହା ନିଜେ ବୁଝିଥିଲେ ବା ସମସାମୟିକ କାଳ କବିତା କହିଲେ ଯାହା ଚାହୁଁଥିଲା, ସେହିପରି ଲେଖିଚାଲିଥିଲେ କେବଳ ନୁହେଁ, ସେହି ଶ୍ରେଣୀର କବିତା ଭାଷାରେ କିପରି ଚିରକାଳ ଅନୁସୃତ ରହିବ, ତାହାର ମଧ୍ୟ ବ୍ୟବସ୍ଥା କରିଥିଲେ । ଏହି ଲକ୍ଷ୍ୟରେ ସେ 'ରସ-ପଞ୍ଚକ' ଲେଖିଥିବାର ବୁଝାଯାଉଛି । କାବ୍ୟ-ଯଶପ୍ରାର୍ଥୀ ତରୁଣମାନଙ୍କ ନିମନ୍ତେ କାବ୍ୟରଚନା ଦିଗରେ ସହାୟତା ଯୋଗାଇଦେବାପାଇଁ ଉପେନ୍ଦ୍ର 'ଗୀତାଭିଧାନ' ନାମରେ ଏକ ଅଭିଧାନ ମଧ୍ୟ ଛାଡ଼ିଯାଇଛନ୍ତି । ତାଙ୍କର ଜନପ୍ରିୟ ଗ୍ରନ୍ଥ 'ଲାବଣ୍ୟବତୀ' ଓ 'ରସିକହାରାବଳୀ'ରେ ଆମେ କବିଙ୍କ କାବ୍ୟାଦର୍ଶ ସମ୍ପର୍କରେ ଏକ ସ୍ପଷ୍ଟ ଚିତ୍ର ମଧ୍ୟ ପାଉଁ ।

"ବିଚାରଇ କରିବି ଉତ୍ତମ ଛାନ୍ଦ ଗୀତ / ରସସାର ଶୃଙ୍ଗାର ଯହିଁରେ ହେବ ବ୍ୟକ୍ତ ।
ଅନୁଭବରୁ ପ୍ରଖ୍ୟାତ ମାନସ ରଚନା / ଶୁଣ ସୁରସିକ ଜନେ ହୋଇଣ ସୁମନା ।"
(ରସିକହାରାବଳୀ)

"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିଚାରଇ / ଏଣୁ କରିଥିବ ଅଳଙ୍କାରଯୁକ୍ତ ହୋଇ ।
ପଦ ସରଳ ଧ୍ୱନିରେ ମାନସ ମୋହିବ / ଅର୍ଥୀଜନ ପ୍ରବରକୁ ଆନନ୍ଦ କରିବ ।"
(ଲା. ବ. – ପ୍ରଥମ ଛାନ୍ଦ)

ଏହି ଯଦି ହେଲା କବିଙ୍କର ନିଜର ସୃଜନାଦର୍ଶ, ଆମର ତାଙ୍କୁ ଆଧୁନିକ ମାନଦଣ୍ଡ ଦେଇ ବିଚାର କରିବାର କୌଣସି ଯଥାର୍ଥତା ନାହିଁ ।

ଯଥାଯଥ ପରିପ୍ରେକ୍ଷିତ ପ୍ରତି ଆଖି ରଖି ବିଚାର କଲେ, ଭଞ୍ଜଙ୍କ କାବ୍ୟରେ ଯୌନଚର୍ଚ୍ଚାର ପ୍ରାଚୁର୍ଯ୍ୟକୁ ମଧ୍ୟ ଆମେ ଶାଶ୍ୱତ ମୋହିନୀ ନାରୀ ବା ସୁନ୍ଦର ଶରୀରର ମହିମା-ଗାନ ଛଡ଼ା ଅନ୍ୟ କିଛି ନୁହେଁ ବୋଲି ମାନିବାକୁ ବାଧ୍ୟହେବା । ଆମେ 'ପ୍ରେମସୁଧାନିଧି'ର ସପ୍ତମ ଛାନ୍ଦରେ ପଢ଼ୁଁ –

"ରସିକ ବିଚାର କରେ ଦୀପ ଦାନ କାର୍ତ୍ତିକରେ
ପ୍ରୟାଗେ ସ୍ନାନ ମକରେ ଯେହୁ ନ କରେ,
ମିଶେ କି ସେ ଆଲୋକରେ ଉତ୍ତମ ରାମା ଅଙ୍କରେ
ଘେନି ବସେ ପଲ୍ୟଙ୍କରେ କି ହିମକରେ ।
ପୂର୍ବେ ସେବିଥିଲେ ଶଙ୍କରେ / ସେଫଳୁ ଧରି ଶ୍ରୀଫଳ ଉରଜ କରେ ।" –

ଏହାକୁ ଅଶ୍ଳୀଳ ବୋଲି ନାକ ଟେକିଲାବେଳେ ମହାକବି କାଳିଦାସଙ୍କର ମେଘଦୂତର ଏ ପଙ୍‌କ୍ତି କାହିଁକି ଭୁଲିଯାଉ – "ଜ୍ଞାତାସ୍ୱାଦଃ ବିବୃତଜଘନାଂ କୋ ବିହାତୁମ୍ ସମର୍ଥଃ", (ଆଗରୁ ସେ-ସ୍ୱାଦ-ପାଇଥିବା କେଉଁ ଲୋକ ଅନାବୃତ-ଜଘନା ସ୍ତ୍ରୀକୁ ଛାଡ଼ିଦେଇ ଚାଲିଯାଇପାରେ) ? ଆଧୁନିକ କାଳର ନଗ୍ନ ଚିତ୍ର, ମୂର୍ତ୍ତି ଓ ଯୌନବ୍ୟବହାର- ବର୍ଣ୍ଣନାପୂର୍ଣ୍ଣ ବ୍ୟାପକ ସାହିତ୍ୟକୁ ବା ଭୁଲିଯାଉ କାହିଁକି ?

ଆମକୁ ମଧ୍ୟ ସ୍ମରଣ ରଖିବାକୁ ହେବ ଯେ, ଉପେନ୍ଦ୍ର ଥିଲେ ଜଣେ ରାଜପୁତ୍ର । ସୁନ୍ଦର ତରୁଣତରୁଣୀମାନଙ୍କ ସହିତ ଦୈନନ୍ଦିନ ଜୀବନଯାପନ କରି ତାର ପ୍ରଭାବରୁ ସେ ମୁକ୍ତ

ହୋଇନପାରନ୍ତି । କିଂବଦନ୍ତୀ ଅନୁସାରେ କବି ନିକଟବର୍ତ୍ତୀ ଏକ ରାଜ୍ୟର ସୁନ୍ଦରୀ ଓ ସାହିତ୍ୟିକା ରାଜକୁମାରୀଙ୍କୁ ବିବାହ କରିଥିଲେ ଏବଂ ଅତ୍ୟନ୍ତ ସୁଖମୟ ହୋଇଥିଲା ତାଙ୍କର ଦାମ୍ପତ୍ୟଜୀବନ । କବିଙ୍କ ଲେଖନୀନିଃସୃତ ପ୍ରଣୟ ସଙ୍ଗୀତାବଳି ବୋଧହୁଏ କେବଳ ଗତାନୁଗତିକ ସୃଷ୍ଟି ନୁହେଁ; କବିଙ୍କର ନିଜ ଅନୁଭବଗୁଡ଼ିକର ଉଷ୍ଣତା ସେଗୁଡ଼ିକ ବହନ କରୁଥିବା ପରି ସ୍ପଷ୍ଟ ଜଣାଯାଏ । ନିମ୍ନୋଦ୍ଧୃତ ପଙ୍‌କ୍ତିଗୁଡ଼ିକ ପ୍ରମାଣ କରୁଛି ଯେ ଉପେନ୍ଦ୍ର କେବଳ ଏକ ଯୌନସୁଖାଶାୟୀ ପ୍ରଣୟୀ ନଥିଲେ; ବରଂ ଯେକୌଣସି ସୁଧୀ ପାଠକ ଏଗୁଡ଼ିକରେ ଦେଖିପାରିବେ ଚିରନ୍ତନୀ ନାରୀପ୍ରତି କବି-ହୃଦୟର ନିବିଡ଼ ଆରାଧନା ଓ ସକଳ ମହାକବିଙ୍କ ପରି ଏ କବିର ଲେଖନୀ ମଧ୍ୟ ମାନବିକ ସକଳ ବାସନାରାଜିକୁ କିପରି ସରଳ ଅଥଚ ହୃଦୟସ୍ପର୍ଶୀ ଭାବରେ ପ୍ରକାଶ କରିପାରୁଥିଲା ।

"ନୀରଦ ଗଗନେ ଘୋଟି ଦିନେ କରୁଥିଲା ବୃଷ୍ଟି
ଝଟଝଟ ମାରୁଥିଲା ବିଦ୍ୟୁ,
ନୀଳକଣ୍ଠ, ଭେକକୁଳ ଘନେ କରୁଥିଲେ ରୋଳ
ଡାହୁକ ବଚନ ଅତି ମଞ୍ଜୁ, ରେ ନଳିନାକ୍ଷି,
ନିଶି ଅର୍ଦ୍ଧ ହୋଇଥିଲା ତହିଁ, ନିପଗନ୍ଧ ଘେନି ଗନ୍ଧବାହୀ, ସେ
ନାନା ଭାବେ ମନ ହରି ତୁ ପୁଣି କେତେ ଚତୁରୀ
ମୋ ଚିତ୍ତ ବୋଧିବାବେଳେ ସତେ,
ନିୟମ ଯେ କରାଇଲୁ ତହିଁ ଉତ୍ତାରୁ ବୋଇଲୁ
କେବେ ନ ଛାଡ଼ିବୁ ବୋଲି ମତେ, ରେ ନିରବଧି,
ନୁହେଁ ଅନ୍ତର ସେ କଥା ସହି, କାହିଁ ଗତି ଉପଇନ୍ଦ୍ର କହି, ସେ ।"

**ଗୀତକାରକ ଉପେନ୍ଦ୍ର –**

ସରଳ, ସ୍ୱାଭାବିକ ଆଶା-ବାସନାରାଜିକୁ ସହଜ ସୁନ୍ଦର କରି ପ୍ରକାଶ କରିବାର ଯେଉଁ କ୍ଷମତା, ଉପେନ୍ଦ୍ର-ପ୍ରତିଭାର ସେ ଅଂଶଟି ବିଶେଷ ଭାବରେ ଫୁଟିଉଠିଛି ତାଙ୍କର ଗୀତମାନଙ୍କରେ । ଗୀତରଚନାରେ ଉପେନ୍ଦ୍ର ଓଡ଼ିଆ ସାହିତ୍ୟରେ ବୋଧହୁଏ ପୁରୋଗାମୀ । ଯୌବନ ଓ ପ୍ରଣୟର ବର୍ଣ୍ଣ-ଗନ୍ଧ ସବୁକୁ ଉତ୍ତମ ରାଗ-ରାଗିଣୀରେ ପ୍ରକାଶ କରି, ଉପେନ୍ଦ୍ର-ସଙ୍ଗୀତ ସମଗ୍ର ଓଡ଼ିଶାରେ ଏପର୍ଯ୍ୟନ୍ତ ଜନପ୍ରିୟ ରହିଛି ।

ବିରାଟ କୃତିତ୍ୱ ସତ୍ତ୍ୱେ କବି ଉପେନ୍ଦ୍ର ଜଣେ ଅକୃତ୍ରିମ ଭାବରେ ବିନୀତ ପୁରୁଷ ଥିବାର ମଧ୍ୟ ଜଣାଯାଉଛି । ତାଙ୍କର ମହାକାବ୍ୟ ବୈଦେହୀଶବିଳାସର ଆଦ୍ୟରେ ସେ ଏ କ୍ଷେତ୍ରରେ ପୂର୍ବସୂରି ବାଲ୍ମୀକି, କାଳିଦାସ ଓ ବଳରାମ ଦାସ ପ୍ରଭୃତିଙ୍କୁ ନମସ୍କୃତି ଜଣାଇଛନ୍ତି ଓ ସୂର୍ଯ୍ୟ, ଚନ୍ଦ୍ର, ତାରକାମାନଙ୍କ ଅବସ୍ଥିତି ସତ୍ତ୍ୱେ ଖଦ୍ୟୋତର ଆବିର୍ଭାବ ପରି ସେମାନଙ୍କ ସିଦ୍ଧିସବୁ ଥାଉଁ ଥାଉଁ, ନିଜ ଲେଖନୀର ଏ ନୂତନ ଚେଷ୍ଟାର କିଞ୍ଚିତ୍ ଯଥାର୍ଥତା ଥାଇପାରେ ବୋଲି କହିଛନ୍ତି । କବି ତାଙ୍କର ପ୍ରତି ଗ୍ରନ୍ଥର ପ୍ରତି ଛାନ୍ଦର ଶେଷରେ ବିଶ୍ୱସ୍ରଷ୍ଟା ବା ଇଷ୍ଟଦେବତାଙ୍କୁ

ପ୍ରାର୍ଥନା କରିଛନ୍ତି କାବ୍ୟର ସିଦ୍ଧି ପାଇଁ । ପ୍ରେମସୁଧାନିଧି କାବ୍ୟର ଶେଷରେ କବି ଏହିପରି ପ୍ରାର୍ଥନା ଛାଡ଼ିଯାଇଛନ୍ତି –

''ଆହେ ପ୍ରଭୋ କୃପାଅକୂପାର କୃପା କର
ଖ୍ୟାତ ହେଉ ପ୍ରେମସୁଧାନିଧି ଗୀତ ମୋର ।
ଏ ପ୍ରବନ୍ଧ ତିନିଶତ ପଞ୍ଚାନୋଇ ପଦ
ସଦନ କରୁ ଉତ୍ତମ ଜନଙ୍କର ହୃଦ ।''

କବିଙ୍କର ଗଭୀର ଆଧ୍ୟାତ୍ମିକତା ବୈଦେହୀଶବିଳାସର ସେହି ସୁପରିଚିତ ଶ୍ଳୋକଟିରେ ମନୋରମ ଭାବରେ ପ୍ରକଟିତ ହୋଇଉଠିଛି –

''ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର,
ପୟରେ କ୍ଷାଳିତ କରି ବସନେ ପୋଛି,
ବ୍ରହ୍ମାରେ ଧୌତ ଯେ ପଦ ନୋହିଛି, ଶିବ ବିଷାଦ
ନ ପାଇ ଚରଣାମୃତପାନକୁ ଇଚ୍ଛି,
ବିଜ୍ଞାନୀ କୈବର୍ତ୍ତ ଧୋଇଲା, ବିଶ୍ୱେ ପତିତପାବନ ନାମ ରହିଲା ।''

ସାଂପ୍ରତିକ କାଳରେ ଏକାଧିକ ନାଟକକାରଙ୍କ ଦେଇ କବିଙ୍କ ଜୀବନଚରିତ ଜାକଜମକତା ସହିତ ମଞ୍ଚସ୍ଥ ହୋଇଛି । କବିଙ୍କର ଲାବଣ୍ୟବତୀ ଓ ଅନ୍ୟାନ୍ୟ କାବ୍ୟମାନଙ୍କ ଉପରେ ରଚିତ ନୃତ୍ୟନାଟିକାସବୁ ମଧ ବେଶ୍ ସଫଳତା ଲାଭକରିଛନ୍ତି । ଗତ ଦୁଇଶହ ବର୍ଷଧରି ଉତ୍କଳର ଶତଶତ ଭ୍ରାମ୍ୟମାଣ ପାଲାବାଲାଙ୍କର ମଧ ଉପେନ୍ଦ୍ର-କାବ୍ୟ ହୋଇ-ଆସିଛି ଗଣ୍ଠିଧନ । ସେମାନେ ଉପେନ୍ଦ୍ରଙ୍କ ଶବ୍ଦଚାତୁର୍ଯ୍ୟ, କଳ୍ପନାବିଳାସ ଓ ପ୍ରେମ-ଯୌବନର ଯାଦୁକରୀ ସଂସାରକୁ ମନୋହର ଆବୃତ୍ତିରେ ପରିବେଷିତ କରି, ଓଡ଼ିଆ ଜନତାକୁ ଏ ପର୍ଯ୍ୟନ୍ତ ମନ୍ତ୍ର-ମୁଗ୍ଧ କରି ରଖନ୍ତି ଓ ଚିରକାଳ ରଖୁଥିବେ ।

**ସାଳଙ୍କାର ରୀତିରେ ବୈଷ୍ଣବ କାବ୍ୟ-କବିତା –**

ଘୁମୁସର ରାଜବଂଶରେ ଆମେ ପୁରୁଷ-ପୁରୁଷଧରି ସାହିତ୍ୟ-ଚର୍ଚ୍ଚାର ଯେଉଁ ପରମ୍ପରା ଦେଖୁ, ଏହି କାଳରେ ତାହା ସମଗ୍ର ଦେଶରେ ବିକୀର୍ଣ୍ଣ ହୋଇପଡ଼ିଥିଲା ପରି ମନେହୁଏ । ଏହାର ପ୍ରେରଣା ଆସିଥିଲା ଧର୍ମରୁ । ଏକପକ୍ଷରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ଦ୍ୱିତୀୟରେ ଚୈତନ୍ୟ-ପ୍ରଚାରିତ ନବ-ବୈଷ୍ଣବବାଦ ଏକ ଧର୍ମ ସଚେତନତା ଓଡ଼ିଆ-ସମାଜର ପ୍ରତି ସ୍ତରରେ ସଞ୍ଚାରିତ କରିସାରିଥିଲା ରାଜପରିବାରଠାରୁ କୃଷକ ପରିବାରଯାଏ । ଏଇ ସମୟରେ ଅନେକ ରାଜା ଓ ରାଣୀ କାବ୍ୟ ରଚନା କରି ଅମରତ୍ୱ ଲାଭର ଚେଷ୍ଟା କରିଥିଲେ ଏବଂ ଏକ କାବ୍ୟ-ଚିକୀର୍ଷା ସାଧାରଣ ଜନତା ମଧରେ ବିଚ୍ଛୁରିତ ହୋଇପଡ଼ିଥିବାର ମଧ ଜଣାଯାଉଛି । ମୋଟଉପରେ ଏହି କବି-ସଂଘ ଗୀତା, ସଂହିତା, କାବ୍ୟ ଓ ଅନ୍ୟାନ୍ୟ ବିବିଧ ରଚନାର ଏକ ବିପୁଳ ଗଦା ଛାଡ଼ିଯାଇଛନ୍ତି; ଯାହାର ଅନେକାଂଶ ବୋଧହୁଏ ଏପର୍ଯ୍ୟନ୍ତ ଉତ୍କଳର ସହସ୍ର ସହସ୍ର ଗ୍ରାମର ତାଳପତ୍ର-ପୁସ୍ତକାଳୟ ମାନଙ୍କରେ ଲୁକ୍କାୟିତ

ହୋଇ ପଡ଼ିରହିଛନ୍ତି । କାବ୍ୟ ବା ସାହିତ୍ୟ-ଚର୍ଚ୍ଚାର ବ୍ୟାପକତା ଆମେ ଅବବୋଧକୁ ଆଣିପାରିବା ଯେତେବେଳେ ଆମେ ଦେଖୁଁ ଯେ, ନାରୀକବି ବୃନ୍ଦାବତୀ ଦାସୀଙ୍କ ପିତା, ସ୍ୱାମୀ, ପୁଅ ଓ ନାତି ମଧ୍ୟ କବି ଥିଲେ । ସମଗ୍ର ପରିବାର ଥିଲେ କୃଷ୍ଣଭକ୍ତ ଓ ପ୍ରତ୍ୟେକେ ସେହି ଗୋଟିଏ ବିଷୟ ଉପରେହିଁ ପୁସ୍ତକ ପରେ ପୁସ୍ତକ ଲେଖିଚାଲିଛନ୍ତି ।

ଏହି ରାଶୀକୃତ କାବ୍ୟ-ସୃଷ୍ଟିରେ ଆମେ ବର୍ତ୍ତମାନ ମୁଖ୍ୟ ଉପାଦାନ ହୋଇ ଉଠିଥିବାର ଦେଖୁଁ ରାମ ଓ କୃଷ୍ଣଙ୍କର ଜୀବନଚରିତ, ବିଶେଷକରି କୃଷ୍ଣଙ୍କର । କୃଷ୍ଣ ଚରିତର ତିନୋଟି ଘଟଣାହିଁ ଏ ଯୁଗର କବି-ଲେଖନୀକୁ ବିଶେଷଭାବରେ ପ୍ରଭାବିତ କରିଛି – ବୃନ୍ଦାବନରେ ଗୋପ-ଗୋପୀ ସହିତ ତାଙ୍କର ଲୀଳା, ବୃନ୍ଦାବନରୁ ତାଙ୍କର ମଥୁରାଯାତ୍ରା ଓ ଶେଷରେ ଦ୍ୱାରକାରେ ତାଙ୍କର ରାଜତ୍ୱ । ଏସବୁ ହେଲା ଶ୍ରୀକୃଷ୍ଣ-ଜୀବନର ବାହ୍ୟ ଘଟଣାବଳି ମାତ୍ର । ଏହାର ନିମ୍ନରେ ଥିବା ରାସ ଓ ଭକ୍ତିଧର୍ମର ଆଧାତ୍ମିକ ବ୍ୟାଖ୍ୟାନସବୁ ଏହି ସାହିତ୍ୟରେ ଭରିରହିଛି ।

ରାମଚରିତ ନେଇ ଆଳଙ୍କାରିକ କାବ୍ୟରଚନାରେ ସମଗ୍ର ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଅସାମାନ୍ୟ ଓ ଅନନ୍ୟ । କୃଷ୍ଣଭକ୍ତ କବିମାନଙ୍କର ସଂଖ୍ୟା ଅନେକ । ସେମାନଙ୍କ ମଧ୍ୟରୁ ଏହିମାନେହିଁ ମୁଖ୍ୟ ଓ ବିଚାରଣୀୟ ବୋଲି ଧରାଯିବେ – ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର ଓ ଭକ୍ତଚରଣ ଦାସ – ଏମାନେ ବରେଣ୍ୟ କୃଷ୍ଣଭକ୍ତ ଓ ସେହିପରି ବରେଣ୍ୟ ଆଳଙ୍କାରିକ କବିଭାବରେ ।

**ଦୀନକୃଷ୍ଣ (ଆନୁମାନିକ କାଳ ୧୬୮୬-୧୭୧୩) –**

ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ଜଣେ, ନା ଦି'ଜଣ, ନା ତିନିଜଣ, ସେ ନେଇ ବାଦବିବାଦ ଚାଲିଛି । 'ରସକଲ୍ଲୋଳ' ଓ ହୃଦୟସ୍ପର୍ଶୀ 'ଆର୍ତ୍ତତ୍ରାଣ ଚଉତିଶା' ଏକ ଦୀନକୃଷ୍ଣ ଦାସଙ୍କର – ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଏହି ମତକୁ ମୁଁ ନିରାପଦ ଭାବରେ ମାନିନେଇଛି । ଏହି ଦୀନକୃଷ୍ଣ ପୁରୀବାସୀ ଥିଲେ ଓ ତାଙ୍କର ଜୀବନ ଥିଲା ଦୁର୍ବିସହ ଦୁଃଖମୟ । ମନେହେଉଛି ଯେ ଦରିଦ୍ର ହେଲେହେଁ ସେ ଥିଲେ ସ୍ପଷ୍ଟବାଦୀ ଓ ଅକୁତୋଭୟ ଲୋକ । ମଧ୍ୟବୟସରେ କୁଷ୍ଠରୋଗାକ୍ରାନ୍ତ ହୋଇପଡ଼ିବାରୁ ତାଙ୍କର ଦୁର୍ଦ୍ଦଶା ଚରମକୁ ଉଠିଥିଲା । ଦୈନ୍ୟ ଓ ବ୍ୟାଧିର ଏହି ଯୁଗ୍ମ ଦୁର୍ବହ ଭାର ବହନକରି ମଧ୍ୟ, ଏହି ଭକ୍ତକବି ପ୍ରାୟ ବାରଖଣ୍ଡ ଗ୍ରନ୍ଥ ଛାଡ଼ିଯାଇଛନ୍ତି; ଯେଉଁଥିରୁ ଛଅଟି ଏପର୍ଯ୍ୟନ୍ତ ଓଡ଼ିଶାରେ ଜନପ୍ରିୟ । କବି ଏକପକ୍ଷରେ କଠୋର ଜୀବନ-ସଂଗ୍ରାମ ଓ ଅନ୍ୟପକ୍ଷରେ କବିଭାବରେ ସମାଦର, ଉଭୟରେ ବ୍ୟର୍ଥକାମ ହୋଇ ହତାଶ ଜୀବନ ଯେ ଯାପନ କରିଥିଲେ, ରସକଲ୍ଲୋଳର ଷୋଡ଼ଶ ଛାନ୍ଦର ଶେଷ ଶ୍ଳୋକରେ ତାହାର ସ୍ପଷ୍ଟ ସୂଚନା ଆମେ ପାଇଥାଉ –

''କାହା ହୃଦୟ ଦ୍ରବଇ ନାହିଁ    ଜଳେ ଉପଳ ପରାୟ ହୋଇ
କେବଳ ବାହାରକୁ ତିନ୍ତିଲା ପରାୟ ଦିଶେ ଯେ,
କରନ୍ତି ଅଙ୍ଗେ ଅନେକ ଛାପ    କେହି ନ ଜାଣେ ଭିତର ପାପ,
ଚିତ୍ରକାରକ ପତ୍ର ପରାୟେ ପ୍ରତ୍ୟକ୍ଷ ଦିଶେ ଯେ,

କଥା କଥାକେ କହିବାକୁ ଶଲ୍ୟ ଯେ,
କିମ୍ବା ଦୀନକୃଷ୍ଣଙ୍କୁ ଏମନ୍ତ କଲ ଯେ,
କବି ଯା କରେ ମୂର୍ଖକୁ ସ୍ତୁତି ଏଥିରୁ ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେ କାତି ମାରିବା ଭଲ ଯେ ।''

କବିଙ୍କର ପ୍ରଧାନ କାବ୍ୟ 'ରସକଲ୍ଲୋଳ', କ-ଆଦ୍ୟ-ନିୟମରେ ରଚିତ, ଯେପରି ଉପେନ୍ଦ୍ରଙ୍କ ବୈଦେହୀଶବିଳାସ ବ-ଆଦ୍ୟ-ନିୟମରେ ରଚିତ । ଭଞ୍ଜଙ୍କ ଗ୍ରନ୍ଥଠାରୁ ଦୀନକୃଷ୍ଣଙ୍କ ଗ୍ରନ୍ଥ ଅଧିକ ସରଳ ଓ ମୋଟଉପରେ ମଧୁରତର । ସମଗ୍ର ଗ୍ରନ୍ଥ ବ୍ୟାପକଭାବରେ ମଧୁର ଧ୍ୱନିମୟ ଓ କୋମଳ ମସୃଣ ପଦାବଳିଖଚିତ । ପୁଣି ବିବିଧ ଯମକ, ଅନୁପ୍ରାସାଦି ଅଳଙ୍କାରଭୂଷିତ ।

''କୁସୁମ ସମୟ ହୋଇଲା ଉଦୟ ଦକ୍ଷିଣା ପବନ ବହିଲା,
କାମଦେବଦୂତ ହୋଇ ମହାମତ୍ତ ପଞ୍ଚମସ୍ୱରରେ କହିଲା,
କନ୍ଦର୍ପ, ଦର୍ପ ହୋଇଲା ଅତିଶୟ
କୁସୁମ-ବିଶିଖ କରିବାକୁ ଲାଖ କାମୀ କାମିନୀ କଲେ ଭୟ ।
କମଳ, ରସାଳ, ନୀଳ ଉତ୍ପଳ, ନିଆଳି, ଅଶୋକ ବିକାଶ,
କାମ ପଞ୍ଚବାଣ କାମୀ ପଞ୍ଚପ୍ରାଣ ଘେନିବାକୁ ହେଲେ ପ୍ରକାଶ,
କେତକୀ, କୁନ୍ଦେ କି ହୋଇଲା ପ୍ରକଟ
କାନ୍ତା କାନ୍ତ ଭେଟ ଅଭେଟ ହୋଇଲା, ଜୀବ ଯିବା ହେଲା ନିକଟ ।''

କିନ୍ତୁ କବି ଯଦିଓ କୃଷ୍ଣଭକ୍ତ ଥିଲେ, ମନେହୁଏ ପ୍ରେମର କଳ୍ପନାରେ ସେ ଜାନ୍ତବ ସ୍ତରରୁ ଉପରକୁ ଉଠିପାରି ନଥିଲେ । କୃଷ୍ଣଙ୍କର ବୃନ୍ଦାବନ ଲୀଳା କବି ଯେପରି ବର୍ଣ୍ଣନା କରିଛନ୍ତି, ତାହା ତାଙ୍କ ଇଷ୍ଟଦେବତାଙ୍କ ପକ୍ଷରେ ଆଦୌ ଗୌରବାବହ ନୁହେଁ । କୃଷ୍ଣଚରିତ ନେଇ କବିଙ୍କର ଅନ୍ୟାନ୍ୟ ଖଣ୍ଡ-ରଚନାରେ ମଧ ଆମେ ସେହି ଏକା ଜାନ୍ତବ ସ୍ତରର ପରିଚୟ ପାଉଁ । ଆଧ୍ୟାତ୍ମିକ ବିଷୟର ପ୍ରଲୋଭନରେ ପାଠକ କ୍ରମେ ପଶିଯାଏ ଯୌନବିଳାସର ଜଙ୍ଗଲରେ ।

କବିଙ୍କର 'ଆର୍ତ୍ତତ୍ରାଣ ଚଉତିଶା' କିନ୍ତୁ ମାନବିକ ମହତ୍ତ୍ୱମଣ୍ଡିତ । ଜଗନ୍ନାଥଙ୍କ ସମ୍ମୁଖରେ କବି ଏହା ନିଜେ ପ୍ରତ୍ୟହ ଆବୃତ୍ତି କରୁଥିବାର କୁହାଯାଏ । ତାହା ମିଥ୍ୟା ଭାବିବାର କୌଣସି ହେତୁ ନାହିଁ । ଏହି ଚଉତିଶାଟିରେ କବିଙ୍କର ଶାରୀରିକ ଓ ଆତ୍ମିକ ଦୁଃଖ ଦହନ ସ୍ପଷ୍ଟ ପ୍ରକଟିତ ହୋଇଉଠିଛି ଓ ମାନବିକ ଦୁଃଖର ପାବନ ସ୍ପର୍ଶରେ କବିତାଟି ବ୍ୟକ୍ତିର ସ୍ତରରୁ ଉଠିଆସିଛି ସମୂହର ସ୍ତରକୁ ।

''ଖିଳ ବ୍ରହ୍ମାଣ୍ଡୋଦରେ କର୍ମହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ,
ଖଗତିଳକ-କାନ୍ତ ସେ କାରଣୁ ଏମନ୍ତ
ଖେଦ ଆରତେ କହିଲଇଁ ହେ, ମହାପ୍ରଭୁ !

ଖଣ୍ଡିଲା ନାହିଁ ଯେଣୁ ମୋର, ଖେଦ କରୁଣା ରତ୍ନାକର
ଖିଳ ବ୍ରହ୍ମାଣ୍ଡଧର ଖଣ୍ଡିନାହଁ କାହାର
କେଉଁ ବିପତ୍ତି ବିଶ୍ୱମ୍ଭର ହେ, ମହାପ୍ରଭୁ !
× × × ×
କ୍ଷମାସାଗର ବୋଲି ଛାମୁରେ ଜଣାକଲି
ତେଣୁ ମୁଁ ସିନା ବାରେ ବାରେ,
କ୍ଷଣେହେଁ ମୋର ମନ ନ ରହେ ତୁମ୍ଭ ଧ୍ୟାନ,
ଗୁଣ ଗାୟନମାନଙ୍କରେ ହେ, ମହାପ୍ରଭୁ !
କ୍ଷୋଭ ଯେବେ ମନେ ହୁଅନ୍ତା, କ୍ଷଣେହେଁ ନାମ କେ ଜପନ୍ତା,
ଛାର ଦୀନ ପାମର କୃଷ୍ଣ କିପାଇଁ ଛାର
ଭବସାଗରକୁ ତରନ୍ତା ହେ, ମହାପ୍ରଭୁ ! *

**ଅଭିମନ୍ୟୁ ସାମନ୍ତସିଂହାର –**

ଉତ୍ତର ପ୍ରଦେଶର ରୋହିଲାଖଣ୍ଡ ଅଞ୍ଚଳରୁ ଆଗତ ଓ ବହୁକାଳଧରି ଉତ୍କଳରେ ବସତି କରିସାରିଥିବା ଏକ କ୍ଷତ୍ରିୟ ପରିବାରରେ କବିଙ୍କର ଜନ୍ମ । କଟକ ଜିଲ୍ଲାର ବାଲିଆ ନାମକ ଗ୍ରାମରେ କବିଙ୍କ ବଂଶଧରମାନେ ପୂର୍ବର ଆଭିଜାତ୍ୟ ସହିତ ଏପର୍ଯ୍ୟନ୍ତ ବାସକରନ୍ତି । କବି ୧୭୫୭ରେ ଜନ୍ମହୋଇ ଓଡ଼ିଶା ବ୍ରିଟିଶମାନଙ୍କଦ୍ୱାରା ଅଧିକୃତ ହେବାର ୫ ବର୍ଷ ପରେ ୧୮୦୭ରେ ପ୍ରାଣତ୍ୟାଗ କରିଥିଲେ । ଜ୍ଞାନୀ ଓ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମଙ୍କ ** ଗୃହ-ଶିକ୍ଷକତାରେ ବାଳକ ଅଭିମନ୍ୟୁ ସେକାଳ ଅନୁଯାୟୀ ଏକ ପରିପୂର୍ଣ୍ଣ ଶିକ୍ଷା ଲାଭକରିଥିଲେ କେବଳ ନୁହେଁ, ବୈଷ୍ଣବ କବି-ଗୁରୁଙ୍କଠାରୁ ବୈଷ୍ଣବମତର ରହସ୍ୟାଦି ସହିତ ମଧ୍ୟ ବୋଧହୁଏ ପରିଚିତ ହୋଇଥିଲେ । ଉଭୟ ଜ୍ଞାନକୁ ଏକତ୍ର କରି ଅଭିମନ୍ୟୁ ପରେ ନିଜର ଇଷ୍ଟଦେବତା ଶ୍ରୀକୃଷ୍ଣଙ୍କ ପାଇଁ ଏକ ଯଥାଯୋଗ୍ୟ ବାଣୀମନ୍ଦିର ଠିଆ କରାଇବାକୁ ଚେଷ୍ଟା କରିଥିଲେ । ଅପୂର୍ବ ଗୀତି-କାବ୍ୟର ସୁଷମା ସହିତ ସେହି ମନ୍ଦିରର

---

* ଏହି ଇତିହାସର ସମାପ୍ତି ହୋଇଛି ରସକଲ୍ଲୋଳ-ଶ୍ଳୋକରେ । ତେଣୁ ଇଂରାଜୀ ଗ୍ରନ୍ଥରେ ଦୀନକୃଷ୍ଣଙ୍କ ଚର୍ଚ୍ଚା କଲାବେଳେ ବେଶୀ ଉଦାହରଣ ଦିଆଯାଇନଥିଲା । ପୁଣି ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ ଓ ଗୋପାଳକୃଷ୍ଣ ପ୍ରଭୃତି କବିମାନେ ସେହି ଏକାକଥା ବାରମ୍ବାର କହିଥିବାରୁ ପୁନରାବୃତ୍ତିର ମଧ୍ୟ ଆଶଙ୍କା ଥିଲା । ସୌଷ୍ଠବମୟ ଅନୁବାଦ ହୋଇପାରିବ କି ନାହିଁ, ତାହା ମଧ୍ୟ ବିଚାରର ବିଷୟ ଥିଲା । ଉପସ୍ଥିତ କ୍ଷେତ୍ରରେ ଏ ପ୍ରକାର ଆଶଙ୍କା ନଥିବାରୁ କିଛି ଅଧିକ ଦୃଷ୍ଟାନ୍ତ ଦିଆଗଲା ।

'ପ୍ରସ୍ତାବସିନ୍ଧୁ' ଓଡ଼ିଆ ଭାଷାରେ ଏକ ଅନନ୍ୟ ରଚନା । ଏ କେଉଁ ଦୀନକୃଷ୍ଣ ଦାସଙ୍କର ସେ ବିବାଦକୁ ମୁଁ ଯାଇପାରିବି ନାହିଁ । ଇଂରାଜୀ ଗ୍ରନ୍ଥରେ ଏ ପୁସ୍ତକର ଆଲୋଚନାକୁ ମୁଁ ପରିତ୍ୟାଗ କରିଛି ଏହି କାରଣରୁ ଯେ, ଏଥିରେ ନାରୀଚିତ୍ର ବଡ଼ ଜଘନ୍ୟ ହୋଇଉଠିଛି ।

** ଅଷ୍ଟମ ଅଧ୍ୟାୟରେ ଚୌତିଶା ଆଲୋଚନା ଭିତରେ ଆଲୋଚିତ ।

ଗାତ୍ର ଆଦିମ ଅଳଙ୍କରଣ-ପ୍ରାଚୁର୍ଯ୍ୟରେ ବିମଣ୍ଡିତ ଥିବାର ଆମେ ଦେଖୁ । କବିଙ୍କ ବାଲ୍ୟ ରଚ଼ନାଦି ଦେଖିଲେ ମନେହେଉଛି ଯେ, ସେ ଯଦି ବୈଷ୍ଣବ-କବି ସଦାନନ୍ଦଙ୍କ ଦ୍ୱାରା ଅଳ୍ପ ବୟସରୁ ପ୍ରଭାବିତ ନହୋଇପଡ଼ିଥାନ୍ତେ, ତେବେ ସେ ଓଡ଼ିଆ ସାହିତ୍ୟକୁ ଦୈନନ୍ଦିନ ଜୀବନର ଜୀବନ୍ତ-ସ୍ପର୍ଶ, ସ୍ପନ୍ଦିତ-ଶକ୍ତିମାନ୍ ଓ ଉଷ୍ଣ ଅନେକ ରଚ଼ନାଦ୍ୱାରା ସମୃଦ୍ଧ କରିଯାଇଥାନ୍ତେ, ଯେପରି କଲେ ତାଙ୍କର ପ୍ରାୟ ସମସାମୟିକ ବ୍ରଜନାଥ ବଡ଼ଯେନା । କାରଣ 'ବାଘଗୀତ' ଓ 'ଚଢ଼ାଇଗୀତ' ଆଦି କବିଙ୍କ ଆଦ୍ୟ ଜୀବନର ଅବୈଷ୍ଣବ ରଚ଼ନା ସାମାନ୍ୟ ହେଲେହେଁ ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ, ଅସାଧାରଣ ଏବଂ ରୁକ୍ଷ ବାସ୍ତବତା ଓ ଶକ୍ତିବିହ୍ୱଳରକ କର୍ମ ପର୍ଯ୍ୟାୟରେ ଅଭିଭୂତ ।

କ୍ଷୁଦ୍ର ବାଘଗୀତଟିରେ ଆମେ କେବଳ ଏକ ଶିକାରର ମନୋରମ ବର୍ଣ୍ଣନା ପାଉନା; ସେଥିରେ ମଧ ପାଇଥାଉ କବିଙ୍କ ପାରିବାରିକ ଜୀବନର କେତେକ ଚିରସ୍ପର୍ଶୀ ଦୃଶ୍ୟାଂଶ ।

''ବାଲିଆ ବୋଲି ଯେ ଏକ ନଗର, ତହିଁ ନୃପତି ସାମନ୍ତସିଂହାର,
ରସିକ ବିବେକୀ ବଡ଼ ଧାର୍ମିକ, ପ୍ରଶଂସା କରନ୍ତି ବହୁତ ଲୋକ,
ତହିଁରେ ପ୍ରବଳ, ନିରତେ ଶୁଭଇ ଶାର୍ଦ୍ଦୂଳ ଗୋଳ ।''

ଏହି ବାଘମରା-ଅଭିଯାନରେ ଜଣେ ଯୁଗଳ ଗଡ଼ନାୟକଙ୍କର ପରିଚ଼ୟ ପାଉଁ; ଯାହାଙ୍କ ସମ୍ବନ୍ଧରେ ଆଉ ଆଉ ଜାଣିବାକୁ ଇଚ୍ଛା ହେଉଛି । ଯୁଗଳ ଗଡ଼ନାୟକ ବୋଧହୁଏ ସାମନ୍ତସିଂହାରଙ୍କ ଉଆସର ହେଡ୍ କନଷ୍ଟବଲ୍ ରକମର ଥିଲେ । ଶିକାରର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗଡ଼ନାୟକେ ସବୁଠି । ବାଘ ପ୍ରକୃତରେ ମଲା କବିଙ୍କ ବଡ଼ଭାଇ ବୈକୁଣ୍ଠଙ୍କ ଗୁଳିରେ; କିନ୍ତୁ ଗଡ଼ନାୟକେ ତାଙ୍କ କାରସାଦି ଦେଖେଇବାକୁ ଛାଡ଼ିନଥିଲେ ।

''ବୈକୁଣ୍ଠ ଭାଇ ଯେ ମାଇଲେ ଗୁଳି, ତେବେ ବଡ଼ ବାଘ ପଡ଼ିଲା ଢଳି ।
ପଛରେ ଥିଲେ ଯେ ଯୁଗଳ ଭାଇ, ଅଣ୍ଟାରେ ବାଡ଼ିଏ ଦେଲେ ଲଗାଇ,
ଦେଖିଲେ ସକଳ, ଗୁଳିରେ ଉଡ଼ିଯାଇଛି କପାଳ ।''

ଶିକାରରେ ବିଶେଷ କିଛି ଦକ୍ଷତା ଦେଖାଇ ନଥିଲେ ମଧ ପିତୃଭକ୍ତ କବି ପିତା ଇନ୍ଦ୍ରଜିତ ସାମନ୍ତଙ୍କର ଭୂୟସୀ ପ୍ରଶଂସା କରିଛନ୍ତି; ଯାହା ଆମକୁ ଅଯଥା ଜଣାଗଲେ ମଧ କବିଙ୍କ ପ୍ରଗାଢ଼ ପିତୃଭକ୍ତିଦୃଷ୍ଟିରୁ ଏକାନ୍ତ କ୍ଷମଣୀୟ ।

''ଇନ୍ଦ୍ରଜିତ ସାମନ୍ତ ନାମ ସତ, ବାଘ ଛାର ତାଙ୍କୁ କେତେକ ମାତ୍ର ।
ଯାହାଙ୍କ ଧନୁ ପେଟେ ଲୁହା ପାତ, ଗଜ କଚ଼ାଡ଼ି ଥିଲେ ଧରି ଦନ୍ତ,
ଏଡ଼େ ବଳବନ୍ତ, ବହନ୍ତି ଦୁଇଶ'-ପଳିଆକୁନ୍ତ ।''

କବି ଚଢ଼ାଇଗୀତ ଶେଷରେ, 'ରାଧାମୋହନ'ଙ୍କୁ ଚିନ୍ତି ମଧ ନିଜକୁ ବୀର ଅଭିମନ୍ୟୁ ବୋଲି ପରିଚ଼ୟ ଦେଇଛନ୍ତି – 'କଉତୁକେ ରାଧାମୋହନ ଚିନ୍ତି, ସାମନ୍ତସିଂହାର ବୀର ଏ ଉକ୍ତି ।' ପରେ ଅଧିକରୁ ଅଧିକ ରାଧାମୋହନ-ଭକ୍ତ ହୋଇ ବୀର ଅଭିମନ୍ୟୁ ଦୀନ ଅଭିମନ୍ୟୁ ହୋଇ ପଡ଼ିଛନ୍ତି ଓ ବୈଷ୍ଣବତତ୍ତ୍ୱର ହଯବରଲରେ ନିଜକୁ ବିମୁଗ୍ଧ କରି-

ପକାଇଛନ୍ତି । ଏହାଦ୍ୱାରା ଓଡ଼ିଆ ସାହିତ୍ୟ କ୍ଷତିଗ୍ରସ୍ତ ହୋଇଛି ବୋଲି ମୋର ଆଶଙ୍କା । କ୍ଷତ୍ରିୟ-କବି କ୍ଷାତ୍ରତେଜ-ଓଜୋମୟ ଆଉ ଅନେକ କିଛି ଦେଇପାରିଥାନ୍ତେ, ହୁଏତ ବୈଷ୍ଣବ ସାଜି ନଥିଲେ । ବୈଷ୍ଣବ ହୋଇ, ସେ ଶିକାର-ଲଢ଼େଇ-ଭୂଷିତ ବର୍ଣ୍ଣମୟ ଜୀବନକୁ ପରିତ୍ୟାଗ କରି, ମୁକ୍ତି ଖୋଜିଲେ । *

## ବିଦଗ୍ଧ ଚିନ୍ତାମଣି –

କବିଙ୍କର ଶ୍ରେଷ୍ଠ କୃତି ବିଦଗ୍ଧ ଚିନ୍ତାମଣିରେ ଆମେ ଆଳଙ୍କାରିକ କବିତାର ଦୋଷ ଓ ଗୁଣ ଉଭୟର ଉତ୍କୃଷ୍ଟ ଦୃଷ୍ଟାନ୍ତ ପାଉଁ – ପାଉଁ ମଧ ବୈଷ୍ଣବତତ୍ତ୍ୱର ପାପ ଓ ପୁଣ୍ୟର ଉତ୍କୃଷ୍ଟ ପରିଚୟ । ଅଭିମନ୍ୟୁଙ୍କର ସ୍ୱାଭାବିକ କବିତ୍ୱ ଶକ୍ତି ଅସାଧାରଣ ଥିଲା । ସେ ଯେ ଉପେନ୍ଦ୍ର-ଗୋଷ୍ଠୀର କାବ୍ୟ-ଦର୍ଶନ ଗ୍ରହଣ କରିନେଇ ନିଜର ସ୍ୱାଭାବିକ ଶକ୍ତିର ଅପପ୍ରୟୋଗ କଲେ, ଏହା ଅତ୍ୟନ୍ତ ପରିତାପର କଥା । କୃଷ୍ଣ-କଥା ପରମ ସୁନ୍ଦର ସହଜ ମାନବିକତାରେ ଭରା । ସାମନ୍ତସିଂହାର ଏ ପ୍ରକାର କୃଷ୍ଣ କଥାର କେତୋଟି ଘଟଣା ଭିତରେ ଦୈବାତ୍ ସଙ୍ଗୀତ ସଂଯୋଗ କରି ସେଗୁଡ଼ିକୁ ମହୀୟାନ୍ କରିଯାଇଛନ୍ତି ଏବଂ ତାହାହିଁ ଆମକୁ ପରିତାପ ଆଣିଦେଉଛି ଯେ, ଇତର ଲୋକଙ୍କପରି ଶାବ୍ଦିକ ଶୃଙ୍ଖଳାକୁ କାବ୍ୟ ବୋଲି ଧରିନେବାଦ୍ୱାରା, ଓଡ଼ିଆଭାଷା (ଏହି ସ୍ୱାଭାବିକ କବିପ୍ରତିଭାର ଅପପ୍ରୟୋଗ ଯୋଗୁଁ) କ'ଣ ନ ହରାଇଛି ? ସାମନ୍ତସିଂହାର-ଲେଖନୀ ଆମର ପାର୍ଥିବ ଆଖିକୁ ଐଶ୍ୱରିକ ପ୍ରଣୟ ସହିତ ପରିଚିତ କରାଇପାରିଛି; କିନ୍ତୁ ରାଧା-କୃଷ୍ଣଙ୍କର ଇତର-ପ୍ରଣୟ-ସ୍ରୋତରେ ଭାସିଆସି ସେହି କବି-ଲେଖନୀ ଖିଁଆସିଛି ଯୌନ-କ୍ଳାନ୍ତବତାର କୁତ୍ସିତ ସ୍ଥୂଳତାକୁ । ଓଡ଼ିଶା ଦେଶର ବୈଷ୍ଣବମାନଙ୍କ କଟରେ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ଏକ ଚିର-ସଙ୍ଗୀ ଗ୍ରନ୍ଥ; କିନ୍ତୁ ଅପୂର୍ବ ମହନୀୟତା ସଙ୍ଗେ ସଙ୍ଗେ ଏ ଗ୍ରନ୍ଥରେ ଯେ ଦୁଃଖଦ ବହୁ ଉପାଦାନ ରହିଗଲା, ତାହା ଯେକୌଣସି ନିରପେକ୍ଷ ସମାଲୋଚକ କହିପାରେ ।

ବିଦଗ୍ଧ ଚିନ୍ତାମଣି ଯେ ଉତ୍କଳ ଦେଶରେ ଏତାବତ୍ ଉଚ୍ଚ ସମ୍ମାନାସ୍ପଦ ଗ୍ରନ୍ଥ ହୋଇ ଆସିଛି, ତାହା କେବଳ ଏ ଗ୍ରନ୍ଥର ଅଳ୍ପ କେତେକ ଅଂଶ; ଯାହାର କାବ୍ୟିକ ଗୁଣ ଅତୁଳନୀୟ ଭାବରେ ଉଚ୍ଚ । ଶବ୍ଦ, ଧ୍ୱନି ଓ ଭାବର ଅପୂର୍ବ ସହଯୋଗ ଯେପରି ଘଟିଛି, ଏହି କେତୋଟି ଛାନ୍ଦରେ ସେପରି ଦ୍ୱିତୀୟ ଥର ଆଉ ଘଟିନାହିଁ ସମଗ୍ର ଓଡ଼ିଆ-ସାହିତ୍ୟରେ । ସୁଗେୟ ଏହି କେତୋଟି ଛାନ୍ଦ, ଯେତେବେଳେ ଉତ୍ତମଭାବରେ ଗୀତ ବା ଆବୃତ୍ତ ହୁଏ, ଶ୍ରୋତାଙ୍କ ହୃଦୟ ଏକ ହୋମାଗ୍ନିରେ ଉଷ୍ଣ ହୋଇଉଠେ ଓ ସେହି ହୃଦୟ

---

* ଇଂରାଜୀ ସଂସ୍କରଣରେ ସାମନ୍ତସିଂହାରେ ତାଙ୍କ ସବୁ ଗ୍ରନ୍ଥରେ ନିଜକୁ 'ବୀର' ବୋଲି ପରିଚିତ କରାଇଥିବାର ଲେଖାଥିଲା । ତାହା ଭୁଲ୍ । ତେଣୁ ଏହି ସଂସ୍କରଣରେ ତଜ୍ଜନିତ ସାମାନ୍ୟ ପରିବର୍ତ୍ତନ କରାଯାଉଛି । ଏ ଭୁଲ୍ ଦେଖାଇଥିବାରୁ ଅଧ୍ୟାପକ ଶ୍ରୀ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ନିକଟରେ ମୁଁ କୃତଜ୍ଞ ।

ଉଦ୍‌ଥିତ ହୋଇଉଠେ ପ୍ରଣୟର ଏକ ଅତୀନ୍ଦ୍ରିୟ ସ୍ତରକୁ । କୃଷ୍ଣଙ୍କର ଅଲଭ୍ୟ ଅନୁକମ୍ପା ସ୍ମରଣ କରି ତରୁଣୀ ରାଧାର ହା-ହୁତାଶମୟ ବିଳାପ ଯେଉଁ ଛାନ୍ଦ ବର୍ଣ୍ଣନା କରିଛି, ତାକୁ ଶୁଣି କେଉଁ ଓଡ଼ିଆ ନାରୀ ଅଶ୍ରୁ ସମ୍ବରଣ ନକରି ରହିପାରିବ ?

''ଘନଶ୍ୟାମ ଗୁଣମାନ
ରଖିଅଛି କି ମୋ ଧୈର୍ଯ୍ୟ ଗୁମାନ ଗୋ,
ମନ ଦହୁଛି ତା ସନ୍ମାନ; ସଜନୀ ଗୋ !
ତୁଚ୍ଛ ମୋହିବା ମୁନିଙ୍କି
ତାଙ୍କୁ ପ୍ରୀତିପଣେ ଯୋଗ୍ୟ ମୁଁ ନିକି, ଗୋ,
ଅଲଙ୍କାର ସେ ତ ଅବନୀକି, ସଜନୀ ଗୋ !
× × ×
ମୋ ପାଦଚିହ୍ନ ଧୂଳିକି
ବୋଲିଦିଅନ୍ତି ସେ ହୃଦସ୍ଥଳୀକି ଗୋ,
ଲୁଚିଯାଇ ସେ ସ୍ନେହାବଳିକି, ସଜନୀ ଗୋ !
କୁସୁମ ତୋଳି ବନରେ
ଲେଖନ୍ତି କେତକୀ ସ୍ୱଚ୍ଛ ଦଳରେ ଗୋ,
ଗଣସଙ୍ଗେ ମୁଁ ଗଣା ଦୀନରେ, ସଜନୀ ଗୋ !
ମଧୁପକୁ ମାଧବିକା
ଯେମନ୍ତ ତେମନ୍ତ ଏ ମୋ ଜୀବିକା ଗୋ,
ସ୍ୱଇଚ୍ଛାରେ ହୋଇଛି ମୁଁ ବିକା, ସଜନୀ ଗୋ !
× × ×
ଧରୁଛି ମୁଁ ତୁମ୍ଭ କର
ସଖୀଗଣ ଶୁଣ ଏତିକି କର ଗୋ,
ନେଇ କରାଅ ତା ପରିକର, ସଜନୀଗୋ !''

ବନ-ଗହନରୁ ଗୋରୁ ଘେନି ଫେରିବାରେ କୃଷ୍ଣଙ୍କର ନିରତିଶୟ ବିଳମ୍ବ ଦେଖି, ଜନନୀ ଯଶୋଦାଙ୍କର କଲ୍ୟାଣ-କାରୁଣ୍ୟମୟ ସେହି ବିଳାପ କେଉଁ ଓଡ଼ିଆ ଜନନୀର ନେତ୍ରଯୁଗ୍ମକୁ ଲୋତକାପ୍ଳୁତ ନକରିଥାଏ ?

''ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ, କଳାମାଣିକରେ !
ନିର୍ଧନ ସଞ୍ଚାଳି ମୋର ଦରିଦ୍ର ପସରା
ଅନ୍ଧ-ଲଉଡ଼ି ବାବୁରେ ହୃଦରତ୍ନ ହାରା, କଳାମାଣିକରେ !
ମୋ ଜୀବ ଜୀବନ ତୁହି ନୟନ ପ୍ରତିମା
ତୋତେ କି ପାସୋରିହେବ ମୋର ସୁଖ ସୀମା, କଳାମାଣିକରେ !

ଡରୁଥାଉ ଅନ୍ଧାରକୁ ରଖିଯାଉ ଗୋରୁ
ଜନକ ଜନନୀ ସୁଖ କାହିଁପାଇଁ ସାରୁ, କଳାମାଣିକରେ !
ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ
ହୃଦତାପ ବିନାଶନେ ତୁ ହରିଚନ୍ଦନ, କଳାମାଣିକରେ !''

ଗଭୀର ମନୋରମ କାରୁଣ୍ୟ ସହିତ ଅପୂର୍ବ ସାଙ୍ଗୀତିକତାର ମିଳନ ଘଟିଛି ଅଭିମନ୍ୟୁଙ୍କ କବିତାରେ । ଏହି ହେତୁ ତାଙ୍କୁ ଓଡ଼ିଆ ସାହିତ୍ୟର ସୁଇନ୍‌ବର୍ଣ୍ଣ କହିବା ହୁଏତ ଯଥାର୍ଥ ହେବ । ସାମନ୍ତସିଂହାରଙ୍କ ରଚନାର ସୁନ୍ଦରତମ ମନୋହରତମ ଅଂଶସବୁ ଓଡ଼ିଆ ଭାଷାର ସ୍ୱକୀୟ ଇଡ଼ିୟମ୍ (ବିଶିଷ୍ଟ ପ୍ରୟୋଗ) ସହିତ ଏପରି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଯେ; କୌଣସି ଅନୁବାଦ ଦେଇ ସେସବୁକୁ ଉପଭୋଗ କରାଯାଇ ନପାରେ । ଅନ୍ୟ ଭାଷାରେ ଅନୂଦିତ ହେଲେ, ଭାବ ଓ ଅର୍ଥ ସଂପୃକ୍ତ ଭାଷାରେ ହୁଏତ ଆଦୌ ଅପରିଚିତ ବୋଧ ହେବନାହିଁ । ପ୍ରତ୍ୟେକ ଭାରତୀୟ ଭାଷାର ବୈଷ୍ଣବ କବିତାବଳିର ଭାବରାଜି ଏକା; କିନ୍ତୁ ଓଡ଼ିଆ ଭାଷାର ଅବହେଳିତ ଉପାଦାନମାନଙ୍କୁ ନେଇ ସାମନ୍ତସିଂହାର ସେହି ପରିଚିତ ଭାବମାନଙ୍କୁ ଏପରି ସତ୍ୟ, ସୌନ୍ଦର୍ଯ୍ୟ ଓ ଅମୃତତ୍ୱର ଅପୂର୍ବ ଶ୍ରୀରେ ମଣ୍ଡିତ କରିପାରିଛନ୍ତି ଯେ, ଦୈବତାଗ୍ନି ସାଧାରଣ ଓଡ଼ିଆର କଥିତ ଭାଷା ଭିତରେ ଅନୁପ୍ରବିଷ୍ଟ କରାଇ ଶ୍ରୋତା ଓ ପାଠକର ହୃଦୟକୁ ଉଷ୍ଣ-ମନ୍ଥିତ କରିପାରିଛି । ଯେପରି ଭାବରେ ଓଡ଼ିଆ ଭାଷାକୁ ସେ କରିଦେଇଛନ୍ତି, ପୃଥିବୀର ଯେକୌଣସି ଭାଷା ସହିତ ତୁଳିତ ହେବା ଭଳି ସରଳ, କୋମଳ ଓ ତରଳ, ସାମନ୍ତସିଂହାରଙ୍କର ସେହି ଅପୂର୍ବ ଶିଳ୍ପପ୍ରତିଭା ପ୍ରତି ଯେକୌଣସି ସମାଲୋଚକ ସଶ୍ରଦ୍ଧ ହୋଇଉଠିବ ।

ବରେଣ୍ୟ ବୈଷ୍ଣବ-କବି ସାମନ୍ତସିଂହାରେ ତାଙ୍କର ଶ୍ରେଷ୍ଠ କୃତି ବିଦଗ୍ଧ ଚିନ୍ତାମଣି ଗ୍ରନ୍ଥକୁ ଏହିପରି ଭାବରେ ଆରମ୍ଭ କରିଛନ୍ତି – ''ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।'' ସମଗ୍ର ଏହି 'ଅପ୍ରାକୃତ ପ୍ରେମ'ର ପରିବେଷଣ ବୋଲି ଧରାଯିବା କଥା । ଗ୍ରନ୍ଥର କେତେକାଂଶ ପାଠକକୁ ପ୍ରେମର ଅତୀନ୍ଦ୍ରିୟ ମାଦକତା ଆସ୍ୱାଦ କରିବାକୁ ଯେ ଦିଏ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହି ଗ୍ରନ୍ଥର ବୟାଳିଶ ଛାନ୍ଦରେ କବି 'ପ୍ରାକୃତ ପ୍ରେମ'ର ଯେଉଁ ନିର୍ଯ୍ୟାସ ଥୋଇଯାଇଛନ୍ତି, ପାଠକମାନଙ୍କ ଆଗରେ ତାହାହିଁ ପରିବେଷିତ କରି ବିଦାୟ ନିଏଁ –

''ଗୁଣବନ୍ତେ ପ୍ରାଣ ହୁଏ ବିକ୍ରୀତ,
ଦୁଷ୍ପ୍ରାପ୍ୟେ ସ୍ନେହ ବୃଦ୍ଧି ଦ୍ୱିଗୁଣିତ
ଯେତେ ଗୁପତେ କେତେ ବା ନବଢ଼େ
ଯେତେ ଭୟ ତେତେ ଖଟଇ ଗାଢ଼େ
ଲଜ୍ଜା ଥାଇ ଯେତେ
ପୀରତି ସୁନ୍ଦର ଦିଶଇ ତେତେ । (ବିଦଗ୍ଧ ଚିନ୍ତାମଣି-୪୨/୧୫)

**ଭକ୍ତଚରଣ ଦାସ –**

ଯାହାକୁ 'ଇନ୍‌ସ୍ପାୟାର୍ଡ଼' ବା 'ଦେବ-ପ୍ରେରିତ' କହିପାରିବା, ମଥୁରାମଙ୍ଗଳର କବି ଭକ୍ତଚରଣ ସେ ଶ୍ରେଣୀର କବି ନୁହନ୍ତି । ଇଂରେଜ କବି ମାଥ୍ୟୁ ଆର୍ଣ୍ଣଲଡ୍‌ଙ୍କ ପରି ସେ ଓଡ଼ିଆ ଜାତିର ସାଂସ୍କୃତିକ ଜଗତରେ ନିଜକୁ ପ୍ରତିଷ୍ଠିତ କରିଯାଇଛନ୍ତି, ପ୍ରତିଭାର ସ୍ୱତଃ ଉତ୍ସାରିତ, ଅନିର୍ବାର୍ଯ୍ୟ ଭାବରାଜିଦ୍ୱାରା ତେତେ ନୁହେଁ, ଯେତେ ଏକ ପଣ୍ଡିତ ଓ ସୁଧୀଜନର ବିଜ୍ଞ ଦର୍ଶନ ଓ ଉପଦେଶାବଳିଦ୍ୱାରା ।

ଚଉତିଶା ଆଲୋଚନା ଭିତରେ ଆମ୍ଭେମାନେ ତାଙ୍କର ଜନପ୍ରିୟ ମନବୋଧ ଚଉତିଶାର ଆଲୋଚନା ଆଗରୁ କରିଛୁ । ଭକ୍ତଚରଣଙ୍କ 'ମଥୁରାମଙ୍ଗଳ' ମନବୋଧ ଚଉତିଶା ପରି ସମଭାବରେ ଜନପ୍ରିୟ ହୋଇ ରହିଛି ।

ମଥୁରାମଙ୍ଗଳର କାବ୍ୟ-କଥା ଅତି ଜଣାଶୁଣା – କୃଷ୍ଣଙ୍କର ବୃନ୍ଦାବନ ଛାଡ଼ି ମଥୁରାଯାତ୍ରା ଓ ସେଠାରେ ଅତ୍ୟାଚାରୀ କଂସର ହତ୍ୟା । କୃଷ୍ଣଙ୍କର ମଥୁରାଯାତ୍ରାର ଅବ୍ୟବହିତ ପୂର୍ବେ ବୃନ୍ଦାବନର ନାରୀମାନଙ୍କର ଖେଦୋକ୍ତି ଓ ପରେ ପ୍ରତିଶ୍ରୁତିମତେ କୃଷ୍ଣ ଆଉ ବୃନ୍ଦାବନକୁ ନ ଫେରନ୍ତେ ଗୋପୀମାନଙ୍କର ବିଳାପ, ଏହି ଗ୍ରନ୍ଥର ରୋମାଣ୍ଟିକ୍ ଉପାଦାନ । ଓଡ଼ିଆରେ ଏଇ ଗୋଟିଏ ବିଷୟକୁ ବହୁ କବି, ଗ୍ରନ୍ଥ ଓ ବହୁ କବିତାରେ ଲେଖି ଘୋରିଦେଇଛନ୍ତି । ସାଧାରଣତଃ ଉଦ୍ଭଟ ଆଳଙ୍କାରିକ କାରସାଦି ଦେଖାଇ ଏକ ସରଳ ଗ୍ରାମ୍ୟ ଘଟନାକୁ ଏହି କବିମାନେ ଭାରାକ୍ରାନ୍ତ କରିପକାଇଛନ୍ତି । କେହି କେହି ସେଥିରେ ନାନା ଆଧ୍ୟାତ୍ମିକ ଟୀକା ଟିପ୍‌ପଣୀର ପଲସ୍ତରା ଲେପି ମଧ୍ୟ ତା'ର ସହଜ-ସାରଲ୍ୟକୁ ନଷ୍ଟ କରିଦେଇଛନ୍ତି । ଏ ସମସ୍ତ ଭିତରେ ଭକ୍ତଚରଣଙ୍କ ମଥୁରାମଙ୍ଗଳ ନିଜର ଏକ ବ୍ୟକ୍ତିତ୍ୱ ଘେନି ଦଣ୍ଡାୟମାନ; ଯଦିଓ ଅସାଧାରଣ ମୌଳିକତା ବା ବିଚକ୍ଷଣତା ଆମେ ଏ ଗ୍ରନ୍ଥରେ କିଛି ଦେଖିବାନାହିଁ । ଅନ୍ୟ ଗ୍ରନ୍ଥପରି ଏ ଗ୍ରନ୍ଥରେ ମଧ୍ୟ ଗୋପିନୀ-ବିଳାପ ଗତାନୁଗତିକତାରେ ପୂର୍ଣ୍ଣ । ତେବେ ଅନ୍ୟ ଗ୍ରନ୍ଥଠାରୁ ଏ ଗ୍ରନ୍ଥରେ ତାହା କମ୍ ଉଦ୍ଭଟ; ସେତିକି ଯାହା ଲାଭ ।

ଏ ପୁସ୍ତକର ପ୍ରକୃତ ଗୌରବମୟ ମୁକୁଟ କିନ୍ତୁ ହେଉଛି ଏହାର ଶେଷଆଡ଼ର ଦୁଇ ଛାନ୍ଦ; ଯେଉଁଥିରେ କୃଷ୍ଣ-ଦୂତ ଉଦ୍ଧବ ଓ ବିଷାଦିନୀ ଗୋପିକାମାନଙ୍କର କଥୋପକଥନ ବର୍ଣ୍ଣିତ ହୋଇଛି । ଚତୁର ଦୂତ ଉଦ୍ଧବ ଗୋପିକାମାନଙ୍କର ଦୁଃଖକୁ ପାରମାର୍ଥିକ ବ୍ୟାଖ୍ୟା ଦେଇ ଉଡ଼େଇଦେବାକୁ ଚେଷ୍ଟା କଲାବେଳେ, ନିରକ୍ଷରା ଗୋପିନୀମାନେ ଚାହୁଁଛନ୍ତି କୌଣସି ତତ୍ତ୍ୱଜ୍ଞାନ ନୁହେଁ, ମାତ୍ର କେବଳ ତାଙ୍କର କୃଷ୍ଣଙ୍କୁ; ଯାହାଙ୍କ ସହିତ ସେମାନଙ୍କର ତିକ୍ତ-ମଧୁର ବ୍ୟକ୍ତିଗତ ବହୁ ଅଭିଜ୍ଞତା ଘଟିଯାଇଛି ।

''ଉଦ୍ଧବ ବଚନ ଶୁଣି ବୋଲନ୍ତି ଗୋପ ରମଣୀ
ଏ ଯେଉଁ ଜ୍ଞାନକୁ ବୁଝାଇଲ,
କ୍ଷୀରଭାଣ୍ଡେ ଦଧି ଦେଲେ, ନାଶ ଯାଇ ସେହୁ ଭଲେ
ସେ ଜ୍ଞାନ କଥା କିମ୍ପା କହିଲ, ହେ ହରିଦୂତ !

ଆତ୍ମର ଭକତି ରତ୍ନାକର
ଜ୍ଞାନ ନଦୀ ତହିଁ ସମ କର ହେ !
× × ×
ତୁମ୍ଭେ ଯେ ବୋଇଲ ସର୍ବ ହୃଦରେ ବ୍ରହ୍ମର ଠାବ
ତେବେ ଆଉ ଭଜୁଛ କାହାକୁ,
ତୁମ୍ଭର ଶରୀରେ ଅଛି, ବୋଇଲ ପରମ ପକ୍ଷୀ,
କେଉଁ ଜନ ପେଷିଛି ତୁମ୍ଭକୁ ହେ !
କାହା ବୋଲେ ଗୋପକୁ ଅଇଲ,
କାହା ଆଜ୍ଞା ଆମ୍ଭକୁ କହିଲ ।''

ଜନନୀ ଯଶୋଦା କହିଲେ –

''ଶୁଣି ଏ ବଚନ, ଯଶୋଦା ଶ୍ରବଣ ଛୁଇଁଲେ କାତରେ
ହିଆ ଦମଦମ, ମୁଖ ତମତମ, ବୋଲନ୍ତି କୋପରେ ।
ଆହେ ଉଦ୍ଧବ, କି ଗୁଡ଼ାଏ ବୋଇଲ, ପୁତ୍ରକୁ ମୋହର
ଏମାନଙ୍କ ସଙ୍ଗେ ସମାନ କଲ କି ଭଲ ଏ ବେଭାର ।
ସାକ୍ଷାତ ଜଠରୁ ଜନମ କରିଛି ଏ ଗଲା ମିଛକୁ
ବ୍ରହ୍ମ ବୋଲି କେତେ ଉଚ୍ଚ କରୁଅଛ, ମୋହର ବତ୍ସକୁ ।
ଦେଖିବ କି ଏହିକ୍ଷଣି ମଥୁରାଁକୁ ଯିବି ହିଁ ବହନ
କାଖରେ ବସାଇ ଘେନି ଆସିବି ମୁଁ ମଦନମୋହନ ।''

ଭକ୍ତଚରଣ ଜ୍ଞାନଠାରୁ ଭକ୍ତିର ଶ୍ରେଷ୍ଠତ୍ୱହିଁ ପ୍ରତିଷ୍ଠା କରିବାକୁ ଯାଇଛନ୍ତି । ଏହି ସାଧାରଣ ମତବାଦ୍ କବିଙ୍କ ବ୍ୟକ୍ତିଗତ ଜୀବନର ଆଧ୍ୟାତ୍ମିକ ଅଭିଜ୍ଞତାଦ୍ୱାରା ନିଶ୍ଚୟ ସମୃଦ୍ଧ ହୋଇଉଠିଥିଲା । ଏହା ସାଥିକି କବିଙ୍କର ଛନ୍ଦ ଓ ଶବ୍ଦ ପ୍ରୟୋଗର ନିପୁଣତା ମିଶିଯିବାରୁ, ଶୁଷ୍କ ପାରମାର୍ଥିକ ତତ୍ତ୍ୱସବୁ ତାଙ୍କ ଲେଖନୀରେ ପ୍ରଣୟ ବର୍ଣ୍ଣନା ପରି ସୁଖକର ହୋଇଉଠିଛନ୍ତି । ଭକ୍ତଚରଣ (୧୭୮୦-୧୮୮୫) ଶେଷ ବୟସରେ ଖୋର୍ଦ୍ଧାର ରାଜସୁନାଖଳାଠାରେ ବସତି କରିଥିଲେ ବୋଲି କୁହାଯାଏ । ସେ ଗ୍ରାମରେ ଏବେ ବି ଭକ୍ତଚରଣଙ୍କ ମଠ ବିରାଜିତ ।

## ଯଦୁମଣି ମହାପାତ୍ର * (ଜନ୍ମ : ୧୭୮୧, ମୃତ୍ୟୁ : ୧୮୬୬)

ଉତ୍ତର-ଭାରତରେ ବୀରବଲଙ୍କ ପରି ଓଡ଼ିଶାରେ ଯଦୁମଣି ମହାପାତ୍ର ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ନର୍ମବାକ୍ ପାଇଁ ଏକ ଚିର ଆନନ୍ଦଦାୟକ କାହାଣୀରେ ପରିଣତ ହୋଇଯାଇଛନ୍ତି । ଓଡ଼ିଶାର ଗ୍ରାମାଞ୍ଚଳରେ ଗାଁ ଲୋକଙ୍କ ମେଣ୍ଟରେ ଯଦୁମଣିଙ୍କ ପରିହାସରସିକତାର ଦୃଷ୍ଟାନ୍ତ ସବୁ ବିଶୁଦ୍ଧ ଆମୋଦ ପାଇଁ ବରାବର ଚର୍ଚ୍ଚା ହୋଇଥାଏ । 'ଯଦୁମଣି

---

* ଯଦୁମଣିଙ୍କ ସମ୍ବନ୍ଧରେ ଯେପରି ଆଲୋଚନା ହେବାର କଥା, ଓଡ଼ିଆ ସାହିତ୍ୟରେ ଏ ପର୍ଯ୍ୟନ୍ତ ତାହା ହୋଇନାହିଁ । ତାଙ୍କର ଜୀବନୀ ଓ କୃତିତ୍ୱ ସମ୍ବନ୍ଧରେ ତେଣୁ ଲେଖକର ଧାରଣା

ରହସ୍ୟ'ର ବିକ୍ରୀ ଓଡ଼ିଶାରେ ଚିରକାଳ ସୁନିଶ୍ଚିତ । ସେହି ରହସ୍ୟସବୁ ଏତେ ପରିଚିତ ଯେ, ସେସବୁର ପୁନରାବୃତ୍ତି ଏଠାରେ ନିଷ୍ପ୍ରୟୋଜନ; କିନ୍ତୁ ପ୍ରଶ୍ନ ହୋଇପାରେ ଯେ, ଜଣେ ଥଟ୍ଟା-ନବଜକାରୀ ଲୋକ ଏଠି କାବ୍ୟକର୍ତ୍ତାମାନଙ୍କର ମହତ୍ ମେଣ୍ଟ ଭିତରକୁ ଆସିଲା କିପରି ?

ଯଦୁମଣି ଜାତିରେ ବଢ଼େଇ ଥିଲେ ମଧ୍ୟ ସହଜାତ ବିଚକ୍ଷଣତାଯୋଗୁଁ ଓଡ଼ିଆ ଓ ସଂସ୍କୃତରେ ପ୍ରଗାଢ଼ ପାଣ୍ଡିତ୍ୟ ଲାଭ କରିପାରିଥିଲେ । ସେ କାଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବିସ୍ତାର ଓ ବ୍ୟାପକତାର ଏହା ଏକ ମହନୀୟ ଦୃଷ୍ଟାନ୍ତ । ଯଦୁମଣି 'ରାଘବ ବିଳାସ' ଓ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' * ନାମକ ଦୁଇଟି କାବ୍ୟ ଛାଡ଼ିଯାଇଛନ୍ତି । ଶବ୍ଦ କସରତ୍ ଓ ଉଦ୍‌ଭଟ କଳ୍ପନା, ଉଭୟରେ ସେ ଏ ବହି ଦୁଇଟିରେ ନିଜ ଗୁରୁଦେବ ଉପେନ୍ଦ୍ରଙ୍କୁ ବେଳେବେଳେ ବଳିଯାଇଛନ୍ତି କହିଲେ ଚଳେ । ସେହି କାରଣରୁ ଉପେନ୍ଦ୍ରଙ୍କ ପରି ଯଦୁମଣି ମଧ୍ୟ ପାଲାବାଲାମାନଙ୍କର ଏକ ଆଦରର ବସ୍ତୁ । ଉପେନ୍ଦ୍ର-ଲେଖନୀର ଉପଯୁକ୍ତ ହେବାଭଳି ଯଦୁମଣିଙ୍କ ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ରର ଏକ ପଦ ଏଠାରେ ଦୃଷ୍ଟାନ୍ତରୂପେ ଦିଆଗଲା –

---

ଥିଲା ଅପୂର୍ଣ୍ଣ ଓ କିଞ୍ଚିତ୍ ଭ୍ରମସଙ୍କୁଳ ମଧ୍ୟ । ପଲ୍ଲୀ କବିତା-ସଂଗ୍ରାହକ ଶ୍ରୀ ଚକ୍ରଧର ମହାପାତ୍ର ବର୍ତ୍ତମାନ ଯଦୁମଣି ଗ୍ରନ୍ଥାବଳୀ ପ୍ରକାଶ କରିଛନ୍ତି । ତାଙ୍କରି ସହିତ ବାରମ୍ବାର ଆଲୋଚନାଫଳରେ ଏ ଗ୍ରନ୍ଥରେ ଯଦୁମଣି ସଂପୃକ୍ତ ଅଂଶଟିକୁ ମୂଳପୁସ୍ତକରୁ କେବଳ ଅନୁସରଣ ମାତ୍ର ନ କରି ତାକୁ କେତେକାଂଶରେ ପରିବର୍ତ୍ତିତ କରିବାକୁ ବାଧହେଉଛି ।

ହାସ୍ୟରସିକ ଯଦୁମଣିଙ୍କ ପ୍ରତ୍ୟୁତ୍ପନ୍ନମତିତାର ଏକ ଦୃଷ୍ଟାନ୍ତରୂପେ ସ୍ୱର୍ଗତ ବନ୍ଧୁ ଭଗବତୀଚରଣ ପାଣିଗ୍ରାହୀଙ୍କଠାରୁ ଶୁଣିଥିବା ତରୁଣ ଯଦୁମଣିଙ୍କର ପୁରୀରେ ଘଟିଥିବା ଏକ ଅଭିଜ୍ଞତାର ବର୍ଣ୍ଣନା ଇଂରାଜୀ ଗ୍ରନ୍ଥରେ ଦେଇଥିଲି । ଇଂରାଜୀ ପୁସ୍ତକଟିକୁ ପଢ଼ି ସପ୍ରଶଂସ ଅଭିମତ ଯେଉଁମାନେ ଦେଇଛନ୍ତି, ସେମାନଙ୍କ ମଧ୍ୟରେ ଚାରି-ପାଞ୍ଚ ଜଣ ସୁଶିକ୍ଷିତା, ବିଦୁଷୀ ନାରୀ ଅଛନ୍ତି; କିନ୍ତୁ କେହିହେଲେ ସେ ବର୍ଣ୍ଣନାରେ କୁରୁଚି ବା ଅଶ୍ଳୀଳତା ଅଛି ବୋଲି ସାମାନ୍ୟତମ ସଙ୍କେତ ଦେଇନାହାନ୍ତି; ଅଥଚ, ଓଡ଼ିଶାର କେତେକ ସେଇ ଘଟଣା ବର୍ଣ୍ଣନାଦ୍ୱାରା ଓଡ଼ିଆ ଜାତିର ଅପମାନ ହୋଇଗଲା ବୋଲି ଏକ ହୋଇ ଉଠିଲେ । ଅବଶ୍ୟ ତାହା ବର୍ଣ୍ଣିତ ନହେଲେ ଯଦୁମଣି ପ୍ରତିଭାର କୌଣସି ହାନି ହେଉନି ବା ତା'ଉପରେ ଏ ବହିର ଗୌରବ ମଧ୍ୟ ନିର୍ଭର କରୁନାହିଁ । ଏହା ଏକାନ୍ତରେ ଏକ ରୁଚିର ପ୍ରଶ୍ନ ମାତ୍ର । ତେଣୁ ସେ ଗଳ୍ପକୁ ଏହି ଓଡ଼ିଆ ସଂସ୍କରଣରେ ଉଠାଇଦିଆଗଲା । ଭାରତୀୟ ଭାଷାମାନଙ୍କ ଅନୁବାଦରେ ଏ ଅଂଶ ନରହୁ ବୋଲି ଏହା ଭିତରେ କେନ୍ଦ୍ର ଆକାଡେମୀକୁ ଲେଖକ ନିର୍ଦ୍ଦେଶ ଦେଇସାରିଛି ।

* 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଏହି ନାମକୁ ଆର୍ଥର୍ ୱେଲିଙ୍କ ରୀତିରେ ଇଂରାଜୀରେ 'Full Moon of Poetic Essays' ବୋଲି ଅନୁବାଦ କରାଯାଇଥିବାରୁ ସମାଲୋଚକବର୍ଗ ତାକୁ ନେଇ ଲେଖକର ଇଂରାଜୀ ଅନଭିଜ୍ଞତା ଅର୍ଥାତ୍ ଅଯୋଗ୍ୟତା ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ଅତି ଉତ୍ତମ ବ୍ୟଞ୍ଜନା । କିନ୍ତୁ ଇଂରାଜୀ 'ଏସେ' ଶବ୍ଦ ଉଭୟ ପଦ୍ୟ ଓ ଗଦ୍ୟ ରଚନାକୁ ବୁଝାଏ କି ନା, ବନ୍ଧୁଗଣ ଦୟାକରି ଡିକ୍‌ସନାରୀ ଦେଖିବେ । ଇଂରାଜ କବି ପୋପ୍‌ଙ୍କ 'Essay on Man' ଓ 'Essay on Criticism' ଗଦ୍ୟ ନା ପଦ୍ୟ, ପଣ୍ଡିତମ୍ମନ୍ୟ ସମାଲୋଚକବର୍ଗ ସେ କଥା ମଧ୍ୟ ଖୋଜିନେଇପାରନ୍ତି ।

"କ୍ଷୀରସାଗର ଉଦର ଆଦରିଛି ନବମୃଦିର ଜ୍ୟୋତିଃସଙ୍ଗ
ଚଣ୍ଡୀନିଶିଧବ ଧବଳେ ମିଶିଛି ଅଧବଳ ବିଷ କୁରଙ୍ଗ ।
ହାସେ ରାମାର, ନୀଳିମାର ନାହିଁ ସଞ୍ଚାର,
ଏପରି ବିଦଗ୍ଧ କୀର୍ତ୍ତି ଯାର ଶୁଦ୍ଧ ସେହି ଏହି କଳା ବିଚ଼ାର ।"

(କ୍ଷୀର-ସମୁଦ୍ରର ଧବଳତା ସ୍ୱୟଂ ବିଷ୍ଣୁଙ୍କର ନୀଳ ଦେହର ନୀଳିମା ଯୋଗୁଁ ଭ୍ରଷ୍ଟ ହୋଇଛି । ଶିବଙ୍କ ଗୌରବର୍ଣ୍ଣ ବିଷ ଯୋଗୁ ଓ ଚନ୍ଦ୍ରର ଧବଳତା କୁରଙ୍ଗର ଛାୟା ଯୋଗୁଁ ଶୁଦ୍ଧତା ହରାଇଛି । ଜେମା ରୁକ୍ମିଣୀଙ୍କର ହାସରେ କିନ୍ତୁ କୌଣସି ପ୍ରକାର ମଳିନତା ନାହିଁ ଏବଂ ରୁକ୍ମିଣୀଙ୍କ ସ୍ମିତ ପରି ଯେଉଁମାନଙ୍କର କୀର୍ତ୍ତି ସଂପୂର୍ଣ୍ଣ ବିଶୁଦ୍ଧ, ସେହିମାନେ କେବଳ ଏହି କାବ୍ୟର କଳାକୁ ବିଚ଼ାର କରିବାକୁ ଯୋଗ୍ୟ ।)

ଜାତିରେ ବଢ଼େଇ ଥିଲେ ମଧ୍ୟ ସମସାମୟିକ ଓଡ଼ିଶାର ସାମନ୍ତ ରାଜାମାନେ ଯଦୁମଣିଙ୍କୁ ଯେପରି ବାକ୍ୟର ଅନର୍ଗଳତା ପାଇଁ ସ୍ୱାଧୀନତା ଦେଇଥିଲେ ଓ ସେମାନଙ୍କ ଭର୍ତ୍ସନା କଲେ ମଧ୍ୟ ଯେପରି ଭାବରେ ସେମାନେ ସେହି ପ୍ରତିଭାବାନ୍ ଲୋକକୁ ସମ୍ମାନ ଦେଉଥିଲେ, ତାହା ପ୍ରାଚ଼ୀନ ଓଡ଼ିଶାର ଉନ୍ନତ ସାଂସ୍କୃତିକ ପରିବେଶର ଏକ ଶାଶ୍ୱତ ପ୍ରମାଣ ହୋଇ ରହିବ । କୌଣସି ରାଜ୍ୟରେ ଯଦୁମଣିଙ୍କୁ ଚିହ୍ନିନଥିବା କୌଣସି ରାଜ-କର୍ମଚ଼ାରୀ ତାହାଙ୍କୁ 'ସେ କିଏ' ପଚ଼ାରିବାରୁ ନିର୍ଭୀକ ଯଦୁମଣି ଏହି ପରିଚ଼ୟ ଦେଇଥିଲେ —

"ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେଁ, ଲୋଡ଼ା କରନ୍ତି ନୃପେ
ଯୋଡ଼ା ହେବା ମୋ ପ୍ରୌଢ଼ା କବିତାକୁ
ବଳି ବଳି ରସ-ଦାନୀ କର୍ଣ୍ଣକୁ ।
ଭଲେ ଭଲ, ଖଣ୍ଡେ ଖଣ୍ଡ ଯେ,
ନବଦୂର୍ବାଦଳ ଶ୍ୟାମଳ କୃପାରେ ମୋ ନାମ ଉତ୍କଳଘଣ୍ଟ ଯେ ।"

(ହୟଗ୍ରୀବ ମହାପ୍ରଭୁଙ୍କ ପ୍ରତାପରେ ବଳି ବଳି ରସ କର୍ଣ୍ଣକୁ ଦେଉଥିବା ମୋ ଯୋଡ଼ା ହେବା ପ୍ରୌଢ଼ା କବିତାକୁ ନୃପେ (ରାଜାଏ) ଥୋଡ଼ା ନୁହେଁ, ଅର୍ଥାତ ଅଧିକକରି ଲୋଡ଼ା କରନ୍ତି । ମୁଁ ଭଲକୁ ଭଲ, ଖଣ୍ଡକୁ ଖଣ୍ଡ । ନବଦୂର୍ବାଦଳ-ଶ୍ୟାମଳ ହୟଗ୍ରୀବଙ୍କ କୃପାରେ ମୋ ନାମ ଉତ୍କଳଘଣ୍ଟ ।)

'ଖଣ୍ଡେ ଖଣ୍ଡ, ଭଲେ ଭଲ' ହୋଇ କବି ଜୀବନରେ ବହୁ କଷ୍ଟର ସମ୍ମୁଖୀନ ହୋଇଥିବାର ଜଣାପଡୁଛି; କିନ୍ତୁ ଯେଉଁଭଳି ଭାବରେ କବି ଦିନେ ରଣପୁର ରାଜାଙ୍କୁ ଘୋର ଅପମାନ ଦେଇଥିଲେ ଓ ପୁଣି ଦିନେ ସାହାଯ୍ୟ ଯାଚ଼ନା କରିଥିଲେ, ସେ ଉଭୟ ପ୍ରସଙ୍ଗ କବିଙ୍କ ଶିଳ୍ପ-ଗୌରବରେ ମହୀୟାନ ହୋଇଉଠିଛନ୍ତି ।

"ଅନ୍ଧଦେଶକୁ ଗଲି ଦର୍ପଣ ବିକି,
କନ୍ଧ ହାତରେ ଦେଲି ଗୋଦାନ ଟେକି,

ଜଡ଼ା ମଧୁରେ ଖଡ଼ା କଲି ରନ୍ଧନ,
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ,
ହେ ରାଜା କି କଲ,
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ?''

ଅନ୍ୟ କୌଣସି ଦେଶର କୌଣସି କବି ସେହି ଦେଶର ସର୍ବକ୍ଷମତାଶାଳୀ ଶାସକକୁ ଏପରି ଅପମାନ ଦେଇନାହାନ୍ତି, ବୋଧହୁଏ ଏହି ଲେଖକ ଜାଣିବାରେ, କେବଳ ପାର୍ଶି ମହାକବି ଫିରଦୁସୀ ଗଜନୀ-ରାଜ ମାହମୁଦ୍‌ଙ୍କୁ ଦେଇଥିବା ଅପମାନ ବ୍ୟତୀତ । ଯଦୁମଣି ପୁଣି ଥିଲେ ଏଇ ନୀଚ଼ଜନ୍ମା ଲୋକ, ଏକ ଶୂଦ୍ର, ହିନ୍ଦୁସମାଜରେ ଯେଉଁମାନଙ୍କର ଜୀବନର କୌଣସି ମୂଲ୍ୟଇ ସେଦିନ ନଥିଲା । ଅଥଚ଼ ପ୍ରତିଭାବାନ୍ କବି ଉଲ୍ଲିଖିତ କବିତାରେ ସମ୍ବୋଧିତ ରାଜାଙ୍କର ଜାତି, ଗୋତ୍ର, ଚରିତ୍ର କୌଣସିଟିକୁ ଉପହାସ କରିବାକୁ ଛାଡ଼ିନାହାନ୍ତି । ଏହା ସତ୍ତ୍ୱେ କବି ସେଦିନ ଯେ ରଣପୁରରୁ ଅକ୍ଷତ ଶରୀରରେ ଫେରିଥିଲେ, ତାହାର ଗୌରବ କେବଳ ସେ କାଳର ଅତିସଂସ୍କୃତିମାନ୍ ଉତ୍କଳୀୟ ଶାସକଶ୍ରେଣୀର; ଯେଉଁମାନେ ପ୍ରତିଭାର ପ୍ରକୃତ ପୂଜା ଜାଣିଥିଲେ ।

ତାହା ପୁଣି ଅଧିକତର ସୁପ୍ରମାଣିତ ହେଉଛି, ଯେତେବେଳେ ଆମେ ଦେଖୁ ଯେ; କବିଙ୍କଦ୍ୱାରା ଅପମାନିତ ଏହି ରାଜାଙ୍କ ବଂଶଧରଙ୍କ ନିକଟକୁ ଦୁର୍ଦ୍ଦିନରେ ପଡ଼ି କବି ନିମ୍ନଲିଖିତ ସୁନ୍ଦର ଗମ୍ଭୀର, ପୌରୁଷମୟ କାବ୍ୟ ଯାଚ଼ନା ପଠାଇଛନ୍ତି –

''ଲାଖରାଜ ରାଜେ ଭୂମି ତିନିବାଟି ସେ ପଡ଼ିଛି ମୋର ବନ୍ଧାରେ
ଅଷ୍ଟପ୍ରାଣୀ ମୋର କଷ୍ଟେ ପଡ଼ିଛନ୍ତି, ମୁଁ ପଡ଼ିଛି ମହାଧନ୍ଦାରେ ।
ଆହେ ମଣିମା, ସରିଲି, ସରିଲି, ସରିଲି,
ହାତୁଣୀବଲ୍ଲଭଦ୍ୱାରାନୁସରଣେ ନାତୁଣୀବଲ୍ଲଭେ ପ୍ରେରିଲି ।''

(ହାତୁଣୀବଲ୍ଲଭଦ୍ୱାର – ଓଡ଼ିଶାର ସବୁ ରାଜପ୍ରାସାଦରେ 'ସିଂହଦ୍ୱାର' ଥିଲାବେଳେ ରଣପୁରରେ 'ହସ୍ତୀଦ୍ୱାର' ଥିଲା ।)

କବି ଯଦୁମଣି ଗଞ୍ଜାମ ଆଠଗଡ଼ରେ ଜନ୍ମ ହୋଇଥିଲେ ।* କିନ୍ତୁ ଅଳ୍ପ ବୟସରୁ ସେଠାରୁ ଚାଲିଆସି ନୂଆଗଡ଼ରେହିଁ ଜୀବନ କଟାଇଲେ । ତାଙ୍କର ବଂଶଧରମାନେ ଏ ପର୍ଯ୍ୟନ୍ତ ଇଟାମାଟିରେ ବାସ କରୁଅଛନ୍ତି । ଓଡ଼ିଶା ଇଂରେଜଶାସିତ ହେବାର ୬୨ ବର୍ଷ ପରେ କବି ପ୍ରାଣତ୍ୟାଗ କରିଥିଲେ । ତଥାପି ସେ ଇଂରେଜୀ ଶିକ୍ଷା ପାଇ ନଥିଲେ କି କୌଣସି ଚାକିରି କରିନଥିଲେ । କୌଳିକ ବ୍ୟବସାୟହିଁ ତାଙ୍କର ପ୍ରଧାନ ଅବଲମ୍ବନ ଥିବାରୁ କବି କୌଣସିଠାରେ କହିଛନ୍ତି – 'ସର୍ବଦା ଜୀବିକା ମୋ ଠକ ଠକ, ସଞ୍ଚାଳି ମୋର ବାରିସି ପଟକ' । ସେ ଯାହାହେଉ, ବୃଦ୍ଧ ବୟସକୁ କବି ନୂଆଗଡ଼ ଓ ଚାରିପାଖ ଅଞ୍ଚଳରେ ଜଣେ ସର୍ବମାନ୍ୟ ନାଗରିକ ଭାବରେ ଯେ ସମ୍ମାନିତ ହେଉଥିଲେ; ଏଥିରେ ସନ୍ଦେହ ନାହିଁ ।

* ଇଂରାଜୀ ଗ୍ରନ୍ଥରେ ଇଟାମାଟି କବିଙ୍କ ଜନ୍ମସ୍ଥାନ ଲେଖାଥିଲା । ତାହା ଠିକ୍ ନୁହେଁ ବୋଲି ଏବେ ଜାଣୁଛି । ଇଂରାଜୀ ବହିରେ ମଧ ଏହା ସଂଶୋଧିତ ହୋଇଯାଇଛି ।

ସେ ସମୟରେ ନୂଆଗଡ଼ରେ ପ୍ରଜାମେଳି ହେଲା । ବ୍ରିଟିଶ ରାଜକର୍ମଚାରୀ (ଲାଲା ହରମୋହନ ?) ଯଦୁମଣିଙ୍କୁ ପ୍ରଜା ଅସନ୍ତୋଷର କାରଣ ପଚାରନ୍ତେ ବରେଣ୍ୟ କବି ଏହିପରି ନିର୍ଭୀକ ଉତ୍ତର ଦେଇଥିଲେ –

''ଗୋଡ଼ ଗାଡ଼ ସଂସର୍ଗରେ ଯେ ପଟୁ, ତାଙ୍କର ସୁନା ଖଡ଼ ପଟୁ-ତଟୁ ।
ଅଶୁଭରେ ଶୁଭ ହୋଇଲା ଦେଖା, ତାଙ୍କର ଆଢ଼େଣୀ ପାଲିଙ୍କି ଛତା ।
ଏହି ସକାଶରୁ କରି ଯେ,
ଛତ୍ରାକାରଲିଙ୍ଗ-ଉଦ୍‌ଭବ-ମେଦିନୀ ହୋଇଗଲା ହତଶିରୀ ଯେ ।''

(ଗୋଡ଼ ଗାଡ଼ ସଂସର୍ଗରେ ଯେ ପଟୁ – ଯାହାର ଗୋଡ଼ ଗାଡ଼ ସହିତ ପରିଚିତ, ଅର୍ଥାତ୍ ତନ୍ତୀଶ୍ରେଣୀର ଲୋକ । ପଟୁ ତଟୁ – କ୍ଷିପ୍ରଗାମୀ ଅଶ୍ୱ । ଛତ୍ରାକାର-ଲିଙ୍ଗ-ଉଦ୍‌ଭବ-ମେଦିନୀ – ନୂଆଗଡ଼ ଶରଣକୂଳସ୍ଥ ଲଡୁକେଶ୍ୱର ଲିଙ୍ଗ ବୃତ୍ତାକାର । ସେ ରାଜ୍ୟର ଇଷ୍ଟଦେବତା ।)

କାଳେ କାଳେ ଅଯୋଗ୍ୟ ଅଭାଜନମାନଙ୍କ ଶାସନ ଓ ଅଭ୍ୟୁଦୟରେ ରାଜ୍ୟର ଶାସନ ଓ ସଂସ୍କୃତି କିପରି ଛିନ୍ନଭିନ୍ନ ବିଶୃଙ୍ଖଳ ହୋଇଉଠେ; ସମଗ୍ର ଓଡ଼ିଆ ସାହିତ୍ୟରେ କବି ଯଦୁମଣିଙ୍କର ଏହି ଛଅଧାଡ଼ିର ଶ୍ଳୋକଟି ତାହା ଦେଖାଇଦେବା ପାଇଁ ଏକ ଶାଶ୍ୱତ ପ୍ରଦୀପ ହୋଇ ବିରାଜିତ ରହିବ ।

ଓଡ଼ିଆ ସାହିତ୍ୟରେ ପ୍ରାଚୀନ କାଳର ଶେଷ ପର୍ଯ୍ୟନ୍ତ ଯେତେ କବି ଦେଖାଦେଇଛନ୍ତି, ତାଙ୍କ ଭିତରେ ଦୁଇଜଣ ପ୍ରକୃତରେ ଅନନ୍ୟସାଧାରଣ । ଅନ୍ୟମାନେ ବିଚକ୍ଷଣ, ବିଶାରଦ, ବିପୁଳ ବା ବିଦଗ୍ଧ ହୋଇପାରନ୍ତି; କିନ୍ତୁ ଅକୁତୋଭୟ, ସତ୍ୟବାକ୍, ପୌରୁଷମୟ ପୁରୁଷ ଭାବରେ ଦୁଇ ଜଣହିଁ ଆମର ଦଣ୍ଡବତ ପାଇବାର ଯୋଗ୍ୟ । ସେ ଦୁଇଜଣ ହେଉଛନ୍ତି ଯଦୁମଣି ଓ ବଡ଼ଯେନା ।

## ଦେବଦୁର୍ଲ୍ଲଭ ଓ ଭୂପତି ପଣ୍ଡିତ –

ଏହି ସମୟରେ ରାଶି ରାଶି ଦାସ ଓ ପଟ୍ଟନାୟକ, ରାଜା ଓ ପ୍ରଜା ଯେଉଁ ବିପୁଳ ଗତାନୁଗତିକ କାବ୍ୟ ଓ କବିତାର ବିପୁଳ ଗଦା ଛାଡ଼ିଯାଇଛନ୍ତି, ସେସବୁର ଆଲୋଚନା ଏଠାରେ ସମ୍ଭବ ନୁହେଁ; ଆବଶ୍ୟକତା ମଧ ନାହିଁ ତା'ର । ଓଡ଼ିଆ ସାହିତ୍ୟରେ ଆଳଙ୍କାରିକ କବିତାର ପ୍ରକୃତ ଧାରଣା ପାଇଁ ଆମେ ଯେଉଁ ଛଅଜଣ କବିଙ୍କର ଆଲୋଚନା କରି ଆସିଲୁଁ, ତାହାହିଁ ଯଥେଷ୍ଟ । ବାକି ସମସ୍ତେ ଏହି ସେନାପତିମାନଙ୍କର ଅନୁଗାମୀ କେବଳ, ତାଲିକା ଓ କାଳପଞ୍ଜିକା ପୂରଣ ପାଇଁ ସେମାନଙ୍କର ଯାହା କିଛି ଉପଯୋଗିତା । ଚଳିତ ଶତାବ୍ଦୀର ଦ୍ୱିତୀୟପାଦ ଆଡ଼କୁ ଅଧାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ତାଳପତ୍ର ପୋଥି ସବୁ ଘାଣ୍ଟି ଲୁପ୍ତରତ୍ନ ଉଦ୍ଧାରର ଚେଷ୍ଟା କରିଥିଲେ । ଏହି ଲକ୍ଷ୍ୟରେ ପ୍ରାଚୀ ସମିତି ପ୍ରତିଷ୍ଠିତ ହୋଇଥିଲା । ଏହି ସମିତି କେତେକ ମୂଲ୍ୟବାନ୍ ଅଜ୍ଞାତ ଗ୍ରନ୍ଥ ପ୍ରକାଶ କରୁଛନ୍ତି । ପୁଣି ଅନେକ ଗ୍ରନ୍ଥ ଯାହା ପୂର୍ବେ ପ୍ରକାଶକ ଓ ମୁଦ୍ରାକରଙ୍କ ଅଜ୍ଞତାଯୋଗୁଁ ଅନେକ ସ୍ଥାନରେ

ବିକୃତ ହୋଇପଡ଼ିଥିଲା, ଉପଯୁକ୍ତ ସମ୍ପାଦନାରେ ତାହାର ଶୁଦ୍ଧତର ପୁନରୁଦ୍ଧାର କରିଛନ୍ତି । ଆର୍ତ୍ତବାବୁଙ୍କ ଉତ୍‌ଖାତିତ ରତ୍ନ ଭିତରୁ ଯେଉଁ ଦୁଇଟି ପ୍ରକୃତ ମୂଲ୍ୟବାନ୍, ସେ ହେଉଛନ୍ତି ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ଓ ଭୂପତି ପଣ୍ଡିତଙ୍କ 'ପ୍ରେମ-ପଞ୍ଚାମୃତ' ।

ସ୍ୱର୍ଗତ ମହାନ୍ତି ନିଜେ ବୈଷ୍ଣବ ଥିଲେ । ତେଣୁ ଏ ପୁସ୍ତକ ବିଚାର କରିବାରେ ତାଙ୍କର ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । ଯେଉଁ ସମାଲୋଚକ ବୈଷ୍ଣବପନ୍ଥୀ ନୁହନ୍ତି, ତାଙ୍କର ଏହିସବୁ ଗ୍ରନ୍ଥ ପାଠକରି ଗଦ୍‌ଗଦ ହୋଇଉଠିବାର ବା ଏମାନଙ୍କୁ 'ଗ୍ରେଟ୍' (ମହା) କହିବାର କୌଣସି ହେତୁ ନାହିଁ, ଯେପରି କରିଛନ୍ତି ବୈଷ୍ଣବପନ୍ଥୀ ଆର୍ତ୍ତବଲ୍ଲଭ । ଏ ଦୁଇଟିଯାକ ବହି ସମଗ୍ର ଭାରତୀୟ ସାହିତ୍ୟରେ ମଧ୍ୟଯୁଗରେ ବିକୀର୍ଣ୍ଣ ହୋଇପଡ଼ିଥିବା ସେହି ରାଧା-ଗୋପୀ-କୃଷ୍ଣ ସମ୍ବନ୍ଧରେ ଚର୍ବିତଚର୍ବଣ ଛଡ଼ା ଆଉ କିଛି ନୁହେଁ । ପୁସ୍ତକଗୁଡ଼ିକରେ ସାହିତ୍ୟ ଅପେକ୍ଷା ଧର୍ମତତ୍ତ୍ୱହିଁ ବେଶି । ରହସ୍ୟମଞ୍ଜରୀର 'ରହସ୍ୟ' ବା ପ୍ରେମ-ପଞ୍ଚାମୃତର 'ପଞ୍ଚାମୃତ' କାବ୍ୟିକ ଆସ୍ୱାଦ ସେତେ ଦେବନି, ଯେତେ ଦେବ ସାଂପ୍ରଦାୟିକ ତତ୍ତ୍ୱର ସ୍ୱାଦ । ତେବେ ଏହି ପ୍ରତ୍ୟେକଟି ରଚନା ବୈଶିଷ୍ଟ୍ୟ ଓ ବ୍ୟକ୍ତିତ୍ୱ ଧାରଣ କରିଥିବାରୁହିଁ ଗଦା ଗଦା ଇତରତା ଭିତରେ ବରେଣ୍ୟ ଓ ବିଚାରଣୀୟ ହୋଇପଡ଼ିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ବୈଷ୍ଣବମାନଙ୍କର ଭାଷା ବ୍ରଜବୋଲିର ଅନୁକରଣରେ ଦେବଦୁର୍ଲ୍ଲଭ 'ରହସ୍ୟ-ମଞ୍ଜରୀ'ରେ କେତେକ ଛାନ୍ଦସିକ ପରୀକ୍ଷା ପ୍ରବର୍ତ୍ତିତ କରିଛନ୍ତି; ଯାହା ଓଡ଼ିଆରେ ନୂତନ । ପୁସ୍ତକର ଉପସଂହାର ଶ୍ଳୋକଗୁଡ଼ିକ ପ୍ରକୃତରେ ସମଗ୍ର ଓଡ଼ିଆ ସାହିତ୍ୟରେ ଅସାଧାରଣ । ତାକୁ ପଢ଼ି ମନେହେଉଛି ଯେ, କବି ଦେବଦୁର୍ଲ୍ଲଭ ଜଣେ ଶାନ୍ତିକାମୀ, ଶିଷ୍ଟ, ଅହିଂସ, ଭଦ୍ର ନାଗରିକ ଥିଲେ ଓ ବୋଧହୁଏ ସେହି କାରଣରୁ ସମସାମୟିକ ଶାସନ ଓ ସମାଜରେ ଶକ୍ତିଶାଳୀ ଥିବା ଗୁଣ୍ଡାମାନଙ୍କ ଭୟରେ ଜୀବନଯାପନ କରୁଥିଲେ । କବିଙ୍କର ଏହି ପଙ୍‌କ୍ତିଗୁଡ଼ିକ ଆଧୁନିକ କାଳ ପ୍ରତି ବିସ୍ମୟକର ଭାବରେ ପ୍ରଯୋଜ୍ୟ ଓ ଯେଉଁ ଅଜ୍ଞାତ ଓଡ଼ିଆ କବି ଦୁଇ ଶତାବ୍ଦୀ ପୂର୍ବେ ମହାତ୍ମାଜୀଙ୍କର ଅହିଂସା ପ୍ରଚାର କରିଥିଲେ, ତାଙ୍କୁ ସବୁ ଦେଶର ପାଠକେ ଶ୍ରଦ୍ଧା-ଜ୍ଞାପନ କରିବେ ବୋଲି ଆଶାକରେ । କବି ଦେବଦୁର୍ଲ୍ଲଭ କହିଛନ୍ତି –

''ସବୁଙ୍କର ସନ୍ଥ ବୁଦ୍ଧି ଯେବେ ସେ ହୁଅନ୍ତା
ଖଡ୍‌ଗ, କମାଣ, ବାଣ କିପାଇଁ ବିହନ୍ତା ।
ଏକରୁ ଆରେକ ନ ଚିହ୍ନନ୍ତି ମତ୍ତଭୋଳେ
ତେଣୁ ମରାମରି ହୋଇ ମରନ୍ତି ସକଳେ !
ନ୍ୟାୟ ନ ବୁଝନ୍ତି ସେ ବୁଝନ୍ତି ଅନମିତେ
ମତ୍ତଗର୍ବ ପୁରସ୍କାରେ ମୋହ ଅନୁବ୍ରତେ ।
ଦେଖିବା ମାତ୍ରକେ ଭୟ ଲାଗଇ ଯାହାକୁ
କେସନେକ ସନ୍ଥ ବୋଲି ବୋଲିବା ତାହାକୁ ।
କହିବାକୁ ଡରି ତେଣେ ନ କହିଲେ ମରି
ସୃଷ୍ଟିନାଶ ଗଲା ପ୍ରଭୁ ବୁଝିବା ବିଚାରି ।

ଏଥୁ ଉଦ୍ଧରିଣ ପ୍ରଭୁ ବେଗେ ମତେ ନିଅ
ପରାଲବ୍‌ଧେ ଥିଲେ ସନ୍ଥ ପାଦତଳେ ଥୁଅ ।''

(ଅନମିତେ – ଅବିନୟରେ । ପୁରସ୍କାର – ପୁରଃସର, ସହିତ । ଅନୁବ୍ରତେ – ଅନବରତ, ସର୍ବଦା । ପରାଲବ୍‌ଧେ – ଭାଗ୍ୟରେ ।)

କୃଷ୍ଣଚରିତ ନେଇ ଏତେ ଏତେ ଗ୍ରନ୍ଥ ଆଗରୁ ଲେଖା ହୋଇସାରିଥିଲେ ମଧ ଦେବଦୁର୍ଲଭ ସେହି ଏକା କଥା ଉପରେ 'ରହସ୍ୟ-ମଞ୍ଜରୀ' ଲେଖିବାକୁ ଗଲେ କାହିଁକି ! କବି ତା'ର ଉତ୍ତର ଦେଇଛନ୍ତି –

''ରହସ୍ୟ-ମଞ୍ଜରୀ ଏ ବିଚିତ୍ରମୟ ରସ
ଏ ସୁଖ ଜାଣିମ ଯେହୁ ବିବେକ ପୁରୁଷ,
ଅବିବେକ ବୋଲି଼ ଏ କେଉଁ ପାଠେ ଥିଲା
ଥିଲା ଯେବେ କବି କିମ୍ପା ଆଗହୁଁ ନ କଲା ?

× × ×

ପାଠକମାନେ ଯେବେ ଅନ୍ତ କରି କହିଥାନ୍ତେ
ମହିମା ଅନନ୍ତ ବୋଲି କିମ୍ପା କହିଯାନ୍ତେ !
କହି କହି କୋଟି କଳ୍ପେ ନ ପାଇଲେ ଅନ୍ତ
ତେଣୁ କହିଗଲେ ମହିମା ଅନନ୍ତ ।

× × ×

ଏବେହେଁ ଭଣ୍ଡାରେ କେତେ କେତେ ପୂରିଥିବ
କଳ୍ପ କଳ୍ପାନ୍ତରେ କି ସେ ବୋଇଲେ ସରିବ ?''

ଭୂପତି ପଣ୍ଡିତଙ୍କ ପ୍ରେମ-ପଞ୍ଚାମୃତ ଏକ ଆଡ଼ମ୍ବରହୀନ କାବ୍ୟ । ଏଥିରେ ରାସଲୀଳା ବର୍ଣ୍ଣିତ ଓ ତା'ର ତତ୍ତ୍ୱ ବ୍ୟାଖ୍ୟାତ ହୋଇଛି । ଜଗନ୍ନାଥଙ୍କ ଭାଗବତର ନବାକ୍ଷରୀ ଛନ୍ଦରେ ଏବଂ ଏପରି ଶୁଦ୍ଧ, ଶିଷ୍ଟ ଓଡ଼ିଆରେ ଲିଖିତ ଯେ, ଲେଖକ ଜଣେ ଉତ୍ତରପ୍ରଦେଶାଗତ ସାରସ୍ୱତ ବ୍ରାହ୍ମଣ ଥିଲେ ବୋଲି ଜାଣିଲେ ବାସ୍ତବିକ ବିସ୍ମିତ ହେବାକୁ ହେଉଛି । ପୁରୀ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଉତ୍କଳକୁ ଆସି ପଣ୍ଡିତଜୀ ତତ୍‌କାଳୀନ ଓଡ଼ିଶା ରାଜାଙ୍କ ଅନୁରୋଧରେ ଉତ୍କଳବାସୀ ହୋଇପଡ଼ିଲେ ଓ ଓଡ଼ିଆ ଭାଷାକୁ ଏପରି ଆୟତ୍ତ କରିନେଲେ ଯେ, ଓଡ଼ିଆ ତାଙ୍କର ମାତୃଭାଷା ନଥିଲା ବୋଲି କହିବାକୁ ସାହସ ହେଉନାହିଁ । ପ୍ରେମ-ପଞ୍ଚାମୃତର ମୁଖ୍ୟ ବୈଶିଷ୍ଟ୍ୟ ଏହି ଯେ, ରାଧା-କୃଷ୍ଣ-ଗୋପୀ-ଲୀଳା ବର୍ଣ୍ଣନା କରିଥିବା ଓଡ଼ିଆ ସାହିତ୍ୟର ସକଳ ଗ୍ରନ୍ଥ ମଧ୍ୟରେ ଏହିଟି ସର୍ବାଧିକ ଅଶ୍ଳୀଳତା-ମୁକ୍ତ । ଏହି ବିଶୁଦ୍ଧତାହିଁ ଏ ପୁସ୍ତକର ପ୍ରଧାନ ଗୁଣ । ସେତକ ନଥିଲେ ଏହି ଓଡ଼ିଆ ସାହିତ୍ୟର ଇତିହାସରେ ଏପୁସ୍ତକର ଉଲ୍ଲେଖ କରିବାର କୌଣସି ଆବଶ୍ୟକତା ବା ଯଥାର୍ଥତା ନଥିଲା ବୋଲି କୁହାଯାଇପାରେ ।

**ବୈଷ୍ଣବ ଗୀତିକାରଗଣ –**

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରାଧା ଓ କୃଷ୍ଣଙ୍କୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟରେ ସଙ୍ଗୀତର ଏପରି ଏକ ବ୍ୟାପକ ଉଦ୍ଭବ ଘଟିଥିଲା; ଯାହା ପୂର୍ବେ ବା ପରେ ଘଟିନଥିଲା କି ଘଟିନାହିଁ । ମୁଖ୍ୟ ଓଡ଼ିଆ ଗୀତିକାରଗଣ ଗଞ୍ଜାମବାସୀ । ତେଣୁ ଏ କ୍ଷେତ୍ରରେ ଦକ୍ଷିଣୀ ପ୍ରଭାବ ଓ ପ୍ରେରଣା ସନ୍ଦେହ-କରାଯାଇପାରେ; କିନ୍ତୁ ବାହାରର ବିଶେଷଜ୍ଞମାନେ ସ୍ୱୀକାର କରିଛନ୍ତି ଯେ, ଭାରତୀୟ ସଙ୍ଗୀତର ଦୁଇ ପ୍ରଧାନ ଶାଖା ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀକୁ ମିଶାଇ ଓଡ଼ିଶା ତା'ର ନିଜର ଏକ ସ୍ଥାନୀୟ ବୈଶିଷ୍ଟ୍ୟସଂପନ୍ନ ସ୍ୱତନ୍ତ୍ର ସାଙ୍ଗୀତିକ ଶୈଳୀ ସୃଷ୍ଟି କରିପାରିଛି ।

ଆମେ ବର୍ତ୍ତମାନ ଯେଉଁ ତିନିଜଣ ମୁଖ୍ୟ ଗୀତିକାରଙ୍କୁ ଆଲୋଚନା କରିବା, ସେମାନେ ସାଧାରଣ ଅର୍ଥର ଗୀତ-ଭଙ୍ଗାଳୀ ନୁହନ୍ତି । ସେମାନେ ବସ୍ତୁତଃ କବି; ଯେ କି ଗୀତକୁ ତାଙ୍କ ଅନୁଭବର ଯୋଗ୍ୟ ମାଧ୍ୟମ ବୋଲି ଗ୍ରହଣ କରିନେଇଥିଲେ । ସେମାନଙ୍କ ମଧ୍ୟରୁ କବିସୂର୍ଯ୍ୟ ବଳଦେବ ରଥେ ବୋଧହୁଏ ଥିଲେ ସର୍ବାଧିକ ସଙ୍ଗୀତତତ୍ତ୍ୱଜ୍ଞ, ଗୋପାଳକୃଷ୍ଣ ସର୍ବାଧିକ କବିପ୍ରତିଭାଯୁକ୍ତ ଓ ବନମାଳୀ ସର୍ବାଧିକ ଭକ୍ତ । ଏ ତିନିଙ୍କ ଭିତରେ ବୟୋଜ୍ୟେଷ୍ଠ ବଳଦେବଙ୍କଠାରୁ ଆମର ଆଲୋଚନା ଆରମ୍ଭ ହେଉ ।

**କବିସୂର୍ଯ୍ୟ ବଳଦେବ ରଥ (୧୭୮୯-୧୮୪୫) –**

ବଳଦେବ ରଥେ ଗଞ୍ଜାମର କୌଣସି ଗୁଣଗ୍ରାହୀ ରାଜାଙ୍କଦ୍ୱାରା ପ୍ରଦତ୍ତ ଉପାଧି ଘେନି ସମଗ୍ର ଉତ୍କଳରେ କବିସୂର୍ଯ୍ୟ ନାମରେହିଁ ସୁପରିଚିତ । କବି ଦେଖିବାକୁ ସୁପୁରୁଷ ଥିଲେ, ଗାଇବା ଓ ରସିକତା ଆଦି ଅଧିକା ଗୁଣଯୋଗୁଁ ସମାଜରେ ସର୍ବତ୍ର ଆଦରର ପାତ୍ର ଥିଲେ । ରଥେ ମଧ୍ୟ ଥିଲେ ବହୁଭାଷାବିତ୍ । ସଂସ୍କୃତ ଛଡ଼ା ଆଉ ଅନ୍ତତଃ ପାଞ୍ଚଟି ଭାରତୀୟ ଭାଷାରେ ତାଙ୍କର ଦୃଢ଼ ଅଧିକାର ଥିବାର କୁହାଯାଏ । ଏହିସବୁ ଅସାଧାରଣ ଗୁଣାବଳି ଯୋଗୁଁ ରଥେ ଭିନ୍ନ ଭିନ୍ନ ସାମନ୍ତରାଜାମାନଙ୍କ ଦରବାରରେ ବରାବର ସମାଦୃତ ହେଉଥିଲେ କେବଳ ନୁହେଁ, ବ୍ରିଟିଶ୍ ସରକାର ମଧ୍ୟ ତାଙ୍କୁ ଭିନ୍ନ ଭିନ୍ନ ଜମିଦାରିର ଦେୱାନ ଓ ରାଜ-କୁମାରମାନଙ୍କ ଅଭିଭାବକରୂପେ ନିଯୁକ୍ତ କରିଥିଲେ । ସଶ୍ରଦ୍ଧ ରାଜନ୍ୟବର୍ଗ ତାଙ୍କୁ ବିସ୍ତୃତ ଜମି ଦାନ କରିଥିଲେ । ଭିନ୍ନ ଭିନ୍ନ ଚାକିରିରୁ ପୁଣି ତାଙ୍କର ପ୍ରଚୁର ଆର୍ଥିକ ଆୟ ଥିଲା । ଦେଶମୟ ଖ୍ୟାତି ଓ ଆଦର ଘେନି ଏହିପରି ଭାବରେ କବିସୂର୍ଯ୍ୟ ଯେପରି ସମୃଦ୍ଧ, ଗୌରବୋଜ୍ଜ୍ୱଳ ଜୀବନ ଯାପନ କରିଥିଲେ, ଖୁବ୍ କ୍ୱଚିତ୍ ଓଡ଼ିଆ କବିଙ୍କ ଭାଗ୍ୟରେ ତାହା ଘଟିଛି ।

କବିସୂର୍ଯ୍ୟ ଯେଉଁ ଗୀତ-ରାଶି ଛାଡ଼ିଯାଇଛନ୍ତି, ତା'ର ପରିମାଣ କମ୍ ନୁହେଁ, ଛପାରେ ପ୍ରାୟ ଡିମାଇ ୫୦୦ ପୃଷ୍ଠା ଅଧିକାର କରିଛି । ଅଧିକାଂଶ ପ୍ରେମ-କବିତା ପ୍ରାୟ ହିଁ ରାଧା ଓ କୃଷ୍ଣଙ୍କୁ କେନ୍ଦ୍ରକରି । ରାଧା-କୃଷ୍ଣଙ୍କ ଚରିତ ତଳୁ କେତୋଟିରେ କବିଙ୍କର ନିଜର ବ୍ୟକ୍ତିଗତ ଉଷ୍ଣ-ଅନୁଭୂତି ଅବଶ୍ୟ ସ୍ପଷ୍ଟ ପ୍ରକଟିତ ହୋଇଉଠିଛି । ତରୁଣ ଜୀବନରେ କବି କୌଣସି ସ୍ଥାନର ରାଜକର୍ମଚାରୀ ମାନଙ୍କଦ୍ୱାରା ଅପମାନିତ ହୋଇ ଚମତ୍କାର ଏକ

ସାଟୀୟାର୍ ଲେଖିପକାଇଥିଲେ । ବ୍ୟୁରୋକ୍ରାଟ୍ (ରାଷ୍ଟ୍ରୀୟ କର୍ମଚାରୀ)ମାନେ ସାଧାରଣତଃ କଳ୍ପନାଶକ୍ତିଶୂନ୍ୟ ଓ କ୍ଷୀଣଦୃଷ୍ଟିସଂପନ୍ନ । ସେମାନେ ନିଜର ପମ୍ପା ସାମୟିକ ପ୍ରାଧାନ୍ୟ ଓ ଅପମାନିତ କରୁଥିବା ପ୍ରତିଭା ଭିତରେ ପ୍ରଭେଦ ଦେଖିବାରେ ଅକ୍ଷମ । ନିମ୍ନଲିଖିତ ସାଟୀୟାର୍ ସେହି ପରିଚିତ ଶ୍ରେଣୀର ଏହିପରି ଏକ ଅଜ୍ଞତା ପ୍ରତି ଅଭିପ୍ରେତ –

"ପାମର ପାଣିଶିମୂଳି କି ହେବ ତାମରସ ଫୁଲ୍ଲ ବଲ୍ଲୀ
ଗ୍ରାମ ଶୂକରୀକୁ ବଢ଼ାଉ ଯେ ଥିଲି କାମଧେନୁ ହୁଅ ବୋଲି ।
ସରସେ କୁହାଯାଉଥାଏ ସିନା,
ତୁହାଇ ତୁହାଇ ପୁଟ ଦେଲେ ହେଲେ ଲୁହା କି ହୋଇବ ସୁନା ?
କୁଆ ପଞ୍ଜରିରେ ପଡ଼ିଲେ କି ଧରେ ଶୁଆପରି ହରିନାମ,
ଭୁଆଟୀ ଗୁହାରେ ପଶିଲେ କି କରେ ଛୁଆସିଂହ ପରାକ୍ରମ ।
ସରସେ କୁହାଯାଉଥାଏ ସିନା,
ତୁହାଇ ତୁହାଇ ପୁଟ ଦେଲେ ହେଲେ ଲୁହା କି ହୋଇବ ସୁନା ?"

ଚଂପୂ –

କବିସୂର୍ଯ୍ୟଙ୍କ ଶ୍ରେଷ୍ଠ କୃତି ମାତ୍ର ଖଣ୍ଡିଏ କ୍ଷୀଣାବୟବ ଗ୍ରନ୍ଥ, ଚଉତିଶା-ରୀତିରେ ଲିଖିତ ୩୪ଟି ଗୀତର ସମାହାର । ବର୍ଣ୍ଣମାଳା ରୀତିରେ ଲିଖିତ ହେଲେହେଁ ଏ ପୁସ୍ତକଟି ପଢ଼ିଗଲାବେଳେ ପାଠକ କୌଣସି ହେଲେ ବାଧା-ବନ୍ଧନ ଅନୁଭବ କରେନାହିଁ । ନାୟକ ଓ ନାୟିକାର ରାଗାନୁରାଗର କ୍ଷିପ୍ର ପ୍ରବହମାନ ବନ୍ୟାରେ ପାଠକ ଭାସିଯାଏ । ପ୍ରତ୍ୟେକଟି ଗୀତର ନୂତନ ମନୋରମ ରାଗ ଓ ପ୍ରତ୍ୟେକଟି ଗୀତର ପରିବେଶ ଅନୁଯାୟୀ ଚତୁର, ବିଚକ୍ଷଣ, ଅନୁପମ ଶବ୍ଦସଂଯୋଜନ ପାଠକକୁ ଏକ ବିମୋହନ ଆଣିଦିଏ । ଚଉତିଶାର ସୀମିତ ପରିସରଯୋଗୁଁ ପ୍ରତ୍ୟେକଟି ଗୀତ ଯେପରି ହୋଇଉଠିଛି ଏକ ନିଟୋଳ, ସୁନ୍ଦର, ସ୍ୱୟଂ-ସଂପୂର୍ଣ୍ଣ ମିନିଏଚର୍-ଚିତ୍ର । ଆକାରରେ ଛୋଟ ହେଉ ପଛେ ସମଗ୍ର କାବ୍ୟଟି ସୁଯୋଜିତ, ସୁଗଠିତ ଓ ସୁଶୋଭିତ ଜଣାପଡୁଛି ଏକ ଅବିଚ୍ଛିନ୍ନ କାବ୍ୟିକ ପ୍ରେରଣାରେହିଁ ଲିଖିତ; ଯାହା ବିନା ଶିଳ୍ପ ଓ ସାହିତ୍ୟ ସଂସାରରେ କୌଣସି ହେଲେ ସ୍ଥାୟୀ ଓ ମହତ୍ ସିଦ୍ଧି ଅସମ୍ଭବ । ସମଗ୍ର ଓଡ଼ିଆ ସାହିତ୍ୟରେ ଏପରି ଏକ ସାନ୍ଦ୍ର-ନିବିଡ଼ ସୁନିର୍ମିତ ଦ୍ୱିତୀୟ କାବ୍ୟ ଆଉ ନାହିଁ ବୋଧହୁଏ । ଉତ୍କଳରେ ଏ ଗ୍ରନ୍ଥର ଆଦର ଓ ସମ୍ମାନ ପଛରେ ସରଳ କାବ୍ୟିକ ଓ ସାହିତ୍ୟିକ ଯାଥାର୍ଥ୍ୟ ରହିଛି । ଏହି ଗ୍ରନ୍ଥ, କିଶୋରଚନ୍ଦ୍ରାନନ୍ଦ ଚଂପୂ, ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ ଓ ଅନ୍ୟ ବହୁ ଚଂପୂ ଥିଲେ ମଧ 'ଚଂପୂ' କହିଲେ, ଓଡ଼ିଶାରେ ଲୋକେ କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚଂପୂକୁହିଁ ବୁଝିଥାନ୍ତି ।

କାବ୍ୟିକ ମହିମା ବାଦ୍ ଦେଲେ ମଧ ଗୀତମାନଙ୍କର ସାଙ୍ଗୀତିକ ମହତ୍ତ୍ୱ ଯୋଗୁଁ କବିସୂର୍ଯ୍ୟଙ୍କ ଚଂପୂ ଓଡ଼ିଶୀ ସଙ୍ଗୀତର ଓସ୍ତାଦ୍‌ମାନଙ୍କ ପ୍ରିୟ ବସ୍ତୁ । ଚଂପୂ ଗୀତକୁ ଶାସ୍ତ୍ରୀୟ ରୀତିରେ ନିଖୁଣଭାବରେ ଗାଇଜାଣିବା ହେଉଛି ଓଡ଼ିଶୀ ସଙ୍ଗୀତର ଶ୍ରେଷ୍ଠ ପରୀକ୍ଷା ।

ରାଧା ଓ କୃଷ୍ଣଙ୍କର ଭାବୋଚ୍ଛ୍ୱାସମୟ ପ୍ରଣୟ-ନାଟକ ଭାରତୀୟ ସାହିତ୍ୟରେ ଅତି ପରିଚିତ ଘଟଣା । ଜୟଦେବଙ୍କ ଗୀତଗୋବିନ୍ଦ ଏହାକୁ ସର୍ବବ୍ୟାପ୍ତ କରିବାରେ କମ୍ ସାହାଯ୍ୟ କରିନାହିଁ । କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚଂପୂ ଓ ଜୟଦେବଙ୍କ ଗୀତଗୋବିନ୍ଦ କଥାବସ୍ତୁ ଏକାବେଳକେ ଏକା । ହୁଏତ ଓଡ଼ିଆ ଭାଷାର କବି ନିଜ ରାଜ୍ୟର ବିଖ୍ୟାତ ସଂସ୍କୃତ-କବିଙ୍କଠାରୁ ଏହି ଗ୍ରନ୍ଥ ରଚନାରେ ପ୍ରେରଣା ପାଇଥିବେ; କିନ୍ତୁ ଓଡ଼ିଆ କବି ସଂସ୍କୃତ ଆଦର୍ଶକୁ ଯେ ଅନେକ ବିଭାବରେ ବଳିଯାଇଛନ୍ତି, ଏହା କମ୍ ଗୌରବର କଥା ନୁହେଁ । କବିସୂର୍ଯ୍ୟଙ୍କ ଚଂପୂ ଗୀତଗୋବିନ୍ଦ ଅପେକ୍ଷା ଅନ୍ତତଃ କମ୍ ଅଶ୍ଳୀଳତାଯୁକ୍ତ ଓ ଅଧିକ ପାରମାର୍ଥିକ କାବ୍ୟ । ଅବଶ୍ୟ ଗୀତଗୋବିନ୍ଦର ଅଶ୍ରୁତପୂର୍ବ ସାଙ୍ଗୀତିକତା ଓ ଶବ୍ଦ-ମାଧୁର୍ଯ୍ୟର ବିଚାରକୁ ବାଦ୍ ଦେବାକୁ ହେବ; କାରଣ ହୁଏତ ସମଗ୍ର ବିଶ୍ୱସାହିତ୍ୟରେ ତା'ର ତୁଳନା ନାହିଁ । ଆମ୍ଭେମାନେ କେବଳ ସାହିତ୍ୟିକ ବିଚାର କରିବା । ଗୀତଗୋବିନ୍ଦରେ ପ୍ରଣୟୀ ଓ ପ୍ରଣୟିନୀଙ୍କୁ ଏକାଠି କରାଇବା ମାଧ୍ୟମିକାଟି ଏକପ୍ରକାର ବ୍ୟକ୍ତିତ୍ୱହୀନ । ନିଜେ ପ୍ରଣୟୀ ଓ ପ୍ରଣୟିନୀ ମଧ୍ୟ କେବଳ ଦୁର୍ବଳ ଭାବୋଚ୍ଛ୍ୱାସମାନଙ୍କର ବିଗ୍ରହ ମାତ୍ର; କିନ୍ତୁ କବିସୂର୍ଯ୍ୟଙ୍କ ଚଂପୂରେ ଏ ସମସ୍ତେ ରକ୍ତମାଂସର ପରିଚିତ ବ୍ୟକ୍ତିତ୍ୱ ଧାରଣ କରି ଆଶା ଓ ନିରାଶାରେ ଆନ୍ଦୋଳିତ ହୋଇଛନ୍ତି ଓ ବିଶ୍ୱର ସକଳ ପ୍ରଣୟୀଜନ ପରି ପରସ୍ପରକୁ ପାଇବା ପାଇଁ ଛଳନା ଓ ଚାତୁର୍ଯ୍ୟର ଆଶ୍ରୟ ନେଇଛନ୍ତି । ଏସବୁ ଭିତରେ କବିସୂର୍ଯ୍ୟଙ୍କ ଚଂପୂ କାବ୍ୟର ଲଳିତାଟି ହୋଇଉଠିଛି ସମଗ୍ର ବୈଷ୍ଣବ-କାବ୍ୟ-ଜଗତର ଚତୁରୀତମା ଦୂତିକା । ଭାବପ୍ରବଣ ଓ ପରସ୍ପର ପ୍ରତି ନିରାଲମ୍ବ ଭାବରେ ଆସକ୍ତ ଦୁଇ ପ୍ରଣୟୀଜନଙ୍କୁ ମିଳାଇବା ଆଗରୁ ଏହି ଦୁଷ୍ଟମଧୁର ଦୂତୀ ମଜା ଦେଖିବାପାଇଁ ସେମାନଙ୍କୁ ଏକପ୍ରକାର ନାକରେ ଦଉଡ଼ି ଲଗେଇ ଟଣାଟଣି କରି ଛାଡ଼ିଛି ।

ରାଧା ଦିନେ ଏହି ବିଶ୍ୱାସିନୀକୁ କହିଲେ ଯେ, ସେ ଯମୁନାକୁ ପାଣି ଆଣିବାକୁ ଯାଇ ନୀଳବର୍ଣ୍ଣର ଅପୂର୍ବ ମୋହନ ତରୁଣଙ୍କୁ କେଳିକଦମ୍ବ ଲତାକୋଳରେ ବିରାଜିତ ଥିବାର ଦେଖି ଅନାୟତରେ ନିଜର ହୃଦୟ ହରାଇଦେଇଛନ୍ତି । ସେ କ'ଣ କରିବେ ? – କି ହେଲା ରେ, କହି ତ ନୁହଇ ଭାରତୀରେ ।''

ଲଳିତା ବାହାରକୁ ନିଜର ନୀତିଶୀଳତା ଦେଖାଇ କହିଲା – ଏ ଏକ ମାରାତ୍ମକ ଓ ଅସମ୍ଭବ ଇଚ୍ଛା – ''ଖରାପ ତୁ ହେଲୁ ରେ, ଖେଳାଲୋଳଖଞ୍ଜନାକ୍ଷି, କି ସାହସ କଲୁ ରେ ।''

ନିରୀହା କିଶୋରୀ ରାଧା ସଙ୍ଗିନୀକୁ କରୁଣ ନିବେଦନ ଜଣାଇଲେ ଯେ, ହୃଦୟର ବାସନାକୁ ଫେରାଇଆଣିବା ତାହାଙ୍କ ପକ୍ଷରେ ସମ୍ଭବ ନୁହେଁ; ବର୍ତ୍ତମାନ ଉଦ୍ଧାରର ଉପାୟ ବତାଅ – ''ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ କହ ।''

ଲଳିତା ପୁଣି କହିଲା – ଆମ କଥା ତ ମାନିଲ ନାହିଁ; ଏବେ କ'ଣ କରିପାରୁଁ ? ତେବେ ଚେଷ୍ଟା କରି ଦେଖେଁ ? –

''ଘେନାଇ ଆମ୍ଭେ ଯେତେ କହିଲୁ ରେ / ଘେନିଲୁ ନାହିଁ ବାଳା ପହିଲୁ ରେ !''

ବର୍ତ୍ତମାନ ଲଳିତା କୃଷ୍ଣଙ୍କୁ ଦିନେ ଯମୁନାତଟରେ ବିମର୍ଷ ହୋଇ ଏକା ବୁଲୁଥିବାର ଦେଖି ପଚାରିଲା – "ତମ ଦେହ ଭଲ ନାହିଁ କି ? ବଡ଼ ଶୁଖିଲା ଯେ ଦିଶୁଛ ?"

"ନୃଆନଟପଟଳୀମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ ?
ନେପଟ ନିସ୍ତେଜ ଦିଶୁଛି ତ ଆଜ ନିରକସ ଚନ୍ଦ୍ରମୁଖ !"

ତରୁଣ କୃଷ୍ଣ କିଛି ନ ଘଟିଥିଲା ପରି ଉତ୍ତର ଦେଲେ – ନାହିଁ, ମୋ ଦେହ ତ ଭଲ ଅଛି । ମୋର କାହିଁକି କ'ଣ ହେବ ?

"× × ଚିକ୍‌କଣ ତ ଦିଶୁଛି ମୋ ଦେହ,
ଚିହ୍ନି କି ଲାଞ୍ଛନ ସତେ, ଚାମରଚିକୁରା ମତେ
ଚହକାଇ ପଚାରିଲୁ କହ ରେ !"

ଧୂର୍ତ୍ତା ଲଳିତା ବର୍ତ୍ତମାନ କହିଲା – ଏସବୁ ଛଳନା ଛାଡ଼ । ସତ କଥାଟି କହ ।

"ଛଳ ବାହିନୀଶ ହେ, ଛାଡ଼ ଏ ସାହସ । ପଦ ।
ଛବି ତ ଆବିଳ ଦିଶେ ଛପିବାରେ ଅଛି କି ସେ ?"

ବର୍ତ୍ତମାନ ପ୍ରଣୟଦଗ୍ଧୀଭୂତ ତରୁଣ କୃଷ୍ଣଙ୍କର ଅନ୍ତରର ଭାବନାରାଜି ସେହି ସହାନୁଭୂତିଶାଳିନୀ ମାଧମିକା ପାଖରେ ଉଚ୍ଛ୍ୱସିତ ହୋଇ ବାହାରିପଡ଼ିଲା । ସେ କହିଲେ – ହଁ, ସେଦିନ ସେ ଗାଇ ଧରି ବଣରୁ ଫେରିଲାବେଳେ କୌଣସି ଗୃହ ବାତାୟନ ପଛପଟେ ଏକ ସୁନ୍ଦରୀ କିଶୋରୀଙ୍କୁ ହଠାତ୍ ଦେଖିପକାଇଲେ । ସେହି ସମୟଠାରୁ ତାଙ୍କର ଆତ୍ମାରେ ଆଉ ଶାନ୍ତି ନାହିଁ । ବର୍ତ୍ତମାନ କିଛି ଉପାୟ କର ।

"ଜାଣିଛି ମୁଁ ଏତେ ମାତ୍ର ଗୋ ଲଳିତେ ଯାହା ଇଚ୍ଛା ତୋର ·ାହା କର ।
ଜାତି କୁରୁବିନ୍ଦ ବାତାୟନବୃନ୍ଦ / ଅନାଇ ମୁଁ ଚାଲୁଥିଲି ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦସାର / ଶିରୀ ସ୍ଫୁରିଲା ସେ କି ଚ୍ଚକାର ।"

କିନ୍ତୁ ଧୂର୍ତ୍ତା ଲଳିତା ଶ୍ରୀକୃଷ୍ଣଙ୍କର ଏ ପ୍ରକାର କାତରୋକ୍ତିରେ ସାମାନ୍ୟ ସହାନୁଭୂତି ନଦେଖାଇ ବରଂ ତାଙ୍କୁ ଗାଳିଦେବାକୁ ଆରମ୍ଭ କଲା – ଇଏ କି କଥା କହ, କୁମାର ? ଏ ଯେ ମହାନ୍ ବିପଦ ।

ତମ ନିଜ ଓ ମୋ ସାଙ୍ଗ ମୁଣ୍ଡ ଉପରକୁ ଡାକି ଆଣୁଛ । ସ୍ତ୍ରୀଟାଏ ମନ୍ଦର ଦିଶିବା କ'ଣ ବିଚିତ୍ର କଥା ? ସେଥିରେ ଏପରି ଭୁଲିଯିବାର କ'ଣ ଅଛି ?

"ଝଗଡ଼ି ମାତ୍ର ହେଲ ହେ ଶ୍ୟାମ / ଝିମୁଟ ହେବାକୁ ସହସ୍ର ଯାମ ।
× × × ×
ଝଳି ପାଞ୍ଚାଳୀ ଝଟକେ ନାହିଁ କି / ଝୋଲା ମାଇଲା ତୁମ୍ଭଙ୍କୁ କାହିଁକି ?

ଶ୍ରୀକୃଷ୍ଣ ଲଳିତାକୁ ବର୍ତ୍ତମାନ ଅତି ବିନୟ ସହକାରେ ନିଜର ହୃଦୟ ବେଦନା ଜଣାଇଲେ ଓ ଆଶା ଭଙ୍ଗ ନକରି ମିଳନର ବ୍ୟବସ୍ଥା କରିବାକୁ ନିବେଦନ କଲେ – "ନ ଭାଙ୍ଗରେ ଶୁଭାଙ୍ଗୀ ଭାରତୀ, ହୁଅ ସାହା ।"

ଲଳିତା ଏହାର ଉତ୍ତର ଦେଲା–କୁମାର, ତମେ ମୋ ସାଙ୍ଗର ଦଶା କ'ଣ ହେବ ଟିକିଏ

ଭାବ ! ସେ ଯେ ଅନ୍ୟର ସ୍ତ୍ରୀ ! ଜଣାପଡ଼ିଲେ ତା'ର ଅବସ୍ଥା କ'ଣ ହେବ ଭାବୁନା କାହିଁକି ?

× × ×

"ଗଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ ମୋ ପ୍ରାଣସଖୀ ସରିବ ।"

× × ×

"ଚିପି ଦେଲେ କଂସ ଆଗେ କେ ନୃଶଂସ ନନ୍ଦ ବନ୍ଦୀ ହେବେ ଗୋପେ ।"

ଶ୍ରୀକୃଷ୍ଣ ପୁଣି ଲଳିତାକୁ ଆର୍ତ୍ତ-ନିବେଦନ ଜଣାଇଲେ –

"ଠକ ରୀତି ଆଚରି / ମୋ କଦନକୁ ବିଚାରି / ଅକପଟ ତ୍ରାଣ ବିଧି ଉଚିତ ରେ ।

ଲଳିତା ଫେର ଜବାବ ଦେଲା –

"ଡର ନାହିଁ କି ହେ, ପର ତରୁଣୀ ହରଣୁ ?

ତୋର ଲାଗି ଘେର ପଡ଼ିବ ଯେ ହେବ ଚୋରପରି ଆଚରଣୁ ।"

ଶେଷରେ ଶ୍ରୀକୃଷ୍ଣ ନିରସ୍ତ ହୋଇ କହିଲେ – କିଛି ହେଲେ ଦୟା କଲୁନି !

"ଢାଳେ ତ ଢାଳିଲୁ ନାହିଁ କୃପାସୁଧାଝରିକି ରେ !

ଫଳରେ ଲଳିତା 'ଦେଖେ, ଚେଷ୍ଟା କରିବି' ବୋଲି ପ୍ରତିଶ୍ରୁତି ଦେଇ ସ୍ଥାନ ତ୍ୟାଗକଲା ।

× × ×

"ଅଳି ତୁମ୍ଭର ନିବିଡ଼ ଅସହିଷ୍ଣୁ ସେ ଯେ ବଡ଼,

ଅବଶ୍ୟ ତା ଛାମୁରେ ମୁଁ ନିବେଦନ କଲିଟି ।"

କିନ୍ତୁ ଚରମ ଧୂର୍ତ୍ତତାର ସହିତ ସେହି ଲଳିତା ରାଧାଙ୍କୁ ଯାଇ କହିଲା –

"ତୋ ଘେନି ତମାଳଶ୍ୟାମ ମୋ ମରଜି କଷିଲା ରେ ।

ତଥାପି ତ ତିଳେ ହେଲେ ତୋ ସ୍ନେହେ ନ ରସିଲା ରେ ॥

× × ×

ତପନଜାତଟକୁ ତୁ, ତରୁଣତା କେଉଁ କୁତୂ-

ହଳରୁ ଆସିଲୁ, ହେତୁ କହ ବୋଲି ଘୋଷିଲା ରେ ।"

ସରଳା ରାଧା ଏସବୁକୁ ବିଶ୍ୱାସ କରିଯାଇ ବର୍ତ୍ତମାନ ଅତ୍ୟନ୍ତ ନିରାଶ ହୋଇପଡ଼ିଲେ ଓ ଧୈର୍ଯ୍ୟ ହରାଇବସିଲେ । ତାଙ୍କର ପ୍ରାଣବାୟୁ ଉଡ଼ିଯିବା ପରି ହେଲା ।

"ଆପିରେ କହ ତଥାପିରେ ପ୍ରିୟ ସଖି, ଥିବି କି ଛାଡ଼ିବି ପ୍ରାଣ ?"

ଏବେ ଲଳିତା ତା'ର ସ୍ୱକୀୟ ମାନବିକତା ଦେଖାଇ କହିଲା – ସଖି, ଏପର୍ଯ୍ୟନ୍ତ ତମ ଦୁହିଁଙ୍କୁ ପରୀକ୍ଷା କରୁଥିଲି ମାତ୍ର । ସେ ତୋ'ଠୁ ଆହୁରି ଦୁଃଖ ପାଉଛନ୍ତି । ଆ. . . ମୋ ସାଥିରେ, ତାଙ୍କୁ ଭେଟିବୁ ।

କିନ୍ତୁ ଏହା ସତ୍ତ୍ୱେ, ଏହି ଧୂର୍ତ୍ତା ଦୂତୀ ଅଭିସାର-ପଥରେ ମଧ୍ୟ ସରଳା ରାଧାର ଭାବ-ଭାବନାରାଜିକୁ ଦୋଳିରେ ଖେଳାଇଲାପରି ନ କରି ଛାଡ଼ିଲାନି । ସରଳା କିଶୋରୀ ବାଟରେ ତେଣୁ ବ୍ୟସ୍ତ ହୋଇ ଚିତ୍କାର କଲେ – "ପ୍ରିୟ ସହି, ପରମାଦ ବଡ଼ ତୁହି ଗୋ !"

ଏଥିରେ ବିଚାରୀ ରାଧାଙ୍କୁ ଅକୃତଜ୍ଞତା ଦୋଷରେ ଅଭିଯୁକ୍ତ କରି ଲଳିତାର ମୁଖରୁ ଉତ୍‌ପ୍ରେକ୍ଷା ଆକାରରେ ଯାହା ବାହାରିପଡ଼ିଛି, ସମଗ୍ର ଓଡ଼ିଆ ସାହିତ୍ୟରେ ତାହା ଏକ ଅପୂର୍ବ ଓ ଅନନ୍ୟ କବିତା ଓ ଗାନ ।

"ଫାଟି ପଡ଼ିବାର ନିକୁଞ୍ଜସଞ୍ଚାରଶ୍ରମୁଁ ମୋ ଚରଣତଳ
ଫୁଟୁରିଖୋର ଆଖରକୁ ହେବାର ଏହି ଏକା ଏଥୁଁ ଫଳ ?"

ଅଗତିକା ରାଧା ବର୍ତ୍ତମାନ ଲଳିତାକୁ ପୁଣି ଖୋସାମତ କରିବାକୁ ବାଧ୍ୟ ହେଲେ –

"ବୋଲି ଦେଲି ସିନା ଗେଲେ ହସି / ବିଶ୍ୱେ ତୋ ସମ କାହିଁ ବିଶ୍ୱାସୀ !
ବାନ୍ଧିବାକୁ ମୋ ମନ ତୁ ଫାଶୀ/ବିଶେଷରେ ମୋ ହୃଦୟର ତୋତେ ଜଣାରେ !

ଲଳିତାର ଧୂର୍ତ୍ତତା ଏହିଠାରେ ସରିଲା । ସେ ରାଧାଙ୍କୁ ନେଇଗଲା ଶ୍ରୀକୃଷ୍ଣଙ୍କ ସମୀପକୁ ଓ ବିଶ୍ୱବିମୋହନ ଦେବତାର ବିଗ୍ରହ ଯେତେବେଳେ ଅଦୂରରେ ଦେଖାଗଲା, ସେତେବେଳେ ସେହି ଧୂର୍ତ୍ତା, ଚତୁରୀ ଦୂତୀର ମୁହଁରୁ ମନୋରମ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଓ ପାରମାର୍ଥିକ ମିଳନର କବିତା ଫୁଟି ବାହାରିପଡ଼ିଛି –

"ଭଙ୍ଗୀ ଚାହାଁ, ଭ୍ରୂରୁ ନୀଳଭୁଜଙ୍ଗୀ, ଭ୍ରମରାଜୀବ ସଙ୍ଗୀ ।। ପଦ ।।
ଭାଗ୍ୟ ଏ ଜନ ଆଖି, ଜନନରଟି ସଖି ଜାଣରେ/ ଭରମି ନ ଯା ତୁ ମନ୍ମଥ-ବାଣରେ,
ଭୁଜପାଶକୁ ରୁନ୍ଧି ମୋ ଗଳେ ଭିଡ଼େ ପଦକଞ୍ଜ ଖଞ୍ଜ ଧରଣୀ ତଳେ, ଭୂମଣ୍ଡନାରେ"

ଯା ପରେ ପ୍ରଣୟୀ-ଯୁଗଳଙ୍କର ମିଳନ ଘଟିଲା, କାବ୍ୟ-ନାଟକ ଶେଷ ପରିଣତି ଆଡ଼କୁ ଗତି କଲା ଏବଂ କବି କାବ୍ୟ ଶେଷରେ ନିଜର ଇଷ୍ଟଦେବଙ୍କ ସମ୍ମୁଖରେ ଏହି ମହାନ୍ ଗମ୍ଭୀର ମହିମ୍ନ ସ୍ତବ ଉଦାତ୍ତ ବାଣୀରେ ଗାଇ ରଙ୍ଗମଞ୍ଚରୁ ବିଦାୟ ନେଇ ଛନ୍ତି –

"କ୍ଷମାନୁକଂପାଧର ହେ; କ୍ଷିତି ଚକ୍ରବାଳ ମହାଭୀତି ନିବାରଣ ହେ ।।
କ୍ଷଣେହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
ଜଣେ ତ ହେବାରୁ ପାପିଗଣେ ବିଶ୍ୱମ୍ଭର ହେ ।
ମନାନକର ହିତ, ଅନାଦର ରହିତ-ଅନାଉଣି ନିରତ ଚୂନାକରୁ ଦୁରିତ,
ଅନାରତ ମୋ ଚିତ୍ତ, ମନାସୁଛି ଅହିତ, ଜନାର୍ଦ୍ଦନ ପତିତଜନାବହିତ ହେ ।
କ୍ଷମ ତ ମୁଁ ନୁହେଁ ଅନୁପମ-ଅନୁଭବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତଟି ହେବ ହେ ।

× × ×

କ୍ଷମାଧିପ ଜଗତେ ସମାପନ କରେ ହେ,
ଶ୍ରମାର୍ତ୍ତ ହେବାରୁ ଭବ-ଭ୍ରମାତିଶୟରେ ହେ ।
ବ୍ୟଥା ନିବହ ହର, ପ୍ରଥା ଚକ୍ରୁ ମିହିର, ପଥାନ୍ତରକୁ ହରରଥାଦିରୁ ଅମର,
ମଥାମଣି ନିଜର ରଥାଙ୍ଗଯୁତକର, କଥା ବିନୟ ମୋର ବୃଥା ନକର ହେ ।"

[କ୍ଷିତିଚକ୍ରବାଳ ମହାଭୀତି ନିବାରଣ – ପୃଥିବୀମଣ୍ଡଳର ଭୟହରଣକାରୀ । ଅନାଦର ରହିତ ଅନାଉଣି – ସ୍ନେହପୂର୍ଣ୍ଣ ଚାହାଣି । ଅନାରତ – ସର୍ବଦା । ଅହିତ – ପାପ ।

ପତିତଜନାବହିତ – ପାପୀଜନ ଉଦ୍ଧାରକାରୀ । କ୍ଷମ ତ ନୁହେଁ ଅନୁପମ-ଅନୁଭାବ ହେ– ହେ ଅନୁପମ ଅନୁଭାବ (ଅତୁଳନୀୟ ମହିମାଶାଳୀ), ମୁଁ ପାପରୁ ଉଦ୍ଧାର ପାଇବାର କ୍ଷମ (ସମର୍ଥ, ହକ୍‌ଦାର) ନୁହେଁ । ପ୍ରଥା ଚଳୁ ମିହିର ପଥାନ୍ତରକୁ ହରରଥାଦିରୁ – (ମୋ'ପରି ପାପୀର କ୍ଷମା ପାଇବାର) ଏହି ପ୍ରଥା (ଖ୍ୟାତି) ହରରଥ (ପୃଥିବୀ)ର ସ୍ତରରୁ ମିହିର ପଥାନ୍ତରକୁ (ସୂର୍ଯ୍ୟର ଗତାଗତ ପଥ ଅର୍ଥାତ୍ ଆକାଶମଣ୍ଡଳ ପର୍ଯ୍ୟନ୍ତ । ଚଳୁ (ବ୍ୟାପ୍ତ ହେଉ) । ଅମର ମଥାମଣି – ହେ ଦେବତାମାନଙ୍କର ମଥାମଣି, ଅର୍ଥାତ୍ ହେ ଦେବଶ୍ରେଷ୍ଠ ! ରଥାଂଗଯୁତକର – ଚକ୍ରଧାରୀ । କଥା ବିନୟ ମୋର ବୃଥା ନକର ହେ – ମୋର ବିନୀତ ନିବେଦନ ବୃଥା ନହେଉ ।]

କବିସୂର୍ଯ୍ୟ ଗ୍ରନ୍ଥାବଳୀର ବିଦ୍ୱାନ୍ ସଂପାଦକ ପଣ୍ଡିତ କୁଳମଣି ଦାଶ ଯଥାର୍ଥରେ କିଶୋରଚନ୍ଦ୍ରାନନ୍ଦ ଚଂପୂକୁ ଏକାଧାରରେ 'ସଂଗୀତମୟୀ କାବ୍ୟ' ଓ 'ଗୀତିନାଟ୍ୟ' ବୋଲି ବର୍ଣ୍ଣନା କରିଛନ୍ତି । ଦୁଇଟି ପ୍ରଣୟ-ଶରବିଦ୍ଧ ତରୁଣ-ତରୁଣୀର ଆଶାର ଉତ୍‌ଥାନ ଓ ପତନ, ସେମାନଙ୍କର ଭୟ, ଆଶଙ୍କା ଓ ବ୍ୟର୍ଥଭାବ, ସେମାନଙ୍କର ପରସ୍ପର ପ୍ରତି ଆର୍ତ୍ତ-ଆତୁର ପିପାସା, ସଂସାର ପରିବେଶକୁ ଭ୍ରୂକ୍ଷେପ ନକରି ସେହି ଦୁଇଟି ଅନ୍ତର୍ଭଙ୍ଗ ଆତ୍ମାର ପରସ୍ପର ଆଡ଼କୁ କ୍ଷିପ୍ର ପ୍ରଧାବନ, ପରସ୍ପର ପ୍ରତି ଉତ୍ସର୍ଗୀକୃତ ଆକର୍ଷଣ ସତ୍ତ୍ୱେ ସାହସ ଅଭାବରୁ ଦୁହିଁଙ୍କର ଏକ ଧୂର୍ତ୍ତା ମାଧ୍ୟମ ଉପରେ ଅସହାୟ ନିର୍ଭରତା, ଶେଷରେ ଯାହାହେଉ ଦୁଇ ପ୍ରଣୟୀର ପରସ୍ପର ନିକଟରେ ନିଃଶେଷ ସମର୍ପଣ ପ୍ରଣୟ-ଲୀଳାର ଏ ସମସ୍ତ ସୁପରିଚିତ ଦୃଶ୍ୟାବଳି ଏପରି ବାସ୍ତବତା ସହିତ ସମଗ୍ର ଓଡ଼ିଆ ସାହିତ୍ୟରେ ଅନ୍ୟ କୌଣସି ଗ୍ରନ୍ଥରେ ହୋଇପାରିନାହିଁ, ଯେପରି ଘଟିଛି ଏହି ୩୪-ଗୀତର ଛୋଟ ପରିସର ଭିତରେ । ସଙ୍ଗୀତ ଓ ନାଟକ ଉଭୟ ଦୃଷ୍ଟିରୁ କବିସୂର୍ଯ୍ୟଙ୍କ ଚଂପୂ ଯେ ଏକ ଶ୍ରେଷ୍ଠ କୃତି (ମାଷ୍ଟର୍ ପିସ୍), ଏଥିରେ ଦ୍ୱିମତ ନଥାଇପାରେ ।

କବିସୂର୍ଯ୍ୟ ଚଂପୂର ୩୪ଟି ଗୀତକୁ ଛାଡ଼ି ଶତ ଶତ ଗୀତ ଲେଖିଯାଇଛନ୍ତି; କିନ୍ତୁ ସେ ସବୁର ଆଲୋଚନା ନିଷ୍ପ୍ରୟୋଜନ । ଚଂପୂ ଗୀତଠାରୁ ସେସବୁର କୌଣସି ବିଶେଷତା ନାହିଁ । କିଶୋର ଚନ୍ଦ୍ରାନନ୍ଦ ଚଂପୂରେ କବିସୂର୍ଯ୍ୟଙ୍କ ପ୍ରତିଭାର ଦୋଷ ଓ ଗୁଣ ଉଭୟ ସ୍ପଷ୍ଟତମ ଭାବରେ ପ୍ରତିଫଳନ ହୋଇପଡ଼ିଛି । କବିସୂର୍ଯ୍ୟ ଭଞ୍ଜୀୟ ରୀତିର ପ୍ରଲୋଭନ ଏଡ଼ାଇ ନିଜ ଲେଖାକୁ ସରଳତର କରିଥିଲେ, ଅନେକ ସ୍ଥଳରେ ତାଙ୍କ ଗୀତର କାବ୍ୟିକ ମୂଲ୍ୟ ବହୁତ ବଢ଼ିଯାଇଥାନ୍ତା । ମୋଟଉପରେ, ଆଉ ଯାହା ସେ ଛାଡ଼ିଯାଇଛନ୍ତି, ସେଥିରୁ ଅଧିକାଂଶ, ହୁଏତ କବିଙ୍କ ଅଜ୍ଞାତସାରରେ କେବଳମାତ୍ର ଶବ୍ଦାଡ଼ମ୍ବର ପ୍ରଚାର କରୁଛନ୍ତି ।

**ଗୋପାଳକୃଷ୍ଣ (୧୭୮୫-୧୮୬୨) –**

ଗୋପାଳକୃଷ୍ଣ ଗଞ୍ଜାମର ପାରଳାଖେମୁଣ୍ଡିରେ ଜନ୍ମ ହୋଇଥିଲେ ଏକ ପରିବାରରେ, ଯେଉଁମାନେ ପୂର୍ବପୁରୁଷାନୁକ୍ରମେ ସ୍ଥାନୀୟ ରାଜଦରବାରରେ ପାଞ୍ଜିଆ କାମ କରିଆସୁଥିଲେ । କବିଙ୍କର ବଂଶଧରଗଣ ଏପର୍ଯ୍ୟନ୍ତ କବି ଭୂମିଷ୍ଠ ହୋଇଥିବା ଘରେହିଁ ବସବାସ କରି-

ଆସୁଛନ୍ତି । ସେହି ଗୃହ ବର୍ତ୍ତମାନ ଏକ ତୀର୍ଥସ୍ଥଳ । କବିଙ୍କ ମୃତ୍ୟୁର ଅଳ୍ପକାଳ ପରେ ସ୍ଥାନୀୟ ଏକ ଶିଳ୍ପୀ କବିଙ୍କର ଏକ ଆବକ୍ଷ ମୂର୍ତ୍ତି ଗଠନ କରିଦେଇଥିଲେ । ସେହି ମୂର୍ତ୍ତିଟି କବିଙ୍କ ବଂଶଧରମାନଙ୍କ ଦ୍ୱାରା ପ୍ରତ୍ୟହ ପୂଜିତ ହେଉଛି । ବୈଷ୍ଣବପନ୍ଥୀମାନଙ୍କ ଦୃଷ୍ଟିରେ ବୈଷ୍ଣବ-କବି ଗୋପାଳକୃଷ୍ଣ ଏକ ମହାତ୍ମା ।

କବିସୂର୍ଯ୍ୟଙ୍କ ପରି ଗୋପାଳକୃଷ୍ଣ ମଧ୍ୟ ଶତ ଶତ ସଙ୍ଗୀତ ଲେଖିଯାଇଛନ୍ତି, ଯେଉଁଥିରୁ ଅନେକ ବୋଧହୁଏ ନଷ୍ଟ ହୋଇଯାଇଛି । ପାରମାର୍ଥିକଭାବାପନ୍ନ କବି ନିଜର ବୈଷୟିକ ଘଟଣାବଳି ପ୍ରତି ଯେପରି, ନିଜର କବିତାବଳି ପ୍ରତି ମଧ୍ୟ ସେହିପରି ଅନାସକ୍ତ ଥିଲେ । ସେ ନିଜେ ତାଙ୍କର କବିତାବଳିକୁ ଗୁଚ୍ଛୀକୃତ କରିବାପାଇଁ କୌଣସି ଚେଷ୍ଟା କରିନଥିଲେ । କବିଙ୍କ ଅମୂଲ୍ୟ ରଚନାବଳି ଆମେ ଯେ ଆଜି ଉପଭୋଗ କରିପାରୁଛୁ, ଏଥିପାଇଁ ସମଗ୍ର ଓଡ଼ିଆ ଜାତି କବିଙ୍କର ଅଖ୍ୟାତ ବନ୍ଧୁ ହରିବନ୍ଧୁ ପଟ୍ଟନାୟକଙ୍କ ପ୍ରତି ଗଭୀର ଭାବରେ ଋଣୀ । କବିଙ୍କ ମୃତ୍ୟୁପରେ ହରିବନ୍ଧୁ ପଟ୍ଟନାୟକେ ଲୋକସ୍ମୃତିରୁ ଯେତେ ପାରିଲେ ସେତିକି ଉଦ୍ଧାରକରି ଯାହା ସାଇତି ପାରିଲେ, ସେହିହିଁ ଆଜି 'ଗୋପାଳକୃଷ୍ଣ ପଦ୍ୟାବଳି' ।

ଆମେ ଏଇ ପର୍ଯ୍ୟନ୍ତ ଯାହା ଦେଖି ଆସିଲେ, ସେଥିରୁ ଅନୁଭୂତ ହେଉଛି ଯେ, ଓଡ଼ିଆ ସାହିତ୍ୟରେ ରାଧା-କୃଷ୍ଣ-ସମ୍ବନ୍ଧ ନେଇ ଗୀତ ଓ କାବ୍ୟାଦି ଯାହା ଗଦାକରାଯାଇଛି, ତାହା ଯଥେଷ୍ଟରୁ ମଧ୍ୟ ଅଧିକ; କିନ୍ତୁ ସେଥିରୁ ଅଧିକାଂଶ ଗତାନୁଗତିକ ଶବ୍ଦଯୋଜନା ଛଡ଼ା ଅଧିକ କିଛି ନୁହଁନ୍ତି । ସାମନ୍ତସିଂହାର ବା ବଳଦେବଙ୍କ କେତୋଟି ଗୀତ ଓ ଛାନ୍ଦ ବା ସେହି ଶ୍ରେଣୀର ଅନ୍ୟ କେତୋଟି ରଚନାରେହିଁ ସାମନ୍ତ ପରିବେଶଜନିତ ଗୀତ ଓ ଶବ୍ଦର ଆଡ଼ମ୍ବର ତଳେ ଆମେ ଠାଏ ଠାଏ ମନୁଷ୍ୟରକ୍ତର ବାସ୍ତବ ଉଷ୍ଣତା ଅନୁଭବ କରୁ । ଏ ସମସ୍ତ ବୈଷ୍ଣବ-କବିଙ୍କ ଭିତରେ କେବଳ ଗୋପାଳକୃଷ୍ଣଙ୍କ ରଚନାକୁ ଆସିଲେ ଆମେ ବାଧ୍ୟ ହୋଇ ଅନୁଭବ କରୁ ଯେ, ଆମେ ଏକ ଭାବପ୍ରବଣ ଓ ସ୍ପର୍ଶକାତର ଆତ୍ମା ନିକଟରେ ପହଞ୍ଚିଛୁ ଯେ ଏକ ମହତ୍ ପ୍ରେମର ତୀବ୍ରତା ନିଜ ଜୀବନରେ ଅଙ୍ଗେ ନିଭାଇଥିଲେ । ଗୋପାଳକୃଷ୍ଣଙ୍କ ଗୀତାବଳିରେ ରାଧା ଓ କୃଷ୍ଣ ଦୁଇଟି ଆଧ୍ୟାତ୍ମିକ ପ୍ରତୀକ ମାତ୍ର ହୋଇ ବା ଏକ ମାନବିକ କାହାଣୀକୁ ଆଧ୍ୟାତ୍ମିକ ସ୍ତରକୁ ଉଠେଇବା ପାଇଁ ଦୁଇଟି ତାତ୍ତ୍ୱିକ କେନ୍ଦ୍ର ହୋଇ ରହନ୍ତି ନାହିଁ । ଗୋପାଳକୃଷ୍ଣଙ୍କ ଲେଖନୀ, ଅନୁଭବର ଅତୀନ୍ଦ୍ରିୟ ଆବେଗ ଓ ପ୍ରେମର ଅନନ୍ୟ ଦୃଷ୍ଟି ଉତ୍ସର୍ଗ ଭିତରେ ଖାଣ୍ଟି ମାନବିକ ପ୍ରେମକୁହିଁ ଦେଇପାରିଛି ଦୈବତ ମହିମା । ଓଡ଼ିଆ ଭାଷାର ରାଶି ରାଶି କୃଷ୍ଣଭକ୍ତ କବିମାନଙ୍କ ରଚନାବଳି ଭିତରେ କେବଳ ଗୋପାଳକୃଷ୍ଣଙ୍କ ଗୀତିଗୁଚ୍ଛରେହିଁ ରାଧାକୃଷ୍ଣଙ୍କର ପ୍ରଣୟ-କାହାଣୀ ଚିତ୍‌ଲୋକକୁ ଉଠିପାରିଛି । କେବଳ ତାଙ୍କରି କବିତାରେହିଁ ରାଧା ଓ କୃଷ୍ଣ ଏକ ମନୋରମ ରୂପକର ଦୁଇ ମୁଖ୍ୟଭୂମିକା ରୂପେ ଦଣ୍ଡାୟମାନ ହୋଇପାରିଛନ୍ତି । ଏହି ଶ୍ରେଣୀର ଅଧିକାଂଶ ରଚନାରେ ରାଧା ଓ କୃଷ୍ଣ ଯୌନସୁଖାତୁର ଦୁଇ ଇତର ନର ଓ ନାରୀ ମାତ୍ର ।

ଗୋପାଳକୃଷ୍ଣଙ୍କ କବିମହିମାର ନିଃସନ୍ଦେହ କଷଟି ଏହି ଯେ; ଓଡ଼ିଆରେ ସମସ୍ତ ବୈଷ୍ଣବ ଗୀତକାର ଓ କବିମାନଙ୍କ ଭିତରେ ତାଙ୍କର ରଚନା ସବୁଠାରୁ ଅନୁବାଦ-ଅନୁକୂଳ ।

କାରଣ ସେ ରଚନାର ମହତ୍ତ୍ୱ ବାହ୍ୟ ଶବ୍ଦାଡ଼ମ୍ବରରେ ନାହିଁ; ଅଛି ଅନ୍ତର୍ନିହିତ ଏକ ସାରବସ୍ତୁରେ; ଯାହାର ସମ୍ମାନ ପୃଥିବୀର ସବୁଠି । ତାହା ବୋଲି, ଗୋପାଳକୃଷ୍ଣଙ୍କ ଗୀତାବଳିର ରାଗ-ରାଗିଣୀ ବା ପଦଯୋଜନାର ମାଧୁର୍ଯ୍ୟ ଅନ୍ୟମାନଙ୍କଠାରୁ ନ୍ୟୂନ ବୋଲି ଭାବିବାର ମଧ୍ୟ କୌଣସି କାରଣ ନାହିଁ । ସଂପୂର୍ଣ୍ଣ ଆଡ଼ମ୍ବରଶୂନ୍ୟ ଭାବରେ ରାଗରାଗିଣୀ ଦେଖାଇଛନ୍ତି ଯେପରି ଗୋପାଳକୃଷ୍ଣ ସଙ୍ଗୀତରେ ସଂପୃକ୍ତ ଭାବର ଅନୁସାରୀ ହୋଇ, ସେହିପରି ମଧ୍ୟ ନିମ୍ନତମ ସଂଖ୍ୟାର ଶବ୍ଦ ଦେଇ ଭାବସବୁ ଆପଣାକୁ ପ୍ରକାଶିତ କରି ରଖିଛନ୍ତି; ଯାହା କେବଳ ଉଚ୍ଚତମ ସୃଜନୀ ପ୍ରତିଭାଠାରେହିଁ ଦେଖାଯାଇଥାଏ । ଗୀତ-ଗୁଡ଼ିକର ସୂକ୍ଷ୍ମ-କୋମଳ ଭାବରାଜି ମଧ୍ୟ ପ୍ରକଟିତ କରି ରଖିଛନ୍ତି ଏକ ବ୍ୟକ୍ତିତ୍ୱ ଓ ଆତ୍ମା, ଯାହା ଅବସ୍ଥିତ ଥିଲା ଉଚ୍ଚ ଆଧ୍ୟାତ୍ମିକ ସ୍ତରରେ ।

କବିସୂର୍ଯ୍ୟେ ତାଙ୍କ ଚଂପୂରେ ବା ସାମନ୍ତସିଂହାରେ ତାଙ୍କ ବିଦଗ୍ଧ ଚିନ୍ତାମଣିରେ ରାଧା-କୃଷ୍ଣ ପ୍ରଣୟକୁ ଏକ ଦୃଢ଼-ସଂସକ୍ତ ଏକକ ଚିତ୍ରରୂପେ ପରିବେଷିତ କରିବାର ଚେଷ୍ଟା କରିଯାଇଛନ୍ତି । ଗୋପାଳକୃଷ୍ଣ ସେହିପରି ଚେଷ୍ଟା କରିନଥିଲେ । ସେ ଆପାତତଃ ପରସ୍ପରାନପେକ୍ଷ ଗୀତାବଳି ଲେଖିଚାଲିଥିଲେ । ଆମ୍ଭେମାନେ ଏହା ମଧ୍ୟ ଜାଣୁ ଯେ, କବି ନିଜ ରଚନାପ୍ରତି ସଂପୂର୍ଣ୍ଣ ଅନାସକ୍ତ ଥିଲେ ଓ ଆମେ ସେଗୁଡ଼ିକୁ ଆଜି ଦେଖିବାକୁ ପାଉଛୁ କେବଳ କବିଙ୍କ ବନ୍ଧୁମାନଙ୍କ ଚେଷ୍ଟାରୁ । ଅଥଚ ଆମେ ଗଭୀର ଭାବରେ ବିସ୍ମିତ ହେଉଛୁ ଦେଖି ଯେ, ଆପାତ ଅଯୋଜିତ ଓ ଆପାତ ବିକ୍ଷିପ୍ତ ଗୋପାଳକୃଷ୍ଣ ଗୀତାବଳି ଭିତରେ ଦ୍ୱନ୍ଦ-ଜଡ଼ିତ ଆଦ୍ୟରୁ ଐଶ୍ୱର୍ଯ୍ୟମୟ ସମାପ୍ତ ପର୍ଯ୍ୟନ୍ତ ରାଧା ଓ କୃଷ୍ଣଙ୍କର ପ୍ରଣୟଲୀଳା ଯେପରି ସହଜ ସ୍ୱତଃସ୍ଫୂର୍ତ୍ତ ଅଥଚ ମନୋହର କଳାକୁଶଳତାର ସହିତ ପରିବେଷିତ ହୋଇଛି, ସେପରି ଘଟିନାହିଁ କୌଣସି ହେଲେ ଓଡ଼ିଆ ବୈଷ୍ଣବ-କବିଙ୍କ ରଚନାରେ । ଅନ୍ୟ ସବୁ କବିଙ୍କ କାବ୍ୟ-କବିତା-ଗୀତାଦିରେ ରାଧା ଓ କୃଷ୍ଣ ଏବଂ ଗୋପ ଯୁବକ-ଯୁବତୀଗଣ ରହିଯାଇଛନ୍ତି ମଥୁରା-ବୃନ୍ଦାବନର ଉତ୍ତର ପ୍ରଦେଶୀୟ ଲୋକ ହୋଇ । କେବଳ ଗୋପାଳକୃଷ୍ଣଙ୍କ ରଚନାରେ ସେମାନେ ସଂପୂର୍ଣ୍ଣ ମିଶିଯାଉଛନ୍ତି ଯେକୌଣସି ଓଡ଼ିଆ ଗାଁର ସାମାଜିକ ଓ ପ୍ରାକୃତିକ ପରିବେଶ ସହିତ । ଗୋପାଳକୃଷ୍ଣ ଗତାନୁଗତିକତାକୁ ସ୍ପର୍ଶ ନକରି କେବଳ ନିଜ ଦେଖିବା ଓ ଅନୁଭବ କରିବା କଥାହିଁ ଲେଖିଚାଲିବାରୁ ବିଶେଷ ଭିତରେ ବିଶ୍ୱଜନୀନତା ପ୍ରବିଷ୍ଟ ହୋଇପଡ଼ିଛି ଅତ୍ୟନ୍ତ ସହଜ ଭାବରେ । ଗୋପାଳକୃଷ୍ଣଙ୍କ ରଚନାରେ ରାଧା ଓ କୃଷ୍ଣଙ୍କର ପ୍ରଣୟ ଦୈବନିର୍ଦ୍ଦିଷ୍ଟ ନୁହେଁ ବା ଧର୍ମତତ୍ତ୍ୱ ନୁହେଁ । ଯେକୌଣସି ସାଧାରଣ ପ୍ରଣୟ-କାହାଣୀ ପରି ତାହା ଆମ ଆଖିଆଗରେ ଆକସ୍ମିକ ସାକ୍ଷାତ୍ ବା ଜଣାଶୁଣାରୁ ଆରମ୍ଭକରି, ଆକର୍ଷଣ, ଅଭିମାନ, କଳହ, ପ୍ରତ୍ୟାଖ୍ୟାନ ଓ ସର୍ବଶେଷରେ ନିଃଶେଷରେ ସମର୍ପଣର ପରମାନନ୍ଦ ଦେଇ ଆସ୍ତେ ଆସ୍ତେ ଐଶ୍ୱର୍ଯ୍ୟବନ୍ତ ହୋଇ ବଢ଼ିଉଠିଛି । ଗୋପାଳକୃଷ୍ଣଙ୍କ ରଚନା ଭିତରେ ଦୁଇଟି ଆତ୍ମାର ନାଟକାଭିନୟ ଯେପରି ବିଚ୍ଛୁରିତ ହୋଇପଡ଼ିଛି, ସେ ପ୍ରକାର ମହତ୍ ପ୍ରେମ-କାହାଣୀ ସମଗ୍ର ଓଡ଼ିଆ ସାହିତ୍ୟରେ ଦ୍ୱିତୀୟ ବୋଧହୁଏ ନାହିଁ । ଓଡ଼ିଆ

ସାହିତ୍ୟର ବିପୁଳ ପରିମିତ ବୈଷ୍ଣବ କାବ୍ୟକବିତାର ମୁଖ ରକ୍ଷାକରିପାରିଛନ୍ତି କେବଳ ସାମନ୍ତସିଂହାରଙ୍କ ବିଦଗ୍ଧଚିନ୍ତାମଣିର କତିପୟ ଅନୁପମ ଛାନ୍ଦ, ନଚେତ୍ ଗୋପାଳକୃଷ୍ଣଙ୍କର ଏହି ଗୀତାବଳି । ଏତକକୁ ବାଦ୍ ଦେଲେ ବାକି ସମସ୍ତଟା ଏକ ଧର୍ମତତ୍ତ୍ୱର ଛଦ୍ମାବରଣ ତଳେ ଇତର ଯୌନସମ୍ଭୋଗ ଛଡ଼ା ଆଉ କିଛି ନୁହେଁ ।

ଗୋପାଳକୃଷ୍ଣଙ୍କ ରଚନା ଭିତରେ ଆମେ ରାଧା ଓ କୃଷ୍ଣଙ୍କୁ ଯମୁନାକୂଳସ୍ଥ ବୃନ୍ଦାବନ ନାମକ ବୃହତ୍ ଗ୍ରାମର ଭିନ୍ନ ଭିନ୍ନ ସାହୀରେ ବାସକରୁଥିବା ଓ ପରସ୍ପରକୁ ଅଜ୍ଞାତ ଥିବା ଦୁଇଟି କିଶୋର ଓ କିଶୋରୀ ରୂପେହିଁ ପ୍ରଥମେ ଭେଟୁ । ଉଭୟେ ଯୌବନପ୍ରାପ୍ତ ହୁଅନ୍ତେ ପରସ୍ପରର ଜ୍ଞାତି-ବନ୍ଧୁଙ୍କ ମୁଖରୁ ପରସ୍ପରର ଗୁଣାବଳି ଶୁଣିବାକୁ ପାଇଲେ । ଅତି ସ୍ୱାଭାବିକ ଭାବରେ ଏହା ଉଭୟଙ୍କର କଳ୍ପନାରେ ଅଗ୍ନି ସଂଯୋଜନ କଲା । ଏହାହିଁ ଯୌବନର ସ୍ୱାଭାବିକ ବ୍ୟବହାର । ଫଳରେ ରାଧା ଓ କୃଷ୍ଣ ପରସ୍ପରକୁ ଦେଖିବାକୁ, ଜାଣିବାକୁ ଓ ନିଜର କରିବାକୁ ବ୍ୟଗ୍ର ହୋଇଉଠନ୍ତି; ଯାହା ମଧ୍ୟ ଅତି ସ୍ୱାଭାବିକ ।

ଗତାନୁଗତିକ 'ପ୍ରଥମ ଦର୍ଶନରେ ପ୍ରେମ' ପରିବର୍ତ୍ତରେ ଗୋପାଳକୃଷ୍ଣ ଏହି ପ୍ରଥମ ଶ୍ରବଣରେ 'ପ୍ରେମ'କୁ ମଧୁର ଗୀତାଶ୍ରିତ ଦୁଇଟି କଥୋପକଥନରେ ଅନୁପମ ନିପୁଣତାର ସହିତ ବର୍ଣ୍ଣନା କରିଛନ୍ତି । ସମଗ୍ର ଓଡ଼ିଆ ସାହିତ୍ୟରେ ଏ ପ୍ରକାର ସାଙ୍ଗୀତିକ କଥୋପକଥନ କେବଳ ଗୋପାଳକୃଷ୍ଣ ଆରମ୍ଭ କରିଥିଲେ ଓ ସେ ଯେପରି ସଫଳତାର ସହିତ ତାହା ଗଢ଼ିଛନ୍ତି, ଆଉ ଦ୍ୱିତୀୟ କବି ପକ୍ଷରେ ତାହା ସମ୍ଭବ ହିଁ ହୋଇପାରିନାହିଁ ।

ପ୍ରଥମ କଥନିକାର କେତୋଟି ବାକ୍ୟ ବିନିମୟ ଏହିପରି –

"ରାଧା – କେ ସେ ବ୍ରଜରାଜସୁତ ?
ଲଳିତା – ମୋହ ହୋଇଗଲୁ ସେଦିନ ଶୁଣି ତୁ ଯାହାର ମୁରଲୀ ଗୀତ ।
ରାଧା – କି ନାମ ବୋଇଲୁ ତୁହି ?
ଲଳିତା – ପୁଣି ଶୁଣିବାକୁ ଚିତ୍ତ ବଳୁଛି କି ? କୃଷ୍ଣ ନାମ ଥିଲି କହି ।

× × × ×

ରାଧା – ପ୍ରପନ୍ନେ ଦୟାଳୁପଣ ?
ଲଳିତା – ମୁହିଁ ତୋହର ବୋଲୁଛନ୍ତି ପୁଣି ତ କରି ଆତ୍ମସମର୍ପଣ ।
ରାଧା – ଦେବାର ଅର୍ଥୀମାନଙ୍କୁ ?
ଲଳିତା – ଇତର ଜନଙ୍କୁ ମାଗୁନାହିଁ ଆଉ / ମାଗୁଛି ଯେ ଥରେ ତାଙ୍କୁ ।

× × × ×

ରାଧା – ବିବାହ ହୋଇଲେଣି କି ?
ଲଳିତା – ବଧୂ ସଧେ ହାତ ଭାଙ୍ଗି ବସିଛନ୍ତି / ଯଶୋଦା ତତେ ବିଲୋକି !
ରାଧା – ମୋ ଆଡ଼କୁ କେଣେ ଜାଲୁ ?
ଲଳିତା – ଯଥାଯୋଗ୍ୟ ବୋଲି ମନ ଲୋଭାଇଲା / କଥାକୁ କାହିଁକି ଛଳୁ !"

ଅପର ବା ଦ୍ୱିତୀୟ କଥନିକାଟିରେ ତରୁଣ କୃଷ୍ଣ ରାଧାଙ୍କ ସମ୍ପର୍କରେ ଏହିପରି ଆଦ୍ୟ ଜିଜ୍ଞାସା କରୁଛନ୍ତି –

''କେଶର କୁଞ୍ଜ ଶେଯରେ
ବ୍ରଜେନ୍ଦ୍ର ବୃନ୍ଦାଙ୍କୁ ପୁଚ୍ଛନ୍ତି ଧୀରେ, ସହଚରୀ ରେ,
'ରାଧା' ବୋଲି କେ ବ୍ରଜରେ ?
ଶୁଣିଲାବେଳୁ ସେ ନାମ
ସୁଧାପାନ ପରି ଲାଗୁଛି ଶର୍ମ, ସହଚରୀ ରେ
ଫିଟାଇ କହ ମରମ ।''

ଏହି ପ୍ରକାର ଦ୍ୱନ୍ଦ୍ୱ-ଭୟ-ଆଶଙ୍କାଜଡ଼ିତ ଆଦ୍ୟ ଜିଜ୍ଞାସା ଓ ପ୍ରଶ୍ନାଦିରୁ ଅତି ସ୍ୱାଭାବିକ ସ୍ତର ସବୁ ଦେଇ ଏହି ବିଖ୍ୟାତ ପ୍ରଣୟ-କାହାଣୀ ଆସ୍ତେ ଆସ୍ତେ ବୃଦ୍ଧିପ୍ରାପ୍ତ ହେଲା; କିନ୍ତୁ ସାମାଜିକ ବାଧାନିଷେଧ ହେତୁରୁ ଦୁଇ ପ୍ରଣୟୀ ପରସ୍ପରକୁ ପାଇ ତ ପାରିଲେ ନାହିଁ, ବିଚାରୀ ରାଧାର ବିବାହ ସଂଘଟିତ ହୋଇପଡ଼ିଲା ଅନ୍ୟ ସାଥିରେ । ପ୍ରଣୟୀଯୁଗଳ ପରସ୍ପରକୁ ଦୂରରୁ ଚାହିଁବାର ମଧ୍ୟ ସୁଯୋଗ ଆଉ ପାଇଲେନାହିଁ; କିନ୍ତୁ ଏହି ବାଧାହିଁ ତରୁଣ ପ୍ରେମିକ ଯୁଗଳର ହୃତ୍-ସ୍ପନ୍ଦନକୁ କଲା ଦ୍ରୁତତର ଓ ସେମାନେ ସକଳ ବନ୍ଧନ ଡେଇଁ ପରସ୍ପରକୁ ଭେଟିବାକୁ ଚାହିଁଲେ ।

ଏପରି ଦୁଃସାହସିକତାର ଆରମ୍ଭରେ କୋମଳାଙ୍ଗୀ, ଅନ୍ତଃପୁରବାସିନୀ ଭୀରୁ ରାଧାକୁ ଆମେ ପ୍ରଥମ ଅଭିସାରଯାତ୍ରାର ପ୍ରାକ୍‌କାଳରେ କି କାରୁଣ୍ୟତାର ଅବସ୍ଥାରେ ନ ଦେଖୁ ! ଏହା ମଧ୍ୟ ଏକାନ୍ତ ସ୍ୱାଭାବିକ । ସଦ୍ୟତ୍ୟକ୍ତ-କୈଶୋର ସେହି ସମ୍ପୂର୍ଣ୍ଣ ଅନଭିଜ୍ଞ ବାଳିକା, ଅଭିସାରର ଚିନ୍ତା ମାତ୍ରରେହିଁ ଥରୁଛି ଓ ଭୟ ଆଶଙ୍କା ଯଥାଯଥ ତାକୁ ପ୍ରତ୍ୟାଖ୍ୟାନ କରୁଛି । ତା'ର ଅନ୍ତର୍ଦ୍ୱନ୍ଦ୍ୱର ଏକ ଚିତ୍ର ଏହି –

''ଶ୍ୟାମସୁନ୍ଦର ମୁରଲୀ ନିନାଦ ଜାତି ନେବ ମଣିଲି ॥
ଗୁରୁଜନ ସଙ୍ଗେ, କଥା ପରସଙ୍ଗେ, ବସିଥିଲି, କି ଚମକିପଡ଼ିଲି ।
ପୂରିଲା ପୁଲକ, ଦେହ ଗୋଟାଯାକ, ବିନା ଶୀତରେ ମୁଁ କେତେ ଥରିଲି ।
କାହିଁ ଗଲା ମନ, ବୁଡ଼ିଗଲା ଜ୍ଞାନ, ବେନି ନୟନ ମୁଁ ବୁଜି ରହିଲି ।
ନିଶି କି ଦିବସ, ବନ କି ଆବାସ, ଜାଗର କି ସ୍ୱପନ ନ ହେଜିଲି ।''

ଆନ୍ୟ ଏକ ଗୀତରେ–'ଏ କି ପରମାଦ ମା, ଦଣ୍ଡେ ତ ଶ୍ୟାମ ସଙ୍ଗ ନଛାଡ଼ିଲା, ମା !'

କିନ୍ତୁ ଏ ପ୍ରକାର ଅନ୍ତର୍ଦ୍ୱନ୍ଦ୍ୱ ଓ ଆଶଙ୍କାର ବାଧା ଭିତରଦେଇହିଁ ତରୁଣ ପ୍ରଣୟୀଯୁଗଳର ଅନୁରାଗସ୍ରୋତ କ୍ଷିପ୍ର ବହିବାକୁ ଲାଗିଲା । ସେମାନେ ଥରେ କୌଣସିଠାରେ ମିଳିତ ହେବାର ସ୍ଥିରକଲେ । ଶୁଦ୍ଧାନ୍ତବାସିନୀ ତରୁଣୀ ପୁରବାଳାର ଏହି ଆଦ୍ୟାଭିସାରର ପ୍ରାକ୍‌କାଳରେ ଯେଉଁ ସ୍ୱାଭାବିକ ଆତ୍ମିକ ଝଞ୍ଜା ସୃଷ୍ଟିହେବା କଥା, ଗୋପାଳକୃଷ୍ଣ ତାହାର ଏକ ଅନବଦ୍ୟ ଚିତ୍ର ଛାଡ଼ିଯାଇଛନ୍ତି –

''ଗୋଷ୍ଠଚନ୍ଦ୍ରମାଙ୍କୁ ଆସ ବୋଲି ରେ ସହୀ / କହିଦେଲୁ ନିକି ରେ
ଏତିକିବେଳୁ ମୋ ତନୁ ଥରିଲାଣି / ଦେଖି ନାହିଁ ଆହୁରି ଆଖିରେ ।
ଗୃହକୃତ୍ୟେ ସ୍ଫୂର୍ତ୍ତି ହେଲା ନାହିଁ ତିନି / ପହରରୁ ମତିରେ ।
କେତେବେଳେ କେ ଦେଖିବେଟି ବୋଲି / ଦମଦମ ହୃଦ ହେଉଛି ଭୀତିରେ ।
କି କରୁଥିଲେ ତୁହି ଗଲାବେଳକୁ / ଥିଲେ କେଉଁ ଠାବରେ ।
କି ବୋଇଲୁ, କିସ ପଚାରିଲେ ତୋତେ କହୁ / କିବା ଟାଳ ବୋଲୁ ରହସ୍ୟରେ !
ନ ଆସ ବୋଲି ଜଣାଅ ଯାଇ ହେଲେ / ସଖୀ ଜୁହାରୁଛି ମା !

× × × ×

ଯାହାହେଉ ତରୁଣ ପ୍ରଣୟୀଯୁଗଳ ଶେଷରେ ପରସ୍ପରକୁ ଭେଟିଲେ ଓ ବାର ବାର ଭେଟିଲେ । ଲବ୍ଧ ବାସନାର ଚୂଡ଼ାନ୍ତ ଆନନ୍ଦ ଗୋପାଳକୃଷ୍ଣଙ୍କ ବହୁ ଗୀତରେ ମନୋରମ ଭାବରେ ପ୍ରକଟିତ । ଗୋଟିଏ ଦୃଷ୍ଟାନ୍ତ ନିମ୍ନର ଏହି ଗୀତଟି –

''ଦେଲି ସହି କୁଳକୁ ମୁଁ ଟେକି ଜଳାଞ୍ଜଳି / କଲି ଶ୍ୟାମ-ପ୍ରୀତିକି ଜୀବନ-ଶଙ୍ଖାଳି ।

× × × ×

କୋଟି ଜନ୍ମାନ୍ତର ପୁଣ୍ୟଫଳ ଗଲା ମିଳି/
ମୁଁ ଯୋଗିନୀ ଜାଣ ଆଳି, ସେ ମୋହର ଥାଳି ।

× × × ×

ସୁଗୁଣ ସୁନ୍ଦରପଣଯାକ ଭାଳି ଭାଳି / ନାମ ଜପୁଥିବି ଏକା ଧରି ଜପାମାଳି ।

ଏହି ସର୍ବସମର୍ପଣ ପରେ ମଧ ଦେଖାଦେଇଛି ପ୍ରଣୟର ଆରପାଖ ଈର୍ଷା ଓ ଅପରାଧୀ ପ୍ରଣୟୀକୁ ତାଡ଼ିତ ଓ ଅପମାନିତ କରିବାର ସ୍ୱାଭାବିକ ଆସର୍ଦ୍ଧା । ନିରୀହା, ଅନଭିଜ୍ଞା, ଭୀରୁ କିଶୋରୀ ରାଧାକୁ ଆମେ ପ୍ରଥମେ ଦେଖିଥିଲେ କେବଳ କୃଷ୍ଣ ନାମ ଶୁଣି ନିରପରାଧ ଆନନ୍ଦ ଉପଭୋଗ କରୁଥିବାର । ଆପାତବିକ୍ଷିପ୍ତ ପରସ୍ପର ସମ୍ପର୍କଶୂନ୍ୟ ଗୀତାବଳି ଭିତରେ ଗୋପାଳକୃଷ୍ଣ କି ଅସାଧାରଣ କଳାକୁଶଳତାର ସହିତ ସେହି ଗ୍ରାମ୍ୟ ସରଳା କିଶୋରୀକୁ ବିଳାପମୟୀ ବାସକସଜ୍ଜା ଓ ଦୁର୍ବାରଣୀୟା କଳହାନ୍ତରିତା ନାୟିକାରେ ଯେ ରୂପାନ୍ତରିତ କରିଛନ୍ତି, ଅଭିବୃଦ୍ଧିର ସ୍ୱାଭାବିକତାରେ ପାଠକ ତାହା ବୁଝାଇପାରେନା । ସରଳା ରାଧାର ମାନସିକ ବ୍ୟର୍ଥତା ଓ ନୈରାଶ୍ୟ କି ସୁନ୍ଦର ଫୁଟିଛି ଏହି ଗୀତରେ –

''ମୋହନ ରୀତି ଚିହ୍ନାପଡ଼ିଲା ମା ॥
ଅପାର ରଜନୀ ହେଲା ରେ ସଜନି
ପ୍ରାଚୀ-ବଧୂକୁ ବିଧୁ ଚୁମ୍ବିଲା ମା !
କି ଯୋଗରେ ଆଜ ସାଜିଥିଲି ସଜ
କାନନ-ମଲ୍ଲୀ ଦଶା ଘଟିଲା ମା !

× × × ।

ପର ପୀରତିକି ପୁରୁଷ ଜାତିକି
ପରତେ କଲା ଫଳ ଫଳିଲା ମା !''

'ଗୋପାଳକୃଷ୍ଣ ପଦ୍ୟାବଳି'ରେ ଏହାର ପରବର୍ତ୍ତୀ ଗୀତଟିରେ ରାଧାର କଠୋର ଭର୍ତ୍ସନା ଆମେ ଶୁଣିବାକୁ ପାଉ –

''ମୋହନ, ଯା ଯା, ତୁ ଛୁଅଁ ନା,
ବାରଣ ପରି ନ ଘେନ, ବାରଣବାଳକ ପରି ହୋ ନା ।
× × × ×
ଆଳୀ ଅଇଲେ ଗାଳିଦେଇ କରତାଳି ମାରିବେଟି ଚାଳି,
ଶାଳୀ-ଟାପରା ସେ ଚନ୍ଦ୍ରାବଳୀକି କରିବୁ ଯା ବନମାଳୀ ।''

କିନ୍ତୁ ମହୀୟସୀ ରାଧା ଅଚିରେ ଏହି ସବୁ କ୍ଷୁଦ୍ର ମାନବିକ ଚିନ୍ତାର ଊର୍ଦ୍ଧ୍ୱକୁ ଉଠିଯା'ନ୍ତି । ମାନବୀ ହେଲେହେଁ ତାଙ୍କର ପ୍ରେମ ଦୈବତ ସ୍ତରକୁ ଉଠିଯାଏ । ସେ ନିଜକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇପଡ଼ନ୍ତି । ସେ ଭୁଲିଯାନ୍ତି ନିଜର ଦାବୀ ଓ ଅଧିକାର । ସେ ନିଃଶେଷଭାବରେ ନିଜର ସେହି ଦୁରନ୍ତ ପ୍ରଣୟୀ ନିକଟରେ ଆପଣାକୁ ସମର୍ପଣ କରିଦିଅନ୍ତି । ଅହମିକାର ଓ ଅଧିକାର ସଚେତନତାର ଏହି ତୁଙ୍ଗ ରୂପାନ୍ତରୀଭୂତ ଦୈହିକ ବାସନାରାଜିର ଊର୍ଦ୍ଧ୍ୱରେ ଏ ପ୍ରକାର ଅଧୂମ ଉଦ୍ଦୀପିତ ପ୍ରେମର ଆବିର୍ଭାବ ଗୋପାଳକୃଷ୍ଣଙ୍କର ବହୁ ଗୀତରେ ମର୍ମସ୍ପର୍ଶୀ ଭାବରେ ଚିତ୍ରିତ ହୋଇଛି; ଯାହାର ଗାନ ଉତ୍କଳର ଅୟୁତାୟୁତ ଜନତାକୁ ମନ୍ତ୍ରମୁଗ୍ଧ କରିରଖେ । ଏହି ପ୍ରକାର ଗୋଟିଏ ଗୀତ ଏହିପରି –

''ମୁଁ ହେବି କି ଶ୍ୟାମବନ୍ଧୁ ଭଳିକି ଗୋ
ସମ ନୋହିବି ସେ ପଦଧୂଳିକି ଗୋ ।
ତାମରସ ବନ କେଳି ଅଳିକି,
କି ମଣି ନିଖୋଜୁ ଗିରିମଲ୍ଲୀକି ଗୋ ?
ତୁଲ କରୁ ମୋତେ ବନମାଳୀକି
ଶୁଣିଲେ ଜନେ ମାରିବେ ତାଳିକି ଗୋ ।''

ଆଉ ଏକ ଗୀତରେ ରାଧାଙ୍କର ଅନ୍ତରଗତ ସକଳ ନିକ୍ଷେଷିତ ଅଭିମାନ କାରୁଣ୍ୟମୟ ଆତ୍ମୋତ୍ସର୍ଗରେ ବହିଯାଇଛି –

''ଦୟା ନ କରନ୍ତୁ ମୁଁ ଦାସୀ ସିନା ରେ ।।
ଦୁଃଖ ଦେଇ ଶ୍ୟାମକୁ ରାଧା ସୁଖୀ ହେବାକୁ
ରୁଷିବ କଲୁ କି ଏ ଆଲୋଚନା ରେ !
ଯେ ତାଙ୍କ ମନୋହାରୀ ତା ନଉକରି କରି
ଦିନ ନେବି ପଛକେ ଗୁମାନ ନାଁରେ ।
ଯାହାର ହେଲେ ସଖୀ ସେ ହୋଇଥିଲେ ସୁଖୀ
ମିଳିଲା ପରି ଲକ୍ଷକୋଟି ସୁନା ରେ ।
ନିକଟରେ କି ଦୂରେ ନିତି ଶ୍ରୀମୁଖ ଥରେ
ଦେଖୁଥିବି ଏତିକି ମୋ କାମନା ରେ ।

ଗୋପାଳକୃଷ୍ଣ କହି ହସି ଭାଷିଲେ ସହୀ
କେ ତୋ ପଛରେ ରହିଛନ୍ତି ଅନା ରେ ।''

ଆଉ ଏକ ଗୀତ ଯାହା ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ, ରାଧାଙ୍କର ପରିପୂର୍ଣ୍ଣ ପ୍ରଣୟୋତ୍ସର୍ଗକୁ ଏହିଭାବରେ ପ୍ରକାଶ କରିଛି –

''ଶ୍ୟାମ ଅପବାଦ ମୋତେ ଲାଗିଥାଉ, ପ୍ରାଣସହି,
ନିତି ସେହି ଚିନ୍ତାରେ ମୋ ଦିନ ଯାଉ ।''
ଚାହିଁଦେଲେ ଥରେ ସେ ଶ୍ରୀମୁଖ
କୋଟିଏ କୋଟି ଜନ୍ମର ଦୁଃଖ
ଲିଭିଯାଉଛି ରେ ପରାଣମିତଣୀ,
ଯେ ଯେତେ ବୋଇଲେ ବୋଲୁଥାଉ ।''

ଆପାତ-ଅନୈତିକ, କିନ୍ତୁ ବସ୍ତୁତଃ ଏକ ରୂପକ ମାତ୍ର, ରାଧାକୃଷ୍ଣ ପ୍ରଣୟକାହାଣୀର ଏଇ ହେଲା ମହିମାମୟ ପରିସମାପ୍ତି । ରାଶି ରାଶି ଇତର ଓ ସାମାନ୍ୟ ଲେଖକମାନଙ୍କ ହାତରେ ଏହି କାହାଣୀ ଯୌନ-ବୀଭତ୍ସତାରେ ପୂତିଗନ୍ଧମୟ ହୋଇଉଠିଛି; କିନ୍ତୁ ମୀରାନ୍ବାଇ ବା ଗୋପାଳକୃଷ୍ଣଙ୍କର ଲେଖନୀରେ ଯେଉଁଠି ଭକ୍ତି ଓ ପ୍ରତିଭାର ଅଲୌକିକ ମିଶ୍ରଣ ଘଟିଛି, ସେଠି ସେଇ କାହାଣୀ ବିକୀର୍ଣ୍ଣ କରିପାରିଛି ଶାଶ୍ୱତ ଅପାର୍ଥିବ ସୌରଭ; ଯାହାହିଁ ତାର ଥିଲା ଲକ୍ଷ ଓ ନିଜସ୍ୱ । ସମଗ୍ର ଓଡ଼ିଆ ସାହିତ୍ୟରେ କେବଳ ଗୋପାଳକୃଷ୍ଣଙ୍କ ଲେଖନୀ ଚିରାଚରିତ ଶବ୍ଦାଡ଼ମ୍ବରକୁ ଭ୍ରୂକ୍ଷେପ ମାତ୍ର ନ କରି ସହଜ, ସରଳ, ନିରାଡ଼ମ୍ବର ସୌନ୍ଦର୍ଯ୍ୟ ଦେଇ ପ୍ରେମର ସତ୍ୟ ଓ ଶିବକୁ ପରିବେଷ୍ଟିତ କରିପାରିଛି । ନାନା ବିହଙ୍ଗର ରବରେ ଓଡ଼ିଆ ସାହିତ୍ୟ ଶବ୍ଦାୟମାନ; କିନ୍ତୁ ସେଇ ରବ-ଗହଳି ଭିତରେ ଏକମାତ୍ର ଗୋପାଳକୃଷ୍ଣଙ୍କ ବୀଣାର ତାର, କୋକିଳ କଣ୍ଠର କରୁଣ-ମଧୁର ରସ ବହନ କରି ସିଧା ଆସି ଆମର ଅନ୍ତରରେ ପ୍ରବିଷ୍ଟ ହୋଇଯାଏ ।

ପ୍ରଣୟମହିମାର ଏହି ପ୍ରିୟ କବି, ଓଡ଼ିଆ ସାହିତ୍ୟର ଆଉ ଏକ ବିଭାଗରେ ମଧ୍ୟ ଅନନ୍ୟସାଧାରଣ ଆସନ ଅଧିକାର କରିଛନ୍ତି । ଗୋପାଳକୃଷ୍ଣ, ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶୈଶବର ମଧ୍ୟ ସୁମିଷ୍ଟ କବି; ମାତ୍ର କେତୋଟି ଗୀତ ଦେଇ ଚିରନ୍ତନ ଶିଶୁର ସକଳ ଦୁଷ୍ଟାମି, ସକଳ ଅମାନିଆଭାବ, କ୍ରୀଡ଼ା କୌତୁକର ସକଳ ଉଦ୍ଦାମତା ଓ ତହିଁ ସହ କଲ୍ୟାଣଶୀଳ ଜନନୀର ସକଳ ମଧୁର ଆଶଙ୍କା ଅନୁପମ ରୀତିରେ ଥୋଇଯାଇଛନ୍ତି ।

ଦୁଷ୍ଟ, ଅବୁଝା ଓ ଅଶାନ୍ତ ଶିଶୁ କୃଷ୍ଣ ଶୋଇବାକୁ ନାରାଜ । ତାଙ୍କୁ ଭୁଲାଭୁଲି କରି ଶୁଆଇଦେବା ପାଇଁ ଜନନୀ ଯଶୋଦାଙ୍କର ସେ କି ଚେଷ୍ଟା –

''ବ୍ରଜକୁ ଚୋର ଆସିଛି / ଘେନିଯିବ ଶୁଅ ତୁନି ହୋଇ ରେ,
ରଙ୍କର ଧନ ମୋ ଗୋକୁଳଚନ୍ଦ୍ରମା / ନିଶି ପାଇ ନାହିଁ ରେ ।
ରାତି ଗୋଟାଯାକ ମାତିଲୁ ନାଟରେ / ପଲକ ନ ପକାଇ ରେ,

ଗ୍ରାମ ନିଶବଦ ହେଲାଣି କି ତୋତେ / ନିଦ୍ରା ଆସୁନାହିଁ ରେ ।

× × × ×

ପଶୁପେନ୍ଦ୍ରକୁଳ-ପ୍ରଦୀପ, ତୁ ଦେଖ / ଖେଳ ଛାଡ଼ିଦେଇ ରେ,
କେତେବେଳ ହେଲା ଶୟନ କଲାଣି / ବଳରାମ ଭାଇ ରେ ।''

ଓଡ଼ିଆ ସାହିତ୍ୟରେ ଅନ୍ୟ କୌଣସି ବୈଷ୍ଣବ-କବି କୃଷ୍ଣଙ୍କର ଶୈଶବ ପ୍ରତି ଦୃଷ୍ଟିପାତ କରିନାହାନ୍ତି । ସେମାନେ ଏ ଅବସ୍ଥାକୁ ଅବହେଳା କରିଛନ୍ତି ବୋଧହୁଏ ଏହି କାରଣରୁ ଯେ, 'ବାତ୍ସଲ୍ୟ'ଟା ପ୍ରେମ ନୁହେଁ ଓ ପ୍ରେମହିଁ ରାଧାକୃଷ୍ଣ କାହାଣୀର ଏକମାତ୍ର ରସ । ସ୍ୱଭାବକବି ଗୋପାଳକୃଷ୍ଣ ଜୀବନକୁ ଖଣ୍ଡିତ ଭାବରେ ନଦେଖି ଦେଖିପାରୁଥିଲେ ସମଗ୍ର ଭାବରେ ଏବଂ ଯେଉଁଠି ସେ ଦେଖୁଥିଲେ ନର-ହୃଦୟର କିଛି ଉଷ୍ଣ-ସ୍ପର୍ଶ ବା କିଛି ସୌନ୍ଦର୍ଯ୍ୟ, ସେଠି ସେ ସଂଗ୍ରହ କରିପାରିଥିଲେ ଅନୁପମ କବିତା ।

**ବନମାଳୀ –**

ଓଡ଼ିଆ ସାହିତ୍ୟର ତିନି ମୁଖ୍ୟ ଗୀତିକାରଙ୍କ ଭିତରେ ବନମାଳୀ ବୋଧହୁଏ କନିଷ୍ଠ । ତଥାପି ତାଙ୍କ ସମ୍ପର୍କରେ ବିଶେଷ ଖବର କିଛି ସଂଗ୍ରହ କରାଯାଇପାରିନାହିଁ, ଯେପରି ଘଟିଛି, ଉଭୟ ଗୋପାଳକୃଷ୍ଣ ଓ ବଳଦେବଙ୍କ ସମ୍ପର୍କରେ । ହୁଏତ ଏକ କାରଣ ହୋଇପାରେ ଯେ, ବନମାଳୀ ସଂସାରତ୍ୟାଗୀ ସନ୍ନ୍ୟାସୀ ହୋଇଯାଇଥିଲେ, ଯାହା ଅନ୍ୟ ଦୁଇ ଜଣ କରିନଥିଲେ । କୁହାଯାଏ ଯେ ବୈଷ୍ଣବକବି ବନମାଳୀ ବୃନ୍ଦାବନରେ ଦେହ-ତ୍ୟାଗ କରିଥିଲେ; କିନ୍ତୁ ସେ ସଂପୃକ୍ତ ଥିବା ମଠଟି ପୁରୀରେ ଏପର୍ଯ୍ୟନ୍ତ ଭଲ ଅବସ୍ଥାରେ ଥିବାର ଓ ସେଠି କବିଙ୍କ ସ୍ମୃତି ଏପର୍ଯ୍ୟନ୍ତ ସସମ୍ମାନ ବଞ୍ଚିରହିଥିବାର ମଧ୍ୟ କୁହାଯାଏ ।

ବନମାଳୀଙ୍କ ଗୀତର ସଂଖ୍ୟା ଓ ଅଳଙ୍କାର-ସୁଷମା କବିସୂର୍ଯ୍ୟଙ୍କ ଗୀତ ସହିତ ତୁଳନୀୟ ନୁହେଁ; ତୁଳନୀୟ ନୁହେଁ ତାଙ୍କ କବିତାର ଭାବ-ଗଭୀରତା ଗୋପାଳକୃଷ୍ଣଙ୍କ ଗୀତ ସହିତ । ବନମାଳୀଙ୍କ ଗୀତଗୁଡ଼ିକ ସରଳ ଓ ଆଡ଼ମ୍ବରହୀନ, ଯଦିଓ ସେସବୁ ଭିତରେ ଆମେ ଏକ ତୀବ୍ର ନିଷ୍ଠାର ଉତ୍ସାହ ଦେଖିପାରୁ । ବୋଧହୁଏ ତାଙ୍କର ସବୁ ଗୀତ ଏପର୍ଯ୍ୟନ୍ତ ସଂଗୃହୀତ ହୋଇପାରିନାହିଁ । ଯାହା ହୋଇଛି ସେଇଥିରେ କିନ୍ତୁ ଆମେ ବୈଷ୍ଣବକବିଙ୍କ ଉତ୍ସାହର ଆନ୍ତରିକତା ଓ ଆଧ୍ୟାତ୍ମିକ ଦୃଷ୍ଟିର ପରିଚୟ ପାଉ । ତାଙ୍କର ନିମ୍ନଲିଖିତ ଗୀତଟି ବିଖ୍ୟାତ ମୈଥିଳୀ-କବି ବିଦ୍ୟାପତିଙ୍କର ଏକ ପ୍ରସିଦ୍ଧ ଗୀତକୁ ସ୍ମରଣ କରାଇଦେଉଛି ।

''ଆଲୋ ସହଚରି, ହେଲି ଲୋହକାର ସଣ୍ଡୁଆସି ପରି ।।
କେତେବେଳେ ଜଳେ କେବେ ବା ଅନଳେ
ଦୁଇ କଥା ତାର ସମସରି ।।
ପୀରତି କରି କେ ହୋଏ ସୁଖୀ,
ସଖି, ମୁଁ ହେଲି ପରମ ଦୁଃଖୀ ।

ଦେଖୁଥିଲେ ମନତୃପତ ନୁହଇ
ନ ଦେଖିଲେ ଫୁଟିଯାଏ ଆଖି ।
ଆହୁରି କଥାଏ ସହୀ ଶୁଣ,
ପାପ-ପୀରତିର ଏହି ଗୁଣ,
ନିନ୍ଦା କରୁଥିଲେ ଫୁଲୁଥାଇ ଛାତି
ସ୍ତୁତିକଲେ ଜଳିଉଠେ ପ୍ରାଣ ।
ତେତେବେଳେ ଯାହା ହୁଏ ମିତ
ବିଗ୍ରହରେ ଲାଗିଯାଏ ଚିତ୍ତ,
ଦେଖୁଥିଲେ ବରଷ; ଲବ ହୁଅଇ,
ନ ଦେଖି ନିମିଷ ଯୁଗବତ ।
ବନମାଳୀ କହେ ପ୍ରୀତି କରି,
ସୁଖ ନାହିଁ ମଲି ଝୁରିଝୁରି,
ନାଗ ଚୁଚୁନ୍ଦ୍ରାକୁ ଗିଳି ଛାଡ଼ିଦେଲେ
ଲୋଡ଼ିଲେ ନେତ୍ରପାତରେ ହାରି ।''

**ତାତ୍ତ୍ୱିକ କବିବୃନ୍ଦ –**

ଓଡ଼ିଆ ସାହିତ୍ୟର ଅନ୍ୟ ଧାରାମାନଙ୍କ ସମାନ୍ତରାଳରେ ସପ୍ତମ-ନବମ ଶତାବ୍ଦୀରେ ବୌଦ୍ଧାଚାର୍ଯ୍ୟମାନେ ଯେଉଁ ସ୍ରୋତ ଆରମ୍ଭ କରିଦେଇଥିଲେ, ତାହାର ପ୍ରବାହ ଅବାଧଗତିରେ ଚାଲିଆସିଛି; କିନ୍ତୁ ପଞ୍ଚସଖାମାନଙ୍କ ସମୟରେ ଏହି ସ୍ରୋତରେ ଯେଉଁ ପ୍ରବଳ ବନ୍ୟା ଦେଖାଦେଇଥିଲା, ଏହି କାଳକୁ ତାହା ଅପସାରିତ ହୋଇ, ସ୍ରୋତର ଧାରା ମଧ୍ୟ କ୍ଷୀଣ ହୋଇଆସିଥିଲା । ବସ୍ତୁତଃ ଓଡ଼ିଆ ଜାତିର ସେହି ପ୍ରାଚୀନ ଆଧ୍ୟାତ୍ମିକ ସ୍ରୋତ ଏହି କାଳର କୃଷ୍ଣ-କୈନ୍ଦ୍ରିକ ଭକ୍ତି-ନଦୀର ପ୍ଳାବନରେହିଁ ନିଜର ଜଳରାଶିକୁ ମିଶାଇଦେଇଥିଲା ।

ଅଗଣିତ ଗୀତା, ସଂହିତା ଓ ମାହାତ୍ମ୍ୟ ରଚନା କରି 'ଦାସ' ସଂଜ୍ଞାଧାରୀ କବିଗୋଷ୍ଠୀ ଓଡ଼ିଆ ସାହିତ୍ୟରେ ଆଧ୍ୟାତ୍ମିକତାର ବର୍ତ୍ତିକାକୁ ଜଳାଇରଖିଥିଲେ । ନିଜନିଜର କୌଳିକ ସଂଜ୍ଞାକୁ ପରିତ୍ୟାଗ କରି ପ୍ରତ୍ୟେକ ଶିଖ ନିଜକୁ ଏକ 'ସିଂ'(ହ) ବୋଲି ପରିଚିତ କଲାପରି, ଓଡ଼ିଶାର ଏହି ଆଧ୍ୟାତ୍ମିକ କବିବୃନ୍ଦ ନିଜକୁ ଈଶ୍ୱରଙ୍କ 'ଦାସ' ବୋଲି ପରିଚିତ କରାଇଲେ । ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ ପ୍ରଭୃତି ଏହି ମହିମାମୟ ଦାସଙ୍କ ତାଲିକା ଅତି ଦୀର୍ଘ । କଥ୍ୟମାଣ କାଳରେ ଦେଖାଦେଇଥିବା ବହୁସଂଖ୍ୟକ ଆଧ୍ୟାତ୍ମିକ କବିଙ୍କ ମଧ୍ୟରୁ ଯେଉଁ ଦୁଇ ଜଣ ଅଗ୍ରଗଣ୍ୟ ବିବେଚିତ ହେବାର କଥା, ସେମାନଙ୍କ ମଧ୍ୟରୁ ଜଣେ ଦାସ ଅରକ୍ଷିତ ଦାସ, ଆଉ ଜଣେ ଅନ୍ଧ ଓ କନ୍ଧ ଭୀମ ଭୋଇ । ସିଦ୍ଧିର ତୁଳନାରେ ଏ ଦୁହେଁ ପୂର୍ବର ପଞ୍ଚସଖାଙ୍କ ସମାସନଭାଜନ । ଭୀମ ଦେଖାଇ-ଦେଇଥିଲେ ଓଡ଼ିଶାର ପଶ୍ଚିମ-ପାର୍ବତ୍ୟ ଅଞ୍ଚଳରେ; ଅରକ୍ଷିତ ଦାସଙ୍କର ଉଦୟ ହୋଇଥିଲା

ଦକ୍ଷିଣର ଉପକୂଳ ଅଞ୍ଚଳରେ । ଉଭୟେ ସମସାମୟିକ ଥିଲେ; କିନ୍ତୁ ବିସ୍ମୟର କଥା ଏହି ଯେ, ପରସ୍ପରଠାରୁ ଅଜ୍ଞାତ ରହି ଉଭୟେ ପ୍ରାୟ ଏକ ତତ୍ତ୍ୱହିଁ ପ୍ରଚାର କରିଯାଇଛନ୍ତି । ଉଭୟେ ଥିଲେ ବ୍ରାହ୍ମଣ୍ୟ ଧର୍ମର ଓ ପ୍ରତିମାପୂଜାର ବିରୋଧୀ । ପ୍ରତିମା ଓ ପୌରୋହିତ୍ୟ ସାଧାରଣ ହିନ୍ଦୁଧର୍ମର ଏହି ଦୁଇ ମୁଖ୍ୟ ଉପାଦାନ ବିରୁଦ୍ଧରେ ସେମାନେ ପ୍ରକାଶ୍ୟ ପ୍ରଚାର କରିଚାଲିଥିଲେ । ସେମାନେ ଜନତାକୁ ଆହ୍ୱାନ ଦେଇଥିଲେ କେବଳ ନିରାକାର ବ୍ରହ୍ମଙ୍କର ଉପାସନା କରିବାକୁ । କୃଷ୍ଣ ଓ ରାମକୈନ୍ଦ୍ରିକ ବିଷ୍ଣୁ-ଉପାସକ କବିମାନଙ୍କର ଜଟିଳ ଆଳଙ୍କାରିକ ବଚନ ତୁଳନାରେ ଏମାନଙ୍କ ଭାଷା ବିସ୍ମୟକର ଭାବରେ ସରଳ । ତାହାହିଁ ସେମାନଙ୍କର ସରଳ ଧର୍ମତତ୍ତ୍ୱର ସହଜ ଓ ଯଥୋଚିତ ମାଧ୍ୟମ ଥିଲା ।

ପୁଣି ଆହୁରି ବିସ୍ମୟର କଥା ଏହି ଯେ, ଉତ୍କଳର ଏହି ଋଷିଯୁଗ୍ମ ଆଧୁନିକ ସଭ୍ୟତା ସହିତ ସମ୍ପୂର୍ଣ୍ଣ ଅପରିଚିତ ଥିଲେହେଁ, ଆଧୁନିକ-ଆଲୋକ-ମଣ୍ଡିତ ରାଜା ରାମମୋହନ ରାୟ ପ୍ରତିବେଶୀ ବଙ୍ଗଦେଶରେ ଯେଉଁସବୁ ଧର୍ମ-ସଂସ୍କାର ପ୍ରଚାର କରୁଥିଲେ; ଠିକ୍ ସେହି ସମୟରେ ସେମାନେ ଠିକ୍ ସେୟା ହିଁ ପ୍ରଚାର କରିଚାଲିଥିଲେ । ଓଡ଼ିଶାର ଜାତୀୟ ଧର୍ମୀୟ ସଂସ୍କୃତିର ମଞ୍ଜଟା ହେଉଛି ବୌଦ୍ଧପଥ । ତାହାହିଁ ଯୁଗେ ଯୁଗେ ଓଡ଼ିଶାର ଆଧ୍ୟାତ୍ମିକ ଚିନ୍ତାନାୟକ ଓ କବିଙ୍କ ରଚନାରେ ବାରମ୍ବାର ଫୁଟି ବାହାରୁଛି । ଭୀମ ଭୋଇଙ୍କ ମହିମା ବା ଅଲେଖ ଧର୍ମ ବୌଦ୍ଧ ମତାନୁସୃତ । ଅରକ୍ଷିତ ଦାସଙ୍କ ବ୍ରହ୍ମକେନ୍ଦ୍ରିକ ସଂସ୍କାର ରାମମୋହନ ଓ କେଶବଚନ୍ଦ୍ର ପ୍ରତିଷ୍ଠିତ ବ୍ରାହ୍ମଧର୍ମଠାରୁ ଏକାବେଳକେ ଅଭିନ୍ନ । ଯାହା କିଛି ଭିନ୍ନତା, ତାହା ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତାଜନିତ; ତତ୍ତ୍ୱରେ ନୁହେଁ । ବଙ୍ଗର ରାମମୋହନ ଓ କେଶବଚନ୍ଦ୍ରଙ୍କ ସଂସ୍କାରପ୍ରବଣତାର ଉଦ୍ଭବ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସମ୍ପର୍କରୁ । ଭୀମ ଭୋଇ ବା ଅରକ୍ଷିତ ଦାସ ଏହି ବଙ୍ଗ ସଂସ୍କାରକମାନଙ୍କଠାରୁ ବା ପାଶ୍ଚାତ୍ୟ ଭାବଧାରାରୁ ନିଜ ମତସବୁ ଧାର ଆଣିବାର ପ୍ରଶ୍ନହିଁ ଉଠିନପାରେ; କାରଣ ସେମାନେ ତ ନିଜ ଭାଷା ଓଡ଼ିଆ ଛଡ଼ା ଅନ୍ୟ କୌଣସି ଭାଷା ଜାଣିଥିବାର ଜଣାଯାଇନାହିଁ ଏବଂ ଓଡ଼ିଶାରେ ଇଂରାଜୀଭାଷା ଉପକୂଳ ଅଞ୍ଚଳରେ କାଁ ଭାଁ ଆରମ୍ଭ ହେବାର ବହୁ ପୂର୍ବରୁହିଁ ସେମାନେ ଇହଧାମ ତ୍ୟାଗକରିଥିଲେ ।

**ଅରକ୍ଷିତ ଦାସ * (୧୭୭୨-୧୮୦୩) –**

ଓଡ଼ିଶାର ଧର୍ମ ଓ ସାହିତ୍ୟର ସମଗ୍ର ଇତିହାସରେ ଅରକ୍ଷିତ ଦାସ ହେଉଛନ୍ତି ଯେପରି ସବୁଠାରୁ ବୈଚିତ୍ର୍ୟମୟ ବ୍ୟକ୍ତି । ତାଙ୍କର ଜୀବନୀ କପିଳ ବସ୍ତୁର ରାଜପୁତ୍ର ଶାକ୍ୟ ସିଦ୍ଧାର୍ଥଙ୍କ ଜୀବନଚରିତକୁ ପଦେ-ଅଧେ ସ୍ମରଣ କରାଇଦେଉଛି । ଗଞ୍ଜାମର ପୂର୍ବତନ ବଡ଼ଖେମଣ୍ଡି

---

* ଇଂରାଜୀ ଗ୍ରନ୍ଥଟି ଲେଖିଲାବେଳେ ନାନା ଲୋକଙ୍କଠାରୁ ଓ ନାନା ଆଡୁ ପୁସ୍ତକ ସଂଗ୍ରହ କରାଯାଇଥିଲା । ଅରକ୍ଷିତ ଦାସଙ୍କ ଯେଉଁ 'ମହୀମଣ୍ଡଳଗୀତା' ବ୍ୟବହାର କରାଯାଇଥିଲା, ଏହି ଲେଖାବେଳେ ବହୁ ଚେଷ୍ଟାକରି ମଧ ସେ ଗ୍ରନ୍ଥ ମିଳିଲା ନାହିଁ । ତେଣୁ ବାଧ ହୋଇ ମୂଳ ପଦ୍ୟ ଦେବା ପରିବର୍ତ୍ତରେ ଇଂରାଜୀରେ ଉଦ୍ଧୃତାଂଶଗୁଡ଼ିକ ଗଦ୍ୟରେହିଁ ଅନୁବାଦ କରାହୋଇଛି ।

ରାଜ୍ୟର ରାଜାଙ୍କର ସେ ଭାଇ ଥିଲେ; କେତେକଙ୍କ ମତରେ ଯୁବରାଜ । ସେ ଯାହାହେଉ, ସେ ଯେ ଦିନେ ଏକ ରାଜପରିବାରର ସକଳ ଭୋଗବିଳାସ ସହିତ ନିବିଡ଼ ଭାବରେ ପରିଚିତ ଥିଲେ, ଏଥିରେ ସନ୍ଦେହ ନାହିଁ । ଅରକ୍ଷିତ ଦାସଙ୍କ 'ମହୀମଣ୍ଡଳଗୀତା' ଆତ୍ମଚରିତମୂଳକ । ସେଥିରେ ଲେଖା ଅଛି – ''ସଂସାରରେ ଥିବାବେଳେ ମୁଁ କି ଭୋଗ କରି ନଥିଲି ? ମୁଁ ସର୍ବଦା ପଟ୍ଟବସ୍ତ୍ର ଛଡ଼ା ଆଉ କିଛି ବ୍ୟବହାର କରୁନଥିଲି ଓ ମୋର ଶରୀର ସର୍ବଦା ସୁଗନ୍ଧ ଦ୍ରବ୍ୟରେ ଲିପ୍ତ ଥିଲା । ମୁଁ କୋମଳ ଶଯ୍ୟାରେ ଶୋଉଥିଲି । ମୋର ମସ୍ତକ ପୁଷ୍ପଖଚିତ ହେଉଥିଲା । ମୁଁ କେବଳ କ୍ଷୀରୀ, ପିଠା ଓ ଖେଚେଡ଼ି ଖାଉଥିଲି ଏବଂ ଅଶ୍ୱାରୋହଣ କରି ବୁଲୁଥିଲି ।''

ଅରକ୍ଷିତ ଦାସ ଏହି ଭୋଗବିଳାସମୟ ଜୀବନକୁ ମାତ୍ର ୪୦ର ବର୍ଷ ବୟସରେହିଁ ପରିତ୍ୟାଗ କରି ଦୀର୍ଘ ୪୦ର ବର୍ଷକାଳ ପାହାଡ଼ରୁ ପାହାଡ଼, ଜଙ୍ଗଲରୁ ଜଙ୍ଗଲ ଓ ଗ୍ରାମରୁ ଗ୍ରାମ ଘୁରିବୁଲିଥିଲେ ସତ୍ୟ ଓ ଆତ୍ମୋପଲବ୍ଧିର ସନ୍ଧାନରେ । ଦୀର୍ଘକାଳଧରି ସେ କେବଳ ଜଳପାନ କରି ହିଁ ବଞ୍ଚିଥିଲେ । ଏହି ଆଧ୍ୟାତ୍ମିକ ଅନ୍ୱେଷଣ ଭିତରେ ଏହି ରାଜକୁମାର ଥରେ ପୁରୀରେ ଏକ ମାଳୀଦ୍ୱାରା ଚୋରବୋଲି ସନ୍ଦେହରେ, ପ୍ରାୟ ମରଣାପନ୍ନ ଭାବରେ ପ୍ରହାରିତ ହୋଇଥିଲେ । ସେ ଏହି ଦୁର୍ବିପାକବେଳେ ଜଣେ ସ୍ତ୍ରୀଲୋକଦ୍ୱାରା ଯେ ଉଦ୍ଧୃତ ଓ ଶୁଶ୍ରୂଷିତ ହୋଇଥିଲେ, ତାହା ବିଶ୍ୱର ଚରିନ୍ତନୀ ନାରୀଶକ୍ତିର ଏକ ପ୍ରମାଣ । ଜଣେ ଧର୍ମପରାୟଣା ବିଧବା ରମଣୀ, ଏହି ଏକଦା ରାଜକୁମାରଙ୍କର ତରୁଣ ବୟସ ଓ ଅସାଧାରଣ କୃଚ୍ଛ୍ର ସାଧନା ଦେଖି ତାଙ୍କୁ ଏସବୁ ଛାଡ଼ିଦେଇ ଗାର୍ହସ୍ଥ୍ୟର ସୁଖ-ସ୍ୱାଚ୍ଛନ୍ଦ୍ୟ ଭୋଗକରିବାକୁ ଉପଦେଶ ଦେଇଥିଲେ ।

ଏହି ଭ୍ରାମ୍ୟମାଣ କାଳରେ ଏହି ଧାର୍ମିକ ରାଜକୁମାର ଉତ୍କଳର ବହୁ ବିଖ୍ୟାତ ଦେବଦେବୀଙ୍କ ପୀଠସ୍ଥାନସବୁକୁ ଯାଇଥିଲେ । ବହୁ ପରେ ଦୟାନନ୍ଦ ସରସ୍ୱତୀଙ୍କ ଜୀବନରେ ଯାହା ଘଟିଲା, ଏହି ସତ୍ୟାନୁସନ୍ଧିତ୍ସୁ ତରୁଣ ରାଜକୁମାରଙ୍କଠି ମଧ୍ୟ ସେୟା ଦେଖାଗଲା । ସେ ଏହି ହିନ୍ଦୁ ଦେବଦେବୀଙ୍କଠାରେ କୌଣସି 'ଦେବତ୍ୱ' ଦେଖିନପାରି ପ୍ରକାଶ୍ୟରେ ପ୍ରତୀକ ପୂଜାର ବିରୋଧରେ ପ୍ରଚାର ଆରମ୍ଭ କରିଦେଲେ । ରାଜକୁମାରଙ୍କ ଚେତନାରେ ଯେଉଁ ଆତ୍ମିକ ବିବର୍ତ୍ତନ ଆସ୍ତେ ଆସ୍ତେ ଘଟିଆସୁଥିଲା, ସେ ପ୍ରଭାବରେ ହିନ୍ଦୁ ସମାଜର ଜାତିବିଭାଗର ଅଯୌକ୍ତିକତାରେ ମଧ୍ୟ ସେ ନିଃସନ୍ଦେହ ହୋଇ ତଥାକଥିତ ବହୁ ନିମ୍ନ ଜାତିର ଲୋକଙ୍କଠାରୁ ଖାଦ୍ୟ ଗ୍ରହଣ କଲେ । ସେ କହିଛନ୍ତି – ''ମୁଁ ସକଳ ଜାତିର ଲୋକଙ୍କଠାରୁ ଖାଦ୍ୟ ଗ୍ରହଣ କରିଛି, ବ୍ରାହ୍ମଣଠାରୁ ଓ ଚଣ୍ଡାଳଠାରୁ । ହେ ବ୍ରହ୍ମ, ତୁମ୍ଭେ ଯେ ସମସ୍ତଙ୍କଠାରେ ବିରାଜିତ ! ଗାଭୀ ନାନାବର୍ଣ୍ଣର ହେଲେ ମଧ୍ୟ ସମସ୍ତଙ୍କ କ୍ଷୀର ସେହି ଏକ ଶ୍ୱେତବର୍ଣ୍ଣର ।''

ଅନ୍ୟତ୍ର ସେ କହିଛନ୍ତି – ''ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବ । କାହାକୁ ଅଛୁଆଁ ବୋଲି ବିଚାରିବ ନାହିଁ । ପବିତ୍ର ଓ ଅପବିତ୍ର ସମସ୍ତେ ଏକ । ସେହିପରି ସ୍ତ୍ରୀ ଓ ପୁରୁଷ ମଧ୍ୟ ଅଭେଦ ।''

ଅଠର ବର୍ଷର କଠୋର କୃଚ୍ଛ୍ରସାଧନା ଓ ପର୍ଯ୍ୟଟନ ପରେ ଏହି ରାଜର୍ଷି ଶେଷରେ କଟକ ଜିଲ୍ଲାର ଓଳାଶୁଣୀ ପର୍ବତରେ ସ୍ଥିର ହୋଇ ବାସ ଆରମ୍ଭକଲେ । ସେ ଉନବିଂଶ ଶତାବ୍ଦୀର ମଧ୍ୟଭାଗ ଆଡ଼କୁ ପ୍ରାଣତ୍ୟାଗ କରିଥିବା ଜଣାଯାଏ । ତାଙ୍କର ଓଳାଶୁଣୀ ପର୍ବତସ୍ଥ ସମାଧି ବର୍ତ୍ତମାନ ଏକ ତୀର୍ଥକ୍ଷେତ୍ର ଓ ଏକ କ୍ରମବର୍ଦ୍ଧମାନ ଧର୍ମଗୋଷ୍ଠୀର କେନ୍ଦ୍ରପୀଠ; ଯେଉଁଠାରୁ ଅରକ୍ଷିତଙ୍କ ତତ୍ତ୍ୱ ପ୍ରଚାରିତ ହୋଇଆସୁଛି ।

**ଭୀମ ଭୋଇ –**

ନୃତତ୍ତ୍ୱ, ଧର୍ମ ଓ ସଂସ୍କୃତିର ଗବେଷଣାକାରୀମାନଙ୍କ ପକ୍ଷରେ ଐତିହାସିକ ଓଡ଼ିଶା ରାଜ୍ୟ ଏକ ଆଦର୍ଶ କ୍ଷେତ୍ର । ଏଠି ସେମାନେ ଦେଖିପାରିବେ ପରସ୍ପରବିରୋଧୀ ସାମାଜିକ ଶକ୍ତିମାନଙ୍କର ସୁସମଞ୍ଜସ ଅବସ୍ଥାନ; ଯାହା ଅନ୍ୟତ୍ର ପରିଣତି ଲାଭକରିଛି ଚିର-ବର୍ତ୍ତମାନ ଶତ୍ରୁତାରେ ବା ପାରସ୍ପରିକ ବର୍ଜନରେ । ଭାରତବର୍ଷରେ ଆର୍ଯ୍ୟ-ସଂସ୍କୃତିର ଗର୍ବକରୁଥିବା ଏପରି କୌଣସି ଗୋଷ୍ଠୀ ନାହିଁ, ଯହିଁରେ ଆଦିବାସୀର ଜୀବନଧାରା ଏପରି ଓତପ୍ରୋତ ଭାବରେ ମିଶି ଜାତୀୟ ଜୀବନର ଅଂଶ ହୋଇଉଠିଛି, ଯେପରି ଘଟିଛି ଓଡ଼ିଶାରେ । ଆମେ ପୂର୍ବେ ବିଚାର କରିଛେ (ଅଷ୍ଟମ ଅଧ୍ୟାୟ) ଆଜି ଯେଉଁ ଜଗନ୍ନାଥ ଉତ୍କଳ ମାଟିକୁ ଭାରତରେ ସବୁ ପ୍ରାନ୍ତରୁ ଲକ୍ଷ ଲକ୍ଷ ହିନ୍ଦୁମାନଙ୍କୁ ଟାଣିଆଣୁଛନ୍ତି, ସେ କିପରି ବସ୍ତୁତଃ ଏକ ଉପଜାତି-ଦେବତା । ଚତୁର୍ଦ୍ଦଶ ଶତାବ୍ଦୀରୁ ଏପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଆଦିବାସୀ ଦେଖାଦେଇଛି ଏକ ବର୍ଣ୍ଣାଢ଼୍ୟ ଉପାଦାନରୂପେ କେବଳ ନୁହେଁ; କବି ଓ ଲେଖକ ଭାବରେ ମଧ୍ୟ; ଯାହା ବିଶେଷ ଚିନ୍ତାର ବିଷୟ । ଓଡ଼ିଶାର ଶ୍ରେଷ୍ଠ ଅଦିବାସୀ କବି ଭୀମ ଭୋଇ ଗତ ଶତାବ୍ଦୀରେ ଉଦିତ ହୋଇଥିଲେ । ତାଙ୍କର ଜୀବନୀ ଓ ରଚନାଦେଇ ସେ ଓଡ଼ିଆ ସାହିତ୍ୟ କେବଳ ନୁହେଁ; ସମଗ୍ର ଭାରତୀୟ ସାହିତ୍ୟରେ ଏକ ଗଣନୀୟ ଲେଖକ ବୋଲି ବିବେଚିତ ହେବାର କଥା ।

ଭୀମ ଭୋଇ ଥିଲେ କନ୍ଧଗୋଷ୍ଠୀର ଲୋକ; ଯେଉଁମାନେ ହଳଦୀ କ୍ଷେତ୍ରରେ ନରବଳି ଦେଉଥିବାଯୋଗୁଁ କୁଖ୍ୟାତ ହୋଇଥିଲେ । ସେ ଏକ ଆଭ୍ୟନ୍ତରୀଣ ଗଡ଼ଜାତରେ (ରେଢ଼ାଖୋଲ ?) ଜନ୍ମ ହୋଇଥିଲେ ଓ ବସନ୍ତରୋଗ ଯୋଗୁଁ ବାଲ୍ୟକାଳରେହିଁ ଦୃଷ୍ଟିଶକ୍ତି ହରାଇଥିଲେ ବୋଲି କୁହାଯାଏ । ଅନ୍ଧୀଭୂତ ବାଳକ ଭୀମ ବୋଧହୁଏ ଭିକ୍ଷା ମାଗି ମାଗି ବୁଲୁଥିଲେ ଓ ବିଦ୍ୟାଶିକ୍ଷାର କୌଣସି ହେଲେ ସୁଯୋଗ ପାଇନଥିଲେ । ଯୌବନାରମ୍ଭବେଳକୁ ଭ୍ରାମ୍ୟମାଣ ଭୀମ ଆଉ ଏକ ଅସାଧାରଣ ବ୍ୟକ୍ତିତ୍ୱର ସଂପର୍କରେ ଆସିଥିବା ଜଣାପଡ଼େ । ସେ ଥିଲେ ଏକ ନବଧର୍ମର ପ୍ରଚାରକ, ଯାହାର ଓଡ଼ିଶା ଭିତରେ ଓ ବାହାରେ ବର୍ତ୍ତମାନ ସହସ୍ର ସହସ୍ର ଅନୁଗାମୀ । ସେହି ବିଦ୍ରୋହୀ ଧର୍ମ ଅନ୍ଧ, ନିରକ୍ଷର, ଗୃହହୀନ କନ୍ଧ ଯୁବକକୁ ଏପରି ଅନୁପ୍ରାଣିତ କଲା ଯେ, ସେ ହଠାତ୍ ରୂପାନ୍ତରିତ ହୋଇପଡ଼ିଲା ଏକ କବି ଭାବରେ । ବର୍ତ୍ତମାନଠାରୁ ମୃତ୍ୟୁପର୍ଯ୍ୟନ୍ତ ଏକ ଦୀର୍ଘ ଜୀବନ ଭିତରେ ଭୀମ ଶତ ଶତ ଭଜନ ଓ ଚଉତିଶା ଦେଇ; ନିଜ ଗୁରୁଙ୍କଠାରୁ ପ୍ରାପ୍ତ ତତ୍ତ୍ୱରାଜି ଏକ ମିସନାରୀର ଉତ୍ସାହ

ଧରି ପ୍ରଚାର କରିଚାଲିଲେ । ଓଡ଼ିଶାରେ ସର୍ବତ୍ର ବିଶେଷତଃ ଗ୍ରାମାଞ୍ଚଳରେ, ଭୀମ ଭୋଇଙ୍କ ଏହି ଭଜନାବଳି ପ୍ରତ୍ୟହ ସହସ୍ର ସହସ୍ର ଶ୍ରୋତାଙ୍କୁ ମୁଗ୍ଧ କରିରଖେ ।

**ଅଲେଖ ଧର୍ମ –**

କବି ଭୀମଭୋଇଙ୍କୁ (୧୮୫୫-୧୮୯୫ ?) ଭଲକରି ବୁଝିବାକୁ ହେଲେ ତାଙ୍କ ଗୁରୁଙ୍କୁ ଓ ତାଙ୍କର ଧର୍ମମତକୁ ଭଲକରି ବୁଝିବାକୁ ହେବ । ଅବଶ୍ୟ ତାଙ୍କର ଏହି ବିଖ୍ୟାତ କବି-ଶିଷ୍ୟଙ୍କ ଅପେକ୍ଷା ସେହି ବରେଣ୍ୟ ଗୁରୁଙ୍କ ଜୀବନ ଆହୁରି ଅଧିକ ରହସ୍ୟମୟ । ଦୀର୍ଘ କୃଚ୍ଛ୍ରସାଧନା ପରେ ସେ କେନ୍ଦୁଝର ଜିଲ୍ଲାର କୌଣସି ପର୍ବତରେ ଆତ୍ମୋପଲବ୍ଧି କରିବାର କୁହାଯାଏ । ରାଜା ରାମମୋହନଙ୍କର ସେ ସମସାମୟିକ ଥିଲେ ବୋଧହୁଏ ଏବଂ ଯଦିଓ ସେ ଏପର୍ଯ୍ୟନ୍ତ ଇତିହାସରେ ଅବଜ୍ଞାତ ରହିଛନ୍ତି, ଓଡ଼ିଶାର ଆରଣ୍ୟକ ଅଞ୍ଚଳରେ ବୁଲି ବୁଲି, ରାଜା ଯେପରି ବେଦାନ୍ତର ଏକେଶ୍ୱରବାଦ, ପ୍ରତିମା ବିରୋଧ ଓ କୁସଂସ୍କାର ନିକାଶ ପ୍ରଚାର କରିଥିଲେ, ଏହି ଅସାଧାରଣ ଲୋକ-ଶିକ୍ଷକ ଏକସମୟରେ ଠିକ୍ ସେୟା ହିଁ ପ୍ରଚାର କରୁଥିଲେ । ତାଙ୍କ ପ୍ରଚାରିତ ତତ୍ତ୍ୱାବଳିକୁ ଅଲେଖ ବା ମହିମା ଧର୍ମ କୁହାଯାଏ । ପ୍ରଚାରକଙ୍କର କୌଳିକ ନାମ ଇତ୍ୟାଦି କିଛିହିଁ ଜଣାନାହିଁ । ତାଙ୍କର ଧର୍ମ ଅନୁସାରେ ସେ କେବଳ ମହିମାଗୋସେଇଁ ନାମରେହିଁ ପରିଚିତ ।

ଏହି ଅଲେଖ ବା ମହିମାଧର୍ମ ହିନ୍ଦୁମାନଙ୍କର ଜାତିପ୍ରଥାର ଓ ପ୍ରତିମାପୂଜାର ଘୋର ବିରୋଧୀ । ଏ ଧର୍ମ କହେ ଯେ, ଏହି ଦୃଶ୍ୟମାନ ସୃଷ୍ଟିର ଏକ ଅଦୃଷ୍ଟ ସ୍ରଷ୍ଟାଙ୍କୁହିଁ କେବଳ ଆରାଧନା କର । ଏ ଧର୍ମରେ ଆଚାରର ଆଡ଼ମ୍ବର ନାହିଁ । ଏ ଧର୍ମ ତାହାର ଅନୁଗାମୀମାନଙ୍କୁ ସତ୍ୟ, ସାଧୁତା, ବ୍ରହ୍ମଚର୍ଯ୍ୟ ଆଦି କେତୋଟି ନୀତି ମା୍ର ପାଳନ କରିବାକୁ ଉପଦେଶ ଦିଏ ଓ କହେ ଯେ, ତାହାହିଁ ପ୍ରକୃତ ଧର୍ମ । ହିନ୍ଦୁଧର୍ମର ଅଗଣିତ ଗୋଷ୍ଠୀରେ ସନ୍ନ୍ୟାସ ଜୀବନାଦର୍ଶରୂପେ ପ୍ରତିଷ୍ଠିତ ଥିଲାବେଳେ, ଏକାନ୍ତ ବିସ୍ମୟଜନକ ଭାବରେ ଓଡ଼ିଶାର ଏହି ମହିମାଧର୍ମହିଁ ସାଧୁଭାବରେ ପାଳିତ ଗୃହସ୍ଥ ଜୀବନକୁ ହିଁ ପୁଣ୍ୟାର୍ଜନର ଉଦାର ଉତ୍ସ ବୋଲି ମନେକରେ । କେବଳ ଏକ ବ୍ୟକ୍ତିତ୍ୱ ସଂପନ୍ନ ଈଶ୍ୱରରେ ବିଶ୍ୱାସ ଛଡ଼ା ଏହି ଧର୍ମର ବୌଦ୍ଧମତ ସହିତ ପ୍ରଚୁର ସାମ୍ୟ ରିହଛି । ବହୁ ପଣ୍ଡିତଙ୍କ ମତରେ ଏହି ଅଲେଖଧର୍ମ ଓଡ଼ିଶାରେ ନିମ୍ନଗତ ବୌଦ୍ଧଧର୍ମର ଏକ ନୂଆ ରୂପରେ ଆବିର୍ଭାବ ମାତ୍ର ।

ନବଧର୍ମ-ପ୍ରଚାରକ ମହିମାଗୋସେଇଁ ନିଜର କୌଣସି ଲେଖା ଛାଡ଼ିଯାଇନାହାନ୍ତି । ମନେହେଉଛି ସେ ମଧ୍ୟ ନିରକ୍ଷର ଥିଲେ । ସ୍ୱଗୁରୁଙ୍କ ନବତତ୍ତ୍ୱ ପ୍ରଚାରର ଦାୟିତ୍ୱ ନେଲେ ତାଙ୍କର ଅନ୍ଧ ଓ ନିରକ୍ଷର କନ୍ଧ ଶିଷ୍ୟ ଭୀମ; ସେହି ବାର୍ତ୍ତାକୁ ମନୋରମ ଉଦ୍‌ବୁଦ୍ଧ କବିତାରେ କୋଟିଜନ ହୃଦୟରେ ବଞ୍ଚାଇ ରଖିଯାଇଛନ୍ତି । ଏ ପ୍ରକାର ମିସନାରୀ-ଦାୟିତ୍ୱ ବହନ କରି ଭୀମ ଅଶେଷ ଦୁଃଖ ଓ ଲାଞ୍ଛନା ଭୋଗକରିଥିବାର ଜଣାଯାଏ; କାରଣ ସେ ଯାହା ପ୍ରଚାର କରୁଥିଲେ, ନିଜର ଦୈନନ୍ଦିନ ଜୀବନରେ ତାହା ପ୍ରତିପାଳନ କରୁଥିଲେ ।

ଅନେକ କବି ଏହା କରନ୍ତି ନାହିଁ । ସେମାନଙ୍କର କର୍ମ ଓ ବଚନ ଭିତରେ ସାମଞ୍ଜସ୍ୟ ନଥାଏ । ଭୀମ ଆତ୍ମପ୍ରେରିତ ହୋଇ ସେହି ଦୁଃସାହସିକତା କରିବାରୁ ସାମାଜିକ ବାସନ୍ଧ ଓ ସମଶ୍ରେଣୀୟ ନାନା ଅତ୍ୟାଚାରର ସମ୍ମୁଖୀନ ହୋଇଥିଲେ । ଜାତି-ବ୍ୟାଧି-ବିକୃତ ହିନ୍ଦୁ ସମାଜରେ ଅନାର୍ଯ୍ୟ, ଅସ୍ପୃଶ୍ୟ କନ୍ଧ ହୋଇ ଜନ୍ମ ହେବା ତ ଏହି ପ୍ରତିଭାଧର ଲୋକ-ପକ୍ଷରେ ଏକ ସହଜାତ ବାଧା ଥିଲା; କ୍ରୂର ଭାଗ୍ୟ ପୁଣି ତାଙ୍କୁ ଦେଲା ଅନ୍ଧତ୍ୱ । ଭିକ୍ଷାଜୀବୀ ସନ୍ନ୍ୟାସୀ ହୋଇ ଯେଉଁ ସମାଜରୁ ସେ ଭିକ୍ଷା ଓ ଆଶ୍ରୟ ଆଶା କରୁଥିଲେ, ତା'ରି ପ୍ରାଚୀନ ଓ ପ୍ରଚଳିତ ବିଶ୍ୱାସମାନଙ୍କ ବିରୁଦ୍ଧରେ ସେ ଅକାତରରେ ଯେ ପ୍ରଚାର କରିଚାଲିଲେ, ସେଥିରେ ତାଙ୍କ ଜୀବନ ଯେ ନିର୍ଯ୍ୟାତନାମୟ ହେବ, ଏଥିରେ ବିସ୍ମୟର କଥା କ'ଣ ଅଛି ? ଏହିପରି ଏକ ଦୁଃଖମୟ ଜୀବନର ଅପରାହ୍ଣ ଆଡ଼କୁ ବୋଧହୁଏ, ଯେତେବେଳେ ଭୀମ ନିଜେ ବହୁ ଶିଷ୍ୟଙ୍କ ଦ୍ୱାରା ଗୁରୁରୂପେ ସମ୍ମାନିତ ହୋଇପାରିଥିଲେ, ସେତେବେଳେ ଜଣେ ଗୃହସ୍ଥ ଭାବରେ ଏକ ସ୍ଥାନରେ ପ୍ରତିଷ୍ଠିତ ହେବା ତାଙ୍କ ପକ୍ଷରେ ସମ୍ଭବ ହୋଇଥିଲା । ତାଙ୍କର ଅନେକ କବିତାରେ କିନ୍ତୁ କବି ଛାଡ଼ିଯାଇଛନ୍ତି ଆଦ୍ୟର ଅତ୍ୟାଚାରିତ, ତାଡ଼୍ୟମାନ ଜୀବନର କରୁଣ ଛବି ।

"ଜଣାଇଲି ଯେତେ ତୁମ୍ଭ ପାଦଗତେ ବୋଇଲ ମୋତେ ବୁଝିବା
ମହିମା ମହିମା ବୋଲିବାକୁ ସ୍ୱାମି ଭାଙ୍ଗୁଛ ମୋର ଗାରିମା ।
କିରସ୍ତାନ ବୋଲି ଦେଉଛନ୍ତି ଗାଳି ନିନ୍ଦା କରୁଛନ୍ତି ଲୋକ
ଅଲେଖ ଅଲେଖ ବୋଲିବାକୁ ସ୍ୱାମି ଦେଉଛ ଦୁର୍ଦ୍ଦଣ୍ଡ ଦୁଃଖ ।
ପବନ ପରାୟେ ଘୋଡ଼ାଇଛି କାୟେ କଳଙ୍କ ପାପ-ବକଳ,
ସତ୍ୟ ଧର୍ମ ସତ୍ୟ ଧର୍ମ ବୋଲିବାକୁ ନିନ୍ଦୁ ଅଛନ୍ତି ସକଳ ।

× × × ×

ଖେଦ ଏ ସ୍ଥାନରୁ ରଖୁ ତାକୁ ଗୁରୁ ସାତ ପାଞ୍ଚ ଏକ ମେଳେ
ଅଜପା ଅଜପା ବୋଲିବାକୁ ସ୍ୱାମି ଅଛବ ଜାତି ବୋଇଲେ ।
କାହିଁ କାହିଁ ଥିଲେ ବାହାର ହୋଇଲେ ଯହୁଁ ନ ମିଳିଲା ଭାତ
ଏକାଙ୍ଗ ଭକତି ବୋଲିବାରୁ ବୋଲେ ଏ ଅଧମ, ଅରକ୍ଷିତ !

× × × ×

ନ ଦିଅରେ ଠାବ ମୂଢ଼ ପାପୀ ଜୀବ ଦେଖିଲେ ଦୂରୁ ନିବାର
ସମ ଦୀକ୍ଷା ସମ ଦୀକ୍ଷା ବୋଲିବାକୁ ବୋଇଲେ ଶ୍ୱାନ କୁକୁର ।
ଏ ବଚନ ଶୁଣି ମନେ ମନେ ଗୁଣି ବେନି ପାଦ ନ ଚଳଇ
ଯହିଁ ଗଲେ ତହିଁ ଉଦଣ୍ଡ ଏ କଲେ ପ୍ରଚରିବୁ ଆମ୍ଭେ କାହିଁ ?"

କିନ୍ତୁ ଏ ପ୍ରକାର ସାମୟିକ ଆତ୍ମଗ୍ଳାନି ସତ୍ତ୍ୱେ ଅନ୍ତର୍ଦୃଷ୍ଟିସଂପନ୍ନ ଏହି କବି ହୃଦୟରେ ଏହି ଦୃଢ଼ ଧାରଣା ମଧ ପୋଷଣ କଲେ ଯେ, ସମସାମୟିକ କଳୁଷିତ ବାତାବରଣ ଶୀଘ୍ର ଅପସାରିତ ହେବ ଓ ଶୀଘ୍ର ଏ ଧରାରେ ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହେବ । ତାଙ୍କର ଅଧିକାଂଶ

ଭଜନରେ ଏହି ଆଶାବାଦହିଁ ପରିବ୍ୟକ୍ତ ଓ ବୋଧହୁଏ ଏହାହିଁ ଏହି ନିର୍ଯ୍ୟାତିତ ବିଦ୍ରୋହୀ କବିଙ୍କୁ ତାଙ୍କର ସକଳ ଦୁର୍ଦ୍ଦିନରେ ଉଦ୍‌ବୁଦ୍ଧ କରିରଖିଥିଲା । ନିମ୍ନର ପଙ୍‌କ୍ତି ଗୁଡ଼ିକରେ ଓଲ୍‌ଡ଼ ଟେଷ୍ଟାମେଣ୍ଟର ହିବ୍ରୁ ଋଷିମାନଙ୍କର ଅଗ୍ନିମୟୀ ଭବିଷ୍ୟଦ୍‌ବାଣୀ ପ୍ରତିଧ୍ୱନିତ ହେବା-ପରି ଲାଗୁଛି –

"ଅଲେଖ ମହିମା ଭାଙ୍ଗିବେ ଗାରିମା ସରିବ ଏ ଉତପତ୍ତି
ଭାଦ୍ରବରୁ ସପ୍ତ ଅଙ୍କ ଲାଗିଲାଣି ସପ୍ତାଙ୍ଗ ହୋଇବ ପୃଥ୍ୱୀ ।
ସ୍ୱାମୀ ଗୁରୁଦେବ ଗୁପତେ ସାଧିବେ ପ୍ରତ୍ୟକ୍ଷେ ନ ଦେବେ ଚିହ୍ନା
ଗୋଟି ଗୋଟି ହୋଇ ଖସିଯାଉଥିବେ କାହାକୁ ନ ଥିବ ଜଣା ।
ଅନ୍ୟାୟ ଆଚାରେ ଅନୀତି ବିଚାରେ ପଡ଼ି ଛନ୍ଦ ନଟକୂଟେ
କେଉଁ ଧର୍ମକୁ ଆଶ୍ରିତ କରି ପ୍ରାଣୀ ତରିଯିବେ କେଉଁ ବାଟେ ।
ଅଗ୍ନିରେ ପୋଡ଼ିବେ ଜଳେ ବୁଡ଼ିଯିବେ ବୃକ୍ଷରୁ ପଡ଼ି ମରିବେ
ନିର୍ଦ୍ଦୟ ହୋଇବେ ସର୍ପାଘାତେ ଯିବେ ଗଳେ ଛୁରି ଲଗାଇବେ ।
ରୋଗବ୍ୟାଧିମାନ ଅଙ୍ଗରେ ପୀଡ଼ିବ ପଡୁଥିବ ଦୁଃଖ ଚିନ୍ତା
କେହୁ ମରୁଥିବେ କେହୁ ଜିଉଁଥିବେ ଅଙ୍ଗେ ନ ଥିବ ଶକତା ।"

ବରାବର ନିର୍ଯ୍ୟାତିତ ହେଲେହେଁ, ଅନ୍ଧ ନିରକ୍ଷର କବି ଭୀମଙ୍କର ଦୁଃଖ-ପୀଡ଼ିତ ମାନବସମାଜ ପ୍ରତି କରୁଣାର ସୀମା ନଥିଲା । ମହିମୋଜ୍ଜ୍ୱଳ ଭାଷାରେ କବି ଏକ ସ୍ଥାନରେ ଗାଇଉଠିଛନ୍ତି –

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେ ବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

ଅନ୍ଧ, ନିରକ୍ଷର ଭୀମ କିପରି ବିଚାରଶୀଳତାର ଉଚ୍ଚ ସ୍ତରକୁ ଉଠି ହିନ୍ଦୁ ପୌତ୍ତଳିକତାର ଅଯୌକ୍ତିକତା ଉପଲବ୍‌ଧି କରି ଦୃଢ଼ଭାବରେ ପ୍ରଚାର କରି ଚାଲିଥିଲେ ତାହାର ଏକ ଦୃଷ୍ଟାନ୍ତ ଏଇ –

"ଅଚେତାରେ ସିନା ଜନପ୍ରାଣୀମାନେ କରୁଛନ୍ତି ଦେବପୂଜା
ପାଦେ ପଡ଼ି ରକ୍ଷା-କର ବୋଲୁଛନ୍ତି ଦେବୁଁ ଖିରି, ପୁରି ଖଜା ।
ମୂର୍ତ୍ତି ସିନା ସେହି ଜୀବ, ଆତ୍ମା ନାହିଁ କାହୁଁ ଯାଚି ଦେବେ ବର
ବିଷ୍ଣୁ ନଟକୂଟ ମାୟାକୁ ନ ଜାଣି ଅଜ୍ଞାନରେ ମୂଢ଼ ନର ।
ଯେହୁ ଗଢ଼ିଛି ଆପଣା ପିଣ୍ଡ ପ୍ରାଣ ତାକୁ ସମର୍ପଣ ନାହିଁ
ଦାରୁ ପ୍ରତିମା ମୂର୍ତ୍ତିକି ବୋଲୁଛନ୍ତି ପ୍ରାଣକୁ ବଞ୍ଚାଅ ତୁହି ।
ମନୁଷ୍ୟ ହୋଇ ନିର୍ଜ୍ଜୀବ ସଙ୍ଗେ ଭାବ ଦେଖଟି କେଡ଼େ ଅଜ୍ଞାନ
ଶୂନ୍ୟରୁ ଯେହୁ ପିଣ୍ଡ ପ୍ରାଣ ଗଢ଼ିଲା ନାହିଁ ତାକୁ ଅପମାନ ।"

ନିରକ୍ଷର, ଅନ୍ଧ, ଦୀନ, ଗୃହହୀନ ଏହି ପ୍ରତିଭାଧର ଆଦିବାସୀ କୌଣସି ଜ୍ଞାନବିଦ୍ୟାର ଅଭିମାନ ପ୍ରକାଶ କରିନାହାନ୍ତି । ସେ ତାଙ୍କର ଅନ୍ତରରେ ଫୁଟିଉଠୁଥିବା ଭାବନାରାଜିକୁ, ଯେଉଁ ଭାଷା ଦୈନନ୍ଦିନ ଜୀବନରେ ବ୍ୟବହାର କରୁଥିଲେ ବା ଯାହା ଅନ୍ୟେ କହିବାର

ଶୁଣିଥିଲେ, ସେହି ଭାଷାରେ-ଢାଳିଯାଇଚନ୍ତି; ଫଳରେ ତାଙ୍କ ରଚନାରେ ସହଜାତ ଶକ୍ତି ଓ ସାବଲୀଳତା ଆମେ ପାଉଁ; କିନ୍ତୁ ପାଉନା ଆମେ ଶିଳ୍ପ । ଆଭିଧାନିକ ଅଭିଜ୍ଞତାର ଅଭାବରୁ ସେ ବ୍ୟବହାର କରିଥିବା ଶବ୍ଦାବଳି ଯଥାଯୁକ୍ତ ଅର୍ଥ ମଧ୍ୟ ଅନେକ ସ୍ଥାନରେ ବହନ କରନ୍ତି ନାହିଁ; ଫଳରେ ତାଙ୍କ ପ୍ରଚାରର ମୌଳିକ ତତ୍ତ୍ୱସବୁ ପରିଷ୍କୃତ ରୂପେ ଧରି-ହେଉନାହିଁ । ଅନେକ ଜାଗାରେ ଅଲେଖ ବ୍ରହ୍ମ ଓ କବିଙ୍କ ଗୁରୁ ମହିମା ଗୋସେଇଁ ଏକୀଭୂତ ହୋଇପଡ଼ି ଜଟିଳତା ସୃଷ୍ଟି କରିଛି; କିନ୍ତୁ ଏ ପ୍ରକାର ଶାବ୍ଦିକ ବିଶୃଙ୍ଖଳା ସତ୍ତ୍ୱେ, କବିଙ୍କର ଈଶ୍ୱର-ଉପଲବ୍ଧି ଅସାଧାରଣ ଭାବରେ ସଂକୀର୍ଣ୍ଣତା-ମୁକ୍ତ ଓ ମାନବିକ ସ୍ପର୍ଶ ମହାନ୍ ହୋଇଉଠିଛି । ଏକ ସ୍ଥାନରେ ସେ କହିଛନ୍ତି –

"ଗ୍ରୀଷମ ବରଷା ନାହିଁ ସ୍ଥିତି ବସା କ୍ଷଣେ ନ ରହନ୍ତି କାହିଁ
ନିଜେ ଭଗବାନ ଦୁଃଖ ପାଉଛନ୍ତି ବ୍ରହ୍ମାଣ୍ଡ ରଖିବା ପାଇଁ ।"

ନିମ୍ନଲିଖିତ ଭଜନଟିରେ ଏହି ଧାରାରେ ନବଜୀବନ ପ୍ରଚାରକ ଆଦିବାସୀ କବିସମାଜର ସବୁ ଶ୍ରେଣୀର ଲୋକଙ୍କୁ ନିବେଦନ କରୁଛନ୍ତି । ସେମାନେ ନିଜ ନିଜର କୌଳିକ ଧନ୍ଦା ଭିତରେହିଁ କିପରି ଈଶ୍ୱରମୟ ଜୀବନ ଯାପନ କରିବେ –

"କାହାକୁ କେହି ସଂଖୋଳି ନ ପାରିବେ ସର୍ବ ହେବେ ରଣଭଣ,
କଳି ଯାଇ ସତ୍ୟ ଯୁଗ ହୋଇବାର ଅଛଇ ଏତିକି ପୁଣ ।
ତେତେବେଳେ ଆଉ ମହୀମଣ୍ଡଳରେ କେହି ନୋହିବେ କାହାର
ନବଖଣ୍ଡ ମହୀ ତରସ୍ତ ହୋଇଣ କମ୍ପୁଥିବ ଥରହର ।
ଦକ୍ଷିଣ ଲୋକ ଉତ୍ତରେ ପଳାଇବେ ଉତ୍ତର ଲୋକ ଦକ୍ଷିଣେ
ମହା ଅନର୍ଥ ହୋଇବ ଏ ମେଦିନୀ କଳି ସତ୍ୟ ବାଦ ଗୁଣେ ।
ପୂର୍ବର ଲୋକ ପଶ୍ଚିମେ ପଳାଇବେ ପଶ୍ଚିମର ଲୋକ ପୂର୍ବେ
ଚାରିଦିଗ ଲୋକ ଏକାନ୍ତ ହୋଇବେ ମିଶାମିଶି ହୋଇ ସର୍ବେ ।
ପୁଣି କହୁଅଛୁ ହେ ପୁରୁଷମାନେ ମହିମା ନାମକୁ ଜପ,
ବାଡ଼ି-ବୃତ୍ତି ଧନ୍ଦା କରୁଥାଅ ପଛେ ହୃଦପଦ୍ମେ ନାମ ରଖ ।
ସକଳ କର୍ମରେ ଲାଗିଥାଅ ପଛେ ବ୍ରହ୍ମ କର୍ମ ଧରି ଚିତ୍ତେ
ଗୁରୁ ଚରଣେ ବିଶ୍ୱାସ ରୋପିଥିଲେ ତରିହୋଇଯିବ ସତ୍ୟେ ।
ସ୍ତିରୀମାନେ ଆଗୋ ଯେ ଅଛ ସଂସାରେ ଘରଦ୍ୱାର ପଛେ କର
ପୁତ୍ର ଦୁହିତା ଜନ୍ମାଇଲେ କି ହେଲା ତରିବା ପଥକୁ ଧର ।
ରତି ରମଣ ସୁରତି ସୁଖଭାବ କରୁଥାଅ ପଛେ ତୁମ୍ଭେ
ଅନେକ ବିଷୟା ଲାଗିଥାଉ ପଛେ ବ୍ରହ୍ମ କର୍ମ ଧର ଦମ୍ଭେ ।
ରାଜାମାନେ ରାଜନୀତି କରୁଥାନ୍ତୁ ଦଣ୍ଡ-ସିଂହାସନେ ବସି
ଦୋଷକୁ ଚାହିଁ ବୁଝାମଣା କରନ୍ତୁ ହୃଦରେ ମହିମା ଘୋଷି ।
ଦୋଷକୁ ଚାହିଁ ଦଣ୍ଡ ନ ଦେଲେ କିରୂପେ ଚଳିବ ପୃଥ୍ୱୀ

ରଇତ ପରଜା କି ରୂପେ ମାନିବେ ବଶା ହୋଇଯିବ ମତି ।
ମୂଳକର କଥା ବୁଝୁଥାଅ ପଛେ ସତ୍ୟ ଧର୍ମ ଆଶ୍ରେ କର
ମହିମା ଭଜିଲୁଁ ବୋଲି ନ ବୁଝିଲେ ଦେବ ହୋଇବ କାହାର ?
ରାଜନୀତି ତାର କରୁଥାଉ ପଛେ ଗୁରୁ ଧର୍ମ ଥାଉ ଧ୍ୟାୟି,
ଗୁରୁସେବାରେ ପରଚେ ହେବ ଯେବେ ନିଶ୍ଚିନ୍ତେ ତରିବ ସେହି ।
କ୍ଷତ୍ରୀ ହୋଇ ପଞ୍ଚସହସ୍ରକୁ ଭିଡ଼ି ସତ୍ୟଧର୍ମେ ଆଶ୍ରା କରୁ
ଘୋର ସଂଗ୍ରାମେ ପଶି କରି ପଛକେ ଗୋରୁବ୍ରାହ୍ମଣକୁ ମାରୁ ।
କ୍ଷତ୍ରୀ ହୋଇ ଯେବେ ଶସ୍ତ୍ର ନ ଧଇଲେ ଶତ୍ରୁଜୟ କରି ନୁହେଁ
ଗୁରୁ ନାମ ଧରି ସିଂହରଡ଼ି ଦେବ ନଥିବ କାହାକୁ ଭୟେ ।
ବ୍ରାହ୍ମଣ ହୋଇ ଚାରିବେଦ ପଢୁ ସେ କରୁ ପଛେ କ୍ରିୟା କର୍ମ
ସନ୍ଧ୍ୟା ତର୍ପଣ ଯଜ୍ଞ ହୋମ କରିଣ ଧରିଥାଉ ଗୁରୁଧର୍ମ ।
ବେଦାନ୍ତ ବ୍ରାହ୍ମଣ ହୋଇଥାଉ ପଛେ ଅଲେଖ ମହିମା ଭଜୁ
ବେଦର ମତ ଯେତେ କର୍ମ କରୁଛି ବାହ୍ୟରେ ପଛେ ନ ତେଜୁ ।
ରାଜା ବ୍ରାହ୍ମଣ କ୍ଷତ୍ରିକୁଳ ଯେ ଅଛ ସତ୍ୟଧର୍ମ ନ୍ୟାୟ ଧର
ଆଶ୍ୱାସନା ଭାବେ ସବୁଙ୍କୁ କହୁଛୁ ବେଳହୁଁ ମୋ ବୋଲ କର ।
ବେଳୁ ବେଳ ଯୁଗାବନ୍ଧ ତୁଟୁଅଛି ଚିତ୍ତ ରଖ ଗୁରୁପାଦେ,
ମନରେ ସ୍ୱଚ୍ଛନ୍ଦ ଭଣେ ଭୀମ କନ୍ଧ ଅଷ୍ଟାଦଶ ଶତ ପଦେ ।''

**ବ୍ରଜନାଥ ବଡ଼ଯେନା –**

ଓଡ଼ିଆ ସାହିତ୍ୟର ଏହି ଯୁଗରେ କେବଳ ନୁହେଁ, ସମଗ୍ର ଓଡ଼ିଆ ସାହିତ୍ୟରେ ବ୍ରଜନାଥ ବଡ଼ଯେନା ଅସାଧାରଣ । ମାତ୍ର ଦଶବର୍ଷ ତଳେ ମଧ୍ୟ ଏପରି ଉଚ୍ଚକୋଟୀର ମୌଳିକ ସ୍ରଷ୍ଟା ଓଡ଼ିଆ ସାହିତ୍ୟର ପାଠକଙ୍କ କଥା ଛାଡ଼ିଦିଅ, ଗବେଷକ ଓ ଆଲୋଚକମାନଙ୍କର ମଧ୍ୟ ବିଶେଷ ଦୃଷ୍ଟି ଆକର୍ଷଣ କରିପାରୁନଥିଲେ । ଏ ଭିତରେ ସାହିତ୍ୟରେ ପ୍ରକୃତ ମୂଲ୍ୟବୋଧର ପରିବର୍ତ୍ତନ ଘଟନ୍ତେ ବଡ଼ଯେନା ଏବେ ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସବୁଠାରୁ ଆଧୁନିକତମ ଲେଖକ ବୋଲି ଧରାଗଲେଣି । ବଡ଼ଯେନେ ଏପରି ଅନେକ ପ୍ରକାର ରୀତିରେ ସିଦ୍ଧହସ୍ତ ପରୀକ୍ଷା କରିଥିଲେ; ଯାହାକି ପ୍ରାଚୀନ ଓଡ଼ିଆ ସାହିତ୍ୟରେ କେହି କରିନଥିଲେ । ଗତାନୁଗତିକ ରୀତି ସେ ଯେବେ ବା ଯେଉଁଠି ଗ୍ରହଣ କରିଛନ୍ତି, ସେଥିରେ ସେ ଛାଡ଼ିଯାଇଛନ୍ତି ନିଜ ବ୍ୟକ୍ତିତ୍ୱର ଗଭୀର ଛାପ । ଆନ୍ତର୍ଜାତିକ ମୂଲ୍ୟମାନରେ ସେ ହୁଏତ ଜଣେ ମହାନ୍ ସ୍ରଷ୍ଟା ବୋଲି ଗୃହୀତ ହୋଇନପାରନ୍ତି; କିନ୍ତୁ ସେ ଜଣେ ସାହସୀ ଅଗ୍ରଗ, ଯେ ନିଜ ରୀତିରେ ନିଜର ଚିନ୍ତା ବ୍ୟକ୍ତ କରିବାକୁ ଡରୁନଥିଲେ କେବଳ ନୁହେଁ, ଯିଏ ପ୍ରତ୍ୟେକ କ୍ଷେତ୍ରରେ ଅନ୍ୟର ଅନୁସରଣ ନକରି ନିଜର ପଥ ନିଜେ ତିଆରିବା ପାଇଁ ଉତ୍ସାହୀ ଥିଲେ, ଏଥିରେ ସନ୍ଦେହ ନାହିଁ । ସେହି ଅସାଧାରଣ ବ୍ୟକ୍ତିତ୍ୱ

ସଚେତନତା ଯୋଗୁଁ ହିଁ ସେ ଅକ୍ଷର କୀର୍ତ୍ତି ସବୁ ଛାଡ଼ିଯାଇଛନ୍ତି; ଯାହା ଉତ୍କଳର ଜାତୀୟ ଗନ୍ତାଘରର ମହାର୍ଘ ଓ ଅନନ୍ୟସାଧାରଣ ସମ୍ପଦ ।

ଧରାଯାଉଛି ଯେ, କବି ବୋଧହୁଏ ୧୭୩୦ ଖ୍ରୀ: ଅ: ରେ ଜନ୍ମଗ୍ରହଣ କରିଥିଲେ ଓ ଇହଧାମ ତ୍ୟାଗ କରିଥିଲେ ୧୭୯୫ ଖ୍ରୀ: ଅ: ରେ – ଅର୍ଥାତ୍ ଓଡ଼ିଶା ବ୍ରିଟିଶ୍ ଶାସନାଧୀନ ହେବାର ମାତ୍ର ୮ ବର୍ଷ ପୂର୍ବରୁ । କବି ଏକ ଐତିହାସିକ ଓ ସଂସ୍କୃତିବାନ୍ ପରିବାରରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପରି ତାଙ୍କର ଆଉ ତିନିଭାଇଯାକ ମଧ ନାନାଭାବରେ ଗୁଣୀଜନ ଥିଲେ । ସେ ସମସ୍ତେ ପୂର୍ବତନ ଓଡ଼ିଶା ଗଡ଼ଜାତ ଢେଙ୍କାନାଳ ରାଜାଙ୍କର ଆଶ୍ରିତ ଥିବାର ଜଣାଯାଏ ।

କିନ୍ତୁ ସ୍ୱୟଂ ବଡ଼ଯେନେ ଏକାଧାରରେ ଭାଷା, ସାହିତ୍ୟ ଓ ଶିଳ୍ପାଦିର ନିପୁଣ ଅଧିକାରୀ ହୋଇ ମଧ, ସାଧାରଣ କବିଜନର ଅଭିଶପ୍ତ ଜୀବନ ଭୋଗିଥିଲେ । ତାଙ୍କ ଜୀବନ ହୋଇପଡ଼ିଲା ଉତ୍‌ଥାନ-ପତନମୟ ଓ ତା'ର ପରିଣତି ଘଟିଛି ଘୋର ଦାରିଦ୍ର୍ୟଜନିତ ବୀଭତ୍ସ ମାନସିକ ଓ ଦୈହିକ ଯନ୍ତ୍ରଣାରେ । ଜୀବିକା ଓ ସ୍ୱାଚ୍ଛନ୍ଦ୍ୟ ଅନ୍ୱେଷଣରେ ସେ ବହୁ ରାଜାଙ୍କ ଦ୍ୱାରସ୍ଥ ହେବା ଜଣାଯାଏ; କିନ୍ତୁ ରାଜା ବା ଶାସକଙ୍କ ସିଂହାସନ ଚାରିପଟେ ସାଧାରଣତଃ ଯେଉଁ ଅବରଗୁଣଧାରୀ ଚାଟୁକାରମାଳା ଘେରିରହିଥାନ୍ତି; ଅସାଧାରଣ ବିଚକ୍ଷଣତାର ଅଧିକାରୀ ବ୍ରଜନାଥ ବଡ଼ଯେନା କଣ ସେହି କୃପାଭିକ୍ଷୁଗୁଡ଼ିକଙ୍କ ପରି ହାଁଜି ହାଁଜି କରିବାକୁ ଆଶା କରିବା ? ତେଣୁ ଅନୁଗ୍ରହ ଆଶା କରି ବଡ଼ଯେନେ ଯେଉଁ ରାଜା ପାଖକୁ ଯାଇଛନ୍ତି; ମାତ୍ର ଅଳ୍ପକାଳ ପରେ ସେହି ରାଜା ସହିତ କଳିକରି ସେ ରାଜସଭା ତ୍ୟାଗ କରିଛନ୍ତି । ବଡ଼ଯେନାଙ୍କର ଏହି ଅନମନୀୟ ବ୍ୟକ୍ତିତ୍ୱହିଁ ବୋଧହୁଏ ତାଙ୍କର ସକଳ ଦୁଃଖର କାରଣ ହୋଇଥିଲା ।

ତେରଟି ପୁସ୍ତକ ବଡ଼ଯେନାଙ୍କ ରଚନା ଭାବରେ ଗୃହୀତ ହେଉଛି । ସେମାନଙ୍କ ଭିତରୁ ଚତୁର-ବିନୋଦ, ଅମ୍ବିକା-ବିଳାସ ଓ ସମରତରଙ୍ଗ – ଏହି ତିନୋଟିକୁ ତାଙ୍କର ପ୍ରଧାନ ସୃଷ୍ଟି ବୋଲି ଧରାଯାଇପାରେ ଏବଂ ନିଜସ୍ୱ ଗୁଣଯୋଗୁଁ ପ୍ରତ୍ୟେକଟି ସ୍ୱତନ୍ତ୍ର ଆଲୋଚନା ଦାବୀକରେ ।

**ଚତୁର-ବିନୋଦ –**

ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବଡ଼ଯେନାଙ୍କ ଚତୁର ବିନୋଦ ହେଉଛି ଏକମାତ୍ର ଗଦ୍ୟ ଗ୍ରନ୍ଥ; ଯାହା ମୌଳିକ, ସଂପୂର୍ଣ୍ଣ ଓ ସୁଯୋଜିତ । ରଚନାର ଶୈଳୀ ଆଧୁନିକ ଭାଷାର ଅତି ନିକଟ, ଜୀବନ୍ତ ଓ ସାବଲୀଳ । ପୁସ୍ତକଟି ହୁଏତ କବିଙ୍କର ଆଦ୍ୟ ବୟସରେ ରାଜରାଜୋଡ଼ାଙ୍କ ଖୁସି ପାଇଁ ଲେଖାହୋଇଥିଲା ଏବଂ ପୁସ୍ତକର ସାଧାରଣ ଯୌନ ବାତାବରଣର ଏକ ହେତୁ ହୁଏତ ସେହି । ମୂଳ ଗଳ୍ପ ହେଉଛି ଏହି ଯେ, ଧନୀ ସାଧବର ସୁନ୍ଦରୀ କନ୍ୟା ଓ ସ୍ଥାନୀୟ ରାଜକୁମାରର ଦେଖାହେଲାମାତ୍ରେ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ସାଧବଝିଅର ବ୍ୟଞ୍ଜନା ଅନୁସାରେ ରାଜକୁମାର ଗୋପନରେ ତା'ର ପୁରକୁ ଆସି ଜାଣିବାକୁ ପାଏ ଯେ, ସେହି କୁମାରୀ ଏକ ବ୍ରତ ପାଳନ କରୁଥିବାରୁ ସେହି କାଳରେ

ତାହାର ଯୌନ ଶୁଚିତା ଓ ନିଦ୍ରାତ୍ୟାଗ ଉଭୟ କର୍ତ୍ତବ୍ୟ ଏବଂ ସେ ସେହି କର୍ତ୍ତବ୍ୟକୁ ହେଳା କରିବାକୁ ଚାହେଁନା । ରାଜକୁମାର, ସୁକୁମାରୀ ସାଧବକନ୍ୟା ସହିତ ଉନ୍ନିଦ୍ର ରହିବାକୁ ଓ କୁମାରୀକୁ ଉନ୍ନିଦ୍ର ରହିବାରେ ସାହାଯ୍ୟ କରିବା ଲକ୍ଷ୍ୟରେ ଗଳ୍ପକଥନ ପାଇଁ ପ୍ରସ୍ତୁତ ହେଲା । ପ୍ରଣୟିନୀର 'ବିନୋଦ' ପାଇଁ ରାଜକୁମାର ଯେଉଁ ଚାରିଟି ଗଳ୍ପ କହିଲେ, ତାହା ହିଁ ହାସବିନୋଦ, ରସବିନୋଦ, ନୀତିବିନୋଦ ଓ ପ୍ରୀତିବିନୋଦ ନାମରେ 'ଚତୁର-ବିନୋଦ' । ପ୍ରତି ବିନୋଦର ମୂଳ ଗଳ୍ପ ଭିତରେ ଶାଖା-ଗଳ୍ପ ସବୁ ରହିଛି । ତେଣୁ ସେ ସବୁର ସାରାଂଶ ଦେବା ଏଠାରେ ସମ୍ଭବ ନୁହେଁ ।

ବଡ଼ଯେନାଙ୍କ ଚତୁର-ବିନୋଦ ମହୀୟାନଗୁଣସଂପନ୍ନ ନୁହେଁ; କିନ୍ତୁ ସ୍ୱୟଂ ଲେଖକଙ୍କର ଅପରିପକ୍ୱ ବୟସ, ନାୟକ-ନାୟିକାମାନଙ୍କର ଯୌବନ ଓ ପ୍ରଣୟ; ଯାହାକୁ କେନ୍ଦ୍ରକରି ଏ ଗଳ୍ପମାଳା ଲେଖା; ପୁଣି ଯାହାଙ୍କ ଖୁସି ପାଇଁ ଏ ଗଳ୍ପସବୁ ବନାହୋଇଥିଲା, ସେସବୁ ବିଚାରକୁ ନେଲେ ବଡ଼ଯେନାଙ୍କ ଗ୍ରନ୍ଥ ନୀତି-ଶିକ୍ଷା ଦେଉନି କହିଲେ ତା' ପ୍ରତି ଅବିଚାର ହେବ ନିଶ୍ଚୟ । ଦୁଇଶ' ବର୍ଷ ତଳେ ଏ ରାଜ୍ୟ ଥିଲା ପଦ୍ୟମୟ । ସେ ପୁଣି ଏପରି ପଦ୍ୟ ଯେ ତାର ବାସ୍ତବ ଜୀବନ ସହିତ କୌଣସି ସମ୍ପର୍କ ଇ ନଥିଲା । ସେପରି କାଳରେ ଜଣେ ଲୋକ ଏକ ଗଦ୍ୟ-କାବ୍ୟ ଲେଖିବାକୁ ଯାଇଛି ଓ ଏପରି ଗଦ୍ୟ ବ୍ୟବହାର କରିଛି; ଯାହା ଦୁଇଶ' ବର୍ଷ ପରର ଏବର କଥିତ ଭାଷାର ନିକଟ ବୋଧ ହେଉଛି, ସେ ସାହସିକତାକୁ ଆମେ ବରଣମାଳା ଦେବାନି ?

ଚତୁର-ବିନୋଦର ଗଳ୍ପଗୁଡ଼ିକ, ଗଳ୍ପଭାବରେହିଁ ଯେପରି ହେବାର କଥା ସେହିପରି ବୈଦଗ୍ଧ୍ୟଯୁକ୍ତ । ନାଟକୀୟ ଦୋଳାୟମାନତା ଓ ଅକଳ୍ପିତ ଶେଷ ଗଳ୍ପଗୁଡ଼ିକୁ ପ୍ରାଣବନ୍ତ କରେ । ଦୁଇଶ' ବର୍ଷ ତଳେ ଲିଖିତ ଏହି ଗଦ୍ୟ ଗ୍ରନ୍ଥରେ ଆମେ ଓଡ଼ିଆ ସାହିତ୍ୟରେ ପ୍ରଥମେ ଗଦ୍ୟଛନ୍ଦର ଦର୍ଶନ ପାଉଁ । ଗଦ୍ୟଛନ୍ଦକୁ ଏବର ତଥାକଥିତ ଆଧୁନିକ କବିବୃନ୍ଦ ଏକ ବିରାଟ ନୂତନତ୍ୱ ବୋଲି ଆସ୍ଫାଳନ କଲାବେଳେ, ବଡ଼ଯେନା ଦୁଇଶ' ବର୍ଷ ତଳେ ଲିଖିତ ତାଙ୍କ ଚତୁର-ବିନୋଦର ପ୍ରଥମ ପୃଷ୍ଠାରେ ଚମତ୍କାର ଗଦ୍ୟଛନ୍ଦ କବିତା ଥୋଇଯାଇଛନ୍ତି– ''ମୃଦଙ୍ଗ ମୋଟ କଟୀ / ଦଶମାସ ଗର୍ଭ ହେଲାପରି । ବନ୍ଧା ରାଣୀର ସର୍ବଦା କାଳେ / ଆଗକୁ ବାହାରି ଥାଇ / ଅନ୍ତଲ ପେଟ ଗୋଟି ।''

ସାମନ୍ତଯୁଗରେ ପୁଣି ରାଜରାଜୋଡ଼ାଙ୍କ ଖୁସିପାଇଁ ଲେଖାହୋଇଥିବା ଏହି ଗ୍ରନ୍ଥରେ ଜଣେ ରାଣୀକି ଏପରି ବୀଭତ୍ସ ରଙ୍ଗରେ ଚିତ୍ରିତ କରିବା ପାଷଣ୍ଡତା ଛଡ଼ା ଆଉ କିଛି ହୋଇ ନପାରେ । କୌଣସି ମନ୍ତ୍ରୀ ପ୍ରକୃତରେ ବୋକା ବା ଦରପାଠୁଆ ହୋଇଥିଲେ ମଧ, ସାଂପ୍ରତିକ କାଳର କେତେ ଜଣ ଲେଖକ ସେ ମନ୍ତ୍ରୀଙ୍କୁ ତାଙ୍କର ସତ୍ୟ ପରିଚୟ ଦେଇପାରନ୍ତି ?

**ଅମ୍ବିକାବିଳାସ –**

ଶିବ ଓ ପାର୍ବତୀଙ୍କ ବିବାହ ନେଇ ଏ ଏକ କାବ୍ୟ । କାବ୍ୟର ଆରମ୍ଭରେ ଶିବ-ସତୀ ଉପାଖ୍ୟାନ ବର୍ଣ୍ଣିତ ହୋଇ ଶିବ-ପାର୍ବତୀ ବିବାହ ବିସ୍ତାରିତ ଭାବରେ ବର୍ଣ୍ଣିତ ହୋଇଛି ।

ଏହି ଗ୍ରନ୍ଥର ଲେଖକ ଭାବରେ ଆମର ଏହି କବି ବଡ଼ଯେନେ ଓ କେନ୍ଦୁଝରର ପୂର୍ବତନ ରାଜା ବୀରଭଦ୍ର ଭଞ୍ଜଙ୍କ ଭିତରେ ବିବାଦ ଠିଆକରାଯାଇଛି । କଥ୍ୟମାନ କାଳରେ ଆର୍ଥିକ ଲାଭ ଆଶାରେ ଲେଖକମାନେ ରାଜା ଓ ଧନିକମାନଙ୍କୁ କୌଣସି କୌଣସି ଗ୍ରନ୍ଥର 'ସ୍ୱ-ତ୍ୱ' ଦାନକରିଦେବା ଏକ ସାଧାରଣ ଘଟଣା ଥିଲା । ବିଚାର୍ଯ୍ୟମାନ ଗ୍ରନ୍ଥରେ (ପଣ୍ଡିତ ବିନାୟର ଆଚାର୍ଯ୍ୟ ସମ୍ପାଦିତ) ରାଜା ବୀରଭଦ୍ରଙ୍କ ନାମ ଭଣିତାରେ ସବୁଠି ଥିଲେହେଁ, ଗ୍ରନ୍ଥର ଅନ୍ତର୍ନିହିତ ସାକ୍ଷ୍ୟ ଦୃଢ଼ଭାବରେ ସୂଚନା ଦେଉଛି ଯେ ଏହା ଏକ ବଳିଷ୍ଠ ଲେଖନୀର କୃତି; ପୂରା ଗ୍ରନ୍ଥ ନ ହେଲେ ମଧ୍ଯ ତାହାର ମୁଖ୍ୟାଂଶ । ଗ୍ରନ୍ଥର ସରକାରୀ ଲେଖକ ରାଜା ବୀରଭଦ୍ର ନିଜେ ଗ୍ରନ୍ଥରେ ପ୍ରକାଶ କରୁଛନ୍ତି ଯେ ସେ ଏ ଗ୍ରନ୍ଥ ପାଇଁ ବହୁ କବି ଓ ପଣ୍ଡିତଙ୍କର ସାହାଯ୍ୟ ନେଇଥିଲେ । ଏମାନଙ୍କ ଭିତରେ ବଡ଼ଯେନା ନିଶ୍ଚିତ ଥିବା ସେହି ଗ୍ରନ୍ଥ ହିଁ କହୁଛି । ଶେଷ ପୂର୍ବଛାନ୍ଦରେ ବିଭିନ୍ନ ଦୁର୍ଗ ନିର୍ମାଣ, ହିମବନ୍ତକୁମାରୀ ଉମାଙ୍କର ଯୌତୁକରୂପେ ସିନ୍ଧୀ, ଆରବ ଓ ଇରାକୀ ଅଶ୍ୱମାନଙ୍କର ବର୍ଣ୍ଣନା, ୨୩ଶ ଛାନ୍ଦରେ ଖାଣ୍ଟି ଓଡ଼ିଆ ଭୋଜିଭାତ, ପିଠାପଣାର ବର୍ଣ୍ଣନା ଇତ୍ୟାଦି ବଡ଼ଯେନାଙ୍କ ଚତୁର-ବିନୋଦ ଓ ସମରତରଙ୍ଗକୁହିଁ ସ୍ମରଣ କରାଇଦେଉଛି । ମୋଟଉପରେ ଏହି କାବ୍ୟ 'ଅମ୍ବିକାବିଳାସ' ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନ୍ୟ ସକଳ କାବ୍ୟଠାରୁ ଏପରି ଭିନ୍ନ ଓ ମୌଳିକ ଯେ, ଏହାର ଲେଖକ ହୋଇଥିବ ଏପରି ଏକ ଲୋକ, ଯାହାର ବୁଦ୍ଧି ଥିଲା ଗତାନୁଗତିକତାର ବିଦ୍ରୋହୀ । ଏହା ଜଣା କଥା ଯେ, ବଡ଼ଯେନା କେନ୍ଦୁଝର ଦରବାରରେ ଏହି ରାଜାଙ୍କ ସହିତ କାଳ କାଟିଥିଲେ ଓ କୌଣସି କାରଣରୁ ମତାନୈକ୍ୟ ଘଟନ୍ତେ ସେ କେନ୍ଦୁଝର ଛାଡ଼ି ଚାଲିଗଲେ । କବି ବଡ଼ଯେନାଙ୍କର ସବୁ ଦରବାର ପରି କେନ୍ଦୁଝର ଦରବାରରେ ମଧ୍ଯ କାମ ଥିବ କାବ୍ୟ ଚର୍ଚ୍ଚା ଓ ଲେଖା । ଏହି ବିଶେଷ କ୍ଷେତ୍ରରେ ଏହି ଅମ୍ବିକାବିଳାସ ଲେଖି ତା'ର ଲେଖକକୁ ପୃଷ୍ଠପୋଷକ ରାଜାଙ୍କୁ ସମର୍ପି ଦେବା ବଡ଼ଯେନାଙ୍କ କେନ୍ଦୁଝରବାସର ଏକ-ମାତ୍ର ଦାୟିତ୍ୱ ହେବାର ଯଥେଷ୍ଟ ସମ୍ଭାବନା । ହୁଏତ କେନ୍ଦୁଝର ରାଜାଙ୍କ ସହିତ ବଡ଼ଯେନାଙ୍କ ମତାନ୍ତର ମଧ୍ଯ ଏହିଠାରୁ ବାହାରିଥିବ, ପୂରା ଏକ ଗ୍ରନ୍ଥର 'ସ୍ୱ-ତ୍ୱ'କୁ ନିଃଶେଷ ଭାବରେ ଦେଇଥିବା ବା ତା' ବଦଳରେ ଯାହା ସେ ପାଇଲେ, ତାହା ସନ୍ତୋଷଜନକ ନହେବାରୁ । ରାଜା ବୀରଭଦ୍ରଙ୍କ ଅନ୍ୟ କୌଣସି ରଚନା ନାହିଁ; ଯାହା ଅମ୍ବିକାବିଳାସ ପରି ଏପରି ଉଚ୍ଚଶ୍ରେଣୀୟ କାବ୍ୟର ସେ ସ୍ୱାଭାବିକ ଲେଖକ ବୋଲି ପ୍ରମାଣ କରିବାରେ ସାହାଯ୍ୟ କରିବ । ଅନ୍ୟପକ୍ଷରେ ଏ ପୁସ୍ତକ ବଡ଼ଯେନାଙ୍କ ଅନ୍ୟାନ୍ୟ ରଚନା ସହିତ ଏପରି ଖାପ ଖାଇଯାଉଛି ଯେ, ଏହା ବଡ଼ଯେନାଙ୍କର ନ ହୋଇପାରେ ବୋଲି ସନ୍ଦେହ କରିବାର କାରଣ ରହୁନି ।

**ସମରତରଙ୍ଗ –**

କ୍ଷୀଣାକାର ଏହି ଗ୍ରନ୍ଥଟି ପ୍ରକୃତରେ ଏକ ଅସାଧାରଣ ପୁସ୍ତକ, ଅନ୍ତତଃ ଓଡ଼ିଆ ସାହିତ୍ୟରେ । ବଡ଼ଯେନାଙ୍କ ସମସାମୟିକ ପୃଷ୍ଠପୋଷକ ଢେଙ୍କାନାଳର ରାଜା, ମର୍ହଟ୍ଟା ଓ କେନ୍ଦୁଝର-ରାଜାଙ୍କ (ବଡ଼ଯେନାଙ୍କ ପୂର୍ବତନ ପୃଷ୍ଠପୋଷକ) ସହିତ ଲଢ଼େଇ କରି କିପରି

ଦୁଇଟିଯାକ ଯୁଦ୍ଧରେ ବିଜୟୀ ହୋଇଥିଲେ, ତାହାରହିଁ ରବାଡ଼ମ୍ବର ବର୍ଣ୍ଣନା ଏହି ଗ୍ରନ୍ଥ । ଅମ୍ବିକାବିଳାସ କାବ୍ୟର ସମ୍ପାଦକ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ* ସମରତରଙ୍ଗ-ବର୍ଣ୍ଣିତ ଢେଙ୍କାନାଳ ରାଜାଙ୍କଦ୍ୱାରା କେନ୍ଦୁଝର-ପରାଜୟ ଏକାନ୍ତ ମିଥ୍ୟା ବୋଲି ଜୋର୍‌ରେ ଓ ସୁଯୁକ୍ତି ସହ ଦାବୀ କରିଛନ୍ତି । ଏହି ଲେଖକ ମଧ ମନେକରେ ଯେ, ସମରତରଙ୍ଗର ମୂଳ ପ୍ରତିପାଦ୍ୟ, ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ଦ୍ୱାରା ମହଁଗବାହିନୀର ପରାଜୟ କେବଳ ଅର୍ଦ୍ଧସତ୍ୟ ବୋଲି ଗ୍ରହଣ କରାଯାଇପାରେ ।

ପ୍ରତିଭାଧର ବଡ଼ଯେନେ ତାଙ୍କର ଏହି ଅସାଧାରଣ କୃତିତ୍ୱଟିରେ କାଳି ବୋଳି-ଯାଇଛନ୍ତି କହିବାକୁ ହେବ, ଏଥିରେ ଗୁଡ଼ାଏ ଅତିରଞ୍ଜିତ ସ୍ତୁତି ଢାଳି ଗୋଟାଏ ଲୋକ ପାଇଁ ଯିଏ ପ୍ରକୃତରେ ସାମାନ୍ୟ ଧନ୍ୟବାଦର ମାତ୍ର ଭାଜନ ନୁହେଁ । ବଡ଼ଯେନାଙ୍କ ରଚନାକୁ ବିଶ୍ଳେଷିତ କଲେହିଁ ଜଣାପଡୁଛି ଯେ, ତାଙ୍କର ଏକକାଳର ପୃଷ୍ଠପୋଷକ ଓ ସମରତରଙ୍ଗର ପ୍ରଧାନ ନାୟକ ଏହି ଢେଙ୍କାନାଳ-ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର, କାବ୍ୟନାୟକ ହେବାର ଯୋଗ୍ୟ ତ ନଥିଲେ, ସେ ବସିଥିବା ସିଂହାସନ ଓ ସାହିତ୍ୟରେ ତାଙ୍କର ନାମୋଚ୍ଚାରଣ, ଉଭୟ ହିଁ ସେ ଦୈହିକ ବଳପ୍ରୟୋଗଦ୍ୱାରା ଲାଭକରିଥିଲେ ।

ନିଃସଂଦେହରେ କୁହାଯାଇପାରେ ଯେ ଏହି ସମର-ତରଙ୍ଗ ଗ୍ରନ୍ଥ ବଡ଼ଯେନାଙ୍କ ପ୍ରେରଣାର ପ୍ରସୂତି ନୁହେଁ । ଏହା ରାଜାଦେଶ ଲିଖିତ ପୁସ୍ତକ । ଧୂର୍ତ୍ତ ତ୍ରିଲୋଚନ ମହୀନ୍ଦ୍ର କବିଙ୍କର ଦୈନ୍ୟର ସୁବିଧା ନେଇ ତାଙ୍କଦ୍ୱାରା ନିଜର-ସ୍ତୁତି-ଭରା ଏ ଗ୍ରନ୍ଥ ଲେଖାଇ-ଯାଇଛନ୍ତି, ନିଜର ଚାରିତ୍ରିକ ଦୋଷଦୁର୍ବଳତାକୁ ଇତିହାସର ଚକ୍ଷୁରୁ ଘୋଡ଼ାଇ ରଖିବା ପାଇଁ । ବଡ଼ଯେନେ ସମରତରଙ୍ଗର ଉପସଂହାରରେ ପ୍ରାଣ ଖୋଲି କହିଯାଇଛନ୍ତି ଯେ, ସେ ଜୀବିକାନ୍ୱେଷଣରେ ବହୁ ସ୍ଥାନ ଭ୍ରମି ଭ୍ରମି ଥକିଗଲେଣି; କିନ୍ତୁ ଏହି ସମରତରଙ୍ଗ ରଚନା କରି ଆଶା କରନ୍ତି ଯେ, ସେ ଏଥର ଚିରସ୍ୱାଚ୍ଛନ୍ଦ୍ୟରେ ବସବାସ କରିପାରିବେ ।

"ଏ ସମରତରଙ୍ଗ ଗୀତ ପ୍ରସାଦେ
ସଂପାତି ହୋଇବି ମୁଁ ଅତି ପ୍ରମୋଦେ ଯେ ।
ହେ ମହାରାଜା ଦିବ୍ୟଚିତ୍ତରେ ହେଉ
ମୋଠାରେ ଦୟା କର କୀରତି ରହୁ ଯେ ।"
ବୁଲି ବୁଲି ଅନେକ ହେଲି ସ୍ଥକିତ
ଅନୁସରଣେ ରହିବାକୁ ମୋ ଚିତ୍ତ ଯେ ।
ପୁରୁଷାନୁକ୍ରମକୁ ସଂଖାଳି ହେବ
ସଂସାରେ ପ୍ରଭୁଙ୍କର ଯଶ ରହିବ ଯେ ।"

କବି ଏହା ମଧ ଉଚ୍ଛ୍ୱସିତ ହୋଇ ପ୍ରକାଶ କରିପକାଇଛନ୍ତି ଯେ ବଦାନ୍ୟ ରାଜା ସମରତରଙ୍ଗ କାବ୍ୟ ପୂରା ନହେଉଣୁ, କବିଙ୍କ ପାଇଁ ବ୍ରାହ୍ମଣୀ ନଦୀକୂଳରେ ଏକ ଗ୍ରାମ ଓ ବାର୍ଷିକ ପାଞ୍ଚଶ' କାହାଣ କଉଡ଼ିର ବ୍ୟବସ୍ଥା କରିସାରିଛନ୍ତି ।

* ସେତେବେଳେ ବରେଣ୍ୟ ପଣ୍ଡିତ ମହାଶୟ କେନ୍ଦୁଝର ଦରବାରରେ ଚାକିରି କରୁଥିଲେ ।

''ଏ ଅନ୍ତେ ସୁଜନେ ହେ, ନୃପତିଚନ୍ଦ୍ର
ତକ୍ଷଣେ କୃପା କଲେ, ହୋଇ ପ୍ରମୋଦ ।
ଅପଂଗା ବିଶେ ବ୍ରାହ୍ମୀ ନଦୀ ତଟରେ
ଗ୍ରାମ ଗୋଟିଏ ନୂଆଗାଆଁ ନାମରେ ।
ପାନପିକରେ ଏହୁ ଗ୍ରାମକୁ ଦେଇ
ପାଞ୍ଚଶ କାହାଣ ନଗଦ ଖଞ୍ଜା ହିଁ ।
ହୁକୁମ ଦେଲେ ବଡ଼ଯେନାଏ ଶୁଣ
ଉଚ୍ଛିଷ୍ଟ ପଦାର୍ଥ ତ ନୋହେ ଗ୍ରହଣ ।
ବଂଶାନୁକ୍ରମେ ଗ୍ରାମ ଭୋଗ କରିବ
ତୁମ୍ଭ ଥିବାଯାକେ ଏ ବର୍ତ୍ତନ ନେବ ।''

କିନ୍ତୁ ବଡ଼ଯେନାଙ୍କ ରଚ୍‌ନାବଳିର ସୁଯୋଗ୍ୟ ସଂପାଦକ ଶ୍ରୀ ସୁଧାକର ପଟ୍ଟନାୟକ ନିକଟରେ ଆବିଷ୍କାର କରିଥିବା ବଡ଼ଯେନାଙ୍କ ପୁସ୍ତିକା 'ରାଜନଙ୍କୁ ଛଳୋକ୍ତି' ପଢ଼ିଲେ ଏହି ଦୈନ୍ୟ-ପୀଡ଼ିତ ବରେଣ୍ୟ କବି ଦିନେ ଲାଭାଶାରେ ଯେଉଁ ତ୍ରିଲୋଚ୍‌ନ ମହୀନ୍ଦ୍ର ବାହାଦୁର ଉପରେ ସ୍ତୁତିରାଶି ଢାଳିପକାଇଥିଲେ ସେ ଲୋକ ପ୍ରକୃତରେ କଣ, ତାହା ଆଜି ଆମ ଆଗରେ ଅତ୍ୟନ୍ତ ସ୍ୱଷ୍ଟ । ଆତ୍ମଚରିତମୂଳକ ଏହି କବିତାଟି ରାଜାର ତଥାକଥିତ ଦାନରାଜି କି ପ୍ରକାର ଭଣ୍ଡ ପ୍ରଚ୍‌ାର ମାତ୍ର ଥିଲା, ତାହା ଏପରି ପ୍ରମାଣ କରୁଛି ଯେ ଘୋର ଦୁରବସ୍ଥାରେ ଥାଇ ମଧ ସମରତରଙ୍ଗର କବି ରାଜାର ତଥାକଥିତ ସେହି ଅନୁଗ୍ରହଗୁଡ଼ିକୁ ବର୍ତ୍ତମାନ ଫେରାଇ ନେବାକୁ ରାଜାକୁ ଅନୁରୋଧ କରୁଛନ୍ତି ।

''ନୂଆଗାଆଁ ମତେ ଦିଆହୋଇଛି ଯେ ଯୁଗଯୁଗାନ୍ତ ପଡ଼ିଆ
ବାଘ ପୁଅ ତହିଁ ସାକ୍ଷାତ ଜନ୍ମାଏ ପ୍ରଭୁ ଜାଣିଅଛ ଏହା ।
ଚାରି ଭରଣ ରଣ କାହୁଁ ଶୁଝିବୁଁ ପାରିହେବି, ମହାବାହୁ
ଚିଟି ଖଣ୍ଡ ଘେନି ଛାମୁରେ ହେଉଛି ସରକାରେ ଗାଁ ରହୁ ।''

ଗୁଣାନ୍ଧ ଏହି ରାଜାର ବିରକ୍ତି କଟାଇ ଅନୁଗ୍ରହ ପାଇବା ପାଇଁ ପ୍ରତିଭାଧର ବଡ଼ଯେନେ ସାତବର୍ଷକାଳ ସୁଯୋଗ ଖୋଜି ଖୋଜି ବେଳେବେଳେ ରାଜାର ପାଲିଙ୍କି ପଛରେ ଦୌଡୁଥିଲେ । ଗୁଣୀଜନର ତଥାକଥିତ ପୃଷ୍ଟପୋଷକ ତ୍ରିଲୋଚ୍‌ନ ମହୀନ୍ଦ୍ର କବିଙ୍କି ଦେଖିଲେ ଅନ୍ୟଆଡ଼େ ମୁହଁ ବୁଲାଇ ଦେଉଥିଲା । କବି ସାତବର୍ଷରେ ଥରେହେଲେ ରାଜା ସାଥିରେ କଥା ହେବାର ସୁଯୋଗ ନପାଇ ଶେଷରେ 'ରାଜନଙ୍କୁ ଛଳୋକ୍ତି' ଲେଖି ରାଜା ପାଖକୁ ପଠାଇଲେ ।

''ବିଚ୍‌ାର ଉପାସେ ଆକ୍ରାନ୍ତି ନିରାଶେ ନବରଠାକୁ ଆସଇ
ଜଣାଇବି କିଛି ହଜୁରେ ମଣୋହି ସମୟ ଜଗି ବସଇ ।
ଦୂରୁ ଦରଶନ କରି କୁରୁନିଶ କରି ଶ୍ରୀଛାମୁ ଯେ ଚାହିଁ
ଶ୍ରୀପାଲିଙ୍କି କରେ ଜଣାଇବି ମନେ ବିଚ୍‌ାରି ଆସନ୍ତେ ଧାଇଁ ।
ତେଡ଼େ ପ୍ରସନ୍ନ ବଦନ ଯେ ଶରଦ ପୂର୍ଣ୍ଣଚନ୍ଦ୍ର ନିନ୍ଦୁଥାଏ
ମୋ ଭେଟ କଟାକ୍ଷ ପଡ଼ିଲା ମାତ୍ରେ ଯେ ଅରୁଣ ଛବି କି ପାଏ ।

ଉଠାଣି ମାଛ ମୁହେଁ ବାଡ଼ି ପରାଏ ଘୁଞ୍ଚି ରହଇ ଭୟରେ
କି ଦୁଃଖ ଖ୍ୟାତ କରିବି ମନ ଦୁଃଖେ ଜ୍ଞାନ ନ ରହେ ଦେହରେ ।''

ଏସବୁ ଜାଣିଲା ପରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର କୌଣସି ପ୍ରକାର ଶ୍ରଦ୍ଧା-ସମ୍ମାନ-ସହାନୁଭୂତିଭାଜନ ଲୋକ ବୋଲି ମନେହେଉନାହିଁ ।

ଯାହାହେଉ, ଏସବୁ ସତ୍ତ୍ୱେ ନାନାଦିଗରୁ ସମରତରଙ୍ଗ ଯେ ଏକ ଅସାଧାରଣ ଗ୍ରନ୍ଥ, ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟରେ ବୀରରସ ବା ଯୁଦ୍ଧ ବର୍ଣ୍ଣନାର ଅପ୍ରାଚୁର୍ଯ୍ୟ ନାହିଁ । ପାଇକପୁଅ ସାରଳା ଦାସ ଲଢ଼େଇବର୍ଣ୍ଣନା କଲାବେଳେ ସେହି ବର୍ଣ୍ଣନା ଭିତରେ ନିଜେ ଗାଇବା ନାଚିବା ପରି ମନେହୁଏ । ଯୁଦ୍ଧର ମାନବିକ ଓଜଃ ପ୍ରକାଶ, ଅନିଶ୍ଚିତତା, ହାର-ଜିଣାର ଉତ୍ଥାନ ପତନ ଇତ୍ୟାଦି ସାରଳା ଦାସେ ଏପରି ପୌରୁଷମୟ ଭାଷାରେ ବର୍ଣ୍ଣିଯାଇଛନ୍ତି, ଯେପରି ବୋଧହେବ ସେସବୁ କବିଙ୍କ ନିଜ ଅଭିଜ୍ଞତା । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଗବେଷଣା ପାଠକର ଏହି ସହଜାତ-ଅବବୋଧକୁ ପରିପୋଷଣ କରୁଛି । ସେ ଦେଖାଇ ଦେଇଛନ୍ତି ଯେ, ସାରଳା ମହାଭାରତରେ ବର୍ଣ୍ଣିତ ଅର୍ଜୁନଙ୍କ ଦାକ୍ଷିଣାତ୍ୟ-ବିଜୟ, ସୈନିକ-ରାଜା କପିଳେନ୍ଦ୍ର ଦେବଙ୍କ ଐତିହାସିକ ଯୁଦ୍ଧାବଳିର ନାମାନ୍ତର ଛଡ଼ା ଆଉ କିଛି ନୁହେଁ । ବଡ଼ଯେନାଙ୍କ ସମରତରଙ୍ଗର ବୈଶିଷ୍ଟ୍ୟ ହେଲା ଏହି ଯେ ଏହି ଗ୍ରନ୍ଥରେ ଆମେ ଓଡ଼ିଆ ସାହିତ୍ୟରେ ପ୍ରଥମ ଥର ପାଇଁ ଏକ ବାସ୍ତବରେ ଘଟିଥିବା ଲଢ଼େଇର ବର୍ଣ୍ଣନା ପାଉଁ। ଯୁଦ୍ଧରେ ଯୋଗଦେଇଥିବା ଜୀବନ୍ତ ସେନା ସେନାପତିଗଣ ଏ ଗ୍ରନ୍ଥରେ କାବ୍ୟନାୟକରୂପେ ଅବତୀର୍ଣ୍ଣ । ସାଂପ୍ରତିକ କାଳରେ ରଚିତ ଓ ପ୍ରକାଶିତ ହେଉଥିବା ସମରସ୍ମୃତି, ସାମରିକ ଉପନ୍ୟାସ ଓ ନାଟକ ଯାହା ଦୁଇଶ' ବର୍ଷ ତଳେ ରଚିତ, ବଡ଼ଯେନାଙ୍କ ସମରତରଙ୍ଗ ସେୟା । ଯୁଦ୍ଧ-ପ୍ରସ୍ତୁତି, ତୋପ, ଅଶ୍ୱ, ପାଇକମାନଙ୍କର ଯଥାଯଥ ସ୍ଥାନନିବେଶ, ଲଢ଼େଇର ପ୍ରାକ୍‌କାଳରେ ସୈନିକମାନଙ୍କର ଭାବନାରାଜି, ଲଢ଼େଇ ଶେଷରେ ଆହତ ଓ ମୁମୂର୍ଷୁ ସୈନିକମାନଙ୍କର ବିକଳ ଆର୍ତ୍ତନାଦ, ବୀଭତ୍ସ ରଣଭୂମି ଓ ପରାଜିତ ବାହିନୀର ଯେକୌଣସିମତେ ପ୍ରାଣ-ରକ୍ଷାର୍ଥେ ଯତ୍ରତତ୍ର ପଳାୟନ, ସମର-ତରଙ୍ଗରେ ବଡ଼ଯେନେ ଏସବୁ ପରିଚିତ ଯୁଦ୍ଧଚିତ୍ର ସ୍ୱାଭାବିକ ଭାଷା ଓ ବର୍ଣ୍ଣରେ ଚିତ୍ରିତ କରିଯାଇଛନ୍ତି । ସବୁ ବାସ୍ତବ ଅତିରଞ୍ଜନର ଚେଷ୍ଟାହିଁ ପରିଲକ୍ଷିତ ହୁଏ ନାହିଁ । ସର୍ବୋପରି ଦୁର୍ଗ ଛାଡ଼ି ପଳାଇବାକୁ ସେନାପତି ଓ ସଭାସଦ୍‌ମାନେ ଉପଦେଶ ଦିଅନ୍ତେ, ରାଜା ତ୍ରିଲୋଚନ ମହୀନ୍ଦ୍ର, ଯେଉଁ ବୀରତ୍ୱମୟ ପ୍ରତିରୋଧ ବାଣୀ ଶୁଣାଇଛନ୍ତି ତାହା ପୃଥିବୀର ଯେକୌଣସି ସାହିତ୍ୟରେ ମୂଲ୍ୟବାନ୍ ସଂପଦରୂପେ ଗୃହୀତ ହେବ; କିନ୍ତୁ ଏହି ଲେଖକ ମନେକରେ ଯେ ଏହା ହୁଏତ ଆଦୌ ଘଟିନଥିଲା । ହୁଏତ ବଡ଼ଯେନେ ତାଙ୍କ ପୃଷ୍ଠପୋଷକ ମୁହଁରେ କୁହାଇଦେଇଛନ୍ତି, ସ୍ତୁତି ଲକ୍ଷ୍ୟରେ ।

''ଶୁଣି କହନ୍ତି ତହିଁ ନରସାଇଁ, ଏତେ କଥା କିମ୍ପା କହ ଘୋଡ଼ାଇ ।
ସମସ୍ତେ କହୁଛ ପଳାଇଯିବା, କେହି ତ କହିଲ ନାହିଁ ରହିବା ।
ମୁଁ ନଯିବି ଛାଡ଼ି, ଭଲା କେମନ୍ତେ ମତେ ଦେବ ତଡ଼ି ।।
ହତିଆର ବାନ୍ଧିଥିବା ଲୋକର, ମରିବାକୁ ଯେବେ ହୋଇବ ଡର ।

ହତିଆର ଛାଡ଼ି କ୍ଷେତ କମାଉ, ତେବେ ତାହାକୁ କି କହିବା ଆଉ ।
ନିସୃତ ଜିଇଁବା, କ୍ଷତ୍ରୀଙ୍କ ଶୋଭା ରଣେ ପ୍ରାଣ ଦେବା ॥
ଭୀମ, ଅର୍ଜୁନ, ଦ୍ରୋଣ, କର୍ଣ୍ଣ ବୀର, କାହିଁ ଅଛନ୍ତିଟି ଘେନି ଶରୀର ।
ଯଶ ହିଁ ମାତ୍ର ଯାଇଅଛି ରହି, ନାମରଦକୁ କେ ତୁଣ୍ଡେ ବସାଇ ।
ଏହା ନ ଘେନିଲ, ଗଡ଼ ଛାଡ଼ ଛାଡ଼ ସମସ୍ତ ବୋଲ ॥

× × × ×

ଦେଖ ହୋଇଅଛି କେଡ଼େ ମଉଜ, ଲଢ଼ି ରଖିଥାଇ କେତେ ଫଉଜ ।
କମର ବାନ୍ଧିଥାଇ ଦିନରାତି, ଏଥୁଁ କି ବଡ଼ ବାଯବ ସମ୍ପତ୍ତି ।
ଛାତି ଉଠେ ଫୁଲି, କେମନ୍ତେ ବୋଲ ଗଡ଼ ଛାଡ଼ ବୋଲି ॥
ଫଉଜ ଭିତରେ ଘୋଡ଼ା ପକାଇ, ମାରେ ବରିଛି ନିରିଭୟ ହୋଇ ।
ସତୀ ପରାୟେ ପଶି ଝାସିଯିବ ଫେରି ଅଇଲେ ସେ ସକଳ ଭାବ ।
ନୋହିଲେ ସେ ମଲେ, ବାସବ ସଙ୍ଗେ ସେ ବସିବେ ଭଲେ ॥
ହାତ ଉଠାଇ ମରିବ ଯେ ବୀର, ତାହାକୁ ମାତ୍ର ସେହି ପଟାନ୍ତର ।
ରଣେ ଯା ଦେହ ହୁଏ ଛିନ୍ନଭିନ୍ନ, ତାହାର ଅଟଇ ସୁଫଳ ଜନ୍ମ ।
ଯେ ନିସତ ହୁଏ, ପୁରୁଷ ହେଲେ ଯୁବତୀ ପ୍ରାଏ ॥
ବୋଳି ଅଙ୍ଗରେ କର୍ପୂର ଚନ୍ଦନ, ମଣ୍ଡି ହୋଇଥିବ ହେମ ରତନ ।
ଘରେ ଥିବ ଶଚୀପତି ସମ୍ପତ୍ତି, ରକତ ଦେଖି ଦୁଲୁକେ ଯା ଛାତି ।
ସେ ମନୁଷ୍ୟ ହୀନ, ଭୋଗ ହୁଏ ତାର ରୋଗ ସମାନ ॥
କାହିଁକି କିଲ୍ଲା ବଳେ ଏଥି ଥିବା, ଚାଲ ଢାଲ ଖଣ୍ଡା ହୋଇ ମିଶିବା ।
ହରି ବୋଲି ଝାସୁଁ ଯେ ହେବ ହେଉ, ଏତେ ବିଚାରରେ କି ଫଳ ଆଉ ।
ଏହି କଥା ମୂଳ, କେ ସହିବ ବରଗିଙ୍କ ଜଞ୍ଜାଳ ?''

ଯେଉଁ ସମୟରେ ପ୍ରତି ଓଡ଼ିଆ କବି କେବଳ ରାଧା ଓ କୃଷ୍ଣଙ୍କ ପ୍ରଣୟବର୍ଣ୍ଣନାରେ ବ୍ୟସ୍ତ ଥିଲେ, ସେତେବେଳେ ଏକମାତ୍ର ବଡ଼ଯେନେ ସମ-ସାମୟିକ ସାମରିକ ଘଟଣା ନେଇ କାବ୍ୟ ରଚନା କରିବାକୁ ଯେ ଯାଇଛନ୍ତି, ତାହାହିଁ ତାଙ୍କୁ ଠିଆକରାଇଛି ଅସାଧାରଣ ସମ୍ମାନର ଅଧିକାରୀ ଭାବରେ ।

ଉପେନ୍ଦ୍ର ଭଞ୍ଜ ଓ ତାଙ୍କର ଅନୁଗାମୀମାନେ ଯେଉଁ ଛନ୍ଦସବୁ ପ୍ରଣୟ ବର୍ଣ୍ଣନାରେ ବ୍ୟବହାର କରିଛନ୍ତି, ବଡ଼ଯେନେ ସେହି ଛନ୍ଦସବୁ ସଫଳତାର ସହିତ ବ୍ୟବହାର କରି-ପାରିଛନ୍ତି ବାସ୍ତବ ସମର ବର୍ଣ୍ଣନାରେ । ଏ ହେଲା ବଡ଼ଯେନାଙ୍କର ଆଉ ଏକ ଅସାଧାରଣ ସିଦ୍ଧି । ସେ ଶତାବ୍ଦୀ-ଶତାବ୍ଦୀ ଧରି ଯେଉଁ ଛନ୍ଦସବୁ କେବଳ ଅନ୍ୟ ଉଦ୍ଦେଶ୍ୟରେ ଅନ୍ୟ କାମ ପାଇଁ ବ୍ୟବହୃତ ହେଉଥିଲା, ସେଗୁଡ଼ିକୁ ସମ୍ପୂର୍ଣ୍ଣ ନୂତନ ଲକ୍ଷ୍ୟ ଓ କର୍ମରେ ଲଗାଇ ସେମାନଙ୍କର ଅନ୍ତର୍ନିହିତ ଶକ୍ତି ଆବିଷ୍କାର କରିଗଲେ ।

ସମରତରଙ୍ଗର ମୁଖ୍ୟ ବିଷୟଟି ଐତିହାସିକ ସତ୍ୟ; ଅର୍ଥାତ୍ ମାଧୋଜୀ ଭୋଁସ୍ଲାଙ୍କ

ସତର ବର୍ଷ ବୟସ୍କ ଚିମନାଜୀ ବାପୁଙ୍କ ସେନାପତିତ୍ୱରେ ମର୍ହଠାମାନେ ଢେଙ୍କାନାଳ ଆକ୍ରମଣ କରିଥିଲେ, କିନ୍ତୁ ଢେଙ୍କାନାଳ ରାଜାଙ୍କଦ୍ୱାରା ମର୍ହଠାମାନଙ୍କର ପରାଜୟ ଯେପରି ଭାବରେ ସମରତରଙ୍ଗରେ ବର୍ଣ୍ଣିତ ହୋଇଛି ତାହା ବୋଧହୁଏ ଅର୍ଦ୍ଧସତ୍ୟ ମାତ୍ର । ଉପରି-ବର୍ଣ୍ଣିତ ଅଗ୍ନିମୟ ବକ୍ତୃତାକୁ ଉଡ଼େଇ ଦେଇ ବୀରମ୍ମନ୍ୟ ରାଜା ତ୍ରିଲୋଚନ ନିଜ ଦୁର୍ଗ ତ ଶେଷରେ ଛାଡ଼ିଲେ; ସମରତରଙ୍ଗର କବି ଏହାକୁ ସାମରିକ ଛଳ ବୋଲି ଘୋଡ଼େଇ ଦେଇଛନ୍ତି; କିନ୍ତୁ ବୋଧହୁଏ ସତ୍ୟ ଏହା ଯେ, ସାମାନ୍ୟ କିଛି ପ୍ରାଥମିକ ବିଜୟ ପରେ ଢେଙ୍କାନାଳ ରାଜା ପରାସ୍ତ ହୋଇଥିଲେ ଓ ମର୍ହଠାମାନଙ୍କୁ ପୂର୍ବପରି ପେସ୍କସ୍ ଦେବାକୁ ରାଜିହୋଇଥିଲେ । ଶ୍ରୀ ସୁଧାକର ପଟ୍ଟନାୟକଙ୍କ ପ୍ରମାଣ ଅନୁସାରେ ରାଜା ତ୍ରିଲୋଚନ ଥିଲେ ନରହନ୍ତା ଓ ହତ୍ୟାଦେଇ ସେ ଢେଙ୍କାନାଳର ସିଂହାସନ ମାଡ଼ିବସିଥିଲେ । କବି ବଡ଼ଯେନାଙ୍କ ରଚନାବଳି ଆଜି ସ୍ପଷ୍ଟ ପ୍ରମାଣ କରୁଛି ଯେ, ଢେଙ୍କାନାଳେଶ୍ୱର, ସମରତରଙ୍ଗର ସାମରିକ ନାୟକ ତ୍ରିଲୋଚନ ମହୀନ୍ଦ୍ରଙ୍କର ପ୍ରକୃତରେ କିଛି ହେଲେ ଶୂରତ୍ୱ ନଥିଲା । ସେ ଥିଲେ ଏକ ଟିଣ-ପାଇକ, ଯାହାକୁ ନେଇ ପିଲେ ଖେଳିଥାନ୍ତି ।

ଏହିପରି ଶୂରବୀର ଦାନୀ ରାଜାର ସଭାରେ ସମ୍ପୂର୍ଣ୍ଣଭାବରେ ପ୍ରତାରିତ ଓ ଭ୍ରମମୁକ୍ତ ହୋଇ ଦୈନ୍ୟ ଓ ଋଣ-ଗ୍ରସ୍ତ କବି ଏକ ବିରାଟ୍ ପରିବାରଭାର ଦୁର୍ବଳ ସ୍କନ୍ଧରେ ବହନ କରି ବେଳେ ଖାଇଲେ ବେଳେ ନଖାଇ, ଶେଷରେ ଶେଷ ପନ୍ଥାରୂପେ ଖୋର୍ଦ୍ଧାରାଜାଙ୍କ ଆଶ୍ରୟ ଖୋଜିଥିବାର ଜଣାଯାଏ । ହିନ୍ଦୀଭାଷାରେ ରଚିତ କବିଙ୍କ ଗୁଣ୍ଡିଚାଯାତ୍ରା ଏହି ଶେଷ ପୃଷ୍ଠପୋଷକଙ୍କୁ ଉତ୍ସର୍ଗୀକୃତ ।

ବ୍ରଜନାଥ ବଡ଼ଯେନାଙ୍କ ପରି ଅସାଧାରଣ ପ୍ରତିଭାବାନ୍ ବ୍ୟକ୍ତିର ଏପରି ଦୁଃଖାନ୍ତ ପରିଣତି ଚିତ୍ତରେ କି ବିଷାଦ ଛାଡ଼ି ନଯାଏ ! ବଡ଼ଯେନେ ଏକଜିଦିଆ ଲୋକ ଥିଲେ ବୋଲି ମନେହୁଏ, ଯାହାଯୋଗୁଁ ହୁଏତ ସେ ଏତେ କଷ୍ଟ ଭୋଗିଲେ । ସେ ସମର-ତରଙ୍ଗରେ ହିଁ ସ୍ତାବକଶ୍ରେଣୀର କବିଦଳକୁ ସ୍ପଷ୍ଟଭାବରେ ଛଳୋକ୍ତି କରିଯାଇଛନ୍ତି — ''କବିମାନେ ମିଛେହେଁ ଗୀତ ବୋଲନ୍ତି / କାର୍ଯ୍ୟ ଲଭିବାକୁ କେତେ ସ୍ତୁତି କରନ୍ତି ହେ ।''

କିନ୍ତୁ ଦୈନ୍ୟଦାଉ ସମ୍ଭାଳି ନପାରି ସେହି ବଡ଼ଯେନେ ନିଜେ ଯେ ସେହି ସମର-ତରଙ୍ଗରେ ଏକ ଅଭାଜନ ବ୍ୟକ୍ତି ଉପରେ ଅଭାଜନ ସ୍ତୁତିଗୁଡ଼ିଏ ଢାଳିଦେଇଗଲେ, ତାହାଦ୍ୱାରା ତାଙ୍କର ଅ-ନମନୀୟ ବ୍ୟକ୍ତିତ୍ୱରେ ନଇଁପଡ଼ିବାର କଳଙ୍କ ଯେ ଲାଗିଯାଇଛି, ଏହା ପରିତାପର ବିଷୟ ନିଶ୍ଚୟ; କିନ୍ତୁ ମନେହେଉଛି ସ୍ପଷ୍ଟବାକ୍ ବଡ଼ଯେନେ ଅତୀବ କୌଶଳରେ ଏଠାରେ ନିଜକୁହିଁ ବା ନିନ୍ଦିତ କରିଯାଇଛନ୍ତି । ସେ ହୁଏତ ଜାଣୁଥିଲେ ଯେ, ସେ ଯାହା କରୁଛନ୍ତି ସେଥିରେ ତାଙ୍କ ବିବେକ ସନ୍ତୁଷ୍ଟ ନୁହେଁ; କିନ୍ତୁ ନିଜ-ଅଧିକାର ବାହାରର ଘଟଣାରେ ପରିପିଷ୍ଟ କବିଙ୍କର ହୁଏତ କିଛି ସ୍ତୁତି ନକରିବାର ଉପାୟହିଁ ନଥିଲା । ଏହି ଆତ୍ମନିନ୍ଦାହିଁ ବଡ଼ଯେନାଙ୍କୁ ବରେଣ୍ୟ କରି ଠିଆକରାଉଛି । ଏହା ନିଃସନ୍ଦେହ ଯେ, ସକଳ ଦୁଃଖ, ଦୈନ୍ୟ, ବିଫଳତା ସତ୍ତ୍ୱେ ବଡ଼ଯେନା ସମଗ୍ର ଓଡ଼ିଆ ସାହିତ୍ୟର ଏକ ପ୍ରଧାନ ଗୌରବ । ବଡ଼ଯେନାଙ୍କ କୀର୍ତ୍ତି-ପ୍ରାସାଦର ଶିଳ୍ପ ଓ ଅବସ୍ଥିତି ସମସ୍ତଙ୍କଠୁ ଅଲଗା ।

**କେତେକ ବିଶିଷ୍ଟ ଗ୍ରନ୍ଥ –**

ଏହି କାଳ ଭିତରେ ଏପରି ଅନେକ ବିଚାରଣୀୟ ଗ୍ରନ୍ଥ ଓଡ଼ିଆ ଭାଷାରେ ରଚିତ ହୋଇଥିଲା, ଯାହା କାବ୍ୟ-କବିତା ନୁହେଁ; ଅଥଚ ମୂଲ୍ୟବାନ୍ । ଓଡ଼ିଶାରେ ସେକାଳରେ ଏହା ସଂସ୍କୃତିର ବ୍ୟାପକ ପ୍ରଚାରହିଁ ସୂଚିତ କରେ । ଏ କ୍ଷେତ୍ରରେ ଅକ୍ଳାନ୍ତ ଅନ୍ୱେଷକ ପୁରୀବାସୀ ପଣ୍ଡିତ ସଦାଶିବ ରଥଶର୍ମା ସମଗ୍ର ଓଡ଼ିଶାର ଧନ୍ୟବାଦର ପାତ୍ର । ତାଙ୍କରି ଅନ୍ୱେଷଣ ଫଳରେହିଁ ଅଜ୍ଞାତପୂର୍ବ ଅନେକ ମୂଲ୍ୟବାନ୍ ଗ୍ରନ୍ଥ କ୍ରମେ ଆମ ଗୋଚରକୁ ଆସୁଛି ।

ନବାବିଷ୍କୃତ ଏହି ଗ୍ରନ୍ଥମାନଙ୍କ ଭିତରେ 'ପାଇକଖେଦା' ଏକତମ । ପଣ୍ଡିତ ରଥଶର୍ମା ନିଜେ ଏହାକୁ ସମ୍ପାଦିତ କରି ପ୍ରକାଶ କରିଛନ୍ତି । 'ପାଇକଖେଦା'ର ଲେଖକ ରେଙ୍ଗାଳଗଡ଼ନିବାସୀ ପାଇକବର କହ୍ନାଇ ଚମ୍ପତିରାୟ ଚୂଡ଼ାମଣି ନିଜେ ପାଇକବିଦ୍ୟାରେ ଅଭିଜ୍ଞ ଥିଲେ ନିଶ୍ଚୟ । ସେ ଲେଖିଛନ୍ତି ଯେ, କ୍ରମେ ଏ ବିଦ୍ୟା ଦେଶରୁ ଲୋପପାଉଛି ଏବଂ ପୂରା ଲୁପ୍ତହେବା ପୂର୍ବରୁ ସେ ଏ ଦେଶରେ ଥିବା ସାମରିକତାର ଐତିହ୍ୟ ଓ ଅଭିଜ୍ଞତାସବୁ ଲେଖିଯିବାକୁ ଇଚ୍ଛାକଲେ । ବ୍ୟୂହମାନଙ୍କ ରଚନା ସହିତ ଏ ପୁସ୍ତକରେ ପୂର୍ବେ ସ୍ୱାଧୀନ ଓଡ଼ିଶାରେ ସୈନିକ କିପରି ବଛା ହେଉଥିଲେ, ଯୁଦ୍ଧରେ ଆହତ ସୈନିକମାନଙ୍କର କି ପ୍ରକାର ଚିକିତ୍ସା ହେଉଥିଲା ଏବଂ ନୌଯୁଦ୍ଧ ମଧ ବର୍ଣ୍ଣିତ ଅଛି । * ଏ ପୁସ୍ତକ ଅନ୍ତତଃ ହିନ୍ଦୀରେ ଅନୂଦିତ ହେବା ଉଚିତ । ତା'ହେଲେ ଅନ୍ୟ ଭାରତୀୟ ଭାଷାମାନଙ୍କରେ ଏପରି ପୁସ୍ତକ ଥିଲେ ତୁଳନାତ୍ମକ ବିଚାର ହୋଇପାରନ୍ତା । ଗଦାଗଦା ମାଇଚିଆ ଯୌନପ୍ରେମମୂଳକ ଗୀତ ଓ କବିତା ଭିତରେ ପୌରୁଷ-ଉଦ୍ଦୀପକ ଏହି ସୈନିକ ଶାସ୍ତ୍ରଟି ଅତି ମୂଲ୍ୟବାନ୍ ସୃଷ୍ଟି ।

ଶ୍ରୀ ରଥଶର୍ମା ଓଡ଼ିଶୀ ମନ୍ଦିର ଓ ଭାସ୍କର ଶିଳ୍ପ ଉପରେ ଏକ ମୂଲ୍ୟବାନ୍ ଗ୍ରନ୍ଥ ମଧ ପାଇଛନ୍ତି, ଯେଉଁଥିରେ ବାସ୍ତବ ଗଠନପ୍ରଣାଳୀ ଓ ମାପଚୂପ ସବୁ ଦିଆଯାଇଛି । ସେହିପରି ମୂଲ୍ୟବାନ୍ ଏକ ଅପ୍ରକାଶିତ ପୋଥି ହେଉଛି ଓଡ଼ିଶୀ ନୃତ୍ୟ ଉପରେ ଅତି ଉପାଦେୟ ଚିତ୍ରାବଳି ସହିତ । ଏହା ମଧ ରଥଶର୍ମାଙ୍କ ଦ୍ୱାରା ଆବିଷ୍କୃତ । 'ରଘୁନାଥ ବିଳାସ' କାବ୍ୟର ଲେଖକ ଧନଞ୍ଜୟ ଭଞ୍ଜ ମଣିରତ୍ନ, ଅଶ୍ୱ ଓ ହସ୍ତୀ ଉପରେ ମଧ ଗ୍ରନ୍ଥ ଲେଖିଯାଇଛନ୍ତି । କିନ୍ତୁ ଏ ସମସ୍ତ ଏପର୍ଯ୍ୟନ୍ତ ସାଧାରଣ ପାଠକର ହାତକୁ ଆସିନାହାନ୍ତି । ଅପେକ୍ଷା କରି ରହିଛନ୍ତି ମୁଦ୍ରାଯନ୍ତ୍ରର କୃପାକୁ ।

**ପଶ୍ଚାଦ୍‌ବଲୋକନ –**

ନବମରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ପ୍ରାୟ ଏକହଜାର ବର୍ଷର ଇତିହାସ ଉପରେ ଆମେ ଆଖି ବୁଲେଇ ଆସିଲେ । ଏହି କାଳ ଭିତରେ ଓଡ଼ିଆ ସାହିତ୍ୟର ଉଦ୍ଭବ ଓ ଅଭ୍ୟୁଦୟ ଘଟିଛି । ଯା ପରେ ଓଡ଼ିଆ ସାହିତ୍ୟର ନବଯୁଗ ଆରମ୍ଭ ହେବ । ତା' ପୂର୍ବରୁ ମୁହୂର୍ତ୍ତେ ପଶ୍ଚାଦବଲୋକନ ଅପ୍ରାସଙ୍ଗିକ ହେବନାହିଁ ।

---

* ଇଂରାଜୀ ଗ୍ରନ୍ଥରେ 'ପାଇକଖେଦା' ବିଷୟ ପଢ଼ି ଓଡ଼ିଶା ବାହାରର ଏକାଧିକ ରିଭ୍ୟୁଅର ଏ ବହି ଶୀଘ୍ର ଇଂରାଜୀରେ ଅନୂଦିତ ହେଉ ବୋଲି କହିଛନ୍ତି ।

ବ୍ରିଟିଶ୍ ୧୮୦୩ରେ ଓଡ଼ିଶା ଅଧିକାର କଲେ । ଅଭିମନ୍ୟୁ ସାମନ୍ତସିଂହାର ଏଇ ଘଟଣାର ୫ ବର୍ଷ ପରେ, କବିସୂର୍ଯ୍ୟ ୪୨ ବର୍ଷ ପରେ, ଗୋପାଳକୃଷ୍ଣ ୬୦ ବର୍ଷ ପରେ ଓ ଭୀମ ଭୋଇ ୬୫ ବର୍ଷ ପରେ ପ୍ରାଣତ୍ୟାଗ କରିଛନ୍ତି । କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ସେତେବେଳର ମାଡ୍ରାସ ପ୍ରେସିଡେନ୍‌ସିରେ ଥିବା ଗଞ୍ଜାମ ଜିଲ୍ଲାର ବ୍ରିଟିଶ କଲେକ୍ଟରମାନଙ୍କ ଅଧୀନରେ କାମ କରୁଥିଲେ । ଭୀମ ଭୋଇଙ୍କ ଭଜନମାନଙ୍କରେ ଆମେ ଖ୍ରୀଷ୍ଟାନ ମିସନାରୀମାନଙ୍କୁ ଦେଖିବାକୁ ପାଉଁ, ଯେଉଁମାନେ ସେତେବେଳକୁ ଓଡ଼ିଶାର ଉପକୂଳ ଅଞ୍ଚଳ ଛାଡ଼ି ଆଭ୍ୟନ୍ତରୀଣ ନିବିଡ଼ ଜଙ୍ଗଲାଞ୍ଚଳରେ ମଧ୍ୟ ଯାଇ ପ୍ରଚାର ଆରମ୍ଭ କରି-ସାରିଲେଣି; କିନ୍ତୁ ବିସ୍ମୟର କଥା ଏହି ଯେ, ବ୍ରିଟିଶ ରାଜତ୍ୱରେ ଥାଇ ମଧ୍ୟ ଏମାନଙ୍କ ମଧ୍ୟରୁ ଜଣେ ହେଲେ କେହି ଇଂରାଜୀ ଭାଷା ଜାଣିନଥିଲେ କି ପାଶ୍ଚାତ୍ୟ ସଂସ୍କୃତି ସହିତ ପରିଚିତ ନଥିଲେ । ସେମାନେ ସମସ୍ତେ ପ୍ରାଚ୍ୟ ପୁଷ୍ପର ସ୍ୱକୀୟ ସୌରଭ ବିକିରଣ କରି କରି ମଉଳିଗଲେ । ଏମାନଙ୍କ ଭିତରୁ ପଶ୍ଚିମ ଓଡ଼ିଶାର ଭୀମ ଭୋଇ ଓ ଦକ୍ଷିଣ ଓଡ଼ିଶାର ଗୋପାଳକୃଷ୍ଣ, ଉତ୍ତର ଓଡ଼ିଶା ବାଲେଶ୍ୱର ନଗରରେ ଓଡ଼ିଆ ସାହିତ୍ୟର ନବଯୁଗର ଭଗୀରଥ ଫକୀରମୋହନଙ୍କର ସମସାମୟିକ ଥିଲେ; କିନ୍ତୁ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଏହି ବିରାଟ ସ୍ଥପତିଗୁଡ଼ିକ ଏକାସମୟର ହୋଇ ମଧ୍ୟ କେହି କାହାକୁ ଜାଣିପାରି ନଥିଲେ– ଏହା ପରିତାପର ବିଷୟ; ମାତ୍ର ୭୦ ବର୍ଷ ତଳେ ଓଡ଼ିଆମାନେ କି ଅନ୍ଧକାରରେ ବାସକରୁଥିଲେ ତାହାହିଁ ସୂଚନା କରେ । ବସ୍ତୁତଃ ସେତେବେଳେ ଓଡ଼ିଆମାନଙ୍କର ଜାତୀୟ ଜୀବନ ବୋଲି କିଛି ଥିଲା କି ? ଓଡ଼ିଆ ଭାଷାଭାଷୀ ଚାରୋଟି ଭିନ୍ନ ଭିନ୍ନ ପ୍ରଦେଶରେ ବିଞ୍ଚି ହୋଇ ପଡ଼ି ରହିଥିଲେ । ସେତେବେଳେ ସେମାନଙ୍କର ଏକମାତ୍ର ଜାତୀୟ ଜୀବନ ଥିଲା ସେମାନଙ୍କର ସାହିତ୍ୟ । ଏବର ଓଡ଼ିଆମାନଙ୍କୁ ପ୍ରାଚୀନ ପୂର୍ବପୁରୁଷେ ଯେଉଁ ଉତ୍ତରାଧିକାର ଦେଇଯାଇଛନ୍ତି, ସେ ସମସ୍ତ ଭିତରେ ସର୍ବମୁଖ୍ୟ ହେଉଛି ଓଡ଼ିଆମାନଙ୍କର ଏହି ସାହିତ୍ୟ । ଦୀର୍ଘକାଳଧରି ପରସ୍ପରଠାରୁ ରାଜନୈତିକ ସମ୍ପର୍କ ଛିନ୍ନ, ଇତସ୍ତତଃ ବିକ୍ଷିପ୍ତ ଓଡ଼ିଆମାନଙ୍କୁ ସେମାନଙ୍କର ପ୍ରାଚୀନ ସାହିତ୍ୟ ଯେଉଁ ପରିମାଣରେ କଲ୍ୟାଣପ୍ରଦ ହୋଇପାରିଛି ଓ ଜାତୀୟ ଚେତନାର ପ୍ରକୃଷ୍ଟ ମାଧ୍ୟମ ହୋଇ ଆସିଛି ତାହା ବୁଝାଇବା ନିଷ୍ପ୍ରୟୋଜନ । ପ୍ରାଚୀନ ଯୁଗ, ଓଡ଼ିଆ ଭାଷାରେ ଗଦ୍ୟ ଓ ପଦ୍ୟରେ ଛାଡ଼ିଯାଇଛି ରାଶି ରାଶି ପୁରାଣ, କାବ୍ୟ-ସଂହିତା ଓ ଗାଥା । ପ୍ରାଚୀନ ଯୁଗ ସେଦିନ କେବଳ ପ୍ରତି ପ୍ରଧାନ ଗ୍ରାମ ନୁହେଁ, ପ୍ରତି ପ୍ରଧାନ ଓଡ଼ିଆ-ପରିବାରକୁ ମଧ୍ୟ ପ୍ରେରଣା ଯୋଗାଇ ପାରିଥିଲା ନିଜର ଏକ ପୁସ୍ତକାଳୟ ନେଇ ଗର୍ବ କରିବାକୁ । ଏହା ଓଡ଼ିଶାର ୫୦,୦୦୦ ଗ୍ରାମକୁ ଭରି ରଖିଥିଲା ଯାତ୍ରାଭିନୟ, ପୁରାଣାବୃତ୍ତି, ଛାନ୍ଦଚର୍ଚ୍ଚା ଓ କବିତା ପ୍ରତିଯୋଗିତାରେ । ଏକ କଥାରେ ପ୍ରାଚୀନ ଯୁଗ ଓଡ଼ିଶାର ନର ଓ ନାରୀ ସମାଜକୁ ଯଥାଯୋଗ୍ୟ ପରିମାଣରେ ସାହିତ୍ୟ-ସଚେତନ କରିଥିଲା । ମୁଦ୍ରାଯନ୍ତ୍ର ଓ ଡାକ ବିଭାଗ ସତ୍ତ୍ୱେ ପାଶ୍ଚାତ୍ୟାନୁକୃତ ଏବର ସାହିତ୍ୟ ପ୍ରାଚୀନ ସାହିତ୍ୟ ପରି ଓଡ଼ିଆ ଜନତା ଉପରେ ଆଦୌ ପ୍ରଭାବ ପକାଇ ପାରିନାହାନ୍ତି, ତାହା ଆଧୁନିକ ଲେଖକମାନଙ୍କ ପକ୍ଷରେ ନିଶ୍ଚୟ ଶ୍ଲାଘାର ବିଷୟ ନୁହେଁ ।

ପ୍ରାଚୀନ ଲେଖକମାନେ ଶ୍ରମ-ସାଧ୍ୟ ଲେଖନତାଳପତ୍ର ମାଧ୍ୟମରେ ଯେ ଜନପ୍ରିୟତା ଅର୍ଜନ କରୁଥିଲେ, ଆଜିର କବି ଓ ଲେଖକ କାହିଁକି ତା' ପାଉନାହାନ୍ତି ? ଏହା ନିଃସନ୍ଦେହ ଯେ ଓଡ଼ିଶାର ଜନତା ଏବେ ବି ତାଙ୍କର ସୌଷମିକ ଓ ଆଧ୍ୟାତ୍ମିକ ଆନନ୍ଦ ସଂଗ୍ରହ କରିଥାନ୍ତି, କେବଳ ସାରଳାଦାସଠୁ ଗୋପାଳକୃଷ୍ଣ ପର୍ଯ୍ୟନ୍ତ ପ୍ରାଚୀନ ଓଡ଼ିଆ ସାହିତ୍ୟର ସେହି ବରେଣ୍ୟ ସ୍ରଷ୍ଟା-ଗୋଷ୍ଠୀରୁ ।

## ଦଶମ ଅଧ୍ୟାୟର ପରିଶିଷ୍ଟ

### ଦୁଇଟି ପୁସ୍ତକ –

ପୂର୍ବ ଅଧ୍ୟାୟ ଭିତରେ ଯେଉଁଠି ପ୍ରାଚୀନ ଓଡ଼ିଆ ସାହିତ୍ୟର ବର୍ଣ୍ଣନା ଶେଷ ହେଉଛି, ସେଇଠି ଓଡ଼ିଆ ପାଠକେ ଅନ୍ତତଃ ଗୋଟିଏ ଅତି ପରିଚିତ ଓଡ଼ିଆ ବହିର ନାମୋଲ୍ଲେଖ ନ ଦେଖି ବିସ୍ମିତ ହୋଇପାରନ୍ତି; କିନ୍ତୁ ଲେଖକ ନିଜେ ପରେ ଭାବିଛି ଯେ, ପ୍ରାଚୀନ ଓଡ଼ିଆ ସାହିତ୍ୟର ବର୍ଣ୍ଣନା ଭିତରେ ବିପ୍ର ରାମଦାସଙ୍କ 'ଦାର୍ଢ୍ୟତା-ଭକ୍ତି ରସାମୃତ'ର ନାମୋଲ୍ଲେଖ ନକରିବା ନିଶ୍ଚୟ ଏକ ଅପରାଧ । ଇଂରାଜୀ ସଂସ୍କରଣରେ ତାହା ଅବଶ୍ୟ ଘଟିଯାଇଛି; କିନ୍ତୁ ତାହା ଲେଖକର ଅଜ୍ଞାତସାରରେ ହୋଇନାହିଁ । 'ଦାର୍ଢ୍ୟତାଭକ୍ତି' ଧର୍ମଗ୍ରନ୍ଥ ନା ସାହିତ୍ୟ ଗ୍ରନ୍ଥ ସେହି ବିଚାରରେହିଁ ଲେଖକ ଇଂରାଜୀ ସଂସ୍କରଣରେ ଏ ଗ୍ରନ୍ଥର ନାମୋଲ୍ଲେଖ କରିନଥିଲା; କିନ୍ତୁ କୌଣସି ପୁସ୍ତକର ଧର୍ମମତ ବା ରାଜନୈତିକ ମତ ଓ ତାର ଶିଳ୍ପସୌଷ୍ଠବ ଦୁଇଟା ସମ୍ପୂର୍ଣ୍ଣ ଅଲଗା କଥା । ବିପ୍ର ରାମଦାସଙ୍କ ଦାର୍ଢ୍ୟତାଭକ୍ତି ଯାହା ପ୍ରଚାର କରୁ ପଛେ, ଏହା ଯେ ଓଡ଼ିଆ ଭାଷାରେ ଏକ ସୁଲିଖିତ, ସୁଲଳିତ ପଦ୍ୟଗ୍ରନ୍ଥ, ଏଥିରେ ସନ୍ଦେହ ନାହିଁ । ଯଦି ଓଡ଼ିଆରେ ଅନ୍ୟ କୌଣସି କବି ବା ପୁସ୍ତକ ଜଗନ୍ନାଥ ଦାସ ଓ ତାଙ୍କ ଭାଗବତର ଲାଳିତ୍ୟ ଓ ସାବଲୀଳତାର ପାଖାପାଖି ଆସିପାରିଛନ୍ତି, ତେବେ ସେ ହେଉଛନ୍ତି ବିପ୍ର ରାମଦାସେ ଓ ତାଙ୍କ ଦାର୍ଢ୍ୟତାଭକ୍ତି ଏବଂ ବୋଧହୁଏ ଏହି କାରଣରୁହିଁ ଏ ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀରେ ଏପରି ପ୍ରସାର ଲାଭ କରିପାରିଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜୀବନଚରିତ ନାହିଁ କହିଲେ ଚଳେ । ଆଧୁନିକ ଯୁଗରେ ମଧ୍ୟ ସମ୍ମାନନୀୟ ଜୀବନୀ-ଗ୍ରନ୍ଥ ଓଡ଼ିଆରେ ବା କାହିଁ ? ଏପରି ସ୍ଥଳେ ରାମଦାସେ ଯେ ଦାର୍ଢ୍ୟତାଭକ୍ତିରେ ଏତେଗୁଡ଼ିଏ ଜୀବନୀ ସଂଗ୍ରହ କରି ପରିବେଷିତ କରିଯାଇଛନ୍ତି, ସେଥିପାଇଁ ସେ ଆମର ସର୍ବଥା ସମ୍ମାନାର୍ହ । କର୍ଣ୍ଣ ବା ହରିଶ୍ଚନ୍ଦ୍ରଙ୍କ ପରି ପୌରାଣିକ ଉପାଖ୍ୟାନ ସବୁରେ ସନ୍ତୁଷ୍ଟ ନ ହୋଇ ସେ ଯେ ଇତିହାସ ଓ ସମାଜରେ ଦେଖାଦେଇଥିବା ଜୀବନୀସବୁ ଯୋଗାଡ଼ କରିଯାଇଛନ୍ତି, ତାହା ଅନ୍ତତଃ ସେ ଯୁଗକୁ ଚାହିଁଲେ ଅତି ଶ୍ଳାଘାର ବିଷୟ କହିବାକୁ ହେବ । ଦାସେ ଏ ଯୁଗରେ ଜନ୍ମିଥିଲେ ନିଶ୍ଚୟ ଜଣେ ଉଚ୍ଚକୋଟିର ଜୀବନ-ଚରିତକାର ବା ଐତିହାସିକରୂପେ ଖ୍ୟାତିଲାଭ କରିଥାନ୍ତେ । ଆନ୍ଧ୍ରଦେଶରେ ଦୁଇଭାଇ ଆଙ୍କନା ଓ ମାଧନାର ଯେଉଁ ଚରିତ ସେ ବର୍ଣ୍ଣନା କରିଛନ୍ତି, ତାହା ନିଶ୍ଚୟ ଜିଜ୍ଞାସା, ଅନ୍ୱେଷଣ ଓ ଗବେଷଣା ସୂଚନା କରେ । ଅବଶ୍ୟ ସେଥିରେ ଗାଲଗଳ୍ପ ଯେ ରହିଯାଇଛି ସେଥିପାଇଁ ବିସ୍ମିତ ହେବାର

କଥା ନାହିଁ, କାରଣ ଭକ୍ତି-ଧର୍ମ ହେଲା ସେହି ଗୁଣାନ୍ୱିତ । ଇଷ୍ଟଦେବର କୃପାରୁ ଅଘଟନ ଘଟେ; ଏହାର ପ୍ରଚାର ଉପରେହିଁ ଭକ୍ତିବାଦ ଠିଆ । ଦାସଙ୍କ ଯୁଗରେ ଯେ କେବଳ ସେପରି ବିଶ୍ୱାସ କରୁଥିଲେ ତାହା ନୁହେଁ, ଏହି ବୈଜ୍ଞାନିକ ଯୁଗ ମଧ୍ୟ ସେ ବିଶ୍ୱାସ ଆଦୌ ପରିତ୍ୟାଗ କରିନାହିଁ । ଅଷ୍ଟାଦଶ ଶତାବ୍ଦୀର ବିଚାରା ରାମଦାସଙ୍କୁ ଦୋଷ ତେଣୁ କିପରି ଦେବା ? ଦାସଙ୍କ ଜିଜ୍ଞାସା ଓ ଗବେଷଣା ଯୋଗୁଁ ଆମେ ଭାରତର ଅନ୍ୟ ପ୍ରାନ୍ତର ମୀରା-ବାଈ ଓ କବିରଙ୍କ ପରି ମହାତ୍ମାମାନଙ୍କ ସହିତ ଓଡ଼ିଶାର ଦାସିଆ ବାଉରି ଓ ମଙ୍ଗଳା ଗଉଡ଼ଙ୍କୁ ମଧ୍ୟ ଜାଣିପାରିଛୁ, ସେ ହିଁ ଓଡ଼ିଆ ଭାଷା ଓ ସାହିତ୍ୟକୁ ବିପ୍ର ରାମଦାସଙ୍କର ମହତ୍ ଦାନ । ଦାସେ ବ୍ରାହ୍ମଣ ଥିଲେହେଁ ଅକାତରରେ ଶୂଦ୍ରଶ୍ରେଣୀର ସାଧୁଜନମାନଙ୍କୁ ଯେ ତାଙ୍କ ଗ୍ରନ୍ଥରେ ସମ୍ମାନନୀୟ ସ୍ଥାନ ଦେଇଯାଇଛନ୍ତି, ଏହା ତାଙ୍କର ଉଦାରଚେତନା, ପ୍ରକୃତ ବୈଷ୍ଣବଭାବ ଓ ଶ୍ରେଣୀଚେତନାହୀନ ସମାଜର ପରିକଳ୍ପନା ସୂଚିତ କରେ । ଉତ୍କଳ-ଦେଶରେ ଜାତି ଦ୍ୱେଷ ସେତେ ଉତ୍କଟ ନୁହେଁ, ଯେପରି ଦକ୍ଷିଣ-ଭାରତ ବା ଭାରତର ଅନ୍ୟାନ୍ୟ ପ୍ରାନ୍ତରେ । ଲେଖକର ବିଶ୍ୱାସ, ଏହି ଶ୍ଳାଘ୍ୟ ଉଦାରତା ପାଇଁ ଦେବଦେବ ଜଗନ୍ନାଥ ଓ ବିପ୍ର ରାମଦାସଙ୍କ ଏହି 'ଦାର୍ଢ୍ୟତାଭକ୍ତି' ହିଁ ଏକାନ୍ତ କାରଣ । ଉତ୍କଳର ପଲ୍ଲୀ ଅଞ୍ଚଳରେ ବ୍ରାହ୍ମଣ, କରଣ, ଖଣ୍ଡାୟତ ଶ୍ରେଣୀର ଲୋକେ, ହାଡ଼ି, କଣ୍ଡରା, ପାଣ ପ୍ରଭୃତି ସେକାଳରେ ଅପାଙ୍‌କ୍ତେୟ ଥିବା ଲୋକଙ୍କ ସହିତ ସଙ୍ଗାତ-ମଇତ୍ର, ବନ୍ଧୁ ବା ବେଭାରବନ୍ଧୁ ହେବାର ଚଳଣି ପରିଚିତ ଘଟଣା । ଓଡ଼ିଶାର ପ୍ରତି ପଲ୍ଲୀରେ ପଠିତ ଦାର୍ଢ୍ୟତାଭକ୍ତିର ଦାସିଆ ବାଉରି, ଅନନ୍ତା ଶବର ଉପାଖ୍ୟାନ ଏ ପ୍ରକାର ଉଦାର ବାତାବରଣ ସୃଷ୍ଟି କରିବାରେ ଯେ ଏକ ଗୁରୁତର ଭୂମିକା ନନେଇଛି, ତାହା ଦୃଢ଼ଭାବରେ କ[illegible] ହେବନି । ଗାଲଗଚ୍ଛ ସତ୍ତ୍ୱେ, ବିପ୍ର ରାମଦାସଙ୍କ ଦାର୍ଢ୍ୟତାଭକ୍ତି, ଜଗନ୍ନାଥ ଦାସଙ୍କ ଭାଗ[illegible]ତ ସହିତ କାନ୍ଧ ମିଶେଇ ଓଡ଼ିଶାରେ ଜନସାଧାରଣଙ୍କ ଭିତରେ ଏଇ ସେଦିନ ପର୍ଯ୍ୟନ୍ତ ଦୃଢ଼ ନୈତିକ ଚେତନା ଯେ ଠିଆ ରଖେଇଥିଲା, ଏଥିରେ ମଧ୍ୟ ସନ୍ଦେହ ନାହିଁ । ଭାଗବତ ଓ ଦାର୍ଢ୍ୟତାଭକ୍ତି ଓଡ଼ିଆଙ୍କୁ ପାଇକବିଦ୍ୟାରେ ନିପୁଣ କରାଇନପାରିଥାନ୍ତି; କିନ୍ତୁ ଏହା ନିଶ୍ଚୟ ଯେ, ଏହି ଗ୍ରନ୍ଥଦ୍ୱୟ ଓଡ଼ିଆଙ୍କୁ ଉତ୍ତମ ମନୁଷ୍ୟ ହେବାରେ ଯଥେଷ୍ଟ ସହାୟତା ଦେଇଆସିଛନ୍ତି । ଧୂର୍ତ୍ତ, କପଟି, ଅନ୍ୟାୟୀ, କୁଟଚକ୍ରୀ ହେବା ଯେଉଁ 'ସଭ୍ୟତା' ବା 'ପ୍ରଗତି'ର ଲକ୍ଷଣ, ସେ ମାପକାଠିରେ ଅବଶ୍ୟ ଜଗନ୍ନାଥଙ୍କ ଭାଗବତ ଓ ରାମଦାସଙ୍କ ଦାର୍ଢ୍ୟତାଭକ୍ତି ଅପାଙ୍‌କ୍ତେୟ, ଯଦିଓ ଆଜି ସେଇସବୁ ହୋଇଉଠିଛି ଯୁଗଧର୍ମ ।

ରାମଦାସଙ୍କ ଦାର୍ଢ୍ୟତାଭକ୍ତି ପୁଣି ଉତ୍କଳର ଗତ ଯୁଗର ସାମାଜିକ ଚିତ୍ରଶାଳାଭାବରେ ଅନନ୍ୟ ଓ ଅନୁପମ । ଆଜି 'ସାମନ୍ତଯୁଗ' ବା 'ସାମନ୍ତବାଦ' ଏକ ଦୃଶ୍ୟ ଘଟଣା ସୂଚନା କରେ; କିନ୍ତୁ ଦାସେ ବାଣପୁରର ଏକ ହରିଚନ୍ଦନ ରାଜାର ଯେଉଁ ଚିତ୍ର ଦେଇଯାଇଛନ୍ତି, ତାହା ପ୍ରତ୍ୟେକ ଶାସକର ପଠନୀୟ । ଏହି ରାଜା ଭକ୍ତ, ସଂଯମୀ ଓ ସୁଶାସକ ଥିଲେ; ଅନ୍ୟ କଥାରେ ସେ ଥିଲେ ଏକ ଛୋଟ ଅଶୋକ । ସେ ଥିଲେ ଏକପତ୍ନୀକ; କିନ୍ତୁ ନିଃସନ୍ତାନ ଥିଲେ । ରାଣୀଙ୍କ ମୃତ୍ୟୁ ପରେ ତାଙ୍କୁ ରାଜ୍ୟ ବା ସଂସାର ଭଲଲାଗିଲାନି ।

ସେ ଏକ ପୁତୁରାକୁ ଗାଦିରେ ବସାଇ ନିଜ ରାଜ୍ୟର ଶୋଳରୀ ପର୍ବତରେ ଏକ କୁଟୀର ରଚ଼ନା କରି ବାନପ୍ରସ୍ଥ ଜୀବନ ଯାପନ କଲେ; କିନ୍ତୁ ତେଣେ ସେ ପୁତୁରା ହୋଇଉଠିଲା ଏକ ଅତ୍ୟାଚ଼ାରୀ ଓ ବ୍ୟଭିଚ଼ାରୀ ରାଜା । ପ୍ରଜାଏ ଶୋଳରୀ ପାହାଡ଼ରେ ବୃଦ୍ଧ ଜନପ୍ରିୟ ରାଜାଙ୍କୁ ଭେଟି ପୁଣି ଶାସନଦଣ୍ଡ ହାତକୁ ନେବାକୁ ଅନୁରୋଧ କଲେ । ହରିଚନ୍ଦନ ପୁତୁରାକୁ ଡକାଇଲେ । ସେ ଆସିଲାନି; ବରଂ 'ତୁ କିଏ' ବୋଲି ଉଦ୍ଧତ ଉତ୍ତର ଦେଲା । ବୃଦ୍ଧ ରାଜା ଏପ୍ରକାର ଅକୃତଜ୍ଞତା ଓ ପାପାଚ଼ାରରେ ବିମୂଢ଼ ହୋଇ ଚିତ୍କାର କରିଉଠିଲେ— ''ହେ ଈଶ୍ୱର, ହେ ଦିଗପାଳଗଣ, ମୋ ବଂଶ ଲୋପ ପାଉ । ଆଉ ପୃଥିବୀ ଫାଟିଯାଉ, ମୁଁ ମଧ ସେଥିରେ ପଶି ଲୁପ୍ତ ହୋଇଯାଏ ଏ ପାପ ଓ ଔଦ୍ଧତ୍ୟ ଦେଖିବା ପରିବର୍ତ୍ତରେ ।'' ପୃଥିବୀ ଫାଟିଲା । ସାଧୁ ଶାସକ ହରିଚନ୍ଦନ ଇଷ୍ଟଦେବଙ୍କୁ ଧ୍ୟାନ କରି ସେହି ବିବରରେ ପଶିଗଲେ ।

ହୁଏତ ବୃଦ୍ଧ ରାଜା ହରିଚନ୍ଦନ ପୁତୁରାର ଅକୃତଜ୍ଞତା, ଔଦ୍ଧତ୍ୟ ଓ ପ୍ରଜାଙ୍କର ଦୁର୍ଦ୍ଦଶାର କାହାଣୀ ଆଜି ଶୁଣି ଆଜିର ଅତି-ପରିଚ଼ିତ ରକ୍ତଚାପ ରୋଗରେ ହଠାତ୍ ମୃତ୍ୟୁପ୍ରାପ୍ତ ହୋଇଥିବେ; ଯାହାକୁ ଦାସେ ରୂପକରେ ବର୍ଣ୍ଣନା କରିଛନ୍ତି; କିନ୍ତୁ 'କ୍ଷମତା ନିରାସକ୍ତ', କେବଳ ଜନୋପକାର ଦୃଷ୍ଟି ଏପରି ଜଣେ ଶାସକର ଚିତ୍ର ସମଗ୍ର ଓଡ଼ିଆ ସାହିତ୍ୟରେ ଅନ୍ୟତ୍ର କାହିଁ ଅଛି କି ?

**କାଞ୍ଚୀକାବେରୀ –**

ପୂର୍ବ ଅଧ୍ୟାୟରେ ଆଉ ଯେଉଁ ଓଡ଼ିଆ ବହିଟିର ନାମୋଲ୍ଲେଖ ହେବା ଉଚ଼ିତ ଥିଲା, ତାହା ହେଉଛି ପୁରୁଷୋତ୍ତମ ଦାସଙ୍କ 'କାଞ୍ଚୀକାବେରୀ' କାବ୍ୟ । ବସ୍ତୁତଃ ଏ ବହିଟିକୁ ଲେଖକ ଏ ପୁସ୍ତକର ଇଂରାଜୀ-ସଂସ୍କରଣ ଛାପା ସରିଲା ପର୍ଯ୍ୟନ୍ତ ଦେଖିନଥିଲା; ପରେଇ ତାହା ସେ ପଢ଼ିବାକୁ ପାଇଛି; କିନ୍ତୁ ପଢ଼ି ଦେଖିଛି ଯେ, ଐତିହାସିକ ନାମ ଧାରଣ କଲେହେଁ ପୁରୁଷୋତ୍ତମ ଦାସଙ୍କ କାଞ୍ଚୀକାବେରୀ କାବ୍ୟ ବସ୍ତୁତଃ ଆଉ ଏକ 'ଦାର୍ଢ୍ୟତାଭକ୍ତି' ମାତ୍ର କହିଲେ ଚଳେ । ଏ କାବ୍ୟର ନାୟକ ସମ୍ରାଟ୍ ପୁରୁଷୋତ୍ତମ ଦେବ ନୁହନ୍ତି ବା ଏହାର ନାୟିକା ନୁହନ୍ତି କାଞ୍ଚୀ ରାଜକନ୍ୟା ପଦ୍ମାବତୀ, ଯେପରି ସେମାନେ ପରେ ଆଧୁନିକ ଯୁଗରେ ଦେଖାଦେଇଛନ୍ତି ରାମଶଙ୍କର ରାୟଙ୍କ 'କାଞ୍ଚୀକାବେରୀ' ବା ଗୋଦାବରୀଶ ମିଶ୍ରଙ୍କର 'ପୁରୁଷୋତ୍ତମ ଦେବ' ନାଟକରେ । ପୁରୁଷୋତ୍ତମ ଦାସଙ୍କ 'କାଞ୍ଚୀକାବେରୀ' କାବ୍ୟର ନାୟକ ପ୍ରକୃତରେ ସ୍ୱୟଂ ଜଗନ୍ନାଥ । ସେ ଅବଶ୍ୟ ଏ ଗ୍ରନ୍ଥରେ ମୂକ ଓ ଅଦୃଶ୍ୟ । ଓତପ୍ରୋତ ଭାବରେ ସେ ବିସ୍ତାରିତ ରହିଛନ୍ତି; ଗ୍ରନ୍ଥର ଆଦ୍ୟରୁ ଶେଷ ଯାଏ; କିନ୍ତୁ ବସ୍ତୁତଃ ଏ କାବ୍ୟର ଅନ୍ୟ ନାମ ହେବା ଉଚ଼ିତ 'ଜଗନ୍ନାଥ ମାହାତ୍ମ୍ୟ' କାବ୍ୟ । କାରଣ ପୁସ୍ତକର ଶେଷ ଭାଗରେ ଆମେ ଦେଖୁ ଯେ କାଞ୍ଚୀ ଓ ଉତ୍କଳବାହିନୀର ରକ୍ତାକ୍ତ ସଂଗ୍ରାମର ଶେଷ ନିଷ୍ପତ୍ତି ହୋଇଛି, ଉଭୟପଟର ସେନାପତିମାନଙ୍କ ରଣକୌଶଳ ବା ସାଧାରଣ ସୈନିକର ସାହସଯୋଗୁଁ ନୁହେଁ, ତାହା ଘଟିଛି କାଞ୍ଚୀ-ରାଜ-ଇଷ୍ଟ-ଦେବ ଗଣପତିଙ୍କ ମୂଷା ଓ ଉତ୍କଳ-ରାଜ-ଇଷ୍ଟ-ଦେବ ଜଗନ୍ନାଥ ସେହି ମୂଷା ବିରୁଦ୍ଧରେ ଠିଆ କରେଇବା ଏକ ମାର୍ଜାରର

ଯୁଦ୍ଧରେ । କାଞ୍ଚୀ ଦୁର୍ଗ ବାହାରେ ଗଣପତି ଓ ଜଗନ୍ନାଥଙ୍କ ବ୍ୟକ୍ତିଗତ ସଂଗ୍ରାମ ମଧ୍ୟ ବର୍ଣ୍ଣିତ । ଶେଷରେ ଗଣପତି ପରାଜିତ ହୋଇ ଜଗନ୍ନାଥଙ୍କ ଶରଣ ପଶିଲେ । ଜଗନ୍ନାଥେ ହସି ହସି କହିଲେ, "କିଓ ଗଣନାଥ, ମତେ ତମେ ଏତେବେଳଯାଏଁ ଚିହ୍ନିପାରିଲନି ? ହଉ, ହଉ, ଯା, ଯା, ତମ ରାଜାକୁ କହ ଯୁଦ୍ଧ ବନ୍ଦ କରୁ ଓ ଗଡ଼ ଛାଡ଼ି ପଳାଉ ।" ଗଣପତି କାଞ୍ଚୀ-ରାଜାଙ୍କୁ ସ୍ୱପ୍ନରେ ସେହିପରି ଉପଦେଶ ଦିଅନ୍ତେ କାଞ୍ଚୀକାବେରୀ ଯୁଦ୍ଧରେ ଓଡ଼ିଶା ସମ୍ରାଟ୍ ବିଜୟୀହୋଇ ଫେରିଲେ ଏବଂ କାଞ୍ଚୀରାଜ-ଇଷ୍ଟ-ଦେବ ଗଣପତିଙ୍କୁ ପରାଜୟର ସ୍ମୃତିରୂପେ ପୁରୀମନ୍ଦିରରେ ଜଗନ୍ନାଥଙ୍କ ପଛପଟେ ରଖିଲେ ।

ତେଣୁ ପୁରୁଷୋତ୍ତମ ଦାସଙ୍କ କାଞ୍ଚୀକାବେରୀ ଆଦୌ ଐତିହାସିକ କାବ୍ୟ ନୁହେଁ, ଏହା ଏକ ଭକ୍ତିକାବ୍ୟ ମାତ୍ର; ରାମଦାସଙ୍କ ଦାର୍ଢ୍ୟତାଭକ୍ତିର ଏକ ଉପଯୁକ୍ତ ପରିଶିଷ୍ଟ । ଏଥିରେ ଦେବତା ଏକ, ଭକ୍ତି ଏକ; କିନ୍ତୁ ଭକ୍ତ ପ୍ରକୃତରେ ଚାରି ଜଣ । ସେମାନେ ହେଉଛନ୍ତି ସ୍ୱୟଂ ଲେଖକ ପୁରୁଷୋତ୍ତମ, ରାଜା ପୁରୁଷୋତ୍ତମ, ମାଣିକୀ ଗଉଡୁଣୀ ଓ କାବ୍ୟ ଶେଷରେ ନିତାନ୍ତ ଅପ୍ରାସଙ୍ଗିକ ଭାବରେ ଦେଖାଦେଇଥିବା ଶିଖର ଗୁଡ଼ିଆ । ପ୍ରତ୍ୟେକଙ୍କ ସମ୍ପର୍କରେ ଗ୍ରନ୍ଥାନୁଯାୟୀ କିଛି କହିବା ।

ଲେଖକ ପୁରୁଷୋତ୍ତମ ଭକ୍ତ ହେଲେହେଁ ରଚନାରୁ କୌଣସି ପ୍ରକାରେ ଏକ ପାଠୁଆ ଲୋକ ଥିବାର ଜଣାପଡୁନି । ତାଙ୍କ କାଞ୍ଚୀକାବେରୀର ଭାଷା ଅଶିକ୍ଷିତ ଜନର ଭାଷାଠାରୁ ବିଶେଷ ଉଚ୍ଚତର ନୁହେଁ । ଯତିପାତ ଅତ୍ୟନ୍ତ ଦୁର୍ବଳ, ପାଲାବାଲାମାନେ ମୁହେଁ ମୁହେଁ ଯେଉଁ ପଦ ରଚନା କରନ୍ତି ସେହି ଶ୍ରେଣୀର । ସେଥିରେ କୌଣସି ପ୍ରକାର ବିଶେଷ ଶିଳ୍ପ ନାହିଁ । ଲେଖକଙ୍କର ସନ୍ଦେହ ହେଉଛି ଯେ, ସମ୍ରାଟ୍ ପୁରୁଷୋତ୍ତମଙ୍କ ସହିତ ନିଜ ନାମର ସାମ୍ୟ ଥିବାରୁ ସେହି ସୂତ୍ରରେ ସାହିତ୍ୟିକ ଅମରତ୍ୱ ଲାଭ ଆଶାରେ ହୁଏତ ସେ ଏହି ପୁରୁଷୋତ୍ତମ-ପଦ୍ମାବତୀ ଚରିତ ଅବା ହାତକୁ ନେଲେ । ଦ୍ୱିତୀୟ ସନ୍ଦେହ ହେଉଛି ଯେ, ଲେଖକ ନିଜେ ସାମାଜିକ ଭାବରେ ଗୋପାଳଶ୍ରେଣୀର ଲୋକ ଥିଲେ ଏବଂ ଜଗନ୍ନାଥଙ୍କୁ ଗୋପାଳ କରି ଓ ଗଉଡୁଣୀ ମାଣିକକୁ ଜଗନ୍ନାଥ-ଅନୁଗୃହୀତା କରି ସମଗ୍ର ଗୋପାଳ-ଜାତିକୁ ସମ୍ମାନିତ କରାଇବା ଆଶାରେ ମଧ୍ୟ ସେ ଏହି କାବ୍ୟ ଲେଖିବାକୁ ଯାଇ ପାରିଥାନ୍ତି । ସରଳା ମାଣିକୀ କଳା-ଗୋରା ରାଉତ ଭାଇମାନଙ୍କୁ ତାଙ୍କର ପରିଚୟ ପଚାରନ୍ତେ, ଜଗନ୍ନାଥେ ବୃନ୍ଦାବନ ଆଡୁ ନିଜର ପରିଚୟ ଦେଲେ ଓ ତା' ଆଗରେ ନିଜର 'ଗଉଡ଼ତ୍ୱ' ପ୍ରମାଣିତ କରେଇବା ପାଇଁ କହୁଛନ୍ତି –

"ଆମ୍ଭର ଜୀବିକାମାନ ଅଭ୍ୟାସିଲୁ ତହିଁ
ଅଙ୍ଗୁଳିରେ ବିଣ୍ଡି ଦେଖ ଗାଈ ଦୁହିଁ ଦୁହିଁ ।
ସବୁ କଥା ଶିଖିଲି ଗାଈଙ୍କ ପଛେ ବୁଲି
ଏବେ ଲୋକେ ବୋଲନ୍ତି ଗୋପାଳଜାତି ବୋଲି ।"

ସାଧାରଣତଃ ଭକ୍ତାନୁରୂପହିଁ ଭଗବାନ୍; ତେଣୁ ସେଥିରେ ବିସ୍ମିତ ହେବାର କିଛି ନାହିଁ । ପୁରୁଷୋତ୍ତମ ଦାସେ ଖୁବ୍ ସମ୍ଭବତଃ ଜଗନ୍ନାଥ ମନ୍ଦିରର ଏକ ନିମ୍ନଶ୍ରେଣୀର ସେବକ

ଥିଲେ । କାବ୍ୟ ଶେଷରେ ସେ କହିଛନ୍ତି –

''ସେ କାଳିଆ ରାଉତର ଦାସର ମୁଁ ଦାସ,
ବରୁଣ ଦାସ ନାତି ମୁଁ, ଭଗୀରଥ ଶିଷ୍ୟ ।
ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ,
ଏହି ଚାରି ସାମନ୍ତରୁ ନ ଜାଣଇଁ ଆନ ।
ତାଙ୍କରି ନିମକ ଖାଇ ତାଙ୍କରି ଚାକିରି
ବଖାଣୁଥାଇ ତାହା ମୁଁ ଯାହା-ତାହା କରି ।''

ଏହି ଗ୍ରନ୍ଥରେ ଦାସେ ବଡ଼ ଜୋର୍‌ରେ ମଧ କହିଛନ୍ତି ଯେ, ପୁରୁଷୋତ୍ତମ ଦେବ କାଞ୍ଚୀ ଯୁଦ୍ଧକୁ ଗଲାବେଳେ 'ପ୍ରତିଜ୍ଞା' କରିଥିଲେ ଯେ, କାଞ୍ଚୀ-ବିଜୟ ପରେ ସେ ଯାହା ଜିତ-ସମ୍ପଦ ପାଇବେ ତାହା ଜଗନ୍ନାଥଙ୍କୁ ଦେଇଦେବେ । ସର୍ବପ୍ରଥମେ କିନ୍ତୁ ତାଙ୍କ ଅକ୍ତିୟାରକୁ କୁଆଡ଼େ ଆସିଲା କାଞ୍ଚୀରାଜାର ମଇଁଷିପଲ । ଫଳରେ ସେହି କାଳରୁ, ଅର୍ଥାତ୍ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱରେହିଁ ପୁରୀ ଦେଉଳରେ ପୂର୍ବରୁ ବ୍ୟବହୃତ ନଡ଼ି ଆତେଲ ପରିବର୍ତ୍ତରେ ମଇଁଷି ଘିଅ ପ୍ରବର୍ତ୍ତିତ ହେଲା । ଏହାର ସତ୍ୟ ମିଥ୍ୟା ପ୍ରମାଣ କରିବା ଲେଖକର ସାଧର ବାହାରେ ଓ ସାହିତ୍ୟିକ ଆଲୋଚନା ପାଇଁ ତାହା ଏକାନ୍ତ ନିଷ୍ପ୍ରୟୋଜନ ମଧ । ତେବେ ଏ ବର୍ଣ୍ଣନା ମଧ ଲେଖକର ସନ୍ଦେହକୁ ଦୃଢ଼ୀଭୂତ କରୁଛି ଯେ, ଲେଖକ ପୁରୁଷୋତ୍ତମ ସାମାଜିକ ଭାବରେ ଗାଇ-ମଇଁଷି-ସଂପୃକ୍ତ ଲୋକ ଥିଲେ ଓ ତାଙ୍କର ଏ କାବ୍ୟ ନିଜ ଶ୍ରେଣୀର ସମ୍ମାନ ପାଇଁ ଅନ୍ତତଃ ଆଂଶିକ ଭାବରେ ପ୍ରେରଣାପ୍ରାପ୍ତ ।

କେବଳ ଜଗନ୍ନାଥଙ୍କ ବିଶେଷ ଅନୁଗ୍ରହଯୋଗୁଁ ଯେ, ପୋଇଲୀ-ପୁଅ 'ପୁରିଆ' କପିଳେନ୍ଦ୍ର ଦେବଙ୍କର ରାଣୀ-ଗର୍ଭ-ଜାତ ପୁଅମାନେ ଥାଉ ଥାଉ ଓଡ଼ିଶାର ରାଜା ହେଲା ଓ କାଞ୍ଚୀ ଜୟ କରି ପଦ୍ମାବତୀଙ୍କୁ ବିବାହ କଲା, ତାହାହିଁ ଏହି ଗ୍ରନ୍ଥର ବାଣୀ ବା ମେସେଜ୍ । ଅର୍ଥାତ୍, ଜଗନ୍ନାଥହିଁ ସବୁ କରନ୍ତି । ଏ ଗ୍ରନ୍ଥ ଅନୁସାରେ ନିଜ ଅପମାନର ପ୍ରତିଶୋଧ ପାଇଁ ପୁରୁଷୋତ୍ତମ ଦେବ କାଞ୍ଚୀ ଅଭିଯାନ କରିନଥିଲେ । ଜଗନ୍ନାଥ ସ୍ୱପ୍ନରେ ତାଙ୍କୁ ଆଦେଶ ଦେବାରୁହିଁ ସେ ଗଲେ । ତେଣୁ ଏ ଗ୍ରନ୍ଥରେ ପୁରୁଷୋତ୍ତମ ଦେବ ସାମ୍ରାଜ୍ୟ-ନିର୍ମାତା ବିଜୟୀ ବୀର ନୁହନ୍ତି । ସେ ଜଗନ୍ନାଥଙ୍କଦ୍ୱାରା ବିଶେଷଭାବରେ ଅନୁଗୃହୀତ ଜଣେ ବ୍ୟକ୍ତି ମାତ୍ର । ପରେ ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମ ଦେବ' ଯେପରି ଯୋଦ୍ଧା ପ୍ରେମିକ ରୂପେ ଦେଖାଦେବେ, ଏ ଗ୍ରନ୍ଥରେ ତାହାର ଚେଷ୍ଟା ମଧ ହୋଇନାହିଁ ।

ଏ ଗ୍ରନ୍ଥରେ ପ୍ରକୃତ ମନୋଜ୍ଞ ଅଂଶ କିନ୍ତୁ ହେଉଛି ମାଣିକୀ ଗଉଡୁଣୀ ଚରିତ । ଏହା ସଂଯତ ସ୍ୱାଭାବିକ, ସୁନ୍ଦର ଓ ସାବଲୀଳ । ସରଳା ପଲ୍ଲୀବାଳା ମାଣିକୀ କେବେହେଲେ ଜାଣିନାହିଁ ଯେ, ସେ ଯାହାଙ୍କୁ ଦୁଧ-ଦହି-ଛେନା ଖୁଆଇଲା ସେ ଜଗନ୍ନାଥ ଓ ବଳଭଦ୍ର । ସେ ସେମାନଙ୍କୁ ଉଚ୍ଚବଂଶଜ, ସୁନ୍ଦର ଯୋଦ୍ଧାପୁରୁଷ ବୋଲି ଧରିଥିଲା ଓ ସେହି ଭାବରେହିଁ ତା'ର ପସରା ତାଙ୍କୁ ମେଲାଇ ଦେଇଥିଲା । ସେ ଥିଲା ସୁନ୍ଦରୀ ଓ ଯୌବନବତୀ । ସୁନ୍ଦର, ସୁଗଠିତ, ସୁବଂଶଜ ସୈନିକ ପୁରୁଷ ପ୍ରତି ତାର ମନ (ବିବାହିତା ହେବା ସତ୍ତ୍ୱେ) ଯେ ଢଳିବ, ଏହା

ମଧ୍ୟ ଅସ୍ୱାଭାବିକ ନୁହେଁ । ତାହାହିଁ ଏହି ଗ୍ରନ୍ଥରେ ବର୍ଣ୍ଣିତ ଓ ତାହାହିଁ ଏ ଗ୍ରନ୍ଥର ଶ୍ରେଷ୍ଠାଂଶ । ଅପରିଚ଼ିତ ସେହି ଦୁଇ ସୁନ୍ଦର ପୁରୁଷ ଓ ଅପରିଚ଼ିତା ମାଣିକୀ ମଧ୍ୟରେ ଘଟିଥିବା କଥୋପକଥନ ମଧ୍ୟ ହୋଇଛି ସୁନ୍ଦର, ଚତୁର ଓ ସ୍ୱାଭାବିକ । ଜଗନ୍ନାଥେ ପଚ଼ାରିଲେ –

''ତରକ ଯେ ବିକାକିଣା, ଜାଣଟିକି ଛନ୍ଦ / ଦେଖିଣ ପାରନ୍ତିଟିକି ଶାଶୁ ଯେ ନଣନ୍ଦ ।
ଅଳପ କରିଣ ତୁମ୍ଭେ ଘରଠାରୁ ଆଣି / ବହୁତ ହେବାପାଇଁ ପୂରାଅଟି ପାଣି ।''

ମାଣିକୀ ଏଥିକି ଉତ୍ତର ଦେଲା –

''ହସ ହସ ହୋଇଣ ଯେ ବୋଲଇ ମାଣିକୀ –
ଆମ୍ଭର ତ ଜୀବିକା ସେ, ତାହା ନ ଜାଣ କି ।
× × ×
ଛନ୍ଦ ମନ୍ଦ କଥା ଯାହା କହିଲ ଗୋସାଇଁ
ଛନ୍ଦ ନ ଶିଖିଲେ ଦାଣ୍ଡେ ଅଯୋଗ୍ୟ ବୋଲାଇ ।''

ମାଣିକୀ ଦୂରରୁ କଳା ଘୋଡ଼ା, ଧଳା ଘୋଡ଼ାରେ ବସି ଦୁଇ ରାଉତଙ୍କୁ ଯେତେବେଳେ ଦେଖିଲା, ସେ ଏହିପରି ବିଚ଼ାର କଲା –

''ରାଉତଙ୍କୁ ଦେଖିଣ ମାଣିକୀ ଚିତ୍ତ ମୋହି
ପିଛଡ଼ା ନ ଚଳଇ, ସ୍ଥଗିତ ହୋଇ ରହି ।
ନବୀନ କିଶୋର ସେ ଯେ ନବୀନ ମୂରତି
କଳା ଧଳା ଦୁଇ ଭାଇଙ୍କର ଦିବ୍ୟ ଜ୍ୟୋତି ।
ବିଚ଼ାରଇ ମାଣିକୀ ଏ ବଡ଼ ସୁକୁମାର
ଏଡ଼େ ଯୁବାକାଳେ ଏ ବିଦେଶ ଆସିବାର ।
ଅନେକ ରାଉତ ଯେ ଦେଖିଛି ଲସକର
ଏମନ୍ତ ଘୋଡ଼ା ମୁଁ ଦେଖି ନାହିଁ ନୟନର ।
କଳା ଧଳା ରାଉତଙ୍କୁ ଘୋଡ଼ା କଳା, ଧଳା
ଗୋରାକୁ ତୋରା କଳା, କଳାକୁ ତୋରା ଧଳା ।
ନବରତ୍ନ ଅଳଙ୍କାରେ ସୁନ୍ଦର ଶରୀର
ମହାଯୋଦ୍ଧା ରାଉତ ଏ, ସମର୍ଥ ସବାର ।
ଯୁଦ୍ଧ କରିବାକୁ ଏ ଯାଉଛନ୍ତି କାହିଁ
ଅନେକ ଯେ ଶସ୍ତ୍ର ଅଛି କଳନା ନ ଯାଇ ।
ବଡ଼ଲୋକର ଏ ପୁତ୍ର ଦୁହେଁ ଯୁବାକାଳେ
ମନ ମୋ ରହିଲା ଲାଖି ଚାହିଁବା ମାତ୍ରରେ ।
ରାଉତ ମାହୁନ୍ତ ହେଉ କି ଅବା ପଦାତି
ଯୁବାକାଳେ ଥୟ ନୋହେ ମଦନ ସମ୍ପତ୍ତି ।
ଦେଖିବି ମୁଁ ଆଗ ଏଥି ନୟନ ପୂରାଇ
କିଛି ନ ଦେଇ ପଛେ ମାଗଣା ଯା'ନ୍ତୁ ଖାଇ ।''

ମୁଗ୍‌ଧା ମାଣିକୀ ରାଉତ ଦୁହିଁଙ୍କି ଆଗଭର ହୋଇ ଘୋଡ଼ାରୁ ଓହ୍ଲାଇ ବିଶ୍ରାମ କରି ଓ ଘୋଡ଼ାଙ୍କୁ ନିକଟ ପୋଖରୀରୁ ପାଣି ପିଆଇ ଓ କିଛି ଦୁଧ ଦହି ଖାଇ ଯିବାପାଇଁ ଅନୁରୋଧ କଲା । ଜଗନ୍ନାଥ-ବଳଭଦ୍ର କହିଲେ ଯେ ସେମାନଙ୍କୁ ବହୁ ଦୂର ଯିବାକୁ ଅଛି , ସେମାନେ ଘୋଡ଼ାରୁ ଓହ୍ଲାଇବେ ନାହିଁ । ସେ ଯଦି ଛେନା ଦେବ, ତେବେ ସେହି ଘୋଡ଼ା ଉପରେ ବସି ହିଁ ଖାଇ ଯିବେ ।

"ସିପାହି ଲୋକ ଯେ ଆମ୍ଭେ ରୁଟି ପାଣି ଖାଉଁ
ରୁଟି ପାଣି ଖାଇ ଆମ୍ଭେ ସଦା ଯୁଝୁ ଥାଉ ।
ଶଉଚ ଅଶଉଚ ଯେ ସବୁ ଆମ୍ଭ ତହିଁ
ଯେଉଁ ସ୍ଥାନେ ଯାହା ଦେଖୁ ତାହା ଯାଉଁ ଖାଇ ।"

ଜଗନ୍ନାଥଙ୍କୁ ଦହି ବଢ଼ାଇଦେବାବେଳେ ତାଙ୍କ ଗୋଡ଼ରେ ଦହି ପଡ଼ିଗଲା । ମାଣିକୀ ସେତକ ପୋଛିବା ଛଳରେ ସେହି ବରେଣ୍ୟ ପଦକୁ ବକ୍ଷରେ ଚାପିଧରିବା ଓ ସେହି ସୂତ୍ରରେ ଅପୂର୍ବ ଭାବାନୁଭୂତି ପାଇବା ବୈଷ୍ଣବତତ୍ତ୍ୱର ଏକ ପରମ ସିଦ୍ଧି । ଦହି ଦୁଧ ଖାଇ ରାଉତ ଦୁହେଁ ଯେତେବେଳେ ଯିବାକୁ ବାହାରିଲେ, ସେତେବେଳେ ମାଣିକୀର ସେସବୁର ମୂଲ୍ୟ ପାଇବା ପାଇଁ ଚେତା ପଶିଲା । ବିନା କଉଡ଼ିରେ ଘରକୁ ଫେରିଗଲେ ଘରଲୋକେ କ'ଣ କହିବେ ? କିନ୍ତୁ ଏ ଅପୂର୍ବ ଅନୁଭବ ପରେ, ସେହି ପୁରୁଣା ଘର, ସେହି ଦୈନନ୍ଦିନ ଜୀବନକୁ ଧରି ସେ ଆଉ ରହିପାରିବ କି ? ସେ ପ୍ରସ୍ତାବ କଲା, ରାଉତେ ବରଂ ତାକୁ ସାଥିରେ ନେଇଯା'ନ୍ତୁ । ରାଉତେ ତାହା ଏକାନ୍ତ ଅସାମାଜିକ ହେବ ବୋଲି ତାକୁ ବାରଣ କଲେ । କାଳିଆ ରାଉତେ ମୂଲ୍ୟ ପାଇଁ ହାତରୁ ରତ୍ନମୁଦି କାଢ଼ି ଦେଲେ । ତା'ପର ଘଟଣା ସର୍ବବିଦିତ; ତେଣୁ ବର୍ଣ୍ଣନା ନିଷ୍ପ୍ରୟୋଜନ ।

ଗ୍ରନ୍ଥର ଚତୁର୍ଥ ଭକ୍ତ ହେଉଛି ଜଗନ୍ନାଥ ଦେଉଳ ନିକଟରେ ଦୋକାନ ବସେଇଥିବା ଶିଖର ଗୁଡ଼ିଆ । ଏହାର ଆବିର୍ଭାବ ଏକାନ୍ତ ଅପ୍ରାସଙ୍ଗିକ । ଖରାରେ ଅପନ୍ତରା ବାଲିରେ ଯିବାବେଳେ ହଠାତ୍ ମିଳିଲେ ଦହି-ଛେନା ଖାଇବା ସ୍ୱାଭାବିକ ବ୍ୟବହାର; କିନ୍ତୁ କେହି ଲୋକ ବିଦେଶରୁ ଫେରି ନିଜ ଘର ପାଖରେ ହେବାବେଳେ ଗୋଟେ ଗୁଡ଼ିଆକୁ ମରିଚ-ପଣା ମାଗିବ କିପରି ? ସେ ଗୁଡ଼ିଆ ପୁଣି କହୁଛି ଯେ, ସେ ଭୋଗ ପାଇଁ ସରଞ୍ଜାମ ତା'ଠି ନାହିଁ । ଜଗନ୍ନାଥେ କହିଲେ 'ଯା ତୋ ଶିକା ଦେଖ୍, ଦେଖିବୁ ସବୁ ଅଛି ।' ସେୟା ହେଲା ଓ ସେମାନେ ପଣା ପିଇଲେ । ପୁଣି ମାଣିକୀକୁ ମୁଦି ଯେମିତି ଦେଇଥିଲେ, ଶିଖର ଗୁଡ଼ିଆ ପାଖରେ ସେଇମିତି ଘୋଡ଼ା କୋରଡ଼ାଟିଏ ଛାଡ଼ିଦେଇଗଲେ । ଏ କେବଳ ଉଦ୍ଭଟ ଭକ୍ତି-ଧର୍ମର ପ୍ରଚାର; ଯାହାର କୌଣସି ଯୁକ୍ତି ବା ମୂଲ୍ୟ ନାହିଁ ଏବଂ ଯା' ବିରୁଦ୍ଧରେ ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ ଜୀବନଯାକ ଅଭିଯାନ କରିଆସିଥିଲେ ।

ବ୍ରଜନାଥ ବଡ଼ଜେନାଙ୍କ 'ସମରତରଙ୍ଗ' ସମଗ୍ର ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ଏକମାତ୍ର ପ୍ରକୃତ ସମର-ଗାଥା ଓ ଐତିହାସିକ କାବ୍ୟ । ପୁରୁଷୋତ୍ତମ ଦାସଙ୍କ 'କାଞ୍ଚୀ-

କାବେରୀ' କାବ୍ୟ ସେହି ଗୌରବର ଅଂଶୀଦାର ହୋଇପାରିଥାନ୍ତା, ଯଦି ତାର ଲେଖକ ପୁରୁଷୋତ୍ତମ ଦାସେ ବଡ଼ଯେନାଙ୍କ ଅଗ୍ରଗାମୀ ସାହସ ଓ ପ୍ରକୃତ ସ୍ରଷ୍ଟାର ଅନ୍ତର୍ଦୃଷ୍ଟିର ଅଧିକାରୀ ହୋଇଥାନ୍ତେ । ମୂଷା-ବିରାଡ଼ିଙ୍କ ଦ୍ୱାରା ଐତିହାସିକ ସଂଗ୍ରାମର ନିଷ୍ପତ୍ତି ଯେ ହୋଇପାରେ, ଏହା କେବଳ ନିମ୍ନଶ୍ରେଣୀର ଚେତନା ଗ୍ରହଣ କରିପାରେ । ବଡ଼ଯେନା ଏ ସ୍ତରର ଜୀବ ନଥିବାରୁହିଁ ସମରତରଙ୍ଗ ଓ ଅମ୍ବିକାବିଳାସ ପରି ଅନନ୍ୟ ଗ୍ରନ୍ଥ ଲେଖିଗଲେ, ଯାହାର ନୂତନତ୍ୱ (ମଡର୍ଣିଟି) ଆଜି ବି ଆମକୁ ବିସ୍ମିତ କରୁଛି । ଯେଉଁ ରଚନାରେ ଅନୁପମ ଶିଳ୍ପ ସହିତ ମାନବିକ ସ୍ୱାଭାବିକତା, ମାନସିକ ଅକୁତୋଭୟତା ଓ ଜୀବନ୍ତ ମେସେଜ୍ ବା ବାଣୀ କିଛି ନାହିଁ, ସେ ରଚନା କେବଳ ଲିଖନ ମାତ୍ର; ତାହାକୁ ଆମେ ଏକ 'ସୃଷ୍ଟି' ବୋଲି ଗ୍ରହଣ କରିପାରିବାନି ।

ସେ ଯାହାହେଉ, ଲେଖକର ଜାଣିବାରେ ଉଭୟ ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି' ଓ ପୁରୁଷୋତ୍ତମଙ୍କ 'କାଞ୍ଚୀ-କାବେରୀ' ବଙ୍ଗଭାଷାରେ ରୂପାନ୍ତରିତ ହୋଇଛି । ଦାର୍ଢ୍ୟତାଭକ୍ତିକୁ ଅନୁସରଣ କରି ଓ ସେଥିରୁ ଓଡ଼ିଆ ଉଦ୍ଧୃତି (କ୍ୱେଟେସନ୍‌ମାନ) ଦେଇଁ ବଙ୍ଗଳାରେ ଏକ ଗଦ୍ୟ-ଗ୍ରନ୍ଥ-ପର୍ଯ୍ୟାୟ ଲେଖକ ପିଲାଦିନେ ଦେଖିଥିଲା । ଆଧୁନିକ ଯୁଗର ବଙ୍ଗୀୟ କବି ରଙ୍ଗଲାଲ ବାନାର୍ଜି ପୁରୁଷୋତ୍ତମ ଦାସଙ୍କ 'କାଞ୍ଚୀ-କାବେରୀ'କୁ ଆଶ୍ରୟ କରି ବଙ୍ଗଳାରେ 'କାଞ୍ଚୀ-କାବେରୀ' କାବ୍ୟ ରଚନା କରିଥିଲେ । ଏହା ପରେ ପରେ ବୋଧହୁଏ ରାମଶଙ୍କର ଉତ୍କଳର ଏହି ଜନପ୍ରିୟ କାହାଣୀକୁ ନାଟକାକାର ଦେଲେ । ରଙ୍ଗଲାଲ ବାନାର୍ଜିଙ୍କ କାବ୍ୟଟିକୁ ଭଲଭାବରେ ପଢ଼ିବାର ସୁଯୋଗ ଲେଖକ ଭାଗ୍ୟରେ ଘଟିନାହିଁ ଏପର୍ଯ୍ୟନ୍ତ । ତେଣୁ ସେ ପୁରୁଷୋତ୍ତମ ଦାସଙ୍କ ରଚନାର କେଉଁ କେଉଁ ଅଂଶ ପରିତ୍ୟାଗ କରିଛନ୍ତି ଓ କଅଣ ଗ୍ରହଣ କରିଛନ୍ତି, ତାହା କହିହେଉନି, କିନ୍ତୁ ଲେଖକ ଚିତ୍ତରେ ଏହି ପ୍ରଶ୍ନ ବାରମ୍ବାର ଏବେ ଉଠୁଛି ଯେ ଏହି ପୁରୁଷୋତ୍ତମ-ମାଣିକୀ-ପଦ୍ମାବତୀ କାହାଣୀ କିଏ, କେବେ ଠିଆକଲା ? ପୁରୁଷୋତ୍ତମ-ପଦ୍ମାବତୀ ବିବାହ ଏବେ ମଧ୍ୟ ସଂପୂର୍ଣ୍ଣ ଐତିହାସିକ ଘଟଣା ବୋଲି ପ୍ରମାଣିତ ହୋଇନାହିଁ । ତାମିଲ ସାହିତ୍ୟରେ ଏ ଘଟଣାର କୌଣସି ଉଲ୍ଲେଖ ନାହିଁ । କାଞ୍ଚୀ-କାବେରୀ ବୋଲି କୌଣସି ଐତିହାସିକ ରାଷ୍ଟ୍ର ବା କଳବରେଶ୍ୱର ବୋଲି କୌଣସି ତାମିଲ ରାଜା ଥିବାର ଜଣାଯାଇନାହିଁ । ଐତିହାସିକ ରାଖାଲଦାସ ବାନାର୍ଜି ସାଲ୍ୱ ନରସିଂହ ନାମକ ଏକ ରାଜା ଏହି କଳବରେଶ୍ୱର ହୋଇପାରନ୍ତି ବୋଲି କହିଛନ୍ତି ମାତ୍ର । ସେ ଯାହାହେଉ, ତା ଭିତରେ ମାଣିକୀ ଗଉଡୁଣୀ ଓ କଳା ଧଳା ରାଉତ ଦୁଇ ଭାଇ ପଶି ହୁଏତ ଏକ ପ୍ରକୃତ ଐତିହାସିକ ଘଟଣାକୁ ରୋମାଣ୍ଟିକ୍ ଓ ସରସ କରିବା ସାଥେ ସାଥେ ସତ୍ୟଦିଗରୁ ଦୁର୍ବଳ କରିପକାଇଛନ୍ତି । ଜଗନ୍ନାଥଙ୍କ ଦେଉଳ ଭିତରେ ଚିତ୍ର ଓ ଦୋଳବେଦୀ କଡ଼ରେ ଏହି ସଂପୃକ୍ତ ଖୋଦନ ଅଛି; କିନ୍ତୁ ସେସବୁ କେଉଁ କାଳର ? ଯଦି ପୁରୁଷୋତ୍ତମ ଦେବଙ୍କ ଆଦେଶରେ ସବୁ ହୋଇଥିଲା, ତେବେ ତାଙ୍କୁ ଏକ ବିଚକ୍ଷଣ ପ୍ରୋପାଗାଣ୍ଡିଷ୍ଟ ବୋଲି ଧରିବାକୁ ହେବ; କିମ୍ବା ଏ ସମୁଦାୟ କାହାଣୀ ବର୍ତ୍ତମାନ ଆକାରରେ ପ୍ରଚାରିତ ହୋଇଛି ପୁରୁଷୋତ୍ତମ ଦାସଙ୍କ ଏହି କାବ୍ୟରୁ ?

□□□

## ଏକାଦଶ ଅଧ୍ୟାୟ

# ଆଧୁନିକ ଯୁଗର ଆରମ୍ଭ

**ଐତିହାସିକ ପଶ୍ଚାତ୍‌ପଟ –**

ଆଗରୁ କୁହାଯାଇଛି ଯେ, ଓଡ଼ିଆମାନେ ଇତିହାସରେ ବହୁଯୁଗଧରି ଏକ ସମୃଦ୍ଧ ଜାତି ଭାବରେ ବଞ୍ଚିରହିଥିଲେ । ସେମାନେ ତୋଳିଥିଲେ ଶିଳ୍ପୈଶ୍ୱର୍ଯ୍ୟମୟ ବିରାଟ ମନ୍ଦିରାବଳି; ନଦନଦୀମାନଙ୍କୁ ନିୟନ୍ତ୍ରିତ କରିଥିଲେ ବନ୍ଧ ଓ ଶଙ୍ଖ ସବୁ ଠିଆକରି ଏବଂ ଶାସନ କରିଥିଲେ ଦୀର୍ଘକାଳଧରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏକ ବିରାଟ ସାମ୍ରାଜ୍ୟ । କିନ୍ତୁ ଏହା ମଧ୍ୟ ସୂଚିତ ହୋଇଛି ଯେ, ଏହି ସମୃଦ୍ଧ ଓଡ଼ିଆଜାତିର ଦୁର୍ବିପାକମୟ ଦୀର୍ଘ ନିଶାର ଆରମ୍ଭ ହୋଇଗଲା ସମ୍ରାଟ୍ ପ୍ରତାପରୁଦ୍ରଙ୍କ ରାଜତ୍ୱରେ, ମୁସଲମାନଶାସିତ ବଙ୍ଗଳାରୁ ସ୍ୱାଧୀନ ହିନ୍ଦୁ ଓଡ଼ିଶାକୁ ଚୈତନ୍ୟଙ୍କ ଆଗମନର ପ୍ରାୟ ସମକାଳରେ । ଚୈତନ୍ୟ ପୁରୀରେ ଅବସ୍ଥାନ କରୁଥିଲାବେଳେହିଁ ଓଡ଼ିଶାର ଏକ ବିସ୍ତୃତ ଅଞ୍ଚଳ କୃଷ୍ଣଦେବ ରାୟ ନେଇଗଲେ । ଦୁଇଶ' ବର୍ଷଧରି ଓଡ଼ିଶାରୁ ବିଚ୍ଛିନ୍ନ ରହିବା ପରେ ୧୯୩୬ରେ ଓଡ଼ିଆମାନେ ଏହି ନିଜ ଭୂମିର ମାତ୍ର ଅର୍ଦ୍ଧେକ ଫେରିପାଇଲେ, ଅର୍ଦ୍ଧେକ ଚିରକାଳଲାଗି ହରେଇଲେ । ଚୈତନ୍ୟଙ୍କ ସ୍ୱର୍ଗପ୍ରାପ୍ତିର ମାତ୍ର ତିନିଦଶକ ଭିତରେ ଓଡ଼ିଶାର ଯେଉଁ ଅଞ୍ଚଳ ବାକି ଥିଲା, ତାହା ମଧ୍ୟ ସ୍ୱାଧୀନତା ହରେଇଲା । ସମ୍ରାଟ୍ ସାହାଜାହାନଙ୍କ ରାଜତ୍ୱରେ ଯେଉଁ ବିସ୍ତୃତ ଅଞ୍ଚଳ ଆଜି ବଙ୍ଗ ପ୍ରଦେଶର ମେଦିନୀପୁର ଓ ହୁଗୁଳୀ ବୋଲି ପରିଚିତ, ଯାହା ଚିରକାଳଧରି ଉତ୍କଳ ରାଜ୍ୟର ଅଭିନ୍ନ ଅଙ୍ଗ ହୋଇଥିଲା, ଶାସନ ଓ ବାଣିଜ୍ୟିକ ସୁବିଧାପାଇଁ ସେତକ ମୋଗଲ୍ ସାମ୍ରାଜ୍ୟର ଓଡ଼ିଶା-ସୁବ୍‌ବାରୁ କାଢ଼ିନେଇ ବଙ୍ଗଳା-ସୁବ୍‌ବା ସହିତ ମିଶାଇଦିଆଗଲା ଏବଂ ସେହି ସୂତ୍ରରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇପଡ଼ିଲା ଚିରକାଳଲାଗି । ପଶ୍ଚିମ ଓଡ଼ିଶାର ସମ୍ବଲପୁର ଓ ଚାରିପାଖର ଅଞ୍ଚଳ, ଯାହାର ଅନେକାଂଶ ବର୍ତ୍ତମାନର ମଧ୍ୟପ୍ରଦେଶରେ ଅବସ୍ଥିତ, ସେସବୁ ବହୁକାଳଧରି ରହିଲା ମରହଟ୍ଟାମାନଙ୍କ ଅଧୀନରେ । ସେଥିରୁ ସମ୍ବଲପୁର ଓଡ଼ିଶାକୁ ଫେରିଆସିଲା ୧୯୦୫ରେ, ଖଡ଼ିଆଳ ଫେରିଆସିଲା ୧୯୩୬ରେ; କିନ୍ତୁ ଚିରକାଳଲାଗି ବିଚ୍ଛିନ୍ନ ହୋଇ ରହିଗଲା ସେହି ମଧ୍ୟପ୍ରଦେଶର ବିସ୍ତୀର୍ଣ୍ଣ ଓଡ଼ିଆଭାଷାଭାଷୀ ଭୂମି । ସ୍ୱାଧୀନତାର ଯୁଗରେ ରାଜ୍ୟ ସୀମା ପୁନର୍ଗଠନ ବ୍ୟପଦେଶରେ ଓଡ଼ିଶା ବୋଧହୁଏ ଚିରକାଳଲାଗି ହରେଇବସିଲା ସିଂହଭୂମି, ୧୯୫୫ରେ ।

ଏକ ଐତିହାସିକ ଜାତିର ଏପରି ନିଷ୍ଠୁର ଜୀବନ୍ତ-କର୍ତ୍ତନ ପୃଥିବୀରେ ଅନ୍ୟ କୌଣସିଠାରେ ଦେଖାଯାଇନାହିଁ, ଯେପରି ଘଟିଯାଇଛି ଓଡ଼ିଆମାନଙ୍କ ସମ୍ପର୍କରେ ।

ଶତାବ୍ଦୀ-ଶତାବ୍ଦୀଧରି ଏ ଜାତିର ଦେହରୁ ତା'ର ଅବୟବଗୁଡ଼ିକୁ ଗୋଟି ଗୋଟି କରି ଯେ ଛିଣ୍ଡେଇ ନିଆଯାଇଛି କେବଳ ତାହା ନୁହେଁ, ମୂଳ ଗଣ୍ଡିଟାକୁ ସୋରା ସୋରା କରି ହାଣିଦିଆଯାଇଛି । ତା'ର ଐତିହାସିକ ଜାତିର ଏହି ଜୀବନ୍ତ-ଅଙ୍ଗଚ୍ଛେଦ ଓ ରାଷ୍ଟ୍ରୀୟ ଅନ୍ୟାୟ ସବୁକୁ ମନରୁ ଏକାବେଳେ ପୋଛିଦେବା ଯେକୌଣସି ଶିକ୍ଷିତ ଓଡ଼ିଆ ପକ୍ଷରେ ସମ୍ଭବ ନୁହେଁ ।

ଦୁଇ ଶତ ବର୍ଷବ୍ୟାପୀ ଅତୀତରେ, ମୋଗଲ, ପଠାଣ ଓ ମର୍ହଟ୍ଟାମାନଙ୍କ ଶାସନ ସେଦିନର ସମୃଦ୍ଧ, ସୁଶାସିତ ଐତିହାସିକ ଓଡ଼ିଆ ଦେଶରେ ଏପରି ଅରାଜକ ବିଶୃଙ୍ଖଳା ସୃଷ୍ଟି କରିଥିଲା ଯେ, ୧୮୦୩ରେ ଯେତେବେଳେ ବ୍ରିଟିଶ୍ ଓଡ଼ିଶା ଜୟ କଲେ, ପୁରୀ ଜଗନ୍ନାଥ ମନ୍ଦିରରେ ପୁରୋହିତ ସମାଜ ସେହି ବିଜୟୀ ବିଦେଶୀଙ୍କୁ ମଞ୍ଜୁଳପଦସଂଯୁକ୍ତ ସଂସ୍କୃତ-ଭାଷାରେ ପ୍ରଶସ୍ତି ଶୁଣାଇ ଏ ଦେଶକୁ ସ୍ୱାଗତ ଜଣାଇଥିଲେ । ସେହି ଦୁର୍ଦ୍ଦିନମୟ ଗତ ଦୁଇଶ' ବର୍ଷର ବିଭିନ୍ନ ରାଜତ୍ୱରେ ଛୋଟ ବଡ଼ ଲଢ଼େଇ ଦୈନନ୍ଦିନ ଘଟଣା ହୋଇଯାଇଥିଲା; କିନ୍ତୁ ଏକ ରାଷ୍ଟ୍ରୀୟ ମହାନାୟକର ଅଭାବରୁ ହତଭାଗ୍ୟ ଓଡ଼ିଆ ଜାତି ଛୋଟ ଛୋଟ ଦଳପତିଙ୍କଦ୍ୱାରା ପରିଚାଳିତ ହୋଇ ପରସ୍ପରର ବେକ କଟାକଟି କରିବାରେ ହିଁ ଲାଗିଥିଲେ । ସେଦିନର ସେହି ଶାସକମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ସମ୍ପତ୍ତି ଲୁଣ୍ଠନ । ସବାଶେଷରେ ଯେଉଁ ବିଦେଶୀ ଶାସକ ଆସି ପହଞ୍ଚିଲେ, ଅର୍ଥାତ୍ ବ୍ରିଟିଶ ରାଜାର ଲକ୍ଷ୍ୟ କିନ୍ତୁ ହୋଇଉଠିଲା ସାମଗ୍ରିକ । ବ୍ରିଟିଶ୍-ଶାସନ ଜାତି ଓ ସମାଜର ପ୍ରତ୍ୟେକ ଅଂଶ ଓ ସ୍ତରକୁ ନିୟନ୍ତ୍ରିତ କରିବାକୁ ବସନ୍ତେ, ବର୍ତ୍ତମାନ ସେହି ଛିନ୍ନଛତ୍ର ଐତିହାସିକ ଜାତି ତା'ର ଅନ୍ତର୍ବେଦନା-ଜନିତ ପ୍ରତିରୋଧସ୍ୱରୂପ ବିରାଟକାୟ ଜାତୀୟ ନାୟକ ସବୁଙ୍କୁ ସହସା ଉଦ୍‌ଗୀର୍ଣ୍ଣ କରିବାର ଦେଖାଗଲା; ଯେଉଁମାନଙ୍କର ଏକମାତ୍ର ଲକ୍ଷ୍ୟ ହେଲା ଜାତିର ସେହି ସର୍ବଗ୍ରାସୀ ଏକକ ଶତ୍ରୁ ଘୃଣ୍ୟ ଫିରିଙ୍ଗିକୁ ଏ ମାଟିରୁ ବିତାଡ଼ିତ କରିବା ।

ବ୍ରିଟିଶ୍ ଓଡ଼ିଶା ଅଧିକାର କରିବାର ମାତ୍ର ତିନିବର୍ଷ ପରେ, ଐତିହାସିକ ଗଜପତି-ମାନଙ୍କର ଅସ୍ତଂଗତମହିମ ବଂଶଧର ଖୋର୍ଦ୍ଧା ରାଜାଙ୍କର କୌଳିକ ପୁରୋହିତ ଜୟକୃଷ୍ଣ ରାୟଗୁରୁ ବିଦ୍ରୋହର ପତାକା ଉଡ୍‌ଡ୍ଡୀନ କରି ଜନତାକୁ ଆହ୍ୱାନ ଦେଲେ । ଏହି ବରେଣ୍ୟ-ବ୍ରାହ୍ମଣ-ସମର-ନାୟକଙ୍କୁ ବ୍ରିଟିଶ୍ ଧରିନେଇ ଓ ଫାଶୀ ଦେଇ ଜନସାଧାରଣଙ୍କୁ ଭୟଭୀତ କରିବାପାଇଁ ତାଙ୍କର ମୃତଦେହକୁ ଦାଣ୍ଡର ବୃକ୍ଷଡାଳରେ ଝୁଲାଇଦେଇଥିଲେ । କିନ୍ତୁ ଏଥିରେ ମଧ ଓଡ଼ିଆମାନେ ଡରିଯାଇନଥିଲେ । ୧୮୧୮ରେ ଓଡ଼ିଶା ରାଜାଙ୍କ କୌଳିକ ସେନାପତି ବକ୍‌ସି ଜଗବନ୍ଧୁ ବିଦ୍ୟାଧରଙ୍କର ଅନୁପ୍ରେରକ ନେତୃତ୍ୱ ତଳେ ସମଗ୍ର ଓଡ଼ିଆଜାତି ବ୍ରିଟିଶ୍ ଶାସନ ବିରୋଧରେ ବିଦ୍ରୋହ କରିଉଠିଲା । ଏହି ବିଦ୍ରୋହ ଫଳରେ ଅନ୍ତତଃ ଦକ୍ଷିଣ ଓଡ଼ିଶାରେ ଛଅମାସ ଧରି ବ୍ରିଟିଶ୍ ଶାସନ ଲୁପ୍ତ ହୋଇଯାଇଥିଲା; କିନ୍ତୁ ବ୍ରିଟିଶ୍ ଏ ବିଦ୍ରୋହକୁ ନିଷ୍ଠୁର ଭାବରେ ଦମନ କଲା ଓ ସେହି ଦମନକ୍ରିୟା ଏକ ଐତିହାସିକ ଜାତିକୁ ତା'ର ଦୁର୍ଭାଗ୍ୟର ଚରମ ଅବସ୍ଥା ଆଣିଦେଲା । ଓଡ଼ିଶାର ବହୁ ଶତାବ୍ଦୀର କୌଳିକ

ଜାତୀୟବାହିନୀ ଗୌରବମୟ ପାଇକ ସଂପ୍ରଦାୟକୁ ନିରସ୍ତ୍ର କରାଇଦିଆଗଲା କେବଳ ନୁହେଁ, ସେମାନେ ଯୁଗ-ଯୁଗଧରି ଭୋଗକରି ଆସୁଥିବା ଜାଗିରି ଜମିସବୁ ସେମାନଙ୍କଠାରୁ କାଢ଼ିନିଆଗଲା । ନୂତନ ରୀତିର ଭୂ-ରାଜସ୍ୱ-ନିର୍ଦ୍ଧାରଣ କୁଖ୍ୟାତ 'ସୂର୍ଯ୍ୟାସ୍ତ ନିୟମ' ଓଡ଼ିଶାର ସମଗ୍ର ଉପକୂଳାଞ୍ଚଳର ସୁପ୍ରାଚୀନ ଖଣ୍ଡାୟତଗୋଷ୍ଠୀକୁ ରାତି ପାହିଲାବେଳକୁ ଉତ୍ପାଟିତ କରିଦେଲା ଏକ କୁଲିଗୋଷ୍ଠୀରେ ।

ଅତି ଦୁଃଖର ସହିତ ଏହା ଲିପିବଦ୍ଧ କରିବାକୁ ପଡୁଛି ଯେ, ଏହି କୁତ୍ସିତ ଓ ଘୃଣିତ କର୍ମକଳାପ କରିଚାଲିଥିଲା ଶାସକ ଇଷ୍ଟ ଇଣ୍ଡିଆ କମ୍ପାନୀ ତଳେ କାମ କରୁଥିବା ଭାରତୀୟ ମଧ୍ୟବର୍ତ୍ତୀ ଚାକିରିଆ ସଂପ୍ରଦାୟର ଚକ୍ରାନ୍ତଶୀଳ ହସ୍ତ; ଯାହା ଅନ୍ୱେଷଣ କରିଚାଲିଥିଲା କେବଳ ଆତ୍ମୋନ୍ନତି । ବଙ୍ଗାଳୀ ଐତିହାସିକ ରାଖାଲଦାସ ବାନାର୍ଜି ସ୍ୱୀକାର କରିଛନ୍ତି ଯେ – "ବ୍ରିଟିଶ୍ ଓଡ଼ିଶା ଅଧିକାର କଲାପରେ ପ୍ରାୟ ପଚାଶ ବର୍ଷ ଧରି ନିମ୍ନଶ୍ରେଣୀର ଦଳେ ବଙ୍ଗାଳୀହିଁ ଓଡ଼ିଶାକୁ ଶାସନ କଲେ । ଉଭୟ ଶାସନ ଓ ବିଚାର ବିଭାଗରେ ଭର୍ତ୍ତି ରହି ଓଡ଼ିଶାରେ ଥିବା ସେହି ବଙ୍ଗାଳୀମାନେ ନିଜକୁ ହଠାତ୍ ସ୍ୱଚ୍ଛଳ-ସମୃଦ୍ଧ କରିପକାଇବାର ଏକ ସହଜ ପନ୍ଥା ପାଇଗଲେ । ଶତ ଶତ ପ୍ରାଚୀନ ଓଡ଼ିଆ ସମ୍ଭ୍ରାନ୍ତ ବଂଶ ସହସା ଧ୍ୱଂସପ୍ରାପ୍ତ ହୋଇଗଲେ ଏବଂ ସେମାନଙ୍କର ଐତିହାସିକ ସମ୍ପତ୍ତିସବୁ ଚାଲିଗଲା ବଙ୍ଗାଳୀ ଜମିଦାରଙ୍କ ହାତକୁ ।" *

ପୁଣି ଆହୁରି ପରିତାପର ବିଷୟ ଏହି ଯେ, ବଙ୍ଗାଳୀ କର୍ମଚାରୀଏ ଓଡ଼ିଶା ଉପରେ ଏହି ଅର୍ଥନୈତିକ ଦୁର୍ଦ୍ଦଶା ଆଣି ପହଞ୍ଚାଇଲେ; ସେତିକିରେ ସନ୍ତୁଷ୍ଟ ନହୋଇ ସମଗ୍ର ଓଡ଼ିଆ ଭାଷା ଓ ସଂସ୍କୃତିକୁ ଲୋପ କରିବାକୁ ଚେଷ୍ଟାକଲେ । ଊନବିଂଶ ଶତାବ୍ଦୀର ମଝିରେ କଲିକତାରେ ଏକ ଆନ୍ଦୋଳନ ଠିଆକରାଗଲା ଯେ, ଓଡ଼ିଆଭାଷା ବଙ୍ଗଳାର ଏକ ଉପଭାଷା ମାତ୍ର ଓ ତେଣୁ ଓଡ଼ିଶାର ସ୍କୁଲମାନଙ୍କରେ ଓଡ଼ିଆ ପରିବର୍ତ୍ତରେ ବଙ୍ଗଳାହିଁ ପଢ଼ାଯିବ ଏବଂ ରାଜେନ୍ଦ୍ରଲାଲ ମିତ୍ରଙ୍କ ପରି ବିଦ୍ୱାନ୍ ବଙ୍ଗାଳୀ ମଧ୍ୟ ଏହି ନନ୍‌ସେନ୍‌ସକୁ ଦୃଢ଼ଭାବରେ ସମର୍ଥନ କଲେ । ଆମକୁ ସ୍ମରଣ କରିବାକୁ ହେବ ଯେ, ୧୮୦୩ରୁ ୧୯୧୨ ଯାଏଁ ୧୦୯ ବର୍ଷଧରି ଯେଉଁ ଅବଶେଷତକକୁ ଓଡ଼ିଶା କୁହାଯାଉଥିଲା, ସେତକ ମଧ୍ୟ ଥିଲା ତତ୍କାଳୀନ ବଙ୍ଗଳାର ଏକ ଉପାଙ୍ଗ ମାତ୍ର । ଓଡ଼ିଶାର ମଧ୍ୟ ଶାସନ ମେରୁ ଥିଲା କଲିକତା ଏବଂ ଉଚ୍ଚତମ କର୍ମଚାରୀଠୁ ପୋଲିସ କନଷ୍ଟେବଲ ଓ ନିମ୍ନଶ୍ରେଣୀର ସହକାରୀ ଶିକ୍ଷକମାନଙ୍କ ପର୍ଯ୍ୟନ୍ତ ଓଡ଼ିଶାର ସମଗ୍ର ଶାସନ ସଂସ୍ଥା ଥିଲା ଅଣ-ଓଡ଼ିଆଙ୍କ ହାତରେ ।

କିନ୍ତୁ ଓଡ଼ିଆମାନଙ୍କର ସୌଭାଗ୍ୟକୁ, ଓଡ଼ିଆ ଭାଷାର ମୃତ୍ୟୁ ପାଇଁ କଲିକତା ନଗରୀରେ ବରେଣ୍ୟ ପ୍ରତିବେଶୀ ଯେତେବେଳେ ଫାଶୀକାଠ ଠିଆକରାଉଥିଲେ, ସେତିକିବେଳେ ଉତ୍କଳ-ଜନନୀକୁ ସକଳ ଅପମାନରୁ ରକ୍ଷା କରିବା ପାଇଁ ଦେଶୈକ-ଭାବନାର ଏକ ବିଚକ୍ଷଣ ଓଡ଼ିଆ ସେହି ପାପ ଚକ୍ରାନ୍ତକୁ ଧୂଳିସାତ୍ କରିବାପାଇଁ ବାହାରିପଡ଼ିଥିଲା । ସେହି ନବାଗତର ନାମ ଫକିରମୋହନ ସେନାପତି; ଯିଏ ଆଧୁନିକ

* ଓଡ଼ିଶାର ଇତିହାସ (ଆର୍. ଡି. ବାନାର୍ଜି, ପୃ. ୨୭୯-୨୮୧)

ଓଡ଼ିଆ ସାହିତ୍ୟର କେବଳ ନୁହେଁ, ଆଧୁନିକ ଓଡ଼ିଶାର ମଧ୍ୟ ଜନକ । ଏହି ଜାତିର ସଙ୍କଟ ବେଳେ ତରୁଣ ଫକୀରମୋହନ ବାଲେଶ୍ୱର ସହରରେ ଗୋଟିଏ ପ୍ରାଇମେରୀ ସ୍କୁଲ ଶିକ୍ଷକଠାରୁ ଅଧିକ କିଛି ନଥିଲେ; କିନ୍ତୁ ସହଜାତ ପାଣ୍ଡିତ୍ୟ ଓ ବୁଦ୍ଧିମତ୍ତା ଯୋଗୁଁ ଏହି ସ୍କୁଲ-ଶିକ୍ଷକ ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ୍ ସୁପ୍ରସିଦ୍ଧ ଭାରତୀୟ ଭାଷାତତ୍ତ୍ୱବିତ୍ ମି. ଜନ୍ ବୀମ୍‌ସଙ୍କର ସସମ୍ମାନ ସଖ୍ୟ ଭୋଗକରୁଥିଲେ । ଭାଷାତତ୍ତ୍ୱବିତ୍ ବୀମ୍‌ସ ଓ ତତ୍‌କାଳୀନ ଓଡ଼ିଶା କମିଶନର୍ ଟି. ଇ. ରେଭେନ୍‌ସ ଆଦି ବ୍ରିଟିଶ୍ କର୍ମଚାରୀଙ୍କ ଦୃଢ଼ ମତ ପ୍ରକାଶ ଫଳରେହିଁ ପ୍ରାୟ ଦୁଇକୋଟି ଜନର ଭାଷା ଓଡ଼ିଆ, ସେଦିନ ଏକ ନିଶ୍ଚିତ ରାଜନୈତିକ ହତ୍ୟାରୁ ରକ୍ଷାପାଇଗଲା ।

ବସ୍ତୁତଃ ଫକୀରମୋହନଙ୍କ ଚରିତହିଁ ଊନବିଂଶ ଶତାବ୍ଦୀରେ ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟର ପୁନରଭ୍ୟୁଦୟର ଇତିହାସ । ତାହାହିଁ ତେଣୁ ହେବ ଆମର ପରବର୍ତ୍ତୀ ଆଲୋଚନା । କିନ୍ତୁ ମନେରଖିବାକୁ ହେବ ଯେ, ଆଧୁନିକତାର ଯାତ୍ରାପଥରେ ଓଡ଼ିଆମାନେ ତାଙ୍କର ପ୍ରତିବେଶୀମାନଙ୍କଠାରୁ ବିଳମ୍ବରେ ଯାତ୍ରାରମ୍ଭ କରିବା ଯୋଗୁଁ ହିଁ କିପରି ବହୁ ପଛରେ ପଡ଼ିଯାଇଛନ୍ତି, ତାହା ଓଡ଼ିଆମାନଙ୍କର ମନୋରାଜ୍ୟରେ ଏକ ପଙ୍ଗୁକାରୀ ଆଘାତ ରଖିଯାଇଛି । ୧୮୫୭କୁ ପ୍ରତିବେଶୀ ବଙ୍ଗାଳୀଙ୍କର ନିଜର ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ଠିଆହେଲା ବେଳକୁ, ଓଡ଼ିଆମାନଙ୍କ ଭାଗ୍ୟରେ ଘଟିଥିଲା ଗୋଟିଏ ଦୁଇଟି ମାଇନର୍ ସ୍କୁଲର ଆରମ୍ଭ ମାତ୍ର । ଛିନ୍ନବିଚ୍ଛିନ୍ନ ଓ ଛିନ୍ନଛତ୍ର ଓଡ଼ିଆ ଜାତି, ଏକତ୍ର-ଶାସିତ ହେବାର ସୌଭାଗ୍ୟ ପାଇଲେ ଏଇ ସେଦିନ; ବହୁ ଶତାବ୍ଦୀର ସେହି ବିକଳ ଜାତୀୟ ଜୀବନ ପରେ । ସେମାନେ ନିଜର ଏକ ବିଶ୍ୱବିଦ୍ୟାଳୟ ପାଇଲେ, ପ୍ରତିବେଶୀ ବଙ୍ଗାଳୀ ପାଇବାର ଏକଶତ ବର୍ଷ ପରେ । ସାହିତ୍ୟ ସହିତ ଓଡ଼ିଆ ଜୀବନର ପ୍ରତ୍ୟେକ କ୍ଷେତ୍ରରେ, ଏହି ପ୍ରତିକୂଳ ଘଟଣାବଳିର କୁଫଳ ଆଜି ମଧ୍ୟ ଅନୁଭୂତ ହେଉଅଛି ।

□□□

# ଦ୍ୱାଦଶ ଅଧ୍ୟାୟ

# ମହତ୍ ତ୍ରୟୀ

**ଫକିରମୋହନ –**

ଏଇ ସେଦିନ ପର୍ଯ୍ୟନ୍ତ ପ୍ରାଚୀନକାଳର ସାରଳାଯୁଗ, ଜଗନ୍ନାଥଯୁଗ ଓ ଉପେନ୍ଦ୍ରଯୁଗର ବିପରୀତରେ ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗକୁ ଶ୍ରଦ୍ଧାର ସହିତ ରାଧାନାଥଯୁଗ ବୋଲି କୁହାଯାଉଥିଲା । ଏହା ହୁଏତ ସାଧାରଣତଃ ଜନଚିତ୍ତରେ କବି ଓ କବିତା ଯେଉଁ ରହସ୍ୟମୟ ପ୍ରଭାବ ପକାଇଥାନ୍ତି, ତାହାରି ଥିଲା ପ୍ରତିକ୍ରିୟା । ଏପର୍ଯ୍ୟନ୍ତ ସାହିତ୍ୟର ଅନ୍ୟ କୌଣସି ଅଂଶ ମନୁଷ୍ୟ ମନରେ ସେପରି ପ୍ରଭାବ ପକାଇ ପାରିନାହିଁ । ତେଣୁ ଅନ୍ୟସବୁ ଯୁଗକୁ ଯେପରି, ଏ ଯୁଗକୁ ମଧ୍ୟ ଏକ କବି ନାମରେ ନାମିତ କରିବା ସ୍ୱାଭାବିକ ଥିଲା । କିନ୍ତୁ ଆଧୁନିକ ଗବେଷଣା ଓଡ଼ିଆ ସାହିତ୍ୟର ଗତ ୬୦ ବର୍ଷର ଘଟଣାପ୍ରବାହକୁ ଏବର ପାଠକମାନଙ୍କ ଆଗରେ ଯେପରି ଥୋଇଛନ୍ତି, ସେଥିରେ ସେମାନଙ୍କ ଚିତ୍ତରେ ସାହିତ୍ୟିକ ମୂଲ୍ୟବୋଧରେ ପରିବର୍ତ୍ତନ ଆସିଯାଇଛି; ଯାହା ଫଳରେ ବର୍ତ୍ତମାନ ଓଡ଼ିଶାର ବୁଦ୍ଧିଜୀବୀ ସଂପ୍ରଦାୟର ସର୍ବବାଦୀ ମତ ଏହି ଯେ, ଆଧୁନିକ ଯୁଗ ପ୍ରକୃତରେ ନାମିତ ହେବା ଉଚିତ ସରସ୍ୱତୀ ଫକିରମୋହନ ସେନାପତିଙ୍କ ନାମରେ ।

କିନ୍ତୁ ଦେଖିବାକୁ ଗଲେ, ଜଣେ ନୁହେଁ, ତିନିଜଣ ପ୍ରତିଭାଧାରୀ ବ୍ୟକ୍ତିହିଁ ଏକତ୍ରରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ ସୃଷ୍ଟି କରିଯାଇଛନ୍ତି । ୧୮୬୭ର ଏପଟ ସେପଟେ ଆମେ ଏ ତିନିଙ୍କୁ ଏକତ୍ର ଏଇ ଲକ୍ଷ୍ୟରେହିଁ କାମ କରିବାର ଦେଖିବା । ତିନିହେଁ ପ୍ରଶଂସନୀୟ ମାନସିକ ଓ ସାମାଜିକ ସଖ୍ୟ-ସୂତ୍ରରେ ପରସ୍ପର ସହିତ ଆବଦ୍ଧ ଥିଲେ । ସେ ତିନିହେଁ ହେଉଛନ୍ତି, ଫକିରମୋହନ ସେନାପତି, ରାଧାନାଥ ରାୟ ଓ ମଧୁସୂଦନ ରାଓ । ତିନିଙ୍କ ଭିତରୁ ଫକିରମୋହନ ଥିଲେ ବୟୋଜ୍ୟେଷ୍ଠ ଓ ମଧୁସୂଦନ ଥିଲେ ବୟଃକନିଷ୍ଠ ଏବଂ ଫକିରମୋହନହିଁ ଥିଲେ ଏହି ମହତ୍ ତ୍ରୟୀର ମନ୍ତ୍ରଦ୍ରଷ୍ଟା ଓ ମନ୍ତ୍ରଦାତା, ଯଦିଓ ଜଣେ କବି ବା ଲେଖକ ଭାବରେ ଖ୍ୟାତିଲାଭ କରିବା ପାଇଁ ତାଙ୍କ ଭିତରେ କୌଣସି କାଳେ ସେପରି କୌଣସି ଦୃଢ଼ ଅଭିଳାଷ ଦେଖାଦେଇନଥିଲା । ଆଧୁନିକ ଉଚ୍ଚଶିକ୍ଷା ମାର୍କା ବହନ କରିଥିବା ଅନ୍ୟ ଦୁଇଜଣଙ୍କ ସନ୍ନିଧିରେ ସେ ସେପରି ଅଭିଳାଷ ପୋଷଣ କରିବାର ସାହସ ହିଁ ବା ପାଆନ୍ତେ କାହୁଁ ? କାରଣ, ସେନାପତିଙ୍କ ଭାଗ୍ୟରେ ଯେ ପ୍ରାଇମେରୀ ଶିକ୍ଷାଠାରୁ ଅଧିକ କିଛି ଘଟି ପାରି ନ ଥିଲା; କିନ୍ତୁ ସେନାପତି ଥିଲେ ଏକାଧାରରେ ଏକ ସହଜନ୍ମା ଦେଶଭକ୍ତ ଓ ମାନବାନୁରାଗୀ, ଯେଉଁ କାରଣରୁ ସେ ନିଜର ବାଲ୍ୟ ବୟସରୁହିଁ ନିଜ ଦେଶବାସୀ ଭାଇମାନଙ୍କୁ ଶୋଷଣ, ଅବସାଦ ଓ ଆଳସ୍ୟର ଜଳାଭୂମିରୁ କିପରି ଉଠେଇବେ,

ସେଥିପାଇଁ ନିଜ ଶକ୍ତି ଅନୁଯାୟୀ ଯାହା କରିବାର କଥା ତାହା କରିବାରେ ଲାଗିଥିଲେ । ଏହି ମହତ୍ ଲକ୍ଷ୍ୟର ସିଦ୍ଧି ପାଇଁ ଏକ ପରୀକ୍ଷାମୂଳକ ଉପାୟ ମାତ୍ର ବୋଲି ହିଁ ସେ ସାହିତ୍ୟର ଆଶ୍ରୟ ନେଇଥିଲେ । ଅବିଶ୍ରାନ୍ତ ଭାବରେ ନାନା ବିଷୟରେ ପତ୍ରପତ୍ରିକାମାନଙ୍କରେ ଲେଖି ଲେଖି ହିଁ ସେ ନିଜେ ଓ ଦେଶବାସୀ ତାଙ୍କର ଅସାଧାରଣ ସୃଜନଶକ୍ତି ସହିତ ପରିଚିତ ହେଲେ । ଯାହା ଯୋଗୁଁ ସେନାପତି ଆଜି ଓଡ଼ିଆ ସାହିତ୍ୟରେ ଅମର, ସେସବୁ ରାଧାନାଥ ଓ ମଧୁସୂଦନ ସେମାନଙ୍କର ଯାହା ଦେବାର ଦେଇସାରିବାର ବହୁ ପରେହିଁ ତାଙ୍କ କଲମରୁ ବାହାରିଥିଲା । ଏ ଦୃଷ୍ଟିରୁ ସେନାପତିଙ୍କ ଦୀର୍ଘ ଜୀବନ ହିଁ ଓଡ଼ିଆମାନଙ୍କ ପ୍ରତି ଏକ ଆଶୀର୍ବାଦ ହୋଇଉଠିଲା । ସେ ଅଳ୍ପ ବୟସରେ ଚାଲିଯାଇଥିଲେ, ଓଡ଼ିଆ ସାହିତ୍ୟ ହୁଏତ ତାଙ୍କର ଅମର କୀର୍ତ୍ତିରାଜିରୁ ଚିରକାଳ ବଞ୍ଚିତ ହୋଇଥାନ୍ତା । ରାଧାନାଥ ଓ ମଧୁସୂଦନ ତାଙ୍କ ପରେ ଜନ୍ମ ହୋଇ ତାଙ୍କ ଆଗରୁ ଇହଧାମ ତ୍ୟାଗ କରିଥିଲେ ଏବଂ ନିଜର ଦୀର୍ଘଜରାର ସ୍ୱର୍ଣ୍ଣ ସନ୍ଧ୍ୟାରେ ବାଲେଶ୍ୱରସ୍ଥ ନିଜର ଉଦ୍ୟାନ-ଗୃହ (ଶାନ୍ତିକାନନ)ର ଶାନ୍ତିମୟ ବାତାବରଣରେ ଅବସର ନେଲାବେଳେହିଁ, ଏକ ବିଚକ୍ଷଣ ମନର ଦୀର୍ଘ ଅନୁଭୂତି ଓ ପର୍ଯ୍ୟବେକ୍ଷଣଗୁଡ଼ିକର ନିର୍ଯାସ ନିବଦ୍ଧ କରି, ସେନାପତି ବର୍ଷ ପରେ ବର୍ଷ, ଗୋଟାକ ପରେ ଗୋଟେ, ମହାନ୍ ଅକ୍ଷୟ କୀର୍ତ୍ତିସବୁ ସୃଷ୍ଟି କରି ସମଗ୍ର ଦେଶକୁ ବିସ୍ମୟାଭିଭୂତ କରିପକାଇଲେ ।

ଊନବିଂଶ ଶତାବ୍ଦୀର ଶେଷପାଦ ପର୍ଯ୍ୟନ୍ତ ବାଲେଶ୍ୱର ସମଗ୍ର ପୂର୍ବଭାରତୀୟ ଉପକୂଳରେ ଏକ ମୁଖ୍ୟ ପଣ୍ୟକେନ୍ଦ୍ର ଓ ବନ୍ଦର ଥିଲା । ଇଷ୍ଟଇଣ୍ଡିଆ କମ୍ପାନୀର ସେକାଳର ପାଲଟଣା ବୋଇତମାନଙ୍କର ଏହା ଥିଲା ଏକ ପ୍ରଧାନ ଆଶ୍ରୟସ୍ଥଳ । ଗତ ଶତାବ୍ଦୀର ମଧ୍ୟଭାଗରେ ଏହି ବାଲେଶ୍ୱରର ବନ୍ଦର-ଘାଟ ଉପରେ ଦଶ-ବାରବର୍ଷର ସାମାନ୍ୟ ଲେଖିପଢ଼ି ଜାଣିବା ଏକ ରୋଗା ପିଲା, ଡାହାଣ କାନରେ ଏକ ପର-କଲମ ମାରି ଏପଟ ସେପଟ ବୁଲାବୁଲି କରୁଥିବାର ଲୋକେ ଦେଖିଥିବେ । ସେ ପିଲାର ଜନ୍ମ ସେହି ବାଲେଶ୍ୱରରେ ଏବଂ ତା'ର ଜନ୍ମ ହୋଇଥିଲା ଏକ ସଂଭ୍ରାନ୍ତ ବଂଶରେ; କିନ୍ତୁ ମର୍ହଟ୍ଟା ଯିବା ଓ ବ୍ରିଟିଶ ଆସିବା ଭିତରେ ଯାହାଙ୍କ ସମ୍ପତ୍ତିବାଡ଼ି ହାତରୁ ଖସିଯାଇଥିବାରୁ ବର୍ତ୍ତମାନ ସେମାନେ ଦରିଦ୍ର ହୋଇପଡ଼ିଛନ୍ତି । ଅଧିକନ୍ତୁ, ମାତ୍ର ଦେଢ଼ ବର୍ଷ ବୟସରେ ସେ ପିଲାର ପିତା ଓ ମାତା ଉଭୟେ ମରିଯାଇଥିବାରୁ ଦରିଦ୍ର ଓ ବାପ-ମା'-ଛେଉଣ୍ଡ ସେହି ପିଲାଟିକି ବର୍ତ୍ତମାନ ଦେଖାଚାହାଁ କରୁଛି ତା'ର ବୃଦ୍ଧା, କିନ୍ତୁ ଅତ୍ୟନ୍ତ ସ୍ନେହପ୍ରବଣା, ପିତାମହୀ । ଅତ୍ୟନ୍ତ ଅନଟନ ଯୋଗୁଁ ସେହି ସ୍ନେହମୟୀ ଗୋସେଇଁମା' ମଧ ପ୍ରାଣର ନାତିଟିକୁ ଚାଟଶାଳୀରୁ କାଢ଼ିଆଣି ଯତ୍‌କିଞ୍ଚିତ୍ ରୋଜଗାର ଲକ୍ଷ୍ୟରେ ତା'ର ଏକ କାନତରାଟି କକାଙ୍କ ଅଧୀନରେ ବାଲେଶ୍ୱର ବନ୍ଦରରେ ପାଲ ସିଲେଇ କାମ ତଦାରଖି କରିବାରେ ଲଗାଇଦେଇଥିଲେ ।

ଶୈଶବରୁ ପିତୃମାତୃହୀନ, କପର୍ଦ୍ଦକଶୂନ୍ୟ, ସ୍ୱଳ୍ପ-ଶିକ୍ଷା-ପ୍ରାପ୍ତ ଓ ଭବିଷ୍ୟତହୀନ ସେଦିନର ସେହି ରୋଗା ପିଲାଟିହିଁ ହେଉଛି ଫକିରମୋହନ ସେନାପତି; ଯିଏ ଆଜି ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ବୋଲି ସମ୍ମାନିତ । କବି, ଔପନ୍ୟାସିକ, ଶାସକ, ପଣ୍ଡିତ, ସମାଜ-

ସଂସ୍କାରକ, ମୁଦ୍ରାକର, ସମ୍ପାଦକ, ବ୍ୟବସାୟୀ ଓ ସର୍ବୋପରି ଦେଶସେବକ ଭାବରେ ଏହି ଫକିରମୋହନ ଏପରି ଏକ ରୋମାଞ୍ଚକର ଜୀବନ ଅତିବାହିତ କରିଥିଲେ; ଯାହା ସେ ଯେଉଁ ଅନବଦ୍ୟ ଗଳ୍ପ-ସାହିତ୍ୟଦ୍ୱାରା ନିଜ ମାତୃଭାଷାକୁ ଏପରି ପ୍ରଚୁର ଭାବରେ ଉର୍ବର କରିଗଲେ ତାହାଠାରୁ ମଧ୍ୟ ଅଧିକ ବିସ୍ମୟକର । ଏହି ବିରାଟ ପ୍ରତିଭାର ଇସ୍କୁଲ ପାଠର କାଳ ଦୁଇଟୀ ବର୍ଷରୁ ବୋଧହୁଏ ଅଧିକ ନଥିଲା; କିନ୍ତୁ ଏକମାତ୍ର ନିଜ ଚେଷ୍ଟାବଳରେ ହିଁ ସେ ପରଜୀବନରେ ସଂସ୍କୃତ ସହିତ ଅନ୍ତତଃ ପାଞ୍ଚଟି ଭାଷାରେ ପଣ୍ଡିତ ବୋଲି କୁହାଯାଇପାରୁଥିଲା । କାମ ଚଳାଇବା ଭଳି ଉତ୍ତମ ଇଂରାଜୀ ଜ୍ଞାନ ମଧ୍ୟ ସେ ଆୟତ୍ତ କରି ନେଇ ପାରିଥିଲେ । ଏହି ଅସାଧାରଣ ମାନସିକ ବିଚକ୍ଷଣତା ଯୋଗୁଁ ହିଁ ଏହି ଅର୍ଦ୍ଧଶିକ୍ଷିତ ଲୋକ ବନ୍ଧୁ ହୋଇଉଠିଥିଲେ ତତ୍‌କାଳୀନ ଉଚ୍ଚପଦସ୍ଥ ଇଂରେଜ କର୍ମଚାରୀ-ମାନଙ୍କର ଏବଂ ଶାସକ ହୋଇପାରିଥିଲେ ବହୁ ଦେଶୀୟ ରାଜ୍ୟମାନଙ୍କରେ । ମଧ୍ୟଯୁଗରେ ଜନ୍ମ ହୋଇ ମଧ୍ୟ ଆଧୁନିକ ଭାବଧାରାକୁ ସ୍ୱୀକୃତି ଦେବାରେ ତାଙ୍କ ମାନସରେ ଦେଖାଦେଇଥିଲା ଅସାଧାରଣ ପ୍ରଗତିପ୍ରବଣତା । ସରକାରଙ୍କ ସହିତ ସମ୍ପର୍କଶୂନ୍ୟ ରହି କେବଳ ନିଜ ପ୍ରେରଣାରେହିଁ ଫକିରମୋହନ ସେହି ସମୟରେ ୟୁରୋପରୁ ଏ ଦେଶରେ ଆସି ପହଞ୍ଚୁଥିବା କୋ-ଅପରେଟିଭ୍ (ସହଯୋଗ) ଆନ୍ଦୋଳନର ଏକ ମୁଖ୍ୟ ପ୍ରଚାରକ ହୋଇଉଠିଥିଲେ । ଓଡ଼ିଶାରେ ଆଦ୍ୟ ମୁଦ୍ରାଯନ୍ତ୍ର ସ୍ଥାପକ ଓ ସମ୍ବାଦପତ୍ର ପ୍ରକାଶକମାନଙ୍କ ମଧ୍ୟରେ ଫକିରମୋହନ ଥିଲେ ଏକତମ । ଏହା ପୁଣି ସେ ଠିଆକରାଇଥିଲେ ସମବାୟ-ରୀତିରେ ଏବଂ ତାଙ୍କ କମ୍ପାନୀର ଅଂଶଗ୍ରହୀତାମାନଙ୍କ ମଧ୍ୟରେ ଏକତମ ଥିଲେ ଓଡ଼ିଶାର ତତ୍‌କାଳୀନ ଇଂରେଜ କମିସନର୍ । ଫକିରମୋହନ ତାଙ୍କ ଆତ୍ମଚରିତରେ ଜଣାଇଯାଇଛନ୍ତି ଯେ, ଯେଉଁ ଦିନ 'ସେନାପତିଙ୍କ ଛାପାଖାନା'ରେ ଛାପା ଆରମ୍ଭ ହେବ ବୋଲି ଜଣାଗଲା; ସେଦିନ ସମଗ୍ର ବାଲେଶ୍ୱର ବଜାର ବନ୍ଦ ଓ ଅଧିକାଂଶ ସରକାରୀ କର୍ମଚାରୀ ସେଦିନ କାଜୁଏଲ୍ ଲିଭ୍ ନେଇ ସେହି ଅଦ୍ଭୁତ ଦୃଶ୍ୟ ଦେଖିବା ଲାଗି ଦଉଡ଼ିଥିଲେ । ସେନାପତିଙ୍କ ମୁଦ୍ରାଯନ୍ତ୍ର ଥିଲା ସମଗ୍ର ଓଡ଼ିଶାରେ, କଟକ ବାହାରେ ସର୍ବାଦ୍ୟ । ତେଣୁ ବହୁମାସ ଧରି ମଫସଲର ଧନୀଲୋକେ ପାଲ୍‌କି-ସବାରିରେ ବସି ବାଲେଶ୍ୱର ଆସୁଥିଲେ, ଖାସ୍ ସେନାପତିଙ୍କ ଛାପାଖାନା ଦେଖିବାକୁ ।

ଶାସକ ଭାବରେ ମଧ୍ୟ ଫକିରମୋହନ ଯେଉଁ ଯେଉଁ ଦେଶୀୟ ରାଜ୍ୟରେ ଅବସ୍ଥାପିତ ହେଉଥିଲେ, ସେଠି ଦେଖାଇପାରିଥିଲେ କିଛି ବିଶିଷ୍ଟତା । ଜମିଜମା-ସଂପୃକ୍ତ ଜଟିଳ ସମସ୍ୟାମାନଙ୍କର ସମାଧାନରେ, ଇଲାକା-ଇଲାକା ଭିତରର କଳି ତୁଟେଇବାରେ, ରାଜା ଓ ଜମିଦାରମାନଙ୍କର ବ୍ୟକ୍ତିଗତ ଜଞ୍ଜାଳ ସବୁ ନିକାଶ କରିବାରେ ଏବଂ ପ୍ରଜାଙ୍କ ଗଣ୍ଡଗୋଳ ଓ ବିଦ୍ରୋହ ଦମନ କରିବାରେ ମଧ୍ୟ ସେନାପତି ସେକାଳରେ ବିଖ୍ୟାତ ହୋଇଉଠିଥିଲେ । ସେ ଯେତେବେଳେ କେନ୍ଦୁଝର ଷ୍ଟେଟ୍ (ଏବେ ଜିଲ୍ଲା)ର ଆସିଷ୍ଟାଣ୍ଟ ମାନେଜର ଥିଲେ, ସେତେବେଳେ ସେଠାର ଭୂୟାଁ ପ୍ରଜାମାନେ ବିଦ୍ରୋହ କରିଥିଲେ । ରାଜ-ପ୍ରାସାଦରେ ରାଣୀଙ୍କ ସହିତ ପରିବାରବର୍ଗଙ୍କୁ ଅସହାୟ ଅବସ୍ଥାରେ ପକାଇଦେଇ ରାଜା ଭୟରେ କଟକ ପଳାଇ ଆସିଲେ । ଦୁର୍ବଳଶରୀର ଫକିରମୋହନଙ୍କ ବକ୍ଷ ତଳେ

କିନ୍ତୁ ସବୁବେଳେ ଥିଲା ସିଂହର ସାହସ । ବିଦ୍ରୋହୀ ଉପଜାତିଦଳ ରାଜପ୍ରାସାଦ ଆକ୍ରମଣ କରିବାର ଆଶଙ୍କା ପ୍ରତ୍ୟହ କରାଯାଉଥିଲା । ତାହା ଯେପରି ନଘଟେ, ସେଥିପାଇଁ ନିଜର କୌଳିକ ସଂଜ୍ଞା 'ସେନାପତି'କୁ ପରମ ଯାଥାର୍ଥ୍ୟ ଦେଇ ବର୍ତ୍ତମାନ ଆସିଷ୍ଟାଣ୍ଟ ମାନେଜର ଫକିରମୋହନ, ବହୁକାଳପୂର୍ବରୁ-ଯୁଦ୍ଧବିଦ୍ୟା-ବିସ୍ମୃତ ଏବଂ ଅଧୁନା ଛିନ୍ନବସ୍ତ୍ର, ପଞ୍ଚାଏ ପାଇକଙ୍କୁ ଘେନି, ବିଦ୍ରୋହୀମାନଙ୍କୁ ସେମାନଙ୍କର ଜଙ୍ଗଲାଶ୍ରୟରେହିଁ ସମ୍ମୁଖ-ରଣ ଦେବାପାଇଁ ହସ୍ତୀପୃଷ୍ଠରେ ବାହାରିପଡ଼ିଲେ; କିନ୍ତୁ ତାଙ୍କ ନିଜ ଚରର ବିଶ୍ୱାସଘାତକତା ଫଳରେ, ସେନାପତି ପଥ ମଧ୍ୟରେ ଏକ ପର୍ବତଘାଟୀରେ ଆଗରୁ ଦୁଇପଟୁ ଜଗିରହିଥିବା ବିଦ୍ରୋହୀମାନଙ୍କ ଦ୍ୱାରା ବନ୍ଦୀ ହୋଇପଡ଼ିଲେ । ବିଦ୍ରୋହୀମାନଙ୍କ ଖଡ୍‌ଗରେ ମୁଣ୍ଡଟି ନ ହରେଇ ସେ ଯେ ଅକ୍ଷତ ଶରୀରରେ ଫେରିଆସିଲେ, ତାହା କେବଳ ସମ୍ଭବ ହୋଇଥିଲା ସେନାପତିଙ୍କ ଅସାଧାରଣ ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ । ସେ ବିଦ୍ରୋହୀ ଦଳପତିଙ୍କୁ ମିଥ୍ୟା ପ୍ରେରଣା ଦେବାରେ ଲାଗିଲେ ଯେ, ସେ ନିଶ୍ଚୟ କେନ୍ଦୁଝରର ରାଜା ହେଉଛନ୍ତି ଓ ରାଜା ହେଲା ପରେ ସେହି ଫକିରମୋହନ ଏବପରି ତାଙ୍କର ମଧ୍ୟ ବିଶ୍ୱସ୍ତ କର୍ମଚାରୀ ଭାବରେ ରାଜ୍ୟ-ଶାସନରେ ସାହାଯ୍ୟ କରିବେ । ଫକିରମୋହନଙ୍କ ପାନ ଖାଇବାର ବହୁଦିନର ଅଭ୍ୟାସ ଥିଲା । ସେ ଦେଖିଲେ ଯେ ବିଦ୍ରୋହୀ ଦଳପତିର ମଧ୍ୟ ସେହି ଦୁରଭ୍ୟାସ । ତେଣୁ ସେ ପ୍ରଚୁର ପାନ ଓ ଗୁଆ ଅଣାଇବା ବାହାନାରେ ଦଳପତିକି ମଙ୍ଗାଇ ନିମ୍ନଲିଖିତ କୂଟାର୍ଥପୂର୍ଣ୍ଣ ପତ୍ରଟି ବାହାରକୁ ପଠାଇପାରିଥିଲେ –

''ଭୋଳାନାଥ ଖମାରିଆ ଜାଣିବୁ । ମହାରାଣୀଙ୍କ ପୁତ୍ରଙ୍କ (ବିଦ୍ରୋହୀ ଦଳପତି) ସକାଶେ ଅତି ଶୀଘ୍ର ଶହେ ପାନ, ଦୁଇଶ' ଗୁଆ ପଠାଇବୁ । ଉତ୍ତର ପଟରୁ ମାହାରା କରି ଆଖୁବାଡ଼ିକୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଆଖୁବାଡ଼ି ବିନାଶ ଯିବ ବୋଲି ଜାଣିବୁ । ଇତି, ଫକିରମୋହନ ସେନାପତି ।''

ଫକିରମୋହନ ପତ୍ରଟିକୁ ତିନିଖଣ୍ଡ ତାରରେ ବାନ୍ଧିଦେଇଥିଲେ । କର୍ତ୍ତୃପକ୍ଷଙ୍କ ହାତରେ ଏ ଚିଠି ଯଥାସମୟରେ ପଡ଼ନ୍ତେ ସେମାନେ ଏହାର କୂଟାର୍ଥ ଧରିପାରିଥିଲେ । ପାନର ଅର୍ଥ ହେଲା ସିପାହି, ଗୁଆ ହେଲା ଗୁଳି, ଉତ୍ତରଆଡୁ ନାଳ କାଟି ପାଣି ମଡ଼େଇବାର ଅର୍ଥ ହେଲା ଯେ ସିଂହଭୂମିରୁ ସୈନ୍ୟ ଆଣ ଓ ତିନିଖଣ୍ଡି ତାରର ଅର୍ଥ ହେଲା ଯେ ତିନି ମୁଖ୍ୟ ଇଂରେଜ ହାକିମଙ୍କ ନିକଟକୁ ତାରରେ ସମ୍ବାଦ ଦିଅ । ଏହି ଅନୁସାରେ କାମ ହେଲା, ବିଦ୍ରୋହ ଦମିତ ହେଲା ଓ ସେନାପତି ବଂଦୀଦଶାରୁ ମୁକ୍ତ ହେଲେ ।

**ସେନାପତିଙ୍କ ଆତ୍ମଚରିତ –**

ଏହି ଅସାଧାରଣ କୌତୂହଳପୂର୍ଣ୍ଣ ଓ ରୋମାଞ୍ଚକର ଜୀବନର ଅଧିକାଂଶ ଘଟଣାବଳି ହୁଏତ ଚିରକାଳଲାଗି ଅଜ୍ଞାତ ରହିଯାଇଥାନ୍ତା, ଯଦି ଫକିରମୋହନ ଜୀବନର ସଂଧ୍ୟାକାଳରେ, ବନ୍ଧୁବାନ୍ଧବଙ୍କ ବାରମ୍ବାର ଅନୁରୋଧରେ, ନିଜେ ନିଜର ଜୀବନର ଅଭିଜ୍ଞତା ସବୁ ଲିପିବଦ୍ଧ କରିଯାଇନଥାନ୍ତେ । ସେନାପତିଙ୍କର ଏହି 'ଆତ୍ମଚରିତ' ଯେକୌଣସି ଉପନ୍ୟାସ ପରି ଚିତ୍ତାକର୍ଷଣକାରୀ । ସମଗ୍ର ଭାରତୀୟ ସାହିତ୍ୟର ଶ୍ରେଷ୍ଠ କେତୋଟି ଆତ୍ମଚରିତମାନଙ୍କ

ମଧ୍ୟରେ ସେନାପତିଙ୍କ ଆତ୍ମଚରିତ ନିର୍ବିବାଦରେ ଗଣନୀୟ ହେବାର କଥା । ବାପୁଜୀ, ଭାରତୀୟ ଗ୍ରାମ-ରାଜ୍ୟର ଅଧୁନା ସ୍ମୃତି-ମାତ୍ର-ପର୍ଯ୍ୟବସିତ ଯେଉଁ ସ୍ୱର୍ଣ୍ଣଯୁଗକୁ ଫେରାଇଆଣିବାକୁ ଏତେ ଚେଷ୍ଟା କରି ବିଫଳକାମ ହେଲେ ଓ ଯାହା ଆଉ ଲେଉଟିବାର ଆଶା ନାହିଁ, ସେନାପତିଙ୍କ ଆତ୍ମଚରିତର ଏକ ଆଦ୍ୟ ଅଧ୍ୟାୟରୁ ସେହି ବର୍ଣ୍ଣନାର କେତେକ ପଙ୍‌କ୍ତି ମାତ୍ର ଏଠାରେ ଉଦ୍ଧାର କରି ଦେଉଛୁଁ –

"ସେ ସମୟରେ ଦେୱାନୀ ଅଦାଲତରେ ଅମଲାମାନଙ୍କର ଦରମା ଥିଲା ମାସିକ ତିନି ଟଙ୍କାଠାରୁ ଦଶଟଙ୍କା ପର୍ଯ୍ୟନ୍ତ । କେବଳ ସେରସ୍ତାଦାରଙ୍କ ଦରମା ମାସିକ ଦଶଟଙ୍କା ଥିଲା । ଏହି ସାମାନ୍ୟ ବେତନରେ ଲୋକେ ବେଶ୍ ସୁଖ-ସ୍ୱାଚ୍ଛନ୍ଦ୍ୟରେ ଚଳୁଥିଲେ । ସେତେବେଳେ ସଂସାରର ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ ଖୁବ୍ ସୁଲଭ ଥିଲା; ଯଥା – ଚାଉଳ ଟଙ୍କାକୁ ଦେଢ଼ମହଣ, ବିରି ମହଣ ଆଠଅଣା, ମୁଗ ମହଣ ଦଶଅଣା, ହରଡ଼ ଦଶଅଣା, ତେଲ ଟଙ୍କାକୁ ସାତସେର, ଘିଅ ଟଙ୍କାକୁ ତିନିସେର, ମାଛ ପଇସାକୁ ସେରେ ଦୁଇସେର ପର୍ଯ୍ୟନ୍ତ । ଅମଲା ଓ ବଡ଼ଲୋକମାନେ ବାଲେଶ୍ୱରୀ ପତଳା ଲୁଗା ପିନ୍ଧୁଥିଲେ । ମଫସଲବାସୀ ସମସ୍ତ ଚାଷୀଲୋକ ଘରର ଅରଟକଟା ସୂତାରେ ବୁଣା ଲୁଗା ପିନ୍ଧୁଥିଲେ । ସୂତା କାଟିବା ନିମନ୍ତେ ଯେଉଁମାନଙ୍କ ଘରେ ମାଇକିନିଆ ନଥାନ୍ତି, ସେହିମାନେ କେବଳ ବଜାରରୁ ଲୁଗା କିଣି ପିନ୍ଧୁଥିଲେ । ମଫସଲବାସୀ ସମସ୍ତଙ୍କର କପାଚାଷ ଥାଏ । ପ୍ରତ୍ୟେକ ସ୍ତ୍ରୀଲୋକର ଗୋଟାଏ ଗୋଟାଏ ଅରଟ ଥାଏ । ସୂତା କଟାହୋଇଗଲେ ତନ୍ତୀ ବାଣ ନେଇ ସେହି ସୂତାରେ ଲୁଗା ବୁଣିଦିଏ । ବାଣ ସଚରାଚର ହାତକୁ ପଇସାଏ କରି ଥିଲା ।

ଫକିରମୋହନ ସର୍ବଜନ-ସମ୍ମାନିତ ଦୀର୍ଘଜୀବନ ଭୋଗକରିଥିଲେ । * ଜାତିକୁ ମୃତ୍ୟୁ-ହୀନ ଦାନରାଜି ଦେଇଯାଇଥିବାରୁ ନିଖିଳ ଓଡ଼ିଆ ଭାଷାମାନଙ୍କର ସେକାଳର ଏକମାତ୍ର ମୁଖପାତ୍ର ଉତ୍କଳସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ ** ସଭାପତିରୂପେ ବରିତ କରି, ସେନାପତିଙ୍କ ପ୍ରତି ଓଡ଼ିଆ ଜାତି କୃତଜ୍ଞତା ଜ୍ଞାପନ କରିଥିଲା । ଜଣେ ସାହିତ୍ୟସେବୀ ପକ୍ଷରେ ଏହା ନିଶ୍ଚୟ ଥିଲା ଏକ ଅସାଧାରଣ ଓ ଅଶ୍ରୁତପୂର୍ବ ସମ୍ମାନଦାନ । ସେନାପତି ୧୯୧୬ରେ ଇହଲୀଳା ସମ୍ବରଣ କଲେ । ବାଲେଶ୍ୱରସ୍ଥ ତାଙ୍କର ଉଦ୍ୟାନ ଭବନ ଆଜି ଓଡ଼ିଆମାନଙ୍କର ଏକ ତୀର୍ଥସ୍ଥାନରେ ପରିଣତ ହୋଇଛି ।

## ତାଙ୍କ ରଚନାବଳି –

ପୂର୍ବେ ଯେପରି ସୂଚିତ ହୋଇଚି, ଫକିରମୋହନ କେବେହେଲେ ଗୋଟାଏ ବଡ଼ ଲେଖକ ହେବାର ବାସନା ପୋଷଣ କରିଥିବାର ଜଣାଯାଇନାହିଁ । ତାତ୍‌କାଳିକ ପ୍ରୟୋଜନା-ନୁରୋଧରେ ଲେଖୁ ଲେଖୁ ହିଁ ସେ ଠିଆହୋଇଗଲେ ଏକ ବିରାଟ ସାହିତ୍ୟିକ ରୂପେ ।

* ଇଂରାଜୀ ଗ୍ରନ୍ଥରେ, ଅସାବଧାନତାଜନିତ, ଫକିରମୋହନଙ୍କ ଆୟୁ ୮୦ ବର୍ଷ ବୋଲି ଲେଖାଯାଇଥିଲା । ତାହା ସଂଶୋଧିତ ହେବାର ନିର୍ଦ୍ଦେଶ ଦିଆଯାଇସାରିଛି ।

** ଇଂରେଜୀ ସଂସ୍କରଣରେ ଏହା ଭୁଲ୍‌ରେ ଦ୍ୱିତୀୟ ଅଧିବେଶନ ବୋଲି ମୁଦ୍ରିତ ହୋଇଯାଇଥିଲା ।

ତାଙ୍କର ଲେଖକତ୍ୱ କୌଣସି ଯୋଜନାର ପରିଣତି ବୋଲି କହିହେଉନି ।

ଲେଖକ ଭାବରେ ସେନାପତିଙ୍କ ଖ୍ୟାତି ଆଜି ତାଙ୍କ ଉପନ୍ୟାସରାଜି ଉପରେହିଁ ଦଣ୍ଡାୟମାନ; କିନ୍ତୁ କୌତୂହଳର ବିଷୟ ଏହି ଯେ; ତାଙ୍କର ପ୍ରଥମ ଉପନ୍ୟାସ ପ୍ରକାଶିତ ହେବା ପୂର୍ବରୁ ଦୀର୍ଘ ୪୦ ବର୍ଷଧରି ଔପନ୍ୟାସିକ ସେନାପତି ଅନବଚ୍ଛିନ୍ନ ଭାବରେ କେବଳ କବିତାହିଁ ଲେଖିଚାଲିଥିଲେ । ଯାହା କିଛି ଗଦ୍ୟ ଏହି ସମୟ ଭିତରେ ସେ ଲେଖିଥିଲେ, ତାହା କେତେଖଣ୍ଡି ପାଠ୍ୟପୁସ୍ତକରେହିଁ ପର୍ଯ୍ୟବସିତ ଥିଲା । ଯେତେବେଳେ ଓଡ଼ିଶାରେ ନୂଆ ଧରଣର ସ୍କୁଲ ସବୁ ବସିଲା, ନିଜ ମାତୃଭାଷାର ମାନ ରଖିବାପାଇଁ ଫକିରମୋହନ ସ୍କୁଲ ପାଠ୍ୟପୁସ୍ତକ ଲେଖିବାରେ ଲାଗିଯାଇଥିଲେ ଓ ଲେଖିପକାଇଥିଲେ ଜୀବନୀମାଳା । ଦୁଇଖଣ୍ଡରେ ସମାପ୍ତ ଏକ ସୁରଚିତ ଭାରତବର୍ଷର ଇତିହାସ, ଏପରିକି ଖଣ୍ଡେ ଗଣିତ ପୁସ୍ତକ ମଧ୍ୟ । ଏସବୁ ପାଇଁ ସେ ଅବଶ୍ୟ ତତ୍‌କାଳୀନ ସରକାରଙ୍କଦ୍ୱାରା ସମୁଚିତ ଭାବରେ ପୁରସ୍କୃତ ହୋଇଥିଲେ; କିନ୍ତୁ ଏଇ ସବୁକୁ ବାଦ୍ ଦେଲେ, ୧୮୬୬ରେ ତାଙ୍କର ପ୍ରଥମ ପ୍ରକାଶିତ ପାଠ୍ୟପୁସ୍ତକଠାରୁ ୧୯୦୨ରେ ତାଙ୍କର ପ୍ରଥମ ପ୍ରକାଶିତ ଉପନ୍ୟାସ ଭିତରେ ରହିଗଲା ଯେଉଁ ତିରିଶ-ଚାଳିଶ ବର୍ଷକାଳ, ସେଥିରେ ସେନାପତିଙ୍କ ସୃଷ୍ଟି କେବଳ କବିତାମାନଙ୍କର ଏକ ବିରାଟ ଗଦା । ଅଗଣିତ ଛୋଟ ଛୋଟ କବିତା କଥା ଛାଡ଼ିଦିଅ, ସେନାପତି ଏହି କାଳ ଭିତରେ ଦ୍ୱିତୀୟା ପତ୍ନୀର ପ୍ରଥମ ସନ୍ତାନର ମୃତ୍ୟୁ ପରେ ତାଙ୍କ ମନ ଭୁଲେଇବା ପାଇଁ ହିଁ; ଏକା ଏକା ଉଭୟ ରାମାୟଣ ଓ ମହାଭାରତ, ମୂଳ ସଂସ୍କୃତରୁ ଅନୁବାଦ କରିପକାଇଥିଲେ । ଏଭଳି କାମ ସାଧାରଣତଃ ଏକ ଏକ ପଣ୍ଡିତଗୋଷ୍ଠୀର ଜୀବନବ୍ୟାପୀ ସାଧନାବଳରେହିଁ ହେବାର କଥା । ତେଣୁ ଜଣେ ଲୋକର ଏ ସିଦ୍ଧି, କି ପ୍ରକାର ଅସାଧାରଣ ମାନସିକ ଓ ଶାରୀରିକ ଶକ୍ତିର ପରିଚୟ ଦିଏ, ତାହା ଅନୁମେୟ । ସେନାପତିଙ୍କ ପୂରା ରାମାୟଣଟି ଓ ମହାଭାରତର ପ୍ରଥମ ଚାରି ପର୍ବ ପ୍ରକାଶିତ ହୋଇ ଶିକ୍ଷିତ ଓଡ଼ିଆ ସଂପ୍ରଦାୟରେ ବେଶ୍ ଜନପ୍ରିୟତା ଲାଭକରିଥିଲା । ଏବେ ସେସବୁର ପୁନର୍ମୁଦ୍ରଣ ପାଇଁ ପ୍ରଯତ୍ନ କରାଯାଉଛି ।

ଏହାଛଡ଼ା ସେ ଛାନ୍ଦୋଗ୍ୟ ଓ ଅନ୍ୟ ଉପନିଷଦ୍‌ମାନଙ୍କର, ପୁଣି ହରିବଂଶ ଓ ଭଗବଦ୍‌ଗୀତାର ପଦ୍ୟାନୁବାଦ କରିଥିଲେ ଏବଂ ସରଳ ପଦ୍ୟରେ ପ୍ରଚାର ମଧ୍ୟ କରିଥିଲେ ''ସମବାୟ ଆନ୍ଦୋଳନର ସାରକଥା'' । ଜୀବନର ଅପରାହ୍ଣରେ ସେ ବୁଦ୍ଧଚରିତକୁ ନେଇ ଲେଖିଥିଲେ ମଧ୍ୟ ପ୍ରସିଦ୍ଧ 'ବୌଦ୍ଧାବତାର କାବ୍ୟ' ।

ତାଙ୍କର ପ୍ରଥମ ମୌଳିକ ପଦ୍ୟ-ଗ୍ରନ୍ଥ 'ଉତ୍କଳ ଭ୍ରମଣ' ପ୍ରକାଶିତ ହୁଏ ୧୮୯୨ରେ । ଏହା ନିଶ୍ଚୟ ଏକ ଅସାଧାରଣ ଭ୍ରମଣବୃତ୍ତାନ୍ତ । କେନ୍ଦୁଝରର ଆସିଷ୍ଟାଣ୍ଟ ମାନେଜର ଥିବାବେଳେ ଲେଖକ, ସରକାରୀ କର୍ମରେ ଥରେ ହାତୀରେ ଗଲାବେଳେହିଁ ମୂଳରୁ ଶେଷଯାଏଁ କାବ୍ୟଟି ଲେଖିପକାଇଥିଲେ । ସମସାମୟିକ ଓଡ଼ିଶାର ଜଣାଶୁଣା ନାଗରିକ-ମାନଙ୍କ ପ୍ରତି ଯଥାଯୋଗ୍ୟ ଭାବରେ ସ୍ତୁତି, ପ୍ରଶଂସା, ଶ୍ଳେଷୋକ୍ତି ଓ ନିନ୍ଦା ବର୍ଷଣ କରି-ଚାଲିଥିବା ଏକ ହାସ୍ୟରସୋଚ୍ଛଳ ଭ୍ରମଣବୃତ୍ତାନ୍ତ, ଏହି କାବ୍ୟ । ପ୍ରଥମ ପ୍ରକାଶବେଳେ ଏହା

ବେନାମି ଥିଲେହେଁ, ଓଡ଼ିଶାର ପାଠକ ସଂପ୍ରଦାୟଙ୍କୁ ଲେଖକ କିଏ ଜାଣିବା ପାଇଁ ବେଶୀ ସମୟ ଲାଗିନଥିଲା ଓ ସାରା ଦେଶରେ ଏ ପୁସ୍ତକ ଯେଉଁ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା, ତାହା ଅର୍ଦ୍ଧଶତାବ୍ଦୀ ପରେ ଆଜି ବି ଅନୁଭୂତ ହୋଇପାରୁଛି ।

ତାଙ୍କର ଅନ୍ୟାନ୍ୟ କବିତା-ସଂଗ୍ରହଗୁଡ଼ିକ ଏହି — ପୁଷ୍ପମାଳା, ଉପହାର, ଅବସର-ବାସରେ, ପୂଜାଫୁଲ, ପ୍ରାର୍ଥନା ଏବଂ ଧୂଳି । ସଂଖ୍ୟାରେ ବହୁ ହେଲେହେଁ, ଏହି କବିତା-ଗୁଡ଼ିକ ଭିତରୁ କେହି କାବ୍ୟ-ଧର୍ମର ଉଚ୍ଚତମ ଶିଖରକୁ ଉଠିପାରିଥିବାର କୁହାଯାଇ ପାରିବନାହିଁ; କିନ୍ତୁ ସମଗ୍ର ଭିତରେ ଓତପ୍ରୋତ-ବିକୀର୍ଣ୍ଣ ଏକ ପ୍ରସାଦଗୁଣ-ସମ୍ପନ୍ନ ସରଳତା, ପଦାବଳିର ସ୍ୱଚ୍ଛନ୍ଦ ଗତି ଓ ପଙ୍‌କ୍ତିଗୁଡ଼ିକରେ କବିର ପ୍ରାଣର ସ୍ପର୍ଶ, ପାଠକଚିତ୍ତକୁ ମୁଗ୍‌ଧ ନ କରି ଛାଡ଼ିନଥାଏ । ପରଂତୁ ଲେଖକଙ୍କର ଆନୁଷ୍ଠାନିକ ଶିକ୍ଷାକୁ ସ୍ମରଣ କଲେ, ତାଙ୍କ କବିତାବଳିର ଦେଶକାଳବ୍ୟାପ୍ତି ମଧ୍ୟ ବିସ୍ମୟ ସୃଷ୍ଟି କରିଥାଏ । ଆମେ ଏସବୁ ଭିତରେ ଶିଶୁଚିତ୍ତ ଉପଯୋଗୀ ସୁନ୍ଦର ଗଳ୍ପ-କବିତା, ସାମାଜିକ କୁସଂସ୍କାର ବିରୋଧରେ ବ୍ୟଙ୍ଗୋକ୍ତି, ପ୍ରକୃତିବର୍ଣ୍ଣନା, ଜଣାଣ ଓ ପ୍ରାର୍ଥନା, ପୁଣି ମାନବପ୍ରାଣର ଶାଶ୍ୱତ ଜିଜ୍ଞାସାସବୁ ସହିତ, ସମସାମୟିକ ଓ ଐତିହାସିକ ବିଖ୍ୟାତ ନରନାରୀଙ୍କ ଚରିତ ମଧ୍ୟ ପାଇବା । ଯୋଶେଫାଇନ୍, ଯିଶୁଖ୍ରୀଷ୍ଟ, ଲୁକ୍ରେଶିଆ, କ୍ଲିଓପେଟ୍ରା, ତୁକାରାମ ଓ ୧୯୦୫ର ରୁଷୋ-ଜାପାନୀ ଯୁଦ୍ଧ ଉପରେ ଲିଖିତ ଛୋଟ-ବଡ଼ କବିତାସବୁ କେବଳ ଦେଖାଇଦିଅନ୍ତି ଅସାଧାରଣ ଭାବରେ ମୁକ୍ତ ଏକ ଚେତନା, ଯାହା ଦେଶ ଓ କାଳର ସକଳ ସଂକୀର୍ଣ୍ଣ ସୀମାକୁ ଉଲ୍ଲଙ୍ଘନ କରି ଉର୍ଦ୍ଧ୍ୱକୁ ଉଡ଼ିପାରୁଥିଲା । ସେନାପତିଙ୍କ ଦୁଇବନ୍ଧୁ ରାଧାନାଥ ଓ ମଧୁସୂଦନ ଉଚ୍ଚ ପାଶ୍ଚାତ୍ୟ ଶିକ୍ଷା ପାଇଥିଲେ, ଯାହା ଫକିରମୋହନଙ୍କ ଭାଗ୍ୟରେ ଘଟିନଥିଲା; କିନ୍ତୁ ସେ ଦୁହିଁଙ୍କ କାବ୍ୟ-କବିତାର ଉପାଦାନ ଓଡ଼ିଶା ବା ଭାରତର ସୀମା ଅତିକ୍ରମ କରିନଥିଲା । ସେମାନେ କେବଳ ପୂର୍ବ-ସ୍ୱୀକୃତ 'କାବ୍ୟିକ' ଉପାଦାନ ଉପରେହିଁ ଲେଖନୀଚାଳନା କରିଯାଇଛନ୍ତି । ଅର୍ଦ୍ଧଶିକ୍ଷିତ ହେଲେହେଁ, ଅସାଧାରଣ ପ୍ରତିଭାଧର ସେନାପତି ରବିବିମ୍ବତଳେ ଦୃଷ୍ଟିଗୋଚରୀ-ଭୂତ ଯେକୌଣସି ବିଷୟକୁ ଟେକି ନେଇଛନ୍ତି ସାରସ୍ୱତ-କୁଞ୍ଜର ଯାଦୁ-ମଣ୍ଡଳକୁ । ସେନାପତି, ଓଡ଼ିଆ ଭାଷାରେ ସାଧାରଣ ମନୁଷ୍ୟର ଶ୍ରେଷ୍ଠ ଔପନ୍ୟାସିକ ବୋଲି ବିବେଚିତ; ଓଡ଼ିଆ ଭାଷାରେ ସେ ମଧ୍ୟ ସାଧାରଣ ବିଷୟର ଶ୍ରେଷ୍ଠ କବି ବୋଲି ଧରାଯିବେ ।

ସେନାପତିଙ୍କର ଏହି କବିତାବଳିର ବିଚିତ୍ର ମେଣ୍ଟ ଭିତରେ କ୍ଷୁଦ୍ର ଗୋଟାଏ କାବ୍ୟ କିନ୍ତୁ ଏକ ଅନୁରକ୍ତ ଓ ବିରହୀ କବିସ୍ୱାମୀର ଉଷ୍ଣ ଅଶ୍ରୁରେ ଅଭିଷିକ୍ତ ହୋଇ ବିରାଟ ହୋଇଉଠିଛି । ଯାହାଙ୍କ ଚିତ୍ତର ଅବସାଦ ଦୂର କରିବାପାଇଁ ହିଁ ସେନାପତି ସମଗ୍ର ରାମାୟଣ ଓ ମହାଭାରତ ଅନୁବାଦ କରିପକାଇଥିଲେ, ସେନାପତିଙ୍କର ସାଧ୍ୱୀ ଓ ଗୁଣବତୀ ଦ୍ୱିତୀୟା ସ୍ତ୍ରୀ ସେହି କୃଷ୍ଣକୁମାରୀଙ୍କ ମୃତ୍ୟୁଜନିତ ବିରହରେ ଏହି କବିତାଗୁଡ଼ିକ କବିସ୍ୱାମୀର ଲେଖନୀରୁ ଉଚ୍ଛ୍ୱସିତ ହୋଇ ବାହାରିପଡ଼ିଥିଲା । ଏହି କବିତା-ସଂଗ୍ରହ, 'ପୁଷ୍ପମାଳା'ର 'ଉତ୍ସର୍ଗପତ୍ର'ଟି

ପୃଥିବୀର ଯେକୌଣସି ପ୍ରାନ୍ତର ପ୍ରେମିକ-ପ୍ରେମିକାଙ୍କ ଚିତ୍ତରେ ଉଦାର ଆସକ୍ତିକୁ ପୁନର୍ଜାଗରିତ କରିବ । କେତେଗୁଡ଼ିଏ ପଙ୍‌କ୍ତି ଉଦ୍ଧାର କରି ଦେଉଛୁ –

''ମୋ କୁଟୀର-ରାଣୀ କୃଷ୍ଣକୁମାରୀ ସୁନ୍ଦରୀ / ଜୀବନବଲ୍ଲଭା ପ୍ରାଣପ୍ରିୟା ସହଚରୀ ।
ଛାଡ଼ିଯାଇଅଛ ମୋର ନୟନପ୍ରତିମା / ମିଶାଇ ହୃଦୟରକ୍ତେ ସେ ଗୁଣଗରିମା ।
ତୁମ୍ଭ ସମାନରେ ଦେଖିନାହିଁ ପୁଣ୍ୟବତୀ / ତୁମ୍ଭପରି ଦେଖିନାହିଁ ପତିବ୍ରତା, ସତୀ ।
ଉପାସନାବେଳେ ହୋଇ ଭକ୍ତିରେ ବିହ୍ୱଳ / ବେନି ନେତ୍ରୁ ବହିଯାଉଥାଏ ଅଶ୍ରୁଜଳ ।
ଦେଖୁଛି ସର୍ବଦା ନୀଳ ଆକାଶରେ ଇନ୍ଦୁ/ଫୁଟିଲା ଗୋଲାପେ, ପଦ୍ମେ ଶିଶିରର ବିନ୍ଦୁ ।
କମନୀୟ ଏ ସମସ୍ତ ନୁହେ ସେ ପ୍ରକାର / ଯେମନ୍ତ ସୁନ୍ଦର ତୁମ୍ଭ ନେତ୍ର-ଅଶ୍ରୁଧାର ।
ସେ ପ୍ରଶାନ୍ତ ମୂର୍ତ୍ତି, ସେହି ମୁଦ୍ରିତ ନୟନ/ଜଣାଯାଏ ମୋତେ ବ୍ୟାପିରହିଛି ଗଗନ ।''

× × × ×

ରାତିବେଳେ ବସିଥାଉଁ ଦୁହେଁ ନିର୍ଜନରେ / ଛାତର ଉପରେ କିମ୍ବା ଉଦ୍ୟାନ ମଧ୍ୟରେ ।
ଆକାଶରେ ଚନ୍ଦ୍ରତାରା ଯାଉଥାନ୍ତି ଭାସି / ପୃଥିବୀ ମଧ୍ୟରେ ଢାଳିଦେଇ ସୁଧାରାଶି ।
ଗଣୁଥିଲି ଆକାଶରେ ଚନ୍ଦ୍ରତାରାଗଣ / ପୃଥିବୀ ମଧ୍ୟରେ ଆମ୍ଭେ ଅଛୁ ଦୁଇଜଣ ।
''ହସି ହସି ଗଲା ମତେ କନ୍ଦାଇ କନ୍ଦାଇ, ପୁଣି କି ଦେଖିବି ସେହି ସହାସ୍ୟ ବଦନ''

ବା – ''କାହିଁଛନ୍ତି ବନ୍ଧୁ ମୋର କିଏ ଦେବ କହି'' ଇତ୍ୟାଦି କବିତାଗୁଡ଼ିକ ପ୍ରକୃତରେ ସ୍ପନ୍ଦିତ ହୋଇଉଠିଛନ୍ତି ଗଭୀରାନୁଭବରେ ଓ ସେହି ମହତ୍ ପ୍ରଣୟ ଯାହା କେବଳ ଏକ କବିହିଁ ଦେଇପାରେ ।

ସେନାପତି ଅନ୍ୟତ୍ର କହିଛନ୍ତି ଯେ, ତାଙ୍କର ଏହି ମହୀୟସୀ ଦ୍ୱିତୀୟା ପତ୍ନୀ ଦ୍ୱିତୀୟ ପ୍ରାଣସ୍ୱରୂପା କୃଷ୍ଣକୁମାରୀଙ୍କ ତିରୋଧାନ ପରଠାରୁ ଜୀବନ ତାଙ୍କୁ ଏକ ମରୁପ୍ରଦେଶ ପରି ବୋଧ ହେଉଥିଲା ଏବଂ ପତ୍ନୀ-ବିରହିତ ଜୀବନ ତାଙ୍କୁ ଯେ ଦୀର୍ଘକାଳ ବହନ କରିବାକୁ ପଡ଼ିଥିଲା, ସେଥିପାଇଁ ସେ ଅହରହ ଦୀର୍ଘଶ୍ୱାସ ପରିତ୍ୟାଗ କରୁଥିଲେ ।

**ସେନାପତିଙ୍କ ଗଳ୍ପ ଓ ଉପନ୍ୟାସ –**

ଉତ୍‌ଥାନ-ପତନମୟ ସାଂସାରିକ ଜୀବନ ଭିତରେ ଅବସର ପାଇଲେ ସେନାପତି ମଝିରେ ମଝିରେ ଏକ ଏକ ଗଳ୍ପ ଲେଖି, ପତ୍ରପତ୍ରିକାରେ ପ୍ରକାଶିତ କରୁଥିଲେ । ସେଗୁଡ଼ିକର ସଂଖ୍ୟା କମ୍ ହେଲେ କଅଣ ହେଲା, ପ୍ରତ୍ୟେକଟି ଏକ ଏକ ରତ୍ନ ଓ ପ୍ରତ୍ୟେକ ପାଠକ ସମ୍ମୁଖରେ ଏକ ଏକ ନୂତନ ସଂସାର ମେଲାଇଦିଅନ୍ତି । ସେଥିରୁ ଦୁଇଟି ବାଲେଶ୍ୱରର ସାମୁଦ୍ରିକ ବାଣିଜ୍ୟକୁ ନେଇ ଏବଂ ସେହିଭାବରେ ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ । ଫକିରମୋହନ ବାଲେଶ୍ୱର ବନ୍ଦରରେ ବୋଇତମାନଙ୍କର ଯିବା-ଆସିବା ନିଜେ ଦେଖିଥିଲେ । ତେଣୁ ଏହି ଗଳ୍ପଗୁଡ଼ିକରେ ଆମେ ସତ୍ୟରେ ଅନୁଭବ କରୁ ସମୁଦ୍ରର ଉତ୍ତାଳ ତରଙ୍ଗ-ପରମ୍ପରା ଏବଂ ଲବଣାକ୍ତ ସୈନ୍ଧବ ବାୟୁର ଘ୍ରାଣ । ଅନ୍ୟ ଗଳ୍ପଗୁଡ଼ିକରେ ଆମେ ଉତ୍କଳର ଗ୍ରାମ-ରାଜ୍ୟର ସାଧାରଣ ନରନାରୀଙ୍କୁ ଭେଟୁ ଓ କେତେକରେ ମଧ୍ୟ ଭେଟୁ ସେହି

ପାଶ୍ଚାତ୍ୟାଲୋକମୁଗ୍ଧ ନୂଆ ଇଂରାଜୀପାଠ-ପଢ଼ା ଶ୍ରେଣୀ, ଯେ ନିଜ ଦେଶର ସକଳଙ୍କୁ ଘୃଣା କରି କରି, ଶେଷରେ ଝଡ଼ିପୋକର ଦଶା ପ୍ରାପ୍ତ ହୋଇଛନ୍ତି । ସେନାପତିଙ୍କ ପ୍ରଥମ ଗଳ୍ପ 'ଲଛମନିଆ' ୧୮୬୮ରେ ବାଲେଶ୍ୱରରୁ ବାହାରୁଥିବା କୌଣସି ପତ୍ରିକାରେ ପ୍ରକାଶିତ ହୋଇଥିଲା । କେତେକଙ୍କ ମତରେ ଆଧୁନିକ ଭାରତୀୟ ସାହିତ୍ୟରେ ଦେଖାଯାଇଥିବା ପ୍ରଥମ କ୍ଷୁଦ୍ରଗଳ୍ପମାନଙ୍କ ଭିତରେ ଏହା ହେବ ଅନ୍ୟତମ । କୁପଥଗାମୀ ସ୍ୱାମୀଙ୍କୁ ବାଟକୁ ଫେରାଇଆଣିବାର ଉପାୟାନ୍ତର ନଦେଖି ଜଣେ ସାଧ୍ୱୀ ପତ୍ନୀ କିପରି ପତିଙ୍କ ଉପରେ ଛାଞ୍ଚୁଣୀ ବ୍ୟବହାର କରିବାକୁ ବାଧହୋଇଥିଲେ, 'ପେଟେଣ୍ଟ୍ ମେଡିସିନ୍' ଗଳ୍ପ ତାହାହିଁ ବର୍ଣ୍ଣନା କରି ଉଚ୍ଛଳ ହାସ୍ୟରସରେ ପରିପୂର୍ଣ୍ଣ ହୋଇଉଠିଛି । ଏକ ଗାଁରେ ଏକ କୁଖ୍ୟାତ କଳିହୁଡ଼ୀ ବିଧବାର ଏକମାତ୍ର ଗେଲବସର ପୁଅ 'ରାଣ୍ଡୀପୁଅ ଅନନ୍ତା'ର କି କରୁଣ-ମହତ୍ ପରିଣତି ସେନାପତି ଥୋଇଯାଇନାହାନ୍ତି ! ରାଣ୍ଡୀପୁଅ ଅନନ୍ତା ଗାଁ ଅବଧାନ ସମେତ ସମଗ୍ର ଗ୍ରାମର ଏକ ଜଞ୍ଜାଳ ହୋଇଉଠିଥିଲା । କିନ୍ତୁ ବଢ଼ି ଆସିଲା ବନ୍ଧ ଭାଙ୍ଗି, ନଈ ଗାଁ ଭିତରେ ପଶି ଗାଁ ଭସାଇଦେବା ଉପରେ ହେଲା । ସୁଅର ଜୋର୍‌ରେ, ଗାଁବାଲା ଯେତେ ମାଟି ପକାଉଛନ୍ତି ସବୁ ଭାସିଯାଉଛି । ରାଣ୍ଡୀପୁଅ ଅନନ୍ତା କାହିଁ କୁଆଡ଼େ ବୁଲୁଥିଲା; ବର୍ତ୍ତମାନ କାହାର ଏକ କବାଟ କାଢ଼ିଆଣି ଓ ମୁଣ୍ଡରେ ଧରି, ନଈ ଯେଉଁଠି ଘାଇ କରିପକାଉଛି ଓ ଗାଁବାଲା ରୁଣ୍ଡ ହୋଇଛନ୍ତି, ସେଠି ପହଞ୍ଚି, କବାଟ ସହିତ ସୁଅ ଭିତରକୁ ଡେଇଁପଡ଼ି ସେହି କବାଟ ଉପରକୁ ମାଟିଚେକା ଫୋପାଡ଼ିବାକୁ ଗାଁବାଲାଙ୍କୁ ଡାକଦେଲା । ଗାଁବାଲା ମହା-ଉତ୍ସାହରେ ଚେକା ଫୋପାଡ଼ିବାକୁ ଲାଗିଲେ । ଜବରଦସ୍ତ ବନ୍ଧ ପଡ଼ିଗଲା । ସେତେବେଳେ ଯାଇ ଗାଁବାଲାଙ୍କ ହୋସ୍ ହେଲା ଯେ, ଗାଁର ଜଞ୍ଜାଳ ରାଣ୍ଡୀପୁଅ ଅନନ୍ତା ଗାଁକୁ ରକ୍ଷାକରିବା ଲକ୍ଷ୍ୟରେ ବନ୍ଧତଳେ ନୀରବରେ ଆପଣାକୁ ଜୀବନ୍ତ ସମାଧି ଦେଇ-ସାରିଛି । ଅନନ୍ତାର ମା' କାନରେ କଥା ବାଜିଯିବାରୁ ସେ ସେଠି ଆସି ଝଡ଼ ପରି ପହଞ୍ଚିଲା; କିନ୍ତୁ କାହାକୁ ପଦେହେଲେ କଥା ନକହି ଝାମ୍ପଦେଲା ବନ୍ୟାସ୍ଫୀତ ନଦୀର ଗଭୀର-ପ୍ରବଳ ସ୍ରୋତ ଭିତରକୁ ଓ ସେହିଠାରେ ଲୀନ ହୋଇଯାଇଥିଲା ।

ସେନାପତିଙ୍କ ପ୍ରତ୍ୟେକ ଗଳ୍ପ ଏହିପରି ଅନନ୍ୟଗୁଣସମ୍ପନ୍ନ । ପ୍ରତ୍ୟେକଟି ସମାଜର କୌଣସି ଏକ ଅଜ୍ଞାତ ଅନ୍ଧକାର କୋଣକୁ ଆଲୋକିତ କରି ଆମକୁ ଦେଖାଇଦେଉଛନ୍ତି । ସେନାପତିଙ୍କ ଗଳ୍ପଗୁଡ଼ିକ ଏକାବେଳକେ ନୈର୍ବ୍ୟକ୍ତିକ । ସେଗୁଡ଼ିକ ପ୍ରକୃତରେ ଏକ ସାମାଜିକ ଚିତ୍ର-ପରମ୍ପରା; ଯାହାର ଅଙ୍କନରେ ଏକପକ୍ଷରେ ଉଚ୍ଛଳ ହାସ୍ୟରସ ଓ ଅନ୍ୟପକ୍ଷରେ ସୂକ୍ଷ୍ମ ନୈତିକ ତାତ୍ପର୍ଯ୍ୟ ମନୋହର ବର୍ଣ୍ଣ ରୂପେ ବ୍ୟବହୃତ ହୋଇଛନ୍ତି ।

ସେନାପତିଙ୍କ ଉପନ୍ୟାସସବୁ ତାଙ୍କ କ୍ଷୁଦ୍ରଗଳ୍ପର ଅଭିବୃଦ୍ଧି କହିଲେ ହେଲା । ଯେଉଁ ଲିଖନଶୈଳୀ ସେନାପତିଙ୍କର ଏକାନ୍ତ ନିଜସ୍ୱ, ଯାହା ତାଙ୍କୁ ଓଡ଼ିଶାର ସାଧାରଣ ପାଠକଙ୍କ ନିକଟରେ ଏତେ ପ୍ରିୟ କରେଇଲା ଓ ଯାହା ମଧ୍ୟ ତାଙ୍କୁ ସମସାମୟିକ ସକଳ ଭାରତୀୟ ଲେଖକମାନଙ୍କଠାରୁ ଅଲଗା କରି ଠିଆକରାଉଛି, ଦୀର୍ଘକାଳଧରି ଲେଖିଥିବା କ୍ଷୁଦ୍ରଗଳ୍ପଗୁଡ଼ିକ ଦେଇହିଁ ତାହା ସେନାପତି-ଲେଖନୀର ଅଭ୍ୟସ୍ତ ସିଦ୍ଧି ହୋଇଉଠିଥିଲା । ସାଧାରଣ

ନରନାରୀଙ୍କ ବର୍ଣ୍ଣନା କରିବାକୁ ବସିଲେଇ ସେନାପତିଙ୍କ ଲେଖନୀ ସ୍ୱଭାବତଃ ଏହି ଶୈଳୀର ଆଶ୍ରୟ ନେଉଥିଲା । କିନ୍ତୁ ବିଷୟର ପ୍ରୟୋଜନ ପଡ଼ିଲେ, ଯେପରି ଉଦାର ମହତ୍ ଶୈଳୀ ଅବଲମ୍ବନ କରିବାର କଥା, ସେ ଲେଖନୀ ତାହା କିପରି କରିବାକୁ ହେବ ତାହା ଉତ୍ତମ-ରୂପେ ଜାଣିଥିଲା । ନିରକ୍ଷର ଜନତାର କଥିତ ଭାଷାକୁ ସେନାପତି ସାହିତ୍ୟରେ ଯେପରି ଆଣି ମହତ୍ କର୍ମ ସମ୍ପାଦନ କରିପାରିଛନ୍ତି, ତାହା ଚିରକାଳ ବିବେଚିତ ହେବ ଏକ ସାହିତ୍ୟିକ ବିସ୍ମୟରୂପେ । ସେନାପତିଙ୍କ ଭାଗ୍ୟରେ ଯେ ଇସ୍କୁଲ-ପଢ଼ା ଘଟିନଥିଲା, ତାହା ତାଙ୍କ ପ୍ରତି ଓ ତାଙ୍କ ମାତୃଭାଷା ପ୍ରତି ହୋଇଉଠିଲା ଏକ ପରମ ଆଶୀର୍ବାଦ । ସେନାପତିଙ୍କ ବଳିଷ୍ଠ ଲେଖନୀ ଏହା ପ୍ରତ୍ୟକ୍ଷ ଓ ସିଦ୍ଧିମନ୍ତ ଭାବରେ ଦେଖାଇ ଦେଇନଥିଲେ, ନିରକ୍ଷର ଓଡ଼ିଶା ଜନତାର ଭାଷା ଯେ ଏପରି ସାହିତ୍ୟିକ ସୃଷ୍ଟିର ମନୋରମ ଉପାଦାନ ହୋଇପାରିବ, ଏହା କାହାର କଳ୍ପନାକୁ ମଧ ଆସି ନଥାନ୍ତା । ତାଙ୍କର ପ୍ରାୟ ସମସାମୟିକ ବଙ୍ଗଳାର ବିଖ୍ୟାତ ଔପନ୍ୟାସିକ ବଙ୍କିମଚନ୍ଦ୍ର ଚାଟାର୍ଜିଙ୍କ ସଂସ୍କୃତ ଭାରାକ୍ରାନ୍ତ ଶୈଳୀର ପରିପ୍ରେକ୍ଷୀରେ ହେୟ ଲୋକ-କଥାକୁ ସାହିତ୍ୟ-ସୃଷ୍ଟି ପାଇଁ ବିନିଯୋଗ କରିବାକୁ ଯିବା ସେନାପତିଙ୍କ ପକ୍ଷରେ ନିଶ୍ଚୟ ଥିଲା ଏକ ଅସାଧାରଣ ସାହିତ୍ୟିକ ଦୁଃସାହସିକତା ।

ଶୈଳୀପରି ସେନାପତି ତାଙ୍କର ଗଳ୍ପ ଓ ଉପନ୍ୟାସମାନଙ୍କର ମାନବିକ ଉପାଦାନଗୁଡ଼ିକୁ ମଧ ଆହରଣ କରିଥିଲେ ଦେଶର ଦୀନ ପତିତ ଜନସଙ୍ଘ ଭିତରୁ । ଏହାହିଁ ସେନାପତିଙ୍କୁ ସମଗ୍ର ଆଧୁନିକ ଭାରତୀୟ ସାହିତ୍ୟରେ ପ୍ରଥମ ଲୋକ-ଲେଖକର (ପ୍ରୋଲିଟେରିୟାଟ୍) ଗୌରବାବହ ସମ୍ମାନ ଦେବାର କଥା । ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ ଯେ, ହିନ୍ଦୀ ଔପନ୍ୟାସିକ ପ୍ରେମ୍‌ଚାନ୍ଦଙ୍କ ବିଖ୍ୟାତ ଉପନ୍ୟାସ (ଗୋଦାନ) ଯାହା ପରିବେଷଣ କରିବାକୁ ଯାଇଛି, ସେନାପତି ତାହା କରିସାରିଥିଲେ ପ୍ରାୟ ପଚାଶ ବର୍ଷ ପୂର୍ବରୁ ତାଙ୍କ ''ଛ'ମାଣ ଆଠଗୁଣ୍ଠ''ରେ । ଏହି ଉପନ୍ୟାସ ବାସ୍ତବବାଦୀ ରଚନାମାନଙ୍କ ଭିତରେ ଯେ ଏକ ପରମ କୃତି (ମାଷ୍ଟର ପିସ୍), ଏଥିରେ ସନ୍ଦେହ ନାହିଁ । ଏକ ନିରୀହ ତନ୍ତୀଦମ୍ପତି ସ୍ଥାନୀୟ ଗ୍ରାମ୍ୟ ସାହୁକାରଦ୍ୱାରା କିପରି ଅତ୍ୟାଚାରିତ ହୋଇଛନ୍ତି, ତାହାହିଁ ଏହି ମହତ୍ ପୁସ୍ତକଟିର ଉପ-ଜୀବ୍ୟ ବିଷୟ । ଗଳ୍ପଟି ଏହିପରି –

କଟକ ଜିଲ୍ଲାର ସରଖଣ୍ଡ ଗ୍ରାମରେ ରାମଚନ୍ଦ୍ର ମଙ୍ଗରାଜ ଥିଲା ଏକ ବାପ ମା'-ଛେଉଣ୍ଡ ଦରିଦ୍ର ପିଲା । ଜୀବିକା ପାଇଁ ସେହି ପିଲାବେଳେ ସେ ଛୋଟ ଛୋଟ ବ୍ୟବସାୟ ଧରିଲା ଓ ନିଜ ଦାରିଦ୍ର୍ୟର ପ୍ରତିବାଦ କରି, ମନେ ମନେ ସ୍ଥିରକଲା ଯେ; ଯେକୌଣସି ଉପାୟରେ ହେଉ ପଛେ, ସେ ଦିନେ ଧନୀ ହେବ । ସେତେବେଳେ ଓଡ଼ିଶା ଥିଲା ବଙ୍ଗଳାର ଅଂଶ । ମଙ୍ଗରାଜର ଗାଁ ଥିଲା ଏକ ଛୋଟ ଜମିଦାରୀ ଭିତରେ, ଯାହାର ମୁସଲମାନ ମାଲିକ ବଙ୍ଗଳାରେ ଥିଲେ ଓ ନିଜ ଜମିଦାରି କେବେ ଦେଖିନଥିଲେହେଁ, ନିଜର ବ୍ୟସନମୟ ଜୀବନ ପାଇଁ ସ୍ଥାନୀୟ ମାନେଜରଠାରୁ ରୀତିମତ ଟଙ୍କା ପାଇବା କେବଳ ଆଶା କରୁଥିଲେ । ସ୍ୱଭାବଚତୁର ମଙ୍ଗରାଜ ଆସ୍ତେ ଆସ୍ତେ ବିବିଧ କୌଶଳ ପ୍ରୟୋଗ କରି, ସେହି ଜମିଦାରିର ପ୍ରଭାବସଂପନ୍ନ ତହସିଲଦାର ପଦଟି କରଗତ କଲା । ଅଳ୍ପ

କେତୋଟି ବର୍ଷ ଭିତରେ ଜମିଦାରଙ୍କୁ ଖାଙ୍କା ବନେଇ, ସେ ଶେଷରେ ବାକୀ-ଖଜଣା ବ୍ୟପଦେଶରେ ଜମିଦାରିଟିକୁ ନିଜେଇ ନିଲାମରେ ଧରିନେଲା । ଏତିକିରେ ମଧ୍ୟ ସନ୍ତୁଷ୍ଟ ନରହି, ମଙ୍ଗରାଜ ଆତ୍ମ-ବିବୃଦ୍ଧିର ଦୁର୍ବାର ଲାଳସାକୁ ସନ୍ତୁଷ୍ଟ କରିବାକୁ ଯାଇ, ସତ୍ ଓ ଅସତ୍ ସର୍ବୋପାୟରେ ନାନା ଦିଗରୁ ସ୍ଥାବରାସ୍ଥାବର ବିବିଧ ସମ୍ପଦ ସଂଗ୍ରହ କରିବାକୁ ଲାଗିଲା ଓ ସେହି ସମଗ୍ର ଅଞ୍ଚଳରେ ହୋଇଉଠିଲା ସବୁଠାରୁ ଧନୀ ଓ ସବୁଠାରୁ ନିଷ୍ଠୁର ମହାଜନ । ମଙ୍ଗରାଜର ଗ୍ରାମକୁ ଲାଗି ଏକ ପୁରୁଣା ତନ୍ତୀ ବସ୍ତି ଥିଲା । ବକ୍ଷ୍ୟମାଣ କାଳକୁ ସେ ଗାଁରେ ତନ୍ତୀଗୋଷ୍ଠୀର କୌଳିକ ପ୍ରଧାନ ଥିଲା ଭଗିଆ, ବଡ଼ ନିରୀହ ପ୍ରକୃତିର ଲୋକ । ଗ୍ରାମ୍ୟ ମୁଖ୍ୟ ଭାବରେ ତା'ର ଥିଲା ଛ'ମାଣ ଆଠଗୁଣ୍ଠ, ସେହି ଗ୍ରାମର ସର୍ବୋତ୍କୃଷ୍ଟ ଜମି । ଭଗିଆଠୁ ଆହୁରି ସରଳ ଥିଲା ତା'ର ସ୍ତ୍ରୀ ସାରିଆ । ସେମାନଙ୍କର ପିଲାପିଲି ନଥିଲେ । ସରଳା ସାରିଆ ତା'ର ମାତୃପ୍ରାଣର ସମଗ୍ର ବାତ୍ସଲ୍ୟ ତେଣୁ ଢାଳିଦେଇଥିଲା ନେତ ନାମକ ଏକ ସୁଲକ୍ଷଣୀ କାଳିଗାଈ ଉପରେ । ରାମଚନ୍ଦ୍ର ମଙ୍ଗରାଜର ଶନିଦୃଷ୍ଟି ବହୁଦିନରୁ ରହିଆସିଛି ଭଗିଆର ସେହି ସାମାନ୍ୟ ଛ'ମାଣ ଆଠଗୁଣ୍ଠ ଜମି ଉପରେ; କାରଣ ସାମାନ୍ୟ ହେଲେହେଁ ତାହା ଥିଲା ଏକଚକଡ଼ା, ଉର୍ବର ଓ ଅଧିକନ୍ତୁ ମଙ୍ଗରାଜର ନିଜ ଜମିକୁ ଏକ୍‌ଦମ ଲାଗିକରି । ମଙ୍ଗରାଜର ମୁଖ୍ୟ ପରାମର୍ଶଦାତା, ବିଶ୍ୱାସଭାଜନ ଓ ମୁଖ୍ୟ ଉପାୟ ଥିଲା ଚମ୍ପା ନାମିକା ଏକ ଦୁଶ୍ଚରିତ୍ରା ଦାସୀ । ଗାଁମୁଣ୍ଡ ଏକ ଗଛତଳେ ଗାଁର ଯେଉଁ ମଙ୍ଗଳା ଠାକୁରାଣୀ ଥାଆନ୍ତି ତାଙ୍କପାଇଁ ଏକ ମନ୍ଦିର ତୋଳାଇଦେଲେ ସାରିଆ ନିଶ୍ଚେ ଜନନୀ ହେବ ବୋଲି ଭୁଲେଇ ସେଇ ଛ'ମାଣ ଆଠଗୁଣ୍ଠ ଜମିକୁ ବନ୍ଧା ନେଇ ଧୂର୍ତ୍ତା ଚମ୍ପା ମଙ୍ଗରାଜଠୁ ଚଢ଼ା ସୁଧରେ କିଛି ଟଙ୍କାର ବ୍ୟବସ୍ଥା କରାଇଦେଲା; କିନ୍ତୁ ଦେଉଳ ନଉଠୁଣୁ ସୁଧର ତାଗିଦା ଆସିଲା ଓ ସାରିଆର ପ୍ରାଣପ୍ରିୟ ନେତ ଗାଈଟିକୁ ମଙ୍ଗରାଜ ସୁଧ ବାବଦକୁ; ବାନ୍ଧି ନେଇଗଲା ଏବଂ ପରେ ମୂଳ ବାବଦକୁ ଛ'ମାଣ ଆଠଗୁଣ୍ଠ ଜମି ମଧ୍ୟ । ଜମି ଓ ନେତର ବିରହ ସହିନପାରି ସରଳା ସାରିଆ ମଙ୍ଗରାଜଙ୍କ ଘରପଛ ବାରଣ୍ଡାରେ ଅନଶନ ବରଣ କରି ଶୋଇରହିଲା; କିନ୍ତୁ ମଙ୍ଗରାଜର ନିଷ୍ଠୁର ହୃଦୟ ଏଥିରେ ବିଚଳିତ ହେଲାନାହିଁ । ସରଳା ସାରିଆ ଦୀର୍ଘ ଅନଶନରେ ପ୍ରାଣତ୍ୟାଗ କଲା ଏବଂ ଭଗିଆ ବାୟା ହୋଇ ଦାଣ୍ଡେ ଦାଣ୍ଡେ ବୁଲିଲା । ସାରିଆର ମୃତ୍ୟୁର ଅନୁସନ୍ଧାନ ନିମନ୍ତେ ପୋଲିସ୍ ଆସି ମଙ୍ଗରାଜକୁ ଗ୍ରେପ୍ତାର କଲା ଓ କୋର୍ଟରେ ବିଚାର ପରେ ତା'ର ସଶ୍ରମ କାରାବାସ ହେଲା । ସେତେବେଳେ ପାଗଳାମାନେ ମଧ୍ୟ ଅପରାଧୀମାନଙ୍କ ସହିତ ଏକ ଜେଲ୍‌ରେ ରହୁଥିଲେ । ପାଗଳା ଭଗିଆ ଦିନେ ବାହାରିପଡ଼ି ମଙ୍ଗରାଜକୁ ସେଠି ଭେଟନ୍ତେ ତା'ର ନାକ କାନ କାମୁଡ଼ିପକେଇଲା । ମଙ୍ଗରାଜ ଜ୍ୱରରେ ଶଯ୍ୟାଶାୟୀ ହୋଇପଡ଼ିଲା ଓ ତା'ର ମୃତ୍ୟୁ ଆସନ୍ନ ଜାଣି ଜେଲ୍ କର୍ତ୍ତୃପକ୍ଷ ତାକୁ ମୁକୁଳେଇଦେଲେ । ସେ ବର୍ତ୍ତମାନ ଫେରିଆସିଲା ତା'ର ଜନହୀନ ଓ ସମ୍ପତ୍ତିଶୂନ୍ୟ ଗୃହକୁ — ଅଗଣାରେ ପଡ଼ି ଶେଷନିଃଶ୍ୱାସ ନେବାକୁ । ମଲାବେଳେ ସେ କେବଳ ଉଚ୍ଚାରଣ କରିବାର ଶୁଣାଗଲା — ଛ'ମାଣ ଆଠଗୁଣ୍ଠ — ଛ'ମାଣ ଆଠଗୁଣ୍ଠ ।

ମଙ୍ଗରାଜଙ୍କୁ ପୋଲିସ ଗ୍ରେପ୍ତାରକରି ନେଇଯାଉଥିଲାବେଳେ ଦୁଷ୍ଟା ଚମ୍ପା କୌଶଳକ୍ରମେ ମଙ୍ଗରାଜଠାରୁ ଘରର ଚାବି ସବୁ ହସ୍ତଗତ କରିପକାଇଲା । ମଙ୍ଗରାଜ ଜେଲ୍‌ରେ ଥିବା ଭିତରେ ସେ ନିଜେ ବୋହିନେବା ଭଳି ଟଙ୍କା-ସୁନାତକ ସଂଗ୍ରହକରି ଓ ସାଥିରେ ଗୋବିନ୍ଦା ଭଣ୍ଡାରିକି ଧରି, ଦିନେ ଲୁଚି ବାହାରିଗଲା । ବାଟରେ ଏକ ଚଟିଘରେ ରାତ୍ରିଯାପନ କଲା ଭିତରେ ଲୁଣ୍ଠିତ ସମ୍ପଦ ଘେନି ଦୁହିଁଙ୍କ ଭିତରେ ଝଗଡ଼ା ହେଲା । ବାଗ୍‌ଯୁଦ୍ଧରେ ଚମ୍ପାକୁ ଜିଣିବ କିଏ ? ପରାସ୍ତ ଗୋବିନ୍ଦା ଉପାସ ରହି ବାହାର ବାରଣ୍ଡାରେ ଗୁମ୍‌ମାରି ବସିରହିଲା । ମଧ୍ୟରାତ୍ର ବେଳକୁ ସେ ତା'ର ମୁଠିରୁ ଖୁର ବାହାରକରି ନିଦ୍ରିତା ଚମ୍ପାକୁ ହତ୍ୟା କଲା ଓ ଟଙ୍କାଟୋକର ଧରି ରାତି ଥାଉ ଥାଉ ଦଉଡ଼ିଲା ନିକଟବର୍ତ୍ତୀ ନଈଘାଟକୁ, ସେଠି ଘାଟ-ଡଙ୍ଗା ଧରି ନଈ ପାରହୋଇ ପୋଲିସ୍ ଇନ୍‌କ୍ୱାରୀରୁ କିପରି ଚିରକାଳ ଲାଗି ବର୍ତ୍ତିଯିବ । ଡଙ୍ଗା ନଈ ମଝିରେ ହେଲାବେଳକୁ ସକାଳ ହୋଇ ଆସିଲା ଏବଂ ନାଉରିଆ ଗୋବିନ୍ଦାର ଲୁଗାପଟା ରକ୍ତାକ୍ତ ଦେଖି, ତାକୁ ଗୁଡ଼େଇତୁଡ଼େଇ ପ୍ରଶ୍ନ ପଚାରିବାକୁ ଲାଗିଲା । ଏଇ ସମୟରେ ଗୋବିନ୍ଦା ଦେଖିଲା ଯେ, ଆରପଟ ବନ୍ଧ ଉପରେ ସରକାରୀ ପୋଷ୍ଟାଲ ରନର୍ ଡାକ ନେଇ ଉପସ୍ଥିତ । ପଳାୟନର ଉପାୟ ଆଉ ନାହିଁ ଜାଣି, ଗୋବିନ୍ଦା ବର୍ତ୍ତମାନ ରାମଚନ୍ଦ୍ର ମଙ୍ଗରାଜର ସକଳ ଅଧର୍ମାର୍ଜିତ ସମ୍ପତ୍ତି ସହିତ ନଈର ଗଭୀର ଜଳକୁ ଡେଇଁପଡ଼ି ଆଉ ଉଠିଲା ନାହିଁ । ଏହି ହେଲା ଛ'ମାଣ ଆଠଗୁଣ୍ଠର ଗଳ୍ପ – ଗ୍ରାମ୍ୟ ଜନତା ଉପରେ ମହାଜନର ଅତ୍ୟାଚାରର କରୁଣ କାହାଣୀ ।

ପ୍ରାଚୀନ ସାମାଜିକ ପ୍ରଥାସବୁକୁ ଭ୍ରୂକ୍ଷେପ ନକରି ଜଣେ ନୂଆ ଇଂରାଜୀ-ପଢୁଆ ଯୁବକ ଯେଉଁ ବିଷାଦାନ୍ତ ନାଟକର ସମ୍ମୁଖୀନ ହେଲେ, ତା'ରି ଚିତ୍ର ହେଉଛି 'ପ୍ରାୟଶ୍ଚିତ୍ତ' । ଭଲ ଓ ମନ୍ଦର ସଂଗ୍ରାମ ଏବଂ ଅନୁତପ୍ତର କ୍ଷମା, ବର୍ଣ୍ଣନା କରିଛି ତାଙ୍କର 'ମାମୁଁ' ଉପନ୍ୟାସ । ଅଷ୍ଟାଦଶ ଶତାବ୍ଦୀରେ ବଙ୍ଗ ଓ ଓଡ଼ିଶାରେ ମର୍ହଟ୍ଟା ବର୍ଗୀମାନଙ୍କର ଲୁଣ୍ଠନ ଓ ଅତ୍ୟାଚାର ବର୍ଣ୍ଣନା କରିଛି ତାଙ୍କର ଐତିହାସିକ ଉପନ୍ୟାସ 'ଲଛମା' । ପଠାଣ ଓ ମର୍ହଟ୍ଟା ଉଭୟଙ୍କ ପକ୍ଷରୁ ନିରବଚ୍ଛିନ୍ନ ରୀତିରେ ଚାଲିଥିବା ଯୁଦ୍ଧମାନଙ୍କ ଭିତରେ ସେନାପତି ଏହି ଉପନ୍ୟାସରେ ଉତ୍ତରଭାରତୀୟ ବଧୂ, ସୁନ୍ଦରୀ ଲଛମାର ରୋମାଞ୍ଚକର କାହାଣୀଟି ଚତୁର ଭାବରେ ଥୋଇଯାଇଛନ୍ତି । ଲଛମାର ପରିବାର ପୁରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସୁଥିବା ଅବସ୍ଥାରେ ବାଟରେ ବର୍ଗୀମାନଙ୍କ ଦ୍ୱାରା ଅତର୍କିତ ଭାବରେ ଆକ୍ରାନ୍ତ ଓ ନିହତ ହୁଅନ୍ତି । ଯା'ପରେ ଦୁଃଖିନୀ ଲଛମାର ବାରମ୍ବାର ବିପନ୍ନ ଜୀବନର ଘଟଣାବଳି ପାଠକରି ଚିତ୍ତକୁ ତାହାପ୍ରତି ଗଭୀର ସହାନୁଭୂତିରେ ଭରିଦିଏ ଏବଂ ପାଠକର ବିସ୍ମୟ ଓ ଶ୍ରଦ୍ଧା ଯୁଗପତ୍ ତା' ଉପରେ ଅଜାଡ଼ିହୋଇପଡ଼େ, ଯେତେବେଳେ ସେହି ଲଛମା ଏକ ବିଶେଷ ଅନୁକୂଳ ପରିସ୍ଥିତିରେ ଦୁଷ୍ଟ ବର୍ଗୀ ସର୍ଦ୍ଦାର ଭାସ୍କର ପଣ୍ଡିତକୁ ହତ୍ୟାକରି ପ୍ରତିହିଂସା ନିଏ ।

ମୋଟଉପରେ ଫକିରମୋହନଙ୍କ ଉପନ୍ୟାସଗୁଡ଼ିକ ପ୍ରାକ୍-ବ୍ରିଟିଶ୍ ଓ ପର-ବ୍ରିଟିଶ୍ ପଚାଶ ବର୍ଷର ଓଡ଼ିଶାର କ୍ରମବିବର୍ତ୍ତିତ ସାମାଜିକ ଜୀବନର ଏକ ଚିତ୍ରଶାଳା; କିନ୍ତୁ କେବଳ କାଳର ନିର୍ଦ୍ଦେଶକ-ସ୍ତମ୍ଭ ଭାବରେହିଁ ସେଗୁଡ଼ିକ ମୂଲ୍ୟବାନ୍ ନୁହନ୍ତି । ଫକିରମୋହନ

ସେହି ଅସାଧାରଣ ଶକ୍ତି ନେଇ ଆସିଥିଲେ, ଯାହା ଥାଏ ପ୍ରତ୍ୟେକ ବଡ଼ ସ୍ରଷ୍ଟାଙ୍କଠାରେ । ସେହି ଶକ୍ତି ହେଉଛି, ଜଡ଼ ଓ ଛାୟାକୁ ଜୀବନ୍ତ କରି ଠିଆକରେଇବା । ନିରପେକ୍ଷ ଭାବରେ ଦେଖିଲେ, ସେନାପତିଙ୍କ ଉପନ୍ୟାସଗୁଡ଼ିକ ସୁଗଠିତ ବୋଲି ମନେହେବନି । ପ୍ଲଟ୍‌ଗୁଡ଼ିକ ସୁସମ୍ବଦ୍ଧ ଭାବରେ କଳ୍ପିତ ହୋଇନଥିଲା ଓ ସେଗୁଡ଼ିକର କ୍ରମାଭିବ୍ୟକ୍ତିରେ ଆମେ ସଙ୍ଗତିରକ୍ଷା ଦିଗରୁ ଦୃଷ୍ଟିର ଅଭାବ ଓ ତରବରିଆ ମାନସିକତା ମଧ୍ୟ ଲକ୍ଷ୍ୟ କରିପାରିବା । ଏସବୁ ଗାଠନିକ ଅଭାବ କିନ୍ତୁ ସମ୍ପୂର୍ଣ୍ଣ ଘୋଡ଼େଇହୋଇଯାଉଛି ଅସାଧାରଣ ଭାବରେ ଚତୁର ଓ ଜୀବନ୍ତ ଭାସ୍କର୍ଯ୍ୟଯୋଗୁଁ । ସେନାପତିଙ୍କ ଗଳ୍ପ-ପ୍ରାଙ୍ଗଣରେ ଆମେ ଜୀବନ୍ତ, ରକ୍ତ-ମାଂସର ନରନାରୀଙ୍କୁ ଭେଟୁ, ଯିଏ ଠିକ୍ ଆମରିମାନଙ୍କ ପରି ବା ଯେଉଁମାନଙ୍କୁ ଆମେ ଦୈନନ୍ଦିନ ଜୀବନରେ ପ୍ରତ୍ୟହ ଭେଟୁ ବା ଭଲରୂପେ ଜାଣୁ । ପଚାଶବର୍ଷ ପାରହେଲା ପରେ ମଧ୍ୟ ଆଜି ଯେ ସେନାପତିଙ୍କ ଉପନ୍ୟାସରାଜି ଶାଶ୍ୱତ ଆନନ୍ଦର ଉତ୍ସ ହୋଇ ରହିଛନ୍ତି, ତା'ର ହେତୁ ଏଠାରେ – ଜୀବନ ସହିତ ଏହି ମନୋରମ ଅନୁରୂପତା ।

ପୁଣି କେବଳ ଜୀବନ୍ତ ମାନବିକତା ସେନାପତିଙ୍କ ଗଳ୍ପ-ଉପନ୍ୟାସର ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ଲକ୍ଷଣ ନୁହେଁ । ତାଙ୍କ ଗଳ୍ପସୃଷ୍ଟି ଭିତରେ ଓତପ୍ରୋତ ଏକ ସୂକ୍ଷ୍ମ ଆଧ୍ୟାତ୍ମିକତା ମଧ୍ୟ ପାଠକକୁ ଆକର୍ଷଣ କରେ । ଯେହେତୁ ଏସବୁ ଲେଖକଙ୍କର ପ୍ରୌଢ଼ ବୟସରେ ଲେଖାହୋଇଥିଲା – ଆମେ ସେସବୁରେ ଉଚ୍ଛଳ ଯୌବନ-ପ୍ରଣୟ ଯାହା କି ବିଶ୍ୱସାହିତ୍ୟର ବହୁ ପରମ-ସୃଷ୍ଟିର କେନ୍ଦ୍ର ଘଟଣା ତାହା ନପାଇପାରୁ, ତଥାପି ସେସବୁ ଉତ୍କୃଷ୍ଟ ପ୍ରଣୟ-କାହାଣୀରୂପେ ଗୃହୀତ ନ ହେବାର ନୁହେଁ । ସେନାପତିଙ୍କ ଉପନ୍ୟାସାବଳିରେ ପ୍ରଣୟ ସହିତ ଆମେ ବୀଭତ୍ସ ଅପରାଧର ମଧ୍ୟ ପରିଚୟ ପାଉଁ । ଛ'ମାଣ ଆଠଗୁଣ୍ଠରେ ହତ୍ୟା ଓ ବିଚାର ଏପରି ଜୀବନ୍ତ ଭାବରେ ବର୍ଣ୍ଣିତ ଯେ, 'ଉତ୍କଳସାହିତ୍ୟ'ରେ ସେ ସବୁ ଯେତେବେଳେ ମାସ-ମାସଧରି ପ୍ରକାଶିତ ହେଉଥିଲା, ମଫସଲରୁ ଲୋକେ କଟକ କଚେରିରେ ସେ ମାମଲା ସ୍ୱଚକ୍ଷୁରେ ଦେଖିବାପାଇଁ ଆସୁଥିଲେ । ଅନ୍ୟ ଉପନ୍ୟାସ-ମାନଙ୍କରେ ମଧ୍ୟ ସେହିପରି ଅପରାଧସବୁ ଘଟିଛି । ଏସବୁ ବିଚାରକରି କେହି ଯେପରି ଧରି ନ ନିଅନ୍ତି ଯେ, ସେନାପତିଙ୍କ ଉପନ୍ୟାସ କେବଳ ଅପରାଧ ଓ ଦଣ୍ଡର ବର୍ଣ୍ଣନା । ପ୍ରକୃତରେ ସେନାପତିଙ୍କ ଉପନ୍ୟାସକୁ ଭ୍ରମ ଓ କ୍ଷମାର ଏକ ଏକ କାବ୍ୟ କହିବା ହିଁ ଅଧିକ ସଙ୍ଗତ ହେବ । ଫକିରମୋହନଙ୍କ ନାୟିକା ସାଧାରଣ ମନୁଷ୍ୟ ପରି ଭୁଲ୍ କରନ୍ତି, ଭୁଲ୍ ବୁଝନ୍ତି; ଅନୁତପ୍ତ ହୁଅନ୍ତି ଓ ଭଗବାନଙ୍କ କରୁଣାମୟ କ୍ଷମାରେହିଁ ପାପର ପ୍ରାୟଶ୍ଚିତ୍ତ ଖୋଜନ୍ତି । ସେନାପତି ଆମର ଏହି ପାର୍ଥିବ ନରନାରୀର ସଂସାରରେ ଈଶ୍ୱରଙ୍କର ସର୍ବକାଳୀନ ଅବସ୍ଥିତି ପ୍ରମାଣିତ କରିବାର କୌଣସି ସୁଯୋଗ ତାଙ୍କ ଗଳ୍ପସୃଷ୍ଟି ଭିତରେ ଛାଡ଼ିଯାଇନାହାନ୍ତି । ମାମୁ ଓ ପ୍ରାୟଶ୍ଚିତ୍ତରେ ଠିକ୍ ଠିକ୍ ଜାଗାରେ ସେ ମନୁଷ୍ୟଜୀବନର ଶାଶ୍ୱତ ଜିଜ୍ଞାସାରାଜିର ଆଲୋଚନା ଏପରି ଠିଆକରେଇଛନ୍ତି ଯେ, ତା' ଫଳରେ ସେହି ସେହି ସାଧାରଣ ଗଳ୍ପଗୁଡ଼ାକ ହଠାତ୍ ଉଠିଯାଇଛନ୍ତି ସେହି ଜୀବନର ସ୍ତରକୁ, ଯାହା ଆମେ

ଅନୁଭବକୁ ଆଣିପାରୁ କେବଳ ବିଶ୍ୱ-ସାହିତ୍ୟର ପରମ ସୃଷ୍ଟିମାନଙ୍କରେ ଏବଂ ବିଶ୍ୱ-ସାହିତ୍ୟର ସେହି ପରମ ସୃଷ୍ଟିମାନଙ୍କ ପରି ସେନାପତିଙ୍କ ଉପନ୍ୟାସ-ରାଜିରେ ମଧ୍ୟ ଆମେ ମହିମାମୟ ଦେବତାର ସନ୍ନିଧିରେହିଁ ପ୍ରାଣ ଖୋଲି ହସିପାରୁଁ । ଆମ ସମାଜରେ ଥିବା କପଟ, ଶଠତା ଓ ଉଭଟତାକୁ ଥଟ୍ଟାରେ ଥଟ୍ଟାରେ ଓଟାରି ବାହାରକରିବା ଦିଗରେ ସେନାପତିଙ୍କର ଏକ ବିସ୍ମୟକର କ୍ଷମତା ଥିଲା । ଓଡ଼ିଶାରେ ସେନାପତିଙ୍କ ଉପନ୍ୟାସ ପଠନରେ ପ୍ରାଣଖୋଲା ହସହିଁ ପାଠକର ସଦ୍ୟ ସନ୍ତୋଷ । ଦୈନନ୍ଦିନ ଜୀବନର ହାସ-ପରିହାସ ଦେଇହିଁ ସେନାପତି ତାଙ୍କ ଉପନ୍ୟାସମାନଙ୍କରେ ଆମକୁ ଈଶ୍ୱରଙ୍କ ସମୀପକୁ ନେଇଯାଆନ୍ତି ।

**ଓଡ଼ିଶାର ଟମାସ୍ ହାର୍ଡି –**

ଜନସାଧାରଣଙ୍କ ଲୌକିକ ଭାଷାକୁ ଏବଂ ମାଟି-ଓ-ପ୍ରକୃତି-ସହିତ-ଘନିଷ୍ଠଭାବରେ ସଂପୃକ୍ତ ଥିବା ନରନାରୀଙ୍କୁ ସାହିତ୍ୟରେ ବ୍ୟବହାର କରିବା କେବଳ ନୁହେଁ, ସେହି ନିରକ୍ଷର ଚୀରବାସ ଅଧମମାନଙ୍କ ଦେଇହିଁ ଆମକୁ ବିଶ୍ୱଜନୀନତାର ସ୍ୱାଦ ଦେଇପାରିବାରେ, ସକଳ ବିଖ୍ୟାତ ପାଶ୍ଚାତ୍ୟ ଔପନ୍ୟାସିକମାନଙ୍କ ମଧ୍ୟରେ ସେନାପତି ଆମକୁ ଇଂରେଜ ଔପନ୍ୟାସିକ ଟମାସ୍ ହାର୍ଡିଙ୍କୁ ହିଁ ସ୍ମରଣ କରାଇଥାନ୍ତି । ସେନାପତି ଟମାସ୍ ହାର୍ଡିଙ୍କର ଆଂଶିକ ସମସାମୟିକ ଥିଲେ । ହାର୍ଡିଙ୍କ ପରି ସେନାପତି ଥିଲେ ଉଭୟ କବି ଓ ଗାଳ୍ପିକ ଏବଂ ତାଙ୍କ ପରି ସହର ଓ ଗ୍ରାମାଞ୍ଚଳର ନିମ୍ନଶ୍ରେଣୀର ଚରିତ୍ରମାନଙ୍କୁ ବ୍ୟବହାର କରି ହିଁ ପରମ ସୃଷ୍ଟି ସବୁ ଛାଡ଼ିଯାଇଛନ୍ତି; କିନ୍ତୁ ସେନାପତି ଓ ହାର୍ଡି ବା ବିଶ୍ୱସାହିତ୍ୟର ଅନ୍ୟ ଯେକୌଣସି କୀର୍ତ୍ତିମାନଙ୍କ ଭିତରେ ଏକ ବିରାଟ ପାର୍ଥକ୍ୟ ଏହି ଯେ; ସେନାପତି ଏକମାତ୍ର ମହାପୁରୁଷ, ଯେ କି ଗୋଟିଏ ଭାଷାକୁ ମୃତ୍ୟୁମୁଖରୁ ରକ୍ଷାକଲେ ଓ ପରମ ଶିଳ୍ପ ଭାବରେ ନାନା ଉତ୍କୃଷ୍ଟ ସୃଷ୍ଟିଦେଇ ତାକୁ ଅସାଧାରଣ ଭାବରେ ଋଦ୍ଧିମନ୍ତ ମଧ୍ୟ କରିଦେଇଗଲେ; ଯଦିଓ ସେ ଲୋକ-ଜୀବନରେ କେବେହେଲେ ଲେଖକୀୟ ଖ୍ୟାତିର କଳ୍ପନାହିଁ କରି ନଥିଲେ । ଜୀବନ-ଯାକ ତାଙ୍କର ଏକମାତ୍ର ସ୍ୱପ୍ନ ଥିଲା, ସେ ଯେଉଁ ଜାତିରେ ଜନ୍ମଗ୍ରହଣ କରିଥିଲେ, ତା'ରି ସେବା କରିଯିବା ।

ଏକା ଏକା ଉଭୟ ରାମାୟଣ ଓ ମହାଭାରତ ଅନୁବାଦ କରିପକେଇଥିବାରୁ ଓ ସାହିତ୍ୟରାଜ୍ୟରେ ତାଙ୍କର ବହୁବିଧ ଶକ୍ତିମତ୍ତା ଦେଖି, ଓଡ଼ିଶାର ପାଠକସାଧାରଣ ସେନାପତିଙ୍କୁ ଯଥାଯୋଗ୍ୟ ଭାବରେ 'ବ୍ୟାସକବି' ବୋଲି ବିଶେଷିତ କରିଥିଲେ । ପରେ ସାହିତ୍ୟ-ପୋଷକ ବାମଣ୍ଡା ରାଜଦରବାର ତାଙ୍କୁ ସ୍ପୃହଣୀୟ 'ସରସ୍ୱତୀ' ଉପାଧି ମଧ୍ୟ ଦେଇଥିଲେ । ସେହି ଯୋଗୁଁ ହିଁ ସେ 'ସରସ୍ୱତୀ ଫକିରମୋହନ' ନାମରେ ପରିଚିତ । ତାଙ୍କପରି କେତେଜଣ ଏପରି ଉପାଧିର ପ୍ରକୃତରେ ଯୋଗ୍ୟ ? ସେନାପତି-ପ୍ରତିଭାର ଏକମାତ୍ର ଅଭାବ ଥିଲା, ଲେଖକ ହେବା ପାଇଁ ଘୋର ବ୍ୟକ୍ତିଗତ ପ୍ରତିକୂଳ ଅବସ୍ଥା ଭିତରେ ଏବଂ ଏକ ଅନୁନ୍ନତ ରାଜ୍ୟରେ ଜନ୍ମହେବା ।

**ରାଧାନାଥ ରାୟ –**

୧୮୪୮ରେ ରାଧାନାଥ ଏକ ସଂସ୍କୃତିବନ୍ତ ପରିବାରରେ ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଜୀବନଯାକ ଥିଲେ ହୀନସ୍ୱାସ୍ଥ୍ୟ ଓ ସେହି କାରଣରୁ ଉଚ୍ଚଶିକ୍ଷା ପାଇଁ କଲିକତା ଯାଇଥିଲେହେଁ ତାଙ୍କୁ ପଢ଼ା ଛାଡ଼ିଦେବାକୁ ପଡ଼ିଥିଲା; କିନ୍ତୁ ତରୁଣ ରାଧାନାଥ ଥିଲେ ସମଗ୍ର ବାଲେଶ୍ୱର ଜିଲ୍ଲାରେ ସେତେବେଳର ପ୍ରଥମ ମାଟ୍ରିକ୍ୟୁଲେଟ୍ । ଫକିରମୋହନ ତାଙ୍କ ଆତ୍ମଚରିତରେ କହନ୍ତି ଯେ, ରାଧାନାଥଙ୍କ ମାଟ୍ରିକ୍ୟୁଲେସନ୍ ପାଶ୍ ଖବର ଯେତେବେଳେ ବାଲେଶ୍ୱରରେ ପହଞ୍ଚିଲା, ବାଲେଶ୍ୱର କିଲ୍‌ଟରି ଦରପାଠୁଆ କିରାଣିମହଲରେ ଫୁସୁରଫାସର ଶୁଣାଗଲା – ''ହଁ, ସୁନ୍ଦରବାବୁଙ୍କ (ରାଧାନାଥଙ୍କ ପିତା ଓ ସେହି କିଲ୍‌ଟରିରେ ଅନ୍ୟତମ କିରାଣି) ସେହି ସନ୍ତିଆ ପିଲାଟା ଯଦି ମାଟ୍ରିକ୍ୟୁଲେସନ୍ ପାଶ୍ କରିଗଲା, ତେବେ ଜଣାଯାଉଛି ମାଟ୍ରିକ୍ୟୁଲେସନ୍ ପାଶ୍‌ଟା ଆମେ ଯେମିତି ଭାବୁଥିଲୁ ସେମିତି କିଛି ବଡ଼ କଥା ନୁହେଁ ।'' ରାଧାନାଥ ଇସ୍କୁଲମାଷ୍ଟ୍ର ଭାବରେ ଜୀବନଯାତ୍ରା ଆରମ୍ଭ କଲେ ଓ ନିଜର ନିପୁଣତା ଗୁଣରେ ବରାବର ଉପରକୁ ଉଠି ଉଠି ସ୍କୁଲମାନଙ୍କର ଡିଭିଜନାଲ୍ ଇନ୍‌ସପେକ୍ଟର ହୋଇ ଚାକିରିରୁ ଅବସର ଗ୍ରହଣ କରିଥିଲେ । ବ୍ୟକ୍ତିଗତ ଜୀବନରେ ଗଭୀର ପାଣ୍ଡିତ୍ୟ ଓ ତତୋଽଧିକ ଦେଶମୟ କବି-ଖ୍ୟାତି ସତ୍ତ୍ୱେ, ସେ ଥିଲେ ଅତ୍ୟନ୍ତ ଶାନ୍ତ, ବିନୟୀ, ଅନାସ୍ପର୍ଦ୍ଧୀ ମାନବୋତ୍ତମ । ସମ-ସାମୟିକ କାଳରେ ତାଙ୍କ ଗୁପ୍ତ ଦାନ-ଧର୍ମ ଓ ମାନବିକତା ଏକ କାହାଣୀରେ ପରିଣତ ହୋଇଯାଇଥିଲା ଏବଂ ଏକାଧାରରେ ସେହି ସଦାଶୟତା ଓ ଧୀମତ୍ତା ଯୋଗୁଁ ଉତ୍କଳ ଦେଶରେ ଏକପ୍ରକାର ସେ ପୂଜନୀୟ ଦେବତାରୂପେ ପରିଣତ ହୋଇଯାଇଥିଲେ ।

ପ୍ରୌଢ଼ ବୟସ ବେଳକୁ କବିଙ୍କ ଜୀବନରେ ଏକ ନୈତିକ ସ୍ଖଳନ ଘଟିଥିଲା । ସେ ପର୍ଯ୍ୟନ୍ତ ଅକଳୁଷିତ ଥିବା କବି-ଚିତ୍ତରେ ଏହି ଏକମାତ୍ର ଅଧଃପତନ ଏପରି ବିକ୍ଷୋଭ ସୃଷ୍ଟି କରିଥିଲା ଯେ; ସାମାଜିକ ଶାଳୀନତାକୁ ଭ୍ରୂକ୍ଷେପ ନକରି କବି ସେ ସମଗ୍ର ଘଟଣାକୁ ପ୍ରକାଶ୍ୟ ସ୍ୱୀକାରୋକ୍ତିରୂପେ ଏକ ପ୍ରଚାରପତ୍ର ଦେଇ ବାଣ୍ଟିଲେ ଓ 'ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି' ନାମକ ଏକ କବିତାରେ କବି ଚିରକାଳ ଲାଗି ଛାଡ଼ିଗଲେ ଏକ ଅନୁତପ୍ତ କବିପ୍ରାଣର ତିକ୍ତ ଉଷ୍ଣ ଅଶ୍ରୁଧାରା ।

ରାଧାନାଥ ବହୁଭାଷାରେ ଅବଗ୍ରାହୀ ପାଠକ ଥିଲେ ଏବଂ କବିପ୍ରତିଭା ଓ ପାଣ୍ଡିତ୍ୟ ଉଭୟ ପାଇଁ ସମସାମୟିକ ବଙ୍ଗ-ସମାଜର ବହୁ ସୁଧିଜନଙ୍କର ଶ୍ରଦ୍ଧାନ୍ୱିତ୍ ବନ୍ଧୁତା ଅର୍ଜନ କରିଥିଲେ । ବଙ୍ଗଳାର ପ୍ରସିଦ୍ଧ କବି ନବୀନଚନ୍ଦ୍ର ସେନ୍ ଓ ପ୍ରସିଦ୍ଧ ପ୍ରାବନ୍ଧିକ ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କ ପ୍ରତି ଉତ୍କୃଷ୍ଟ ମନୋରମ ସ୍ତୁତି-ବାକ୍ୟ ଛାଡ଼ିଯାଇଛନ୍ତି ।

ପ୍ରାୟ କୋଡ଼ିଏ ବର୍ଷ ବେଳକୁ ରାଧାନାଥ ବାଲେଶ୍ୱର ଜିଲ୍ଲାର ସ୍କୁଲସମୂହର ଡେପୁଟି ଇନ୍‌ସପେକ୍ଟର ହୋଇ ବାଲେଶ୍ୱରରେ ଅବସ୍ଥାପିତ ହୋଇଥିଲେ । ଏହାପୂର୍ବରୁ ପୁରୀ ଜିଲ୍ଲାସ୍କୁଲରେ ସେ କିଛିକାଳ ଶିକ୍ଷକ ଥିଲେ ଓ ସେଠାରେ ତାଙ୍କର ପ୍ରିୟତମ ଛାତ୍ର ଓ ବନ୍ଧୁ ମଧୁସୂଦନ ରାଓଙ୍କୁ ଭେଟିଥିଲେ । ସେହି ମଧୁସୂଦନ, ଇତି-ମଧ୍ୟରେ ବାଲେଶ୍ୱରକୁ

ଆସିଗଲେ, ସ୍ଥାନୀୟ ଜିଲ୍ଲାସ୍କୁଲର ଶିକ୍ଷକ ହୋଇ । ଜାତିକୁ ଉଠେଇବା ପାଇଁ ଯାବତୀୟ ଆନ୍ଦୋଳନର ନେତା ଉଦ୍ୟମଶୀଳ ତରୁଣ ଫକିରମୋହନଙ୍କ ଘର ତ ବାଲେଶ୍ୱରରେ । ତେଣୁ ବାଲେଶ୍ୱରରେ ଏହି ତିନିଙ୍କ ମିଳନ ଫଳରେହିଁ ୧୮୬୬ ଆଡ଼କୁ ଓଡ଼ିଆ-ଭାଷାର ଏକ ନବ ଯୁଗର ସୂତ୍ରପାତ ହୋଇଗଲା ।

## ଓଡ଼ିଶାର ଲିରିକାଲ୍ ବାଲାଡ୍ –

କଟକରେ ଗୌରୀଶଙ୍କର (ଓଡ଼ିଶାର ଅଗ୍ରଗାମୀ ଔପନ୍ୟାସିକ ଓ ନାଟ୍ୟକାର ରାମଶଙ୍କର ରାୟଙ୍କ ବଡ଼ଭାଇ), ବାଲେଶ୍ୱରରେ ଫକିରମୋହନ ଓ ଅଧୁନା ବିସ୍ମୃତ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ପ୍ରଭୃତିଙ୍କ ଆନ୍ଦୋଳନଫଳରେ ବଙ୍ଗାଳୀମାନଙ୍କ ଚକ୍ରାନ୍ତ ଫସର ଫାଟିଗଲା ଓ ବଙ୍ଗଳା ପରିବର୍ତ୍ତରେ ତତ୍‌କାଳୀନ ଓଡ଼ିଶା ଡିଭିଜନ୍‌ର ସ୍କୁଲମାନଙ୍କରେ ଓଡ଼ିଆ ହିଁ ପଢ଼ାହେବାର ସରକାରୀ ସିଦ୍ଧାନ୍ତ ହେଲା । କିନ୍ତୁ ଓଡ଼ିଆରେ ପାଠ୍ୟପୁସ୍ତକ କାହିଁ ? ସେହି ଗୁରୁ ଅଭାବ ଘୁଞ୍ଚେଇବା ପାଇଁ ଏହି ତିନି ବନ୍ଧୁ ବର୍ତ୍ତମାନ ଲାଗିପଡ଼ିଲେ । ଫକିରମୋହନ ଇତିହାସ ଗଣିତରେ ବହି ଲେଖିପକାଇଲେ, ରାଧାନାଥ ଓ ମଧୁସୂଦନ ହାତଦେଲେ ସାହିତ୍ୟରେ ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼ିକି କବି ୱାର୍ଡସ୍‌ୱାର୍ଥ ଓ କଲରିଜ୍‌ଙ୍କ ଯୁଗ୍ମ ଉତ୍ସାହର ଫଳ 'ଲିରିକାଲ୍ ବାଲାଡ୍‌ସ୍' ନାମକ କବିତା-ସଂଗ୍ରହ ଇଂରେଜୀ ସାହିତ୍ୟରେ ଯେପରି ଏକ ଭାଷା ପ୍ରତି ନବଯୁଗ ଆରମ୍ଭ କରିଦେଲା ବୋଲି କୁହାଯାଏ, ଓଡ଼ିଆରେ ରାଧାନାଥ ଓ ମଧୁସୂଦନଙ୍କ ଯୁଗ୍ମ ଚେଷ୍ଟାର ଫଳ 'କବିତାବଳି' ସମ୍ପର୍କରେ ତାହାହିଁ କୁହାଯାଇପାରେ । ଏହି କ୍ଷୁଦ୍ର କବିତା-ସଂଗ୍ରହଟିରେ ଅଧିକାଂଶ କବିତା ଥିଲା ମଧୁସୂଦନଙ୍କ ଲେଖନୀରୁ; କିନ୍ତୁ ଏହା ନିଃସନ୍ଦେହ ଯେ, ଏହି ସଂଗ୍ରହଟି ଠିଆ କରେଇବାର ଉତ୍ସାହ ଭିତରେ ହିଁ ଉଭୟ ଶିକ୍ଷକ ଓ ଛାତ୍ର ନିଜନିଜର ନିଜସ୍ୱ ମୌଳିକ କବି-ଶକ୍ତି ସହସା ଆବିଷ୍କାର କରିପକାଇଥିଲେ । ଯା' ପୂର୍ବରୁ ରାଧାନାଥଙ୍କ ଓଡ଼ିଆରେ ଏକମାତ୍ର ରଚନା ଥିଲା କାଳିଦାସଙ୍କ ମେଘଦୂତର ଅନୁବାଦ । ସମଗ୍ର ଭାରତୀୟ ସାହିତ୍ୟରେ ମେଘଦୂତର ଏପରି ଶ୍ରବଣରସାୟନ ଅନୁବାଦ ନଥିବ ବୋଧହୁଏ, ଯେପରି ବାହାରିଆସିଛି ତରୁଣ ରାଧାନାଥଙ୍କ ଲେଖନୀରୁ । 'କବିତା-ବଳି'ରେ ରାଧାନାଥଙ୍କ ଲେଖନୀର ତିନୋଟି ମାତ୍ର କବିତା ଥିଲା । ସେଥିରୁ ଏକତମ 'ବେଣୀସଂହାର' ନିଶ୍ଚିତ ଭାବରେ ସୂଚିତ କରୁଛି ରାଧାନାଥଙ୍କର ଅସାଧାରଣ ବର୍ଣ୍ଣନା-ନିପୁଣ କବି-ପ୍ରତିଭା ।

## ବର୍ଣ୍ଣନାନିପୁଣ ଜାତୀୟ-କବି –

ରାଧାନାଥ, ମୁଖ୍ୟତଃ ବର୍ଣ୍ଣନଶୀଳ କବି, ଉଚ୍ଚକୋଟୀର 'କାବ୍ୟ'-ସ୍ରଷ୍ଟା । ଏହି ଅର୍ଥରେ ଓଡ଼ିଆଭାଷାରେ ତାଙ୍କୁ ଆଧୁନିକ ଉପେନ୍ଦ୍ର ଭଞ୍ଜ ବୋଲି ମଧ କୁହାଯାଇପାରେ – ଯାହାଙ୍କ ସଙ୍ଗେ ତାଙ୍କର ସାଧାରଣତଃ ତୁଳନା ହୋଇଥାଏ ଏବଂ ଯାହାଙ୍କଠାରୁ ସେ ବଡ଼ ବୋଲି ତାଙ୍କର ସମାଦରକମାନେ କହିଥାନ୍ତି, ବସ୍ତୁତଃ ମୃତ ଉପେନ୍ଦ୍ର ଓ ଜୀବିତ ରାଧାନାଥଙ୍କ ତୁଳନାକୁ କେନ୍ଦ୍ରକରି ଓଡ଼ିଶାର ସାହିତ୍ୟ-ଜଗତରେ କିଛି କାଳଧରି ବିବାଦର ଝଡ଼-ତୋଫାନ ବହିଯାଇଥିଲା; କିନ୍ତୁ ବିନୟର ଅବତାର ରାଧାନାଥ ପ୍ରକାଶ୍ୟରେ ଜଣାଇଥିଲେ

ଯେ, ସେ ନିଜେ ଉପେନ୍ଦ୍ରଙ୍କ କାବ୍ୟକବିତାର ଅନୁଶୀଳକ ଓ ସ୍ତାବକ ।

ପ୍ରାୟ ପଚାଶ ବର୍ଷଧରି ଓଡ଼ିଶାରେ ରାଧାନାଥଙ୍କ କାବ୍ୟାବଳି ଫକିରମୋହନଙ୍କ ଉପନ୍ୟାସଗୁଡ଼ିକଠାରୁ ମଧ୍ୟ ନିଶ୍ଚିତଭାବରେ ଥିଲା ଅଧିକ ଜନପ୍ରିୟ । ଏହାର ରହସ୍ୟମୟ ହେତୁ ଏହି ଯେ, ରାଧାନାଥଙ୍କ ପ୍ରତ୍ୟେକଟି କାବ୍ୟହିଁ ମନୋଜ୍ଞ କବିତାରେ ପରିବେଷିତ ଏକ ଏକ ଚିତ୍ତାକର୍ଷକ ଉପନ୍ୟାସ । ତାଙ୍କର ରଚନାର ପ୍ରକୃତି ଥିଲା ତାହାହିଁ; ଯାହା ଆମେ ଦେଖୁ ଉପେନ୍ଦ୍ର ଓ ତାଙ୍କର ଅନୁଗାମୀମାନଙ୍କର ରଚନାରେ, କିନ୍ତୁ ରାଧାନାଥ ସେଥିରେ ଆଣି ଭରିଦେଲେ ବ୍ୟଞ୍ଜନାପୂର୍ଣ୍ଣ ଭିନ୍ନତା ଓ ନୂତନତା । ଭଞ୍ଜୀୟ କାବ୍ୟଶୈଳୀ ଗତାନୁଗତିକ ଭାବନାକୁ କେବଳ ଶାବ୍ଦିକ ବୈଦଗ୍ଧ ଦେଇ ଚମତ୍କାରୀ କରିବାକୁ ଚେଷ୍ଟା କରିଥିବା ସ୍ଥଳେ, ରାଧାନାଥ ସେଥିରେ ଯୌବନୋଚ୍ଛଳ ପ୍ରେମ ଓ ଭାବୋଷ୍ଣ ପଦଲାଳିତ୍ୟର ବିଦ୍ୟୁତ୍ ସଞ୍ଚାର କଲେ । ଯେଉଁ ଗଳ୍ପସବୁ ସେ କହି ବସିଲେ, ସେସବୁ ଥିଲା ଓଡ଼ିଆ ଭାଷାରେ ସମ୍ପୂର୍ଣ୍ଣ ନୂତନ ଓ ମଧ୍ୟଯୁଗର କାବ୍ୟ-ପରମ୍ପରାଠାରୁ ସେଗୁଡ଼ିକ ବାସ୍ତବ ଜୀବନର ନିକଟତର ଥାଇ ମଧ୍ୟ ସେମାନଙ୍କଠାରୁ ରୋମାଞ୍ଚକର ଗୁଣରେ ଆଦୌ ନ୍ୟୂନ ନଥିଲା । ରାଧାନାଥଙ୍କ ଏହି ଗାଥାଗୁଡ଼ିକର ପଶ୍ଚାତ୍‌ପଟ ଥିଲା ଆଧୁନିକ ଓ ଶିକ୍ଷିତ ସାଧାରଣଙ୍କର ପରିଚିତ; ପୁଣି କବି, ଗାଥାର ବ୍ୟାଖ୍ୟାନ ଭିତରେ ଯଥାସ୍ଥାନରେ ଓଡ଼ିଆମାନଙ୍କ ଅନ୍ତଃସ୍ଥଳରେ ଥିବା ଜାତୀୟତାର ତାରଗୁଡ଼ିକ ଏପରି ସ୍ପର୍ଶ କରିଚାଲିଲେ ଯାହା କେବଳ ଏକ-ସ୍ଥଳ-ଧରଣରେ ସାରଳାଦାସଙ୍କ ବ୍ୟତୀତ, ପ୍ରାଚୀନ ବା ମଧ୍ୟଯୁଗର ଅନ୍ୟ କୌଣସି ହେଲେ ଓଡ଼ିଆ କବିଙ୍କୁ ଜଣାନଥିଲା । ଅଧିକନ୍ତୁ ରାଧାନାଥଙ୍କ ଯେକୌଣସି କାବ୍ୟରେ ଭଞ୍ଜୀୟ ରୋମାଞ୍ଚ ପ୍ରଚୁର ଭରିରହିଥିଲେ ହେଁ, ଅର୍ଥବୋଧ ବା ରସବୋଧ ପାଇଁ ପ୍ରତି ପଦରେ ଟୀକା ବା ଅଭିଧାନ ମେଲେଇବାର ଭଞ୍ଜୀୟ ଜଞ୍ଜାଳରୁ ସମ୍ପୂର୍ଣ୍ଣ ମୁକ୍ତ ରହିଲା ରାଧାନାଥୀ କାବ୍ୟ । ଭଞ୍ଜେ ବା ତାଙ୍କର ଅନୁଗାମୀବର୍ଗ କାବ୍ୟ ଲେଖୁଥିଲେ ସୁଧୀ ଓ ବୁଧଜନଙ୍କ ପାଇଁ । ରାଧାନାଥ, ଇଂରେଜ କବି ସ୍କଟ୍ ଓ ଟେନିସନ୍‌ଙ୍କ ପଦାଙ୍କାନୁସରଣ କରି, କାବ୍ୟ ଲେଖିଲେ ସାଧାରଣ ପାଠକଙ୍କ ପାଇଁ । ଏଇସବୁ କାରଣ ଯୋଗୁଁ ରାଧାନାଥଙ୍କ କାବ୍ୟାବଳି ଉତ୍କଳର ପାଠକମାନଙ୍କ ନିକଟରେ ଯେକୌଣସି ମଧ୍ୟଯୁଗୀୟ ଶ୍ରେଷ୍ଠ କାବ୍ୟପରି ପ୍ରିୟ ବସ୍ତୁ ହୋଇଉଠିଲା । ରାଧାନାଥ-ଗ୍ରନ୍ଥାବଳି ଆଦରଣୀୟ ହୋଇଉଠିଲା ଉଭୟ ଅନ୍ତଃପୁରବାସିନୀ ନବବଧୂ ଓ ଶୁଷ୍କରସ ପଣ୍ଡିତଙ୍କ ନିକଟରେ । ବୋଧହୁଏ ବଙ୍ଗ ସମାଜରେ ରବୀନ୍ଦ୍ର ରଚନାର ଜନପ୍ରିୟତାକୁ ଛାଡ଼ିଦେଲେ, ସମଗ୍ର ଭାରତୀୟ ସାହିତ୍ୟରେ ଅନ୍ୟ କୌଣସି କବି ଏପରି ବ୍ୟାପକ ଜନପ୍ରିୟତା ଅର୍ଜନ କରିନଥିବେ, ଯେପରି ଓଡ଼ିଶାରେ ଘଟିଛି ରାଧାନାଥଙ୍କ ଭାଗ୍ୟରେ ।

ରାଧାନାଥ ତାଙ୍କ କାବ୍ୟାବଳିର କଥାବସ୍ତୁ ନାନାଆଡ଼ୁ ସଂଗ୍ରହ କରିଥିଲେ – ଗ୍ରୀସ୍, ରୋମ୍ ଓ ଭାରତର ପୌରାଣିକ ଗଳ୍ପ, ଓଡ଼ିଶାର ଇତିହାସ ଓ ଓଡ଼ିଶାର କିଂବଦନ୍ତୀରୁ । ବିଦେଶୀ କଥାବସ୍ତୁ ସବୁକୁ ସେ ଯେପରି ଭାବରେ ସମ୍ପୂର୍ଣ୍ଣ ଓଡ଼ିଶୀ ରୂପ ଦେଇପାରିଛନ୍ତି, ତାହା ବାସ୍ତବିକ ବିସ୍ମୟକର । ତାଙ୍କର ପ୍ରାୟ ସବୁ କାବ୍ୟର ଲୀଳାଭୂମି ହେଉଛି ଉତ୍କଳୀୟ ପ୍ରକୃତି । ସମଗ୍ର ଭାରତବର୍ଷରେ ଓଡ଼ିଶାର ପ୍ରାକୃତିକ ସୁଷମାର ତୁଳନା ନାହିଁ; କିନ୍ତୁ ପ୍ରାଚୀନ

ବା ମଧ୍ୟଯୁଗୀୟ ଓଡ଼ିଆ କବିମାନଙ୍କର, ତାଙ୍କ-ଘରର ଏରୁଣ୍ଡିବନ୍ଧ-ଆରପଟେ-ବିରାଜିତ ଥିବା ସେହି ମନୋରମ ପ୍ରାକୃତିକ ମହିମା ପ୍ରତି ନଜର ନଥିଲା । ନିଜ ଦେଶର ଦୀର୍ଘ-ବେଳା-ବିଲମ୍ବିତ ମହୋଦଧି ଏବଂ ମେଘାସନ, ମାଲ୍ୟଗିରି ଓ ମହେନ୍ଦ୍ର ପ୍ରଭୃତି ଶୈଳରାଜମାନଙ୍କର ରୋମାଞ୍ଚକର ପରିବେଶ, ବିପୁଳ ପ୍ରସାରିଣୀ ନଦନଦୀ, ସୃଷ୍ଟିର ଆଦ୍ୟରୁ ବିରାଜିତ ଥିବା ଘୋର ଅରଣ୍ୟାନୀ ଓ ମନୋରମ ହ୍ରଦାବଳି ଇତ୍ୟାଦି ପ୍ରତି ସେମାନେ ଅନାଇ ନାହାନ୍ତି । ରାମ ଓ କୃଷ୍ଣ ଚରିତରୁ ଉତ୍ସାରିତ ପୁଣ୍ୟ ଉପରେହିଁ ସେମାନଙ୍କର ଦୃଷ୍ଟି ନିବଦ୍ଧ ରହିଥିଲା ଏବଂ ପାଠକର ମନ ଚିତ୍ତେ ଧରିଲା ପର୍ଯ୍ୟନ୍ତ ଖାଲି ସେଇକଥା ସେଇକଥା ସହସ୍ର ପ୍ରକାରରେ ବର୍ଣ୍ଣନା କରିଚାଲିଛନ୍ତି ସେମାନେ । ରାମ ଓ କୃଷ୍ଣାଦି ସଂପୃକ୍ତ ସେହି ନୈମିଷାରଣ୍ୟ, ସେହି ଯମୁନା ନଦୀ ବା ଗୋବର୍ଦ୍ଧନ ପର୍ବତର ବର୍ଣ୍ଣନା ଖାଲି କରିଚାଲିଛନ୍ତି – ସେମାନଙ୍କର ରଚନା କିନ୍ତୁ ଯାହା, ସେମାନଙ୍କ ମଧ୍ୟରୁ ହୁଏତ କେହି ବୋଧହୁଏ ଆଖିରେ ଦେଖିନଥିଲେ । ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସରେ ରାଧାନାଥଙ୍କ ରୋମାଣ୍ଟିକ୍ କାବ୍ୟ-କବିତା ଦେଇ ଏତାବତ୍-ମୂକ ରହିଥିବା ଉତ୍କଳ-ପ୍ରକୃତି ବାଣୀବନ୍ତ ହେଲା କେବଳ ନୁହେଁ, ଉତ୍କଳୀୟ ଜନତାର ଚେତନାର ଏକ ଅଂଶ ହୋଇ-ଉଠିଲା । ନିଜ ଜନ୍ମଭୂମିର ଭୌଗୋଳିକ ବିବରଣୀକୁ କାବ୍ୟଭୁକ୍ତ କରି ରାଧାନାଥ ଓଡ଼ିଶା ପାଇଁ ସେଇଆ କରିଗଲେ; ଯାହା କାଳିଦାସ କରିଯାଇଛନ୍ତି ସମଗ୍ର ଭାରତବର୍ଷ ପାଇଁ । ପୁଣି ଗ୍ରୀକ୍‌ମାନେ ତାଙ୍କର ଜନ୍ମଭୂମି ହେଲ୍ଲାସ (ଗ୍ରୀସ୍)କୁ ଯେପରି ଦେବଦେବୀମାନଙ୍କର ଲୀଳାଭୂମିରେ ପରିଣତ କରିଦେଇଥିଲେ, ରାଧାନାଥ ମଧ୍ୟ ଓଡ଼ିଶାକୁ ସେହିଭଳି କରିଦେଇ ଗଲେ ତାଙ୍କର କାବ୍ୟ-କବିତା ଦେଇ । ଗ୍ରୀକ୍ ଦେବଦେବୀମାନଙ୍କ ପରି ରାଧାନାଥଙ୍କ ଉତ୍କଳୀୟ ଦେବଦେବୀ ସବୁ ମଧ୍ୟ ମନୁଷ୍ୟର ସୁଖ-ଦୁଃଖ ସହିତ ଘନିଷ୍ଠ ସଂପୃକ୍ତ । ଉତ୍କଳର ଶତ ଶତ ଅଜ୍ଞାତ ସ୍ଥାନ, ବନ, ନଦୀ, ଗ୍ରାମ ଓ ପର୍ବତ ରାଧାନାଥଙ୍କ ଲେଖନୀର ଯାଦୁକ୍ରିୟା ଫଳରେ ନୂତନ ଜୀବନ ଓ ବ୍ୟକ୍ତିତ୍ୱ ଲାଭ କରିଯାଇଛନ୍ତି । ମୋଟରେ ରାଧାନାଥ ଐତିହାସିକ ଓଡ଼ିଶା ରାଜ୍ୟକୁ କରିପକାଇଲେ ଅନୁପମ ପ୍ରାକୃତିକ ସୁଷମାବନ୍ତ ଏକ ଭୂମି; ଯେଉଁଠି ବିଚରଣ କରୁଛନ୍ତି ଆଧିଭୌତିକ ଶକ୍ତିସମ୍ପନ୍ନ ଦେବଦେବୀ, ବୀର୍ଯ୍ୟବାନ୍ ନାୟକ; ପରମରୂପସୀ ନାୟିକାମାନେ ଓ ଯେଉଁଠି ଦିବାଲୋକରେ ଘଟିପାରେ ଯେକୌଣସି ଅସମ୍ଭବ ପୌରାଣିକ ଗଳ୍ପ ଏବଂ ଜୀବନ୍ତ ହୋଇ ପୁନରଭିନୀତ ହୋଇପାରେ ଯେକୌଣସି କିଂବଦନ୍ତୀ । ଓଡ଼ିଶାରେ ଏପରି କୌଣସି ଜ୍ଞାତବ୍ୟ ନଦ, ନଦୀ, ପର୍ବତ, ହ୍ରଦ, ପୁଣି ଐତିହାସିକ ବା ଧର୍ମୀୟ ଅନୁଷ୍ଠାନ ନାହିଁ; ଯାହା ରାଧାନାଥ-ଲେଖନୀ-ନିଃସୃତ ପବିତ୍ର କାବ୍ୟବାରିଦ୍ୱାରା ଅଭିଷିକ୍ତ ନ ହୋଇଛି । ଜଣେ ଶିକ୍ଷିତ ଓଡ଼ିଆ, ଓଡ଼ିଶାର ଯେଉଁ ଅଞ୍ଚଳକୁ ଯାଉ, ସେଠି ରାଧାନାଥଙ୍କ କେତୋଟି ପଙ୍‌କ୍ତି ତା'ର ସ୍ୱତଃ ସ୍ମୃତିକୁ ଆସିଯିବ; ଯାହା ବ୍ୟକ୍ତ କରିପାରିଛି ସେହି ସ୍ଥାନର ଅତୁଳନୀୟ ସ୍ୱତନ୍ତ୍ରତା । ନିଜ ଜୀବନକାଳରେହିଁ ରାଧାନାଥ ଯେ ଓଡ଼ିଶାର ଜାତୀୟ କବି ବୋଲି ଚାରିଆଡ଼େ ସମ୍ମାନିତ ହୋଇଥିଲେ, ତାହା ଏକାନ୍ତ ଯଥାର୍ଥ ।

ଶିଳ୍ପୀଭାବରେ ଯେପରି ରାଧାନାଥ କୌଶଳରେ ନିଜ କାବ୍ୟଗୁଡ଼ିକର ଉପାଦାନ ସଂଗ୍ରହ କରିଛନ୍ତି ଓ ସେହି ଉପାଦାନଗୁଡ଼ିକୁ ନେଇ ଗଳ୍ପ ଗଢ଼ିପାରିଛନ୍ତି, ତାହା ପ୍ରକୃତରେ ବିସ୍ମୟକର । 'ଚନ୍ଦ୍ରଭାଗା'କୁ ଦୃଷ୍ଟାନ୍ତରୂପେ ନିଆଯାଇପାରେ ।* ଭଗ୍ନ-କୋଣାର୍କ ମନ୍ଦିରକୁ କେନ୍ଦ୍ରକରି ଗଢ଼ାହୋଇଥିବା ଏହି କାବ୍ୟର କାହାଣୀ ଓଡ଼ିଶାର ଏକାନ୍ତ ନିଜସ୍ୱ ନୁହେଁ ବୋଲି ଓଡ଼ିଆ ପାଠକେ କଳ୍ପନା କରିନପାରନ୍ତି; କିନ୍ତୁ ବସ୍ତୁତଃ ଏହା ପାଶ୍ଚାତ୍ୟ ପୁରାଣ-ପ୍ରସିଦ୍ଧ ସୂର୍ଯ୍ୟଦେବତା ଆପୋଲୋ ଓ ସୁନ୍ଦରୀ ଡାଫନୀର କାହାଣୀ । ଦିନେ ଚନ୍ଦ୍ରଭାଗା ନଦୀ କୋଣାର୍କ ମନ୍ଦିରର ନିମ୍ନଦେଶ ଦେଇ ବହିଯାଉଥିଲା । ଚନ୍ଦ୍ରଭାଗାର କ୍ଷିପ୍ର ଧାବମାନ ଜଳସ୍ରୋତ ଉପରେ ରବିକିରଣ ଦିନେ ପ୍ରଧାବିତ ଥିଲା । ଶେଷରେ ତଟିନୀ ଚନ୍ଦ୍ରଭାଗା, ନିକଟବର୍ତ୍ତୀ ମହୋଦଧିର ଉତ୍ତାଳ ଲହରୀମାଳାରେ ଲୀନ ହୋଇଯାଉଥିଲା । ହୁଏତ ସୂର୍ଯ୍ୟଦେବଙ୍କ ପ୍ରଣୟ-ନିବେଦନ-ଭୀତା, ବେଳା-ପ୍ରଧାବିତା ସୁନ୍ଦରୀ ଋଷି-କନ୍ୟା ଚନ୍ଦ୍ରଭାଗାର ସମୁଦ୍ରୋଦରରେ ଲୀନ ହୋଇଯିବାର ଭାବ-କଳ୍ପ ଏଇଥିରୁ ଆସିଥାଇପାରେ । ଯେଉଁଠୁ ସଂଗ୍ରହ କରିଥାଆନ୍ତୁ ନା କାହିଁକି, କବିଙ୍କର ପ୍ରଥମ କାବ୍ୟମାନଙ୍କ ମଧ୍ୟରୁ ଏକତମ ଏହି 'ଚନ୍ଦ୍ରଭାଗା' କାବ୍ୟଟିହିଁ ପ୍ରମାଣ କରେ ରାଧାନାଥଙ୍କର ଅସାଧାରଣ ଗଳ୍ପଗଠନ କ୍ଷମତା । ପ୍ରାକୃତିକ ଘଟଣାକୁ ରାଧାନାଥ ମାନବିକ ନାଟକୀୟତା ଦେଇପାରୁଥିଲେ ଓ ଦୂର ବିଦେଶର କିଂବଦନ୍ତୀ ଓ ଦେବଦେବୀଙ୍କର ଗଳ୍ପକୁ ସେ ଏପରି ଅସାଧାରଣ କୌଶଳରେ ରୂପାନ୍ତରିତ କରିପାରୁଥିଲେ ଯେ, ଓଡ଼ିଶାର ସ୍ଥାନ, କାଳ, ବର୍ଣ୍ଣ, ଗନ୍ଧ ସେମାନଙ୍କର ଯେ ନିଜସ୍ୱ ଓ ସ୍ୱାଭାବିକ ନୁହେଁ, ଏକଥା ସନ୍ଦେହ କରିବାର ଅବକାଶହିଁ ନଥିଲା ।

'ଚନ୍ଦ୍ରଭାଗା' ପରି, ରାଧାନାଥଙ୍କ 'ଉଷା' ଗ୍ରୀକ୍ ପୁରାଣର 'ଆଟାଲାଣ୍ଟା ଓ ସୁନାର ତିନି ଆପଲ' ଗଳ୍ପର ଓ 'କେଦାରଗୌରୀ' ବାବୀଲୋନୀୟ ଗଳ୍ପ 'ପିରାମସ୍ ଓ ଥିସବୀ' ଓଡ଼ିଶୀ ରୂପାନ୍ତର ମାତ୍ର । ହେଲେ ମଧ୍ୟ, ରାଧାନାଥଙ୍କ କାବ୍ୟିକ ଯାଦୁବଳରେ ଉଷା-କାହାଣୀ ବାଲେଶ୍ୱରରେ ଓ କେଦାରଗୌରୀ-କାହାଣୀ ଭୁବନେଶ୍ୱରରେ ହିଁ ଘଟିଥିବାର ପ୍ରତ୍ୟେକ ଓଡ଼ିଆ ଏବେ ବିଶ୍ୱାସ କରନ୍ତି । ଏହି ଅନୁକ୍ରମେ ରାଧାନାଥଙ୍କ 'ଯଯାତି'ରେ ଆମେ ସେକ୍ସପିୟରଙ୍କ 'ଟ୍ୱେଲ୍‌ଫ୍‌ଥ୍ ନାଇଟ୍' ଓ 'ପାର୍ବତୀ' ଗ୍ରୀକ୍ ନାଟକକାର ଏସ୍କିଲସ୍‌ଙ୍କ ଆଗମେମ୍‌ନନ୍‌ରେ ସ୍ପଷ୍ଟ ପ୍ରତିବିମ୍ବିତ ହେବାର ଦେଖୁ । ରାଧାନାଥଙ୍କ ଲେଖନୀରେ ଏସବୁ କିନ୍ତୁ ଏପରି ରୂପାନ୍ତର ଓ ଜନ୍ମାନ୍ତର ପାଇଛନ୍ତି ଯେ, ସେମାନଙ୍କର ପୌର୍ବଦେହିକ ସମ୍ବନ୍ଧ ସହଜରେ ବିଶ୍ୱାସ କରିହେବନାହିଁ ।

## ପ୍ରକୃତି-ପୁରୋଧା ରାଧାନାଥ –

ଓଡ଼ିଆ ସାହିତ୍ୟକୁ ରାଧାନାଥଙ୍କ ବିଶିଷ୍ଟ ଦାନ କିନ୍ତୁ ଏହି କାବ୍ୟିକ କାହାଣୀଗଠନ ନୁହେଁ । ରାଧାନାଥ କେବଳ ବର୍ଣ୍ଣନାର ଅନୁରୋଧରେ ପ୍ରକୃତିକି ଅର୍ଥାତ୍ ଉତ୍କଳ-ପ୍ରକୃତିକୁ ତାଙ୍କ କାବ୍ୟାବଳିରେ ଆଣି ପୂରେଇନାହାନ୍ତି । ରାଧନାଥୀ ବ୍ୟକ୍ତିତ୍ୱର ସ୍ୱାଭାବିକ ଧର୍ମ ଥିଲା

* ଇଂରାଜୀ ଗ୍ରନ୍ଥରେ ବିଦେଶୀ ପାଠକମାନଙ୍କ ପାଇଁ 'ଚନ୍ଦ୍ରଭାଗା'ର ଗଳ୍ପଟି ବର୍ଣ୍ଣିତ ହୋଇଥିଲା । ଓଡ଼ିଆ ପାଠକମାନଙ୍କ ନିକଟରେ ତାହା ଅତି ପରିଚିତ ଥିବାର ଆଶା କରି ଏଠାରେ ଦିଆଗଲା ନାହିଁ ।

ପ୍ରକୃତି-ଆରାଧନା, ପ୍ରୟୋଜନହୀନ ଭାବରେ ପ୍ରକୃତି ପ୍ରତି ନିବିଡ଼ ଆକର୍ଷଣ । ରାଧାନାଥୀ ପ୍ରତିଭାର ଏହି ଗୁଣ ଓଡ଼ିଆ ସାହିତ୍ୟରେ ଏକ ପରମ ନୂତନତା ଆଣିଦେଇଗଲା । ନର ଓ ନାରୀର ପ୍ରଣୟ ଛଡ଼ା ଆଉ ଏକ ଭିନ୍ନ ପ୍ରଣୟ ବା ଆକର୍ଷଣ ଯେ ଥାଇପାରେ, ଅର୍ଥାତ୍ କେବଳ ପ୍ରକୃତି ପାଇଁ ହିଁ ପ୍ରକୃତିର ଆଦର ଓ ତାହା ଯେ ଏକ ବିମଳ, ଅନୁପମ ଆଧ୍ୟାତ୍ମିକ ଅନୁଭୂତି, ଏହା ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା । ନରନାରୀର ପ୍ରଣୟ ତଳେ ମନୁଷ୍ୟର ଆଦିମ ଭୋଗ ଓ ଅଧିକାର ଲିପ୍‌ସା ଲୁକ୍‌କାୟିତ ରହିଥାଏ । ସକଳ ପ୍ରାଚ୍ୟ ଦେଶୀୟ ସାହିତ୍ୟ ଏହି ମାନବିକ ପ୍ରେମର ଭୋଗ ଓ ଅଧିକାରର ସ୍ତୁତିରେ ପ୍ଲାବିତ । କେବଳ ଗୋପାଳକୃଷ୍ଣ ଓ ଆଉ ଜଣେ ଦି'ଜଣଙ୍କ ରଚନାରେ ସାମାନ୍ୟ ବ୍ୟତିରେକ ଛଡ଼ା ଯେଉଁ ଓଡ଼ିଆ ସାହିତ୍ୟ ଭୋଗ ଓ ଅଧିକାର ସଚେତନ ଏହି ମାନବିକ ପ୍ରେମର ଆଶା, ଆକାଙ୍କ୍ଷା ଓ ସୁଖମୟ ସମ୍ଭାବନାର ବର୍ଣ୍ଣନାପ୍ରାଚୁର୍ଯ୍ୟ ଫଳରେ ଏକାବେଳକେ ମାର୍ତ୍ତିକ (earthy) ହୋଇଉଠିଛି, ରାଧାନାଥ ସେ ସାହିତ୍ୟରେ ଏକ ଉଦାର ଓ ଦୈବତ ପ୍ରେମ ପ୍ରବର୍ତ୍ତିତ କଲେ । ସ୍କୁଲ ଇନ୍‌ସ୍‌ପେକ୍ଟର ଭାବରେ ସମଗ୍ର ଓଡ଼ିଶା ପରିଭ୍ରମଣ କରି ରାଧାନାଥ, ଓଡ଼ିଶାର ସେ ପର୍ଯ୍ୟନ୍ତ ଅସ୍ପୃଷ୍ଟ ଓ ଅନାୟତ୍ତ ପ୍ରକୀର୍ଣ୍ଣ ଜାଙ୍ଗଲ ସୁଷମା ସହିତ ଘନିଷ୍ଠ ସମ୍ପର୍କରେ ଆସନ୍ତେ, ତାଙ୍କ କବିପ୍ରାଣରେ ଏକ ବୈପ୍ଳବିକ ଉତ୍ସାହ ଦେଖାଦେଲା । ଏହି ନବଜାଗ୍ରତ କ୍ଷୁଧାର ପ୍ରଶମନ ପାଇଁ ସେ ସରକାରୀ ଚାକିରିରୁ ଦୀର୍ଘ ଅବସର ନେଇ ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷ ମଧ୍ୟ ବୁଲି ଦେଖିଥିଲେ । ସେସବୁ ଦେଖିଆସି ସେ ଯେତେବେଳେ ଓଡ଼ିଶାରେ ଶୋଭା ଓ ସମ୍ପଦ ଉଭୟର ଉତ୍ସରୂପୀ ମନୋରମ ଚିଲିକା ହ୍ରଦ ଦେଖିବାକୁ ପାଆନ୍ତି, ତାଙ୍କର ହର୍ଷୋନ୍ମତ୍ତ କବିପ୍ରାଣ ଉତ୍ସାରିତ ହୋଇପଡ଼ିଛି ଆବେଗମୟ କାବ୍ୟସ୍ରୋତରେ ।* ରାଧାନାଥଙ୍କ କବିଦୃଷ୍ଟିରେ 'ଚିଲିକା' ହୋଇଉଠିଛି ଏକ ନର୍ମଦାୟିନୀ ରୂପସୀ, ତରୁଣୀ, ସଖୀ ଓ ଭାରତର ଅନ୍ୟ କୌଣସି ପ୍ରାକୃତିକ ସୁଷମା କବିଙ୍କୁ ଏ ଆତ୍ମସନ୍ତୋଷ ଦେଇପାରିନି, ଯାହା ଦେଇପାରିଛି ଲୀଳାମୟୀ ସୁନ୍ଦରୀ ଚିଲିକା ।

''ସ୍ତବ୍ଧଭାବେ ଏହି ମହାଦୃଶ୍ୟମାନ, ଦେଖିଲି ଭାରତେ ଭ୍ରମି ନାନା ସ୍ଥାନ ।
ଭୀଷଣ ବିରାଟ ବିକଟ ଉଦାର, ଦୃଶ୍ୟ ଦେଖି ହେଲା ବିସ୍ମୟ ଅପାର ।
ଚିତ୍ତବୃତ୍ତି ଗଲା ନିଜ ପଥ ହୁଡ଼ି, ସତ୍ତା ଗଲା ସେହି ମହାଭାବେ ବୁଡ଼ି ।
ଖର ସୌରକରେ ତାରକା ଯେସନ, ଅସ୍ମିତା ବିସ୍ମୟେ ହେଲା ନିମଗନ ।
ଗୁରୁ ପ୍ରାୟେ ତାଙ୍କୁ ଦୂରୁଁ କରି ଭୀତି, ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତି ।

× × × ×

ବିରାଟ ନୋହି ତୁ ଯେଣୁ ସୁବୃହତ, ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ ।
ଅବସାଦେ ଅବା ଆତ୍ମ-ବିସ୍ମୃତିରେ, ବୁଡ଼େ ନାହିଁ ମନ ତୋର ରମ୍ୟ ତୀରେ ।
ସ୍ନିଗ୍ଧ ରୂପ ତୋର ଚିତ୍ତଉଲ୍ଲାସକ, ସୁମଧୁର ଦ୍ୱୈତ ଭାବର ଦ୍ୟୋତକ ।''

* ଜାତୀୟ ସାହିତ୍ୟ ଆକାଡ଼େମୀ ଦ୍ୱାରା ସର୍ବଭାରତୀୟ ଭାଷାମାନଙ୍କରେ ଅନୂଦିତ ହୋଇଯାଇଛି ।

'ଚିଲିକା' ରାଧାନାଥଙ୍କର ସର୍ବୋତ୍କୃଷ୍ଟ ପ୍ରକୃତି-କାବ୍ୟ; କିନ୍ତୁ ଅନ୍ୟ ଛୋଟ ଓ ବଡ଼ ସବୁ କାବ୍ୟରେ ମଧ୍ୟ ଆମେ ରାଧାନାଥଙ୍କର ପ୍ରକୃତି ସହିତ ଘନିଷ୍ଠ ଓ ଉତ୍ସାହଜନକ ସମ୍ପର୍କର ଚିତ୍ରଣ ପାଉଁ । ଓଡ଼ିଆ କାବ୍ୟ-ସଂସାରରେ ରାଧାନାଥ ନିଃସନ୍ଦେହରେ ଶ୍ରେଷ୍ଠ ପ୍ରକୃତି-ଚିତ୍ରକର ।

କିନ୍ତୁ ରାଧାନାଥ କେବଳ ଜଣେ ଗଳ୍ପଗଠକ ବା ସୁନ୍ଦର ପ୍ରକୃତି ବା ନରନାରୀଙ୍କ ଚିତ୍ରକାର ନଥିଲେ । ନିନ୍ଦୁକମାନେ କହିପାରନ୍ତି ଯେ, ଏସବୁ ସିଦ୍ଧି କାବ୍ୟଜଗତରେ ସୁଲଭ; କିନ୍ତୁ ପ୍ରକୃତରେ ତାହା ନୁହେଁ । କୌଣସି ମନ୍ଦ କବିର ଲେଖନୀରୁ ସୌନ୍ଦର୍ଯ୍ୟ ଜନ୍ମଗ୍ରହଣ କରିବା ଏକ ଅସମ୍ଭବ କଥା । ପ୍ରତିଭାଧର ଜନର ପଛେ ପଛେ ଦଳେ ହିଂସୁକ, ନିନ୍ଦୁକ ଯେପରି ଲାଗିଥାନ୍ତି, ରାଧାନାଥଙ୍କ ଭାଗ୍ୟରେ ମଧ୍ୟ, ତାଙ୍କ ଜୀବନଯାକ ତାହାହିଁ ଘଟିଥିଲା । ରାଧାନାଥ-ନିନ୍ଦାରେ ନିଛକ ସାହିତ୍ୟର ବିଚାର ଯେତେ ନାହିଁ ବା ନଥିଲା, ସେତେ ଥାଏ ବା ଥିଲା ଅନ୍ୟାନ୍ୟ ବାସ୍ତବ ବା କାଳ୍ପନିକ ଅଭିଯୋଗ; କିନ୍ତୁ ରାଧାନାଥ ଯେ ବିଶୁଦ୍ଧ ସହଜାତ ପ୍ରତିଭାର ଅଧିକାରୀ ଥିଲେ, ତା'ର ପ୍ରକୃଷ୍ଟ ନିକଷ-ରେଖା ଏହି ଯେ, ସେ ସାରା ଜୀବନ ଧରି ସମାଜର ସୁବିଧା-ଭୋଗୀ ଓ କ୍ଷମତାଭୋଗୀ ବ୍ୟକ୍ତି ବା ଶ୍ରେଣୀର ଅଭାବ-ପ୍ରମାଦ ଦେଖାଇ ନିର୍ଦ୍ଦୟ ଭାବରେ ଚାବୁକ-ପ୍ରହାର କରିବାକୁ କେବେ ହେଲେ କୁଣ୍ଠିତ ହୋଇନଥିଲେ । ପ୍ରତିଭାର ଏ ପ୍ରକାର ସହଜାତ ଅକୁତୋଭୟତା ଆମେ ସମଗ୍ର ଉତ୍କଳ ସାହିତ୍ୟରେ ପ୍ରଥମ କେବଳ ରାଧା-ନାଥଙ୍କଠାରେହିଁ ଦେଖୁ । ବ୍ୟକ୍ତିଗତ ଜୀବନରେ ରାଧାନାଥ ଥିଲେ ଶାନ୍ତ, ନମ୍ର, ଭଦ୍ର ଓ ଶୀଳବନ୍ତ; କିନ୍ତୁ ଆମେ ତାଙ୍କ ନିକଟରେ ନତ-ମସ୍ତକ ହେବାର କଥା ଯେ, ଏକ ଶାନ୍ତ, ନମ୍ର ଆବରଣ ତଳେ ଏହି ପ୍ରତିଭାଧର କବି ସତ୍ୟ ଓ ନ୍ୟାୟର ପବିତ୍ର ହୋମଶିଖାକୁ ଅନ୍ତରରେ ଜଳାଇରଖିଥିଲେ । ମନୁଷ୍ୟଭାବରେ ମନୁଷ୍ୟ ପ୍ରତି ଯେଉଁଠି ଅନ୍ୟାୟ ଓ ଅପମାନ ଘଟିବା ରାଧାନାଥଙ୍କ ଆଖିରେ ପଡ଼ିଛି ସେ ସେଠି ହାତ ପକାଇଛନ୍ତି ତାଙ୍କ ତୂଣୀରରେ ଏବଂ ଅକୁଣ୍ଠିତ ଭାବରେ ଫିଙ୍ଗିଛନ୍ତି ତୀକ୍ଷ୍ଣ ଶର ମୂଢ଼ ଅନ୍ୟାୟକାରୀ ଓ ଅତ୍ୟାଚାରୀ ପ୍ରତି । ଏହାହିଁ ପ୍ରକୃତ ପ୍ରତିଭାର ପ୍ରକୃଷ୍ଟ ଲକ୍ଷଣ । ପ୍ରକୃତ ପ୍ରତିଭା ଜାଣେ ନାହିଁ ସାମୟିକ କ୍ଷମତାବାନ୍‌ର ମନ ଜାଣି କଥା କହିବା ବା ଅନ୍ୟାୟକୁ ମୁଣ୍ଡପୋତି ମାନିଯିବା । ସମଗ୍ର ବିଶ୍ୱସାହିତ୍ୟରେ ଏ କାମ ସବୁ ମନ୍ଦକବି ବା ସାହିତ୍ୟିକ ଯଶ-ପ୍ରାର୍ଥୀ ଷଡ଼ଯନ୍ତ୍ରକାରୀ ଦଳର, ଯେଉଁମାନେ ପ୍ରକୃତ ପ୍ରତିଭା-ବାନ୍ ଲୋକର ପଛେ ପଛେ ଦେଖାଦେଇଥାନ୍ତି ଯୁଗେ ଯୁଗେ, ପ୍ରତି ଦେଶ ଓ ଭାଷାରେ ।

ଆମେ ରାଧାନାଥଙ୍କ ପ୍ରତ୍ୟେକ କାବ୍ୟରେ ତାଙ୍କ ପ୍ରତିଭାର ଏହି ବିଭାବଟି ଊଣା-ଅଧିକେ ପ୍ରକଟିତ ହୋଇଥିବାର ଦେଖୁଁ; କିନ୍ତୁ ଏହା ଠୁଳହୋଇପଡ଼ିଛି 'ଦରବାର'ରେ । ସେଠି ଆମେ ଶାନ୍ତ, ନମ୍ର ରାଧାନାଥଙ୍କୁ ଦେଖୁ ଯେ ସେ ସମକାଳୀନ ଓଡ଼ିଶାର ରାଜା, ମହାରାଜା ଓ କ୍ଷମତାଦୃପ୍ତ ଶ୍ରେଣୀକୁ ଥଟ୍ଟା, ନକଲ ଓ ପ୍ରତ୍ୟକ୍ଷ ନିନ୍ଦା ଦେଇ ଜବେଇ କରିବାରେ ଲାଗିଛନ୍ତି । ଏହି କ୍ଷଣକାଳ ପାଇଁ ସ୍ଫୀତୀଭୂତ ବ୍ୟକ୍ତିମାନଙ୍କ ବିପରୀତରେ ରାଧାନାଥ ନିଜ ଦରବାରରେ ଠିଆକରାଇଛନ୍ତି ଦୀନ, ରୁଗ୍ଣ, ଋଣଗ୍ରସ୍ତ ଜ୍ୟୋତିର୍ବିଦ୍ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କୁ । କବିଦୃଷ୍ଟିରେ ରାଜା, ଧନୀ, ରାଜକର୍ମଚାରୀମାନଙ୍କର କ୍ଷଣିକ ସ୍ପର୍ଦ୍ଧାମୟ ମିଳନଭୂମି ସେହି 'ଦରବାର'ରେ, ଏକମାତ୍ର ଶ୍ରଦ୍ଧା ସମ୍ମାନର ପାତ୍ର ଥିଲେ ସେହି ଦରିଦ୍ର କିନ୍ତୁ ପ୍ରତିଭାବାନ୍

ଜ୍ୟୋତିଷୀ । ରାଧାନାଥ, 'ଦରବାର'ରେ ଉତ୍କଳର ଦରିଦ୍ର ଜ୍ୟୋତିଷୀ ପଠାଣି ସାମନ୍ତଙ୍କୁ ଯେଉଁ ଅଭିନନ୍ଦନ ଦେଇଛନ୍ତି, ତାହା ପୃଥିବୀର କ୍ୱଚିଦ୍ ପ୍ରତିଭାଧରଙ୍କ ଭାଗ୍ୟରେ ଘଟିଥାଏ । ପଦଯୋଜନା, ଭୂୟୋଦର୍ଶନ ଓ ପ୍ରାଣମୟ ଶ୍ରଦ୍ଧା ନିବେଦନରେ ଏହି ସ୍ତୁତି ବ୍ୟକ୍ତିଗତ ସ୍ତରରୁ ବହୁ ଊର୍ଦ୍ଧ୍ୱକୁ ଉଠି ଉଚ୍ଚତମ କୋଟିର କବିତାରେ ପରିଣତ ହୋଇଯାଇଛି ।

"ମଣ୍ଡିଅଛ କିମ୍ବା ଆସି ସଭାଘର, ଉତ୍କଳଶେଖର, ହେ ଚନ୍ଦ୍ରଶେଖର;
ଚିତ୍ରୋତ୍ପଳାନୀରପାୟୀ କି ଆଶାରେ, ପଶିଲ କାସର ସେବିତ କାସାରେ ?

× × × ×

ଜାଣେ ମୁଁ ନଥିଲ ସମ୍ମାନ ଆଶାୟୀ, ସମ୍ମାନ ତୁମ୍ଭଙ୍କୁ ଲୋଡ଼ି ନେଲା ଯାଇ ।
ତୁମ୍ଭ ମୁଖ୍ୟ କର୍ମ ଯଜ୍ଞ ଆଚରିବା, ଦୁନିଆର ଯଶେ ଯାଏ ଆସେ କିବା ?
ଧନ୍ୟ, ଧନ୍ୟ ଆହେ ତପସ୍ୱୀ ସତ୍ତମ, ମର୍ତ୍ତ୍ୟଦେହେ ତୁମ୍ଭେ ପରାଜିଲ ଯମ ।
ଦେଇଛନ୍ତି ଦିବ୍ୟଚକ୍ଷୁ ବାଗୀଶ୍ୱରୀ, ଦେଖିବାକୁ ମହାଭୂତି ମାହେଶ୍ୱରୀ ।
ସବୁବେଳେ ଧ୍ୟାନ କରୁଛ ଭାସ୍ୱତୀ, ହିରଣ୍ୟଗର୍ଭର ମୂରତି ଶାଶ୍ୱତୀ ।
ତୁମ୍ଭ ଆଗେ ଭାସେ ପ୍ରତି ନେତ୍ରୋନ୍ମେଷେ, କୋଟି କୋଟି ବିଶ୍ୱ ସୀମାତୀତ ଦେଶେ ।
କୋଟି ଗ୍ରହ, ଉପଗ୍ରହ, ଧୂମକେତୁ, ତୁମ୍ଭ ତପେ-ତୁଷ୍ଟ ବାଗ୍‌ଦେବୀ ସଂକେତୁ ।
କରୁଛନ୍ତି କେତେ ଲୀଳା କୁତୂହଳେ, ଯାଦୋଗଣ ଯଥା ମହାର୍ଣ୍ଣବ-ଜଳେ ।
ତୁମ୍ଭଙ୍କୁ ନିଶାରେ ନିତି ନବ ନବ, ଦେଖାନ୍ତି ନକ୍ଷତ୍ର-ପୁରୁଷେ ତାଣ୍ଡବ ।
ଜ୍ୟୋତିର୍ଲୋକବାସୀ ମହାମୁନିଙ୍କର, ଜ୍ୟୋତିର୍ବିଦ୍ ତୁମ୍ଭେ; ନିତ୍ୟ ସହଚର ।

× × × ×

ହେ ଉତ୍କଳମାତା-ଯୋଗ୍ୟତମ ସୁତ, ତୁମ୍ଭଯୋଗୁଁ ଆମ୍ଭେ ସର୍ବେ ହେଲୁ ପୂତ ।
ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପୀ, କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି ।
ଏକାମ୍ରେ, କୋଣାର୍କେ ଯା କୀର୍ତ୍ତି ଭାସ୍ୱର, ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର ।
ମାତ୍ର କାଳମୁଖେ ସେ କୀର୍ତ୍ତି ବିମଳ, ଦେଇ ନିଜ ମୁଖେ ଏବେ ଯେ ଉତ୍କଳ ।
ବୋଳିଦେଇଅଛି ଅଜ୍ଞାନର ମସୀ, ସେ ଉତ୍କଳେ ତୁମ୍ଭେ ଶ୍ମଶାନ-ତୁଳସୀ ।
ତାରା ରୂପେ ଉଇଁ ଉତ୍କଳ-ଗଗନେ, ରହିଲ ଅଜ୍ଞାନ ମେଘ ଆବରଣେ ।
ଦୂରୁ ଦେଖି ତୁମ୍ଭ ଦିବ୍ୟ ଜ୍ୟୋତିଃରାଶି, ଚିହ୍ନିଲେ ତୁମ୍ଭଙ୍କୁ ଦୂରଦେଶବାସୀ ।
ଉତ୍କଳ ଉଦୟ ଅଚଳେ ଭାସ୍କର, ହେଲ ଭାରତର ଦ୍ୱିତୀୟ ଭାସ୍କର ।
ମାତ୍ର ହେଲା ଯେହୁ ତୁମ୍ଭର ପ୍ରସୂତି, ନ ଚିହ୍ନିଲା ସେ ତ ତୁମ୍ଭର ବିଭୂତି !"

**ମହାଯାତ୍ରା –**

ରାଧାନାଥଙ୍କ ଶ୍ରେଷ୍ଠ କୃତି ବୋଲି ଧରାଯାଏ 'ମହାଯାତ୍ରା'କୁ । ଏହା ଏକ ଏପିକ୍ ବା ମହାକାବ୍ୟ । ରାଧାନାଥ ସେହି ଅନୁସାରେ ତାକୁ ଯୋଜନା କରି ଗଢ଼ିଆଣୁଥିଲେ । ସେ ୩୦ ସର୍ଗରେ ଏ ଗ୍ରନ୍ଥ ସମାପ୍ତ କରିବାକୁ ଇଚ୍ଛାକରିଥିଲେ; କିନ୍ତୁ ବର୍ତ୍ତମାନ ପାଠକ

ମାତ୍ର ସାତଟି ସର୍ଗ ଦେଖିବାକୁ ପାଉଛି । ଜନଶ୍ରୁତି ଏହି ଯେ, କବି ୩୦ରୁ ୨୧ ସର୍ଗ ସମ୍ପୂର୍ଣ୍ଣ କରିପକାଇଥିଲେ; କିନ୍ତୁ କବି ସରକାରୀ ଚାକିରିଆ ଥିବା ସତ୍ତ୍ୱେ, ଶେଷ କେତୋଟି ସର୍ଗରେ ସେତେବେଳର ଶାସକ ଇଂରେଜମାନଙ୍କ ବିରୁଦ୍ଧରେ ଏତେ କଥା ରହିଥିଲା ଯେ, ସେ କଥା ଭେଦିଆ ମାନେ ସରକାରଙ୍କ କାନରେ ପହଞ୍ଚେଇ ଦେବାର ଯେମିତି ଜଣା-ପଡ଼ିଛି କବି ୧୪ ସର୍ଗ ଲେଖା ନଷ୍ଟକରିଦେଇ, ଏବର ସାତସର୍ଗବିଶିଷ୍ଟ ଅସମାପ୍ତ ଗ୍ରନ୍ଥଟିହିଁ ପ୍ରକାଶ କରିଦେଲେ । ସାଂସାରିକ କର୍ତ୍ତବ୍ୟ ସବୁ ଶେଷ କରିସାରି ପାଣ୍ଡବମାନେ ଯେଉଁ ସ୍ୱର୍ଗ-ଯାତ୍ରା କରିଥିଲେ, ତାହାହିଁ 'ମହାଯାତ୍ରା'ର ଗାଥା-ସୂତ୍ର । ଇଂରେଜ କବି ମିଲ୍‌ଟନଙ୍କ ସୁପ୍ରସିଦ୍ଧ ମହାକାବ୍ୟ 'ପାରାଡ଼ାଇଜ୍ ଲଷ୍ଟ୍'ର ଅନୁକରଣରେ ରାଧାନାଥ ପାଣ୍ଡବମାନଙ୍କୁ ତୀର୍ଥଯାତ୍ରା କରାଇବା ଛଳରେ ପୁରୀରୁ ନେଇଯାଇଛନ୍ତି ସହ୍ୟାଦ୍ରି ବା ପଶ୍ଚିମଘାଟ ପର୍ବତମାଳାର ଶିଖରଦେଶକୁ ଏବଂ ଏହିଠାରେ ଅଗ୍ନିଦତ୍ତ ଦିବ୍ୟଦୃଷ୍ଟି ସାହାଯ୍ୟରେ ସମଗ୍ର ଭାରତ ଇତିହାସ ସେମାନଙ୍କର ଚକ୍ଷୁ ସମ୍ମୁଖରେ ଚିତ୍ରପଟ ପ୍ରାୟ ପ୍ରସାରିତ ହୋଇଚାଲିଛି । ଭାରତୀୟ ଆର୍ଯ୍ୟମାନେ କ୍ରମେ ଅଧୋଗତି ଲାଭକରି ଶେଷରେ କିପରି ମୁସଲମାନ-ମାନଙ୍କଦ୍ୱାରା ପରାଜିତ ଓ ଶାସିତ ହେଲେ, ତାହାହିଁ ଅସଂପୂର୍ଣ୍ଣ ମହାଯାତ୍ରାର ବର୍ଣ୍ଣନୀୟ ପ୍ରସଙ୍ଗ । ପ୍ରଥମ ପାନିପଥ ଯୁଦ୍ଧ ଭିତରେହିଁ ଏ ଗ୍ରନ୍ଥ ଶେଷ ହୋଇଛି । ବିଚଳିତଚିତ୍ତ ସୈନିକମାନଙ୍କୁ ହିନ୍ଦୁ ସେନାପତି ଅମର୍ଷିଙ୍କ ଜ୍ୱାଳାମୟୀ ଉଦ୍‌ବୋଧନ ଅବିସ୍ମରଣୀୟ ।

''ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟି କି, ଆର୍ଯ୍ୟ-ନାମ-ଦାୟାଦ ଜଗତେ ?
ବିନାଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହେଟି କି, ଆହେ ଯୋଧେ, ତୁମ୍ଭ ଧମନୀରେ ?

× × × ×

ପଳାଇ ଏ ରଣସ୍ଥଳୁ ରହିବ କି ଜିଇଁ
ଚିରଦିନ ଭବେ ? ଯେବେ ନାହିଁ ସେ ଦୁରାଶା,
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏରୂପେ କିମ୍ପା ପ୍ରାଣରଙ୍କ ମୂଢ଼େ ?
ହା ଧିକ୍, ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ
ଆଶୁମୃତ୍ୟୁପ୍ରଦ ରଣୁ ଅରପି ଯବନେ
ନିଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ
ଯାପିବ କି ଦିନ ଚିର ଅନଶନ ବ୍ରତେ,
କଣ୍ଟଲତା ମୂଳେ ବସି ଚିର ଉପବାସୀ,
ତୃଷାର୍ତ୍ତ ନିରତେ ରହି ସୁରଧୂନୀ ତୀରେ ?

ଦିଗ୍‌ବିଜୟୀ ଆର୍ଯ୍ୟସିଂହ ଔରସେ ଜନମି
ହେଲ କି ଅକ୍ଷମ, ଆହା, ନିଜସ୍ୱ ରକ୍ଷଣେ ?
ହିମ-ଊର୍ଜସ୍ୱଳ ଭୀମ-ହିମାଦ୍ରି ପ୍ରାଚୀରେ
ଦୁର୍ଗମ ଭାରତଦୁର୍ଗ, କାପୁରୁଷ ହାତେ
କେ କହିବ ମୋତେ କିମ୍ପା ଅର୍ପିଲେ ବିଧାତା ?
ହା ଦୈବ, ଜମ୍ବୁକ ପଶି ହର୍ଯ୍ୟକ୍ଷ-ଗୁହାରେ
ଗୋଇଠା ପ୍ରହାରି ନେବେ ତା ମୁଖୁଁ ଓଟାରି
ଗ୍ରାସ ତା'ର, ହର୍ଯ୍ୟକ୍ଷ ତା ସହିବ ମଉନେ !
ଏ ଲାଞ୍ଛନା ଥିଲା ପୁଣି ଆର୍ଯ୍ୟର ଲଲାଟେ !''

ଏହି ସମଗ୍ର ମହାକାବ୍ୟଟି ତୁଙ୍ଗ ଶୈଳୀରେ ଓ ନାଦୋଦାର ଅମିତ୍ରାକ୍ଷର ଛନ୍ଦରେ ରଚିତ । ଯୁଦ୍ଧ ଓ ପ୍ରକୃତିବର୍ଣ୍ଣନା ଏବଂ ଭାରତୀୟ ଆର୍ଯ୍ୟମାନଙ୍କର କ୍ରମିକ ଅଧୋଗତିର ବର୍ଣ୍ଣନା ମହାକାବ୍ୟୋଚିତ ରୀତିରେ ଲିଖିତ । ଭଗ୍ନ କୋଣାର୍କ ପରି, ରାଧାନାଥଙ୍କ ଅସମାପ୍ତ 'ମହାଯାତ୍ରା' ଖଣ୍ଡିତ ହୋଇ ମଧ୍ୟ ମହତ୍ ।

**ରାଧାନାଥଙ୍କ ଗଦ୍ୟ –**

ରାଧାନାଥଙ୍କ ଗଦ୍ୟ-ରଚନାବଳି, ତାଙ୍କର ପଦ୍ୟପରି, ସମ୍ପୂର୍ଣ୍ଣ ନିଜସ୍ୱଭଙ୍ଗୀବିଶିଷ୍ଟ । ଏହା ସ୍ପଷ୍ଟ ଓ ଯଥାର୍ଥ, ଅଥଚ ବର୍ଣ୍ଣାଢ଼୍ୟ ଓ ସୂକ୍ଷ୍ମ ବିଚାରପୂର୍ଣ୍ଣ । ତାଙ୍କର 'ବିବେକୀ' ସମଗ୍ର ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟସାଧାରଣ ଗ୍ରନ୍ଥ । ଏହାର ଶୈଳୀ ଅନାଧୁନିକ ବୋଧ ହୋଇପାରେ; କିନ୍ତୁ ଆଧୁନିକ ଓଡ଼ିଆ ଗଦ୍ୟର ସେହି ପ୍ରାକ୍-ଊଷା-କାଳକୁ ଚାହିଁଲେ ଲେଖକଙ୍କର ପ୍ରକାଶନକ୍ଷମତାକୁ ଆମ୍ଭେମାନେ ଧନ୍ୟବାଦ ଦେବାକୁ ବାଧ୍ୟ । ପୁଣି ଯେଉଁ ବିଷୟ ନେଇ ଏ ପ୍ରବନ୍ଧ ଲେଖାଯାଇଥିଲା, ତାହାର ଅନ୍ୟତ୍ର ସୁଯୋଗ୍ୟ ଶୈଳୀ ମଧ୍ୟ କଳ୍ପନା କରାଯାଇନପାରେ । ସମଗ୍ର ଓଡ଼ିଆ ଭାଷାରେ ଦୈନନ୍ଦିନ ଜୀବନର ନୀତି-ବିଚାର ନେଇ ଏକମାତ୍ର ପୁସ୍ତକ ରାଧାନାଥଙ୍କ 'ବିବେକୀ' । ଉପନ୍ୟାସର ଶୈଳୀ ଓ ଉପଦେଶାତ୍ମକ ଗ୍ରନ୍ଥର ଶୈଳୀ ଏକ ହେବ ବୋଲି ଯେଉଁମାନେ ଭାବୁଥିବେ, ସେମାନେ ହୁଏତ ମୂର୍ତ୍ତି, ଚିତ୍ର ଓ କବିତା ତିନିଙ୍କଠୁଁ ଏକାପ୍ରକାର ପ୍ରକାଶନ ଆଶା କରିପାରନ୍ତି, ଯାହା କି ଘୋର ଅଜ୍ଞତା । ରାଧାନାଥଙ୍କ ଜୀବନ-ଦର୍ଶନ, କଥ୍ୟ ବିଷୟର ସ୍ୱଚ୍ଛତା, ସାବଲୀଳ ପ୍ରକାଶଭଙ୍ଗୀ ସହିତ ଶବ୍ଦ ଓ ବାକ୍ୟ ପ୍ରୟୋଗରେ ସଂଯମ ଓ ସର୍ବୋପରି ତାଙ୍କର ସୂକ୍ଷ୍ମ ରସିକତାର ଦୃଷ୍ଟାନ୍ତସ୍ୱରୂପ ଏଠାରେ 'ବିବେକୀ'ର କିଛି ଦୃଷ୍ଟାନ୍ତ ଦେଉଛି –

''ମନୁଷ୍ୟକୁ କେତେ କଷ୍ଟ, ଶୋକ, ଅଭାବ ସହ୍ୟ କରିବାକୁ ହୁଏ, ତାହାର କଳନା କିଏ କରିବ ? ମନୁଷ୍ୟକୁ କେତେ ଦୁର୍ଦ୍ଦୈବର ଅଧୀନ ହେବାକୁ ହୁଏ, କିଏ କହିବ ? ଏଣୁ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ିପାରେ ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଛି । ଘୋର ବର୍ଷା, ଘରକାନ୍ଥ ପାଣି ଛାଟରେ ଖସିପଡୁଅଛି, ବାୟୁ ବେଗରେ

ବନ୍ଧୁଅଛି । ସେପରି ପ୍ରବନ୍ଧ ଲେଖିବାପାଇଁ ଏ ଅନୁକୂଳ ଦିନ ଅଟେ । କେତେଗୁଡ଼ିଏ ଗୃହସୁଲଭ ସୁଖ ଥିଲେ, ଏପରି ଝଟିକା କଷ୍ଟଦାୟକ ବୋଲି ପ୍ରତୀୟମାନ ହୁଏନାହିଁ; ବରଂ ସୁଖକର ବୋଧହୁଏ । ଆମ୍ଭାକୁ ମଧ୍ୟ ଅନେକ ଝଟିକା ସହିବାକୁ ହୁଏ । ଝଟିକା କେବଳ ଭୌତିକ ସଂସାରରେ ଅଛି, ଏମନ୍ତ ନୁହେଁ । ଆଧ୍ୟାତ୍ମିକ ସଂସାରରେ ଏପରି ଝଟିକା, ଏପରି ପ୍ରବଳ ଝଟିକା ଥରକୁଥର ଘଟିଅଛି ଓ ଘଟୁଅଛି । କେତେଗୁଡ଼ିଏ ପୋଥି ଆମ୍ଭ ପାଖରେ ସହଚର ପ୍ରାୟ ଥାନ୍ତି । ଏମାନଙ୍କ ପ୍ରାୟ ବିପଦବନ୍ଧୁ ମିଳିବାର କଷ୍ଟକର ଅଟେ । ଏମାନେ ଭୌତିକ ଝଟିକାର କଷ୍ଟ ନିବାରଣ କରନ୍ତି । ଝଡ଼ିବର୍ଷା ବେଳେ ବାହାରି ନପାରିଲେ ଏମାନଙ୍କ ସଙ୍ଗେ ଆଳାପ କରି ଚିତ୍ତର ସୁଖ ଉପୁଜେ; ଅଶ୍ରୁ-ବର୍ଷା ବେଳେ ମଧ୍ୟ ସାନ୍ତ୍ୱନା ମିଳେନାହିଁ । ପାଠକ, ମୁଁ ଯେଉଁ ସୁଖ ଲଭୁଅଛି, ତୁମ୍ଭେ ସେଥିରେ ଅଂଶୀ ହେବ ? ଏହାକୁ ଯେବେ ସୁଖ ମଣ, ଅଂଶୀ ହେଲେ ମୋ ସୁଖ ବଢ଼ିବ ।''

''ଯେଉଁମାନଙ୍କୁ ଅନେକ ଭାର ସମ୍ଭାଳିବାକୁ ହୁଏ ସେମାନେ ଦୁଇ-ଚାରି ଥର ଗଞ୍ଜନା ନ ଲଭି ଯେ ଜୀବନ ଗମିବେ, ଏପରି ଆଶା କରିବାର ଭଲ ନୁହେଁ । ହେତୁ କି, ଏପରି ଆଶା କେବେ ଫଳିବନାହିଁ । ଯେଉଁ ଲୋକମାନଙ୍କ ସଙ୍ଗେ ତୁମ୍ଭର କାରବାର ଚଳୁଅଛି, ସେମାନଙ୍କ ମଧ୍ୟରେ ବିଜ୍ଞମ୍ମନ୍ୟ, ଅଜ୍ଞ ଏବଂ ଈର୍ଷୀ ଲୋକେ ଅଛନ୍ତି । ଏହା ଯେବେ ଜାଣ, ସେମାନଙ୍କ ସଙ୍ଗେ କାରବାର କଲେ ଅବଶ୍ୟ ଥରେ ଦୁଇଥର ଦୁର୍ନାମ ଘଟିବ, ଏହା ମଧ୍ୟ ଜାଣିବାର ଉଚିତ । ଗଞ୍ଜନାନଳ ଏକ ସ୍ଥାନରେ ପ୍ରଜ୍ୱଳିତ ହୁଏ । ଏମନ୍ତ କେତେଗୁଡ଼ିଏ ଲୋକ ଅଛନ୍ତି, ପରନିନ୍ଦା ସେମାନଙ୍କୁ ଯେତେ ସ୍ୱାଦୁ ଲାଗେ, କୌଣସି ମିଷ୍ଟାନ୍ନ ସେପରି ଲାଗେନାହିଁ । ଏମାନେ ତୁମ୍ଭର ଗଞ୍ଜନାନଳରେ ଫୁତ୍କାର ଦିଅନ୍ତି । ତୁମ୍ଭଠାରେ ସେମାନଙ୍କର କୌଣସି ଶତ୍ରୁତା ଥିବାରୁ ଫୁତ୍କାର ଦିଅନ୍ତି, ଏମନ୍ତ ନୁହେଁ । ପରଗଞ୍ଜନା ସେମାନଙ୍କୁ ସ୍ୱାଦୁ ଲାଗେ, ସେଥିପାଇଁ ଫୁତ୍କାର ଦିଅନ୍ତି । ଅଜ୍ଞତା ପୁଣି କହିତକୁ ପ୍ରକୃତ ମଣି ତୁମ୍ଭଠାରେ ଦ୍ୱେଷୀ ହୁଅଇ । ଏଣୁ ତୁମ୍ଭର ମହାନ୍ ଅନିଷ୍ଟ ହେଲା । କ'ଣ କରିବ, ଏଥିରେ ତୁମ୍ଭର ଚାରା ନାହିଁ । ଯେତେ ସାବଧାନୀ ହୋଇ ଚଳ, ଯେତେ ପରିଣାମଦର୍ଶୀ ହୁଅ ପଛକେ, ବହୁବ୍ୟାପାରୀ ହେଲେ ନିଶ୍ଚେ ଥରେ ଦୁଇଥର କଳଙ୍କ ରଟିବ ।''

''ଆମ୍ଭେମାନେ ଆପଣାକୁ ଯେତେକରି ମଣୁ,' ବାସ୍ତବରେ ଆମ୍ଭେମାନେ ସେପରି ନୋହୁଁ । ଆମ୍ଭେମାନେ ଜିଇଁଲେ ଅତି ଅଳ୍ପ ଲୋକର ସ୍ୱାର୍ଥ-ସିଦ୍ଧି; ମଲେ ଅତି ଅଳ୍ପଲୋକର ସ୍ୱାର୍ଥହାନି ହେବ । କେହି ଆମ୍ଭମାନଙ୍କ କଥା ପ୍ରତିଦିନ ଭାବୁନାହାନ୍ତି, ଏହା ହୃଦୟଙ୍ଗମ ହେବାକୁ ଅନେକ ଦିନ ଲାଗେ । ଅନେକ ନୀଚ ବ୍ୟକ୍ତି ଆପଣାକୁ ସବୁଠାରୁ ବଡ଼ କରି ମଣନ୍ତି । କୌଣସି ଦ୍ରବ୍ୟ ଆଣିବା ନିମନ୍ତେ ଭୃତ୍ୟକୁ ବଜାରକୁ ପଠାଇବା ବେଳେ କହନ୍ତି, 'କହିବୁ, ଦୀନବନ୍ଧୁବାବୁ ପଠେଇଛନ୍ତି । ଏ କଥା କହିଲେ ସେ ବେଶି ଦେବ ।' × × ଦୋକାନୀ ଲୋକମାନଙ୍କର ଏହି ଲଘିମା ଭଲରୂପେ ଜାଣେ । କ୍ରେତାମାନଙ୍କର ଭ୍ରାନ୍ତ ସୁଭଗମ୍ମନ୍ୟତା ବାକ୍ୟରେ ଚରିତାର୍ଥ କଲେ ତାହାର ଲାଭବିନୁ କ୍ଷତି ନାହିଁ । ତେଣୁ ସଉଦା ଦେଲାବେଳେ କହେ, 'ଏ ଚାଉଳ ଟଙ୍କାକୁ ପନ୍ଦର ସେର; ମାତ୍ର ଦୀନବନ୍ଧୁବାବୁ ବୋଲି

ମୁଁ ଅଠର ସେର ଭାଉରେ ଦେଲି ।' ଦୋକାନୀ କେବଳ ଦୀନବନ୍ଧୁବାବୁଙ୍କ ଭୃତ୍ୟକୁ ଏପରି କହେ; ଏମନ୍ତ ନୁହେଁ, ସବୁ ବାବୁଙ୍କ ଭୃତ୍ୟକୁ ସେପରି କହେ । × × ଦୀନବନ୍ଧୁବାବୁଙ୍କୁ କହ 'ଦୋକାନୀ ତୁମ୍ଭଙ୍କୁ ଯେପରି ଦେବ ତୁମ୍ଭ ପଡ଼ିଶା ରାମବାବୁଙ୍କୁ ମଧ୍ୟ ସେହିପରି ଦେବ ।' – ଦୀନବନ୍ଧୁବାବୁ କୋପରେ ଜଳିଯିବେ : 'ସମସ୍ତେ ଯେପରି, ମୁଁ କ'ଣ ସେହିପରି ? ମୋତେ କ'ଣ ଆଉ ଲୋକ କରି ପାଇଛ କି ?' ଦୀନବନ୍ଧୁବାବୁଙ୍କୁ ପଚାର, କାହିଁକି ସେ ଆଉ ଲୋକପରି ନୁହନ୍ତି । ସେ ସେଥିର କାରଣ ଲୋଡ଼ିବେ ନାହିଁ । ସେ ଜାଣନ୍ତି ସେ ଆଉ ଲୋକ ପ୍ରାୟ ନୁହନ୍ତି – ଏଣୁକରି ସେ ଆଉ ଲୋକଙ୍କଠୁଁ ଶ୍ରେଷ୍ଠ ।''

''ଅନେକ ଲୋକ ଭାବନ୍ତି ଯେ, ସମସ୍ତେ ସେହିମାନଙ୍କ କଥା ରାତ୍ରଦିନ ଆନ୍ଦୋଳନ କରୁଅଛନ୍ତି । ସମସ୍ତେ ସେହିମାନଙ୍କ କଥା ରାତ୍ରଦିନ ଭାବୁଅଛନ୍ତି । ଏ ବିଷମ ଭ୍ରାନ୍ତି ଅଟେ । × × ଯେଉଁମାନେ ଅନେକ ଯଶ ଲଭି ଅଛନ୍ତି, ବିଶ୍ୱ-ବିଖ୍ୟାତ ହୋଇଅଛନ୍ତି, ଯେଉଁ-ମାନଙ୍କ ନାମ୍ ସମସ୍ତଙ୍କ ତୁଣ୍ଡରେ ଶୁଭୁଅଛି – ଏମନ୍ତ ଲୋକମାନଙ୍କ କଥା ସୁଦ୍ଧା ଆମ୍ଭେମାନେ ଅତି ଅଳ୍ପକାଳ ଭାବିଥାଉଁ । କାଳିଦାସ କେଡ଼େ ଲୋକ ଥିଲେ, କିଏ ଅବା ତାଙ୍କୁ ନଜାଣେ ? ମାତ୍ର କାଳିଦାସଙ୍କ ନାଁ ସ୍ୱାର୍ଥ ସଙ୍ଗେ ଓଜନ କରି ଦେଖ, ମହଣକୁ ମସାଏ ସୁଦ୍ଧା ହେବ କି ନାହିଁ । × × ଗ୍ରନ୍ଥକାର, ତୁମ୍ଭ ପୋଥିରେ ଯେଉଁ ଭ୍ରମ ଅଛି, ତା' କଥା ତେଣିକି ଥାଉ, ତୁମ୍ଭ ପୋଥି କଥା ସୁଦ୍ଧା କେହି ଭାବୁଅଛନ୍ତି କି ନାହିଁ, ଆଗେ ସେହିତା ଦେଖ । ବାଟରେ ଚାଲୁ ଚାଲୁ କେହି ଲୋକ ଭାବନ୍ତି ଯେ, ସମସ୍ତେ ସେମାନଙ୍କୁ ଅନାଇ ରହିଛନ୍ତି । ସେମାନଙ୍କ ଚାଲିରୁ ତୁମ୍ଭେ ଏହି ତର୍କଣା କରିପାରିବ । ଥରେ ଛାତିକୁ ଚାହାନ୍ତି, ଥରେ ବାହାକୁ ଚାହାନ୍ତି, ବାଳ ଟିକିଏ ବଙ୍କା ହୋଇଥିଲେ ସିଧା କରିଦିଅନ୍ତି . . .''

ସନ୍-ସ୍ଥାନ-ନାମର ଆଲୋଚନାକୁହିଁ ଏବେ ଓଡ଼ିଶାରେ ଏକମାତ୍ର ବା ବଡ଼ ସାହିତ୍ୟିକ ଆଲୋଚନା ବୋଲି ଧରାଯାଉଛି । ତେଣୁ ଓଡ଼ିଆ ବୁଦ୍ଧିଜୀବୀ ମହଲରେ, 'ବିବେକୀ' ବା ରାଧାନାଥଙ୍କ ଗଦ୍ୟରଚନା ଉପରେ ଯେପରି ଆଲୋଚନା ହେବାର କଥା, ତାହା ହୋଇନାହିଁ । ରାଧାନାଥଙ୍କ ଲେଖନୀ କାବ୍ୟ-ଜଗତରେ ପରିବର୍ତ୍ତନ କଲାପରି ଜଣାପଡ଼େ ନାହିଁ; କିନ୍ତୁ ଗଦ୍ୟ-ରଚନାରେ ରାଧାନାଥଙ୍କ ଶୈଳୀର ବିବର୍ତ୍ତନ ଏକାବେଳକେ ସ୍ପଷ୍ଟ । 'ବିବେକୀ' ପରେ 'ଇଟାଲୀୟ ଯୁବା', ତା'ପରେ 'ପାର୍ବତୀ କାବ୍ୟର ଉପସଂହାର', ତା'ପରେ 'ଭ୍ରମଣକାରୀର ପତ୍ର' – ରାଧାନାଥଙ୍କ ଗଦ୍ୟଶୈଳୀ ପରେ ପରେ ସ୍ପଷ୍ଟରୁ ସ୍ପଷ୍ଟତର ଓ ସରଳରୁ ସରଳତର ହୋଇଆସିଛି । କେବଳ ତାହା ନୁହେଁ, ଅଳ୍ପକାୟ ହେଲେହେଁ ରାଧାନାଥଙ୍କ ଗଦ୍ୟସଂଗ୍ରହ ଆମକୁ ସମକାଳୀନ ଓଡ଼ିଶାର ଯେଉଁ ପରିଚୟ ଦେଉଛି, ଫକିରମୋହନଙ୍କ ଆତ୍ମ-ଚରିତ ଛଡ଼ା ତାହା ଆମେ ଅନ୍ୟ କୌଣସି ଠାରେ ପାଉନାହୁଁ । ପୁଣି 'ବିବେକୀ'ର ବିଜ୍ଞତା, ଆମେ ନାହିଁ ଫକିରମୋହନ, ନାହିଁ ମଧୁସୂଦନ ବା ଅନ୍ୟ କାହାରି ଲେଖାରେହିଁ ପାଉନା । ଗଦ୍ୟରେ ସମକାଳୀନ ଭାଷାର ପ୍ରତିବିମ୍ବ ପଡ଼ିବା ସ୍ୱାଭାବିକ । 'ବିବେକୀ'ର ଶୈଳୀ ସେହି ଅନୁସାରେ ଆର୍କେୟିକ୍ ବା ପ୍ରାଚୀନ ବୋଧ-ହୋଇପାରେ; କିନ୍ତୁ ପ୍ରକାଶନ କ୍ଷମତା ଯଥାର୍ଥତା ଓ ଜ୍ଞାନବିତରଣ ଯଦି ଗଦ୍ୟର ମୁଖ୍ୟ

ଗୁଣସବୁ ବୋଲି ଧରାଯାଏ, ତେବେ ଗଦ୍ୟ-ଲେଖକ ଭାବରେ ରାଧାନାଥଙ୍କର ପୁନର୍ବିଚାର ହେବା ଉଚିତ ।

ରାଧାନାଥଙ୍କ 'ପାର୍ବତୀ କାବ୍ୟର ଉପସଂହାର' ଗଦ୍ୟ ହେଲେହେଁ ନିରୁତା କାବ୍ୟ । ଏଇ ଲେଖକ ଏହି କାବ୍ୟାମ୍ର ଗ୍ରନ୍ଥଟିକୁ କେତେଥର ଯେ ପଢ଼ି ପଢ଼ି ମୁଗ୍ଧ ହୋଇଛି, ତାର ସଂଖ୍ୟା କହିହେବନି । ପାଠକମାନଙ୍କୁ ତାହାର କିୟଦ୍ ଅଂଶ ଶୁଣାଇଯିବାର ପ୍ରଲୋଭନ ତେଣୁ ଏଡ଼ିପାରୁନାହିଁ । ନୈତିକତାବର୍ଜିତ ଅତ୍ୟାଚାରୀ ସମ୍ରାଟ୍ ଗଙ୍ଗେଶ୍ୱରଦେବ ବିଜୟ-ଗୌରବରେ ଫେରୁଛନ୍ତି । ସେହିଦିନ ରାତ୍ରିରେ ବିଜୟୀ ବୀର ଗଙ୍ଗେଶ୍ୱର ସାଧ୍ୱୀ ପାଟରାଣୀଙ୍କ ହସ୍ତରେ ନିହତ ହେବେ । ପାପକୈନ୍ଦ୍ରିକ ଏହି ପାର୍ବତୀ କାବ୍ୟ, ରାଧାନାଥଙ୍କ ଶ୍ରେଷ୍ଠ ରଚନାମାନଙ୍କ ମଧ୍ୟରେ ଅନ୍ୟତମ । ଏହା ପରମ କାରୁଣ୍ୟ ରସମୟ, ବର୍ଣ୍ଣାଢ୍ୟ ଓ ଶକ୍ତିଶାଳୀ । ପାପୀର ଧ୍ୱଂସରେ, ପାପର ଗୁରୁତା ଏହି କାବ୍ୟରୁ ଉଡ଼ିଯାଇ, ଅତ୍ୟାଚାରିତା ତରୁଣୀର ବିକଳ ଅଶ୍ରୁ ଓ ନ୍ୟାୟପରାୟଣା ରାଣୀର ଯୋଗ୍ୟ ହିଂସାରେ ଏ କାବ୍ୟ ଉଦାର ଓ ପୁଣ୍ୟବନ୍ତ ହୋଇଉଠିଛି । ନିନ୍ଦୁକବର୍ଗ କେବଳ ପାପ ଉପରେ ଦୃଷ୍ଟି ଦେଇ ବିଚାର କରିବାରେ ସେମାନଙ୍କର ନିଜର ଶକୁନିଭାବହିଁ ପ୍ରକାଶ ପାଇଥାଏ, ସାହିତ୍ୟିକ ମୂଲ୍ୟ-ବୋଧ ନୁହେଁ ।

ରାଧାନାଥଙ୍କ 'ପାର୍ବତୀ' ଓ 'ପାର୍ବତୀ କାବ୍ୟର ଉପସଂହାର' ଉତ୍କଳର ସାମନ୍ତଯୁଗର ଏକ ମନୋରମ ପ୍ରତିବିମ୍ବ । 'ଉପସଂହାର'ରୁ ଉଦ୍ଧୃତ ନିମ୍ନର ଗଦ୍ୟାଂଶ ସେହି ଚିରାବସିତ ସାମନ୍ତଯୁଗର ଏକ ଉତ୍କୃଷ୍ଟ ଚିତ୍ର ।

"ବୃଦ୍ଧ କଞ୍ଚୁକୀ ସହିତ ରାଣୀ ଓ ସିଂହାରୀ, ପ୍ରାସାଦର ଉଚ୍ଚ ବାତାୟନ ନିକଟରେ ଠିଆହେଲେ । ଦେଖିଲେ, ଯେତେଦୂର ଦୃଷ୍ଟି ଯାଏ ସମସ୍ତ ବଡ଼ଦାଣ୍ଡ ବୀରମାନଙ୍କ ଉଜ୍ଜ୍ୱଳ ବର୍ମଝଟକ ଓ ଜାଲଦ୍ୱାରା ସୁବର୍ଣ୍ଣମୟ ହୋଇଛି । ସାଗର ସମୀପରେ ପତାକାପଙ୍କ୍ତିର ଚୀନାଂଶୁକ ଦୋହଲୁଅଛି । ଆଜି ଗଙ୍ଗେଶ୍ୱରଙ୍କ ମହିମା ଓ ପ୍ରତାପର ପରାକାଷ୍ଠା— ସଂସାରରେ ତାହାଙ୍କ ତୁଲ୍ୟ ଭଗବାନ୍ ଆଉ କିଏ ଅଛି ? କଞ୍ଚୁକୀ ବିଭିନ୍ନ ଦେଶାଗତ ରାଜାମାନଙ୍କୁ ଚିହ୍ନାଇଦେଲା ।"

"ଏଇ ଦେଖନ୍ତୁ ରାଣି, ଯେ ସର୍ବାଗ୍ରେ ସୁବର୍ଣ୍ଣଝାଲରବିଶିଷ୍ଟ ଚିତ୍ରିତଶୁଣ୍ଡ ହସ୍ତୀରେ ସୁବର୍ଣ୍ଣ କଳସଯୁକ୍ତ ହାଓଦାରେ ଆସୁଛନ୍ତି, ସେ ବ୍ରାହ୍ମଣ ବଉଦ ରାଜା । ମହାନଦୀ ତୀରରେ ବଂଶବନାକୀର୍ଣ୍ଣ ଦୁର୍ଗରେ ଏହାଙ୍କର ଅବସ୍ଥିତି । ଉପଳବିଷମଦ୍ୱାରା-ପ୍ରତିହତା ମହାନଦୀର ସ୍ୱଚ୍ଛ ଜଳରାଶିର ଝର୍ଝର ଶବ୍ଦରେ ଏହାଙ୍କ ନଗରୀ ସର୍ବଦା ମୁଖର । ଦୁର୍ଗମ-ଗିରି-ମହାରଣ୍ୟ-ବେଷ୍ଟିତ, ହରିଦ୍ରା-ହରିତ-ଅଧିତ୍ୟକାବାସୀ ଏବଂ ପ୍ରସାଧନୀ-ଗର୍ଭିତ-ଚୂଡ଼ା-ଧାରୀ କନ୍ଧ ସୈନ୍ୟଗଣ, ଏହାଙ୍କ ଆଗେ ଆଗେ ବାଦ୍ୟତାଳରେ ଏକ ହସ୍ତରେ ଧନୁ ଏବଂ ଅପର ହସ୍ତରେ ଟାଙ୍ଗିଆ ଆସ୍ଫାଳନ କରି କରି ଆସୁଛନ୍ତି । ତତ୍‌ପରେ ଯେ ଆସୁଛନ୍ତି, ସେ ଅନୁଗୋଳରାଜ — ମହାନଦୀର-କନ୍ଦରା-ମଧ୍ୟବର୍ତ୍ତୀ, ବନହସ୍ତୀ-ସେବିତ-ଗିରିଦୁର୍ଗରେ ଏହାଙ୍କର ବାସ । ଏହାଙ୍କର ଅଧିକାଂଶ ସୈନ୍ୟହିଁ ଅଶ୍ୱାରୋହୀ ଓ ପଦାତିକ । ଏହାଙ୍କ ରାଜ୍ୟ ଅଶ୍ୱ ନିମିତ୍ତ ପ୍ରସିଦ୍ଧ । ତତ୍‌ପରେ ଯେ ଆସୁଛନ୍ତି ସେ ତାଳଚେରାଧିପତି । ଚକ୍ର-

ବାକିନୀ ବ୍ରାହ୍ମୀ ଏହାଙ୍କ କାନନ-ବେଷ୍ଟିତ ରାଜଧାନୀର ପାଦ ଧୌତ କରୁଅଛି । ଏହାଙ୍କ ପତାକାରେ ପିଙ୍ଗଳବର୍ଣ୍ଣା ଉଜ୍ଜ୍ୱଳ ଜ୍ୱାଳାମୟୀ ହିଙ୍ଗୁଳା ଅଙ୍କିତ । ଏହାଙ୍କର ଶୃଙ୍ଖଳ ପଦାତିକଗଣ ବଲ୍ଲମଧାରୀ । ତତ୍ପରେ ଯେ ଆସୁଛନ୍ତି, ସେ ତୁଙ୍ଗ ମାଲ୍ୟଗିରିର ଅଧୀଶ୍ୱର । ଏହାଙ୍କର ସୈନ୍ୟମାନେ ଖରଶାଣ ପରଶୁଧାରୀ । ଆମ୍ଭେମାନେ ଯେତେବେଳେ ଏହାଙ୍କ ଦୁର୍ଗ ଅଧିକାରକୁ ଗଲୁ, ସେ ସସୈନ୍ୟ ମେଘାବୃତ ମାଲ୍ୟଗିରିରେ ଆଶ୍ରୟ ନେଇଥିଲେ । ଏହି ଦେଖନ୍ତୁ ରାଣି, ବାଣପୁରର ରାଜା ଆସୁଛନ୍ତି । ଏହାଙ୍କ ସୈନ୍ୟମାନେ ଚିତ୍ରାଙ୍ଗ ଓ ଏରାପକ୍ଷୀର ପକ୍ଷଚୂଡ଼ାଧାରୀ । ମତ୍ସ୍ୟମୟୀ ଚିଲିକାର ଏ ଅଧୀଶ୍ୱର ଓ ଏହାଙ୍କର ଅୟୁତ ତରଣୀ ନୀଳ ଚିଲିକାର ତରଙ୍ଗ ସର୍ବଦା କାଟୁଅଛି । ଏ କେତେବେଳେ ଗିରିଦୁର୍ଗରେ, କେତେବେଳେ ଅବା ଚିଲିକାବେଷ୍ଟିତ ଜଳଦୁର୍ଗରେ ବାସକରନ୍ତି ।''

**ଭକ୍ତକବି ମଧୁସୂଦନ** (୧୮୫୩-୧୯୧୨) –

ଓଡ଼ିଶାର ଯେକୌଣସି ପ୍ରାନ୍ତରେ, ଯଦି ସନ୍ଧ୍ୟା ହୋଇଆସନ୍ତେ କୌଣସି ଯାତ୍ରୀ ଏକ ସ୍କୁଲ୍-ହଷ୍ଟେଲ୍‌ରେ ଆଶ୍ରୟ ନିଅନ୍ତି, ତେବେ ସେ ଦେଖିବେ ଯେ ସଞ୍ଜ-ଆଲୁଅ ଜଳିଗଲା ପରେ ପିଲେ ଧାଡ଼ି ଧାଡ଼ି ବସି ପ୍ରାର୍ଥନା କରୁଛନ୍ତି । ପିଲେ ଆବୃତ୍ତି କରୁଥିବା ସ୍ତୋତ୍ରମାନଙ୍କ ଭିତରେ ସେ ନିଶ୍ଚୟ ଏହି ଉଦାତ୍ତ ଗମ୍ଭୀର ଶ୍ଳୋକଟି ଶୁଣିପାରିବେ –

''ସତ୍ୟପଥେ ଧର୍ମପଥେ ଘେନିଯାଅ ମତେ
ଭସାଅ ପରାଣ ମୋର ତବ ପ୍ରେମ-ସ୍ରୋତେ,
ପ୍ରଭୋ ପରମ ଶରଣ,
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।''

ଏହି ଶ୍ଳୋକର କବିହିଁ ମଧୁସୂଦନ ରାଓ । ଜଗନ୍ନାଥ ଦାସ, ଅରକ୍ଷିତ ଦାସ ଓ ଭୀମ-ଭୋଇ ପ୍ରଭୃତି ଓଡ଼ିଆ ସାହିତ୍ୟର ବରେଣ୍ୟ ଆଧ୍ୟାତ୍ମିକ କବିପରମ୍ପରାର ଆଧୁନିକ ମନୋଜ୍ଞ ଅଭିବ୍ୟକ୍ତି ଏହି ଭକ୍ତକବି, ଯେ କି ନାନାବିଧ ଗୀତ, କବିତା, ଓଡ୍, ସନେଟ୍ ଓ ପ୍ରବନ୍ଧ ଦେଇ ଗତ ୬୦।୭୦ ବର୍ଷ ହେଲା ଓଡ଼ିଆ ଜାତିର ଆତ୍ମାର ନିର୍ମଳୀକରଣରେ ଏକ ଶକ୍ତିଶାଳୀ ପ୍ରଭାବ ହୋଇଆସିଛନ୍ତି । ଆଜି ଭକ୍ତକବି ମଧୁସୂଦନଙ୍କର କିଛି ନା କିଛି କବିତା ସାଧାରଣ ଶିକ୍ଷିତ ଓଡ଼ିଆର ମାନସିକ ସଂସ୍କୃତିର ଅବିଚ୍ଛେଦ୍ୟ ଅଂଶ ହୋଇଉଠିଛି । ଛୋଟଙ୍କ ପାଇଁ ପଦ୍ୟଠୁ ଗୁରୁବୃତ୍ତିକ କାବ୍ୟ, ସନେଟ୍, ଓଡ୍, ସ୍ତୋତ୍ର ଓ ପ୍ରବନ୍ଧ ଇତ୍ୟାଦି ପର୍ଯ୍ୟନ୍ତ– ମଧୁସୂଦନ ଯାହା କିଛି ସ୍ପର୍ଶ କରୁଥିଲେ, ସେଥିରେ ରହିଯାଉଥିଲା ଏକ ପବିତ୍ରତା ଓ ଆଦର୍ଶବାଦର ପରିବେଶ ଏବଂ ସେଥିରୁ ନିଃସାରିତ ହୁଏ ଦିବ୍ୟ ଜୀବନର ସନ୍ଦେଶ । ତାଙ୍କ ରଚନାରେ ଏହି ସହଜାତ୍ୟ ଫଳରେ ତାଙ୍କ ରଚିତ 'ବର୍ଣ୍ଣବୋଧ'ଖଣ୍ଡି ମଧ୍ୟ ଏକ ପ୍ରକୃଷ୍ଟ ସାହିତ୍ୟ-ସୃଷ୍ଟିରେ ପରିଣତ ହୋଇଯାଇଛି । ବର୍ଣ୍ଣ-ଶିକ୍ଷାର ଯେତେ ନୂତନ ନୂତନ ଧାରା ଓ ଅଧ୍ୟାପନାର ଯେତେ ନୂତନ ନୂତନ ଆଦର୍ଶ ପ୍ରବର୍ତ୍ତିତ ହେଲେ ମଧ୍ୟ ଓଡ଼ିଶାରେ ମଧୁସୂଦନଙ୍କ 'ବର୍ଣ୍ଣବୋଧ'ର ଜନପ୍ରିୟତା ଅକ୍ଷୁଣ୍ଣ ରହିଛି ଓ ରହିବ । ଗତ ୬୦-୭୦ ବର୍ଷ

ଧରି ଏହି ପୁସ୍ତକ ଲକ୍ଷ ଲକ୍ଷ ଓଡ଼ିଆଙ୍କୁ ସାକ୍ଷରତାଲାଭରେ ସାହାଯ୍ୟ କରିଆସୁଛି ଏବଂ ସେହି ହେତୁରୁ ବିକ୍ରି ହୋଇଚାଲିଛି ପ୍ରତିବର୍ଷ ସହସ୍ର ସହସ୍ର ସଂଖ୍ୟାରେ । ପିଲାଙ୍କ ବହି ଏହି 'ବର୍ଣ୍ଣବୋଧ'ଟିରେ ମଧ ଆମେ ମଧୁସୂଦନ ଲେଖନୀର ପ୍ରକୃଷ୍ଟ ପରିଚୟଦାୟୀ ନିମ୍ନର ଉଦାତ୍ତ କବିତା ପାଉ –

''ଯାହା ମୁଁ କରଇ ଯାହା ମୁଁ କହଇ ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପାଶେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର
ଏକଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।''

୧୮୫୩ରେ ପୁରୀର ଏକ ଧର୍ମପ୍ରାଣ ହିନ୍ଦୁ ପରିବାରରେ ମଧୁସୂଦନ ଜନ୍ମଗ୍ରହଣ କରିଥିଲେହେଁ ଯୌବନରେ ସେ କୌଳିକ ବିଶ୍ୱାସ ପରିତ୍ୟାଗ କରି ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ଅର୍ଦ୍ଧଶତାବ୍ଦୀଧରି ଓଡ଼ିଶାରେ ଥିବା ବ୍ରାହ୍ମଗୋଷ୍ଠୀର ମଧୁସୂଦନ କେବଳ ଯେ ପରମ ପ୍ରତିନିଧି ଥିଲେ ତା' ନୁହେଁ, ଏଇ କାଳ ଭିତରେ ଓଡ଼ିଶାରେ ଘଟିଥିଲା ଯେତେ ସାମାଜିକ ଓ ଧର୍ମୀୟ ସଂସ୍କାର, ମଧୁସୂଦନ ସେସବୁଥିରେ ସଂପୃକ୍ତ ଥିଲେ । ସେ କାଳର ଏଫ୍. ଏ. ପାସ୍ ପରେ ମଧୁସୂଦନ ଗୁରୁ ରାଧାନାଥଙ୍କ ପରି ସରକାରୀ ସ୍କୁଲ-ଶିକ୍ଷକ ଭାବରେ ଜୀବନାରମ୍ଭ କରି ଓ ଶେଷରେ ଡିଭିଜନାଲ୍ ଇନ୍‌ସ୍ପେକ୍ଟର ହୋଇ ଅବସର ନେଇଥିଲେ । ୧୯୧୨ରେ ତାଙ୍କର ମୃତ୍ୟୁ ହୁଏ । ମଧୁସୂଦନହିଁ ଓଡ଼ିଶାର ସର୍ବପ୍ରାଚୀନ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ପ୍ରତିଷ୍ଠାତା । ଗୋଟିଏ କଟକରେ ଓ ଗୋଟିଏ ଭୁବନେଶ୍ୱରରେ, ଏପରି ଦୁଇଟି ହାଇସ୍କୁଲ୍ ଭକ୍ତକବିଙ୍କ ନାମ ବହନ କରି ଗୌରବାନ୍ୱିତ ।

ଆମ୍ଭେମାନେ ଆଗରୁ ଜାଣିବାକୁ ପାଇଛେ, କିପରି ଫକିରମୋହନ, ରାଧାନାଥ ଓ ମଧୁସୂଦନ ଏହି ତିନିବନ୍ଧୁଙ୍କ ଏକତ୍ରାବସ୍ଥାନ ଓ ପାରସ୍ପରିକ ଭାବ-ବିନିମୟ ଫଳରେ ବାଲେଶ୍ୱରରେ ଓଡ଼ିଆ ସାହିତ୍ୟର ନବଯୁଗ ଆରମ୍ଭ ହୋଇଯାଇଥିଲା ଏବଂ ଏହି ଆରମ୍ଭର ପ୍ରତୀକ ହୋଇଉଠିଥିଲା ୧୮୭୩ରେ ପ୍ରକାଶିତ ରାଧାନାଥ ଓ ମଧୁସୂଦନଙ୍କର ମିଳିତ ସଂଗ୍ରହ 'କବିତାବଳୀ' । ଏହି ସଂଗ୍ରହର ଅଧିକାଂଶ ରଚନା ଥିଲା ମଧୁସୂଦନଙ୍କ ଲେଖନୀରୁ ନିଃସୃତ ଏବଂ ସେହି ଆଦ୍ୟ-ଚେଷ୍ଟାଗୁଡ଼ିକ ମଧ ଯଥେଷ୍ଟ ସୂଚନା ଦେଇଛନ୍ତି ଯେ କବିଙ୍କର ପ୍ରତିଭା ମାଟି ଉପରେ ଚାଲିବାପାଇଁ ଆସିନଥିଲା; ଆସିଥିଲା ସ୍ୱର୍ଗାଭିଯାନ ପାଇଁ – ସନ୍ତତ ଅନ୍ତରୀକ୍ଷରେ ଉଡ଼ିବାପାଇଁ ।

ମଧୁସୂଦନଙ୍କର କବିଯଶର ଲାଳସା ନଥିଲା । ସେ କୌଣସି ଯୋଜନା କରି ଲେଖିଥିବାର ଜଣାପଡ଼େନି । କିଛି ବିରାଟ କୀର୍ତ୍ତି ଛାଡ଼ିଯିବାର ଚେଷ୍ଟା ମଧ ସେ କରିନାହାନ୍ତି । ସେ କାଳର ପ୍ରୟୋଜନରେ ରଚିତ ଅସଂଖ୍ୟ ଛୋଟ ଛୋଟ ରଚନାର ସମାହାରହିଁ ଛାଡ଼ିଯାଇଛନ୍ତି । ମଧୁସୂଦନ ମୁଖ୍ୟତଃ ଥିଲେ ଶିକ୍ଷକ ଓ ପ୍ରଚାରକ । ନିଜର ଭାବ, ଚିନ୍ତା ଓ ଆଦର୍ଶବାଦ ପ୍ରଚାରିତ କରିବାପାଇଁ ହିଁ ମଧୁସୂଦନ ଯେପରି ଏକ ଉତ୍ତମ ମାଧ୍ୟମ ଭାବରେ ସାହିତ୍ୟକୁ ଗ୍ରହଣ କରିଥିଲେ । ଆମେ ତେଣୁ ଦେଖୁଁ ଯେ ତାଙ୍କର ଅନେକ

କବିତାରେ ପ୍ରେରଣାର ଅଭାବ । ସେଗୁଡ଼ିକର ଏକମାତ୍ର ଉତ୍କର୍ଷ ହେଉଛି, ସେମାନଙ୍କର ଉଚ୍ଚ ବଚ଼ନଭଙ୍ଗୀ ଓ ସେସବୁରେ ଓତପ୍ରୋତ ଜଡ଼ିତ ଥିବା ଏକ ପବିତ୍ର, ଉନ୍ନତ ଆତ୍ମାର ସ୍ପର୍ଶ । କିନ୍ତୁ ବେଳେବେଳେ ଭକ୍ତ ଓ ଶିକ୍ଷକର ଆତ୍ମାରେ କବିର ପ୍ରେରଣା ଓ ଦିବ୍ୟଦୃଷ୍ଟି ଭାସିଉଠିଥିଲା, ଯେତେବେଳେ କି ସେହି ଆତ୍ମା ଅହରହ-ଅନ୍ୱେଷଣ-କରୁଥିବା ତା'ର ଦୈବତ ପ୍ରଭୁଙ୍କ ସହିତ ଏକୀଭୂତ ହେବାର ପରମାନୁଭୂତି ପାଉଥିଲା । ଏହିପରି କେତୋଟି ମୁହୂର୍ତ୍ତର ବାର୍ତ୍ତା ଆମ୍ଭମାନଙ୍କ ନିକଟରେ ପହଞ୍ଚୁଛି ମହାନ୍ କବିତାରେ । ମଧୁସୂଦନଙ୍କ 'ହିମାଚଳେ ଉଦୟୋତ୍ସବ' ଓ 'ଋଷିପ୍ରାଣେ ଦେବାବତରଣ' ଏହିପରି ଅନ୍ତଃଦର୍ଶନମୟ କାବ୍ୟସୃଷ୍ଟିର ପରମ ଦୃଷ୍ଟାନ୍ତ ।

'ଋଷିପ୍ରାଣେ ଦେବାବତରଣ' — ଜନୈକ ବୈଦିକ ଋଷି ଦିନେ ପୂର୍ଣ୍ଣିମା ଯାମିନୀର ପ୍ରଭାତରେ ଶତଦ୍ରୁକୂଳରେ ଅବଗାହନ କରିବାକୁ ଆସିବାବେଳେ ଚତୁର୍ଦ୍ଦିଗରେ ମହିମାମୟ ପ୍ରକୃତି ତାଙ୍କ ଆତ୍ମାରେ ସହସା ଯେଉଁ ଅଲୌକିକ ପ୍ରତିକ୍ରିୟା ସୃଷ୍ଟି କଲା, ସେହି ମହାନ୍ ଅନୁଭବରହିଁ ଲିପିକରଣ । ଉଷାର କନକରାଗ ପୂର୍ବାକାଶରେ ଫୁଟିଉଠିଛି । ଋଷିଙ୍କର ପଶ୍ଚାଦ୍‌ରେ ଶାଶ୍ୱତ-ତୁଷାର-ମୁକୁଟ ହିମାଳୟ ଦଣ୍ଡାୟମାନ । ଏହି ରମ୍ୟ ରହସ୍ୟମୟ ଔଜ୍ଜଲ୍ୟର ପରିବେଶ ମଧ୍ୟରେ ଦଣ୍ଡାୟମାନ ଋଷିଙ୍କ ଅନ୍ତରରେ ଏକ ଅତୀନ୍ଦ୍ରିୟ ଭାବାବେଶ ଘଟିଉଠେ । ପବିତ୍ର ଶତଦ୍ରୁକୂଳରେ ଦଣ୍ଡାୟମାନ ଋଷି, ନିଜର ଓ ଏହି ନିଖିଳ ଧରାର ରନ୍ଧ୍ରେ ରନ୍ଧ୍ରେ ବିଶ୍ୱାତ୍ମା ପରିବ୍ୟାପ୍ତ ରହିଥିବାର ଅନୁଭବ କରନ୍ତି ଏବଂ ସେହି ଅନୁଭବର ଆତିଶଯ୍ୟ ସହସା ପରମ ଶ୍ଳୋକ ଓ ଛାନ୍ଦରେ ଋଷିପ୍ରାଣରୁ ଉଚ୍ଚାରିତ ହୋଇଉଠିଛି —

"କେ ହେ ଦେବ ଦେବଦେବ ପ୍ରଭୁ ପରାତ୍‌ପର,  
କି ଅମୃତ ତେଜେ ଆଜି ପୂରି ମୋ ଅନ୍ତର,  
କି ଅମୃତ ତେଜେ ପୂରି ଏ ମହା ଆକାଶ,  
ବିରାଜିତ ବିଶ୍ୱଦେବ ବିଭୋ, ସ୍ୱ-ପ୍ରକାଶ !  
କେ ହେ ଦେବ ମହାଦେବ, ଦ୍ୟାବା ପୃଥିବୀର,  
ଦ୍ୟୁଲୋକ ଭୂଲୋକ ବନ୍ଦେ ଆନନ୍ଦ ଅଧୀର ।  
ଅମୃତ ଯାହାର ଛାୟା, ମୃତ୍ୟୁ ଯା କିଙ୍କର,  
ବନ୍ଦଇ ବରେଣ୍ୟ ଭର୍ଗ ବିଶ୍ୱଚରାଚର ।

× × × ×

ଦ୍ୟୁଲୋକର ଜ୍ୟୋତି, ମିତ୍ର, ଚିତ୍ରେ, ସୁନିପୁଣ,  
ଜଳ-ସ୍ଥଳ-ଆବରକ ବରେଣ୍ୟ ବରୁଣ ।  
ଦ୍ୟୁଲୋକନନ୍ଦିନୀ ଉଷା ତମିସ୍ର-ହାରିଣୀ,  
ସରସ୍ୱତୀ ବାଣୀମୟୀ ସୁନୃତଭାଷିଣୀ ।  
ଦିବା, ବିଭାବରୀ, ମାସ, ଋତୁ, ସମ୍ବତ୍ସର  
ନିମେଷ, ମୁହୂର୍ତ୍ତ ସର୍ବେ ବନ୍ଦନ୍ତି ପଯର ।

କେ ହେ ଦେବ ମହିମାର ପ୍ରଦୀପ୍ତ ଅନଳ,
ଯା ଇଙ୍ଗିତେ ଉଭା ଏହି ଶ୍ୱେତ ହିମାଚଳ ।
ପୂଜିଲେ ଇଙ୍ଗିତେ ଯାର ପୂର୍ବେ ଋଷିଗଣ,
ମହାଭୂତଚୟ ଦେଖି ଶକ୍ତି ନିଦର୍ଶନ ।
ସେହି ଭୂତ ଶକ୍ତିଚୟ ଧରି ଏକାଧାରେ,
କେ ହେ ବିରାଜିତ ତୁମ୍ଭେ ନିଜ ମହିମାରେ ।
ସୁଗମ୍ଭୀର ଉଦ୍‌ଗିରଣେ ଏ କ୍ଷୁଦ୍ର ପରାଣେ,
ଅବତୀର୍ଣ୍ଣ ବାଣୀରୂପେ ଅଦ୍ଭୁତ ବିଧାନେ ।
ଜାଣିଅଛି ପରାତ୍ପର, ଏ ପ୍ରାଣ-ବିଧାତା,
ଅଟ ହେ ପ୍ରତ୍ୟକ୍ଷ ତୁମ୍ଭେ ବିଶ୍ୱ-ପିତା-ମାତା ।
ଏକ ଅଦ୍ୱିତୀୟ ପ୍ରଭୁ ସର୍ବମୂଳାଧାର,
ଏକମାତ୍ର ପରମାତ୍ମା ବ୍ରହ୍ମ ନିରାକାର ।
ଜୟ ହେ ମଙ୍ଗଳମୟ ମହା ମହେଶ୍ୱର,
ଜୟ ଜୟ ସତ୍ୟ ରୂପ, ପରମସୁନ୍ଦର ।
ବିରାଜ ବିରାଜ ଦେବ ହେ ଅମୃତମୟ,
ତୁମ୍ଭରି ଅମୃତ ରୂପେ ପୂରି ଏ ହୃଦୟ,
ତୁମ୍ଭରି ଓଁକାରମୟୀ ବାଣୀ ନିରନ୍ତର
ପବିତ୍ର ଝଙ୍କାରେ ପୂରୁ ଏ ପ୍ରାଣକନ୍ଦର ।

କିନ୍ତୁ ମଧୁସୂଦନ କେବଳ ଗଗନ-ବିହାରୀ କବି ନଥିଲେ । ସେ ବରଂ ଥିଲେ ଜଣେ ବାସ୍ତବବାଦୀ ଶିକ୍ଷକ ଓ ଶିକ୍ଷାବିତ୍ ଏବଂ ଓଡ଼ିଶାର ପ୍ରାଚୀନତମ ଶିକ୍ଷକ ତାଲିମ-ସଂସ୍ଥାର ଅଧ୍ୟକ୍ଷରୂପେ ଓଡ଼ିଶାକୁ ଉତ୍କୃଷ୍ଟ ଶିକ୍ଷକବୃନ୍ଦ ଯୋଗାଇ ଦେଇଥିଲେ ପ୍ରାୟ କୋଡ଼ିଏ ବର୍ଷ ଧରି । ରାଣୀ ଭିକ୍ଟୋରିଆଙ୍କର ଉଦାର ଯୁଗରେ ଜୀବନ ଧାରଣ କରିଥିବାରୁ ସେ ସ୍ୱାଭାବିକ ଭାବରେ ମନୁଷ୍ୟର ଉତ୍ତରୋତ୍ତର ଉନ୍ନତିରେ କେବଳ ବିଶ୍ୱାସ କରୁଥିଲେ ନୁହେଁ, ସେଥିପାଇଁ ସେ କାମ ମଧ୍ୟ କରିଥିଲେ । ଏହି ଶତାବ୍ଦୀର ଆଦ୍ୟରେ ଉଚ୍ଚାରିତ ତାଙ୍କର ବାଣୀ, ଆଜିର ଏହି ବିଶୃଙ୍ଖଳ ଜଗତରେ ତେଣୁ ତାର ବ୍ୟଞ୍ଜନା ହରାଇନାହିଁ ।

"ଶୁଣ ଶୁଣ ନବ ସମ୍ବାଦ ସର୍ବେ ଉଲ୍ଲାସେ ମାତି,
ଏକମାତ୍ର ବିଶ୍ୱବିଧାତା, ଏକ ମାନବଜାତି ।
ଆସିୟା, ୟୁରୋପ, ଆଫ୍ରିକା ଆମେରିକା ସଙ୍ଗତେ,
ସମ୍ମିଳିତ ହେଉଅଛନ୍ତି ପ୍ରେମ-ବିଧାନମତେ ।
ପୂରୁବ ପଶ୍ଚିମ ଉତ୍ତର ପୁଣି ଦକ୍ଷିଣ ଆଶା,
ଗାଉଛନ୍ତି ପ୍ରେମ-ସଙ୍ଗୀତ କିବା ଅମୃତ ଭାଷା ।

ପୃଥିବୀ ଡାକଇ ସକଳେ ଶୁଣ ଜଗତବାସୀ,
ମୋ ଜନନୀ ତୁମ୍ଭ ଜନନୀ ହୁଅ ପ୍ରେମବିଶ୍ୱାସୀ ।''

(ନବଯୁଗ, ଉତ୍କଳଗାଥା)

'ଋଷିପ୍ରାଣେ ଦେବାବତରଣ' ବଙ୍ଗଳାରେ ଅନୂଦିତ ଓ ପ୍ରକାଶିତ ହୁଅନ୍ତେ ରବୀନ୍ଦ୍ରନାଥ ମନ୍ତବ୍ୟ ପ୍ରକାଶ କରିବାର ଜଣାଅଛି ଯେ, ସେ ପ୍ରକୃତ ବେଦମନ୍ତ୍ରର ଧ୍ୱନି ଏଥିରେ ଶୁଣିପାରିଲେ । 'ଋଷିପ୍ରାଣେ ଦେବାବତରଣ' ପରି ମଧୁସୂଦନଙ୍କ 'ଆକାଶ ପ୍ରତି', 'ପୃଥିବୀ ପ୍ରତି', 'ଧ୍ୱନି', 'ନଦୀ ପ୍ରତି' ଇତ୍ୟାଦି କବିତାଗୁଡ଼ିକ ଉଦାତ୍ତ ପଦରାଜିରେ ଲିଖିତ ଓ ଉଚ୍ଚ ଆଧ୍ୟାତ୍ମିକ ଭାବରାଜିର ବାହକ । 'ଆକାଶ ପ୍ରତି' କବିତାଟିର ପ୍ରଥମାଂଶ ଋଗ୍‌ବେଦର ନାସଦୀୟ ସୂକ୍ତକୁ ସ୍ମରଣ କରାଇଥାଏ ।

''ନଥିଲା ରେ ଯେତେବେଳେ ବିଚିତ୍ର ଭୁବନ
ନଥିଲା ଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରାବଳୀ
ନଥିଲା ଧରଣୀ ଏହି ଭୂତ ନିକେତନ
ଅନନ୍ତ ଅନ୍ଧାରେ ପୂର୍ଣ୍ଣ ଥିଲା ସର୍ବ ସ୍ଥଳୀ ।

× × ×

ଅନନ୍ତ ନିବିଡ଼ ଘୋର ଅନ୍ଧକାରମୟ
ଥିଲା ବିଶ୍ୱ ରୂପରେଖ ଶୂନ୍ୟ ନିରାକାର,
ନିସ୍ତରଙ୍ଗ ଥିଲା ଯେବେ ଅନନ୍ତ ସମୟ
ଘଟନାବିହୀନ ଘୋର କାଳ ପାରାବାର ।

× × ×

ନଥିଲା ଯେକାଳେ ସୃଷ୍ଟି-ଲୀଳା ଜଗତର
କେବଳ ଜାଗ୍ରତ ଥିଲେ ଅନାଦିକାରଣ
ଦେଶକାଳାତୀତ, ବାକ୍ୟ-ମନ-ଅଗୋଚର
ଅନନ୍ତ-ଚୈତନ୍ୟମୟ ବ୍ରହ୍ମ ସନାତନ ।

× × ×

ସେ କାଳରେ ଅବଲମ୍ବି ଅନାଦି କାରଣେ
ଅସୀମ ଆକାଶ ତୁହି ମହାମହିମାରେ
(ସେ ମହିମା, ସ୍ତବ୍ଧ ଚିତ୍ତ ଯାହାର ଚିନ୍ତନେ)
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅନ୍ଧାରେ ।

ଏହାହିଁ ଥିଲା ଭକ୍ତକବିଙ୍କର ସାଧାରଣ ବଚନଭଙ୍ଗୀ । ସେଥିରେ ଆମେ ସର୍ବତ୍ର ଦେବବାଣୀ ବା ଧର୍ମଶାସ୍ତ୍ରର ଧ୍ୱନି-ଶୃଙ୍ଖଳାହିଁ ଶୁଣିବାକୁ ପାଉଁ । ବ୍ୟକ୍ତିଗତ ଜୀବନର ପବିତ୍ରତା, ପାଣ୍ଡିତ୍ୟ ଓ ଧର୍ମାତ୍ମକ ଉତ୍ସାହ ପାଇଁ ମଧୁସୂଦନ ତାଙ୍କ ଜୀବନକାଳରେହିଁ ଭକ୍ତକବି ବୋଲି ବିଶେଷିତ ଓ ଦେଶବାସୀଙ୍କଦ୍ୱାରା ସମ୍ମାନିତ ହୋଇଥିଲେ ।

ମଧୁସୂଦନ ଥିଲେ ଓଡ଼ିଆ ସାହିତ୍ୟରେ 'ସନେଟ୍'ର ଆଦ୍ୟ ଲେଖକ । ଏଥିର ଅନେକ ପେଟ୍ରାର୍କୀୟ ରୀତିରେ ଲିଖିତ; କିନ୍ତୁ ବାହାରେ ପେଟ୍ରାର୍କୀୟ ଥିଲେ କି ହେଲା, ଅନ୍ତରରେ ସେଗୁଡ଼ିକ କୌଣସି ଲରାର ଯାଦୁକରୀ-ସ୍ପର୍ଶଶୂନ୍ୟ ହୋଇ, କିଞ୍ଚିତ ରସହୀନ ।* ମଧୁସୂଦନଙ୍କ ସନେଟ୍‌ଗୁଡ଼ିକ କେବଳ ବିଚାର ବା ଅଭିନନ୍ଦନମୂଳକ । ତାଙ୍କର ସନେଟ୍ ସଂଗ୍ରହ 'ବସନ୍ତ-ଗାଥା'ର ଶ୍ରେଷ୍ଠ ସନେଟ୍ 'ବିଚ୍ଛେଦ' ଏହିପରି ପ୍ରେରଣାଦାୟକ ଭାବରେ ବିଚାର-ମୂଳକ ।

''ହଜି ନାହିଁ ଯା'ର କେଭେ କିଛି ହିଁ ରତନ
ଏ ମର୍ତ୍ତ୍ୟ-ସଂସାରେ ସେହି ଦୀନ ଅକିଞ୍ଚନ ।
ସେ ପୁଣି ଦରିଦ୍ରତର ହରାଇ ରତନ
ଏ ଭବ ଭବନେ ତାହା ପାସୋରେ ଯେ ଜନ ।
ସେ ପୁଣି ଦରିଦ୍ରତମ କୃପାପାତ୍ର ଅତି
ହରାଇ ପାସୋରିବାକୁ ବଳେ ଯା'ର ମତି ।
ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମ ବେଦନାରେ ।
ଯେ ଜନ ଜପଇ ଶିବରାତ୍ରି ଜାଗରଣେ
ଅଶ୍ରୁପୂତ ପ୍ରେମମନ୍ତ୍ରେ ହୃଦୟରତନେ ।
ସେହି ଏକା ଏ ଜଗତେ ମହାଧନେ ଧନୀ
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ ।
ପ୍ରଭୁ ହେ ଶାଶ୍ୱତ ତବ ଶ୍ରୀ କୋଠଭଣ୍ଡାରେ
ରଖ ବନ୍ଧୁ ହୃଦନିଧି ଲକ୍ଷ୍ମୀ-ପ୍ରତିମାରେ ।''

**ମଧୁସୂଦନଙ୍କ ଗଦ୍ୟରଚନା –**

ବହୁକାଳଧରି ଓଡ଼ିଶାର ସ୍କୁଲମାନଙ୍କରେ ଓଡ଼ିଆ ସାହିତ୍ୟ ପାଠ୍ୟପୁସ୍ତକମାଳା ଥିଲା ଏକ-ମାତ୍ର ମଧୁସୂଦନଙ୍କର । ସେ ସବୁରୁହିଁ ଆମ୍ଭେମାନେ ମଧୁସୂଦନଙ୍କ ଗଦ୍ୟର ପରିଚୟ ପାଉଁ । ଦିନେ ତାହାହିଁ ଥିଲା ଓଡ଼ିଆ ଗଦ୍ୟ-ଶୈଳୀର ଆଦର୍ଶ । ଆଜି କେହି କେହି ତାକୁ ପ୍ରାଚୀନତାର ଦ୍ୱାହି ଦେଇ ପ୍ରତ୍ୟାଖ୍ୟାନ କରିପାରନ୍ତି; କିନ୍ତୁ ମଧୁସୂଦନଙ୍କ ଗଦ୍ୟର ଗୁରୁତା, ଗାମ୍ଭୀର୍ଯ୍ୟ ଓ ଧ୍ୱନିରମ୍ୟତା ସାଂସ୍କୃତିକ ସଂସାରରେ ଚିରକାଳ ସ୍ୱୀକୃତି ଲାଭକରିବ । ଅପାରଗମାନଙ୍କର ପୁସ୍ତକାବଳି ପାଠ୍ୟପୁସ୍ତକ କରିବାପାଇଁ ହିଁ ମଧୁସୂଦନଙ୍କ ଗଦ୍ୟଶୈଳୀକୁ 'ପଣ୍ଡିତିଆ'ର ମିଥ୍ୟା ଅପବାଦ ଦିଆଯାଇପାରେ; କିନ୍ତୁ ଏପରି କରି ଓଡ଼ିଆମାନଙ୍କର ସାହିତ୍ୟିକ ପ୍ରସ୍ତୁତିର ମୂଳ-ପତ୍ତନକୁ ଚିରକାଳ ଲାଗି ଯେ ଖଇଚା ରଖାଗଲା, ଏଥିରେ ଦ୍ୱିରୁକ୍ତି ନଥାଇପାରେ । ଏହି

---

* ସନେଟ୍‌କୁ ବିଶ୍ୱସାହିତ୍ୟରେ ବିଖ୍ୟାତ କରିପକାଣ୍ଡି ଇଟାଲୀୟ କବି ପେଟ୍ରାର୍କ ଚତୁର୍ଦ୍ଦଶ ଶତାବ୍ଦୀରେ । ପେଟ୍ରାର୍କ ତାଙ୍କ ସନେଟ୍‌ଗୁଡ଼ିକୁ ଲେଖିଥିଲେ ଲରା ନାମ୍ନୀ ଏକ ବିବାହିତା ପ୍ରଣୟିନୀକୁ ଲକ୍ଷ୍ୟ କରି ।

ଶତାବ୍ଦୀର ଅର୍ଦ୍ଧେକଯାଏଁ ଯେ କେହି ଓଡ଼ିଆରେ ଲେଖକରୂପେ ଗଣ୍ୟ, ସେ ସମସ୍ତଙ୍କର ସାହିତ୍ୟିକ ମୂଳପତ୍ତନ ଗଢ଼ିଦେଇଥିଲା ମଧୁସୂଦନଙ୍କ ଗଦ୍ୟ ଓ ପଦ୍ୟ । ମୁନାଫାଖୋର ଲେଖକ, ଶିକ୍ଷକ ଓ ପ୍ରକାଶକଙ୍କ ଷଡ଼ଯନ୍ତ୍ର ମଧୁସୂଦନଙ୍କ ଗଦ୍ୟ ଓ ପଦ୍ୟକୁ ଓଡ଼ିଶାର ସ୍କୁଲମାନଙ୍କରୁ ଉଠାଇଦେଇ, ଓଡ଼ିଆମାନଙ୍କର ସାଂସ୍କୃତିକ ଅଧଃପତନ ହିଁ ଘଟାଇଛନ୍ତି ବୋଲି ଦୃଢ଼ଭାବରେ କୁହାଯାଇପାରେ । ସେଦିନଯାଏଁ ଯେଉଁମାନେ କ୍ରମାନ୍ୱୟରେ ମଧୁସୂଦନଙ୍କ ବର୍ଣ୍ଣବୋଧ, ଶିଶୁବୋଧ, ବାଳବୋଧ, ସାହିତ୍ୟ-କୁସୁମ ଓ ସାହିତ୍ୟ-ପ୍ରସଙ୍ଗ ପଢ଼ିଆସିଥିଲେ, ସେସବୁର ଶ୍ରବଣରସାୟନ ଓ ଭାବଗର୍ଭକ ପଙ୍କ୍ତିସବୁ ସେମାନଙ୍କ ସ୍ମୃତିରୁ ଅପସାରିତ ହେବାର ଆଶଙ୍କାଇ ନଥିଲା; ବରଂ ଜନ-ଚେତନାରେ ସେ ସବୁ ଜାଗ୍ରତ ରହୁଥିଲା ଜଗନ୍ନାଥଙ୍କ ଭାଗବତର ପଙ୍କ୍ତିସବୁପରି ।

''ଉତ୍ତର ଦିଗେ ବୃକ୍ଷଡାଳେ, ପେଚ୍ଚା ରାବିଲା ରାତ୍ରିକାଳେ ।
ଆମ୍ଭ ଜନ୍ମଭୂମି ଉତ୍କଳ ଦେଶ, ଉତ୍କଳକୀରତି ଅଟେ ଅଶେଷ ।
ଖଡ୍‌ଗ ଅବା ଖଣ୍ଡା ଧରି ଚାଲେ ଖଣ୍ଡାଇତ
ଖଡ୍‌ଗ ଯୋଗୁଁ ଖଡ୍‌ଗୀ ବୋଲି ଗଣ୍ଡାର ବିଦିତ ।''

ବର୍ଣ୍ଣ ଓ ଶବ୍ଦ ଶିକ୍ଷା ସଙ୍ଗେ ସଙ୍ଗେ ପିଲେ ନିଜ ଭାଷାର ଉତ୍କୃଷ୍ଟ ଶିଳ୍ପ ଓ ଚିନ୍ତାଧାରା ସହିତ ଯେ ପରିଚିତ ହୋଇଯାଉଥିଲେ, ଶିକ୍ଷାଦିଗରୁ ଏବର ଶିକ୍ଷକ ଓ ଶିକ୍ଷାବିଦ୍‌ମାନେ ତାକୁ ନାପସନ୍ଦ ନକଲେ ନିଜ ଅଗ୍ରଗତି ଓ ବିଦ୍‌ବତ୍ତାର ପ୍ରମାଣାନ୍ତର ବା କାହିଁ ? ଯେଉଁମାନେ ମଧୁସୂଦନଙ୍କ ଗଦ୍ୟଶୈଳୀକୁ 'ପଣ୍ଡିତିଆ' କହି ନାସିକା କୁଞ୍ଚନ କରନ୍ତି, ସେମାନେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଗଦ୍ୟଶୈଳୀକି ଯେ ବରଣମାଳା ଦେଇଚାଲିଛନ୍ତି, ତାହା ମଧ ଗରାଖପଣିଆର କଷଟିପଥର । ମଧୁସୂଦନଙ୍କ ଗଦ୍ୟଶୈଳୀର ପ୍ରକାଶନ ପାଟବ, ସରଳତା, ସଂଯମ, ଗୁରୁତା, ମର୍ଯ୍ୟାଦା, ଶାବ୍ଦିକ ଯଥାର୍ଥତା ଓ ସର୍ବୋପରି କର୍ଣ୍ଣରସାୟନତା ପ୍ରମାଣିତ କରିବାପାଇଁ ଏଠାରେ କେତୋଟି ମାତ୍ର ଦୃଷ୍ଟାନ୍ତ ଦେଉଛୁ ।

''ଏକଦା ହସ୍ତ, ପଦ ପ୍ରଭୃତି ଅବୟବମାନେ ମିଳିତ ହୋଇ ବିଚ୍ଚାରିଲେ, ଆମ୍ଭେମାନେ ସର୍ବଦା ପରିଶ୍ରମ କରୁଅଛୁଁ; କିନ୍ତୁ ଉଦର କଦାପି ପରିଶ୍ରମ କରେ ନାହିଁ । ସେ ସବୁବେଳେ ନିଶ୍ଚିନ୍ତ ରହିଅଛି । ସେ ସର୍ବଦା ଆଳସ୍ୟରେ କାଳହରଣ କରିବ, ଆମ୍ଭେମାନେ କାହିଁ ତାର ପରିଚ୍ଚର୍ଯ୍ୟା କରିବା ? ଅତଏବ ଆସ ପ୍ରତିଜ୍ଞା କରିବା ଯେ, ଆଜିଠାରୁ ଆମ୍ଭେମାନେ ଆଉ ଉଦରକୁ ସାହାଯ୍ୟ କରିବାନାହିଁ ।''

× × × ×

''ଲୋକେ ମନେକରନ୍ତି ଯେ, କେହି ବଡ଼ଲୋକ, କାହାର ବହୁ ଧନ, କୋଠାବାଡ଼ି, ଯାନବାହନ ଏବଂ ଆଜ୍ଞାକାରୀ ଭୃତ୍ୟ ଅଛନ୍ତି; କିନ୍ତୁ ପ୍ରକୃତ ବଡ଼ଲୋକ, ଯଥାର୍ଥ ବଡ଼ଲୋକ ସେହି, ଯେ ନିଜର ଜ୍ଞାନ, ସାଧୁ ଚରିତ୍ର ଓ ସଦ୍‌ଗୁଣଦ୍ୱାରା ପୃଥିବୀର ହିତ ସାଧନ କରେ । ତାହାର ଟଙ୍କା କଉଡ଼ି, କୋଠାବାଡ଼ି, ଗାଡ଼ିଘୋଡ଼ା ଏବଂ ଦାସଦାସୀ ନଥିଲେ ସୁଦ୍ଧା, ସେ ଦରିଦ୍ର ହୋଇଥିଲେହେଁ, ସେ ପ୍ରକୃତ ବଡ଼ ଲୋକ । ସେ ପୃଥିବୀର ଅଳଙ୍କାର ସ୍ୱରୂପ;

ସେ ମନୁଷ୍ୟ ହୋଇ ସୁଦ୍ଧା ଦେବତାତୁଲ୍ୟ ଭକ୍ତିଭାଜନ ।''

''ଊନବିଂଶ ଶତାବ୍ଦୀର ଭାରତୀୟ ନାରୀମାନଙ୍କର ଦୁର୍ଦ୍ଦଶା ଅବଲୋକନ କରି କିଏ ବିଶ୍ୱାସ କରିବ ଯେ, ଏହି ହତଭାଗ୍ୟ ଦେଶ ଏକସମୟରେ ସମରବିଳାସିନୀ ମନସ୍ୱିନୀ ବୀରବାଳାମାନଙ୍କର ବିଳାସକ୍ଷେତ୍ର ଥିଲା ? 'ଭାରତୀୟ ବୀରା ନାରୀ' – ଆଜି ଏହି ପଦଗୁଡ଼ିକ ଆମ୍ଭମାନଙ୍କ ସମୀପରେ ଅସାର ପ୍ରଳାପତୁଲ୍ୟ ପ୍ରତୀୟମାନ ହେଉଅଛି ସତ୍ୟ; କିନ୍ତୁ ଏହା କାହାରି କପୋଳକଳ୍ପିତ ନୁହେଁ । ମୁସଲମାନ ଇତିହାସ ବଜ୍ରନିର୍ଘୋଷରେ ସେହି ବୀରେନ୍ଦ୍ର ବରଣୀୟା ନାରୀମାନଙ୍କର କୀର୍ତ୍ତି ଗାନ କରୁଅଛି । କବିମାନଙ୍କର ଅମୃତ ଏବଂ ପବିତ୍ର କଣ୍ଠ ସେମାନଙ୍କର ମନୋହର ଚରିତକୁ ଅମର ସଙ୍ଗୀତରେ ନିବଦ୍ଧ କରିଅଛି । ରାଣୀ ଦୁର୍ଗାବତୀ ସେହି ପୁଣ୍ୟକୀର୍ତ୍ତି ବୀରାଙ୍ଗନାମାନଙ୍କ ମଧ୍ୟରେ ଅଗ୍ରଗଣନୀୟା ।

''ମଧ୍ୟଭାରତବର୍ଷରେ ଗଡ଼ମଣ୍ଡଳ ନାମକ ନର୍ମଦା ତଟବର୍ତ୍ତୀ ଗୋଟିଏ ସୁବିସ୍ତୀର୍ଣ୍ଣ ଜନପଦ ଅଛି । ତାହାର ଉତ୍ତରରେ ବୁନ୍ଦେଲଖଣ୍ଡ, ପୂର୍ବରେ ରତନପୁର, ପଶ୍ଚିମରେ ମାଳବ ଏବଂ ଦକ୍ଷିଣରେ ଦାକ୍ଷିଣାତ୍ୟ । ଏହି ପ୍ରଦେଶର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ବିଚିତ୍ର ଏବଂ କମନୀୟ । ଶ୍ୟାମଚ୍ଛବି ଅନନ୍ତକାନନଶ୍ରେଣୀ, ନିର୍ଝରଝଙ୍କାରପୂର୍ଣ୍ଣ ତୁଙ୍ଗ ଗିରିମାଳା ଏବଂ ସୁଦୂରବାହୀ-ନଦୀବୃନ୍ଦ ଏହାର ପୂର୍ବଦିଗରେ ବିରାଜମାନ । ଷୋଡ଼ଶ ଶତାବ୍ଦୀରେ ଏହି ପ୍ରଦେଶ ଅତ୍ୟନ୍ତ ସମୃଦ୍ଧିମନ୍ତ ଥିଲା । ଅନେକ ସୁଦୃଢ଼ ଦୁର୍ଗ ଏବଂ ଐଶ୍ୱର୍ଯ୍ୟଶାଳୀ ନଗର ଏହି ଦେଶ ମଧ୍ୟରେ ବିଦ୍ୟମାନ ଥିଲା । ଚୌରଗଡ଼ ନାମକ ନଗର ଏହାର ରାଜଧାନୀ ଥିଲା । ଯେତେବେଳେ ସୁବିଖ୍ୟାତ ମୋଗଲସମ୍ରାଟ୍ ଆକ୍‌ବର ମାଳବ ଦେଶର ଶାସନ ନିମିତ୍ତ ଆସ୍‌ଫ ଖାଁ ନାମକ ସେନାପତିଙ୍କୁ ପ୍ରେରଣ କରିଥିଲେ, ସେତେବେଳେ ରାଣୀ ଦୁର୍ଗାବତୀ ଗଡ଼ରାଜ୍ୟର ଅଧିଶ୍ୱରୀ ଥିଲେ ।'' (ରାଣୀ ଦୁର୍ଗାବତୀ, ସାହିତ୍ୟ ପ୍ରସଙ୍ଗ)

ପଣ୍ଡିତ ଲୋକହିଁ ଲୋକଶିକ୍ଷକ ହୁଅନ୍ତି । ମୂର୍ଖ ମୂର୍ଖକୁ ଶିକ୍ଷା ଦେବାର ଦୃଶ୍ୟ ଅବଶ୍ୟ ଏବର ତଥାକଥିତ 'ପ୍ରଗତିଶୀଳ' ଯୁଗରେ ସୁପରିଚିତ ଘଟଣା । ତେଣୁ ହିଁ 'ପଣ୍ଡିତିଆ' ଶବ୍ଦଟିକୁ ରଚନାଶୈଳୀର ନିନ୍ଦାସୂଚକ ବିଶେଷଣରୂପେ ଏବେ ପ୍ରୟୋଗ କରାଯାଇଥାଏ । ପୁଣି, ଉପରୋକ୍ତ ଦୃଷ୍ଟାନ୍ତମାନଙ୍କ ଭିତରୁ କେଉଁଟିକୁ, କେଉଁ କାରଣରୁ ଯେ 'ପଣ୍ଡିତିଆ' କୁହାଯିବ, ତାହା ମଧ୍ୟ ବୁଝାଯାଉ ନାହିଁ । କିନ୍ତୁ ଆମେ ଦେଖିବା ଯେ ପ୍ରତ୍ୟେକଟି ଦୃଷ୍ଟାନ୍ତ ଦେଶର ତରୁଣମାନଙ୍କୁ ଶିକ୍ଷା ଦେବାର ସୁଯୋଗ୍ୟ ମାଧ୍ୟମରୂପେ ଦଣ୍ଡାୟମାନ । ଭାବ ଓ ଚିନ୍ତାକୁ ସ୍ପଷ୍ଟଭାବରେ ପ୍ରକାଶ କରିବା ସହିତ ସେଗୁଡ଼ିକରେ ଏକ ଅବର୍ଣ୍ଣନୀୟ କାବ୍ୟ-ମାଧୁରୀ ଲାଗିରହିଛି । ତାହାହିଁ ଗଦ୍ୟର ପ୍ରକୃଷ୍ଟ ଲକ୍ଷଣ ।

ଏହି ପାଠ୍ୟପୁସ୍ତକମାଳା ଭିତରେ ମଧୁସୂଦନ ପିଲାଙ୍କ ପାଇଁ ଉତ୍କଳର ଯେଉଁ ଋତୁଚିତ୍ରାବଳି ଛାଡ଼ିଯାଇଛନ୍ତି, ତାହା ଯେପରି ଯଥାର୍ଥ, ସେହିପରି ଅତୁଳନୀୟ । ପ୍ରାଚୀନ ବା ନବୀନ ଅନ୍ୟ କୌଣସି ଓଡ଼ିଆ କବି ହାତରେ ଉତ୍କଳୀୟ ଋତୁପର୍ଯ୍ୟାୟର ସେ ଚିତ୍ରମାଳା ଆମେ ପାଉଁନା ।

"ଆଖୁ ଖେତ ଦିଶେ ଯତନ, ଆଖୁଶାଳାରେ ବସି
ଗ୍ରାମକଥା ଗ୍ରାମବାସୀଏ, ଗଳ୍ପ କରନ୍ତି ହସି ।
ଆଖୁ ଭାଙ୍ଗି ରସ ମଧୁର, ପିଇ ବାଳକଗଣ
ବୁଲନ୍ତି ଚୌଦିଗେ, ହରଷେ ପୂରିଅଛି ବଦନ ।"

ବା 'ବରଷା କାଳ ଅଟେ ମଙ୍ଗଳକାରୀ, ପାଳଇ ପରଜାଙ୍କୁ ବରଷି ବାରି ।'

ଏ ସବୁଥିରେ ବର୍ଣ୍ଣିତ ଭାବ ଓ ଦୃଶ୍ୟ କିପରି ପରିଚିତ ଓ କିପରି ସତ୍ୟ; କିନ୍ତୁ ଏପରି ସ୍ୱଚ୍ଛ, ସରଳ, ମଧୁର ଭାବରେ ଏଇ ସାମାନ୍ୟ କଥାଗୁଡ଼ିକ କେହି କହିନଥିଲେ କି କହିନାହାନ୍ତି ଏପର୍ଯ୍ୟନ୍ତ – ଯେପରି କହିଗଲେ ମଧୁସୂଦନ । ଆଜିର ଦ୍ରୁତ-ବ୍ୟାପକ ନଗର-ସଭ୍ୟତାର କଳୁଷିତ ବାୟୁମଣ୍ଡଳରେ କେତେ ସହସ୍ର ପ୍ରାଣ ରୁଦ୍ଧଶ୍ୱାସ ହୋଇ ମଧୁସୂଦନଙ୍କ ସହିତ ଏକକଣ୍ଠରେ ଡାକିଉଠିବ –

"ଛାଡ଼ି ବନ୍ଧୁ ନଗର ଚହଳ
ଯିବା ଚାଲ ସେହି ସ୍ଥାନେ ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।"

ମଧୁସୂଦନ ଏକ ସୁଦକ୍ଷ ଅନୁବାଦକ ଭାବରେ ମଧ ଯଥାର୍ଥରେ ଯଶସ୍ୱୀ । ଭବଭୂତିଙ୍କର 'ଉତ୍ତରରାମଚରିତ'ର ସେ ଏକ ମନୋରମ ଅନୁବାଦ ଛାଡ଼ିଯାଇଛନ୍ତି । ଗୋଟିଏ ପ୍ରସିଦ୍ଧ ଇଂରାଜୀ କବିତାର ଅନୁବାଦ ବୋଲି ନଜାଣିଲାଯାଏଁ, 'ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ'କୁ ମୌଳିକ କବିତା ନୁହେଁ ବୋଲି ସନ୍ଦେହ କରିବାର କୌଣସି କାରଣ ନାହିଁ ।

ମଧୁସୂଦନଙ୍କର ମୁଖ୍ୟ ଗ୍ରନ୍ଥମାନଙ୍କର ନାମ – କୁସୁମାଞ୍ଜଳି, ଛାନ୍ଦମାଳା, ଉତ୍କଳଗାଥା, ବ୍ରାହ୍ମସଙ୍ଗୀତ, ବସନ୍ତଗାଥା । ସବୁଗୁଡ଼ିକ ଛୋଟ-ବଡ଼ କବିତାର ସଂଗ୍ରହ ମାତ୍ର ।

□□□

# ତ୍ରୟୋଦଶ ଅଧ୍ୟାୟ

## କାବ୍ୟ-ରାଜ୍ୟର ଅନ୍ୟ ପ୍ରଦୀପାବଳୀ

ଫକିରମୋହନ, ରାଧାନାଥ, ମଧୁସୂଦନ – ଏହି ମହତ୍ ତ୍ରୟୀଙ୍କର ଗଦ୍ୟ ଓ ପଦ୍ୟର ବହୁ ଅନୁକାରୀ ଓ ଅନୁସାରୀ ଥିଲେ । ସେମାନଙ୍କ ଭିତରୁ ଯେଉଁମାନଙ୍କ ରଚନାରେ ଏହି ଗୁରୁମାନଙ୍କର ପଦାଙ୍କାନୁସରଣର ଚିହ୍ନ ଆମେ ସ୍ପଷ୍ଟ ଦେଖିବା ସାଥେ ସାଥେ ସେମାନଙ୍କର ନିଜନିଜର ସ୍ୱାତନ୍ତ୍ର୍ୟ ମଧ ଦେଖିବାକୁ ପାଉଁ, କେବଳ ସେହି କେତେଜଣଙ୍କର ପରିଚୟ ଏଠାରେ ଦିଆଯାଉଛି ।

**ଚିନ୍ତାମଣି ମହାନ୍ତି** (୧୮୬୭-୧୯୪୩) –

ଏହି ଯୁଗରେ, ବା ହୋଇପାରେ ଓଡ଼ିଆ ସାହିତ୍ୟର ଏତାବତ୍ ସର୍ବଯୁଗରେ ସର୍ବାଧିକ ସଂଖ୍ୟକ ପୁସ୍ତକର ରଚୟିତା ହେବେ ଚିନ୍ତାମଣି ମହାନ୍ତି । ପ୍ରାୟ ଏକଶତ ଭିନ୍ନ ଭିନ୍ନ ପୁସ୍ତକର ସେ ଲେଖକ । ସମ୍ରାଟ୍ ବିକ୍ରମାଦିତ୍ୟଙ୍କଠୁ ଆରମ୍ଭକରି ଲଙ୍କାମରିଚ୍ ଓ ଭୂଇଁଚଣା ଚାଷ ପର୍ଯ୍ୟନ୍ତ, ରବିବିମ୍ବ ତଳେ ଏପରି କୌଣସି ବିଷୟ ବୋଧହୁଏ ନାହିଁ ଯାହା ଉପରେ ସେ କଲମ ଚଳାଇ ନାହାନ୍ତି । ତାଙ୍କର ଛୋଟ ବଡ଼ କବିତାର ସଂଖ୍ୟା ତ ରାଶି ରାଶି; ଉପନ୍ୟାସ, ଗଳ୍ପ ଓ ଭ୍ରମଣକାହାଣୀ ମଧ ସେ ଲେଖିଯାଇଛନ୍ତି । ନିଜ ଜନ୍ମମାଟି ବାଲେଶ୍ୱର ଜିଲ୍ଲାରେ ପ୍ରାଇମେରି ସ୍କୁଲ-ଶିକ୍ଷକ ଭାବରେ ସେ ଜୀବନାରମ୍ଭ କରିଥିଲେ; କିନ୍ତୁ ଜୀବନର ଅଧିକାଂଶ କାଳ କଟାଇଥିଲେ ତତ୍‌କାଳୀନ ଗଞ୍ଜାମ ଜିଲ୍ଲାର ସୁରଙ୍ଗୀ ଜମିଦାରଙ୍କ ସଭାକବି ଭାବରେ । ସେହି ରାଜାଶ୍ରୟ ଓ ଅବସରର ସେ ଉତ୍ତମ ଉପଯୋଗ କରିପାରିଥିଲେ ।

ଓଡ଼ିଶାରେ ସାଧାରଣ ପାଠକର ଅନୁଭବ କିନ୍ତୁ ଏହି ଯେ, ମହାନ୍ତିଙ୍କ ଲେଖନୀରେ ସେହି ଦୈବତ ଅଗ୍ନି-ସ୍ଫୁଲିଙ୍ଗଟି ନଥିଲା – ଯାହାକୁହିଁ କୁହାଯାଏ କବି-ପ୍ରତିଭା । ମହାନ୍ତିଙ୍କ କବିତା କେବଳ ପଠନୀୟ ଓ ସହନୀୟ ପଦ୍ୟ ମାତ୍ର; କିନ୍ତୁ ମହାନ୍ତି, 'ପଖାଳ', 'ହଳଦି କାଠୁଆ' ଓ 'ଟଙ୍କା' ପ୍ରଭୃତି ଅ-କାବ୍ୟବସ୍ତୁମାନଙ୍କୁ ନେଇ ଯେଉଁ କବିତା ଲେଖିଯାଇଛନ୍ତି, ଯାହା ପୂର୍ବେ କୌଣସି କବିର କଳ୍ପନାକୁ ମଧ ଆସିନଥିବ । ସେ ତାଙ୍କ ପୃଷ୍ଠପୋଷକ ରାଜାଙ୍କ ଜମିଦାରି ସୁରଙ୍ଗୀ ଓ ଉପେନ୍ଦ୍ରଙ୍କ ଜନ୍ମଭୂମି ଘୁମୁସର ଉପରେ ବିରାଟ ବିରାଟ କାବ୍ୟ ରଚନା କରିଯାଇଛନ୍ତି । 'ମହେନ୍ଦ୍ର', 'ସିଂହରାଜ', 'ଉଦ୍ୟାନଖଣ୍ଡ' ଆଦି ଏହି ଶ୍ରେଣୀର ବହୁ ଭୌଗୋଳିକ କାବ୍ୟ ମହାନ୍ତିଙ୍କ ଲେଖନୀରୁ ବାହାରିଛି । ଏସବୁ ଭିତରେ 'ମହେନ୍ଦ୍ର' କାବ୍ୟଟି ସବୁଠାରୁ ସୁଖପାଠ୍ୟ, ଠିକ୍ ଏକ ଭ୍ରମଣ-କାହାଣୀ ପରି । ମହେନ୍ଦ୍ର ଭାରତର ପୁରାଣ-ପ୍ରସିଦ୍ଧ ପର୍ବତ ଓ ବର୍ତ୍ତମାନ ଓଡ଼ିଶା ରାଷ୍ଟ୍ରର ଦକ୍ଷିଣ ସୀମାରେ ବିରାଜିତ । ଏହିଠାରେ ପରଶୁରାମ ଶେଷ-ଜୀବନ କଟାଇଥିବାର ଜନଶ୍ରୁତି ଅଛି । ମହାନ୍ତିଙ୍କ

'ମହେନ୍ଦ୍ର' ଅମିତ୍ରାକ୍ଷରରେ ଲେଖା ଓ ଭିନ୍ନ ଭିନ୍ନ ସର୍ଗରେ ବିଭକ୍ତ । କବିଙ୍କର ପ୍ରକୃତି ପ୍ରତି ସହଜାତ ଆକର୍ଷଣ ଏହି କାବ୍ୟର ବହୁ ସ୍ଥାନରେ ବିଶେଷଭାବରେ ପ୍ରସ୍ଫୁଟିତ । ମହେନ୍ଦ୍ର-ଗାତ୍ରରୁ ଖସିଆସୁଥିବା ସୁନାମୁଦିଆ (ସ୍ୱର୍ଣ୍ଣମୁଦ୍ରା) ନଦୀର ବର୍ଣ୍ଣନା ଏହିପରି –

"ନାଚି ନାଚି ସ୍ୱର୍ଣ୍ଣମୁଦ୍ରା କରି ଉଚ୍ଚହାସ୍ୟ
ପ୍ରଦର୍ଶାଇ କବିତାର ଜୀବନ୍ତ ଆକୃତି;
ଆସୁଛି ଓହ୍ଲାଇ ନିମ୍ନେ; ଅଶାନ୍ତ ଉଦ୍‌ବେଗେ ।
ସୃଜେ କାହିଁ କଳକଳ ଶବ୍ଦ କାହିଁ ଧୁ-ଧୁ,
କାହିଁ ଅବା ହୁ ହୁ ଆହା; ପ୍ରତେ ହୁଏ ଯଥା
ଉଠୁଛି ଏକଇ ତାରୁ ସା'ରି ଗା' ମା' ସ୍ୱର ।
ନୁହେଁ ସେ ଅଳସ କିମ୍ବା ଅକର୍ମ-ସର୍ବସ୍ୱ
ବିଷୟ-ବ୍ୟାପୃତ ସଦା ମାନସ ଯେସନ ।
ଠାବେ ଠାବେ ହୋଇ ସ୍ରୋତ ଶିଳାପ୍ରତିହତ
ପଡୁଛି ତଳକୁ ଡେଇଁ ଘୋର ଗଳଗାଜି
ଢାଳିଦେଇ ବେନି ତୀରେ ଫେନ-ପୁଷ୍ପାଞ୍ଜଳି,
ମୁକ୍ତାଗର୍ଭ ସୁଶାଣିତ ସ୍ଫଟିକର ସ୍ତରେ ।
ଛେଚି ହୋଇ ପାଷାଣେ ବା ହେଉଛି ବିଂଛୁଡ଼ି,
ମୁକ୍ତାରାଶି ଚଉପାଶେ, ଜଳକଣ ବ୍ୟାଜେ ।
ବହୁଛି ପ୍ରବଳ ସ୍ରୋତ୍, ଫୁଟିଉଠେ ତହିଁ
ପ୍ରବାହ କୁସୁମ ପ୍ରାୟ ଅସଂଖ୍ୟ ଭଉଁରି
ଫେନନାଭ ଖଣ୍ଡେ ଦୂର ଭାସିଯାଇ ସ୍ରୋତେ
ଯାଉଛି ମିଳାଇ, ଚିନ୍ତାସ୍ରୋତୁ ଜନ୍ମି ଯଥା
କଳ୍ପନା-ଆବର୍ତ୍ତ ଯାଏ ତହିଁରେ ମିଳାଇ ।" (ମହେନ୍ଦ୍ର, ଦ୍ୱିତୀୟ ସର୍ଗ)

ଶିକ୍ଷକ ଚିନ୍ତାମଣି ନୂତନ ପୁରୁଷର ଶିକ୍ଷା ପାଇଁ 'ସପ୍ତସତୀ', 'ସପ୍ତବୀର' ଓ 'ଆର୍ଯ୍ୟବାଳା' ଆଦି କାବ୍ୟ ଛାଡ଼ିଯାଇଛନ୍ତି । ସଂସାରର ବୈଚିତ୍ର୍ୟ ଓ ଅସାରତା ' ଝେଇବା ପାଇଁ ତାଙ୍କର ଗଳ୍ପକବିତାର ଗୁଚ୍ଛ 'ବିଶ୍ୱଚିତ୍ର' ଏକ ଚିତ୍ତାକର୍ଷକାରୀ ପୁସ୍ତକ ।

ବିପୁଳ ସୃଷ୍ଟି ଭିତରେ ମହାନ୍ତିଙ୍କ ଶ୍ରେଷ୍ଠ କୃତି ବୋଧହୁଏ ତାଙ୍କର 'ବିକ୍ରମାଦିତ୍ୟ' କାବ୍ୟ । ତାଙ୍କର କଳ୍ପନାଶକ୍ତି ଓ ପ୍ରକାଶନ-ପାଟବ ଏଇ ଗ୍ରନ୍ଥରେ ଉଚ୍ଚତମ ସୋପାନକୁ ଉଠିପାରିଛି ବୋଲି କହିବାକୁ ହେବ । ଉପଜୀବ୍ୟ ବିଷୟଟି ଉଦାର ଓ ମହତ୍ ହୋଇଥିବାରୁ ହୁଏତ ଏହି କାବ୍ୟ ଆପେ ଆପେ ମହିମାମୟ ହୋଇଉଠିଛି । କବି ଏ ଗ୍ରନ୍ଥରେ ଜଣେ ଉଦାର-ମହତ୍ ମହାପ୍ରାଣ ଶାସକ ଓ ମନୁଷ୍ୟର ଚିତ୍ର ଆମ ଆଗରେ ଥୋଇପାରିଛନ୍ତି । ବିକ୍ରମାଦିତ୍ୟଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ କବି କଳ୍ପନା କରିଛନ୍ତି ଯେ ଭାରତୀୟ ସୈନ୍ୟମାନେ ଲୋହିତସାଗର ଓ ଭୂମଧ୍ୟସାଗର ଦେଇ ରୋମ ଓ ଇଟାଲୀ ଆକ୍ରମଣ କରିଛନ୍ତି ଓ

ସେଠାରୁ ବିଜୟ-ଗୌରବ ନେଇ ମଧ ଫେରିଛନ୍ତି । ଏହା ଏକାନ୍ତ ଉଦ୍ଭଟ ଓ ଅବାନ୍ତର ହେଲେହେଁ କୌତୁକପ୍ରଦ ।

''ରଖି ଦକ୍ଷଭାଗେ ଅବ୍‌ଧି ଆରବ-ମୁଖର
ଆରବ ନଗରେ ମ୍ଳେଛ ଯବନ ବସତି
ପଡ଼ିଲା ତରଣୀବାର ଲୋହିତ ସାଗରେ
ହେରି ତହିଁ ରକ୍ତଜଳ ଭାରତୀୟ ବୀରେ
ଲଭିଲେ ବିସ୍ମୟାନନ୍ଦ ପ୍ରତିଫଳି ମୁଖ
ଲୋହିତ ସଲିଳବିମ୍ବେ ଦିଶିଲା ରକ୍ତାଭ
ପଦ୍ମ ଯଥା ବୋଳିହୋଇ ଊଷା-ପାଟଳିମା ।
କା ସହ ଚର୍ଚ୍ଚାରୀକ୍ରୀଡ଼ା ଇଚ୍ଛି ସୃଷ୍ଟି-ରାଣୀ
ସୃଜିଛନ୍ତି ଫଗୁଜଳେ ମହା ଜଳାଶୟ ।
ଖେଳୁଛି ଲୋହିତବୀଚି ଲୋହିତ ଉରସେ
ରୂପ ପାରାବାରେ ଯଥା ସୁଷମା ଲହରୀ
କିମ୍ବା ଉଠେ ରଙ୍ଗଘନେ ରଙ୍ଗବିଦ୍ୟୁଭାସି ।'' (ବିକ୍ରମାଦିତ୍ୟ, ଅଷ୍ଟମ ସର୍ଗ)

କିନ୍ତୁ ବିକ୍ରମ ଦିଗ୍‌ବିଜୟ ବ୍ୟପଦେଶରେ ଉତ୍କଳକୁ ଆସି ମୟୂରଭଞ୍ଜର ପ୍ରସିଦ୍ଧ ମେଘାସନ ପର୍ବତ ଉପରକୁ ଉଠିବା ଓ ସେଠାରୁ ଉତ୍କଳର ନଦନଦୀ ଓ ତୀର୍ଥାଦିର ସମ୍ବାଦ ସେଠାରେ ଥିବା ଜଣେ ଯୋଗୀଙ୍କଠାରୁ ପାଇବାର ବର୍ଣ୍ଣନା ଏହି କାବ୍ୟରେ ବୋଧହୁଏ ଚୂଡ଼ାନ୍ତ କଳ୍ପନା । ଚାରିଆଡ଼କୁ ଚାହିଁ ବିକ୍ରମ ଏ-କଣ ସେ-କଣ ବୋଲି ପଚାରୁଛନ୍ତି ଓ ଯୋଗୀ ତା'ର ଉତ୍ତର ଦେଉଛନ୍ତି –

''ପୁଛିଲେ ଶକାରୀ ଦେବ ଖଣ୍ଡପଡ଼ା ନଭେ
କୃତ୍ତିକାନକ୍ଷତ୍ର କିପାଁ ଉଦିତ ଦିବସେ ?
ମୁହୂର୍ତ୍ତେ ଧ୍ୟାନସ୍ଥ ରହି ଭାଷିଲେ ତାପସ –
ନୁହେଁ ସେ ନକ୍ଷତ୍ରପୁଞ୍ଜ; ବହୁ ବର୍ଷ ପରେ
ଜନ୍ମିବେ ସେ ରାଜ୍ୟେ ଚନ୍ଦ୍ରଶେଖର ନାମରେ
ଋଷିକଳ୍ପ ପ୍ରକୃତିର ତତ୍ତ୍ୱଦର୍ଶୀ ଏକ
ଯେ ମହାପୁରୁଷ ଦୈବୀ ପ୍ରତିଭା ବଳରେ
ଉଦ୍ଭାବି ଜ୍ୟୋତିଷ ସୂତ୍ର ବିଶୁଦ୍ଧ ସରଳ
କରିବେ ଜଗତେ ସ୍ତବ୍ଧ ଏ ତାଙ୍କରି ପ୍ରଭା ।''

ମୃତ୍ୟୁର ପ୍ରାୟ ଅବ୍ୟବହିତ ପରେ ଚିନ୍ତାମଣିଙ୍କ ବିକ୍ଷିପ୍ତ ଗ୍ରନ୍ଥରାଜି ଯେ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହୋଇପାରିଲା, ସେଥିପାଇଁ ବ୍ୟବସ୍ଥାପକଗଣ ଜାତିର ଧନ୍ୟବାଦର ପାତ୍ର । ନଚେତ୍ କବିଙ୍କ ବହୁସଂଖ୍ୟକ ରଚନାରୁ ଅନେକ ଯେ ବିସ୍ମୃତି-ଗହ୍ୱରରେ ଏକାବେଳକେ ଲୀନ ହୋଇଯାଇଥାନ୍ତା – ଅସମ୍ଭବ ନୁହେଁ ।

**ଉତ୍କଳ ପଲ୍ଲୀର ଲୋକପ୍ରିୟ କବି ନନ୍ଦକିଶୋର ବଳ** (୧୮୭୫-୧୯୨୮) –

ରାଧାନାଥ ଓ ମଧୁସୂଦନଙ୍କ ପରି ନନ୍ଦକିଶୋର ବଳ ମଧ୍ୟ ସ୍କୁଲ-ଶିକ୍ଷକ ଭାବରେ ଜୀବନଯାତ୍ରା ଆରମ୍ଭକରି ଡିଭିଜନାଲ ସ୍କୁଲ-ଇନିସ୍ପେକ୍ଟର ପଦକୁ ଉଠିପାରିଲେ । କଟକ ଜିଲ୍ଲାର କୁଶୁପୁର ଗ୍ରାମରେ ଗାଁ ଓ ବସୁଧା ସହିତ ଘନିଷ୍ଠତମ ସମ୍ପର୍କ ଥିବା ଏକ ସାମାଜିକ ଗୋଷ୍ଠୀରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟକାଳ ସେହି ଗାଁ-ଗହଳିରେହିଁ କଟିଯାଇଥିଲା । ଏଇ ପରିବେଶ ଓ ଅଭିଜ୍ଞତାର ସୂକ୍ଷ୍ମ ସ୍ପର୍ଶ କବି-ଚିତ୍ତରେ ଏପରି ଗଭୀର ପ୍ରଭାବ ଛାଡ଼ିଗଲା ଯେ, ପରେ ଉତ୍ତମ ପାଶ୍ଚାତ୍ୟ ଶିକ୍ଷା ପାଇଲେ ମଧ୍ୟ ଓ ତାଙ୍କର ପରଜୀବନ ଅଧିକାଂଶ ଭାବରେ ନଗରମାନଙ୍କରେ କଟିଥିଲେହେଁ, ନାନାବିଧ ଓଡ୍, ବାଲାଡ୍ ଓ ଗୀତିକବିତାରେ ଏହି କବି ଓଡ଼ିଆ-ସାହିତ୍ୟରେ ପ୍ରଥମକରି ଗାଇଲାଗିଲେ ଏବଂ ମନୋଜ୍ଞ କଣ୍ଠରେ ଗାଇଲେ ପ୍ରତି ଓଡ଼ିଆର ସେହି ପୂର୍ବପରିଚିତ ଜନପଦର ଶାନ୍ତିମୟ ସୁଷମା ଓ ଜନପଦବାସୀଙ୍କର ସରଳ-ସୁନ୍ଦର ଜୀବନ-ଲୀଳା । ଉଚ୍ଚ ପାଶ୍ଚାତ୍ୟଶିକ୍ଷାପ୍ରାପ୍ତ ଏହି କବିଙ୍କ ବୀଣାରେ ଆମେ ପୁନର୍ବାର ମନୋରମ ଭାବରେ ଧ୍ୱନିତ ହେବାର ଶୁଣିଲୁ ଓଡ଼ିଶାର ଅଲିଖିତ କିନ୍ତୁ ପରିବ୍ୟାପ୍ତ ଲୋକ-ଗୀତିମାନଙ୍କର ଖାଣ୍ଟି କଥା ଓ ରାଗିଣୀ । ଫକିରମୋହନ ଜନ-ଭାଷାକୁ ଯେପରି କରିପାରିଥିଲେ ସଭ୍ୟାସନଯୋଗ୍ୟ, ନନ୍ଦକିଶୋର ସେହିପରି ଜନତାରୁ ଦୂରୀକୃତ ଓ ସେହି କାରଣରୁହିଁ ବିକୃତ, ଆଧୁନିକ କବିତାର ଦରବାରକୁ ନେଇଆସିପାରିଲେ ଲୋକଗାଥାମାନଙ୍କର ଛନ୍ଦ ଉପାଦାନ ଓ ଭାବକଳ୍ପାଦି । ଏଥିପାଇଁ ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର ପ୍ରକୃତରେ ଏକ ନବପ୍ରବର୍ତ୍ତକର ସ୍ଥାନ ପାଇବାର କଥା । ପୁଣି ସେ ଖାଲି ଯେ କୌଣସି ନୂଆ କଥାଟିଏ କେବଳ ଆରମ୍ଭ କରିଦେଲେ ତାହା ନୁହେଁ, ଲୋକ-ଗାଥାର ଆଦର୍ଶରେ ସେ ନିଜେ ଯାହା ର୍ଚିଗଲେ, ତାହାର ଶିଳ୍ପ-ବିଭବ ମଧ୍ୟ ଅନବଦ୍ୟ । ଅଧିକନ୍ତୁ ତାହା ଆମକୁ ନଗରର କଳୁଷିତ ବାତାବରଣ ଭିତରେ ମଧ୍ୟ ଦେଇପାରୁଛି ଗାଁ-ମାଟିର ସୁରଭି ।

ନନ୍ଦକିଶୋରଙ୍କର 'ପଲ୍ଲୀଚିତ୍ର' ଓଡ଼ିଶାର ଗ୍ରାମ୍ୟଜୀବନର ଏକ ଅନବଦ୍ୟ ଶୋଭା-ଯାତ୍ରା । ସରଳ, ମନୋଜ୍ଞ, ସାବଲୀଳ ପଦାବଳିରେ ରଚିତ ଏହି ଗାଥାରେ ଶାନ୍ତ, ଚଞ୍ଚଳ, ପଲ୍ଲୀଜୀବନ ସହିତ ଅପୂର୍ବ ସାମଞ୍ଜସ୍ୟ ରକ୍ଷାକରି, ଅଳସଗତି ଶଙ୍କରାଭରଣ ଛନ୍ଦରେ, କବି ଆମ ଆଗରେ ମଧୁର ପଲ୍ଲୀଜୀବନର ମୁଖ୍ୟଉପାଦାନଗୁଡ଼ିକୁ ଆସ୍ତେ ଆସ୍ତେ ଦେଖେଇ ଦେଖେଇ ନେଇଚାଲିଛନ୍ତି । ଏହା ଖଣ୍ଡିଏ ଚଟିବହି – କିନ୍ତୁ ଏକ ମହତ୍ ପୁସ୍ତକ । ଏଥିରେ ଆମ ଆଖିଆଗରେ ଚାଲିଯାଉଥିବାର ଦେଖିବା ପୂର୍ବର ସେହି ଶୈଶବାତଙ୍କ ବେତ୍ରଧାରୀ ଅବଧାନ, ସେହି ଧୂର୍ତ୍ତ ଓ ବାବଦୂକ ଗାଁ-ଭଣ୍ଡାରି, କେନ୍ଦ୍ରାରେ ଗୋବିନ୍ଦଚନ୍ଦ୍ର ଗୀତ ଗାଇ କୋମଳପ୍ରାଣା ପଲ୍ଲୀବଧୂମାନଙ୍କର ନୟନରାଜିରେ ଅଶ୍ରୁବିନ୍ଦୁ ଉପୁଜାଉଥିବା ନାଥ-ଯୋଗୀ, ପଲ୍ଲୀବଧୂମାନଙ୍କର ସତୃଷ୍ଣ-ଅପେକ୍ଷାର-ଲକ୍ଷ୍ୟ ଭ୍ରାମ୍ୟମାଣ ପଶାରି ଏବଂ ପୁଣି ସେହି ଗ୍ରାମ୍ୟପୁରୋହିତ ଯିଏ କାଲି ପର୍ଯ୍ୟନ୍ତ ଥିଲେ ଗ୍ରାମ୍ୟଜୀବନର ଅବିଚ୍ଛେଦ୍ୟ ଅଂଶ । ଜନପଦାଧିବାସୀଙ୍କର ହାସ୍ୟ-ଅଶ୍ରୁରଞ୍ଜିତ ଧାନକ୍ଷେତ୍ର, ଗ୍ରାମ୍ୟ ଦେବାଳୟ ଓ ଗ୍ରାମ୍ୟ ଶ୍ମଶାନାଦି

ମଧ୍ୟ ଆମ ଆଗରେ ସିନେମାର ଚିତ୍ରପରି କବିଙ୍କ ପଦାବଳି ଦେଇ ଭାସିଯିବେ । ଏହି ସବୁର ମିଳନଫଳରେ ଏହି କାବ୍ୟଟି ପ୍ରତ୍ୟେକ ଶିକ୍ଷିତ ଓଡ଼ିଆର ଚେତନାରେ ଏକ ପ୍ରିୟ-ସଞ୍ଚୟ ହୋଇ ରହିଯାଏ । ନନ୍ଦକିଶୋର ରାଧାନାଥ ଓ ମଧୁସୂଦନଙ୍କ ଅନୁକରଣରେ ବହୁ କାବ୍ୟ-କବିତା ଲେଖିଛନ୍ତି । ହେଲେ, ସେସବୁକୁ ଦ୍ୱିତୀୟ ଶ୍ରେଣୀର ସୃଷ୍ଟି ଛଡ଼ା ଆଉ କିଛି କୁହାଯାଇନପାରେ । ଅନନ୍ୟଭାବରେ ଓଡ଼ିଶାର ଗ୍ରାମକୁ କାବ୍ୟ-ମହିମା ଦେଇଯାଇଥିବାରୁ ଓ ଓଡ଼ିଆଜାତିର ଶିଶୁ-ସଂପ୍ରଦାୟ ପାଇଁ ଅନବଦ୍ୟ ଶିଶୁକବିତା ଲେଖିଯାଇଥିବାରୁ ନନ୍ଦକିଶୋର ସମଗ୍ର ଓଡ଼ିଆ ସାହିତ୍ୟରେ ଯେଉଁ ଅବିସମ୍ବାଦୀ ବିଶିଷ୍ଟ ସମ୍ମାନ ପାଇବାର କଥା ତାହାହିଁ ସେ ଯଥାର୍ଥ ଭାବରେ ପାଇଆସୁଛନ୍ତି । ଓଡ଼ିଶାର ସାଧାରଣ ଗ୍ରାମ୍ୟଜୀବନ ନନ୍ଦକିଶୋରଙ୍କ ତୂଳିକାରେ କିପରି ଯାଦୁକ୍ରିୟା ପ୍ରାପ୍ତହୋଇ-ଉଠିଛି, ତାହାର ଦୃଷ୍ଟାନ୍ତରୂପେ ଏଠାରେ କବିଙ୍କର ଏହି 'ପଲ୍ଲୀଚିତ୍ର'ରୁ କେବଳ ଗ୍ରାମ୍ୟଖଳାର ବର୍ଣ୍ଣନାଟି ହିଁ ଦେଇଦେଉଛୁଁ ।

''ଗ୍ରାମ୍ୟପ୍ରାନ୍ତେ କରି ଲୋକେ ଖଳା
ମେରି ପୋତିତ ପକାନ୍ତି ବେଙ୍ଗଳା
ବାନ୍ଧି ମଞ୍ଚା ମଧ୍ୟସ୍ଥାନେ          ଜଗନ୍ତି ରାତ୍ରିରେ ଧାନେ
ମିଛେ ସତେ ଦେଖିଥାନ୍ତି ଯେ ସର୍ବ ଘଟନା
କଳ୍ପନା ବଳରେ ପ୍ରାତେ କରନ୍ତି ଜଳ୍ପନା । ୧ ।
ପଲ୍ଲୀଖଳା ପାଶେ ଜଳାଶୟ
ପ୍ରସ୍ଫୁଟିତ କୋକନଦଚୟ,
ନାନା ଜଳଚରଗଣ          କରୁଥାନ୍ତି ସନ୍ତରଣ
ହଂସ କାଦମ୍ବାଦି ପକ୍ଷୀ କରୁଥାନ୍ତି ସ୍ୱନ
ଶୁଣନ୍ତେ ସାନନ୍ଦ ହୁଏ ଭାବୁକର ମନ । ୨ ।
ପ୍ରଭାତୁଁ ଉଠିଣ ଗ୍ରାମବାସୀ
ମେଳ ହୋନ୍ତି ଏହିଠାରେ ଆସି,
ଖାଏ ପିକା କେହୁ ବସି          ଗଳ୍ପ କରେ କେହୁ ହସି
ମୁହୁର୍ମୁହୁ ଛିଙ୍କି କରେ କେ ନସ୍ୟ ଗ୍ରହଣ,
ଜଳ ତୀରେ ବସି କରେ କେ ଦନ୍ତଧାପନ । ୩ ।
କ୍ଷୌରକର୍ମେ ନାପିତପ୍ରବର
ବସି କହେ ବିଦେଶ ଖବର,
ଧର୍ମଶାସ୍ତ୍ରେ ସମରଥ          ବୃଦ୍ଧ କହେ ଧର୍ମମତ
କେହି ଗୃହକଥା, କେହି ବିଲର ସମ୍ବାଦ,
ଅନର୍ଥକ ବିଷୟେ କେ କରନ୍ତି ବିବାଦ । ୪ ।
ବିଲୁଁ କଟାହୋଇ ଅଧାଅଧା
ପ୍ରଶସ୍ତ ଖଳାରେ ଧାନ ଗଦା

ହୋଇଅଛି ରଦା ରଦା କୃଷକର ଘୋର ଧନ୍ଦା
ସାହୁ ମହାଜନ ଶୁଝି କୁଟୁମ୍ବ ପାଳିବ
ସେହି ଧାନ ବିକି ପୁଣି ରାଜସ୍ୱ ଗଣିବ ।''

ନନ୍ଦକିଶୋରଙ୍କର ଅନ୍ୟାନ୍ୟ ଛୋଟ କବିତା ବହୁତ ଓ ବହୁ ବିଭିନ୍ନ ବିଷୟ ନେଇ ଲିଖିତ । କେତେକ ଚିନ୍ତାମୂଳକ, କେତେକ ପରିହସିତ; କେତେକ ଜାତୀୟ-ଭାବସମ୍ବଳିତ । ସେ ସମସ୍ତଙ୍କ ଭିତରେ ଆମେ ଏକାଧାରରେ ଏକ ପଣ୍ଡିତଜନର ତୀବ୍ର ବିଚାର ସହିତ ଏକ ଗୀତିକବିର କୋମଳ ମର୍ମ ଓତପ୍ରୋତ ବିସ୍ତୃତ ଥିବାର ଦେଖିବା । ବଳଙ୍କ ଉପନ୍ୟାସ 'କନକଲତା' ମଧ୍ୟ ତାଙ୍କର କବିତାପରି ସେହି ପଲ୍ଲୀଜୀବନ ଓ ପଲ୍ଲୀ-ପ୍ରକୃତିର ଶାନ୍ତ ସୁରଭି ବିତରଣ କରେ । ନାୟିକା କନକଲତା ଆମ ଆଗରେ ପଲ୍ଲୀ ପୁଷ୍କରିଣୀର ନିର୍ମଳ ସଲିଳରେ ଏକ ରକ୍ତ ପୁଷ୍କରପରି ଆସ୍ତେ ଆସ୍ତେ ଫୁଟିଉଠିଛି । ଏହା ମଧ୍ୟ ସୂକ୍ଷ୍ମଚିତ୍ତ ପାଠକର ଅନୁଭବର କଥା ଯେ ନନ୍ଦକିଶୋରଙ୍କ ସମଗ୍ର ଗଦ୍ୟ ଓ ପଦ୍ୟ ରଚ଼ନା ଉପରେ ଏକ ସୂକ୍ଷ୍ମ ଲଘୁ ବିଷାଦର ମେଘ ଘୋଡ଼ାଇ ରହିଛି । ଏହା କବିଙ୍କର ବ୍ୟକ୍ତିଗତ ଅଭିଜ୍ଞତା ହୋଇପାରେ; କିନ୍ତୁ ଏହା ମଧ୍ୟ ପଲ୍ଲୀଜୀବନର ଏକ ଅପରିହାର୍ଯ୍ୟ ଉପାଦାନ । କବିପ୍ରାଣର ଦୀର୍ଘଶ୍ୱାସର ପ୍ରତୀକ-ରୂପରେ –

''ନିୟତି ନିର୍ଦ୍ଦେଶେ ଯେବେ ଘେନିଣ ବିଦାୟ
ଆତ୍ମ-ପକ୍ଷୀ ଉଡ଼ିଯିବ ତେଜି ଏ କୁଳାୟ,
ସେତେବେଳେ ଭଗିନୀ କି ଅଧମ ସୋଦରେ
ସଜଳ ନୟନେ ମନେପକାଇବେ ଥରେ ?
× × ×
କହିବୁ ତୁ ଭଗିନୀଙ୍କି ଦରିଦ୍ର ଭ୍ରାତାର
ନାହିଁ ଶକ୍ତି, ଦେବ ତାଙ୍କୁ ପ୍ରୀତି-ଉପହାର ।''

(ଭଗିନୀଙ୍କି ଉପହାର, ବସନ୍ତକୋକିଳ)

ବା

''ପାହିଆସୁଅଛି ଧୀରେ ସୁପ୍ତା ନିଶୀଥିନୀ
ଶୁଭୁଅଛି ଦୂରଦେଶୁ ବିଷାଦ-ରାଗିଣୀ
ଦାରୁଣ ବିଷାଦ ଚିତ୍ତ କରେ ମୋରେ ଆନ୍ଦୋଳିତ
କାହିଁ କିବା ହଜିଅଛି, ନାହିଁ ପ୍ରାପ୍ତି ଆଶା
ମେଣ୍ଟିବାର ନୁହେଁ ମୋର ଏ ପ୍ରାଣ ପିପାସା ।''

(ପ୍ରଭାତ ଅବକାଶ, ନିର୍ଝରିଣୀ)

ମୋଟଉପରେ ନନ୍ଦକିଶୋର-ପ୍ରତିଭା ସମଗ୍ର ଓଡ଼ିଆ ସାହିତ୍ୟରେ ପଲ୍ଲୀ-ଉତ୍କଳର କାବ୍ୟାତ୍ମା ହୋଇ ଉଠିଛନ୍ତି । ସେ ଯାହା ଲେଖିଛନ୍ତି, ସେଥିରେ ଉତ୍କଳୀୟ ପଲ୍ଲୀ-ଜୀବନର

କୌଣସି ନା କୌଣସି ବିଭବ ମନୋ-ବୈଜ୍ଞାନରେ ଫୁଟି ବାହାରିଛି । ଏ ଦାନ ଅନନ୍ୟ; ଏ କୃତିତ୍ୱ ଅଦ୍ୱିତୀୟ ।

**କାବ୍ୟ-ଶିଳ୍ପର ଉଜ୍ଜ୍ୱଳ ତାରକା ଗଙ୍ଗାଧର ମେହେର** (୧୮୬୨-୧୯୨୪) –

ନିଖିଳ ଓଡ଼ିଆ ଜାତିର ଅତି ପ୍ରିୟ କବି ଗଙ୍ଗାଧର ମେହେର ଏକା ଏକା, ନିଜେଇ ଏକ ସ୍ୱତନ୍ତ୍ର ଶ୍ରେଣୀ । ଅଧୁନା-ବିଶ୍ୱପ୍ରସିଦ୍ଧ ସମ୍ବଲପୁରୀ ବସ୍ତ୍ରର କୌଳିକ ଶିଳ୍ପୀ ହେଉଛନ୍ତି ସମ୍ବଲପୁରର ମେହେରମାନେ । ଗଙ୍ଗାଧର ସମ୍ବଲପୁର ଜିଲ୍ଲାର ବରପାଲୀ ଗ୍ରାମରେ ଏହିପରି ଏକ ଦରିଦ୍ର ମେହେର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଦାରିଦ୍ର୍ୟ ହେତୁ ତାଙ୍କର ଆନୁଷ୍ଠାନିକ ଶିକ୍ଷା ବେଶି ଦୂର ଯାଇପାରିନଥିଲେ ମଧ୍ୟ, ନିଜ ଚେଷ୍ଟାରେ ସେ ହିନ୍ଦୀ, ଓଡ଼ିଆ, ସଂସ୍କୃତ ଓ ବଙ୍ଗଳାରେ ବ୍ୟୁତ୍ପନ୍ନ ହୋଇଉଠିଥିଲେ ଏବଂ କାମ ଚଳେଇବା ଭଳି କିଛି ଇଂରାଜୀ ବି ଶିଖିନେଇଥିଲେ । ଜୀବିକା ପାଇଁ ଏହି ପ୍ରତିଭାଧର କବିଙ୍କୁ କିନ୍ତୁ ବହୁ ବୟସ ଯାଏଁ କୌଳିକ ବସ୍ତ୍ରବୟନରହିଁ ଆଶ୍ରୟ ନେବାକୁ ପଡ଼ିଥିଲା କେବଳ ନୁହେଁ, ନିଜ ବୁଣା-ଲୁଗାର ବୋଝକୁ କାନ୍ଧରେ ନେଇ ସ୍ଥାନୀୟ ହାଟରେ ବିକିବାକୁ ମଧ୍ୟ ପଡ଼ିଥିଲା । 'କୀଚକବଧ' କାବ୍ୟ ପ୍ରକାଶିତ ହୋଇଗଲା ପରେ, ବରପାଲୀର ଏହି ଦରିଦ୍ର ତନ୍ତୀ, କିନ୍ତୁ ସମଗ୍ର ଉତ୍କଳରେ କବିଭାବରେ ବିଖ୍ୟାତ ହୋଇପଡ଼ିଲେ । କ୍ରମେ ସେ ନିକଟବର୍ତ୍ତୀ ବୋଡ଼ାସମ୍ବର ଜମିଦାରଙ୍କର ସାମାନ୍ୟ ପୃଷ୍ଠପୋଷକତା ପାଇ ବସ୍ତ୍ର-ବୟନ ଛାଡ଼ିଲେ ଓ ତା' ଫଳରେ ଜୀବନ-ସଂଗ୍ରାମର ତୀବ୍ରତା କିଞ୍ଚିତ୍ କମିଆସିଲା କହିବାକୁ ହେବ; କିନ୍ତୁ ଏହି ବରେଣ୍ୟ-ପ୍ରତିଭା ଜୀବନରେ କେବେହେଲେ ସ୍ୱଚ୍ଛନ୍ଦ ଜୀବନ ଯାପନ କରିଥିଲା ବୋଲି କହି ହେବ ନାହିଁ, ଯଦିଓ ଉତ୍କଳର କବି-ସଭାରେ ବରପାଲୀର ଦରିଦ୍ର ତନ୍ତୁବାୟ, ଏ ଭିତରେ ଅନନ୍ୟ-ସାଧାରଣ ହୋଇଉଠିଛନ୍ତି । ଯେଉଁ କାରଣରୁ ତାହା ହେଉଛି, ତାହା ବିଶେଷକରି ହେଉଛି ତାଙ୍କ ଲେଖନୀର ଅସାଧାରଣ ଓ ବରେଣ୍ୟ ଶିଳ୍ପନୈପୁଣ୍ୟ । ମେହେରଙ୍କର ରାସାୟନିକ ସ୍ପର୍ଶ, ସେ ଯେଉଁ ହେଲେ ନିମ୍ନ ଧାତୁ ଛୁଉଁଥିଲେ, ଏପରିକି ମାଟି ମଧ୍ୟ, ତାକୁ କରି ଦେଉଥିଲା ସୁନା । ତାଙ୍କର କାବ୍ୟାବଳିର ଆଖ୍ୟାୟିକା ଗୁଡ଼ିକରେ କୌଣସି ମୌଳିକତା ନାହିଁ । ସେ ସେହି କାବ୍ୟସବୁ ମଧ୍ୟ ରଚନା କରିଛନ୍ତି ପୂର୍ବସୂରିମାନଙ୍କର ଛାଞ୍ଚରେ; କିନ୍ତୁ ନିର୍ମାଣ-କଳାର ଅନୁପମ ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା ବରପାଲୀର ଏହି ସ୍ୱଳ୍ପ-ଶିକ୍ଷିତ ତନ୍ତୁବାୟର ରଚନାକୁ ଦେଇଚାଲିଛି ଅପୂର୍ବ ବୈଶିଷ୍ଟ୍ୟ । ମେହେର ଓଡ଼ିଆଭାଷାର ପ୍ରାଚୀନ ଛନ୍ଦଗୁଡ଼ିକ ଆଧୁନିକ ପ୍ରୟୋଜନରେ ଯେପରି ଅନବଦ୍ୟ କୌଶଳରେ ଲଗାଇପାରିଛନ୍ତି, ଛନ୍ଦୋମୟ ଓ ସାବଲୀଳ ଶାଳୀନତାରେ ସେ ଯେପରି ପଦ-ସଂଯୋଜନା କରିଚାଲିଛନ୍ତି, ଅଥଚ କୌଣସିଠାରେ ପଦାବଳି ସେମାନଙ୍କର ଆଭିଧାନିକ ଯଥାଯଥ ଅର୍ଥ ବା ସ୍ଥାନ ହରାଇ ନାହାନ୍ତି, ଯେପରି ନିପୁଣତାର ସହିତ ସେ ତାଙ୍କର ପଦ୍ୟପଙ୍କ୍ତିମାନଙ୍କୁ ନିର୍ଘୋଷ, ମନୋରମ, ଯତିପାତନ ଦେଇଚାଲିଛନ୍ତି, ସର୍ବୋପରି ତାଙ୍କର ସମଗ୍ର ରଚନା ଭିତରେ ସେ ଯେପରି ଓତପ୍ରୋତ ଭାବରେ ଏକ ଉଦାର-ଉନ୍ନତ ସ୍ତର ରକ୍ଷାକରି ପାରିଛନ୍ତି ଏବଂ ତାଙ୍କର ନାୟକ ଓ ନାୟିକାମାନଙ୍କର ଆତ୍ମା ଓ ଚିତ୍ତର ସୁଖ-ଦୁଃଖର ଅବିକଳ ଚିତ୍ରସବୁ ଆମ

ଆଗରେ ଯେପରି ସ୍ପଷ୍ଟ ଥୋଇଚାଲିଛନ୍ତି, ସେହି ସବୁ କାରଣ ଯୋଗୁହିଁ ସମଗ୍ର ଉତ୍କଳ କବିସମାଜରେ ଗଙ୍ଗାଧର ମେହେର ହୋଇଉଠିଛନ୍ତି ଅସାମାନ୍ୟ କଳାକାର । ମୋଟଉପରେ ଗଙ୍ଗାଧରଙ୍କୁ ଏକ କ୍ଷୁଦ୍ର କାଳିଦାସ କହିଲେ ଅତ୍ୟୁକ୍ତି ହେବନାହିଁ । କାଳିଦାସ ତାଙ୍କର ପୂର୍ବସୂରିମାନଙ୍କଠାରୁ କେବଳ ଚରିତ୍ର ନୁହେଁ, ଉପମା ଓ ରୂପକ ଆଦି ମଧ୍ୟ ଉଧାର ଆଣିଛନ୍ତି; କିନ୍ତୁ ସେଗୁଡ଼ିକୁ ଏପରି ବ୍ୟବହାର କରିଛନ୍ତି ଯେ ଯେଉଁ ସୁଷମା ଓ ମାଧୁର୍ଯ୍ୟ ସେସବୁରେ ପୂର୍ବେ ନଥିଲା, ତାହା ଅପୂର୍ବ ମହିମା ଧରି ଫୁଟିଉଠିଛି । ସମ୍ବଲପୁରର ଏହି ଦରିଦ୍ର, ସରଳ ତନ୍ତୁବାୟଙ୍କଠାରେ ଆମେ ଠିକ୍ ସୃଜନ-ଶକ୍ତିର ସେହି ରହସ୍ୟମୟ ନିୟମ କାର୍ଯ୍ୟକାରୀ ହେବାର ଯେପରି ଦେଖିଲୁଁ, ଆଧୁନିକ କାଳରେ । ଆଦର୍ଶ ନାରୀଭାବରେ ସୀତାଙ୍କୁ କେନ୍ଦ୍ରକରି ଓଡ଼ିଆଭାଷାରେ ବିପୁଳରଚନା ରୁଣ୍ଡୀଭୂତ ହୋଇଛି; କିନ୍ତୁ ମେହେରଙ୍କ 'ତପସ୍ୱିନୀ'ରେ ସୀତା ଯେପରି ଜୀବନ୍ତ ମହିମାରେ ଆମ ଆଗରେ ବିରାଜିତା, ସେପରି ଅନ୍ୟ କୌଣସି କବିର ଲେଖାରେ ଘଟିନାହିଁ । ମେହେରଙ୍କ ତପସ୍ୱିନୀରେ ସେହି ସତୀ-ମାଣିକ୍ୟ, ଏପରି ଏକ ସୂକ୍ଷ୍ମ ମାଧମକୁ ରୂପାନ୍ତରିତ କରିବା ଅର୍ଥ ସେହି ଅନୁପମ ଶବ୍ଦ-ଶିଳ୍ପକୁ ନଷ୍ଟ କରିବା । ମଧ୍ୟପ୍ରଦେଶବାସୀ ପ୍ରସିଦ୍ଧ ହିନ୍ଦୀ ସାହିତ୍ୟିକ ସ୍ୱର୍ଗତ ଲୋଚନପ୍ରସାଦ ପାଣ୍ଡେ ତପସ୍ୱିନୀର ପଦାବଳିକୁ ବିହ୍ୱଳ ହୋଇ ବହୁବାର ଏହି ଲେଖକ ନିକଟରେ ଆବୃତ୍ତି କରିଛନ୍ତି । ତାଙ୍କ ବଡ଼ଭାଇ ସେନାପତିଙ୍କ 'ଲଛମା'ର ଅନୁବାଦକ ମୁକୁଟଧାରୀ ପାଣ୍ଡେ ଭକ୍ତଚରଣଙ୍କ ମଥୁରାମଙ୍ଗଳ ଓ ଲୋଚନପ୍ରସାଦଜୀ ନିଜେ ମେହେରଙ୍କ 'କୀଚକବଧ' କାବ୍ୟକୁ ହିନ୍ଦୀରେ ଅନୁବାଦ କରିବାର ଚେଷ୍ଟା କରିଥିଲେ; କିନ୍ତୁ ଉଭୟେ ଓଡ଼ିଆ କବିତାର ଛନ୍ଦ-ମାଧୁର୍ଯ୍ୟ ହିନ୍ଦୀରେ ଅନୁପ୍ରବିଷ୍ଟ କରାଇବା ଅସମ୍ଭବ ବୋଧ କରି, ସେଥିରୁ ନିବୃତ୍ତ ହେଲେ ।

ମେହେର ଖାଣ୍ଟି ପ୍ରାଚୀନ ରୀତିରେ ଯେପରି ଲେଖିଗଲେ ତାଙ୍କର କାବ୍ୟାବଳି, ଖାଣ୍ଟି ଆଧୁନିକ ରୀତିରେ ସେହିପରି ମଧ୍ୟ ଲେଖିଗଲେ ଓଡ୍, ସନେଟ୍ ଓ ଗୀତିକବିତା । ବସ୍ତୁତଃ ତାଙ୍କର କ୍ଷୁଦ୍ର ବୃହତ୍ କାବ୍ୟାବଳି ଅପେକ୍ଷା ତାଙ୍କ ପ୍ରତିଭାର ମୌଳିକତା ଅଧିକତର ପ୍ରକଟିତ ହେବାର ଦେଖୁଁ ତାଙ୍କର କ୍ଷୁଦ୍ର କବିତାମାନଙ୍କରେ । ତାଙ୍କର ପ୍ରତିଭାର ଅନ୍ତର୍ଦୃଷ୍ଟି ଏହି କ୍ଷୁଦ୍ର କବିତାମାନଙ୍କୁ ନେଇ ଈଶ୍ୱର, ପ୍ରକୃତି, ସମାଜ, ଦେଶ ଓ ସମସାମୟିକ ନ୍ୟାୟାନ୍ୟାୟ ଆଦି ଜୀବନର ସବୁ ବିଭାଗକୁ ସ୍ପର୍ଶ କରିଯାଇଛି । ଜୀବନବ୍ୟାପୀ ଦାରିଦ୍ର୍ୟ ଓ ଜୀବନସଂଗ୍ରାମ ସତ୍ତ୍ୱେ ଏହି ଦୈବତ ପ୍ରତିଭା ଉଦାତ୍ତ କଣ୍ଠରେ ଗାଇପାରିଥିଲା –

''ବିଶ୍ୱ ଦେଖ ମଧୁମୟ ରେ ଜୀବନ, ବିଶ୍ୱ ଦେଖ ମଧୁମୟ;
ମଧୁର ଝରଣ କରିବ ହରଣ, ତୋ ପାପ, ମରଣ-ଭୟ, ରେ ଜୀବନ !
ଜନନୀର ସ୍ନେହ, ଜାୟାର ପ୍ରଣୟ, ବୁଧ ବନ୍ଧୁ ସଦାଳାପ
ଜନକ ଆଦର, ଏକ ଏକ ଝର, ତଡ଼ିଦେଉଛନ୍ତି ତାପ, ରେ ଜୀବନ !
ନବ ନବ କର୍ମ, ନବ ନବ ମର୍ମ, ନବ ନବ ଜ୍ଞାନପଥ,
ନବୀନ ଆଲୋକେ ଦେଖାନ୍ତି ଏ ଲୋକେ ମଧୁଝର ଶତ ଶତ, ରେ ଜୀବନ !''

(ମଧୁମୟ, ଅର୍ଘ୍ୟଥାଳି)

ଏହି କବିତାଟି ମେହେର କଲେଜର ଛାତ୍ରଛାତ୍ରୀଙ୍କ ମିଳିତ କଣ୍ଠରେ ପ୍ରାଣସ୍ପର୍ଶୀ ସଙ୍ଗୀତରେ ପରିବେଷିତ ହେବାର ଏଇ ଲେଖକ ଅନୁଭବ କରିଆସିଛି । ମେହେରଙ୍କ ଆଉ ଏକ କବିତା ଯାହା ସମଗ୍ର ଓଡ଼ିଶାରେ ଏକ ଉଦାର ମହିମ୍ନ-ସ୍ତବ ଭାବରେ ପ୍ରସିଦ୍ଧି ଲାଭ-କରିଛି, ତାହା ହେଉଛି 'ଭକ୍ତି' ।

''ବିଶ୍ୱଜୀବନ ହେ, ତୁମ୍ଭଙ୍କୁ କରୁଣା-ସିନ୍ଧୁ
ବୋଲିବାକୁ ମନ ବଳୁନାହିଁ, ଯେଣୁ ସିନ୍ଧୁ ତବ କୃପାବିନ୍ଦୁ ॥
ତୁମ୍ଭ ଭଜନରେ ହେବି ନାହିଁ ନାଥ ମାଳା ଜପିବାକୁ ବାଧ
କୋଟି କୋଟି ଗ୍ରହ କଣ୍ଠି ସେ ମାଳାର କେ ଜପି କରିବ ସାଧ ?
ଦେଇନାହଁ ବଳ, ପାଦଧୂଳି ଘେନି ପାରିବ ନାହିଁ ମୋ ମୁଣ୍ଡ
କୋଟି କୋଟି ରବି ଧୂଳିରୂପେ ତୁମ୍ଭ ପାଦେ ହୋଇଛନ୍ତି ରୁଣ୍ଡ ।

× × ×

କି ଦେଇ ପୂଜିବି ଯାହା ମୁଁ ଦେଖୁଛି ସବୁ ତୁମ୍ଭର ପ୍ରସାଦ,
ଯାହା ପରସାଦ ତାଙ୍କୁ ଅରପିଲେ ହେବ ସିନା ଅପରାଧ ।
ମୁଁ-କାର ମାତର ମୋର ନୁହେଁ ବୋଲି କହିବାକୁ ନାହିଁ ବାଟ,
ଦୂରୁ ଶ୍ରୀଚରଣେ ଅର୍ପଣ କରୁଛି ଘେନ ତା ବିଶ୍ୱ-ସମ୍ରାଟ ।''

ମେହେର-ପ୍ରତିଭା ପ୍ରାଚୀନପନ୍ଥୀ ଥାଇ ମଧ୍ୟ ସମସାମୟିକ ସକଳ ସମସ୍ୟାମାନଙ୍କ ପ୍ରତି ଚିର ଜାଗ୍ରତ ଥିଲା । 'ଭାରତୀ-ଭାବନା'ରେ ଭାରତ-ମୁକ୍ତି-ଧାୟୀ ମେହେର ବିଦେଶୀ ବ୍ରିଟିଶ ରାଜା ପ୍ରତି ଯେଉଁ ବାକ୍ୟ-ବାଣ ପ୍ରୟୋଗ କରିଛନ୍ତି, ତାହା ଯେକୌଣସି ବିଦ୍ରୋହୀ ରାଜନୈତିକ ନେତାର ମୁଖର ଉପଯୁକ୍ତ ।

''ଗାନ୍ଧି ନିଜ କଷ୍ଟ ଗଣନା ନକରି
ବନ୍ଦିପୁର କଲେ ଗମନ,
କାନ ନ ପାତିଲ ଦୂରେ ଥାଇଁ କଲୁଁ
ଯେତେ ହାହାକାର କ୍ରନ୍ଦନ ।
ଜଗତେ, କୀରତିର ବାନା ଉଡ଼ିଲା,
ପାରନିଆଁ ମେଣ୍ଟି କଉଶଳ ବଳେ
ଉଗ୍ରସେନାନନ୍ଦ ବଢ଼ିଲା ।

× × ×

ତୁମ୍ଭର ଆଗରେ ତୁମ୍ଭର ପରାଏ
ମୁସଲମାନ ଥିଲେ ଆସି,
କୋପନ ସ୍ୱଭାବ ହେଲେହେଁ ଆମ୍ଭର
ସମସ୍ତ ଥିଲେ ନାହିଁ ଗ୍ରାସି ।
କରି ସେ ନଥିଲେ ବସନ ହରଣ,

ଦୃରପଦ ସୁତା ଚିନ୍ତି କାର ପାଶ
କରି ନଥିଲେ ସେ ପ୍ରେରଣ ।''

'ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ-ଅବତାର'ରେ କବି ଦୁର୍ନୀତିଗ୍ରସ୍ତ ରାଜକର୍ମଚାରୀ ଓ ରାଜନୈତିକମାନଙ୍କୁ ଯେଉଁ ବେତ ଦେଇଛନ୍ତି, ତାହା ଆଜି ସ୍ୱାଧୀନୋତ୍ତର ଭାରତବର୍ଷରେ ଅଧିକ ପ୍ରଯୁଜ୍ୟ ଓ ଅଧିକ ଆବଶ୍ୟକ ବୋଧହେଉଛି ।

''ଭ୍ରମଣ ଖରଚ ପାଇଁ ପାଇଥାଏ ଭତ୍ତା / ଖାଇଥାଏ ମୋଡ଼ି ଏଣେ ଦରିଦ୍ରଙ୍କ ମଥା
କରୁଥାଏ କ୍ଷମତାର ଅପବ୍ୟବହାର / ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର ।
ବହିର୍ଗତ ହୋଇଥାଏ ଘରୁ ଶୂନ୍ୟ କରେ / ଶଗଡ଼ ଶଗଡ଼ ଦ୍ରବ୍ୟ ଆଣି ଘରେ ଭରେ
ସେହି ଦ୍ରବ୍ୟମାନ ପୁଣି ଦେଖାଏ ବଜାର / ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ-ଅବତାର ।

'ପଞ୍ଚାୟତ' କବିତାରେ ଅ-ବୈତନିକ ପଞ୍ଚାୟତ ମେମ୍ବର ଓ ପ୍ରେସିଡ଼େଣ୍ଟ ବା ସେହି ଶ୍ରେଣୀୟ ଆଜିର ଦେଶମୟ ଶତ ଶତ ଟାଉଟ୍‌ମାନଙ୍କର ସୁନ୍ଦର ବର୍ଣ୍ଣନା କବି ଛାଡ଼ିଯାଇଛନ୍ତି—

''ଅନାହାରୀ * ସଭ୍ୟମାନେ ଏଣେ ଛନ୍ତି ବସି
ଫଳାହାରଲୋଭେ ଯାର ଚିର ଏକାଦଶୀ ।
କଳିଦେବ ବହି ପ୍ରଜା-ଦ୍ରବ୍ୟ ଭାର ଭାର
ଯୋଗାଡ଼ କରନ୍ତି ଲେହ୍ୟ, ପେୟ, ଫଳାହାର ।
ରୁଚିକର ଫଳାହାର କାହାର କୁକୁଡ଼ା
କାହାର ବା ସରୁଚୂଡ଼ା, କାହାର ଉଖୁଡ଼ା ।
ଅଣ୍ଡାଖୋସାରୂପେ ଯାହା ଆଣ୍ଟ ହୋଇ ଆସେ
ମନୋମତ ଫଳାହାର ଚଳେ ତହିଁ ମାସେ ।
× × ×
ଅନାହାରୀ ହୁଏ ଲୋକ ଥିଲେ ଭାଗ୍ୟବଳ
ଇହକାଳେ ମିଳିଯାଏ ସଦ୍ୟ ପୁଣ୍ୟ ଫଳ ।

କିନ୍ତୁ କବି ଗଣତାନ୍ତ୍ରିକ ପଞ୍ଚାୟତ-ଶାସନରେ ଗଭୀର ବିଶ୍ୱାସ ରଖି, ତାହା କେବଳ ଲୋକ-ଗୁଣଯୋଗୁଁ ହିଁ ସମ୍ଭବ ବୋଲି ସ୍ପଷ୍ଟ ନିର୍ଦ୍ଦେଶ ଦେଇପାଇଛନ୍ତି ।

''ବାଛି ବାଛି ସୁଧାର୍ମିକ ପାପ-ଭୀରୁ ଜନ / ହେବ ଯଦି ପଞ୍ଚାୟତ ଗଠନ ସୃଜନ
ଶିକ୍ଷା ଦିଆଯାଉଥିବ ଯଦି ବିଚାର ବିଧାନ / କରାଯାଉଥିବ ବାରବାର ସାବଧାନ,
ପଞ୍ଚହସ୍ତେ ନ୍ୟସ୍ତ ଥିଲେ ଲଘୁ ଅଧିକାର / ଅବଶ୍ୟ ଦେଶରେ ହେବ ବହୁ ଉପକାର ।
ବହୁ ଅର୍ଥ ପ୍ରଜାଙ୍କର ଗୃହେ ଯିବ ରହି / ନପାରିବ ଜାଲିଆଙ୍କ କୋପାନଳ ଦହି ।
ଗ୍ରାମେ ଗ୍ରାମେ ହୋଇ ସତ୍ୟଯୁଗ ଆବିର୍ଭାବ / ନଗରେ ପ୍ରବିଷ୍ଟ ହେବ ତାହାର ପ୍ରଭାବ ।
ନଗରେ ନଗରେ ଛନ୍ତି ଶିକ୍ଷିତ ସୁଜନ / ସେ କରିପାରନ୍ତି ସତ୍ୟଯୁଗର ସୃଜନ ।''

* ଅନାହାରୀ – ଅନରାରି (Honorary), ଦରମାନନେଇ ସମାଜର ଉପକାର ପାଇଁ ଯେଉଁମାନେ କାମ କରିବାର କଥା ।

ତଥାକଥିତ ପ୍ରାଚୀନପନ୍ଥୀ ମେହେର, 'କୃଷକ ସଙ୍ଗୀତ'ରେ ପୁଣି ପ୍ରଗତିପନ୍ଥୀ ସଂସ୍କାରକ ଭାବରେ ଦେଖାଦେଇଛନ୍ତି । ଏ କବି ନବଯୁଗର, ବିଜ୍ଞାନଯୁଗର କବି, ପ୍ରଗତିବାଦୀ କବି । ମେହେର ପ୍ରତିଭାର ଅନ୍ତର୍ଦୃଷ୍ଟି ଦେଖିପାରିଥିଲା ଯେ, କୃଷକକୁଳର ବା ଭାରତୀୟ କୃଷିର ଉନ୍ନତିହିଁ ଭାରତର ଓ ଜାତିର ଉନ୍ନତି । କୃଷକ କିନ୍ତୁ ମୂର୍ଖ ଓ ନିରକ୍ଷର । ତା' ଚିତ୍ତରେ ବିଜ୍ଞାନଯୁଗର ନୂତନ ଜ୍ଞାନରାଜି କିପରି ପ୍ରବିଷ୍ଟ କରାଯାଇ ପାରିବ ? ନିରକ୍ଷର ଭାରତୀୟ କୃଷକ ଜମି ଓଡ଼ କଲାବେଳେ ଗୀତ ଗାଇଥାଏ । ଦିବ୍ୟଦ୍ରଷ୍ଟା ମେହେର ସେହି ମୂର୍ଖ ହଳିଆଗୀତ ଦେଇହିଁ ଭାରତୀୟ କୃଷକର ନବଜୀବନର ମନୋରମ ବ୍ୟବସ୍ଥା କରିଯାଇଛନ୍ତି । ଦେଶର ଦୁର୍ଭାଗ୍ୟ ଯେ, ଆମର ନେତା ଓ ଶାସକବର୍ଗ ଏପର୍ଯ୍ୟନ୍ତ ଏହି ମହାର୍ଘ ସଂପଦର ଉପଯୁକ୍ତ ବିନିଯୋଗ କରିପାରିନାହାନ୍ତି ।

''କୃଷି ସିନା ସଂସାରେ ସଭ୍ୟତାର ମୂଳ / କୃଷି ଏକା ସକଳ ଜୀବିକାର ଚୂଳ,
ଯେଉଁକାଳେ ମାନବ ନଥିଲା ତା'ଜାଣି /
ମାଂସ ଖାଇ ବନରେ, ମନରେ ହୋଇନଥିଲା ଜ୍ଞାନୀ ହେ ।
ପିନ୍ଧୁଥିଲା ବୃକ୍ଷର ବକଳ ପତର / ତହୁଁ ଅଧିକ ହେଲେ ଅଜିନ ମାତର,
ରହୁଥିଲା କାକର, ଶୀତ, ବାତ ସହି /
ବଞ୍ଚୁଥିଲା କେବଳ ଜଙ୍ଗଲର ଶୁଖିଲାକାଠ ଦହି ହେ ।
କୃଷି କଲା ନରକୁ ଦିବ୍ୟ ଅନ୍ନ ଦାନ / ଶୀତ ରକ୍ଷା ନିମନ୍ତେ ବସ୍ତ୍ର ଉପାଦାନ,
ଅନ୍ନ ପାଇ ମାନବ ତେଜି ପଶୁ-ଦ୍ୱେଷ/
ବସ୍ତ୍ର ପିନ୍ଧି ରହିଲା ବହିଲା ସୁନ୍ଦର ସଭ୍ୟ ବେଶ ହେ ।
ବୁଲୁଥିଲା ମାନବ ଦେଶ-ଦେଶାନ୍ତର / କୃଷି ତାକୁ କହିଲା ରହ କରି ଘର
ସ୍ଥାୟୀ ଘରେ ଥିବାରୁ ସ୍ଥିର ହେଲା ମନ /
ତେବେ ସିନା ମାନବ କରିଛି ଉନ୍ନତି ସଂସାଧନ ହେ ।
× × × ×
ଘୃଣା କୃଷିକର୍ମକୁ ନକର ରେ ଭାଇ, / ଯାର ଖାଇ, ଜୀବନେ ତାର ଗୁଣ ଗାଇ,
କୃଷି କଲେ ଉନ୍ନତ, ସକଳ ଉନ୍ନତି /
କୃଷି ବିନା ନା କନ୍ଥା, ନା ପନ୍ଥା, କାହିଁ ବା ଅନ୍ୟଗତି ହେ ।
କହୁଅଛି ଅବନୀ ଯେତେ ମୋତେ ଚଷ / ଦେଉଥିବି ସୁଫଳ ହୋଇ ତେତେ ବଶ,
ହେବ ତୁମ୍ଭ ସକଳ ମଙ୍ଗଳ ମୋ ତୋଷେ /
ତା' ନକଲେ ନିଶ୍ଚୟ ମୋ ରୋଷେ ମରିବ, ନିଜ ଦୋଷେ ହେ ।''
(କୃଷିର ଗୌରବ)

ଭାରତବର୍ଷରେ ଶ୍ରମ ଓ ଶ୍ରମିକ ପ୍ରତି ଏବଂ କୃଷି ଓ କୃଷିକାର ପ୍ରତି ଭାରତୀୟ ବୁଦ୍ଧିଜୀବୀ ଶ୍ରେଣୀର ଯୁଗଯୁଗବାହୀ ମାରାତ୍ମକ ଘୃଣାକୁ ଲକ୍ଷ୍ୟକରି ମେହେର ନିମ୍ନର ତୀବ୍ର କଷାଘାତ ଛାଡ଼ିଯାଇଛନ୍ତି –

''ଜାତିଯାଏ ଯେ ଦେଶେ ଧଇଲେ ଲଙ୍ଗଳ / ଭିକ ମାଗି ଖାଇବା ଜୀବନ ସମ୍ବଳ,
ପଣ୍ଡିତଙ୍କୁ ଦିଅନ୍ତି ମୂର୍ଖେ ଆଶୀର୍ବାଦ / ଋଷିମାନେ ଧରନ୍ତି ରାସଭଙ୍କ ପାଦ,
ଭିଖାରିଙ୍କି ପୂଜନ୍ତି ଅତି ସମାଦରେ / ପ୍ରତିଭାକୁ ନଚିହ୍ନି ପେଲନ୍ତି ପାଦରେ,
କୁଳବଳେ ହୁଅନ୍ତି ନ ପଢ଼ି ପଣ୍ଡିତ / ଶ୍ରମ କଲେ ସମାଜେ ହୁଅନ୍ତି ଦଣ୍ଡିତ,
ମାନ ଯାଏ ନାରୀଙ୍କ ଆଲୋକେ ରହିଲେ / ସହ୍ୟ ନୁହେଁ ବଦନ ଫିଟାଇ କହିଲେ,
ସେ ଦେଶରେ ଯଦ୍ୟପି ବର୍ଷିବ ଅମୃତ /
ଆଉ କେଉଁ ଦେଶର ମାନବେ ରହିବେ ଜୀବନ୍ମୃତ ହେ ।''

ଆଧୁନିକ ପାଶ୍ଚାତ୍ୟ ଶିକ୍ଷାରେ ଆନୁଷ୍ଠାନିକ ଭାବରେ ବିଶେଷ ଶିକ୍ଷା ମେହେର ପାଇପାରିନଥିଲେ । ତେଣୁ ତାଙ୍କର ଅବଲୋକନ ହୁଏତ ବେଶୀ ଦୂରକୁ ଯାଇପାରିନଥିଲା । ସେ ନିଜ ଜିଲ୍ଲା ଓ ନିଜ ଅଞ୍ଚଳର ଲୋକ-ଜୀବନକୁହିଁ ଉତ୍ତମରୂପେ ଜାଣିଥିଲେ । ପ୍ରାଚୀନ ଭାରତୀୟ ସଂସ୍କୃତିକୁ ମଧ୍ୟ ସେ ଉତ୍ତମରୂପେ ଜାଣିଥିଲେ ଘରୋଇ ପୁସ୍ତକାଧ୍ୟୟନଦ୍ୱାରା । ଏହି ମାତ୍ର ଥିଲା ମହେରଙ୍କର କ୍ଷୁଦ୍ର ସୀମିତ ସଂସାର; କିନ୍ତୁ ଏହି କ୍ଷୁଦ୍ର ଜଗତଟିର ପ୍ରତ୍ୟେକ ଅଂଶ ସେ ଭଲଭାବରେ ଜାଣିଥିଲେ ଓ ସେୟାକୁ ଦେଖିଥିଲେ ପ୍ରକୃତ କବିର ତୃତୀୟ ଚକ୍ଷୁଦେଇ । ଇଂରାଜୀ ଉପନ୍ୟାସ ସମ୍ପର୍କରେ ଜେନ୍ ଅଷ୍ଟିନ୍‌ଙ୍କୁ ଯାହା କୁହାଯାଇଥାଏ, ଆମେ ମେହେରଙ୍କ ସମ୍ପର୍କରେ ସେୟା କହିପାରୁ ଯେ, ସେ ନିଜ କ୍ଷୁଦ୍ର ସଂସାରଟିକୁହିଁ ମିନିଏଚର୍-ଚିତ୍ର ବା ସୂକ୍ଷ୍ମ ତାରକସୀ ଶିଳ୍ପଯୁକ୍ତ ଅଳଙ୍କାର ପର୍ଯ୍ୟାୟରେ ଥୋଇଯାଇଛନ୍ତି । ନିଜ ଜିଲ୍ଲା ସମ୍ବଲପୁରର ପ୍ରାକୃତିକ ସୁଷମାରାଜିର ଯେଉଁ ଚିତ୍ରରାଜି ମେହେର ରଖି-ଦେଇଯାଇଛନ୍ତି, ସେପରି କେବେହେଲେ ଆଗରୁ ଘଟିନଥିଲା । ଉତ୍କଳର ମୁଖ୍ୟ ଧମନୀରୂପୀ ମହାନଦୀ ଓ ଅଧୁନା ବିଶ୍ୱବିଖ୍ୟାତ ହୀରାକୁଦ ବନ୍ଧଠାରୁ ଆରମ୍ଭକରି ସମଗ୍ର ସମ୍ବଲପୁର ସହରକୁ ଉର୍ଦ୍ଧ୍ୱରୁ ଅବଲୋକନ କରୁଥିବା ବୁଢ଼ାରାଜା ପାହାଡ଼ଟି ପର୍ଯ୍ୟନ୍ତ, ସମ୍ବଲପୁର ଜିଲ୍ଲାର ଦ୍ରଷ୍ଟବ୍ୟ ବା ଜ୍ଞାତବ୍ୟ କିଛି ନାହିଁ, ଯାହା ମେହେରଙ୍କ ଲେଖନୀ ନେଇ ଅମରତ୍ୱ ଲାଭ କରିନାହିଁ ।

''ଦେଉଳ କିରୀଟ ଶିରେ ବିଜେ ବୁଢ଼ାରାଜା / ବିବିଧ କୁସୁମପୁଞ୍ଜେ ମଣ୍ଡି ଅପଘନ,
କୋହ୍ଲ ସୀମନ୍ତନିଙ୍କର ଚାହିଁ ନୃତ୍ୟ-ମଜା / ତରୁଲୋମ ପୁଲକାଇ ମଜାଇଛି ମନ ।
ନିତି ନିତି ତେଲ ଆସି ଖଟୁଅଛି ପାଦେ / ବଜାଇ ବାଜଣା ଉଭା ହୋଇ ସିଂହଦ୍ୱାରେ,
ରଞ୍ଜୁଛି ମାନସ ତବ ରମ୍ୟ ଶଙ୍ଖନାଦେ/ ନାଦ-ସ୍ରୋତ ପଡ଼େ ଯାଇ ହୃଦୟ କେଦାରେ ।
ଦେଖିନେଲ ପ୍ରଥମରେ ଚୌହାନଙ୍କ ଲୀଳା / ସହିଲ ମର୍ହଟ୍ଟଙ୍କର ଦୁର୍ନୀତି-ନିଚୟ
ଦେଖିଲ ସୁନ୍ଦର ଯୋଗେ ଯେ କାଣ୍ଡ ଘଟିଲା/ଦେଖୁଅଛ ଇଂରେଜଙ୍କ ରମ୍ୟ ଅଭିନୟ ।
ମାଡ଼ିବସିଅଛ ମହୀ ମହାସିଂହାସନ / ତୁମ୍ଭ ଅଭିଷେକ କରେ ଜୀମୂତବାହନ ।''

ଯାହାଦ୍ୱାରା କିଞ୍ଚିତ୍‌ମାତ୍ର ଲୋକୋପକାର ହୋଇପାରିବ, ତାହା ଯେତେ ସାମାନ୍ୟ ହେଲେହେଁ ମେହେର ତାକୁ ଦେଇଯାଇଛନ୍ତି ନିଜ ଲେଖନୀର ଅମୃତ ସ୍ପର୍ଶ । ପୁଣି ଯାହା

ବା ସେ ଲେଖିଛନ୍ତି, ସେଥିରେ ସେ ରଖିଯାଇଛନ୍ତି ଏକାଧାରାରେ ଅପୂର୍ବ ସାଙ୍ଗୀତିକ ମାଧୁରୀ ଓ ସମୁନ୍ନତ ସାମାଜିକ ଓ ବ୍ୟକ୍ତିଗତ ଆଦର୍ଶ । ବହୁ କବିତାରେ ମେହେର ଓଡ଼ିଆମାନଙ୍କର ଜାତୀୟ ଦୋଷ-ଦୁର୍ବଳତାସବୁ ସାହସର ସହିତ ଦେଖାଇ ଓ ଉଦ୍ଧାରର ଉପାୟରୂପେ ଅଗ୍ରଗାମୀ ଜାତିମାନଙ୍କର ପଦାଂକାନୁସରଣ କରି ପ୍ରଗତିର ପଥ ଧରିବାକୁ ଉପଦେଶ ଦେଇଛନ୍ତି ।

''କର୍ମ-ବାଷ୍ପରଥ ଧାଇଁ ଶଙ୍ଖସ୍ୱନେ / ଆସି ଏବେ ଲାଗିଗଲାଣି ଷ୍ଟେସନେ,
ଚଢ଼ିବା ସମୟ ହେଲାଣି ନିକଟ / ଶୋଇପଡ଼ିଛ କି ନକିଣି ଟିକଟ ?
ଦେଖୁଛ ସମ୍ମୁଖେ କେମନ୍ତ ଉଦ୍‌ବେଗେ / ଚଢ଼ିଯାଉଛନ୍ତି ଯାତ୍ରୀ ବେଗେ ବେଗେ,
ଚାହିଁଥିବ ଯେବେ ଦୃଶ୍ୟ ହୋଇ କାବା / ବୃକ୍ଷତଳେ ଭୋକେ ମରୁଥିବ ବାବା ।

× × × ×

ପ୍ରତିବେଶୀଙ୍କର ସହିତ ତୁଳନା / କରି କର ନିଜ ମଧ୍ୟରେ କଳନା,
ତହିଁରୁ ବୁଝିବ ନିଜେ କେଡ଼େ ଦୀନ / କରିଅଛ ପୁଣି ମାତୃଭାଷା ହୀନ ।
ମାତୃଭାଷା ପୋଥି ଛୁଇଁବାକୁ କରେ / ଅନ୍ୟ କେଉଁ ଜାତି ଲଜ୍ଜା ବୋଧକରେ ?''

ଏହିପରି ଯେକୌଣସି ଦୃଷ୍ଟିକୋଣରୁ ଦେଖିଲେ, ସମ୍ବଲପୁରର ଏହି ଦରିଦ୍ର ତନ୍ତୁବାୟଙ୍କୁ ଜଣେ ଅସାଧାରଣ, ବିଚକ୍ଷଣ ଓ ଅନ୍ତର୍ଦୃଷ୍ଟିସମ୍ପନ୍ନ କବି ବୋଲି ଆମ୍ଭେମାନେ ସ୍ୱୀକାର କରିବାକୁ ବାଧ ହେବା । ପୁଣି ବ୍ୟକ୍ତିଗତ ଜୀବନରେ କବି ଥିଲେ ସତ୍ୟ ବିନୟରେ ଭୂଷିତ, ପରୋପକାରୀ, ଦୁର୍ନୀତିଗ୍ରସ୍ତଙ୍କର ଆତଙ୍କ; କିନ୍ତୁ ସାଧାରଣ ଜନତାର ଶ୍ରଦ୍ଧାର ପାତ୍ର । ସେ କେବେହେଲେ କୌଣସି ରାଜା ବା ଧନିକଙ୍କୁ ନିଜର ଖଣ୍ଡିଏ ପୁସ୍ତକ ଛପାଇଦେବାପାଇଁ ଅନୁରୋଧ କରିନଥିଲେ । ସେଥିପାଇଁ ଏହି ଉଚ୍ଚପ୍ରତିଭାଧାରୀ କବିଙ୍କର ନବ-ଲିଖିତ ପୁସ୍ତକମାନଙ୍କର ପାଣ୍ଡୁଲିପି ବହୁକାଳଧରି ଅଗୋଚର ରହୁଥିଲା ଓ ସେସବୁକୁ କେବଳ ବନ୍ଧୁ ଓ ସମାଦରକମାନଙ୍କର ଉତ୍ସାହହିଁ ରକ୍ଷାକରିଥିଲା ଶେଷରେ କୀଟ-ଖାଦ୍ୟ ହେବାର ଦୁର୍ଦ୍ଦଶାରୁ । କବିଙ୍କର କୌଳିକ ବାସ ମଧ୍ୟ ଥିଲା ଅନ୍ଧକାରମୟ କେତୋଟି ଦୀନ କୁଟୀର । ତଥାପି ଜନ୍ମସ୍ଥଳ ବରପାଲୀ ଗ୍ରାମର ମାଟି-ମମତା ଏଡ଼ିନପାରି ସେ ଗୁଣଗ୍ରାହୀ ବାମଣ୍ଡାରାଜନଙ୍କର ସଭାକବି ହେବାର ଅଯାଚିତ ଅନୁରୋଧକୁ ମଧ୍ୟ ଏକାବେଳକେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ମୋଟଉପରେ, ବ୍ୟକ୍ତିଗତ ଜୀବନର ପ୍ରତିକୂଳତା ଓ ସାହିତ୍ୟିକ ସୃଷ୍ଟିର ପରମ ଐଶ୍ୱର୍ଯ୍ୟ ଏବଂ ସାଧୁ, ନିଷ୍ପାପ, ଅକଳୁଷ ଅଥଚ ବୀରୋଚିତ ଜୀବନ, ଏସବୁକୁ ଏକତ୍ର ବିଚାର କଲେ, ସମଗ୍ର ଓଡ଼ିଆ ସାହିତ୍ୟରେ ଗଙ୍ଗାଧର ମେହେରଙ୍କର ଅଭ୍ୟୁଦୟ ଏକ ଅନନ୍ୟସାଧାରଣ ଘଟଣା ବୋଲି ଧରିବାକୁ ହେବ । ତାଙ୍କର କାବ୍ୟାବଳିର ନାମ– ତପସ୍ୱିନୀ, ପ୍ରଣୟବଲ୍ଲରୀ, କୀଚକବଧ, ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀ, ଅଯୋଧ୍ୟା ଦୃଶ୍ୟ, କବିତାକଲ୍ଲୋଳ, ଅର୍ଘ୍ୟଥାଳି, ଅହଲ୍ୟାସ୍ତବ, ମହିମା, ଭାରତୀ-ଭାବନା, ପଦ୍ମିନୀ, କୃଷକସଙ୍ଗୀତ । ଗଦ୍ୟରଚନାବଳିର ନାମ – ଆତ୍ମଜୀବନୀ, ନୃପରାଜସିଂହ, କାଶୀନାଥ-

ପଣ୍ଡା, ପୁରାଣ-କବି ଫକିରମୋହନ ।

ସମ୍ବଲପୁରସ୍ଥ ପ୍ରଥମଶ୍ରେଣୀର ସରକାରୀ କଲେଜଟି ସେହି ମାଟିରେ ଜନ୍ମହୋଇଥିବା ଏହି ଦୀନ କିନ୍ତୁ ବିଚକ୍ଷଣ ଓ ପ୍ରତିଭାଧର ତନ୍ତୁବାୟଙ୍କ ନାମ ଧାରଣ କରି ଆଜି ଗୌରବାନ୍ୱିତ ।

**ରାଜା ଶ୍ରୀ ସଚ୍ଚିଦାନନ୍ଦ ଦେବ** * (୧୮୭୨-୧୯୧୬)

ହୁଏତ ରାଜା ହେବାର ଅଭିଶାପରୁହିଁ ବାମଣ୍ଡାରାଜ ସଚ୍ଚିଦାନନ୍ଦ ଦେବ ଓଡ଼ିଆ ସାହିତ୍ୟରେ ଯେଉଁ ସମ୍ମାନ ପାଇବା କଥା, ତାହା ଏପର୍ଯ୍ୟନ୍ତ ପାଇନାହାନ୍ତି । ପିତା ସାର୍ ସୁଢ଼ଳଦେବ ଓ ତାଙ୍କର ଏହି ସୁଯୋଗ୍ୟ ପୁତ୍ର ସଚ୍ଚିଦାନନ୍ଦ କବିତ୍ୱ, ପାଣ୍ଡିତ୍ୟ, କଳାକାର-ପୃଷ୍ଟପୋଷକତା ଏବଂ ସୁଶାସନ ଯୋଗୁଁ ଉତ୍କଳର ସେହି ଯୁଗରେ ଯେଉଁ ଖ୍ୟାତି ଓ ପ୍ରଶସ୍ତି ଲାଭକରିଥିଲେ, ତାହା ସ୍ୱାଧୀନୋତ୍ତର ଦେଶରେ ଆଉ ଦେଖିବାକୁ ମିଳୁନି ଏବଂ ଯାହା ଆମ୍ଭମାନଙ୍କୁ କେବଳ ସ୍ମରଣ କରାଇଦିଏ, ସେହି ଇତିହାସ-ନିବଦ୍ଧ ପୁରୁଷୋତ୍ତମ-ପ୍ରତାପରୁଦ୍ରଙ୍କ ଯୁଗ, ଯେତେବେଳେ ଉତ୍କଳ-ରାଜସଭା ଭାରତବିଖ୍ୟାତ କବି ଓ ପଣ୍ଡିତମାନଙ୍କର ଯଶ ଓ ଅର୍ଥ ଉଭୟ ଲକ୍ଷ୍ୟର ଆଶାଭରସାର ସ୍ଥଳ ଥିଲା । ସାର୍ ସୁଢ଼ଳ-ଦେବ ଓ ସଚ୍ଚିଦାନନ୍ଦଙ୍କ ସ୍ପର୍ଶରେ ଅଖୋଜ, ଆରଣ୍ୟକ ବାମଣ୍ଡା ରାଜ୍ୟଟି ପ୍ରକୃତରେ ଉତ୍କଳର 'ବୁଧହଂସ-କେଳିସର' ହୋଇଉଠିଥିଲା । ଫକିରମୋହନଙ୍କ 'ସରସ୍ୱତୀ' ଉପାଧି ଏହି ବାମଣ୍ଡା ରାଜଦରବାରର । ବିଦ୍ୟାରତ୍ନଙ୍କ 'ହିତୈଷିଣୀ' ଓଡ଼ିଆ ଜାତି ଓ ଭାଷା ପାଇଁ ଯାହା କରିପାରିଲା, ତାହା ସମ୍ଭବ ହୋଇଥିଲା କେବଳ ଏହି ଆଲୋକପ୍ରାପ୍ତ ଓ ଦେଶହିତୈଷୀ ବାମଣ୍ଡା ରାଜବଂଶର ଉତ୍ସାହରୁ । ମେହେରଙ୍କ ଭାଷାରେ —

''ବୁଧହଂସ-କେଳିସର ଦେବଦୁର୍ଗ ଧାମେ / ଜନମିଲା ସୁପତ୍ରିକା ହିତୈଷିଣୀ ନାମେ,

× × × ×

ନୀଳମଣି ବିଦ୍ୟାରତ୍ନ ବହୁଗୁଣାଧାର/ନରେନ୍ଦ୍ର ଆଦେଶେ ନେଲେ ତା'ଚକ୍ଷଣ ଭାର ।''

ପିତା ସୁଢ଼ଳ ଦେବ 'ଚିତ୍ରୋତ୍ପଳା' ବୋଲି ଯେଉଁ କ୍ଷୁଦ୍ର କାବ୍ୟଟି ଲେଖିଥିଲେ, ତାହା ବର୍ଣ୍ଣନାତ୍ମକ; କଳ୍ପନାର ବିଳାସ ସେଥିରେ ନଥିଲା । ସେ ଯାହାହେଉ, କୁମାର ସଚ୍ଚିଦାନନ୍ଦ ଅସାଧାରଣ ଦୂରଦୃଷ୍ଟିସମ୍ପନ୍ନ, ସୁପଣ୍ଡିତ ଓ ବିଚକ୍ଷଣ ଶାସକ ସୁଢ଼ଳ ଦେବଙ୍କଠାରୁ ଉତ୍ତରା-ଧିକାରସୂତ୍ରରେ ପିତାଙ୍କର ଯେତେ ଗୁଣ ପାଇଥିଲେ, ସେମାନଙ୍କ ମଧ୍ୟରେ ଥିଲା ମଧ୍ୟ କବିଶକ୍ତି । ତାହା ରାଜକାର୍ଯ୍ୟର ଜଞ୍ଜାଳ-ପ୍ରାଚୁର୍ଯ୍ୟ ଭିତରେ ଫୁଟି ବାହାରିଛି, 'ବୀରଗାଥା', 'ମାୟାଶବରୀ', 'ପ୍ରକୃତି', 'ବୈଦିକପ୍ରକୃତି' ଓ 'ଯୌନ ନିର୍ବାଚନ' ପ୍ରଭୃତି କାବ୍ୟରେ ଏବଂ 'ଦୃଷ୍ଟିବିଜ୍ଞାନ' ଓ 'ଅଳଙ୍କାରସାର' ପ୍ରଭୃତି ଗଦ୍ୟ ଗ୍ରନ୍ଥରେ । ସଚ୍ଚିଦାନନ୍ଦଙ୍କ 'ଦୃଷ୍ଟିବିଜ୍ଞାନ' ଓଡ଼ିଆଭାଷାରେ ପ୍ରଥମ ବୈଜ୍ଞାନିକ ଗ୍ରନ୍ଥ ଓ ଏତାବତ୍ ସେହି ବିଷୟ ଉପରେ ଏକମାତ୍ର

* ଏହାଙ୍କର ପ୍ରସଙ୍ଗ ଇଂରାଜୀ ସଂସ୍କରଣରେ ଭୁଲରେ ଛାଡ଼ିଦିଆଯାଇଥିଲା, ଯଦିଓ ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀରେ ଲେଖକର ଦୀର୍ଘ ଅଭିମତ ବହୁ ଆଗରୁ ସନ୍ନିବେଶିତ ଥିଲା ।

ଗ୍ରନ୍ଥ ହୋଇ ରହିଛି । ରାଜକବିଙ୍କର ସବୁ ଗ୍ରନ୍ଥ, ସେତେବେଳେ ନବପ୍ରଚାରିତ ବିଜ୍ଞାନ-ଜ୍ଞାନଦ୍ୱାରା ମନୋଜ୍ଞ ଭାବରେ ପ୍ରଭାବିତ । ସେ ସମୟରେ ଡାରଓ୍ୱିନ୍‌ଙ୍କ ବିବର୍ତ୍ତନବାଦ, ତିଳକଙ୍କ 'ମୈରବ ମଣ୍ଡଳରେ ଆର୍ଯ୍ୟାଧିଷ୍ଠାନ' ଇତ୍ୟାଦି ଗ୍ରନ୍ଥ ଯେଉଁ ପରିମାଣରେ ବୁଦ୍ଧିଜୀବୀମାନଙ୍କର ଚିତ୍ତକୁ ଆଲୋଡ଼ିତ କରୁଥିଲା, ଆଜି ଆମ୍ଭେମାନେ ତାହା କଳ୍ପନା କରିପାରିବା ନାହିଁ । ଉତ୍କଳ ଦେଶରେ କେବଳ ଦୁଇଜଣଙ୍କ ରଚନାରେହିଁ ଆମ୍ଭେମାନେ ନବପ୍ରଚାରିତ ବିଜ୍ଞାନର ସେହି ବିପ୍ଳବକାରୀ ସତ୍ୟରାଜିର ପ୍ରତିବିମ୍ବ ଦେଖିବାକୁ ପାଉଁ – ଜଣେ ହେଉଛନ୍ତି ଫକିରମୋହନ, ଆରଜଣକ ରାଜକବି ସଚ୍ଚିଦାନନ୍ଦ । ପାଠକ ଦେଖିବେ, 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ପ୍ରାଇମେରୀ ପର୍ଯ୍ୟନ୍ତ ପଢ଼ିଥିବା ସେନାପତି ଡାରଓ୍ୱିନୀୟ ବିବର୍ତ୍ତନବାଦର ସୁନ୍ଦର ଆଲୋଚନା କରିଯାଇଛନ୍ତି । ସଚ୍ଚିଦାନନ୍ଦ ଏହି ବିବର୍ତ୍ତନବାଦର ଏକ ଅଂଶ 'ଯୌନ ନିର୍ବାଚନ'କୁ ସେହି ନାମକ ଗ୍ରନ୍ଥରେ ଓ 'ପ୍ରକୃତି'ରେ କାବ୍ୟରୂପ ଦେଇଯାଇଛନ୍ତି । ସଚ୍ଚିଦାନନ୍ଦଙ୍କ ରଚନାରେ ବଳିଷ୍ଠତା ଥିଲା ଏବଂ ତାହା ସେ ପାଉଥିଲେ ତାଙ୍କର ଉଭୟ ସଂସ୍କୃତ ଓ ଇଂରାଜୀ ଭାଷାରେ ଗଭୀର ପ୍ରବେଶରୁ । 'ଯୌନ ନିର୍ବାଚନ'ରୁ ନିମ୍ନୋଦ୍ଧୃତ ଅଂଶ ଏହା ପ୍ରମାଣିତ କରିବ ବୋଲି ଆଶା –

''ଜଳକ୍ରୀଡ଼ା-ଉନ୍ମାଦିନୀ କରିଣୀ ସହିତେ
କୀଚକବନବିହାରୀ ମସ୍ତ ଦନ୍ତାବଳ,
ଆସୁଅଛି ଟଙ୍କମାର୍ଗେ ନିର୍ଝର ପାଶକୁ;
ଅଗ୍ରଯାୟୀ ଯୂଥପତି ବୃଂହିତ ନିନାଦେ
ଚକିତ ସଂକେତ ମଣି ସଂକେତୀ ପାଶକୁ
ଆସୁଅଛି ବେଗେ ଧାଇଁ ଦଳି ଗୁଳ୍ମବନ
ଯୂଥଭ୍ରଷ୍ଟ ଶିଶୁ ଅନୁଗାମିନୀ କରିଣୀ ।
ଜଟିଳ କୀଚକକାଣ୍ଡ-ନିରନ୍ଧ୍ର-ବନଶ୍ରୀ,
ପୃଥୁଳ ଶୁଣ୍ଡ-ଶୋଭିତ ଦନ୍ତିବର ଦନ୍ତେ
ଉଦ୍ଭିନ୍ନ ନବୀନ ବେଣୁ ଶୁଭ୍ର ଗଜା ପରି,
ଶଶିକରେ ଲଭୁଅଛି ଦ୍ୱିଗୁଣ ସୁଷମା;
ଶୁଭୁଛି କୀଚକବନେ କରି କର୍ଣ୍ଣତାଳ –
ସଙ୍ଗେ ମିଶି, କେବେ କେବେ ପ୍ରଣୟବିକାରେ
ଗମ୍ଭୀର ବୃଂହିତ ଅନୁଗତା କରିଣୀର,
ସୂଚାଇ ମାତଙ୍ଗ ପାଶେ ପ୍ରଣୟ ପିପାସା
ଆହରି ନିର୍ମଳ ଝର କରିଣୀ ସ୍ୱକରେ
ଦେଉଅଛି କରିବରେ ମହାପ୍ରମୋଦରେ ।
ବଲ୍ଲଭୀ ଆଦର ଜାଣି କରିଯୂଥପତି
ପ୍ରଣୟ ପ୍ରମତ୍ତ ଭାଙ୍ଗି ଆଚରୁଛି ତାରେ;

ଗଣ୍ଡସ୍ରାବୀ ମଦଗଜଙ୍କ ପଡ଼ିଛି ଭୂମିରେ
ସତେ ଅବା ଭେଦି ଶୈଳସାନୁ ଝର ଝରେ ।''

'ବୈଦିକ ପ୍ରକୃତି' କାବ୍ୟ ପ୍ରକୃତରେ ଉତ୍ତର-ମେରୁ-ମଣ୍ଡଳର ପ୍ରକୃତିର ବର୍ଣ୍ଣନା । ରାଜକବି ସେହି ପ୍ରାଗୈତିହାସିକ ଯୁଗର ଜନୈକ ଉପବୀତହୀନ (କବି ପାଦଟୀକାରେ କହିଛନ୍ତି ଯେ ଆଦିମ ଆର୍ଯ୍ୟମାନଙ୍କ ଭିତରେ ଉପବୀତ ଧାରଣ ପ୍ରଥା ନଥିଲା ।) ଚର୍ମବସ୍ତ୍ରାବୃତ, କୁଠାରଧାରୀ (ସେତେବେଳେ ଆର୍ଯ୍ୟମାନେ ଧନୁର ବ୍ୟବହାର ଜାଣିନଥିଲେ) ଏକ ତେଜୋମୟ ଆର୍ଯ୍ୟଯୁବକ ଓ ସେହିପରି ଏକ ସୁନ୍ଦରୀ ଆର୍ଯ୍ୟଯୁବତୀଙ୍କ କଥୋପକଥନ ଛଳରେ ମୌରବ ପ୍ରକୃତି ବର୍ଣ୍ଣନା କରୁଛନ୍ତି –

''ନିବୀତ ସ୍ୱରୂପେ ବାହୁ ଯୁବା ଗଳଦେଶେ
ଲମ୍ବାଇ ସଜଳ ନେତ୍ରେ ଊର୍ଦ୍ଧ୍ୱମୁଖେ ବାଳା,
ନୈସର୍ଗିକ-ଲୀଳାକ୍ଷେତ୍ର ସୁମେରୁ ପ୍ରାନ୍ତରେ;
ନିସର୍ଗ ଲକ୍ଷ୍ମୀର ଭାବମୟ ଚିତ୍ରପଟ
ବୁଝିବାକୁ ନିରେଖଇ ଯୁବାମୁଖ ପ୍ରତି ।''

ଏହି ଯୁବକ-ଯୁବତୀ ନିମ୍ନବର୍ଣ୍ଣିତ ଭାବରେ ଆରୋରା ବୋରିଆଲିସ୍ ବା ମୌରବାଲୋକ ଦେଖିଛନ୍ତି –

''ବିସ୍ତୃତ ଯାଦସପତି ସୁନୀଳ ବକ୍ଷରେ
ଚକ୍ରବାଳ ଯା'ର ସୀମା ଦୃଷ୍ଟି ଅପସାରି
ବିମ୍ବିତ ଚଣ୍ଡାଂଶୁ ସମ ଦୀପି ଅନ୍ତରୀକ୍ଷ
ଉଦୀଚି-ଅଜର-ଦ୍ୟୁତି-ଚପଳା-ସୁନ୍ଦରୀ,
ମୁରହର କଣ୍ଠହାର କୌସ୍ତୁଭ ସମାନ,
ଚଞ୍ଚଳ ହିଲ୍ଲୋଳେ ଯହିଁ ବହଇ ସୁଷମା;
ହେରି ସେହି ଅକୂପାର ଲୋଳ ଜଳକେଳି,
ମୁଗ୍ଧ ନେତ୍ରେ ଉଭା ସତୀ ଭାବୀ ପତିପାଶେ ।''

'ବୀରଗାଥା'ରେ ରାଜକବି ସଚ୍ଚିଦାନନ୍ଦ ନିଜର ଗଙ୍ଗବଂଶର ଇତିହାସ ବୀରୋଚିତ ବାଣୀରେ ଆରମ୍ଭ କରିଥିଲେ; କିନ୍ତୁ ଦୁଃଖର ବିଷୟ ଶେଷ କରିଯାଇପାରିନାହାନ୍ତି । କାବ୍ୟ ହେଲେ ମଧ୍ୟ ଏହା ଓଡ଼ିଆରେ ଇତିହାସ ନାମ ଧାରଣ କରି ମଧ୍ୟ ଯେପରି ଗାଳଗଳ୍ପମୟ ସେପରି ନୁହେଁ । ଅର୍ଦ୍ଧ ଶତାବ୍ଦୀ ପୂର୍ବେ ଆରଣ୍ୟକ ବାମଣ୍ଡାରେ ବସି ରାଜକବି ଯେ କି ଉଚ୍ଚସ୍ତରର ଐତିହାସିକ ଗବେଷଣା ଏହି କାବ୍ୟଟି ଲେଖିବାପାଇଁ କରିଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । 'ବୀରଗାଥା' ଗଙ୍ଗବଂଶର ଖାଣ୍ଟି ଐତିହାସିକ ତଥ୍ୟ ଉପରେହିଁ ଦଣ୍ଡାୟମାନ ।

ମୋଟଉପରେ ସଚ୍ଚିଦାନନ୍ଦ ରାଧାନାଥୋତ୍ତର କାଳରେ ଉତ୍କଳୀୟ କବିସମାଜରେ ନିଜ ଗୁଣରେହିଁ ଏକ ସମ୍ମାନନୀୟ ଆସନ ଦାବିକରିପାରନ୍ତି ।

**ପଦ୍ମଚରଣ ପଟ୍ଟନାୟକ (ମୃତ୍ୟୁ-୧୯୫୫) –**

ପଦ୍ମଚରଣ ପଟ୍ଟନାୟକଙ୍କ ରଚନାରେ ବିଶେଷ ବୈଶିଷ୍ଟ୍ୟ ବା ଅନନ୍ୟତା କିଛି ନଥିଲେ ମଧ୍ୟ, ତାଙ୍କ କବିତାବଳି ଯେ ଉତ୍କଳ ଦେଶରେ ସର୍ବଜନପ୍ରିୟତା ଲାଭକରିପାରିଥିଲା, ତାହାର କାରଣ ତାଙ୍କର ପ୍ରତ୍ୟେକଟି ସୃଷ୍ଟିରେ ଏକ ମୃଦୁ କାବ୍ୟିକ ସୌରଭ ଲାଗିରହିଥାଏ । ତାଙ୍କର କବିତାଗୁଡ଼ିକରେ ବୃହତ୍ତର ମାନବିକ ସମସ୍ୟାବଳିର ସମାଧାନର କୌଣସି ଚେଷ୍ଟା ନାହିଁ; ଅଥଚ ଆମେ ସେଗୁଡ଼ିକ ତଳେ ଦେଖିବାକୁ ପାଉଁ ଏକ ସ୍ପର୍ଶକାତର କବିର ଚିତ୍ତ; ଯାହା ବାହାର-ଜଗତର ସୌନ୍ଦର୍ଯ୍ୟ ପ୍ରତି, ନିଜ ଦେଶର ଇତିହାସ ପ୍ରତି, ଦୈନନ୍ଦିନ ଜୀବନରେ ନରନାରୀର କ୍ଷୁଦ୍ର-ସୁନ୍ଦର ହୃଦୟ-ବିନିମୟ ପ୍ରତି ଅତ୍ୟନ୍ତ ଜାଗ୍ରତଭାବରେ କୁତୂହଳୀ ଥିଲା । ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପଦ୍ମଚରଣଙ୍କ 'ଧଉଳିପାହାଡ଼'ର ଆବୃତ୍ତି ଏହି କାରଣରୁ ଏତେ ପ୍ରିୟ । ନିମ୍ନୋଦ୍ଧୃତ ପଦ୍ୟାଂଶ ମଧ୍ୟ ଆମ ଦୈନନ୍ଦିନ ଜୀବନରେ କ୍ଷୁଦ୍ର କ୍ଷୁଦ୍ର ଅଭିଜ୍ଞତାର କାବ୍ୟିକ ମହିମା ଆଡ଼କୁ କବିଙ୍କର ଚିତ୍ତଲୋକ କିପରି ଜାଗ୍ରତ ଥିଲା, ତାହାର ପ୍ରମାଣ କରିବ ବୋଲି ଆଶାକରେ ।

''ଘଡ଼ିକେ ଟ... ...ଡ଼ିକେ ଖରା, ଘଡ଼ିକେ ଧାରାବୃଷ୍ଟି,
ଘଡ଼ିକେ ସ୍ନେହ, ଘଡ଼ିକେ କୋହ, ଘଡ଼ିକେ କୋପଦୃଷ୍ଟି ।
ଘଡ଼ିକେ ଦୁହେଁ ଆତ୍ମହରା, ଘଡ଼ିକେ ରୁଷାରୁଷି,
ଘଡ଼ିକେ କେତେ ଘେନାଘେନି, ମଧୁର ହସାହସି ।
ଘଡ଼ିକେ ଗଢ଼ା, ଘଡ଼ିକେ ଭଙ୍ଗା, ଘଡ଼ିକେ ମେଳ, ଭେଦ,
ଘଡ଼ିକେ ପ୍ରାଣେ ପୂର୍ଣ୍ଣ ତୃପ୍ତି, ଘଡ଼ିକେ ଘୋର ଖେଦ ।
ଘଡ଼ିକି ଘଡ଼ି, କି ଅବା ଜଡ଼ି ଲଗାଇଅଛ ପ୍ରାଣେ
ନଅଟି ରସେ, ନିଶି ଦିବସେ ନଚାଅ ନାନା ତାନେ ।''

(ନବଜୀବନ, ପଦ୍ମପାଖୁଡ଼ା)

କବି ପଦ୍ମଚରଣଙ୍କ କବିତାବଳି 'ପଦ୍ମପାଖୁଡ଼ା' ଓ 'ସୂର୍ଯ୍ୟମୁଖୀ' ନାମକ ଦୁଇଟି ସଂଗ୍ରହରେ ପ୍ରକାଶିତ ହୋଇଛି ।

**କୁନ୍ତଳାକୁମାରୀ ସାବତ (୧୯୦୧-୧୯୩୮) –**

ଓଡ଼ିଆ ସାହିତ୍ୟର ନାରୀ-କବିମାନଙ୍କ ମଧ୍ୟରେ ଜୀବନକାଳରେ ସର୍ବାଧିକ ଚାଞ୍ଚଲ୍ୟ-ସୃଷ୍ଟିକାରିଣୀ ଶ୍ରୀମତୀ କୁନ୍ତଳାକୁମାରୀ ସାବତ ଓଡ଼ିଶାରେ ଏକ ରୋମାଞ୍ଚକର କାହାଣୀରେ ପରିଣତ ହୋଇଯାଇଛନ୍ତି; ଯାହା କିନ୍ତୁ ନିର୍ଭର କରିନାହିଁ କେବଳ ତାଙ୍କ କାବ୍ୟ-କବିତାର ଗୁଣ ଉପରେ । ଏକେ ଖ୍ରୀଷ୍ଟିୟାନ ପରିବାରରେ ଜନ୍ମ, ତା'ପରେ ଡାକ୍ତର-ପିତାଙ୍କ ଚାକିରି ଫଳରେ ତାଙ୍କର ସମଗ୍ର ଶୈଶବ ଓ କୈଶୋର କଟିଥିଲା ସୁଦୂର ବର୍ମାରେ । ଜନ୍ମମାଟି ଓ ଜାତିରୁ କୋମଳ ବୃତ୍ତିଶୀଳ ସମଗ୍ର ବାଲ୍ୟବୟସରେ ବିଚ୍ଛିନ୍ନ ହୋଇ ରହିଯିବାର ପ୍ରତି-କ୍ରିୟାରୂପେ, ସେହି ବିଚକ୍ଷଣା ବାଳିକାର ଚିତ୍ତରେ ପରଜୀବନରେ ଓଡ଼ିଶା, ଭାରତବର୍ଷ ବା ହିନ୍ଦୁ ସମାଜର

ପ୍ରତ୍ୟେକଟି ବସ୍ତୁ ବା ବ୍ୟବସ୍ଥା ପ୍ରତି ଉନ୍ନତ ଉତ୍ସାହ ଦେଖାଦେଇଥିଲା । ବର୍ମାରୁ କଟକ ଫେରିଆସି ସେ ସେକାଳର ମେଡିକାଲ ସ୍କୁଲରେ ଯୋଗଦାନକଲେ ଏବଂ ଉଭୟ ଶିକ୍ଷକ ଓ ବାଳକ ସତୀର୍ଥ ଶ୍ରେଣୀକୁ ପ୍ରତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି, ବିସ୍ମୟାଭିଭୂତ କଲେ । ପରେ ସେ ଖ୍ରୀଷ୍ଟାନ୍ ଧର୍ମ ଛାଡ଼ି, ଦିଲ୍ଲୀରେ ଆର୍ଯ୍ୟ-ସମାଜ ରୀତିରେ ହିନ୍ଦୁ ହେଲେ ଓ ଏକ ଚାଞ୍ଚଲ୍ୟସୃଜକ ବିବାହ କଲେ । ବିବାହ ପରେ ସେ ସେହି ଦିଲ୍ଲୀରେହିଁ ଡାକ୍ତରୀ ବ୍ୟବସାୟ ଧରିଲେ ଏବଂ ତାଙ୍କର ବ୍ୟବସାୟ ଓ ସାହିତ୍ୟିକ ଯଶ ଯେତେବେଳେ ଶିଖର ସ୍ପର୍ଶ କରିଥିଲା, ଠିକ୍ ସେହିକାଳରେ ହିଁ ସେ ସେହି ଦିଲ୍ଲୀଠାରେ ହଠାତ୍ ପ୍ରାଣ-ତ୍ୟାଗକଲେ ।

କୁନ୍ତଳାକୁମାରୀଙ୍କ ଲେଖନୀ ପାଞ୍ଚଟି ଉପନ୍ୟାସ ଓ ପାଞ୍ଚଟି କବିତା-ଗ୍ରନ୍ଥ ଛାଡ଼ିଯାଇଛି । ଉପନ୍ୟାସଗୁଡ଼ିକର ଦିନାବସାନ ଘଟିଯାଇଛି । ସେହିପରି ମଧ୍ୟ ଘଟିଛି କବିତାଗୁଡ଼ିକର, ଯାହା ଅଧିକାଂଶରେ ଥିଲା ଦେଶ ବା ଭଗବଦ୍-କୈନ୍ଦ୍ରିକ । କୁନ୍ତଳାଙ୍କର ଭାଗବତ କବିତା ଚରମ ସ୍ପର୍ଶ କରିଛି ତାଙ୍କର 'ପ୍ରେମ-ଚିନ୍ତାମଣି' ନାମକ କବିତା-ଗ୍ରନ୍ଥରେ । ଏହା ବସ୍ତୁତଃ ରାଧା-କୃଷ୍ଣ କାହାଣୀ — ଆଧୁନିକ ରୀତିରେ ବର୍ଣ୍ଣିତ ମାତ୍ର । କିନ୍ତୁ ଦୀନକୃଷ୍ଣ, ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ପରି ଓଡ଼ିଶାର ମଧ୍ୟଯୁଗୀୟ ବୈଷ୍ଣବ କବିବୃନ୍ଦ ଏହି ଶ୍ରେଣୀୟ ଯେଉଁ କବିତାସବୁ ଛାଡ଼ିଯାଇଛନ୍ତି, ତାକୁ କୌଣସି ହେଲେ ଆଧୁନିକ କବି ବଳିଯିବେ, ଏ ଆଶା ବୋଧହୁଏ ଏକ ଦୁରାଶା ମାତ୍ର । ତେଣୁ 'ପ୍ରେମଚିନ୍ତାମଣି'ର ବ୍ୟର୍ଥତା ପାଇଁ ନାରୀକବି କୁନ୍ତଳାଙ୍କୁ ବିଶେଷଭାବରେ ଦୋଷ କିପରି ଦିଆଯିବ ? ବିଦେଶ-ବର୍ଦ୍ଧିତା ତରୁଣୀ କବିଙ୍କୁ ତାଙ୍କର ବନ୍ଧୁ ବା ଉପଦେଷ୍ଟାମାନେ ରଚନାର ଠିକ୍ ରାସ୍ତା ନ ଦେଖାଇ ପାରିଥିବା ଙ୍କରେ, କୁନ୍ତଳାଙ୍କ ଗଦ୍ୟ ଓ ପଦ୍ୟ ଉଭୟରେ ଶିଳ୍ପକଳାର ଅଭାବ ଓତପ୍ରୋତ । ତଥାପି ତାଙ୍କର ପ୍ରତ୍ୟେକଟି ରଚନାରେ ଆମେ ଏକ ଉତ୍ସାହୀ ଓ ଚଞ୍ଚଳ ଆତ୍ମାର ସମ୍ମୁଖୀନ ହେଉ, ଯାହା ନାନାଭାବରେ ନିଜକୁ ପ୍ରକାଶିତ କରିବାକୁ ବ୍ୟଗ୍ର ଏବଂ ଏକ ସ୍ପର୍ଶକାତର ଚିତ୍ତ ସହିତ ପରିଚିତ ହେଉ, ଯାହା ସତ୍ୟ ଶିବ ଓ ସୁନ୍ଦର ପ୍ରତି ସଦା ଆଗ୍ରହୀ ଥିଲା; କିନ୍ତୁ ମନର ଉତ୍ସାହକୁ କାରୁ-କଳାରେ ପ୍ରକାଶ କରିବାପାଇଁ କୁନ୍ତଳା ଯେ ଘରେ ଓ ବାହାରେ କୌଣସିଠାରେ ଯଥାଯୋଗ୍ୟ ଟ୍ରେନିଂ ପାଇପାରିନଥିଲେ, ତାହା ଏହି ବିଚକ୍ଷଣା ନାରୀଙ୍କର ଏକ ଦୁର୍ଭାଗ୍ୟ କହିବାକୁ ହେବ ।

ନାରୀକବିଙ୍କର ସୁପରିଚିତ କବିତାଗ୍ରନ୍ଥ 'ଅର୍ଚ୍ଚନା'ରୁ ନିମ୍ନୋଦ୍ଧୃତ ଅଂଶ, ତାଙ୍କର ସମଗ୍ର ରଚନାବଳିର ପ୍ରତୀକ ବୋଲି ଗ୍ରହଣ କରାଯାଇପାରେ —

''କିଏ କହେ ବିଶ୍ୱ ବିରାଟ ଛଳନା
ବୃଥା ମାୟାର ବନ୍ଧନ,
ମୁଁ ଦେଖେ ସୁନ୍ଦର ଏ ବିଶ୍ୱ ଉଦାର
ଅନନ୍ତ ପ୍ରେମ-ନନ୍ଦନ ।
ବିଶ୍ୱ ମୋର ଶୁଭକରମ ଭୁବନ
କରମ ଲାଗି ମୁଁ ଲଭିଛି ଜନମ,

ମରଣ ନୁହେଁ ମୋ ଚିର ଅବସାନ
ଆରମ୍ଭ ନବୀନ ଜୀବନ ।
ଏ ତ ନୁହେଁ ଶେଷ, ଏ ତ ନୁହେଁ କ୍ଳେଶ,
ଏ ନୁହେଁ ବିଦେଶ ଏ ମୋ ପୁଣ୍ୟ ଦେଶ,
ହୋଇ କର୍ମରତ ହେବି ମୁଁ ଉନ୍ନତ
ଏ ନୁହେଁ ଅସାର ସ୍ୱପନ । (ଅର୍ଚ୍ଚନା – ସମ୍ପାଦକ)

**ମଜଲିସ୍ କବି କୃଷ୍ଣମୋହନ** * (୧୮୭୭-୧୯୪୦)

ଇତିମଧ୍ୟରେ 'କୃଷ୍ଣମୋହନ ଗ୍ରନ୍ଥାବଳୀ' ପ୍ରକାଶିତ ହୋଇସାରିଛି; କିନ୍ତୁ ଦେଖୁଛି ଯେ ଏହା ଏକ ଗ୍ରନ୍ଥହୀନ 'ଗ୍ରନ୍ଥାବଳୀ' । ପୁଣି ଏହା ନିରପେକ୍ଷ ଗବେଷକ ସମାଲୋଚକଙ୍କଦ୍ୱାରା ସମ୍ପାଦିତ ନହୋଇଥିବାରୁ, ପ୍ରାକୃତିକ ମୂଲ୍ୟାୟନ ମଧ୍ୟ ହରାଇଛି–ଯାହା କି ସ୍ୱାଭାବିକ । କୌଣସି ହେଲେ ଦଲିଲର ନିଶାଣ ନଦେଇ କବି ଦିନେ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ଠିଆହୋଇଥିବାରୁ କେବଳ ବନ୍ଦିହେବା ନୁହେଁ ଫାଶୀ ପାଇବା ଅବସ୍ଥାକୁ ମଧ୍ୟ ଆସିଗଲେ ବୋଲି କହିବା ବା 'ସାମ୍ରାଜ୍ୟବାଦ-ବିରୋଧୀ' କବିତା ଲେଖକ ବୋଲି ପ୍ରଚାର କରି ତାଙ୍କୁ ରାଧାନାଥ, ମଧୁସୂଦନଙ୍କଠାରୁ ମଧ୍ୟ ବଡ଼ ବା ବିଶିଷ୍ଟ କରି ଥୋଇବା ଅତ୍ୟନ୍ତ ଅକୁଶଳ ପରିପ୍ରଚାର ମାତ୍ର । କାରଣ, କୃଷ୍ଣମୋହନଙ୍କ ଏହି ତଥାକଥିତ ସମଗ୍ର ଗ୍ରନ୍ଥାବଳୀରେ ସାମ୍ରାଜ୍ୟ-ଧ୍ୱଂସକାରୀ ମାରାତ୍ମକତା କୌଣସିଠାରେ ହେଲେ ଆମେ ଦେଖିବାକୁ ପାଉନାହୁଁ । ଦୃଷ୍ଟାନ୍ତସ୍ୱରୂପ ମଧ୍ୟ ଯାହା ଦିଆଯାଇଛି, ତାହା ଏକ ବଙ୍ଗଳା ଗୀତର ଅନୁବାଦ ମାତ୍ର । ତାମିଲ କବି ସୁବ୍ରହ୍ମଣ୍ୟ ଭାରତୀଙ୍କ ସ୍ୱପ୍ନ, ସାଧନା ଓ ଜୀବନ, ପଣ୍ଡିଚେରୀଠାରେ ପଳାତକ ଶ୍ରୀଅରବିନ୍ଦଙ୍କ ସ୍ୱପ୍ନ, ସାଧନା ଓ ଜୀବନ ସହିତ ଯେ ଏକୀଭୂତ ହୋଇଯାଇଥିଲା, ଏହା ବର୍ତ୍ତମାନ ଅରବିନ୍ଦ ଜୀବନର ଅଂଶ; କିନ୍ତୁ ସେ ପରିପ୍ରେକ୍ଷିତରେ ଅରବିନ୍ଦଚରିତରେ କୌଣସି ଠାରେ ସାମାନ୍ୟତମ ଉଲ୍ଲେଖ ନଥାଇ ମଧ୍ୟ (ଥିଲେ ସଂପୃକ୍ତାଂଶ ଉଦ୍ଧାର କରିବା ଉଚିତ ଥିଲା) କୃଷ୍ଣମୋହନଙ୍କୁ ଅରବିନ୍ଦଙ୍କର 'ପଟ୍ଟଶିଷ୍ୟ' ବୋଲି ବାରମ୍ବାର ଢକ୍କା ପିଟିବା, ଅସୁନ୍ଦର କଥା ନୁହେଁ କି ? କାହାର 'ଶିଷ୍ୟ' ବୋଲେଇବା ମଧ୍ୟ ଏଡ଼େ ଗୌରବ ବୋଲି ଜଣାନଥିଲା ।

---

* ଏହି ପୁସ୍ତକର ଇଂରାଜୀ ସଂସ୍କରଣରେ କୃଷ୍ଣମୋହନ ପଟ୍ଟନାୟକଙ୍କ ନାମୋଲ୍ଲେଖ ନାହିଁ; କାରଣ ସେତେବେଳକୁ ତାଙ୍କର ଏହି ତଥାକଥିତ 'ଗ୍ରନ୍ଥାବଳୀ' ପ୍ରକାଶିତ ହୋଇନଥିଲା, କି ତାଙ୍କର କୌଣସି ମୁଦ୍ରିତ ପୁସ୍ତକ ଲେଖକ ଦେଖିବାକୁ ପାଇନଥିଲା; କିନ୍ତୁ ଏସବୁ ଥିଲେ ମଧ୍ୟ, ଇଂରାଜୀ ଗ୍ରନ୍ଥରେ କୃଷ୍ଣମୋହନଙ୍କ ଉଲ୍ଲେଖ ବିଚାର-ବିଷୟ ହୋଇଥାନ୍ତା; ଯେହେତୁ କୃଷ୍ଣମୋହନ କବି ନୁହନ୍ତି, ସାହିତ୍ୟିକ ନୁହନ୍ତି, ଚିନ୍ତା-ନାୟକ ନୁହନ୍ତି – ସେ ମାତ୍ର ଜଣେ ଗାୟକ ଓ ଗୀତକାର ଥିଲେ । ସଙ୍ଗୀତଶାସ୍ତ୍ର ଓ ସାହିତ୍ୟ-ଶାସ୍ତ୍ର ପରସ୍ପରଠାରୁ ଭିନ୍ନ ।

ନିଛକ ସାହିତ୍ୟିକ ମୂଲ୍ୟାଙ୍କନ-ଦୃଷ୍ଟିରୁ ଦେଖିଲେ, 'କୃଷ୍ଣମୋହନ ଗ୍ରନ୍ଥାବଳୀ' ଓଡ଼ିଆ ସାହିତ୍ୟ-ଭଣ୍ଡାରରେ ନୂତନ ସମ୍ପଦ ନୁହେଁ; ଯେଉଁ ଅର୍ଥରେ କି ଆମେ ବାମଣ୍ଡା-ରାଜା ସଚ୍ଚିଦାନନ୍ଦ ଦେବଙ୍କର 'ପ୍ରକୃତି' ବା 'ବୈଦିକ ପ୍ରକୃତି' କାବ୍ୟକୁ ସେ ପ୍ରକାର ସମ୍ବର୍ଦ୍ଧନା ଦେଇପାରିବା । କୃଷ୍ଣମୋହନ ଦରଦୀ ଲୋକ ଥିଲେ, ଦେଶଭକ୍ତିପରାୟଣ ଲୋକ ଥିଲେ । ସେ ବୋଧହୁଏ ହେଉଛନ୍ତି ଓଡ଼ିଶାରେ ପ୍ରଥମ ଲେଖକ ଯେ ଝିଅ-ବୋହୂମାନଙ୍କୁ ନେଇ ଦେଶକୁ ଗଢ଼ିବାର ସ୍ୱପ୍ନ ଦେଖିଥିଲେ ଓ ସେ ଯୋଜନାକୁ ନିଜ ଚେଷ୍ଟାରେହିଁ ଅନେକ ପରିମାଣରେ ସାଫଲ୍ୟମଣ୍ଡିତ କରିଯାଇଛନ୍ତି । ତାଙ୍କର ସୁକଣ୍ଠ-ଗାୟକତ୍ୱ, ସଙ୍ଗୀତ-ଜ୍ଞାନ ଓ ଅଭିଜାତ ଗୁଣାବଳି ତାଙ୍କୁ ସମସାମୟିକ କାଳରେ ଜନପ୍ରିୟ କରାଇଥିଲା । ସେହି ସବୁ ଗୁଣବଳିରେ ହିଁ ସେ କିଛିକାଳ ପାଇଁ ହୋଇଉଠିଲେ ଓଡ଼ିଶାର ମଜଲିସ୍ କବି । ସ୍ୱରଚିତ ଗୀତସବୁ ନିଜେ ଗାଇ ସେ ମଜଲିସ୍‌ମାନଙ୍କୁ ମୁଗ୍ଧ କରି ରଖୁଥିଲେ । ନୂତନ ସୁର ଓ ନୂତନ ଭାବଯୋଗୁଁ ସେଥିରୁ କେତୋଟି ସମସାମୟିକ ଉତ୍କଳରେ ସର୍ବତ୍ର ଗୀତହେଉଥିଲା; କିନ୍ତୁ ସେଗୁଡ଼ିକ ଲଘୁଧରଣର । ସେସବୁରେ ଆମେ ଗୋପାଳକୃଷ୍ଣଙ୍କର ଗୀତାବଳିର ଗଭୀର ଅନୁଭବ, ସାବଲୀଳ ମନୋଜ୍ଞ ପଦାବଳି ଏବଂ ସାମାଜିକ ସ୍ୱାଭାବିକତା ଅଥବା କବିସୂର୍ଯ୍ୟଙ୍କ ବିସ୍ମୟକର ପଦ-ସଂଯୋଜନା ପାଉନା । ଗୀତ ପୁଣି ସାହିତ୍ୟ ନୁହେଁ, ଯେପରି କି ଇତିହାସ ମଧ୍ୟ ସାହିତ୍ୟ ନୁହେଁ; କିନ୍ତୁ ଏକ ରହସ୍ୟମୟ ଗର୍ଭ-ଧାରଣ ଫଳରେହିଁ କବୀର, ମୀରା ବାଈ ବା ଗୋପାଳକୃଷ୍ଣଙ୍କ ଗୀତଗୁଡ଼ିକ ଉଚ୍ଚକୋଟିର କବିତା ହୋଇ-ପଡ଼ିଛନ୍ତି; ଯେପରି ହୋଇଉଠିଛି ହିରୋଡୋଟସଙ୍କ ଗ୍ରୀକୋ ପର୍ସିଆନ୍ ଯୁଦ୍ଧର ବର୍ଣ୍ଣନାଟି ହିଁ ବିଶ୍ୱସାହିତ୍ୟ । କୃଷ୍ଣମୋହନଙ୍କ ରଚନା ସୁଲିଖିତ ପଦ୍ୟ, ଠିକ୍ 'କବିତା' ସ୍ତରକୁ କୌଣସିଟି ଆସିପାରିଛି ବୋଲି କହି ହେଉନି । ଆଉ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର, ପଦ୍ମଚରଣ କେହି ଜାତୀୟତାବୋଧକ କାବ୍ୟକବିତା ଲେଖିନାହାନ୍ତି, ପ୍ରଥମେ କୃଷ୍ଣମୋହନ ପଟ୍ଟନାୟକ ଲେଖିଲେ, ଏପରି ଦାବି କରିବା ଦ୍ୱାରା ଆମେ ଐତିହାସିକ ମୂଲ୍ୟାୟନକୁ ଅପମାନିତ କରୁନାହେଁ କି ? ପୁଣି ଏ ଯୁଗର ପରିଚିତ କମ୍ୟୁନିଷ୍ଟ ସ୍ଲୋଗାନ୍-ସାମ୍ରାଜ୍ୟ ବିରୋଧୀ ଶବ୍ଦ ଉଚ୍ଚାରଣ କରି ତାଙ୍କୁ ବଡ଼କରି ଥୋଇବା ଅପଚେଷ୍ଟା କେବଳ (କାରଣ, ସେଥିପାଇଁ କୌଣସି ପ୍ରମାଣହିଁ ନାହିଁ, ଅନ୍ତତଃ ଏହି ଗ୍ରନ୍ଥାବଳୀରେ) । ମନେରଖିବାକୁ ହେବ ଯେ, କାଳିଦାସ, ସେକ୍‌ସପିଅର, ଟେନିସନ୍ ପ୍ରଭୃତି ବିଶ୍ୱର ବହୁ ବଡ଼ କବିସମ୍ରାଟ୍ ସାମ୍ରାଜ୍ୟର ସ୍ତୁତିଗାନ କରିଯାଇଛନ୍ତି । ଏ ପ୍ରକାର କରିବା ନକରିବା ନେଇ ସାହିତ୍ୟିକ ମୂଲ୍ୟାୟନ ଏକାନ୍ତ ଦୂଷଣୀୟ ମନୋଭାବ । ତେବେ ସେ ଯାହାହେଉ, କୃଷ୍ଣ-ମୋହନ ରଚନାବଳି ଓଡ଼ିଆ ଜାତିର ଚେତନାରୁ ଏକାବେଳକେ ବିସ୍ମୃତ ହୋଇଯିବାର ବସ୍ତୁ ଆଦୌ ନୁହନ୍ତି । ସେହି ଦୃଷ୍ଟିରୁ 'କୃଷ୍ଣମୋହନ ଗ୍ରନ୍ଥାବଳୀ'ର ପ୍ରକାଶନ ସଂପୃକ୍ତ ସମସ୍ତେ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ଆଉ କିଛିକାଳ ଗତ ହୋଇଯାଇଥିଲେ, ଏସବୁ ହୁଏତ ଏକାବେଳକେ ଲୁପ୍ତ ହୋଇଯାଇଥାନ୍ତା । ବାଳିକାମାନଙ୍କ ପାଇଁ ଉଦ୍ଦିଷ୍ଟ କେତୋଟି ରଚନା ଏବେ ବି ସେମାନଙ୍କର ପାଠ୍ୟପୁସ୍ତକମାନଙ୍କରେ ରଖାଗଲେ (ଆବଶ୍ୟକ ପରିବର୍ତ୍ତନ ସହିତ) ଭଲହୁଅନ୍ତା ।

**ଦରଦୀକବି ଲକ୍ଷ୍ମୀକାନ୍ତ*** (୧୮୮୮-୧୯୫୩) –

ବାଲେଶ୍ୱର ଜିଲ୍ଲାର ଏକ ବୁନିଆଦୀ ବଂଶଜାତ ଏବଂ ଯୌବନରେ ଗ୍ରୀକ୍ ଦେବତା-ମାନଙ୍କ ପରି ସୁନ୍ଦର ଥିବା ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ଜୀବନକାହାଣୀ ଏକ ଅକରୁଣ ଭାଗ୍ୟ ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମର ଗାଥା କହିଲେ ଚଳେ । ଏହି ରୂପକଥାର ରାଜପୁତ୍ର ଯୌବନରେହିଁ ଏକ କୁତ୍ସିତ ବ୍ୟାଧିରେ ଆକ୍ରାନ୍ତ ହୋଇପଡ଼ି ବାକୀ ସମଗ୍ର ଜୀବନ ପାଇଁ ପୂରା ପଙ୍ଗୁ ହୋଇଗଲେ କେବଳ ନୁହେଁ, ତାଙ୍କର ସୁନ୍ଦରଆଙ୍ଗୁଳି ଗୁଡ଼ିକ ସୃଷ୍ଟିର ବାହକ ଲେଖନୀଟିକୁ ଧରିବାର କ୍ଷମତାଟିକକ ମଧ ହରାଇ ବସିଲେ । ଏପ୍ରକାର ଦୁର୍ବିପାକରେ ଯେକୌଣସି ମନୁଷ୍ୟର ବ୍ୟର୍ଥମନସ୍କତା କଳ୍ପନା କରାଯାଇପାରେ; କିନ୍ତୁ ଲକ୍ଷ୍ମୀକାନ୍ତଙ୍କର ବୀରୋଚିତ ଆତ୍ମା କ୍ଷଣକ ପାଇଁ ହେଲେ ନିଜକୁ ଅବସାଦଗ୍ରସ୍ତ ହେବାକୁ ବା ତାଙ୍କର ବନ୍ଧୁ ବା ପରିବାରବର୍ଗ ତାଙ୍କ ପ୍ରତି କାର୍ପଣ୍ୟାନ୍ୱିତ ହେବାକୁ ସେ ଦେଇନଥିଲେ । ବରଂ ଏବେ ନବପ୍ରକାଶିତ 'ଲକ୍ଷ୍ମୀକାନ୍ତ ଗ୍ରନ୍ଥାବଳୀ'ରେ ସନ୍ନିବେଶିତ ତାଙ୍କ ଜୀବନକଥାରୁ ଜାଣୁଛୁ ଯେ, କବିଙ୍କର ମୂର୍ଖ-ପାଷଣ୍ଡ ଜ୍ଞାତିବର୍ଗ ତାଙ୍କର ସେହି ବ୍ୟାଧିଗ୍ରସ୍ତତାର ସୁବିଧା ନେଇ ସାରା ଜୀବନ ତାଙ୍କୁ ବିଷୟ-ସଂପତ୍ତି ବାବତରେ ଜଞ୍ଜାଳରେ ଅସ୍ଥିର କରିପକାଇଥିଲେ; କିନ୍ତୁ ପ୍ରକୃତ କବି-ପ୍ରାଣ ଲକ୍ଷ୍ମୀକାନ୍ତ କୌଣସି ଜଞ୍ଜାଳଦ୍ୱାରା ଆତ୍ମାକୁ ସଂକୁଚିତ କରିବାକୁ ନଦେଇ ହସୁଥିଲେ, ହସାଉଥିଲେ, ନାଚୁଥିଲେ, ଗାଉଥିଲେ ଏବଂ ଶୁଣି ଖୁସିହେଉଥିଲେ ଯେ, ସମଗ୍ର ଓଡ଼ିଆ ଜାତି ତାଙ୍କ ପ୍ରାଣୋତ୍ସାରିତ ଗାନସବୁକୁ ବିମୁଗ୍ଧଚିତ୍ତରେ ଗାଉଛି ।

ଲକ୍ଷ୍ମୀକାନ୍ତ କୌଣସି ବୃହତ୍ ସାହିତ୍ୟିକ ଯୋଜନା ଆରମ୍ଭ କରିନଥିଲେ । ସେପରି କରିବା ତାଙ୍କ ଅବସ୍ଥାରେ ସମ୍ଭବ ନଥିଲା । ସେ ଦେହ ଓ ମନରେ ଥିଲେ ଗୀତ-ଧର୍ମୀ । ଜୀବନର ପଳାୟମାନ କ୍ଷଣଗୁଡ଼ିକୁ ସତ୍ୟ, ଶିବ, ସୁନ୍ଦର କରିବାହିଁ ଥିଲା ତାଙ୍କର ପ୍ରତିଭା । ତେଣୁ ତାଙ୍କର ରଚନାବଳି ଗୀତ, ଥଟ୍ଟା, ଲାଳିକା ଇତ୍ୟାଦି ନାନା ଛୋଟ ଛୋଟ ସୃଷ୍ଟିର ସମାହାର ମାତ୍ର । ସେସବୁଥିରେ ଆମେ କୌଣସି ମୌଳିକତ୍ୱ ବା ମହାନତ୍ୱ ଦେଖି-ନପାରିଲେ ମଧ, ଓତପ୍ରୋତ ଭାବରେ ବ୍ୟାପ୍ତ ଏକ ଦରଦୀ ପ୍ରାଣର ଉଷ୍ମ ସ୍ପର୍ଶ ପାଇଥାଉଁ । ଗଦ୍ୟ ଓ ପଦ୍ୟର ସାଟାୟାରଗୁଡ଼ିକ ଏପରି ଏକାନ୍ତ ସମସାମୟିକତା-ଦୋଷ-ଦୁଷ୍ଟ ଯେ, ମାତ୍ର କେତେଟା ବର୍ଷ ଭିତରେ ସେସବୁ ନିଜର ସାର୍ଥକତା ହରାଇ ବସିଲେଣି; ଅପାଠ୍ୟ ହୋଇପଡ଼ିଲେଣି । ବୋଧହୁଏ ଖଳତା-ପ୍ରଯୁକ୍ତ ହେତୁ, ଗୋଦାବରୀଶ ମହାପାତ୍ରଙ୍କ କଲମ, ସାଟାୟାରକୁ ଯେପରି ତୀବ୍ର-ବିଷ ଓ ତୀକ୍ଷ୍ଣ-କଣ୍ଟା ଯୋଗାଇପାରୁଥିଲା, ଲକ୍ଷ୍ମୀକାନ୍ତଙ୍କ ଭଦ୍ର-ସୁଜନ-ଦରଦୀ-ପ୍ରାଣ-ନିଃସୃତ ସମଶ୍ରେଣିକ ରଚନାସବୁରେ ଆମେ ତା' ମଧ ନପାଇ ଟିକିଏ ନିରାଶ ଯେ ନହେଉଛୁ ତା' ନୁହେଁ । ଲକ୍ଷ୍ମୀକାନ୍ତଙ୍କ ସାଟାୟାର, କେବଳ ସାମାଜିକ ଥଟ୍ଟା ନକଲ ଶ୍ରେଣୀର । ସେଗୁଡ଼ିକ ପୁଣି ସମକାଳୀନ ଗୋଦାବରୀଶ, ନୀଳକଣ୍ଠ ଇତ୍ୟାଦି

---

* ଇଂରାଜୀ ଗ୍ରନ୍ଥଟି ଲେଖାହେଲାବେଳେ 'ଲକ୍ଷ୍ମୀକାନ୍ତ ଗ୍ରନ୍ଥାବଳୀ' ପ୍ରକାଶିତ ହୋଇନଥିଲା । ଏହି ପୁସ୍ତକଟି ଲେଖାହେଲାବେଳକୁ ତାହା ଆଖିରେ ପଡ଼ିବାରୁ ଲକ୍ଷ୍ମୀକାନ୍ତ ସଂପୃକ୍ତ ଆଲୋଚନାଟି ଏକପ୍ରକାର ପୂରା ବଦଳେଇବାକୁ ହେଲା ।

ଉତ୍କଳ ରାଜନୀତିର ନାୟକ ପୁରୋଧାମାନଙ୍କୁ କେନ୍ଦ୍ର କରି ରଚିତ ହୋଇଥିବାରୁହିଁ, ସେମାନଙ୍କର ଅବସାନର ବହୁ ପୂର୍ବରୁ ସେଗୁଡ଼ିକର କ୍ଷଣିକ ମୂଲ୍ୟ ହରାଇବସିଲେ । ସେ ସବୁ ଭିତରେ ଚିରକାଳୀନତା ବୋଧହୁଏ ପାଇଗଲା, 'ଅସହଯୋଗୀର ଆତ୍ମକଥା'; କାରଣ ଏହା କୌଣସି ବ୍ୟକ୍ତିକୁ କେନ୍ଦ୍ର କରି ଲିଖିତ ନହୋଇ, ହୋଇଛି ଏକ ଆନ୍ଦୋଳନ, ଏକ ତତ୍ତ୍ୱକୁ କେନ୍ଦ୍ରକରି । 'ଅସହଯୋଗ', 'ଅହିଂସା', 'ସତ୍ୟାଗ୍ରହ' ପ୍ରଭୃତି ମହାମନ୍ତ୍ରର ପବିତ୍ର ପତାକା ବହନକରି ଦଳେ ଲୋକ ଏ ଦେଶକୁ ଆଜି ଯେପରି ଅନାଚାର-ବୀଭତ୍ସ କରି ଠିଆକରିଛନ୍ତି, ସେମାନେ ଏହି ଉପମହାଦେଶର ପ୍ରତ୍ୟେକ ପ୍ରାନ୍ତରର ବୁଦ୍ଧିଜୀବୀଙ୍କ-ଠାରୁ ନିରବଚ୍ଛିନ୍ନ ଭାବରେ ଚାବୁକ ପାଇବା କଥା । ମନେହେଉଛି, ସମଗ୍ର ଭାରତୀୟ ସାହିତ୍ୟରେ କେବଳ ଲକ୍ଷ୍ମୀକାନ୍ତହିଁ ଏ ଦିଗରେ ପ୍ରଥମ ଓ ସିଦ୍ଧାର୍ଥ, ସତ୍‌ସାହସିକ ପଦକ୍ଷେପ କରିଯାଇଛନ୍ତି ତାଙ୍କର ଏହି 'ଅସହଯୋଗୀର ଆତ୍ମକଥା'ରେ ।

ଲକ୍ଷ୍ମୀକାନ୍ତଙ୍କ ଗଳ୍ପଗୁଡ଼ିକୁ କେବଳ 'ଇଣ୍ଟରେଷ୍ଟିଂ' ବା କୌତୁକପ୍ରଦ କୁହାଯିବ, ତା'ଠୁ ବେଶି ଆସ୍ୱର୍ଦ୍ଧା ବୋଧହୁଏ ସେମାନଙ୍କର ନଥିଲା । ସେଗୁଡ଼ିକ ସୁଗଠିତ, ନାଟକୀୟ ଓ ସାମାଜିକ ଅଥଚ କୌଣସି ଗଭୀର ଅନ୍ଧାରକୁ ଯିବାକୁ ନାରାଜ । ବଡ଼ ଉପନ୍ୟାସ ଭାବରେ ଲେଖାହେବାକୁ ଯାଉଥିବା କିନ୍ତୁ ଅସମାପ୍ତ 'କଣାମାମୁଁ' ମଧ୍ୟ କୌଣସି ବିରାଟ ଆଶାର ଉଦ୍ରେକ କରୁନାହିଁ । ତାହା ରହିଯାଇଛି ପିଲାଙ୍କ 'ଆଡ୍‌ଭେଞ୍ଚର' ବା ଦୁଃସାହସିକ ଗଳ୍ପ-ଶ୍ରେଣୀରେ, ତାହା ଉପରକୁ ଉଠି ଆସିପାରିନି କୌଣସିଠାରେ । ଓଡ଼ିଶୀ ରୂପକଥାର ନେଉଳଭାଇ ବା ହିତୋପଦେଶର ମୂଷିକରାଜ ହିରଣ୍ୟକ, ଠିକ୍ ସଙ୍କଟବେଳେ ଆସି ବନ୍ଧୁମାନଙ୍କୁ ବିପଦରୁ ଉଦ୍ଧାର କରିଯାଆନ୍ତି ଯେପରି, କଣାମାମୁଁ ସେହିପରି । ପାଶ୍ଚାତ୍ୟ ଓ ଭାରତୀୟ ଉଭୟ ସାହିତ୍ୟରେ ଫୁଲ୍ (Fool) ଓ ବିଦୂଷକ ଭାବରେ, ଏକ ଆପାତ-ମୂର୍ଖ, ଆପାତ-ଅପାଠୁଆ, ଆପାତ-ବୋକା ଲୋକକୁ ପ୍ରକୃତରେ ପ୍ରଖର ବିଚାର-ବୁଦ୍ଧିର ଆଧାର ବୋଲି ଠିଆକରେଇବା ଏକ ପରିଚିତ ଘଟଣା । ବିଶ୍ୱବିଖ୍ୟାତ ସ୍ପାନିଶ୍ ଉପନ୍ୟାସ 'ଡନ୍ କୁଇକ୍‌ଜୋଟ୍'ରେ ସାଙ୍କୋପାଞ୍ଜା ଏହିପରି ଏକ ବିଖ୍ୟାତ ନାୟକ । ଆମ ସାହିତ୍ୟରେ ପ୍ରହରାଜଙ୍କ ବାଇମହାନ୍ତିଏ ମଧ୍ୟ ଏହି ଶ୍ରେଣୀର ଏକ ଅପୂର୍ବଭାବରେ ଉପଭୋଗ୍ୟ ସୃଷ୍ଟି । ଲକ୍ଷ୍ମୀକାନ୍ତ 'କଣାମାମୁଁ'କୁ ଏହି ଭାବରେ ଠିଆକରାଇଥିଲେ ପୁସ୍ତକର ମାନ ମହତ୍ତ୍ୱ ବଢ଼ିଥାନ୍ତା ।

କିନ୍ତୁ ଅଧିକ ମନ ଦେଇଥିଲେ ଲକ୍ଷ୍ମୀକାନ୍ତ ଓଡ଼ିଆ ସାହିତ୍ୟରେ ହୁଏତ ଉତ୍ତମ ପ୍ରାବନ୍ଧିକ ଭାବରେ କୀର୍ତ୍ତିମାନ୍ ହୋଇ ରହିଥାନ୍ତେ । ଯେଉଁ କେତୋଟି ପ୍ରବନ୍ଧ ଛାଡ଼ିଯାଇଛନ୍ତି, ସେଗୁଡ଼ିକ ବଡ଼ ଆଶାପ୍ରଦ । ଓଡ଼ିଶୀ ସଙ୍ଗୀତର ପ୍ରକାର ଓ ଇଦାନୀଂତନ ଅବସ୍ଥା ଉପରେ ତାଙ୍କର ପ୍ରବନ୍ଧଟି ଏବେବି ଅନୁଧ୍ୟେୟ । ତାଙ୍କର 'ଶରୀରମାଦ୍ୟଂ' ପୁସ୍ତକଟି ଏଠିସେଠି ପରିବର୍ତ୍ତନ କରି ପାଠ୍ୟ ପୁସ୍ତକ ଭାବରେ ସାରା ଓଡ଼ିଶାରେ ପ୍ରଚଳିତ କରାଇଲେ, ଜାତିର ଉପକାର ହୁଅନ୍ତା । ଚିରବ୍ୟାଧିଗ୍ରସ୍ତ କବି ନିଜ ଜାତିକୁ ସୁସ୍ଥ ସବଳ ଦେଖିବାର ଆନ୍ତରିକ ବାସନାରୁହିଁ ଏହା ଲେଖିଯାଇଛନ୍ତି । କାଳିନ୍ଦୀ-ତୀରାଧିବାସୀ କବି 'ନିଦ ଘେ କାଳିନ୍ଦୀ',

'ଶ୍ରାବଣେ ଶାଳିନ୍ଦୀ' ଓ 'ଶରତେ ଶାଳିନ୍ଦୀ' ପ୍ରଭୃତି ନିବନ୍ଧଗୁଡ଼ିକରେ ସମଗ୍ର ବିଶ୍ୱ-ପ୍ରକୃତିର ପ୍ରତୀକରୂପା ସେହି ସ୍ରୋତସ୍ୱିନୀଟି ପ୍ରତି ଏକ କବିପ୍ରାଣର କି ଅକଳୁଷ ଅନୁରାଗ ଢାଳି-ହୋଇଯାଇନାହାନ୍ତି ! 'ଶ୍ରାବଣେ ଶାଳିନ୍ଦୀ'ରେ ଦୁଃଖ-ଦଗ୍ଧ କବିପ୍ରାଣର ନିମ୍ନଲିଖିତ ଚିତ୍କାର କି କରୁଣ !

''ସଂସାରଯାକ ଖୋଜିଆସିଲି; କିନ୍ତୁ ମୋର ଅନ୍ତରର କବାଟ କାହା ପାଖରେ ଖୋଲିବି ଜାଣିପାରିଲି ନାହିଁ । ଏତେଦିନେ ତୋତେ ପାଇଛି । ତୋହରି ଆଗରେ ସବୁ କହିବି । ତୁହି ଏକା ମୋ କଥା ବୁଝିବୁ । × × × ତୁ ନଶୁଣିଲେ ଆଉ ଶୁଣିବ କିଏ ? ତୁ ନବୁଝିଲେ ଆଉ ବୁଝିବ କିଏ ? ସତେ କ'ଣ ତୁ ବୁଝିବୁ ? ସତେ କ'ଣ ତୁ ମୋ ପ୍ରାଣ ସହିତରେ ପ୍ରାଣ ମିଶାଇ, ହୃଦୟ ସହିତରେ ହୃଦୟ ବାନ୍ଧି, ମୋ ହୃଦୟର କରୁଣ ଗୀତି ଅନୁଭବ କରିବୁ ? ତୋର ଛାତି ଫାଟିଯିବ ନାହିଁ ? ମୋର ଦୁଃଖକାହାଣୀ ଶୁଣି ତୋର ବକ୍ଷ ବିଦୀର୍ଣ୍ଣ ହୋଇଯିବ ନାହିଁ ? ତେବେ ଶୁଣ୍ । ଘଡ଼ିକ ଲାଗି ତୋର ଉତ୍ତାଳ ତରଙ୍ଗମାଳା ବନ୍ଦକରିଦେ । କ୍ଷଣକ ପାଇଁ ତୋର କ୍ଷିପ୍ର ଗତି ରୋଧକରିଦେ । ଏହି ବରଗଛମୂଳେ ମୁଁ ବସିଛି । ମୋହରି ପାଖରେ ଟିକିଏ ଛିଡ଼ାହ' । ମୁଁ ତୋର କାନରେ ମୋର ଜୀବନ କାହାଣୀ ଢାଳିଦେବି । ତୁ ସବୁ ସହୁଛୁ । ସମଗ୍ର ଜଞ୍ଜାଳ ହୃଦୟରେ ଧାରଣ କରୁଛୁ । କେବେ ବି ତୋର ସ୍ନେହ ତୁଟେନାହିଁ । ମା', ମୋର ଏହି ବୋଝଟା ମଧ୍ୟ ନେଇଯା । ନେଇନଗଲେ, ଏହି ବୋଝ ବହନକରି ତୋହରି ସାଙ୍ଗରେ ଦଉଡ଼ିବି । ମୋର ଭୟ କ'ଣ ? ମା' ସାଙ୍ଗରେ ଆଉ ଡର କିସ ? ମୁଁ ଯିବି, ନିଶ୍ଚୟ ଯିବି । ତୁ ଯେଉଁଆଡ଼େ ଯିବୁ ତୋହରି ସଙ୍ଗେ ସଙ୍ଗେ ଧାଇଁବି । ଧାଇଁ ଧାଇଁ କଣ୍ଠ ଶୁଖିଗଲେ, ଛାତି ଫାଟିଗଲେ, ତୋତେ ଲଗା । ମୋର ସେଥିପାଇଁ ଲୋଡ଼ା କିସ ? 'ହା ହୁତାଶ' ଡକା ପାରି ପାରି କଣ୍ଠ ତ ଶୁଖିଗଲାଣି । ଦାରୁଣ ଯନ୍ତ୍ରଣାରେ ଜର୍ଜରିତ ହୋଇ ଛାତି ତ ଫାଟ-ଫାଟ ହେଲାଣି । ଆଉ ମୁଁ ସହିପାରିବି ନାହିଁ । ଛାତି ଫାଟିଯାଉ । ତେବେ ଯାଇ ମୋର ନିସ୍ତାର, ତେବେ ମୋର ଶାନ୍ତି ! × × ×''

ଚିରଦୁଃଖଦଗ୍ଧ କବିପ୍ରାଣର ସେହି କାରୁଣ୍ୟମୟ ଅଗ୍ନିଶିଖା ସମଗ୍ର ଓଡ଼ିଆ ଜାତି ଦେଖିପାରୁଛି ପୁଣି ନିମ୍ନର ଗାନ କବିତାରେ –

''ଭେଳା ମୋ ଯାଉଛି ବୁଡ଼ି / ରଖ ହେ ଜଗତସାଇଁ,
ଆହୁଲା ଦେଲିଣି ଛାଡ଼ି / ଭରସା ତ ଦିଶୁନାହିଁ !''

ବା ''ମୋର ସକଳ ଗର୍ବ ଚୂର୍ଣ୍ଣ କରିଛ / ସବୁ ତ ନେଇଛ ଛଡ଼ାଇ
ଆଶାର ତୁଙ୍ଗ ଶିଖରୁ ଖସାଇ / ଧୂଳିରେ ଦେଇଛ ଗଡ଼ାଇ ।''

ପୁସ୍ତକାକାରରେ ପ୍ରଥମ କରି ଦେଖି ମନେହେଉଛି, ଲକ୍ଷ୍ମୀକାନ୍ତଙ୍କ 'ଜୀବନ ସଙ୍ଗୀତ'ର ଗୀତଗୁଡ଼ିକ ଉତ୍କଳ ଦେଶରେ ଯେପରି ପ୍ରଚାରିତ ହେବାର କଥା ସେପରି ବୋଧହୁଏ ହୋଇନାହିଁ । ଏ ଦେଶଟା ହେଲା ଗତାନୁଗତିକତାର ଦେଶ । ଯେଉଁ ଗୋଟିଏ ଦୁଇଟି ଗୀତ ପଚାଶବର୍ଷ ତଳେ ଜନସମାଜରେ ପ୍ରଚାରିତ ହୋଇଥିଲା, ତାକୁଇ ଆଜି ବି ଘୋରିଘାରି

ବୋଲାଚାଲିଛି । ନୂତନ ଗାୟକମାନେ ନୂତନ ଗୀତ ପରଷିବାକୁ ଚେଷ୍ଟା କରୁନାହାନ୍ତି କାହିଁକି ? ଏହା କେବଳ ଲକ୍ଷ୍ମୀକାନ୍ତ ନୁହେଁ, ଓଡ଼ିଆ ସାହିତ୍ୟରେ ଦେଖାଯାଇଥିବା ସକଳ ଗୀତକାରଙ୍କ ଦୁର୍ଭାଗ୍ୟ ସହିତ ଦେଶର ଦୁର୍ଭାଗ୍ୟ କହିବାକୁ ହେବ ।

ଦୁଃଖର କଥା ଯେ, ଲକ୍ଷ୍ମୀକାନ୍ତଙ୍କ ରଚନାରେ ଖାଣ୍ଟି ଓଡ଼ିଆ ବଚନ ସହିତ ମଝିରେ ମଝିରେ ବିଶୁଦ୍ଧ ବା ବିକୃତ ବଙ୍ଗଳା ଅବାଧରେ ବିରାଜିତ । ତାହା ଦୃଷ୍ଟିକଟୁ ବା ଶ୍ରୁତିକଟୁ ହେବା ସାଥେ ସାଥେ ଲଜ୍ଜାଜନକ ଓ ଅପମାନଜନକ ଲାଗୁଛି । ଦୃଷ୍ଟାନ୍ତସ୍ୱରୂପ ଯଦି ଲକ୍ଷ୍ମୀକାନ୍ତଙ୍କ ରଚନାରେ ମଧ୍ୟ ଆମେ 'କହିବା' ଅର୍ଥରେ ବାରମ୍ବାର 'ବକିବା'କୁ ଦେଖିବାକୁ ପାଉଁ, ତେବେ ଆମେ ସମଗ୍ର ବିଶ୍ୱର ବକା-ଖାଇବା କଥା । ଲକ୍ଷ୍ମୀକାନ୍ତଙ୍କର ଗୀତଗୁଡ଼ିକରେ ସ୍ଥାନେ ସ୍ଥାନେ ଛନ୍ଦ-ଦୋଷ ମଧ୍ୟ ରହିଯାଇଛି । 'ଗ୍ରନ୍ଥାବଳୀ' ପ୍ରକାଶ କଲାବେଳେ, ସମ୍ପାଦକ ଟିକିଏ ଆଖି ବୁଲେଇନେଇଥିଲେ, ସମଗ୍ର ଜିନିଷଟି ଅନେକ ପରିମାଣରେ ନିର୍ଦ୍ଦୋଷ ହୋଇପାରିଥାନ୍ତା ।

□□□

# ଚତୁର୍ଦ୍ଦଶ ଅଧ୍ୟାୟ

# ଗଦ୍ୟ-ରାଜ୍ୟର ପ୍ରଦୀପାବଳି

ଫକିରମୋହନ, ରାଧାନାଥ ଓ ମଧୁସୂଦନ ପ୍ରତ୍ୟେକେ ପଦ୍ୟ ଓ ଗଦ୍ୟ ସୃଷ୍ଟି କରିଥିଲେ । ମଧୁସୂଦନଙ୍କ ଗଦ୍ୟଶୈଳୀକୁ କ୍ଲାସିକାଲ୍ ବା ସାଧୁ ଓ ରାଧାନାଥଙ୍କ ଗଦ୍ୟଶୈଳୀକୁ ବ୍ୟକ୍ତିକ କୁହାଗଲେ, ଫକିରମୋହନ ନିରକ୍ଷର ମୂର୍ଖ-ଭାଷାଠୁଁ ଆରମ୍ଭକରି ପଣ୍ଡିତଜନୋଚିତ ଉଦାରଗମ୍ଭୀର ବାଣୀ ପର୍ଯ୍ୟନ୍ତ ସର୍ବବିଧ ଗଦ୍ୟ-ପ୍ରକାଶ-ଶୈଳୀକୁ ଆୟତ୍ତ କରିପାରିଥିଲେ ବୋଲି କୁହାଯାଇପାରେ । କିନ୍ତୁ କେବଳ ଏହି ତିନିଜଣ ମାତ୍ର ସେ କାଳରେ ଗଦ୍ୟସୃଷ୍ଟି କରୁଥିଲେ ବୋଲି ଯେପରି ଧରାନଯାଏ । ସମସାମୟିକ କାଳରେ ଓ ପରେ, ଏମାନଙ୍କ ଛଡ଼ା ଆହୁରି ଅନେକେ ଓଡ଼ିଆ ଗଦ୍ୟ-ସାହିତ୍ୟକୁ ସାର୍ଥକ ଦାନ ଦେଇଯାଇଅଛନ୍ତି, ଯାହା ଯୋଗୁଁ ଓଡ଼ିଆ ଗଦ୍ୟ-ସାହିତ୍ୟ ପରିପୂର୍ଣ୍ଣ ବା ସମୃଦ୍ଧ ବୋଲି କୁହାନଗଲେ ମଧ୍ୟ, ତାର କୋଠୀ-ଘରେ ରୁଦ୍ରସୁଧାନିଧି, ତାପରେ ବ୍ରତକଥା ଓ ପଞ୍ଚସଖାଙ୍କ ଭାଷ୍ୟ, ତା'ପରେ ଚଇନିଙ୍କ ଚକଡ଼ା ଇତ୍ୟାଦି ଓଡ଼ିଆ ଭାଷାର ପ୍ରାଚୀନ ଗଦ୍ୟକୃତିମାନଙ୍କ ସାଥିକି ଅଷ୍ଟାଦଶ ଶତାବ୍ଦୀରେ ଆସି ମିଶିଲା ବ୍ରଜନାଥ ବଡ଼ଯେନାଙ୍କ ସୁଗଠିତ ଗଦ୍ୟ-କାବ୍ୟ 'ଚତୁରବିନୋଦ' । ଊନବିଂଶ ଓ ବିଂଶ ଶତାବ୍ଦୀରେ ଏହି କ୍ଷୀଣ ଗଦ୍ୟସ୍ରୋତରେ ଆସି ମିଶିଲା, ପାଶ୍ଚାତ୍ୟ ଶିକ୍ଷା ଓ ଅନୁକରଣ ଫଳରେ ପାଠ୍ୟପୁସ୍ତକ, ପ୍ରବନ୍ଧ, ଗଳ୍ପ, ଉପନ୍ୟାସ ଓ ପତ୍ରପତ୍ରିକା ଦେଇ । ଗଦ୍ୟ ଏକ କ୍ରମବର୍ଦ୍ଧମାନ ମହାପ୍ରବାହ । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ କହିଲେ ଯାହା ବୁଝାଉଥିଲା, ବର୍ତ୍ତମାନ ଚିତ୍ର ଠିକ୍ ଓଲଟା ହୋଇଗଲା । ଆମେ ହଠାତ୍ ଆସିଗଲୁ ଗଦ୍ୟର କାଳକୁ । ପଦ୍ୟ ହଜାରେ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଏକଚ୍ଛତ୍ର ଶାସନ କଲାପରେ, ଆସ୍ତେ ଆସ୍ତେ ସିଂହାସନଚ୍ୟୁତ ହୋଇ, ଜନ-ମାନସର ପ୍ରାନ୍ତ-ଦେଶକୁ ବିତାଡ଼ିତ ହେଲାପରି ଦେଖାଗଲା, ଯଦିଓ ଜାତିର ଅନ୍ତର୍ଦ୍ଦେଶରେ, 'କବିତା' ନିଜର ସହଜାତ ଗୁଣଯୋଗୁଁ, ଏବେ ବି ତାର ଅବିବାଦ୍ୟ ପ୍ରଭାବ ବଜାୟ ରଖିଛି ବୋଲି ନିଶ୍ଚିତ ଭାବରେ କୁହାଯାଇପାରେ ।

ଆଧୁନିକ କାଳରେ ମୁଖ୍ୟ ତ୍ରୟୀଙ୍କ ଛଡ଼ା ମଧ୍ୟ – ଗଦ୍ୟ ଲେଖକଙ୍କର ତାଲିକା ଅତ୍ୟନ୍ତ ଦୀର୍ଘ । ଆମେ ଏଠାରେ ତେଣୁ କେବଳ ସେହିମାନଙ୍କର ଆଲୋଚନା କରିବା, ଯେଉଁମାନେ ବିଷୟ ବା ଶୈଳୀ ବା ଉଭୟ ଦିଗରୁ ଓଡ଼ିଆ ଗଦ୍ୟ-ସାହିତ୍ୟକୁ ବିଶେଷଭାବରେ ସମୃଦ୍ଧ କରିଯାଇଛନ୍ତି ।

**ରାମଶଙ୍କର ରାୟ (ଜନ୍ମ -୧୮୫୮) –**

ଓଡ଼ିଆ ନାଟକ-ସାହିତ୍ୟରେ ଏହି ଅଗ୍ରଗାମୀ ନାୟକଙ୍କ ସମ୍ପର୍କରେ ପାଠକେ ପରବର୍ତ୍ତୀ 'ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ' ଅଧ୍ୟାୟରେ ବହୁ କଥା ଶୁଣିବେ; କିନ୍ତୁ ରାମଶଙ୍କର,

ନାଟକଜଗତରେ ଯେପରି, ସେପରି ମଧ୍ୟ ଅଗ୍ରଗାମୀରୂପେ ଦେଖାଦେଇଛନ୍ତି ଉପନ୍ୟାସ-ଜଗତରେ । ସେନାପତିଙ୍କ ପ୍ରଥମ ଉପନ୍ୟାସ ପ୍ରକାଶର ବାରବର୍ଷ ପୂର୍ବରୁ ରାମଶଙ୍କର ଏକ ସାର୍ଥକ ଉପନ୍ୟାସ ସୃଷ୍ଟିକରିସାରିଥିଲେ । ତିନିଟି ଉପନ୍ୟାସ ସେ ଆରମ୍ଭ କରିଛନ୍ତି ଜୀବନରେ; କିନ୍ତୁ ଯେଉଁ ଗୋଟିକୁ ପୂର୍ଣ୍ଣ କରିପାରିଥିଲେ ତା'ର ନାମ ହେଉଛି 'ବିବାସିନୀ' । କେବଳ ସମସାମୟିକ କାଳର ପରିପ୍ରେକ୍ଷିତରେ ନୁହେଁ, ସାଂପ୍ରତିକ ପରିପ୍ରେକ୍ଷିତରେ ମଧ୍ୟ ରାୟଙ୍କ ଏହି ଗୋଟିଏ ଉପନ୍ୟାସ ଅସାଧାରଣ ଭାବରେ ମୂଲ୍ୟବାନ୍ ଓ ବ୍ୟଞ୍ଜନାପୂର୍ଣ୍ଣ । ଔପନ୍ୟାସିକ ଭାବରେ ରାମଶଙ୍କର ସେନାପତି-ପ୍ରତିଭାଦ୍ୱାରା ଏକାବେଳକେ ଘୋଡ଼େଇ ହୋଇଯିବା ଫଳରେ, ଓଡ଼ିଆ ସମାଲୋଚକମାନଙ୍କ ଚକ୍ଷୁରେ ତାହାଙ୍କର ଏହି ଉପନ୍ୟାସଟି ଯେଉଁ ପ୍ରକାର ମୂଲ୍ୟାୟନ ପାଇବାର କଥା, ତାହା ପାଇପାରିନାହିଁ; କିନ୍ତୁ ସମ୍ପୂର୍ଣ୍ଣ ନିରପେକ୍ଷ ଦୃଷ୍ଟିକୋଣରୁ ଦେଖିଲେ, ରାମଶଙ୍କରଙ୍କ ଏହି ଗୋଟିକ ଉପନ୍ୟାସ ସେନାପତିଙ୍କ ସବୁ-ଗୁଡ଼ିକ ଉପନ୍ୟାସ ଅପେକ୍ଷା ଅଧିକ ସୁଗଠିତ ଓ ଏଥିରେ ଏପରି କେତେକ ଚରିତ୍ର ଦେଖାଦେଇଛନ୍ତି, ଯେଉଁମାନେ ଏକାନ୍ତ ଆଧୁନିକ ବୋଲି ଧରାଯିବାର କଥା ।

'ବିବାସିନୀ'ର ବିଷୟବସ୍ତୁ ହେଉଛି, ମରାଠା-ଶାସନବେଳେ ଓଡ଼ିଶାରେ ଏକ ଦୁର୍ଭିକ୍ଷର ଚିତ୍ର । ସେକାଳରେ ପାରାଦ୍ୱୀପର ଷଣ୍ଢ, ମରାଠା-ଶାସନରେ ମଧ୍ୟ ଏକ ପ୍ରବଳପ୍ରତାପୀ ରାଜା ଥିଲେ । ସେକାଳର ପ୍ରଥାନୁସାରେ ଷଣ୍ଢଙ୍କ ଅଧିନାୟକତ୍ୱରେ ଏକ ବିଖ୍ୟାତ ଦସ୍ୟୁ-ଦଳ ଥିଲେ – ତାଙ୍କର ପ୍ରଭାବ, ବିଭବ ଓ ପ୍ରତିପତ୍ତିର ଏକ ଯୋଜନାରୂପେ । ପାରାଦ୍ୱୀପରେ ଷଣ୍ଢଙ୍କ ସୁରକ୍ଷିତ ଦୁର୍ଗ ଥିଲା ଏବଂ ମହାନଦୀମୁଖସ୍ଥ ସେହି ଜଳଦୁର୍ଗରୁ ଆରମ୍ଭକରି କଟକ ପର୍ଯ୍ୟନ୍ତ ସମଗ୍ର ଉତ୍କଳୀୟ ତ୍ରିକୋଣଭୂମିକୁ ଷଣ୍ଢଙ୍କ ଦସ୍ୟୁଦଳ ନିଜ ଆୟତ୍ତରେ ରଖିଥିଲେ କହିଲେ ଚଳେ । ଷଣ୍ଢଙ୍କ ନିର୍ଦ୍ଦେଶରେ ଏହି ଦସ୍ୟୁଦଳର ନେତା ଥିଲେ ତାଙ୍କର ଜଣେ ବିପତ୍ନୀକ କର୍ମଚାରୀ । ତାଙ୍କର ପରିଚାଳନାରେ ଦସ୍ୟୁମାନେ ଧନୀଲୋକଙ୍କ ଘରେ ଡକାୟତି କରି, ଧନ ଓ ଖାଦ୍ୟଦ୍ରବ୍ୟ ଦରିଦ୍ର ଓ ଅଭାବଗ୍ରସ୍ତ ଲୋକଙ୍କ ଭିତରେ ବାଣ୍ଟୁଥିଲେ । ପୁଣି ଏହି କର୍ମରେ ଦସ୍ୟୁ ଓ ଦସ୍ୟୁନାୟକେ ଆଶୀର୍ବାଦ ପାଉଥିଲେ ଜଣେ ହିନ୍ଦୁ ସନ୍ନ୍ୟାସୀଙ୍କର; ଯେ ମହାନଦୀଗର୍ଭସ୍ଥ ଏକ ଅଜ୍ଞାତ ଦ୍ୱୀପରେ ବାସକରୁଥିଲେ । କଟକ ଜିଲ୍ଲାର କୌଣସି ଏକ ଗ୍ରାମରେ ଜଣେ ଧନୀ କିନ୍ତୁ ଅତ୍ୟନ୍ତ କୃପଣ ଗୃହସ୍ଥ ଓ ମରାଠାଙ୍କ ଅଧୀନରେ ଚାକିରି କରୁଥିବା ଜନୈକ ଓଡ଼ିଆ କର୍ମଚାରୀ ପାଖାପାଖି ବାସକରୁଥିଲେ । ଏହି କର୍ମଚାରୀଟି ମରାଠା ସୁବାଦାରର ପ୍ରିୟ ହେବା ଲକ୍ଷ୍ୟରେ ତାଙ୍କଠାରୁ ଦୁର୍ଭିକ୍ଷର କରାଳଚିତ୍ର ଯଥାସମ୍ଭବ ଘୋଡ଼ାଇରଖୁଥାଏ । ଏକ ରାତ୍ରିରେ ଷଣ୍ଢଙ୍କ ଦସ୍ୟୁଦଳ ଏହି ଉଭୟ ପ୍ରତିବେଶୀଙ୍କ ଘର ଲୁଣ୍ଠନ କଲେ । ଲୁଣ୍ଠନ ସମ୍ପଦ ଭିତରେ ଗଣିତା ହେଲେ ମଧ୍ୟ ଦୁଇଟି ସୁନ୍ଦରୀ ତରୁଣୀ – ଜଣେ କୃପଣ ଗୃହସ୍ଥର ବିଧବା ବୋହୂ, ଆଉ ଜଣେ ବିଶ୍ୱାସଘାତକ ଓଡ଼ିଆ କର୍ମଚାରୀକନ୍ୟା । ଅଚିରେ ବିପତ୍ନୀକ ଦସ୍ୟୁନାୟକ ଓ ସେହି ସୁନ୍ଦରୀ ବିଧବାଙ୍କ ଭିତରେ ପାରସ୍ପରିକ ଆକର୍ଷଣ ଦେଖାଦେଲା । କିନ୍ତୁ ବିଧବା ହିନ୍ଦୁ ବୈଧବ୍ୟ ଯଥାଯୋଗ୍ୟ ସଂଯମ ଆଚରଣ କରି, ନିଜର ପ୍ରେମସୁଖକୁ ବଳିଦେଇଥିଲା, ବିଶ୍ୱାସଘାତକ-କର୍ମଚାରୀ-

କନ୍ୟା ଓ ତାର ସଖୀ ରସକଳାର ସୌଭାଗ୍ୟ ପାଇଁ । ଶେଷରେ ପୂର୍ବୋକ୍ତ ସନ୍ୟାସୀ-ଆଶ୍ରମରେ ପାରାଦ୍ୱୀପର ରାଜା ଓ ରାଣୀଙ୍କ ଉପସ୍ଥିତିରେ ଉପନ୍ୟାସର ନାୟକ ଓ ନାୟିକାଙ୍କ ପରିଣୟ ସମ୍ପନ୍ନ ହେଲା । ଉପସ୍ଥିତ ଜନତା ଆନନ୍ଦରେ ଜୟଧ୍ୱନି ଦେଲେ ।

ଏହି ମୁଖ୍ୟ ନାୟକ-ନାୟିକା ଛଡ଼ା ଏହି ଉପନ୍ୟାସଟିରେ ଯେଉଁ କେତୋଟି ଚରିତ୍ର ଭିତରେ ଆମେ ମୌଳିକ କଳ୍ପନା ଦେଖିପାରୁ, ସେମାନଙ୍କ ମଧ୍ୟରେ ଓଡ଼ିଶାର ଦୁର୍ଭିକ୍ଷ-ପୀଡ଼ିତ ଜନତାର ନେତା ଦାସ ଖାଡ଼ଙ୍ଗା ଏକତମ । ନିଜେ କଙ୍କାଳମାତ୍ରାବଶିଷ୍ଟ ଦାସ ଖାଡ଼ଙ୍ଗା ଏକା ଏକା ମରାଠା-ସୁବେଦାରର ପ୍ରାସାଦ, କଟକର ଲାଲବାଗ୍ କୋଠିର ପ୍ରାଙ୍ଗଣରେ ଅକୁତୋଭୟ ଭାବରେ ପ୍ରବଳ-ପରାକ୍ରାନ୍ତ ସୁବେଦାରକୁ ତାଙ୍କର ଦୁର୍ଭିକ୍ଷଗ୍ରସ୍ତ ଜନତା ପ୍ରତି ଦାୟିତ୍ୱ ସମ୍ବନ୍ଧରେ ଏକ ବକ୍ତୃତା ଶୁଣାଇ ସେହିଠାରେ ଟଳିପଡ଼ିଛି । କେବଳ ଓଡ଼ିଆ ସାହିତ୍ୟ ନୁହେଁ, ହୁଏତ ସମଗ୍ର ଆଧୁନିକ ଭାରତୀୟ ସାହିତ୍ୟରେ ଏହି ଦାସ ଖାଡ଼ଙ୍ଗା ବୋଧହୁଏ ହେବ ପ୍ରଥମ ଗଣନେତା ।

ଆଉ ଏକ ଅନନ୍ୟଚରିତ୍ର ହେଉଛି ପୁଣି ମରାଠା କର୍ମଚାରୀ ଡୁମନ ସର୍ଦ୍ଦାର । ସର୍ଦ୍ଦାରଜୀଙ୍କ ଆତ୍ମା ମାନବିକ କାରୁଣ୍ୟରେ ରସବନ୍ତ ଥିଲା । ମରାଠା ଶାସକମାନେ ନିରୀହ ଓଡ଼ିଆ ଜନତା ଉପରେ ଯେଉଁ ଅମାନୁଷିକ ଅତ୍ୟାଚାରସବୁ କରିଚାଲିଥିଲେ, ତାକୁ ଦେଖି ଦେଖି ସର୍ଦ୍ଦାରଙ୍କ ହୃଦୟ ମଥିତ ହୋଇଯାଉଥିଲା ଏବଂ କର୍ମଚାରୀ ଭାବରେ ନିଜ ଦାୟିତ୍ୱ ତୁଲେଇବା ଛଳନାରେହିଁ ସେ ଲୁଚେଇ ଲୁଚେଇ ଓଡ଼ିଆମାନଙ୍କୁ ସହାୟତା କରୁଥିଲେ । 'ବିବାସିନୀ'ର ଏହି ଚରିତ୍ରଟି, ବ୍ରିଟିଶ ରାଜତ୍ୱବେଳେ ଭାରତୀୟମାନଙ୍କ ପ୍ରତି ସହାନୁଭୂତି-ଶୀଳ କତିପୟ ଇଂରେଜ କର୍ମଚାରୀଙ୍କ କଥାହିଁ ସ୍ମରଣ କରାଇଦିଏ ଏବଂ ଓଡ଼ିଶା-ଇତିହାସରେ ମରାଠା-ଶାସନ-ରୂପକ ଏକ କୃଷ୍ଣକୁତ୍ସିତ ଅଧ୍ୟାୟରେ ଏହି ଡୁମନ୍ ସର୍ଦ୍ଦାର ଯେପରି ଏକମାତ୍ର ମାନବିକ ପ୍ରଦୀପ ପରି ଦଣ୍ଡାୟମାନ ।

ରାମଶଙ୍କରଙ୍କ ବିବାସିନୀ ଏପରି ମୂଲ୍ୟବାନ୍ ଓ ତାତ୍ପର୍ଯ୍ୟପୂର୍ଣ୍ଣ ହେଲେହେଁ, ଓଡ଼ିଶାରେ ଜନପ୍ରିୟତା ଯେ ପାଇପାରିନି, ତାର କାରଣ ହେଉଛି – (୧) ଲେଖକ ବହୁଶଃ ସଂସ୍କୃତ-ପ୍ରଭାବିତ ଏକ ପ୍ରାକ୍ତନ ଶୈଳୀରେ ଉପନ୍ୟାସଟି ଲେଖିବାକୁ ଯାଇଛନ୍ତି; (୨) ଗଳ୍ପକଥନ ପାଇଁ ଆଦୌ ପ୍ରୟୋଜନ ନ ଥିଲେ ମଧ୍ୟ ଲେଖକ ମଝିରେ ମଝିରେ ଗଳ୍ପ ବନ୍ଦକରି, ପାଠକ ପ୍ରତି ଲମ୍ବା ଲମ୍ବା ଉପଦେଶାତ୍ମକ ବକ୍ତୃତା ଝାଡ଼ିଛନ୍ତି । କେବଳ ଏହି ଉପନ୍ୟାସ ନୁହେଁ, ତାଙ୍କର ନାଟକାବଳିର ମଧ୍ୟ ଏକତମ ଅଭାବ ହେଲା ତାଙ୍କ ଲିଖନ-ଶୈଳୀର ଏହି ଆଧୁନିକତା । ତାଙ୍କ ରଚନା ଭିତରେ ଅତ୍ରତତ୍ର ସରଳ କଥୋପକଥନ ଦେଖି ମନେହୁଏ ଯେ, ସେ ଏହି ଅନାବଶ୍ୟକ ପ୍ରାକ୍ତନତା ବେଶ୍ ସହଜରେ ପରିହାର କରିପାରିଥାନ୍ତେ ।

**ଆଭିଧାନିକ, ଭାଷାତତ୍ତ୍ୱଜ୍ଞ ଓ ସମାଲୋଚକ**
**ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା (୧୮୬୯-୧୯୨୪) –**

ଓଡ଼ିଆ ସାହିତ୍ୟର ଆଧୁନିକ କାଳରେ ଫକିରମୋହନଙ୍କ ପରେ, ବିଶୁଦ୍ଧ ସାହିତ୍ୟ-ସାଧନାର ଦ୍ୱିତୀୟ ଚରମ ଦୃଷ୍ଟାନ୍ତ ହେଉଛନ୍ତି ପାରଳାଖେମୁଣ୍ଡିର ପଣ୍ଡିତ ଗୋପୀନାଥ ନନ୍ଦ

ଶର୍ମା । ନନ୍ଦ ମହାଶୟ ନିଜ ଜୀବନକାଳରେହିଁ ଏହି ସାରସ୍ୱତସାଧନା ପାଇଁ ଦେଶର ଚତୁର୍ଦ୍ଦିଗରୁ ସମୁଚିତ ଅଭିନନ୍ଦନ ଲାଭକରିଥିଲେ । ଏକ ହାଇସ୍କୁଲର ପଣ୍ଡିତଟିଏ ମାତ୍ର ଥାଇ ମଧ୍ୟ, ନନ୍ଦେ ଯେଉଁ ଉଚ୍ଚ ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣା ଓ ଆଲୋଚନାସବୁ ଛାଡ଼ିଯାଇଛନ୍ତି, ଗୁଣ ଓ ପ୍ରାଚୁର୍ଯ୍ୟରେ ତାହା ପ୍ରକୃତରେ ଗଭୀର ବିସ୍ମୟଦାୟକ । ଇଂରାଜୀ ବା ଅନ୍ୟ କୌଣସି ୟୁରୋପୀୟ ଭାଷା ନଜାଣି ମଧ୍ୟ, ଏହି ପ୍ରାଚୀନକାଳୀନ ସଂସ୍କୃତ ପଣ୍ଡିତ ଏପରି ଉଚ୍ଚକୋଟୀର ସୂକ୍ଷ୍ମ-ବିଚାର-ପ୍ରତିଷ୍ଠା ବିଶ୍ଳେଷଣ ଶକ୍ତି ଦେଖାଇଯାଇଛନ୍ତି; ଯାହା ଯେକୌଣସି ପାଶ୍ଚାତ୍ୟ ପଣ୍ଡିତଜନ ପ୍ରତି ଗୌରବାବହ ହୋଇଥାନ୍ତା । ସାରଳାଦାସଙ୍କ ଓଡ଼ିଆ ମହାଭାରତ ପ୍ରତି ଉତ୍କଳୀୟ ବ୍ରାହ୍ମଣ ପଣ୍ଡିତମଣ୍ଡଳୀର ଅବଜ୍ଞା ଜଣାଶୁଣା କଥା; କିନ୍ତୁ ଉଚ୍ଚକୋଟୀର ସଂସ୍କୃତ ପଣ୍ଡିତ ନନ୍ଦେ ସେହି ଅବହେଳିତ ଓଡ଼ିଆ ଗ୍ରନ୍ଥଟିକୁ ହାତକୁ ନେଇ ସେ ଗ୍ରନ୍ଥର ଏକ ଯୁକ୍ତିଯୁକ୍ତ ଭାଷା-ବିଚାର ଓ ବିଷୟ-ବିଚାର-ପୂର୍ଣ୍ଣ ମୂଲ୍ୟାୟନ ବାଢ଼ିଦେଇଗଲେ । ବ୍ରାହ୍ମଣ-ଅବଜ୍ଞା-ଲାଞ୍ଛିତ ସେହି ଭାଷା-ଗ୍ରନ୍ଥର ଭାଷାଗତ ବର୍ବରତା ଭିତରେ ଏହି ଦ୍ୱିଜୋତ୍ତମ ସୁପଣ୍ଡିତ ଶେଷରେ ଯେ ଶୁଦ୍ଧ ଓଡ଼ିଆ ଭାଷାର୍ ନିଜସ୍ୱ ସୌନ୍ଦର୍ଯ୍ୟ ଆବିଷ୍କାର କରିପାରିଲେ, ସେଥିରେ ତାଙ୍କର ଉଦାର ଅବବୋଧକୁ କିଏ ପ୍ରଶଂସା ନକରିବ ? ସାରଳାଙ୍କ ମହାଭାରତକୁ ସେ ପର୍ବ-ପର୍ବତଃ ମୂଳ ସଂସ୍କୃତ ଓ ଓଡ଼ିଆର ଦୁଇ ପ୍ରତିବେଶିନୀ ବଙ୍ଗଳା ଓ ତେଲୁଗୁ ମହାଭାରତ ସହିତ ତୁଳନା କରି ଭାଷା, ସାମାଜିକ ଚିତ୍ରଣ, ସାହିତ୍ୟିକ ଓ ଧର୍ମୀୟ ମୂଲ୍ୟ ଆଦି ସଂପୃକ୍ତ ସକଳ ବିଭବ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିଯାଇଛନ୍ତି । ପଚାଶବର୍ଷ ପରେ ମଧ୍ୟ ନନ୍ଦଙ୍କ ସାରଳା ମହାଭାରତ ଆଲୋଚନାର ସମକକ୍ଷ ଆଲୋଚନା ଦେଖାଦେଇନାହିଁ । ପ୍ରଥମେ ଏହା 'ଉତ୍କଳ ସାହିତ୍ୟ'ରେ ମାସ-ମାସଧରି ପ୍ରକାଶିତ ହୋଇଥିଲା । ପରେ ଏହା 'ଭାରତଦର୍ପଣ' ନାମ ଧାରଣକରି ପୁସ୍ତକାକାରରେ ପ୍ରକାଶିତ ହୋଇଛି ।

ଜଗନ୍ନାଥ ଦାସଙ୍କ ଭାଗବତ ଉପରେ ମଧ୍ୟ ନନ୍ଦେ ଏହିପରି ଏକ ସମାଲୋଚନା ଗ୍ରନ୍ଥ ଲେଖିଥିଲେ; କିନ୍ତୁ ଏ ଗ୍ରନ୍ଥ ଏପର୍ଯ୍ୟନ୍ତ ବୋଧହୁଏ ପୁସ୍ତକାକାରରେ ପ୍ରକାଶିତ ହୋଇନାହିଁ ।

'ଓଡ଼ିଆ ଭାଷାତତ୍ତ୍ୱ' ନାମକ ବିରାଟ ଗ୍ରନ୍ଥ ନନ୍ଦ ମହାଶୟଙ୍କ ଆଉ ଏକ ମହାନ୍ କୀର୍ତ୍ତି । ଯେଉଁମାନଙ୍କର ମତ ଏ କ୍ଷେତ୍ରରେ ମୂଲ୍ୟବାନ୍ ଏହିପରି ଅଣଓଡ଼ିଆ ପଣ୍ଡିତଜନ, ପଚାଶବର୍ଷ ତଳେ, ଇଂରେଜୀ ନ ଜାଣିଥିବା ଜଣେ ହାଇସ୍କୁଲ ପଣ୍ଡିତ ଏପରି ଏକ ଗ୍ରନ୍ଥ କିପରି ଯେ ଲେଖିଲେ, ତାହା ଏହି ଲେଖକ ଆଗରେ ବିସ୍ମୟର ସହିତ ପ୍ରକାଶ କରିଅଛନ୍ତି । ନନ୍ଦଙ୍କ 'ଓଡ଼ିଆ ଭାଷାତତ୍ତ୍ୱ' ପରି ଗ୍ରନ୍ଥ ହୁଏତ ସମଗ୍ର ଭାରତୀୟ ସାହିତ୍ୟରେ ଅନନ୍ୟ ହୋଇପାରେ ବା ଅଳ୍ପ କେତୋଟି ଭିତରୁ ଏକତମ । ଓଡ଼ିଆ ଭାଷାର ଶବ୍ଦାବଳିର ସମସ୍ତ ଗାଠନିକ-ବିଚାର-ସମ୍ୱଳିତ ଏହି ଗ୍ରନ୍ଥ ଏକ ସହସ୍ର ପୃଷ୍ଠାର ଏକ ବିରାଟ ସିଦ୍ଧି ।

ଓଡ଼ିଆ ଭାଷାର ପ୍ରଥମ ବ୍ୟୁତ୍ପତ୍ତିମୂଳକ ଅଭିଧାନ 'ଶବ୍ଦତତ୍ତ୍ୱବୋଧ' ସଙ୍କଳନ କରିବାର ଗୌରବ ମଧ୍ୟ ପଣ୍ଡିତ ନନ୍ଦ ଶର୍ମାଙ୍କର । ନନ୍ଦଙ୍କ ଅଭିଧାନ ପୂର୍ବରୁ ଓଡ଼ିଆରେ ଯେଉଁ କେତୋଟି ଅଭିଧାନ ପ୍ରକାଶିତ ହୋଇଥିଲା, ସେସବୁ ଥିଲା ମୁଖ୍ୟତଃ ଲୋକେ ସାଧାରଣତଃ କେବେ ବ୍ୟବହାର କରୁନଥିବା ଗୁଡ଼ାଏ ସଂସ୍କୃତ, ତଦ୍ଭବ ଓ ତତ୍ସମ ଶବ୍ଦମାନଙ୍କର ତାଲିକା ।

ନନ୍ଦ ଶର୍ମା ହେଉଛନ୍ତି ପ୍ରଥମ ଲୋକ ଯେ କି ଖାଣ୍ଟି ଦେଶଜ ଓଡ଼ିଆ ଶବ୍ଦାବଳି ପାଇଁ ସମଗ୍ର ସାହିତ୍ୟ ମନ୍ଥନ କଲେ କେବଳ ନୁହେଁ, ଉତ୍କଳ ଦେଶର ବିଭିନ୍ନ ପ୍ରାନ୍ତରେ ଲୋକ ମୁଖର ଭାଷାକୁ ମଧ ଖୋଜି ଓ ସେପ୍ରକାର ସଂଗୃହୀତ ଶବ୍ଦମାନଙ୍କୁ ଆଭିଜାତ୍ୟ ଦାନାର୍ଥେ ପ୍ରାଚୀନ ଓ ଆଧୁନିକ ସାହିତ୍ୟରୁ ଯଥାଯୋଗ୍ୟ ଶିଷ୍ଟପ୍ରୟୋଗମାନ ଉଦ୍ଧାର କରି ଏକ ଅପୂର୍ବ ଶବ୍ଦତତ୍ତ୍ୱବୋଧ ଅଭିଧାନ ଜାତି ଆଗରେ ଥୋଇଦେଇଗଲେ ।

ଏ ପ୍ରକାର କ୍ରାନ୍ତିକାରୀ ସାରସ୍ୱତ-ସାଧନାସବୁର ବ୍ୟବଧାନବେଳେ ପଣ୍ଡିତୋତ୍ତମ ନନ୍ଦେ ବୌଦ୍ଧିକ ବିନୋଦନ ଭାବରେ ସଂସ୍କୃତ କାବ୍ୟ ନାଟକମାନଙ୍କୁ ଓଡ଼ିଆରେ ଅନୁବାଦ କରୁଥିଲେ । ଏହି ଅନୁବାଦ କର୍ମରେ ମଧ ନନ୍ଦେ ନିଜର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱର ଗଭୀର ମୁଦ୍ରା ଛାଡ଼ିଯାଇଛନ୍ତି । ନନ୍ଦେ ଓଡ଼ିଆ ଅନୁବାଦମାନଙ୍କରେ ସଂସ୍କୃତଗ୍ରନ୍ଥମାନଙ୍କରେ ଥିବା ଶ୍ଳୋକାବଳିକୁ ସେମାନଙ୍କର ମୌଳିକ ଛନ୍ଦକୁ ଅକ୍ଷୁଣ୍ଣ ରଖିହିଁ ଅନୁବାଦ କରିଚାଲିଛନ୍ତି । ପରେ ସଂସ୍କୃତ ଗୁରୁ-ଲଘୁ ନିୟମରେ ଓଡ଼ିଆରେ ଯାହା କିଛି ପଦ୍ୟ ଲେଖାଯାଇଛି, ତାର ପ୍ରେରଣା ଆସିଛି ପ୍ରକୃତରେ ପଣ୍ଡିତ ନନ୍ଦ ଶର୍ମାଙ୍କ ନାଟକାବଳିରେ ଓଡ଼ିଆ ଶ୍ଳୋକାବଳିର ଅଦ୍ଭୁତ କୃତ-କୃତ୍ୟତା ଯୋଗୁଁ ।

କୌଣସି ହେଲେ ମାନ-ସମ୍ମାନ ବା ପୁରସ୍କାର ପ୍ରତି ଆଖି ନରଖି, ଜ୍ଞାନତପସ୍ୱୀ ନନ୍ଦ ଶର୍ମା ଏହିପରି ଗୋଟିକ ପରେ ଗୋଟିଏ କରି ମହାନ୍ ସାରସ୍ୱତ ସାଧନା ପାଇଁ ଦେଶର ସର୍ବଶ୍ରେଣୀର ବୁଦ୍ଧିଜୀବୀମାନଙ୍କଠାରୁ ସ୍ତବ ସ୍ତୁତି ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା । ଇହଧାମ ତ୍ୟାଗ କଲାବେଳକୁ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ବିତ୍ତଶାଳୀ ଲୋକ ହୋଇ-ଯାଇନଥିଲେ; କିନ୍ତୁ ସେ ବିଦାୟ ନେଇଛନ୍ତି ସମଗ୍ର ଜାତିର ଯଥାଯୋଗ୍ୟ ସମ୍ମାନ ସ୍କନ୍ଧଦେଶରେ ବହନକରି ।

**ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ** (୧୮୬୬-୧୯୦୯) –

ଗୋପୀନାଥ ନନ୍ଦ ଶର୍ମାଙ୍କ ସମସାମୟିକ ଓ ଏକଦା ପାରଳାଖେମୁଣ୍ଡିର ସହ-ନାଗରିକ ଶ୍ୟାମସୁନ୍ଦର ରାଜଗୁରୁ, ଉତ୍କଳରେ ଛନ୍ଦାଲୋଚନାର ଅଗ୍ରଗାମୀ ସୂରି । ପ୍ରାଚୀନ ଓଡ଼ିଆ କବିମାନଙ୍କର ଜୀବନୀ ଆଲୋଚନା କରିବା ଓ ସେହି ଆଲୋଚନାକୁ ସଂପୃକ୍ତ କରି ସେମାନଙ୍କର କାବ୍ୟାଲୋଚନା ଉପରେ ଆଲୋକପାତ କରିବାରେ ମଧ ରାଜଗୁରୁ ଅଗ୍ରଣୀ । ରାଜଗୁରୁ ଅଳ୍ପ ବୟସରେ ଇହଧାମ ତ୍ୟାଗ କରିବା ଫଳରେ ଓଡ଼ିଆ-ସାହିତ୍ୟର ପ୍ରକୃତରେ ଘୋର କ୍ଷତି ହୋଇଛି କହିବାକୁ ହେବ । ରାଜଗୁରୁଙ୍କ 'ପ୍ରବନ୍ଧାବଳି' ଅନାଧୁନିକତା-ଦୋଷ-ଦୁଷ୍ଟ ହୋଇ ମଧ ମୂଲ୍ୟବାନ୍ ରହିଛି ।

**ପଣ୍ଡିତ ମୃତ୍ୟୁଞ୍ଜୟ ରଥ** (୧୮୭୮-୧୯୨୩) –

ପଣ୍ଡିତ ଗୋପୀନାଥ ନନ୍ଦ ଯାହା ଲେଖୁଥିଲେ, ସେଥିରେ ତାଙ୍କର ପାଣ୍ଡିତ୍ୟ ଫୁଟିଉଠୁଥିଲା । ତାଙ୍କର ସମସାମୟିକ ପଣ୍ଡିତ ମୃତ୍ୟୁଞ୍ଜୟ ରଥେ ସଂସ୍କୃତ-କାବ୍ୟତୀର୍ଥ ପରୀକ୍ଷାରେ ତତ୍କାଳୀନ ସମଗ୍ର ବିହାର-ଓଡ଼ିଶା ପ୍ରଦେଶରେ ପ୍ରଥମ ସ୍ଥାନ ଅଧିକାର କରି

ନିଜର ବିଚକ୍ଷଣତା ପ୍ରତିଷ୍ଠିତ କରିଥିଲେ ମଧ; ତାଙ୍କର ରଚନାର ସାରଲ୍ୟ ଲେଖକଙ୍କର ପାଣ୍ଡିତ୍ୟର କୌଣସି ସୂଚନା ଦିଏନାହିଁ । ଜଣେ ସଂସ୍କୃତ ପଣ୍ଡିତପକ୍ଷରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଓଡ଼ିଆ ଗଦ୍ୟଶୈଳୀ ପ୍ରକୃତରେ ଅସମ୍ଭବ ରକମର ସରଳ, ସଂଯତ, ଅନାଡ଼ମ୍ବର ଓ ଯଥାର୍ଥ । ପଣ୍ଡିତ ରଥେ କାଳିଦାସଙ୍କ କୁମାରସମ୍ଭବ କାବ୍ୟ ଓ ବହୁ ପ୍ରସିଦ୍ଧ ସଂସ୍କୃତ ନାଟକ ଓଡ଼ିଆରେ ଅନୁବାଦ କରିଯାଇଛନ୍ତି; କିନ୍ତୁ ଓଡ଼ିଆ ସାହିତ୍ୟକୁ ତାଙ୍କର ବିଶିଷ୍ଟ ଦାନ ହେଉଛି, ସାରଳାଦାସଙ୍କ ସହିତ ବହୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ କବିମାନଙ୍କର ଜୀବନୀ-ସମ୍ବଳିତ ଯେଉଁ ସମାଲୋଚନା ସବୁ ସେ ଲେଖିଯାଇଛନ୍ତି, ସେଗୁଡ଼ିକର ପ୍ରସାଦଗୁଣସମ୍ପନ୍ନ ଶୈଳୀ । ତାଙ୍କର 'ନାରୀଦର୍ପଣ' ମଧ ଏହି କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇରହିଛି । ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ରଚନାକ୍ଷମତା ଶିଖର ସ୍ପର୍ଶ କରୁଥିଲାବେଳେହିଁ ତାଙ୍କର ପ୍ରାଣତ୍ୟାଗ, ଓଡ଼ିଆ ସାହିତ୍ୟ ପକ୍ଷରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମୃତ୍ୟୁ ପରି ଏକ ଅପୂରଣୀୟ କ୍ଷତି ହୋଇ ରହିଛି ।

**ହାସ୍ୟରସିକ, 'ଭାଷାକୋଷ'-ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ** (୧୮୭୪-୧୯୪୬)

ଓଡ଼ିଆ ସାହିତ୍ୟର ଆଧୁନିକ କାଳରେ ଗୋପାଳଚନ୍ଦ୍ର ପ୍ରହରାଜ ଗଦ୍ୟ-ରାଜ୍ୟର ଶ୍ରେଷ୍ଠ ସାଟାୟାରିଷ୍ଟ ବୋଲି ଧରାଯିବା କଥା । ଉତ୍ତରାଧିକାରରେ ଜମିଦାର ଓ ବ୍ୟବସାୟରେ ଓକିଲ ହୋଇଥିବାଯୋଗୁଁ ପ୍ରହରାଜେ ସ୍ୱଚ୍ଛନ୍ଦ ଜୀବନଯାପନ କରିଥିଲେ । ଲେଖିବାର ପ୍ରେରଣା ସେ ବିଶେଷ ଭାବରେ ପାଇଥିଲେ ବୋଧହୁଏ ତାଙ୍କ ବନ୍ଧୁ ବିଶ୍ୱନାଥ କରଙ୍କ ପାଖରୁ । କର ମହାଶୟ ପ୍ରହରାଜଙ୍କଠାରୁ ମାସ-ମାସଧରି ଆଦାୟ କରି ନେଉଥିଲେ, ତାଙ୍କ ମାସିକପତ୍ର 'ଉତ୍କଳ ସାହିତ୍ୟ'କୁ ରସୋତ୍ତୀର୍ଣ୍ଣ କରିବା ଲକ୍ଷ୍ୟରେ, ସମସାମୟିକ ସାମାଜିକ ସମସ୍ୟାମାନଙ୍କ ଉପରେ ପ୍ରହରାଜଙ୍କ ପରିହାସ-ରଞ୍ଜିତ ଆଲୋଚନା । ପ୍ରହରାଜଙ୍କ ଅଧିକାଂଶ ରଚନା ଏହିପରି ଭାବରେ ଏବେ ବି ପତ୍ରପତ୍ରିକାର ପୃଷ୍ଠା ମାନଙ୍କରେ ବିକ୍ଷିପ୍ତ ହୋଇ ପଡ଼ିରହିଛି । ଯେଉଁ ତିନୋଟି ଗ୍ରନ୍ଥରେ ସଙ୍ଗତି ରକ୍ଷାକରି ସେଗୁଡ଼ିକୁ ପ୍ରକାଶ କରାଯାଇଛି, ସେଥିରୁ ପ୍ରତ୍ୟେକଟି ପ୍ରହରାଜଙ୍କ ସୂକ୍ଷ୍ମାବଲୋକନ ଓ ବଳିଷ୍ଠ ସ୍ୱକୀୟ ପ୍ରକାଶ କ୍ଷମତା ଧରି ଦଣ୍ଡାୟମାନ । ସେହି ତିନୋଟି ହେଉଛନ୍ତି 'ବାଇମହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା', 'ନନାଙ୍କ ବସ୍ତାନି' । ଏକାନ୍ତଭାବରେ ସମସାମୟିକ କାଳକୁ ଅନାଇଁ ଲେଖାଯାଇଥିବାରୁ ଏ ପୁସ୍ତକଗୁଡ଼ିକର ଉପଭୋଗ୍ୟତା ଅନେକ ପରିମାଣରେ ଉଭେଇଗଲାଣି; ତଥାପି କେତେ କେତେ ଅଂଶର ରସାସ୍ୱାଦନ ଚିରସ୍ଥାୟୀ ରହିପାରେ । ପ୍ରହରାଜଙ୍କର ଓଡ଼ିଆ ସାହିତ୍ୟକୁ ଅମରଦାନ କିନ୍ତୁ ଶ୍ରୀ ବାଇ ମହାନ୍ତି । ପ୍ରହରାଜଙ୍କର କଳ୍ପନାପ୍ରସୂତ ଏହି ପ୍ରାଚୀନକାଳୀନ ମନୁଷ୍ୟଟିର ଆଧୁନିକ ସମାଜର ଢଙ୍ଗଢାଙ୍ଗ ଓ ରୀତିନୀତି ଉପରେ ନିର୍ଭୀକ ମନ୍ତବ୍ୟାବଳି ଅତ୍ୟନ୍ତ ଉପଭୋଗ୍ୟ । ପ୍ରହରାଜଙ୍କ ବାଇ ମହାନ୍ତି ଓଡ଼ିଆ ସାହିତ୍ୟର ସର୍ ରୋଜର୍ ଡିକ୍‌ଭର୍ଲି ।

ପ୍ରହରାଜଙ୍କ ଗଦ୍ୟଶୈଳୀର ସାବଲୀଳତା ସମଗ୍ର ଓଡ଼ିଆ ସାହିତ୍ୟରେ ଅନୁପମ । ଏପ୍ରକାର ସ୍ୱାଭାବିକ ପ୍ରବହମାନତା ଅନ୍ୟ କାହାରି ଗଦ୍ୟ-ରଚନାରେ ଦେଖାଯାଏ ନାହିଁ । ଏହି

ଗୁଣରୁ ପ୍ରହରାଜେ ଗଦ୍ୟ-ରାଜ୍ୟରେ ଫକିରମୋହନଙ୍କର ସ୍ୱାଭାବିକ ଉତ୍ତରାଧିକାରୀ ହୋଇଉଠିଥିଲେ । ସେ ଲେଖୁଥିଲେ; କିନ୍ତୁ ସେହି ଓଡ଼ିଆଭାଷା ଯାହା ତାଙ୍କ ଜନ୍ମସ୍ଥଳୀ, କଟକ ଜିଲ୍ଲାରେ ବିଶେଷଭାବରେ କଥିତ । ବ୍ୟବସାୟରେ ଓକିଲ ଥିବାରେ ସେଥିରେ, କଚେରିଆ-ପ୍ରବଚନସବୁର ପ୍ରାଚୁର୍ଯ୍ୟ ବି ବେଶ୍ ଥିଲା । ମୋଟଉପରେ ପ୍ରହରାଜଙ୍କ ଶୈଳୀ କିନ୍ତୁ ଥିଲା ଜୀବନ୍ତ, ପରିହାସ-ଉପହାସ ଘେନି ସରସ ଓ ଚତୁର ତର୍କ ଘେନି ଅତ୍ୟନ୍ତ ଉପଭୋଗ୍ୟ ।

ଜୀବନର ଶେଷ ପାଦରେ ପ୍ରହରାଜେ ବିରାଟାକାର ସାତ-ଖଣ୍ଡ-ସମ୍ପୂର୍ଣ୍ଣ, ଚାତୁର୍ଭାଷିକ ଏକ ଓଡ଼ିଆ ଅଭିଧାନ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ସଙ୍କଳନ କରିବାରେ ମନୋନିବେଶ କରିଥିଲେ । ଏହା ଅତ୍ୟନ୍ତ ମୂଲ୍ୟବାନ୍ ଓ ଅର୍ଥବାନ୍ ହୋଇଉଠିଛି ।

ଜୀବନର ଆଦ୍ୟପାଦରେ ପ୍ରହରାଜେ ଯେଉଁ ଉତ୍କଳକାହାଣୀ ଓ ଓଡ଼ିଆ-ପ୍ରବଚନ ପ୍ରହେଳିକାବଳି ସଂଗ୍ରହ କରିଥିଲେ, ସେସବୁ ମଧ୍ୟ ତାଙ୍କର ଜାତିକୁ ଏକ ଏକ ମହତ୍ ଦାନ । ପ୍ରହରାଜେ ଏ କ୍ଷେତ୍ରରେ ଅଗ୍ରଣୀ କେବଳ ନୁହନ୍ତି, ତାଙ୍କର ଏ ପ୍ରକାର ସଂଗ୍ରହ ସବୁ ଏପର୍ଯ୍ୟନ୍ତ ଶ୍ରେଷ୍ଠ ମଧ୍ୟ ରହିଛନ୍ତି ।

### ଦୁଇଜଣ ମହାନ୍ ସମ୍ପାଦକ –

କବି ଓ ଶିଳ୍ପୀ ଦରକାର କରନ୍ତି ପ୍ରଚାରକ । ଯୁଗେ ଯୁଗେ ଏମାନେ ଧରାଧରି ହୋଇ ଆସିଥାନ୍ତି ବୋଲି ମନେହୁଅନ୍ତି । ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର କବି ଓ ଲେଖକମାନେ ଏହି ପ୍ରକାର ଦୁଇଟି ପ୍ରଚାରକଙ୍କ ନିକଟରେ ବିଶେଷଭାବରେ ଋଣୀ । ଏମାନଙ୍କର ନିଜର କୌଣସି ସାହିତ୍ୟିକ ଅହମିକା ନଥିଲା । ଏମାନଙ୍କର ଜୀବନ-ବ୍ରତ ଥିଲା ନୂତନ କବି-ଲେଖକମାନଙ୍କୁ ବାହାରକୁ ଆଣିବା ଓ ସେମାନଙ୍କ ରଚନାବଳିକୁ ସାଧାରଣ ପାଠକ ସମ୍ମୁଖରେ ଥୋଇବା । ଏ ଦୁହେଁ ହେଲେ ଶ୍ରୀ ବିଶ୍ୱନାଥ କର ଓ ଶ୍ରୀ ନୀଳମଣି ବିଦ୍ୟାରତ୍ନ ।*

---

* ଓଡ଼ିଆ ସମ୍ପାଦକମାନଙ୍କ ମଧ୍ୟରେ ଅନ୍ୟମାନଙ୍କ ନାମ ଅର୍ଥାତ୍ ଗୌରୀଶଙ୍କର, ବ୍ରଜସୁନ୍ଦର ଇତ୍ୟାଦିଙ୍କ ନାମ ନଥିବାରୁ କେତେକ ବନ୍ଧୁ ଇଂରାଜୀ 'ଓଡ଼ିଆ ସାହିତ୍ୟ ଇତିହାସ'ର ତାହା ଏକ ଅକ୍ଷମଣୀୟ ତ୍ରୁଟିରୂପେ କୁତ୍ସା ବର୍ଷଣ କରିଛନ୍ତି; କିନ୍ତୁ ମନେରଖିବାକୁ ହେବ ଯେ, କବି ଓ ଔପନ୍ୟାସିକ ପରି ଉତ୍ତମ ସମ୍ପାଦକ ହେବା ମଧ୍ୟ ସହଜାତ ପ୍ରତିଭା ଉପରେ ନିର୍ଭର କରେ । ଘଟଣାଚକ୍ରରେ ଦୈନିକ ବା ମାସିକର ଦାୟିତ୍ୱଟା ହାତକୁ ଆସିଗଲେ ସମ୍ପାଦକର ବରେଣ୍ୟ ସମ୍ମାନ କେହି ପାଇଯିବ, କେବଳ ମୂଲ୍ୟବୋଧହୀନ ଅଜ୍ଞେ ଭାବିପାରନ୍ତି । ଗୌରୀଶଙ୍କର ବା ବ୍ରଜସୁନ୍ଦରଙ୍କ ପ୍ରତି ଲେଖକର ବ୍ୟକ୍ତିଗତ ସମ୍ମାନ ଅନ୍ୟ କୌଣସି ଓଡ଼ିଆ ଅପେକ୍ଷା କମ୍ ନୁହେଁ । ବ୍ରଜସୁନ୍ଦର ବାବୁଙ୍କ 'ମୁକୁର'ରେ ଅନେକ ଭଲ ଜିନିଷ ବାହାରିଛି । ଯେତେବେଳେ ଲେଖକ ଥାଆନ୍ତି, ସେତେବେଳେ ଯେକୌଣସି ପତ୍ରିକାରେ ଭଲ ଲେଖା ବାହାରିବ; କିନ୍ତୁ ତାର ଅର୍ଥ ନୁହେଁ ଯେ ସମ୍ପାଦକ ଜଣେ ବରେଣ୍ୟ ସମ୍ପାଦକ । ସମ୍ବାଦପତ୍ର ସମ୍ପାଦକ ଭାବରେ ଶଶିଭୂଷଣ ରଥ ଓ ସାହିତ୍ୟପତ୍ର ସମ୍ପାଦକ ଭାବରେ ବିଦ୍ୟାରତ୍ନ ଓ ବିଶ୍ୱନାଥ କରଙ୍କୁ ଓଡ଼ିଶାର ପତ୍ରପତ୍ରିକା-ଜଗତରେ ଶ୍ରେଷ୍ଠ ବୋଲି ଏ ଲେଖକ ମନେକରେ; କାରଣ ତାର ନିଜର ସମ୍ପାଦକ ଅଭିଜ୍ଞତା ଅଛି ଓ ସେ ଉଚ୍ଚ ଦରର ସମ୍ପାଦକମାନଙ୍କ ସମ୍ପର୍କରେ ଆସିଛି । ଓଡ଼ିଶାର ସବୁ ସମ୍ପାଦକଙ୍କ ଭିତରେ ଲେଖକ ତେଣୁ ଏହି କେତେଜଣଙ୍କୁ ସାଲ୍ୟୁଟ୍ ଦେଇଛି ।

ମାସିକପତ୍ର 'ଉତ୍କଳ-ସାହିତ୍ୟ'ର ସମ୍ପାଦକ ଭାବରେ ଶ୍ରୀ ବିଶ୍ୱନାଥ କର (୧୮୬୪-୧୯୩୪) ଓଡ଼ିଶାର ତିନିପୁରୁଷର ସାହିତ୍ୟିକଙ୍କର ହୋଇଉଠିଲେ ବନ୍ଧୁ ଓ ଦିଗ୍‌ଦର୍ଶକ ଓ ପ୍ରଚାରକ । ଅତି ସମ୍ଭ୍ରାନ୍ତ ବ୍ରାହ୍ମଣକୁଳରେ ଜାତହୋଇଥିଲେହେଁ, ଯୁକ୍ତିବାଦୀ ବିଶ୍ୱନାଥ, ମଧୁସୂଦନ ରାଓଙ୍କ ପୁଣ୍ୟ ସମ୍ପର୍କରେ ଆସି ଜୀବନାରମ୍ଭରେ ନିଜର କୌଳିକ ହିନ୍ଦୁଧର୍ମ ଛାଡ଼ି ବ୍ରାହ୍ମଧର୍ମ ଗ୍ରହଣ କଲେ ଓ ବହୁବର୍ଷଧରି ନିଜର ସତ୍ୟ-ବୋଧ ପାଇଁ, ସାମାଜିକ ବିବାଦ ଓ ଦାରିଦ୍ର୍ୟର ସମ୍ମୁଖୀନ ହେଲେ । ବିଶ୍ୱନାଥ କିନ୍ତୁ ସାରା ଜୀବନ ତାଙ୍କର ଏହି ଭୟହୀନ ବିଚାରଶକ୍ତିକୁ ବଞ୍ଚାଇ ରଖିଥିଲେ । ବ୍ୟକ୍ତିନିର୍ବିଶେଷରେ ସେ ଯାହା ସତ୍ୟ ତାହା ପ୍ରକାଶ କରିବାକୁ ଛାଡୁନଥିଲେ । ରାଧାନାଥ ରାୟଙ୍କ ବିରୁଦ୍ଧରେ ତାଙ୍କର କଠୋର ମନ୍ତବ୍ୟ ପ୍ରାଚୀନ ଉତ୍କଳସାହିତ୍ୟର ପୃଷ୍ଠାରେ ଆଜି ବି ଦ୍ରଷ୍ଟବ୍ୟ; କିନ୍ତୁ ଉତ୍କଳସାହିତ୍ୟ 'ସମ୍ପାଦକୀୟ'ରେ ପ୍ରକାଶିତ ବିଶ୍ୱନାଥଙ୍କ ଅକୁତୋଭୟ କଠୋର ମନ୍ତବ୍ୟ ଓ ଆକ୍ରମଣାଦି, ଠିକ୍ ସେହି କାରଣରୁହିଁ, ସମଗ୍ର ଉତ୍କଳରେ ପଠିତ, ଆଦୃତ ଓ ସମ୍ମାନିତ ହେଉଥିଲା । ତାଙ୍କର ଗଦ୍ୟଶୈଳୀ ଥିଲା ନିରଳଂକୃତ, ତର୍କସିଦ୍ଧ, ସ୍ୱଚ୍ଛ ଓ ବଳବାନ୍ । ସେଥିରେ କୌଣସି ପ୍ରୟାସର ଚିହ୍ନ ନଥିଲା । ତାଙ୍କ ଲେଖନୀରୁ ଆମେ କେବଳ ଖଣ୍ଡିଏ ମାତ୍ର ପୁସ୍ତିକା 'ବିବିଧ ପ୍ରବନ୍ଧ' ପାଇଛୁ; କିନ୍ତୁ ସେଥିରେ ଆମେ ଚିନ୍ତାଉଦ୍ରେକକାରୀ ଏପରି କେତୋଟି ପ୍ରବନ୍ଧ ପାଉଁ, ଯାହା ସମଗ୍ର ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେନା । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କବିତାକୁ ନେଇ ଯାହା କିଛି ବାଦାନୁବାଦ, ବିଶ୍ୱନାଥଙ୍କ ତତ୍‌ସଂପୃକ୍ତ ପ୍ରବନ୍ଧ ସେସବୁର ଶେଷ ନିଷ୍ପତ୍ତି କହିଲେ ଚଳେ । ତା'ପରେ ବି ଭଞ୍ଜଙ୍କୁ ନେଇ ଚିତ୍କାର, ଲମ୍ଫଝମ୍ଫ ଓ ଅବାନ୍ତର ବଚନବୃଷ୍ଟି, କେବଳ ମତାନ୍ଧତା ଓ କୁସଂସ୍କାରଗ୍ରସ୍ତତାହିଁ ସୂଚନା କରେ; ସାହିତ୍ୟିକ ମୂଲ୍ୟବୋଧ ବା ଜାତୀୟତା ନୁହେଁ । ବିଶ୍ୱନାଥ ଥିଲେ ରାଧାନାଥ, ମଧୁସୂଦନଙ୍କର ଏକାଧାରରେ ବନ୍ଧୁ, ସମାଲୋଚକ ଓ ପ୍ରକାଶକ । ସେ ଏହି କାଳର ସକଳ ମୁଖ୍ୟ ଓଡ଼ିଆ କବି ଓ ଲେଖକଙ୍କର ମଧ ଥିଲେ ବନ୍ଧୁ, ସମର୍ଥକ ଓ ସମାଲୋଚକ । ପ୍ରାୟ ପଚାଶବର୍ଷ କାଳ ବିଶ୍ୱନାଥ ଥିଲେ ଓଡ଼ିଆ ସାହିତ୍ୟର କେନ୍ଦ୍ରବିନ୍ଦୁ । ତାଙ୍କର 'ଉତ୍କଳ ସାହିତ୍ୟ' ଏପରି ସମ୍ମାନିତ ପତ୍ରିକା ଥିଲା ଓ ତାଙ୍କର ମୂଲ୍ୟବୋଧର ମାନଦଣ୍ଡରେ ଲୋକଙ୍କର ଏପରି ବିଶ୍ୱାସ ଥିଲା ଯେ, କୌଣସି ତରୁଣ ଲେଖକର କବିତାଟିଏ ବା ଗଳ୍ପଟିଏ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇପାରିଲେ, କେବଳ ତାହାହିଁ ଧରାଯାଉଥିଲା ମହତ୍ ସାର୍ଟିଫିକେଟ ଓ ସମ୍ମାନ; ଯାହାପାଇଁ ଲାଳାୟିତ ଥିଲେ ବହୁ; କିନ୍ତୁ ପାଉଥିଲେ କେବଳ ସେହି, ଯିଏ ଥିଲେ ପ୍ରକୃତ ଶକ୍ତିମାନ୍ ।

ସମ୍ପାଦକ ବିଶ୍ୱନାଥ ଥିଲେ ଏକ ଶକ୍ତିଶାଳୀ ବାଗ୍ମୀ । ସେ ଥିଲେ ସଂସ୍କାରକ ଓ ସମାଜରେ ସ୍ତ୍ରୀସ୍ୱାଧୀନତାର ଅଗ୍ରଗ ପୃଷ୍ଠପୋଷକ । ତାଙ୍କର କନ୍ୟାମାନେ ଓଡ଼ିଶାର ପ୍ରଥମ ବାଳିକା ଗ୍ରାଜୁଏଟ୍‌ମାନଙ୍କ ଭିତରେ ଗଣାହେବେ । ସେମାନଙ୍କ ଭିତରୁ ଶ୍ରୀମତୀ ସୁପ୍ରଭା ଓ ପ୍ରତିଭା କର ଲେଖିକା ଭାବରେ ମଧ ସୁନାମ ଅର୍ଜନ କରିଛନ୍ତି ।

**ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (୧୮୬୭-୧୯୨୪) –**

ନୀଳମଣି ଜୀବନ ଆରମ୍ଭ କରିଥିଲେ ଏକ ପ୍ରାଇମେରୀ ଶିକ୍ଷକ ଭାବରେ; କିନ୍ତୁ ଛିନ୍ନ-ବିଚ୍ଛିନ୍ନ ଓଡ଼ିଆ ଜାତି ଆଜି ଯେ ନିଜର ଏକ ସ୍ୱତନ୍ତ୍ର ରାଜ୍ୟରେ ବାସକରୁଛନ୍ତି, ଏହି ପରିଣତିର ସୁଦୂର ଆରମ୍ଭ ଆମେ ଖୋଜି ଖୋଜି ଯାଇ ପାଇବା ବଡ଼ମ୍ବା ଗୋପୀନାଥପୁର ଦରିଦ୍ର ପ୍ରାଇମେରୀ-ସ୍କୁଲ ହେଡ଼ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କଠାରେ । ପ୍ରଚାର-ମୂଳକ ଏହି ଯୁଗ ଓ ଅକୃତଜ୍ଞ ଏହି ଓଡ଼ିଆ ଜାତି ନିକଟରୁ ବିଦ୍ୟାରତ୍ନେ ଏପର୍ଯ୍ୟନ୍ତ ଯଥୋଚିତ ସମ୍ମାନ ପାଇପାରିନାହାନ୍ତି, ସେଥିରେ ବିସ୍ମିତ ହେବାର କିଛି ନାହିଁ । ବଡ଼ମ୍ବାରୁ ବିଦ୍ୟାରତ୍ନେ ଚାକିରିର ଅଧିକ ସ୍ୱାଚ୍ଛନ୍ଦ୍ୟ ଖୋଜିହିଁ ବାମଣ୍ଡା ଚାଲିଯାଇଥିଲେ । ସେଠି ଗୁଣୀ ଓ ଗୁଣଗ୍ରାହୀ ସୁଢ଼ଳ ସଚ୍ଚିଦାନନ୍ଦଙ୍କ ସହାୟତା ଓ ସାହଚର୍ଯ୍ୟରେ ବିଦ୍ୟାରତ୍ନ ବାମଣ୍ଡା ଦରବାରରୁ ହିଁ ପ୍ରକାଶିତ 'ସମ୍ବଲପୁର-ହିତୈଷିଣୀ'ର ସମ୍ପାଦକ ହେଲେ । ବିଦ୍ୟାରତ୍ନ ଓ ବିଦ୍ୟାରତ୍ନଙ୍କ ହିତୈଷିଣୀକୁ ବରେଣ୍ୟ କବି ମେହେର ଯେଉଁ ଯଶୋଭୂଷିତ ଅମରତ୍ୱ ଦେଇଯାଇଛନ୍ତି, ତାହା ଓଡ଼ିଶାର ଅନ୍ୟ କୌଣସି ସମ୍ବାଦପତ୍ର ବା ସମ୍ପାଦକଙ୍କ ଭାଗ୍ୟରେ ଘଟିନାହିଁ । ସମ୍ବଲପୁର-ହିତୈଷିଣୀର ସମ୍ପାଦକ ଭାବରେ ପ୍ରାଇମେରୀ ଶିକ୍ଷକ ବିଦ୍ୟାରତ୍ନେ ଓଡ଼ିଶାର ପତ୍ରିକାପରିଚାଳନାକୁ ପ୍ରଥମ କରି ଗୌରବାନ୍ୱିତ, ପ୍ରତିଭାନ୍ୱିତ ଓ ଜାତିଗଠନର ପ୍ରତ୍ୟକ୍ଷ ବାହକ କରି ଥୋଇଲେ । 'ସମ୍ବଲପୁର-ହିତୈଷିଣୀ'ର ମାଧ୍ୟମରେ ବିଦ୍ୟାରତ୍ନେ ସେତେବେଳର ଛିନ୍ନଛତ୍ର ଅବସ୍ଥାରେ ଥିବା ସମଗ୍ର ଗଡ଼ଜାତ ଅଞ୍ଚଳ ଓ ବିଶେଷକରି ପଶ୍ଚିମ-ଓଡ଼ିଶାରେ ଓଡ଼ିଆ-ଜାତୀୟତାକୁ ଯେପରି ବଞ୍ଚାଇରଖିଥିଲେ, ତାହାର ତୁଳନା ନାହିଁ । ଏହି ସମ୍ବଲପୁର-ହିତୈଷିଣୀ ସମ୍ପାଦକ ଭାବରେହିଁ ବିଦ୍ୟାରତ୍ନେ ଅଜ୍ଞାତ ବରପାଲୀ ଗ୍ରାମର ଅଜ୍ଞାତ ପ୍ରତିଭା ମେହେର-କବିଙ୍କୁ ଆଲୋକକୁ ଭିଡ଼ିଆଣିଲେ ଓ ଦରିଦ୍ର କବିଙ୍କ ପ୍ରାଥମିକ ରଚନାସବୁ ପ୍ରକାଶିତ ହେବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ମେହେର-ପ୍ରତିଭା ଯେ ତାଙ୍କର ଗୁଣଗ୍ରାହୀ ସମ୍ପାଦକ-ବନ୍ଧୁଙ୍କ ଲକ୍ଷ୍ୟରେ ଅନାବିଳ ବନ୍ଦନା ଢାଳିଯାଇଛି, ତାହା ଯଥାର୍ଥ ଓ ସ୍ୱାଭାବିକ ହୋଇଛି । ସୁଢ଼ଳ-ସଚ୍ଚିଦାନନ୍ଦଙ୍କ ତିରୋଧାନ ପରେ ବିଦ୍ୟାରତ୍ନେ ଗଞ୍ଜାମକୁ ଆସିଲେ ଓ ଖଲିକୋଟର ଉଦାରଚେତା, ଜାତୀୟବାଦୀ ରାଜା ହରିହର ମର୍ଦ୍ଦରାଜଙ୍କ ପୃଷ୍ଠପୋଷକତାରେ 'ପ୍ରଜାବନ୍ଧୁ'ର ସମ୍ପାଦକ ହେଲେ । ଏହି 'ପ୍ରଜାବନ୍ଧୁ' ସମ୍ପାଦକ ଥାଇ ବିଦ୍ୟାରତ୍ନେ ୧୯୦୨ରେ ସେତେବେଳର ମାଡ୍ରାସ ପ୍ରେସିଡେନ୍‌ସିରେ ଥିବାରୁ ମାତୃଭୂମି-ବିଚ୍ଛିନ୍ନ ଓଡ଼ିଆମାନଙ୍କୁ ଏକତ୍ର ହୋଇ ସରକାରଙ୍କୁ ନିଜର ଦାବୀ ଜଣାଇବା ପାଇଁ ଯେଉଁ 'ଗଞ୍ଜାମ ସମ୍ମିଳନୀ'ର ଯୋଗାଡ଼ କରିଥିଲେ, ତାହାହିଁ ପରବର୍ଷ ମଧୁସୂଦନ ଦାସଙ୍କ ବୃହତ୍ତର ପୃଷ୍ଠପୋଷକତାରେ 'ଉତ୍କଳ ସମ୍ମିଳନୀ' ହୋଇଉଠିଲା । ହରିହର ମର୍ଦ୍ଦରାଜଙ୍କ ମୃତ୍ୟୁ ପରେ ବିଦ୍ୟାରତ୍ନେ କଟକରେ ଆସି ଶେଷ ଜୀବନ କଟାଇଲେ ଓ 'ଉତ୍କଳ-ଦୀପିକା'ର ସମ୍ପାଦକତ୍ୱ ସାଥେ ସାଥେ ଅଦ୍ୱିତୀୟ ଜ୍ଞାନସଂଗ୍ରହ-ପତ୍ରିକା 'ଉତ୍କଳ-ମଧୁପ' ନାମକ ପତ୍ରିକାଟି ମଧ୍ୟ ପ୍ରକାଶ କରୁଥିଲେ । ବିଦ୍ୟାରତ୍ନଙ୍କ ପାରିବାରିକ ଜୀବନ ଅଶାନ୍ତିମୟ ଥିଲା ଓ ତାଙ୍କ ଶେଷକାଳ ଦୁଃଖ-ଦାରିଦ୍ର୍ୟରେ କଟିଥିବାର ଜଣାଯାଏ ।

**ଦୁଇ ସ୍ୱାଧୀନ-ଚିନ୍ତକ –**

କିନ୍ତୁ, ଗତ ଶହେ ବର୍ଷଧରି ଓଡ଼ିଶାରେ ଛୋଟ ବଡ଼ ଅଗଣିତ ଗଦ୍ୟ-ଲେଖକଙ୍କ ମଧ୍ୟରେ କେବଳ ମାତ୍ର ଦୁଇଜଣ ସ୍ୱାଧୀନ ମୌଳିକ ଚିନ୍ତାର ବୈଶିଷ୍ଟ୍ୟ ଦେଖାଇ-ପାରିଛନ୍ତି । ସେ ଦୁଇଜଣ ହେଉଛନ୍ତି ବାମଣ୍ଡାର ଜଳନ୍ଧର ଦେବ ଓ ଫକିରମୋହନଙ୍କ ଏକମାତ୍ର ପୁତ୍ର .ଅଧ୍ୟାପକ ମୋହିନୀମୋହନ ସେନାପତି ।

ଗତ ଶତାବ୍ଦୀରେ, ଆରଣ୍ୟକ ରାଜ୍ୟ ବାମଣ୍ଡାରେ, ପୁଣି ରାଜବଂଶରେ ଜାତ ହୋଇ ମଧ୍ୟ, ଜଳନ୍ଧର ଦେବ ଯେଉଁ ବଳିଷ୍ଠ ସ୍ୱାଧୀନଚିନ୍ତା ଓ ବୈଜ୍ଞାନିକ ଦୃଷ୍ଟିକୋଣ ଦେଖାଇ-ଯାଇଛନ୍ତି, ତାହା ପ୍ରକୃତରେ ବିସ୍ମୟକର । ସେ ଏ ଦେଶର ସର୍ବମାନ୍ୟ ଓ ଜନପ୍ରିୟ ପ୍ରାଚୀନ ମହାକାବ୍ୟଯୁଗ୍ମ ରାମାୟଣ ଓ ମହାଭାରତର ସମାଲୋଚନା କରି ଓଡ଼ିଶାରେ କୁସଂସ୍କାର-ଗ୍ରସ୍ତ ଜନତାର ପ୍ରିୟ ପ୍ରତିମାଗୁଡ଼ିକୁ ପ୍ରଥମକରି ଭାଙ୍ଗି ଧୂଳିସାତ୍ କରିଯାଇଛନ୍ତି । ଯୁକ୍ତିସିଦ୍ଧ ଆଲୋଚନାରେ ସେ ମହାକାବ୍ୟର ନାୟକ-ନାୟିକାମାନଙ୍କୁ କେବଳ ଆମପରି ଭ୍ରାନ୍ତିଶୀଳ ସାମାନ୍ୟ ମନୁଷ୍ୟ ମାତ୍ର ବୋଲିହିଁ ପ୍ରମାଣିତ କରିଯାଇଛନ୍ତି । ଯଦିଓ ବିଶ୍ୱବିଦ୍ୟାଳୟର ଡିଗ୍ରୀପ୍ରାପ୍ତ ନଥିଲେ, ଚିନ୍ତା ଓ ଧାରଣାରେ ସେ ଥିଲେ ସଂପୂର୍ଣ୍ଣ ୟୁରୋପୀୟ ଓ କୌଣସି ପ୍ରକାର ରକ୍ଷଣଶୀଳ କୁସଂସ୍କାରକୁ ମାନିଯିବାକୁ ପ୍ରସ୍ତୁତ ନଥିଲେ । ମହାଭାରତରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଇତ୍ୟାଦିଙ୍କର କନ୍ୟାହରଣ ବ୍ୟାପାରାଦି ଆଲୋଚନା କରି ସେ ଠାଏ କହିଛନ୍ତି ଯେ, ସେ ଯୁଗ ଆମ କାଳଠାରୁ ସଭ୍ୟତର ଥିଲା ବୋଲିବାର କୌଣସି ଯୁକ୍ତି ନାହିଁ, ବରଂ ଏ ଯୁଗରେ କୃଷ୍ଣାର୍ଜ୍ଜୁନାଦି ଜନତାଚକ୍ଷୁରେ ଦେବତା ହେବା ପରିବର୍ତ୍ତରେ ପେନାଲ କୋର୍ଡ ଅନୁଯାୟୀ ଜେଲ୍ ଖଟିଥାନ୍ତେ । ସମଗ୍ର ପ୍ରାଚୀନ ଭାରତୀୟ ସାହିତ୍ୟରେ ବ୍ରାହ୍ମଣ୍ୟ- ୍ରାଧାନ୍ୟ ପ୍ରଚାରକୁ ସେ ନିଷ୍ଠୁର ଭାବେ ସମାଲୋଚନା କରିଯାଇଅଛନ୍ତି ।

ଭକ୍ତିପ୍ରାଣ ଫକିରମୋହନଙ୍କର ଏକମାତ୍ର ପୁତ୍ର ଓ ଦର୍ଶନଶାସ୍ତ୍ର ଅଧ୍ୟାପକ ମୋହିନୀ-ମୋହନ ସେନାପତି ଉତ୍କଳରେ ବିଶେଷଭାବରେ ପରିଚିତ ନିଜ ନାସ୍ତିକତାର ପ୍ରକାଶ୍ୟ ପ୍ରଚାର ପାଇଁ । ନିଜର ଅସାମାଜିକ ଚିନ୍ତା ଓ ବ୍ୟବହାର ଯୋଗୁଁ, ମୋହିନୀମୋହନ ନିଜର ବରେଣ୍ୟ ପିତୃଦେବଙ୍କୁ ମଧ୍ୟ କମ୍ ମାନସିକ ଯନ୍ତ୍ରଣା ଦେଇନଥିଲେ ଜୀବନ-କାଳରେ । ପିତା ତ ଥିଲେ ବ୍ରାହ୍ମ, ପିତୃବନ୍ଧୁ ମଧୁସୂଦନ ରାଓ ଥିଲେ ବ୍ରାହ୍ମନେତା । କଟକେ ପଢ଼ିଲା-ବେଳେ ମୋହିନୀମୋହନ ପୁଣି ମଧୁସୂଦନଙ୍କ ପରିବାରରେହିଁ ରହିଥିଲେ; କିନ୍ତୁ ପରେ ସେ ପିତା, ପିତୃବନ୍ଧୁ ଓ ନିଜର ଅଭିଭାବକ ମଧୁସୂଦନଙ୍କ ପ୍ରିୟଧର୍ମର ଅଯୌକ୍ତିକତାକୁ ନିର୍ମମ ଭାବରେ ସମାଲୋଚନା କରିଥିଲେ । ସେ ପ୍ରକାଶ୍ୟରେ ଏକ ନାରୀର ବହୁ-ସ୍ୱାମୀତ୍ୱ ଓ ଏକ ପୁରୁଷର ବହୁପତ୍ନୀତ୍ୱ ପ୍ରଚାର କରିଥିଲେ ଏବଂ ସମାଜରୁ ବିବାହ ନାମକ ଅନୁଷ୍ଠାନ ଉଠାଇଦେବାର ପ୍ରବଳ ପ୍ରଚାର ଚଳାଇଥିଲେ; କିନ୍ତୁ ତାଙ୍କ ଚରିତ୍ରରେ ଥିବା ଧ୍ୱଂସ-ଶୀଳତାର ଓ ଅସାମାଜିକତାର ଶ୍ରେଷ୍ଠ ପ୍ରମାଣ ହେଲା, ବରେଣ୍ୟ ପିତୃଦେବଙ୍କ ରଚନାରେ ଯେଉଁ ଯେଉଁ ଅଂଶ ତାଙ୍କ ମତ ସହିତ ମିଳିଲାନି, ସେସବୁକୁ ପର ସଂସ୍କରଣ ମାନଙ୍କରୁ

ବିନା ଦ୍ୱିଧାରେ ଉଠାଇଦେବା । ଏହିସବୁ କାରଣ ଯୋଗୁଁ ମୋହିନୀମୋହନ ସମାଜରେ ସମ୍ମାନିତ ବ୍ୟକ୍ତି ନହୋଇ, ହେଲେ ଏକ କୌତୂହଳଜନକ ବସ୍ତୁ । ତାଙ୍କର ଗଦ୍ୟରଚନାରେ ନିଜସ୍ୱ ଶୈଳୀ ବୋଲି କିଛି ନଥିଲା; ତେବେ ଯାହା ସେ ଲେଖୁଥିଲେ ତାହା ଥିଲା ସ୍ପଷ୍ଟ, ସୁପ୍ରକଟ ଓ ଯୁକ୍ତିସିଦ୍ଧ ।

**ଗଦ୍ୟ-କବି ଶଶିଭୂଷଣ ରାୟ** (୧୮୭୬-୧୯୫୩) –

ଫକିରମୋହନ-ମୋହିନୀମୋହନ ଏହି ପିତା-ପୁତ୍ର ବିପରୀତରେ ଆମେ ରାଧାନାଥ-ଶଶିଭୂଷଣଙ୍କୁ ଦେଖି ପ୍ରକୃତରେ ମୁଗ୍ଧ ହେଉ । ଶଶିଭୂଷଣ, ପୁତ୍ର ଓ ଲେଖକ ଉଭୟ ଭାବରେ ରାଧାନାଥଙ୍କର ପ୍ରକୃତ ଉତ୍ତରାଧିକାରୀ ଥିଲେ । ପିତା ଅନବଦ୍ୟ କାବ୍ୟକଳା ଦେଇ ଯାହା ଛାଡ଼ିଯାଇଥିଲେ, ଶଶିଭୂଷଣଙ୍କ ଗଦ୍ୟସୃଷ୍ଟି ତାର ସୁନ୍ଦର ପରିପୂରକ କହିଲେ ଅତ୍ୟୁକ୍ତି ହେବନାହିଁ । ପିତାଙ୍କ ସାଥିରେ ଓ ପରେ ଏକାକୀ ଶଶିଭୂଷଣ ବାରମ୍ବାର ଭ୍ରମଣକରି ଓଡ଼ିଶାକୁ ଘନିଷ୍ଠ ଭାବରେ ଜାଣିପାରିଥିଲେ । ଓଡ଼ିଶାର ନଦନଦୀ, ଗ୍ରାମ, ଶୈଳ, ଦେବାଳୟାଦି ସହିତ ଶଶିଭୂଷଣଙ୍କର ଯେପରି ବ୍ୟକ୍ତିଗତ ପ୍ରତ୍ୟକ୍ଷ, ଘନିଷ୍ଠ ପରିଚୟ ଥିଲା, ସେପରି ଅନ୍ୟ କାହାରି ସେତେବେଳେ ନଥିଲା; ଆଜି ବି ନାହିଁ । ପିତାଙ୍କ ପରି ଶଶିଭୂଷଣ ପ୍ରକୃତିକୁ ଆତ୍ମାର ପ୍ରେମ ଦେଇ ଭଲପାଉଥିଲେ ଓ ସେହି କାରଣରୁ ନାଗରିକ ଜୀବନ-ଜଞ୍ଜାଳ ତ୍ୟାଗକରି, କଟକ ନଗରରୁ ଅଦୂର; କିନ୍ତୁ ମହାନଦୀ-ବକ୍ଷ-ପ୍ରସାରିତ ଶାନ୍ତ, ଶ୍ୟାମଳ ମନୋରମ ଦ୍ୱୀପ 'ଧବଳେଶ୍ୱର'ର ଏକ ପ୍ରାନ୍ତରେ ନିଜେ ତିଆରି କରିଥିବା 'ନିଭୃତ ନିଳୟ'ରେ ହିଁ ଅଧିକାଂଶ ସମୟ କାଟୁଥିଲେ । ଶଶିଭୂଷଣ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଉତ୍କଳ ପ୍ରକୃତି'କୁ କୌଣସି ରାଜା ବା ଧନିକକୁ ଉତ୍ସର୍ଗ ନକରି, କରିଯାଇଛନ୍ତି ଉତ୍କଳ-ଜାହ୍ନବୀ ମହାନଦୀକୁ । ଉତ୍ସର୍ଗବର୍ଣ୍ଣନାଟି ଏକ ଗୀତିକବିତା ପରି ଭାବୋଚ୍ଛଳ । ତାଙ୍କର 'ଉତ୍କଳର ଋତୁଚିତ୍ର' ଆଉ ଏକ ମୂଲ୍ୟବାନ୍ ପ୍ରବନ୍ଧ । ତା'ଛଡ଼ା ସମସମାୟିକ ପତ୍ର-ପତ୍ରିକାମାନଙ୍କରେ ଶଶିଭୂଷଣ ମୃତ୍ୟୁ ପର୍ଯ୍ୟନ୍ତ ନାନା ପ୍ରବନ୍ଧ ଲେଖିଚାଲିଥିଲେ । ସେ କିନ୍ତୁ ଶାଶ୍ୱତ କୀର୍ତ୍ତିର ଅଧିକାରୀ ରହିବେ, ତାଙ୍କର 'ଉତ୍କଳ-ପ୍ରକୃତି' ଓ 'ଉତ୍କଳର ଋତୁଚିତ୍ର' ଲାଗି । ଦୁଇଟିଯାକ ଓଡ଼ିଆ ସାହିତ୍ୟରେ ଅନନ୍ୟ ଓ ଅନବଦ୍ୟ । 'ଉତ୍କଳ-ପ୍ରକୃତି'ର 'ଉତ୍ତରେଶ୍ୱରରେ ସନ୍ଧ୍ୟା'ର କିଛି ଅଂଶ ଉଦ୍ଧାର କରିଦେଉଛି –

'ଅସ୍ତଗାମୀ ସୂର୍ଯ୍ୟ ଭୁବନେଶ୍ୱର ବଡ଼ଦେଉଳର ପିନାକ ଏବଂ ଶ୍ୱେତପତାକା ରଞ୍ଜିତ କରିଅଛି । ସଙ୍ଗେ ସଙ୍ଗେ ଅପର ସମସ୍ତ ମନ୍ଦିର, ପ୍ରଜାସମୂହ ପ୍ରାୟ, 'ରାଜାନୁଗତ ଧର୍ମ' ପାଳନ କରି ଲୋହିତାଲୋକିତ ହୋଇ ଉଠିଅଛନ୍ତି । କୋଚିଲା ବନ ମଧ୍ୟରୁ ଅଲାବୁକେଶ୍ୱର ଦେଉଳ ଏକାକୀ ଦଣ୍ଡାୟମାନ । ଏହାର କିଛି ଦୂରରେ ରାମେଶ୍ୱର ଦେଉଳ, ଅପର ଚାରି ପାଞ୍ଚଟି ଦେଉଳର ଭଗ୍ନସ୍ତୂପ ସହିତ, ଉଦାସ ଦୃଷ୍ଟିରେ ଚାହିଁରହିଅଛି । ଧାନ୍ୟକ୍ଷେତ ଅତିକ୍ରମ କରି ଦୃଷ୍ଟି ବ୍ରହ୍ମେଶ୍ୱର, ଭାସ୍କରେଶ୍ୱର, ମେଘେଶ୍ୱର ଏବଂ ରାଜାରାଣୀ ପ୍ରଭୃତି ଦେଉଳସମୂହ ଉପରେ ନ୍ୟସ୍ତ । ଆମ୍ରକୁଞ୍ଜ ମଧ୍ୟରୁ ପରଶୁରାମେଶ୍ୱର, ସିଦ୍ଧେଶ୍ୱର, ମୁକ୍ତେଶ୍ୱର ଏବଂ

କେଦାରେଶ୍ୱର ମନ୍ଦିରସମୂହର ଚୂଡ଼ା ସ୍ପଷ୍ଟ ପ୍ରତିଭାତ । ସମ୍ମୁଖରେ ବିନ୍ଦୁସରୋବର ତଟଦେଶସ୍ଥ ଶାରି ଦେଉଳ, ଅନନ୍ତବାସୁଦେବ, ମୋହିନୀ ପ୍ରଭୃତି ମନ୍ଦିରସମୂହ ଏବଂ ଏହାର କିୟଦ୍ଦୂରସ୍ଥ ବୈତାଳ ଦେଉଳ, ଯମେଶ୍ୱର, ନଳେଶ୍ୱର ପ୍ରଭୃତି ମନ୍ଦିରସମୂହର ବିପରୀତାକୃତିର ଛାୟାରେ ବିନ୍ଦୁସରୋବରର ସମୀରାନ୍ଦୋଳିତ ଜଳରାଶି ଉପରେ ଅସଂଖ୍ୟ ରେଖା ପଡ଼ିଅଛି । ସରୋବର ମଧ୍ୟସ୍ଥିତ ପ୍ରକାଣ୍ଡ ଦ୍ୱୀପଦଣ୍ଡି ଉପରେ ଶତ ଶତ ପକ୍ଷୀ ବିଶ୍ରାମର ଆୟୋଜନ ସ୍ପୃହାରେ ଉପବିଷ୍ଟ ଏବଂ ଏମାନଙ୍କର ଉପବେଶନ ରୀତିରେ ସମସ୍ତ ଦ୍ୱୀପଦଣ୍ଡି ସଜ୍ଜୀକୃତ ଓ ଶୋଭାନ୍ୱିତ । ବିନ୍ଦୁସରୋବରର ଘାଟଗୁଡ଼ିକ ଉପରେ ମହାରାଷ୍ଟ୍ରଭାମିନୀ, ତୈଲଙ୍ଗ-ସୀମନ୍ତିନୀ, କାନ୍ୟକୁବ୍ଜବାସିନୀ, ବିହାରବିହାରିଣୀ ଏବଂ ବଙ୍ଗୋତ୍କଳକାମିନୀ ପ୍ରଭୃତି ବିଭିନ୍ନ ବେଶଭୂଷା ସୌନ୍ଦର୍ଯ୍ୟ-ଜ୍ଞାପକ ଦେଶସମୂହର ରୁଚି ପ୍ରଚାର କରୁଅଛନ୍ତି । ଅସ୍ତମିତ ସୂର୍ଯ୍ୟକିରଣ ପାଟଳିମାରେ ଓ ବିଭିନ୍ନ ବେଶ ସୌନ୍ଦର୍ଯ୍ୟ ପ୍ରତିବିମ୍ବରେ ବିନ୍ଦୁସରୋବର ଉଜ୍ଜ୍ୱଳ; କିନ୍ତୁ ପୂର୍ବ-ଗୌରବ-ଭାବନାରେ ଉଦାସ । ସରୋବରତୀରସ୍ଥ ପ୍ରସ୍ତରପାବନ୍ଧସମୂହ ଜୀର୍ଣ୍ଣ, ଭଗ୍ନ ଓ ଲୁପ୍ତ ।

× × × ×

''ଅଲାବୁକେଶ୍ୱର ମନ୍ଦିର ନିକଟସ୍ଥ କୋଚିଲାବନ-ଶୋଭିତ ସୁବିସ୍ତୀର୍ଣ୍ଣ ଟଙ୍କଭୂମି ସୂର୍ଯ୍ୟାସ୍ତର ପୀତାଲୋକରେ ଶବଳିତ ହୋଇଉଠିଲା । ତେଣେ ଗଙ୍ଗୁଆ କୂଳ ଏବଂ ଧଉଳୀ ପର୍ଯ୍ୟନ୍ତ ଦିଗନ୍ତବିସ୍ତୃତ ଧାନ୍ୟକ୍ଷେତ୍ରସମୂହରୁ ଧାନ କଳେଇ ଓ ନଡ଼ା ପରିପୂର୍ଣ୍ଣ ଗାଡ଼ିଗୁଡ଼ିକ ଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନ କଲା । ସୂର୍ଯ୍ୟଦେବ ବିନ୍ଦୁସାଗରର ବିଶ୍ରାମଘାଟ ପ( )ଡ଼ରେ ଅସ୍ତ ହେଲେ । କର୍ମକ୍ଳାନ୍ତ ମାନବର ସଂଧ୍ୟା-ବିଶ୍ରାମ ପ୍ରାୟ, ସୂର୍ଯ୍ୟଦେବ ମଧ୍ୟ ବିଶ୍ରାମ ନେବାକୁ ବିଶ୍ରାମଘାଟର ପଛଆଡ଼େ ଅଦୃଶ୍ୟ ହେଲେ । ବିନ୍ଦୁସରୋବର ତଟ ( )ଦେଶସ୍ଥ ଜଳ ଉପରେ ବୃକ୍ଷସମୂହର ଛାୟା ପଡ଼ି ପ୍ରକାଣ୍ଡ ଦର୍ପଣର ପ୍ରକାଣ୍ଡ କଳା 'ଫ୍ରେମ୍' (ବନ୍ଧନୀ) ପ୍ରାୟ ପ୍ରତୀୟମାନ ହେଲା । ମଧ୍ୟସ୍ଥିତ ଦ୍ୱୀପଦଣ୍ଡି ଉପରେ ଅନେକ ପକ୍ଷୀ ରାତ୍ରିବାସର ଆୟୋଜନରେ ବସିରହିଲେ । ହଠାତ୍ ନିକଟସ୍ଥ କଣ୍ଟାବଣ ମଧ୍ୟରୁ ଉଚ୍ଚକଣ୍ଠନିନାଦିତ ସୁମଧୁର ସଙ୍ଗୀତ ଉଠିଲା – ''ଆଜ ନବଘନଶ୍ୟାମ ମୂରତିକି ଦେଖିଲି, ଆରେ ସଖି ରେ ।

''ଉତ୍କର୍ଣ୍ଣ ହୋଇ ଗୀତର ଦୁଇପଦ ଶୁଣି ଆତ୍ମବିସ୍ମୃତ ହେଲି । ଲିଙ୍ଗରାଜଙ୍କ ସେବକ-ସଂପ୍ରଦାୟ ମଧ୍ୟରୁ କୌଣସି ସେବକଙ୍କ କଣ୍ଠନିସୃତ ଏହି ସଙ୍ଗୀତ ଚତୁଃପାର୍ଶ୍ୱସ୍ଥ ବନଭୂମିରେ ପ୍ରତିଧ୍ୱନିତ ହେଲା ।''

□□□

## ପଞ୍ଚଦଶ ଅଧ୍ୟାୟ

# ଓଡ଼ିଶାରେ ନାଟକ ଓ ରଙ୍ଗମଞ୍ଚ

ଅନ୍ୟାନ୍ୟ ସଭ୍ୟ ଦେଶ ଓ ଜାତିମାନଙ୍କ ପରି ଓଡ଼ିଶାରେ ମଧ ନାଟକ ଓ ରଙ୍ଗମଞ୍ଚର ଆରମ୍ଭ ହୋଇଛି ଧର୍ମରେ ଓ ଧର୍ମ ସହିତ ବରାବର ଘନିଷ୍ଠଭାବରେ ସଂପୃକ୍ତ ରହିଆସିଛନ୍ତି ସେମାନେ । ପୁଣି ଅଭିଜାତ ଗୋଷ୍ଠୀ ଓ ନିରକ୍ଷର ଜନତା, ସମାଜର ଏହି ଦୁଇ ପରସ୍ପର-ବିରୋଧୀ ବିପରୀତ ବିନ୍ଦୁରୁହିଁ ସମତାଳରେ ଅଭ୍ୟୁଦୟ ଘଟିଛି ଉଭୟର । ଓଡ଼ିଶାରେ ଜନତା ଓ ଅଭିଜାତ ଶ୍ରେଣୀର ବିନୋଦନ ପାଇଁ ବହୁଶତାବ୍ଦୀଧରି ଦ୍ୱିବିଧ ନାଟକାଭିନୟ ଦେଶରେ ସହାବସ୍ଥାନ କରିଆସୁଛନ୍ତି କେବଳ ନୁହେଁ; ବରଂ ଯୁଗେ ଯୁଗେ ପରିବର୍ତ୍ତମାନ ଜନାଭିରୁଚିକୁ ଲକ୍ଷ୍ୟ ରଖି ଉଭୟେ ପରସ୍ପରକୁ ସଂଶୋଧିତ ଓ ପୁନର୍ଗଠିତ କରିବାରେ ସାହାଯ୍ୟ କରିଆସୁଛନ୍ତି । ଆମେ ସାଧାରଣ ଧାରଣାର ବଶବର୍ତ୍ତୀ ହୋଇ ହୁଏତ ଆଗ ସାହିତ୍ୟିକ ନାଟକ ଓ ରଙ୍ଗମଞ୍ଚର ଆଲୋଚନା କରିବସିବା; କିନ୍ତୁ ନିରପେକ୍ଷ ଭାବରେ ବିଚାର କରିବସିଲେ, ଯେକୌଣସି ନିଷ୍ଠାବାନ୍ ସମାଲୋଚକ ଦେଖିବାକୁ ପାଇବେ ଯେ, ଦୁଇ ଶ୍ରେଣୀ ଭିତରେ ପାର୍ଥକ୍ୟ, ଦ୍ରବ୍ୟର ଭିନ୍ନତା ନୁହେଁ, ପାର୍ଥକ୍ୟ ହେଉଛି ଉଣିଶ୍-ବିଶ୍ର ଏବଂ ଏପରି ଜନତା ନାଟକ ଅଛି ଯାହା ବହୁ ତଥାକଥିତ ସାହିତ୍ୟିକ ନାଟକ ଅପେକ୍ଷା କଳା ବା ବିନୋଦନ କୌଣସି ଅଂଶରେ ନ୍ୟୂନ ନୁହେଁ। କିନ୍ତୁ ସଂସ୍କାର ସହଜରେ ମରିଯାଏନା । ତେଣୁ ତୃତୀୟ ଶ୍ରେଣୀର ତଥାକଥିତ ସାହିତ୍ୟିକ ନାଟକ ପୋଷ୍ଟ-ଗ୍ରାଜୁଏଟ୍ ଶ୍ରେଣୀର ପାଠ୍ୟ-ପୁସ୍ତକ ହେଲାବେଳେ, ଅତ୍ୟୁତ୍ତମ ଯାତ୍ରା-ନାଟକ କୌଣସି ସାହିତ୍ୟିକ ବା ସମାଲୋଚକଠାରୁ ପଦେହେଲେ ପ୍ରଶଂସା ପାଇପାରୁନି ।

ପ୍ରତ୍ୟେକଟିରେ ନିଜର ସ୍ୱତନ୍ତ୍ର ଶୈଳୀ ପ୍ରତିଷ୍ଠିତ କରି, ଓଡ଼ିଶା ବହୁଶତାବ୍ଦୀ ଧରି ସ୍ଥାପତ୍ୟ, ଭାସ୍କର୍ଯ୍ୟ, ନୃତ୍ୟସଙ୍ଗୀତ ଆଦିର ବହୁକାଳରୁ ବିଳାସସ୍ଥଳୀ ହୋଇଆସିଛି । ଓଡ଼ିଶାର ନବାବିଷ୍କୃତ ସ୍ୱତନ୍ତ୍ର ନୃତ୍ୟକଳା 'ଓଡ଼ିଶୀ ନୃତ୍ୟ' ସମ୍ବନ୍ଧରେ ଜଣେ ପ୍ରସିଦ୍ଧ କଳା-ସମାଲୋଚକ ଏହି ପ୍ରକାର ମନ୍ତବ୍ୟ ପ୍ରକାଶ କରିଥିଲେ –

''ଓଡ଼ିଶୀ ନୃତ୍ୟ ଅନ୍ୟୂନ ପାଞ୍ଚଥର ଦେଖିସାରିଲା ପରେ ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ, ଭରତ-ନାଟ୍ୟର ଏ ଏକ ସ୍ୱତନ୍ତ୍ର ଶାଖା; କିନ୍ତୁ ଗଭୀର ଭାବରେ ବିଚାର କଲେ ଏହାକୁ ଏବର ଭରତ-ନାଟ୍ୟର ସେହି ଆଦିମ ପ୍ରକାର, ଯାହାଠୁ ଏବର ଭରତ-ନାଟ୍ୟ ନୁହେଁ, କଥାକଳୀ, କୁଚିପୁଡ଼ି, ଅଗଣିତ ଆତ୍ତମ ଓ କଥକର ପୂର୍ବପୁରୁଷ ଆଦି ନାନା ଭାରତୀୟ ନୃତ୍ୟ କ୍ରମେ କ୍ରମେ ଯେ ଉଦ୍ଭୂତ ହୋଇଛନ୍ତି, ତାହାହିଁ ବୋଲି ନିଷ୍ପତ୍ତି ହେବ । ହୁଏତ ଶ୍ୟାମ, ଜାଭା, ବାଲି ପ୍ରଭୃତି ବୃହତ୍ତର ଭାରତରେ ପ୍ରଚଳିତ ନୃତ୍ୟମାନଙ୍କରେ

ମଧ୍ୟ ଏହି ଓଡ଼ିଶୀ ନୃତ୍ୟହିଁ ଆଦି-ଜନନୀ । ଓଡ଼ିଶୀ ନୃତ୍ୟକୁ ଆମେ ବର୍ତ୍ତମାନ ଯେପରି ଦେଖିଲୁ, ସେଥିରୁ ଏହା ପ୍ରଚୁର-ହସ୍ତାଙ୍ଗୁଳି-ବ୍ୟଞ୍ଜନା-ପୂର୍ଣ୍ଣ ଏକ ମନୋହର ଲଳିତ କଳା ବୋଲି ବୋଧହେଉଛି । ଭରତ-ନାଟ୍ୟ ପରି ଏହା ପାଣ୍ଡିତ୍ୟାକ୍ରାନ୍ତ ନୁହେଁ; ବରଂ ଏହା ତାହାର ପୂର୍ବାବସ୍ଥାର ସ୍ୱଚ୍ଛନ୍ଦ, ସ୍ୱାଭାବିକ ନର୍ତ୍ତନଲୀଳା ମାତ୍ର । *

ଓଡ଼ିଶାର ସାମାଜିକ ଜୀବନ ପରି ଓଡ଼ିଆ ନାଟକର ନୃତ୍ୟ ରହିଆସିଛି ଏକ ଅବିଚ୍ଛେଦ୍ୟ ଅଙ୍ଗ । କାଳକ୍ରମେ ଓଡ଼ିଆମାନେ ଦରିଦ୍ର ହୋଇଆସିଲେ, ପୁଣି ପୃଷ୍ଠପୋଷକ ରାଜା ଓ ଜମିଦାରଶ୍ରେଣୀ ମଧ୍ୟ ଉଭେଇଗଲେ; ଫଳରେ ଓଡ଼ିଆ ସମାଜରୁ ନୃତ୍ୟକଳାର ବର୍ଣ୍ଣାଢ୍ୟତା କ୍ରମେ କ୍ରମେ ଖସିଆସୁଛି । ଦିନେ ସେହି ରାଜା ଓ ଅଭିଜାତମାନେହିଁ ଉତ୍କଳକୁ ମନ୍ଦିରମଣ୍ଡିତ କରିଥିଲେ ଏବଂ ପ୍ରତ୍ୟେକ ମନ୍ଦିର ଥିଲା ଏକ ପ୍ରସ୍ତରୀଭୂତ ରଙ୍ଗମଞ୍ଚ । କୋଣାର୍କର ସୂର୍ଯ୍ୟମନ୍ଦିର କଥାହିଁ ଧରାଯାଉ । ଏହାର ଶିଖର ସ୍ତରରେ ମନୁଷ୍ୟ ଉଚ୍ଚତାର ସୁନ୍ଦରୀ ଅପ୍‌ସରାମାନେ ଆକାଶଚାରୀ ରଥରେ ବିଜେକରିଥିବା ସୂର୍ଯ୍ୟଦେବଙ୍କ ପ୍ରୀତ୍ୟର୍ଥେ ତୌର୍ଯ୍ୟତ୍ରିକ-ରତ । ନିମ୍ନରେ ସମଗ୍ର ରଥଗାତ୍ର, ଚାକ୍ଷୁଷ ସଂସାରର ଅନନ୍ତ ଜୀବନଲୀଳାକୁ ବହନ କରିଚାଲିଛି । କୋଣାର୍କ ତେଣୁ ଏକ ବିରାଟ ରଙ୍ଗମଞ୍ଚ ନୁହେଁ ତ ଆଉ କ'ଣ ? ନାଟକକୁ ଯଦି ପ୍ରକୃତିର ଦର୍ପଣ କୁହାଯିବ, ତେବେ କୋଣାର୍କ ଏକ ବିରାଟ ଦର୍ପଣ; ଯେଉଁଠି ବିଚକ୍ଷଣ ପ୍ରସ୍ତର-ନାଟ୍ୟକାର ସବୁ ଯେପରି ଥୋଇଯାଇଛନ୍ତି ସେହି ଧାରରେ । ସେଠି ଆମେ ଅନନ୍ତ ଓ ବିରାଟ ପ୍ରକୃତିର ସକଳ ଲୀଳା ଅହରହ ଦେଖିପାରିବା । ଯାହା କୋଣାର୍କ ପକ୍ଷରେ ବହୁପରିମାଣରେ ସତ୍ୟ, ତାହା ରାଜାରାଣୀ, ଲିଙ୍ଗରାଜ, ବ୍ରହ୍ମେଶ୍ୱର, ପରଶୁରାମେଶ୍ୱର ଓ ମୁକ୍ତେଶ୍ୱର ପ୍ରଭୃତି ମନ୍ଦିରମାନଙ୍କ ସମ୍ବନ୍ଧରେ ତା'ଠୁ କମ୍ ପରିମାଣରେ ହେଲେ ମଧ୍ୟ ସତ୍ୟ । ଏହି ସବୁ ମନ୍ଦିରାବଳି ସଂପୃକ୍ତ ଦେବଦେବୀଙ୍କ ଯୋଗୁଁ ସେତେ ପ୍ରସିଦ୍ଧ ନୁହନ୍ତି, ଯେତେ ସେମାନଙ୍କ ଗାତ୍ରବ୍ୟାପୀ ଜୀବନର ପ୍ରଦର୍ଶନୀ ଥୋଇଥିବାଯୋଗୁଁ । ଅନ୍ୟ କଥାରେ, ଆମେ ଓଡ଼ିଆଭାଷାରେ ନାଟକ ଓ ରଙ୍ଗମଞ୍ଚର କଥା ବିଚାର କଲାପୂର୍ବରୁ ଧରିନେବାର କଥା ଯେ, ଏ ଭାଷା ଯେଉଁମାନେ କହୁଥିଲେ, ସେମାନେ ଭାଷାରେ ନାଟକ ସୃଷ୍ଟି କରିବା ପୂର୍ବରୁ ଗୋଟାକ ପରେ ଗୋଟାଏ ମନ୍ଦିର ଠିଆକରି ତାଙ୍କରି ଦେହରେ ଏକ ଏକ ଚିରସ୍ଥାୟୀ ରଙ୍ଗମଞ୍ଚ ଛାଡ଼ିଯାଇଛନ୍ତି; ଯେଉଁଠି ଜୀବନ-ନାଟକର ଅଭିନୟ ଏପର୍ଯ୍ୟନ୍ତ ଅହରହ ଚାଲିଛି ।

ଅବଶ୍ୟ ଏହା ମଧ୍ୟ ଜଣାକଥା ଯେ, ଓଡ଼ିଆଭାଷାର ନାଟକାବଳିର ଆଦ୍ୟ ଅନ୍ତର୍ଦ୍ଦିଶାକ ମଧ୍ୟ ଓଡ଼ିଶାର ଏହି କଳାକେନ୍ଦ୍ରରୂପୀ ମନ୍ଦିରାବଳି । ଉଦୟଗିରିର ରାଣୀହଂସପୁରର ଏକ ସ୍ତମ୍ଭରେ ଆମେ ଭାରତୀୟ ରଙ୍ଗମଞ୍ଚର ପ୍ରାଚୀନତମ ଭାସ୍କର୍ଯ୍ୟ-ରୂପ ଦେଖିବାକୁ ପାଉଁ । ଏହି ଭାସ୍କର୍ଯ୍ୟ ସହିତ ରାଣୀହଂସପୁରର ସମ୍ମୁଖସ୍ଥ ବିସ୍ତୀର୍ଣ୍ଣ ଉନ୍ମୁକ୍ତ ପ୍ରାନ୍ତର ଦେଖିଲେ ସହଜରେ ଅନୁମେୟ ଯେ, ଖ୍ରୀ: ପୂ: ପ୍ରଥମ ଶତାବ୍ଦୀରେ ମଧ୍ୟ ସେଠାରେ ରାଜାଦେଶରେ ଯାତ୍ରା ଓ ନୃତ୍ୟ ହେଉଥିଲା, ଯେପରିକି ଏପର୍ଯ୍ୟନ୍ତ ହୋଇଆସୁଥିଲା ସର୍ବତ୍ର ଏ ଦେଶର ରାଜା, ଜମିଦାର ବା ଧନୀଙ୍କ ଘର ଆଗରେ । ଦୁଇ ରାଣୀଙ୍କୁ ଦୁଇ ପାଖରେ ବସାଇ ସ୍ୱୟଂ

* ଡକ୍ଟର ଚାର୍ଲସ୍ ଫାବ୍ରୀ, ଷ୍ଟେଟ୍‌ସ୍‌ମ୍ୟାନ୍ ରିପବ୍ଲିକ୍ ସପ୍ଲିମେଣ୍ଟ, ୨୬-୧୯୫୬ ।

ମହାରାଜ ଖାରବେଳ ଏହିପରି ଏକ ଯାତ୍ରା ଦେଖୁଥିବାର, ସେହି ଉଦୟଗିରିସ୍ଥ ଭାସ୍କର୍ଯ୍ୟରୁ ଅନୁମାନ କରାଯାଉଛି । ପରେ ପୁରୀ ଓ ଭୁବନେଶ୍ୱରର ମନ୍ଦିର ପ୍ରାଙ୍ଗଣମାନଙ୍କରେ ବା ନିକଟବର୍ତ୍ତୀ ମଠମାନଙ୍କରେ ଧର୍ମ-ସଂପୃକ୍ତ ଉତ୍ସବ-ଦିନମାନଙ୍କରେ ନାଟକାଭିନୟର ବ୍ୟବସ୍ଥା ହେଉଥିଲା । ଅବଶ୍ୟ ସେସବୁ ନାଟକ ଥିଲା ସଂସ୍କୃତଭାଷାରେ । ଓଡ଼ିଶାରେ ସଂସ୍କୃତ ନାଟକର ଏକ ଦୀର୍ଘ ଐତିହ୍ୟ ରହିଛି । ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଏହି ସଂସ୍କୃତ ନାଟକର ବିଧି-ବ୍ୟବସ୍ଥାହିଁ ଓଡ଼ିଶାରେ ବଳବତ୍ତର ଥିଲା । ସେ ପର୍ଯ୍ୟନ୍ତ କୌଣସି ଓଡ଼ିଆ-ନାଟକ-ଲେଖକ ସଂସ୍କୃତ ନାଟକର ନଟ-ନଟୀ-ସୂତ୍ରଧରକୁ ଛାଡ଼ିପାରୁନଥିଲେ । ଆଧୁନିକ ଯୁଗର ପ୍ରଥମ ଓଡ଼ିଆ ନାଟକ, ବସ୍ତୁତଃ ସଂସ୍କୃତ ନାଟକମାନଙ୍କର ବହୁଶଃ ଅନୁବାଦ ମାତ୍ର । ପଣ୍ଡିତ ଗୋପୀନାଥ ନନ୍ଦ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଓ ପଣ୍ଡିତ ହରିହର ମିଶ୍ର ଇତ୍ୟାଦି ଓଡ଼ିଆଭାଷାରେ ସଂସ୍କୃତର ପ୍ରାୟ ସବୁ ନାଟକ ଅନୁବାଦ କରିଯାଇଛନ୍ତି; କିନ୍ତୁ ସଂସ୍କୃତ ନାଟ୍ୟ-ସାହିତ୍ୟକୁ ଓଡ଼ିଶାର ନିଜର ମୌଳିକ ଦାନ ମଧ୍ୟ ଅଛି । ସଂସ୍କୃତ ସାହିତ୍ୟରେ ସୁପରିଚିତ ମୁରାରି ମିଶ୍ରଙ୍କ 'ଅନର୍ଘ ରାଘବ', ଜୀବଦେବ ଆଚାର୍ଯ୍ୟଙ୍କ 'ଭକ୍ତି-ବୈଭବ', ବିଶ୍ୱନାଥଙ୍କ 'ଚନ୍ଦ୍ରକଳା', କବି ନୀଳକଣ୍ଠଙ୍କ 'ଭଞ୍ଜ ମହୋଦୟ', ରାୟ ରାମାନନ୍ଦଙ୍କ 'ଜଗନ୍ନାଥବଲ୍ଲଭ', ଭଟ୍ଟ ନାରାୟଣଙ୍କ 'ବେଣୀ-ସଂହାର' ଓ ଜୟଦେବ (୨)ଙ୍କର 'ପୀୟୂଷ ଲହରୀ' ପ୍ରଭୃତି ନାଟକ ଓଡ଼ିଶା-ମାଟିରେ ରଚିତ ଓ ଅଭିନୀତ ହୋଇଥିଲା ।

ଜଗନ୍ନାଥ ମନ୍ଦିରର ରେକର୍ଡରୁ ଉତ୍କଳରେ ନାଟିକାଭିନୟର ବ୍ୟବସ୍ଥା ଦ୍ୱାଦଶ ଶତାବ୍ଦୀରେ ମଧ୍ୟ ସୁପ୍ରତିଷ୍ଠିତ ଥିବାର ଜଣାପଡ଼େ । ଏହି ରେକର୍ଡରୁ ଆମେ ଜାଣୁଛେ ଯେ ଜୟଦେବ (୨)ଙ୍କ 'ପୀୟୂଷ ଲହରୀ' ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ଅଭିନୀତ ହୋଇଥିଲା । ପୁରୀରେ ଚୈତନ୍ୟଙ୍କ ପ୍ରିୟ ମଠ ରାଧାକାନ୍ତ ମଠରେ ରୂପଗୋସ୍ୱାମୀଙ୍କ 'ଲଳିତ ମାଧବ' ନାଟକ ଅଭିନୀତ ହୋଇଥିବାର ରେକର୍ଡ ଅଛି । ଏହି ଅଭିନୟ ପାଇଁ ତତ୍କାଳୀନ ଓଡ଼ିଶା ସରକାର ସମସ୍ତ ଖର୍ଚ୍ଚ ବହନ କରିଥିବାର ଜଣାଯାଏ ଏବଂ ଏଥିପାଇଁ ନିର୍ମିତ ରଙ୍ଗମଞ୍ଚର ଧ୍ୱଂସାବଶେଷ ଏପର୍ଯ୍ୟନ୍ତ ଦେଖିବାକୁ ମିଳେ । ବେଜବାଡ଼ାଠାରେ * ଦକ୍ଷିଣ-ଓଡ଼ିଶାର ଓଡ଼ିଆ ଭାଇସ୍‌ରାୟ

---

* ଚୈତନ୍ୟ ଓ ରାମାନନ୍ଦଙ୍କର ବେଜବାଡ଼ାଠାରେ ଭେଟ ହୋଇଥିବା କଥା ଏଠାରେ ଲେଖାହୋଇଥିବାରୁ, ଆଲୋଚ୍ୟମାନ ବିଷୟବସ୍ତୁକୁ ଏକାବେଳକେ ଭୁଲିଯାଇ କେତେକ ବନ୍ଧୁ ଲେଖକର ଏକ ଘୋରତମ ଅକ୍ଷମଣୀୟ 'ଅଜ୍ଞତା'ଟାକୁ ହିଁ ପ୍ରଚାର କରିଛନ୍ତି । ତଥାପି ମୁଁ ସେହି ବେଜବାଡ଼ା ରଖିଛି; କାରଣ ଏହା ପ୍ରମାଦ ନୁହେଁ, ଏହା ଜ୍ଞାନକୃତ ।

'ଚୈତନ୍ୟ-ଚରିତାମୃତ' ପ୍ରଭୃତି ବଙ୍ଗଳା ଭାଷାରେ ଲିଖିତ ତଥାକଥିତ ଚୈତନ୍ୟ-ଜୀବନୀ-ସବୁର ଯାହା କିଛି କିଛି ମୁଁ ପଢ଼ିଛି, ସେଥିରୁ ସେସବୁକୁ ପ୍ରାମାଣ୍ୟ ଜୀବନଚରିତ ବା ଇତିହାସ ଗ୍ରନ୍ଥ ବୋଲି କହିପାରିବିନି । କୌଣସି ବଙ୍ଗାଳୀ ଅଧ୍ୟାପକ ନିରପେକ୍ଷ ସତ୍ୟାନୁସରଣରେ 'ଇତିହାସରେ ଶ୍ରୀଚୈତନ୍ୟ' ବୋଲି ଏକ ଗ୍ରନ୍ଥ ନିକଟରେ ପ୍ରକାଶିତ କରିଥିଲେ । ସେଥିରେ ଚୈତନ୍ୟ-ଜୀବନର ଅନୈତିହାସିକତା ଏପରି ବର୍ଣ୍ଣିତ ଥିଲା ଯେ, 'ମହାପ୍ରଭୁ'ଙ୍କର ଅସମ୍ମାନ ହେବା ଦୃଷ୍ଟିରୁ, ବଙ୍ଗ ସରକାର ସେ ବହିର ପ୍ରକାଶନ ବନ୍ଦକରିଦେଇଛନ୍ତି; ମାତ୍ର ଯେଉଁ ଓଡ଼ିଆ ଐତିହାସିକ ଓ ଅଧ୍ୟାପକମାନେ ମାଦଳାପାଞ୍ଜିର କେଶରୀବଂଶକୁ ଅନୈତିହାସିକ ବୋଲି କହନ୍ତି,

ରାମାନନ୍ଦ ପଟ୍ଟନାୟକ ଚୈତନ୍ୟଙ୍କୁ ଭେଟିବା ପରେ ନିଜ ଚାକିରି ଛାଡ଼ିଦେଇ, ଚୈତନ୍ୟଙ୍କ ସାହଚର୍ଯ୍ୟ ପାଇଁ ପୁରୀରେ ଆସି ଅବସ୍ଥିତ ହେଲେ । ଚୈତନ୍ୟଙ୍କ ଚିତ୍ତବିନୋଦନ ପାଇଁ ସେ 'ଜଗନ୍ନାଥବଲ୍ଲଭ' ନାମକ ସଂସ୍କୃତ ନାଟକ ରଚନା କରିଥିଲେ । ପ୍ରଥମେ ଏହା ଅଭିନୀତ ହୋଇଥିଲା ଜଗନ୍ନାଥଙ୍କ ବେଢ଼ା ଭିତରେ । ତିନିବର୍ଷ ପରେ ଏହା ପୁନରଭିନୀତ

---

ସେମାନେ 'ଚୈତନ୍ୟଚରିତାମୃତ'ର ସକଳ ଗାଲଗଳ୍ପକୁ ମଧ୍ୟ 'ଇତିହାସ' ବୋଲି ସ୍ୱୀକାର କରିବାକୁ ତିଆର ।

ତଥାପି ସେହି 'ଚୈତନ୍ୟଚରିତାମୃତ'ରେ ରାମାନନ୍ଦ ଚୈତନ୍ୟଙ୍କ ଭେଟସ୍ଥାନ ପ୍ରକୃତରେ ହେଉଛି ବିଦ୍ୟାନଗର; ରାଜମହେନ୍ଦ୍ରୀ ନୁହେଁ । ରାଜମହେନ୍ଦ୍ରୀ ଥିଲା ଏକ ଦଣ୍ଡପାଟର ନାମ । ତାହାର ଗଭର୍ଣ୍ଣର ବା ଭାଇସ୍‌ରାୟ ଥିଲେ ପଟ୍ଟନାୟକ ରାମାନନ୍ଦ । ସେତେବେଳେ ପ୍ରତାପରୁଦ୍ରଦେବ ଉତ୍କଳସମ୍ରାଟ୍ । ତାଙ୍କ ପିତା ପୁରୁଷୋତ୍ତମ ଓ ପିତାମହ କପିଳେନ୍ଦ୍ରଙ୍କ ରାଜତ୍ୱରେ ଓଡ଼ିଶା ସାମ୍ରାଜ୍ୟର ଦକ୍ଷିଣସୀମା କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଯାଇଥିଲା । ତାହାହେଲେ ରାଜଧାନୀଟା କଣ ସେହି ଗୋଦାବରୀକୂଳରେ ଥିଲା ଓ କାବେରୀ ପର୍ଯ୍ୟନ୍ତ ବିରାଟ ବିସ୍ତୃତ ଅଧିକୃତାଞ୍ଚଳ ଗୋଦାବରୀକୂଳରୁ ଶାସିତ ହେଉଥିଲା ? ଗୋଦାବରୀ ଓ କାବେରୀ ମଧ୍ୟବର୍ତ୍ତୀ କୌଣସି ନଗରକୁ ରାଜଧାନୀ ଉଠିନଯାଇଥିବ କାହିଁକି ?

ଚୈତନ୍ୟ ରାମାନନ୍ଦଙ୍କ ଭେଟସ୍ଥାନ 'ବିଦ୍ୟାନଗର' ବୋଲି ବାରମ୍ବାର ଉଲ୍ଲେଖ ଥିବାରୁ ମୋର ଏ ବିଷୟରେ ପ୍ରଥମେ କୌତୂହଳଜନକ ସନ୍ଦେହ ଜାତହେଲା । ପରେ ବଙ୍ଗାଳୀ ପଣ୍ଡିତମାନେ ମଧ୍ୟ ରାମାନନ୍ଦ ଚୈତନ୍ୟଙ୍କ ଭେଟସ୍ଥାନ ଠିକ୍‌କରି କହିପାରୁ ନଥିବାର ଦେଖି ମୋର ସନ୍ଦେହ ଦୃଢ଼ୀଭୂତ ହେଲା । ଜାତୀୟ ସାହିତ୍ୟ ଆକାଡେମୀ ପ୍ରକାଶିତ 'ବଙ୍ଗସାହିତ୍ୟର ଇତିହାସ' ୮୮ପୃଷ୍ଠାରେ ପାଠକ ଲେଖାଥିବାର ଦେଖିବେ ଯେ, ରାୟ ରାମାନନ୍ଦ ଓ ଚୈତନ୍ୟଙ୍କ ଭେଟ ହୋଇଥିଲା 'ଗଞ୍ଜାମ'ରେ । ଗଞ୍ଜାମରେ କ'ଣ ଗୋଦାବରୀ ନଦୀ ବୋହୁଛି ? ଡକ୍ଟର ଦୀନେଶଚନ୍ଦ୍ର ସେନ୍‌ଙ୍କ 'Chaitanya and His Compani-ons' ଗ୍ରନ୍ଥର ୧୦ ପୃଷ୍ଠାରେ ଲେଖାଅଛି ଯେ ଚୈତନ୍ୟ ଓ ରାମାନନ୍ଦଙ୍କର 'ମଧ୍ୟଭାରତ'ର ବିଦ୍ୟାନଗରୀଠାରେ ଭେଟ ହୋଇଥିଲା । ଗୋଦାବରୀ ନଦୀ ମଧ୍ୟଭାରତରେ ମଧ୍ୟ ବୋହୁଛି ? ଏହି ଗ୍ରନ୍ଥର ୨୬୭ ପୃଷ୍ଠାରେ, ରାମାନନ୍ଦଙ୍କ ଜନ୍ମସ୍ଥାନ ମଧ୍ୟପ୍ରଦେଶର ରାୟପୁର ସହର ନିକଟସ୍ଥ ବିଦ୍ୟାନଗରଠାରେ ଦୁହିଁଙ୍କର ଭେଟ ହେଲା ବୋଲି ମଧ୍ୟ ଲେଖାହୋଇଛି ।

ତା'ହେଲେ ଭେଟ ହୋଇଥିଲା କେଉଁଠି – ବିଦ୍ୟାନଗର ନା ରାଜମହେନ୍ଦ୍ରୀ ନା ଗଞ୍ଜାମରେ ? ପୁଣି ବାରମ୍ବାର ଯେଉଁ ବିଦ୍ୟାନଗର କଥା ଉଠୁଛି, ସେ ବିଦ୍ୟାନଗର ବା କେଉଁଠି ? ବଙ୍ଗଳା ପଣ୍ଡିତଙ୍କ କଥା ତ ଦେଖିଲେ, ଏହି ପୁସ୍ତକ ଲେଖାଯାଉଥିବା ସମୟରେ କୌଣସି ତେଲୁଗୁ ପଣ୍ଡିତଙ୍କ ଲେଖାରେ ବେଜବାଡ଼ାର ଏକ ପ୍ରାଚୀନ ନାମ ବିଦ୍ୟାନଗର ହୋଇପାରେ ବୋଲି ପଢ଼ିଲି । କପିଳେନ୍ଦ୍ର-ପୁରୁଷୋତ୍ତମଙ୍କ ସାମ୍ରାଜ୍ୟ କଥା ମନେପଡ଼ିଲା । ପୁଣି ମନେପଡ଼ିଲା ଯେ, ବେଜବାଡ଼ାର ଏକ ଓଡ଼ିଶୀ ବ୍ୟୁତ୍ପତ୍ତି ବୋଲି କୁହାଯାଏ, ପୁରୁଷୋତ୍ତମଙ୍କ 'ବିଜୟ ବାହୁଡ଼ା'ର ତାହା ଚିହ୍ନ । ମୁଁ ତେଣୁ ପ୍ରଚଳିତ ବିଶ୍ୱାସ ଅନୁସାରେ ରାଜମହେନ୍ଦ୍ରୀ ନଲେଖି 'ବିଦ୍ୟାନଗର'ର ଆନୁମାନିକ ସାଂପ୍ରତିକ ପ୍ରତିନିଧି ବେଜବାଡ଼ା ରଖିଲି – ଜାଣି ଜାଣି । ପରେ ଚୈତନ୍ୟ-ସାହିତ୍ୟ ଘାଣ୍ଟି ଓ ବୈଷ୍ଣବ ବନ୍ଧୁମାନଙ୍କୁ ପଚାରି ଜାଣୁଛି ଯେ, ରାଜମହେନ୍ଦ୍ରୀ ଆରପଟେ ଗୋଦାବରୀକୂଳରେ ସେକାଳରେ ବିଦ୍ୟାନଗର ବୋଲି ଏକ ସ୍ଥାନ ଥିଲା । କିନ୍ତୁ ସେହି ନାମର କୌଣସି ଚିହ୍ନବର୍ଣ୍ଣ ବର୍ତ୍ତମାନ ସେଠି ନାହିଁ । ଚୈତନ୍ୟ-ଚରିତାମୃତ ପଢ଼ିଲେ ଘଟଣା ଗୋଦାବରୀର ଏପଟେ ଘଟିଥିବା ସ୍ପଷ୍ଟ; ସେପଟେ ନୁହେଁ । କୌଣସିଠାରେ ଚୈତନ୍ୟ ଗୋଦାବରୀ ପାରିହୋଇ ଆରପଟେ ରାମାନନ୍ଦଙ୍କୁ ଭେଟିଥିବାର ବର୍ଣ୍ଣନା ନାହିଁ ।

ହୋଇଥିଲା ଉଦ୍ୟାନ-ମନୋରମ ଜଗନ୍ନାଥବଲ୍ଲଭ ମଠରେ, ଯେଉଁଠିକି ଚୈତନ୍ୟ ବରାବର ଯାଉଥିଲେ ବୋଲି କୁହାଯାଏ । ରେକର୍ଡରୁ ଜଣାଯାଉଛି ଯେ ଶେଷୋକ୍ତ ଅଭିନୟରେ ନିଜେ ଲେଖକ ରାୟ ରାମାନନ୍ଦ ମୁଖ୍ୟ ନାୟକର ଭୂମିକାରେ ଓ ମୁକ୍ତା ନାମକ ଦେବଦାସୀ ମୁଖ୍ୟ ନାୟିକାର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାର ରାଜା କପିଳେନ୍ଦ୍ର ଦେବ ଯେ ଜଣେ ଦିଗ୍‌ବିଜୟୀ ବୀରପୁରୁଷ ଥିଲେ, ଏହା ସୁବିଦିତ । ଏହି ବିଜୟୀ ସମ୍ରାଟ୍‌ଙ୍କ ନାମରେ 'ପରଶୁରାମ ବିଜୟ' ନାମକ ସଂସ୍କୃତନାଟକ ମିଳିଛି । ହୁଏତ ସମ୍ରାଟ୍ ନିଜେ ଲେଖିନଥିଲେ – ଲେଖିଥିଲେ କୌଣସି ସଭାପଣ୍ଡିତ ନିଜ ପୃଷ୍ଠପୋଷକ ରାଜାଙ୍କ ସାମରିକ ବିଜୟରାଜିର ପ୍ରତୀକରୂପେ । ଏହା ହୁଏତ ରାଜାଙ୍କ କଟକସ୍ଥ ପ୍ରାସାଦ ବା ଜଗନ୍ନାଥବେଢ଼ାରେ ଅଭିନୀତ ହୋଇଥିଲା; କିନ୍ତୁ ଯଦିବା ନାଟକଟିର ସାହିତ୍ୟିକ ମୂଲ୍ୟ ବିଶେଷ ନାହିଁ, ଏହାକୁ ଏକ ମୂଲ୍ୟବାନ୍ ବୈଶିଷ୍ଟ୍ୟ ଦେଇପାରିଛି ଏଥିରେ ଥିବା ଓଡ଼ିଆ ଗୀତଗୁଡ଼ିକ । ଭାସଙ୍କଠାରୁ ଆରମ୍ଭ କରି ବହୁ ଶତାବ୍ଦୀଧରି ସଂସ୍କୃତ ନାଟକମାନଙ୍କରେ ଗୀତ ରଚିତ ହେଉଥିଲା ପ୍ରାକୃତ ଭାଷାରେ । ଓଡ଼ିଶାରେ ଲିଖିତ 'ପରଶୁରାମ ବିଜୟ' ନାଟକରେ ପ୍ରାକୃତ ପରିବର୍ତ୍ତରେ, ଗୀତପାଇଁ ଯେ ଓଡ଼ିଆ ବ୍ୟବହାର କରାଗଲା, ତାହା ନିଶ୍ଚୟ ଏକ ସାହସିକ ପଦକ୍ଷେପ ।

ଯା'ପରେ ଆସିଲା ଓଡ଼ିଶା ଇତିହାସର ଘୋରତମ ଦୁର୍ଦ୍ଦିନ – ମୁସଲମାନ ଓ ମରାଠା ଶାସନର ଦୁଃସ୍ୱପ୍ନମୟ କାଳ । ଆକ୍ରମଣ ଓ ପ୍ରତିରୋଧ ନିରବଚ୍ଛିନ୍ନ ଭାବରେ ଚାଲି ଦେଶ ଛାରଖାର ହେଲା; କିନ୍ତୁ ସେହି ଅନିଶ୍ଚିତ, ଭୀତତ୍ରସ୍ତ କାଳର ମଧ ଯେ କେତେ ଖଣ୍ଡ ନାଟକ ମିଳୁଛି, ତାହାହିଁ ପ୍ରମାଣ କରୁଛି ଯେ ବ୍ରିଟିଶ ଆସିବା ବା ଇଂରେଜୀ ଶିକ୍ଷା ପ୍ରବର୍ତ୍ତିତ ହେବାର ବହୁ ପୂର୍ବରୁ ଓଡ଼ିଶାରେ ନାଟକ ରଚନା ଓ ନାଟକ ଅଭିନୟର ଏକ ଜୀବନ୍ତ ଐତିହ୍ୟ କୌଣସିମତେ ବଞ୍ଚିରହିଥିଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ କୌଣସି ଏକ ଅଜ୍ଞାତ ଲେଖକର ହସ୍ତରୁ ଆମେ ପାଉଁ 'ଗୌରୀହରଣ' ନାମକ ଏକ ନାଟକ । ଏ ନାଟକରେ ସେତେବେଳର ଓଡ଼ିଶା-ଶାସକ ମରାଠାମାନଙ୍କୁ ଆଖିରେ ରଖି, ଏଥିରେ ହିନ୍ଦୀ-ଗୀତସବୁ ଦିଆଯାଇଛି । ସ୍ଥାନୀୟ ରାଜାମାନଙ୍କ ପୃଷ୍ଠପୋଷକତାରେ ଢେଙ୍କାନାଳଗଡ଼ ମଧ ସାହିତ୍ୟଚର୍ଚ୍ଚାର ଏକ କେନ୍ଦ୍ର ହୋଇଉଠିଥିଲା । ୧୮୩୦ରେ ଏଠାର ଖଡ୍‌ଗପ୍ରସାଦ ନାମକ ଏକ ବ୍ୟକ୍ତିଙ୍କ ଲେଖନୀରୁ ଆମେ ପାଉଁ 'ପଦ୍ମାବତୀହରଣ' ନାଟକ । ୧୮୬୮ରେ ପାରଳାଖେମୁଣ୍ଡିର ରଘୁନାଥ ପରିଛାଙ୍କ 'ଗୋପୀନାଥବଲ୍ଲଭ' ନାଟକ ଗୌରୀଶଙ୍କର ରାୟଙ୍କଦ୍ୱାରା କଟକରୁହିଁ ପ୍ରକାଶିତ ହୁଏ । ଏହି ଗ୍ରନ୍ଥର ବିଶେଷତ୍ୱ ଏହି ଯେ, ଏହାର ଓଡ଼ିଆ ପଦ୍ୟାଂଶମାନ ସଂସ୍କୃତ ଗୁରୁଲଘୁ ନିୟମ ରକ୍ଷା କରି ଲିଖିତ । ଏହାର ଗଦ୍ୟାଂଶ ମଧ ପଦ୍ୟଧର୍ମୀ କାଦମ୍ବରୀର ଅଂଶମାନଙ୍କୁ ସ୍ମରଣ କରାଇଥାଏ । ସଂସ୍କୃତ ମନ୍ଦାକ୍ରାନ୍ତା ବୃତ୍ତରେ ରଚିତ ନିମ୍ନଲିଖିତ ପ୍ରସିଦ୍ଧ ଓଡ଼ିଆ ଶ୍ଳୋକଟି ଏହି ନାଟକରେ ଦେଖିବାକୁ ମିଳେ–

''ପଣ୍ଡା ପିଣ୍ଡା ତଳକୁ ବସିଲେ ମଣ୍ଡପେ ଶାସନୀୟେ
ଟାଣ୍ଡେ ଟାଣ୍ଡେ ବସି ବସିଗଲେ ଚକ୍ଷୁରେ ପାଙ୍କ୍ତି-ଧାଡ଼ି,

ଗଣ୍ଡା ଗଣ୍ଡା ଲଡୁ ଗଡୁସମ ଖଣ୍ଡପାକେ ସଜାଡ଼ି
ଭେଣ୍ଡା ଭେଣ୍ଡା ଦ୍ୱିଜ ପରଷିଲେ ପୂର୍ଣ୍ଣ ପର୍ଣ୍ଣେ ଅଜାଡ଼ି ।''

ସଂସ୍କୃତ ଛନ୍ଦରେ ଓଡ଼ିଆ-ଶ୍ଳୋକ ରଚନା କରିବାର ପ୍ରଥା ପ୍ରତିଷ୍ଠିତ ହୁଏ ପ୍ରକୃତରେ ସେହି ପାରଳାଖେମୁଣ୍ଡି-ନିବାସୀ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଅସାଧାରଣ ବ୍ୟାପକ କୃତିତ୍ୱ ଯୋଗୁଁ; କିନ୍ତୁ ଏ ଦିଗରେ ଅଗ୍ରଣୀ ନିଶ୍ଚୟ ଗୋପୀନାଥ ପରିଚ୍ଛା ଓ ଏହାର ଯେ ତେଲଗୁ ସାହିତ୍ୟର ପ୍ରଭାବର ଫଳ, ଏହା ନିଃସନ୍ଦେହ ।

ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ପ୍ରାକ୍-ଆଧୁନିକ ଅଧ୍ୟାୟ କିନ୍ତୁ ଏଇଠି ସରିଲା । ଆଧୁନିକ ଓଡ଼ିଆ ନାଟକର ଇତିହାସ ଆରମ୍ଭ ୧୮୭୭ରେ, ବ୍ରିଟିଶ ଓଡ଼ିଶା ଅଧିକାର କରିବାର ସତୁରି ବର୍ଷରୁ ଅଧିକ କାଳ ପରେ ।

**ରାମଶଙ୍କର ରାୟ –**

ଇଂରେଜ ୧୮୦୩ରେ ଓଡ଼ିଶା ଅଧିକାର କଲାବେଳକୁ ପ୍ରତିବେଶୀ ବଙ୍ଗଳାରେ ସେମାନେ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ଶାସକ ଭାବରେ ପ୍ରତିଷ୍ଠିତ ହୋଇସାରିଲେଣି । ନବ-ଲବ୍ଧ ଓଡ଼ିଶା ରାଜ୍ୟକୁ ଶାସନିକ ସୁବିଧା ପାଇଁ ଇଂରେଜମାନେ ବଙ୍ଗଳା ସାଥିରେ ଯୋଡ଼ିଦେଲେ ଏବଂ ଇଂରେଜମାନଙ୍କୁ ଓଡ଼ିଶାର ଶାସନ-କାର୍ଯ୍ୟରେ ସହାୟତା କରିବା-ପାଇଁ ବଙ୍ଗାଳୀ କର୍ମଚାରୀଙ୍କର ସ୍ରୋତ ଓଡ଼ିଶାକୁ ପ୍ଳାବିତ ହେଲା । ସେତେବେଳକୁ କଲିକତାର ଇଂରେଜ ବାସିନ୍ଦାମାନଙ୍କର ନିଜର ନାଟକ ଓ ଥିଏଟର ଦେଖି, କଲିକତାର ଶିକ୍ଷିତ ବଙ୍ଗାଳୀ-ସମାଜରେ ନିଜର ବଙ୍ଗଳା ରଙ୍ଗମଞ୍ଚ ଦେଖାଦେଲାଣି । ପୁରୀ ଓ କଟକ, ନବାଗତ ବଙ୍ଗାଳୀ କର୍ମଚାରୀମାନଙ୍କର ବହୁଳତାରୁ ଏକ ଏକ ବଙ୍ଗାଳୀ ସହରହିଁ ହୋଇଉଠିଲା ଏବଂ ପୁରୀ କଟକର ବଙ୍ଗାଳୀ ସମାଜ ଦଶହରା ପ୍ରଭୃତି ଉତ୍ସବବେଳେ ପୁରୀ କଟକରେହିଁ ନିଜର ରଙ୍ଗମଞ୍ଚ ଠିଆକରାଇ, ବଙ୍ଗଳା ନାଟକ ଅଭିନୟ କରାଇଲେ । ସେତେବେଳେ ଓଡ଼ିଶା ରାଜ୍ୟର ଶିକ୍ଷିତ ସମ୍ପ୍ରଦାୟ କହିଲେ ବୁଝାଉଥିଲା ବସ୍ତୁତଃ ବଙ୍ଗାଳୀ ସମାଜକୁ । ତେଣୁ ବହୁବର୍ଷଧରି ଓଡ଼ିଶାରେ ନାଟକ ଓ ରଙ୍ଗମଞ୍ଚର ଇତିହାସ, ବଙ୍ଗଳା ନାଟକାଭିନୟର ଇତିହାସ ଛଡ଼ା ଆଉ କିଛି ନୁହେଁ ।

ଆଧୁନିକ ଓଡ଼ିଆ ନାଟକର ଜନ୍ମଦାତା ଶ୍ରୀ ରାମଶଙ୍କର ରାୟ ୧୮୮୦ ଖ୍ରୀ: ଅ:ରେ ଯେଉଁ ପ୍ରଥମ ଓଡ଼ିଆ ନାଟକଟି ଲେଖନ୍ତି, ତାଙ୍କ ଭୂମିକାରେ ସେ ଲେଖିଛନ୍ତି ଯେ, ବାରମ୍ବାର ଓଡ଼ିଶା-ମାଟିରେ ବଙ୍ଗଳା ନାଟକମାନଙ୍କର ଅଭିନୟ ଦେଖି ଦେଖି ତାଙ୍କର ଚିତ୍ତ ବିଦ୍ରୋହୀ ହୋଇଉଠିଲା ଓ ସେ ଓଡ଼ିଆ ଜାତିର ଐତିହାସିକ ଗୌରବ ପରିବେଷଣ କରି ଓଡ଼ିଆରେ ନାଟକ ଲେଖିବାକୁ ସ୍ଥିରକଲେ । ସେତେବେଳକୁ ରାମଶଙ୍କର ମାତ୍ର ବିଂଶବର୍ଷ ବୟସ୍କ ଟୋକା, ସଦ୍ୟ ସେ କାଳର ଏଫ୍.ଏ. ପରୀକ୍ଷା ପାସ୍ କରିଥାନ୍ତି । ଯା'ର ତିନି-ବର୍ଷ ପୂର୍ବରୁ ଅବଶ୍ୟ ଜଗମୋହନ ଲାଲ୍‌ଙ୍କ 'ବାବାଜୀ' ନାଟକ ପ୍ରକାଶିତ ହୋଇସାରିଥାଏ । ଏହା ବୋଧହୁଏ ପ୍ରଥମ ଆଧୁନିକ ଓଡ଼ିଆ ନାଟକ । ଯଦିବା ଏହି ଚାରିଅଙ୍କବିଶିଷ୍ଟ ପ୍ରଥମ

ଓଡ଼ିଆ ନାଟକଟି, ମହାତ୍ମା ଗାନ୍ଧି ଓ ଜାତୀୟ କଂଗ୍ରେସ ସରକାରଙ୍କର ପଚାଶ ବର୍ଷ ଆଗରୁ ନିଶାନିବାରଣ ପାଇଁ ପ୍ରଚାର ଆରମ୍ଭ କରିଦେଇଥିଲା, ନାଟକୀୟ ଶିଳ୍ପ ଅପେକ୍ଷା ଏ ପୁସ୍ତକରେ ନୈତିକ ପ୍ରଚାର ଅତ୍ୟଧିକ ହୋଇଉଠିଥିବାରୁ, ଏହା ରଙ୍ଗମଞ୍ଚରେ ସିଦ୍ଧିବାନ୍ ହୋଇପାରିନଥିଲା; କିନ୍ତୁ ୧୮୮୦ରେ ତରୁଣ ରାମଶଙ୍କର ଯେଉଁ ନାଟକଟି ରଙ୍ଗମଞ୍ଚରେ ଠିଆକରାଇଲେ, ତାହାର ଜନପ୍ରିୟତାରେ ଦ୍ୱିଧା ନଥିଲା । ରାମଶଙ୍କର ପରେ ଯେତେଗୁଡ଼ିଏ ନାଟକ ଲେଖିଲେ, ସେଗୁଡ଼ିକର ମଞ୍ଚୋପଯୋଗିତା, ସମସାମୟିକ ଜନରୁଚି ଓ ଶୈଳ୍ପିକ ମାନଦଣ୍ଡ ଦୃଷ୍ଟିରୁ ସ୍ୱୟଂସିଦ୍ଧ ହୋଇପଡ଼ିଥିଲା । ସେ ମଧ ନାଟକ ଓ ରଙ୍ଗମଞ୍ଚକୁ ପେଶାଦାରୀ ଲାଭଖୋରୀ ଦୃଷ୍ଟିରୁ ଦେଖିନଥିଲେ । ଇଂରେଜ ସାହିତ୍ୟର ଏଲିଜାବେଥୀୟ ଯୁଗରେ ଇଂଲଣ୍ଡର ପ୍ରସିଦ୍ଧ ନାଟ୍ୟକାରମାନେ ଯେଉଁ ଭାବରେ ଉଦ୍‌ବୁଦ୍ଧ ହୋଇ ଲେଖୁଥିଲେ, ରାମଶଙ୍କର ଠିକ୍ ସେହିପରି ଜାତୀୟତା ଅନୁପ୍ରେରିତ ହୋଇ, ଅର୍ଥାତ୍ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ଅନ୍ତତଃ ବଙ୍ଗଳା ବା ଅନ୍ୟ ଭାରତୀୟ ଭାଷାର ନାଟକ ଓ ରଙ୍ଗମଞ୍ଚର ସମକକ୍ଷ ଯେପରି ହେବ, ସେହି ଉଚ୍ଚାଶା ପ୍ରେରିତ ହୋଇ ଲେଖିଥିଲେ । ଏହିସବୁ କାରଣ ଯୋଗୁଁ, ପ୍ରଥମ ଓଡ଼ିଆ ନାଟକ ନଲେଖିଥିଲେ ମଧ ରାମଶଙ୍କର ଅବିସମ୍ବାଦିତ ଭାବରେ ଆଧୁନିକ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଜନକରୂପେ ଦଣ୍ଡାୟମାନ ।

ରାମଶଙ୍କରଙ୍କର ପ୍ରଥମ ନାଟକ ହେଲା 'କାଞ୍ଚିକାବେରୀ' । ଓଡ଼ିଶା ଇତିହାସରେ ଏହି ସର୍ବଶ୍ରେଷ୍ଠ ରୋମାଞ୍ଚକର କାହାଣୀ ବହୁକାଳଧରି ଉତ୍କଳର ଜନଚିତ୍ତକୁ କିପରି ଆକର୍ଷଣ କରିଆସିଛି, ତାହା ଆଗରୁ ସୂଚିତ ହୋଇଛି । ସମସାମୟିକ କାଳରେ ବଙ୍ଗ-ସାହିତ୍ୟିକ ରଙ୍ଗଲାଲ ବାନାର୍ଜି, ପୁରୁଷୋତ୍ତମ-ପଦ୍ମାବତୀଙ୍କର କରୁଣ-ମଧୁର କାହାଣୀରେ ମୁଗ୍ଧ ହୋଇ ବଙ୍ଗଭାଷାରେ କାଞ୍ଚିକାବେରୀ ନାମକ ଏକ କାବ୍ୟ ମଧ ରଚନା କରି ପ୍ରକାଶ କରିଥିଲେ । ତେଣୁ ସେହି ଲୋକଚିତ୍ତାନୁରଞ୍ଜକ ବିଷୟ ନେଇ ଓଡ଼ିଆରେ ନାଟକ ଲେଖିବା ତରୁଣ ରାମଶଙ୍କରଙ୍କ ପକ୍ଷରେ ସ୍ୱାଭାବିକହିଁ ଥିଲା; କିନ୍ତୁ ପରେ ପରେ ରାମଶଙ୍କର ନାନାପ୍ରକାର ତିରିଶଟି ନାଟକ ଲେଖିଗଲେହେଁ, ତରୁଣ-ବୟସ-ରଚିତ ଏହି ପ୍ରଥମ ନାଟକଟିହିଁ ତାଙ୍କର ଶ୍ରେଷ୍ଠ ସୃଷ୍ଟି ବୋଲି ଧରାଯାଏ । ବହୁକାଳଧରି, ପରବର୍ତ୍ତୀ ଓଡ଼ିଆ ନାଟ୍ୟକାରମାନଙ୍କ ପାଇଁ ରାମଶଙ୍କରଙ୍କ କାଞ୍ଚିକାବେରୀହିଁ ରହିଥିଲା ମଞ୍ଚୋପଯୋଗୀ ନାଟକର ଆଦର୍ଶ ।

ରାମଶଙ୍କର ଆଧୁନିକ ଓଡ଼ିଆ ନାଟକର କେବଳ ନୁହେଁ, ଆଧୁନିକ ଓଡ଼ିଆ ରଙ୍ଗମଞ୍ଚର ମଧ ପିତା । ବିସ୍ମୟର କଥା ଏହି ଯେ, କଟକର ନାଗରିକ ଥାଇ ମଧ ତରୁଣ ନାଟ୍ୟକାର ରାମଶଙ୍କର, କଟକ ନଗରରେ କାହାରିଠୁ ହେଲେ ତାଙ୍କର ନାଟକୀୟ ଉତ୍ସାହ ପାଇଁ କୌଣସି ପ୍ରକାର ସହାୟତା ବା ସମର୍ଦ୍ଧନା ପାଇଲେନାହିଁ; କିନ୍ତୁ ପାଇଲେ ଯାଇ କଟକ ଜିଲ୍ଲାର ଏକ ଅଜ୍ଞାତ ଗ୍ରାମ, କୋଠପଦାର ଜଣେ ନାଟକପ୍ରେମୀ ଓଡ଼ିଆ ମହନ୍ତଙ୍କଠାରୁ । କୋଠପଦାର ଏହି ଅଜ୍ଞାତନାମା ସ୍ୱଦେଶାନୁରାଗୀ ମହନ୍ତଙ୍କ ନିକଟରେ ଓଡ଼ିଆ ଜାତି ଓ ସାହିତ୍ୟ ଚିରକାଳ ଋଣୀ ରହିବ । ସେ ମହନ୍ତ ବିଶେଷ ଭାବରେ ବିତ୍ତବନ୍ତ ଥିବାର ଜଣାଯାଇନାହିଁ; କିନ୍ତୁ ଦୀର୍ଘ ଚାଳିଶବର୍ଷଧରି ସେ ପଲ୍ଲୀଗ୍ରାମ କୋଠପଦାରେ ନିଜ ମଠ-

ପ୍ରାଙ୍ଗଣରେ ଏକ ସ୍ଥାୟୀ ରଙ୍ଗମଞ୍ଚ ତିଆରିକରାଇ, ବର୍ଷ ପରେ ବର୍ଷ, ଉତ୍ସବ-ଦିନମାନଙ୍କରେ, ନୂଆ ନୂଆ ଓଡ଼ିଆ ନାଟକ ଅଭିନୀତ କରାଇଚାଲିଥିଲେ । କୋଠପଦାର ଏହି ସାହିତ୍ୟୋ-ତ୍ସାହୀ ମହନ୍ତଙ୍କ ପୃଷ୍ଠପୋଷକତା ବିନା, ଆଧୁନିକ ଓଡ଼ିଆ ନାଟକ ଯେ ସ୍ୱାଭାବିକ ଶିଶୁ ମୃତ୍ୟୁ ପ୍ରାପ୍ତ ହୋଇଥାନ୍ତା, ଏହା ନିଃସନ୍ଦେହ ।

ଇତିମଧ୍ୟରେ ଆଧୁନିକ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ଓଡ଼ିଶାର ସର୍ବାଞ୍ଚଳରେ ଦେଖାଦେଇଥିଲା । ସେତେବେଳେ ରାଜା ମହାରାଜା, ଜମିଦାର ବା ବିତ୍ତଶାଳୀ ଲୋକଙ୍କ ପକ୍ଷରେ ବିବାହାଦି ସାମାଜିକ ଉତ୍ସବରେ, ଅଭିନେତାମାନଙ୍କୁ ଆଣି ଓଡ଼ିଆ ନାଟକ ଦେଖେଇବା ଏକ ସାମାଜିକ ପ୍ରତିପତ୍ତିର ଚିହ୍ନ ହୋଇ ଠିଆହୋଇଥିଲା । ନବୋତ୍କଳର ମୁଖ୍ୟତମ ଜନନାୟକ ମଧୁସୂଦନ ଦାସ ମଧ୍ୟ ଏହି ପ୍ରକାର ପୃଷ୍ଠପୋଷକମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ତାଙ୍କର କଟକସ୍ଥ ବିଖ୍ୟାତ ଉଦ୍ୟାନାବାସ (ବର୍ତ୍ତମାନ ଶୈଳବାଳା ମହିଳା ମହାବିଦ୍ୟାଳୟ)ରେ ସେ ବହୁବର୍ଷଧରି ଏକ ସ୍ଥାୟୀ ରଙ୍ଗମଞ୍ଚ ତିଆକରାଇଥିଲେ, ଯେଉଁଠି ନଗରର ନାଟ୍ୟାନୁରାଗୀମାନେ ବର୍ଷ ପରେ ବର୍ଷ ଉତ୍ତମ ଅଭିନୟ ସବୁ ଦେଖାଉଥିଲେ । ଏହିପ୍ରକାର ସ୍ଥାୟୀ ଓ ଅର୍ଦ୍ଧସ୍ଥାୟୀ ରଙ୍ଗମଞ୍ଚ ସବୁ ପାରଳାଖେମୁଣ୍ଡି, ବାରିପଦା, ନୀଳଗିରି, ଚିକିଟି ଇତ୍ୟାଦି ଉତ୍କଳର ବହୁସ୍ଥାନରେ ରାଜା, ଜମିଦାର ଓ ଧନିକମାନଙ୍କର ପୃଷ୍ଠପୋଷକତାରେ ଦେଖାଦେଇଥିଲା ।

ଏହି (ବିଂଶ) ଶତାବ୍ଦୀର ଆରମ୍ଭବେଳକୁ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇସାରିଥିଲା କହିଲେ ଚଳେ । ଏତେବେଳକୁ ବହୁ ବ୍ୟବସାୟୀ ରଙ୍ଗମଞ୍ଚ ମଧ୍ୟ ଦେଖା-ଦେଲେଣି । ସେଥିରୁ ଅଧିକାଂଶ ଦେଖାଦେଇ ଉଭେଇଗଲେ; କିନ୍ତୁ ସେମାନଙ୍କର ବହୁଳତାହିଁ ପ୍ରମାଣ କରେ ଏ ଜାତୀୟ ନବବିଧ ମାନସିକ ବିନୋଦନ ପାଇଁ ଉତ୍କଳୀୟ ଜନଚିତ୍ତରେ ନୂତନ ଉନ୍ମାଦନା । ସମସାମୟିକ ଓଡ଼ିଆ ସମ୍ବାଦପତ୍ର ମହଲରେ ନାଟକ ଓ ରଙ୍ଗମଞ୍ଚ ତତ୍ତ୍ୱ ବର୍ତ୍ତମାନ ପ୍ରକାଶ୍ୟରେ ବିଚାରିତ ହେବାକୁ ଲାଗିଲା । ତତ୍‌କାଳୀନ 'ଉତ୍କଳସାହିତ୍ୟ'ର ପୃଷ୍ଠାମାନଙ୍କରେ ନାଟକରେ ସଙ୍ଗୀତର ସ୍ଥାନ ନେଇ ଆଲୋଚନା ହେଲା । ଖଡ଼ିଆଳର ଯୁବରାଜ ବିକ୍ରମଦେବ ନିଜେ ଜଣେ ନାଟ୍ୟକାର ଥିଲେ । ସେ 'ନାଟକ ରଚନା ପ୍ରଣାଳୀ' ନାମକ ଏକ ତାତ୍ତ୍ୱିକ ପ୍ରବନ୍ଧ ପ୍ରକାଶ କରି, ନାଟକକୁ ଜୀବନର ନିକଟତର କରିବା ପାଇଁ, ନାଟକରଚନାରେ ଗ୍ରୀକ୍-ନାଟ୍ୟ ତତ୍ତ୍ୱର unities ବା ରଙ୍ଗମଞ୍ଚରେ ଚିତ୍ରମାନଙ୍କର ସ୍ଥାନ-କାଳ-ପାତ୍ର-ଏକତ୍ୱ ଉପରେ ଦୃଷ୍ଟି ରଖିବାକୁ ଉପଦେଶ ଦେଇଥିଲେ; କିନ୍ତୁ ତାଙ୍କ ଉପଦେଶ ଅନ୍ୟମାନେ ପାଳିବା ଦୂରେ ଥାଉ, ଯୁବରାଜ ନିଜେଇ ନିଜ ନାଟକମାନଙ୍କରେ ପାଳିନଥିଲେ ।

ସେ କାଳରେ ଖ୍ୟାତିଲାଭ କରିଥିବା ବହୁ ନାଟକ ଆଜି ସମ୍ପୂର୍ଣ୍ଣ ବିସ୍ମୃତ । ସେ ସମସ୍ତଙ୍କ ଭିତରେ ଚିରସ୍ଥାୟିତ୍ୱ ଲାଭ କରିପାରିଛି କେବଳ ରାମଶଙ୍କରଙ୍କ ନାଟକାବଳି । ନିଜ ପରିବେଶର ପ୍ରତିକୂଳତା ସତ୍ତ୍ୱେ ରାମଶଙ୍କର ଯେପରି ଗୋଟାକ ପରେ ଗୋଟେ ନାଟକୀୟ ପରୀକ୍ଷା କରିଚାଲିଥିଲେ, ତାହା ଆଜି ବିସ୍ମୟକର ବୋଧହେଉଛି । ସେ ଐତିହାସିକ, ପୌରାଣିକ, ସାମାଜିକ, ପାରିହାସିକ ବା ରୋମାଞ୍ଚକାଦି ନାଟକରେ କୌଣସି

ପ୍ରକାରକୁ ସ୍ପର୍ଶ ନକରି ଛାଡ଼ିଯାଇନାହାନ୍ତି । ପ୍ଲଟ୍ ସବୁ କେତେକ ସଂଗୃହୀତ, କେତେକ ମଧ୍ୟ ମନଗଢ଼ା । ସଙ୍ଗୀତ ତାଙ୍କ ନାଟକରେ ଯଥାଯୋଗ୍ୟ ସ୍ଥାନ ପାଇଛି ଓ ସେ ଗଦ୍ୟ ଓ ଅମିତ୍ରାକ୍ଷରକୁ ଓଡ଼ିଆ ନାଟକରେ ପ୍ରଥମକରି ସିଦ୍ଧହସ୍ତତା ସହିତ ବ୍ୟବହାର କରିଯାଇଛନ୍ତି ।

**ଚିକିଟିର ରାଜାସାହେବ –**

ପାରଳାଖେମୁଣ୍ଡିର ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, କଟକର ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପୁରୀର ପଣ୍ଡିତ ହରିହର ମିଶ୍ର ଏବଂ ଗଞ୍ଜାମ ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ରଦେବ ଆଧୁନିକ ଓଡ଼ିଆ ଭାଷାରେ ସଂସ୍କୃତ ନାଟକର ପରମ୍ପରା ରକ୍ଷା କରିବାରେ ଯଶସ୍ୱୀ ହୋଇଥିଲେ; କିନ୍ତୁ ଏ ସମସ୍ତଙ୍କ ଭିତରେ ଚିକିଟୀଶ୍ୱର ରାଧାମୋହନ ରାଜେନ୍ଦ୍ରଦେବଙ୍କ ନାଟକାବଳି ଲେଖକର ବ୍ୟକ୍ତିତ୍ୱର ଗଭୀର ମୁଦ୍ରା ଘେନି ଯେପରି ଧାରାବାହିକ ଆତ୍ମପ୍ରକାଶ କରିଥିଲା, ତାହା ଅନ୍ୟମାନଙ୍କଠାରେ ଦେଖାଦେଇନଥିଲା । ଚିକିଟୀଶ୍ୱର ରାଜେନ୍ଦ୍ରଦେବ ବିଳାସମୟ ଅଭିଜାତ ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ, ଥିଲେ ସମାଜ ସଂସ୍କାରକ, ସ୍ୱଦେଶାନୁରାଗୀ ଓ ସାହିତ୍ୟସେବକ । ବିଚ୍ଛିନ୍ନାଞ୍ଚଳରେ ରହି, ମାତୃଭାଷା ଓଡ଼ିଆର ସେ ଯେପରି ନିଷ୍ଠାପର ସେବା କରିଯାଇଛନ୍ତି, ସେଥିପାଇଁ ସେ ପ୍ରକୃତରେ ଗଭୀର ଧନ୍ୟବାଦର ପାତ୍ର । ରାଜାଙ୍କ ଖିଆଲ ଅନୁସାରେ ତାଙ୍କର ସବୁ ନାଟକର ନାମର ଆରମ୍ଭ 'ପ' ଅକ୍ଷରରେ; ଯଥା– ପାଞ୍ଚାଳୀପଟ୍ଟାପହରଣ, ପରିମଳା-ସହଗମନ, ପ୍ରକୃତିରହସ୍ୟ, ପ୍ରକୃତ ପ୍ରଣୟ, ପ୍ରତାପ ଇତ୍ୟାଦି । ଏହି ନାଟକାବଳିରେ ରାଜା ଯେଉଁ ଗଦ୍ୟ ବ୍ୟବହାର କରିଛନ୍ତି, ତାହା ସଂସ୍କୃତର ଭାର ଓ ବହୁଳତାରେ ହୋଇଉଠିଛି ଅନୁପଭୋଗ୍ୟ । ତାଙ୍କର ଗୀତଗୁଡ଼ିକ ଜଟିଳ କର୍ଣ୍ଣାଟୀ ରାଗ-ରାଗିଣୀରେ ରଚିତ ହୋଇଥିବାଯୋଗୁଁ ମଧ୍ୟ ସୁପ୍ରଚାରିତ ହୋଇ-ପାରିଲାନି । ଚିକିଟୀଶ୍ୱରଙ୍କ ନାଟକାବଳି ସ୍ୱ-ରଙ୍ଗମଞ୍ଚ ଅଭିନୟର ଫଟୋ-ସମ୍ବଳିତ ହୋଇ ସେକାଳର ଚିତ୍ତାକର୍ଷକ ରୀତିରେ ପ୍ରକାଶିତ ହୋଇଥିଲା । ଦୁଃଖର ବିଷୟ, ସେଗୁଡ଼ିକ ବର୍ତ୍ତମାନ ଏକପ୍ରକାର ଦୁଷ୍ପ୍ରାପ୍ୟ – ପଠିତ ବା ଆଲୋଚିତ ହେବା ଦୂରେଥାଉ । କିନ୍ତୁ ଅଭିଜାତ-ଲେଖକଙ୍କର ଅବିସମ୍ବାଦିତ ସ୍ୱକୀୟ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ବହନ କରୁଥିବା ହେତୁ; ରାଧାମୋହନ ରାଜେନ୍ଦ୍ରଦେବଙ୍କର ନାଟକାବଳିକୁ ଓଡ଼ିଆ ନାଟକ-ସାହିତ୍ୟର କୌଣସି ଐତିହାସିକ ଉପେକ୍ଷା ପ୍ରଦର୍ଶନ କରିପାରିବେ ନାହିଁ । ଏଗୁଡ଼ିକର ସାମାନ୍ୟତମ ଆଲୋଚନା ମଧ୍ୟ ଏପର୍ଯ୍ୟନ୍ତ ହୋଇନାହିଁ ।

**ରଙ୍ଗମଞ୍ଚ, ପ୍ରଚାରମଞ୍ଚ –**

ତେଣେ ଭାରତୀୟ ପ୍ରାଚୀନ ଐତିହ୍ୟ ସବୁର ପୁନର୍ଜାଗୃତିର ଚେଷ୍ଟା ସଙ୍ଗେ ସଙ୍ଗେ ଓଡ଼ିଆ ରଙ୍ଗମଞ୍ଚ ବିଧବା ବିବାହ, ପ୍ରେମଜ ବିବାହ, ଜାତିପ୍ରଥାର ବିନାଶ ଓ ଯୌତୁକ ପ୍ରଥା ବିଲୋପ ପ୍ରଭୃତି ସମାଜ-ସଂସ୍କାରମାନଙ୍କର ବାହନ ମଧ୍ୟ ହେବାକୁ ବସିଲା । ପ୍ରଥମ ଆଧୁନିକ ଓଡ଼ିଆ ନାଟକହିଁ ନିଶା-ନିବାରଣ ପ୍ରଚାର ପାଇଁ ଲିଖିତ ହୋଇଥିଲା । ଏହି ଶ୍ରେଣୀର ସଂସ୍କାରମୂଳକ ନାଟକାବଳି ଲେଖିବାରେ ଅଗ୍ରଣୀ ଥିଲେ ଶ୍ରୀ ଭିକାରିଚରଣ

ପଟ୍ଟନାୟକ । ସେ ସାମୟାରୀ କବିତା ଲେଖି ଓ ପରେ ଓଡ଼ିଶାରେ କୁଟୀରଶିଳ୍ପର ଅଭ୍ୟୁଦୟ ପାଇଁ କାମ କରି ଦେଶପ୍ରସିଦ୍ଧ ହୋଇଉଠିଥିଲେ । ଶ୍ରୀ ପଟ୍ଟନାୟକ ତାଙ୍କ ରଚନାବଳିରେ ନୂଆ ଇଂରାଜୀ-ପଢୁଆମାନଙ୍କର ବାବୁଯାଦି ଢଙ୍ଗ, ହିନ୍ଦୁଜାତିପ୍ରଥା, ନବ୍ୟଶିକ୍ଷିତା ରମଣୀ ଓ ତଥାକଥିତ ଦେଶୀ 'ସାହିବ'ମାନଙ୍କ ପ୍ରତି ଜୋର୍ କଷାଘାତ କରିଯାଇଛନ୍ତି । ଶ୍ରୀ ପଟ୍ଟନାୟକ 'ପୁରୁଷୋତ୍ତମ', 'କଟକ ବିଜୟ' ଓ 'ନନ୍ଦିକେଶ୍ୱରୀ' ପ୍ରକୃତି କେତେ ଖଣ୍ଡ ଐତିହାସିକ ନାଟକ ମଧ୍ୟ ଲେଖିଛନ୍ତି; କିନ୍ତୁ ଓଡ଼ିଆ ସାହିତ୍ୟକୁ ତାଙ୍କର ବିଶିଷ୍ଟ ଦାନ ହେଉଛି 'ସୁଶୀଳା' ଆଦି ପରିହାସମୂଳକ ଓ ସଂସ୍କାରଲକ୍ଷୀକୃତ କେତୋଟି ନାଟକ ।

ପୁଣି ସଂସ୍କାରକମାନଙ୍କର ଅନ୍ୟ ଦିଗରେ ଦେଖାଦେଇଥିଲେ ଭକ୍ତିବାଦୀ ବୈଷ୍ଣବ ଆଦର୍ଶ ପ୍ରତିଷ୍ଠାପକ-ଦଳ, ଯେଉଁମାନେ ଧ୍ରୁବ, ପ୍ରହ୍ଲାଦ, ସୁଦାମାମାନଙ୍କର ପୌରାଣିକ ଚରିତସବୁକୁ ନାଟକାକାରରେ ପରିବେଷ୍ଟିତ କରି ଚେଷ୍ଟା ମଧ୍ୟ କରିଥିଲେ ସମାଜରେ ବ୍ୟକ୍ତିଗତ ଜୀବନର ପୁନର୍ଗଠନ କେବଳ ନୁହେଁ, ଭକ୍ତି-ଆଶ୍ରିତ ଏକ ନୂତନ ସମାଜର ପ୍ରତିଷ୍ଠା । ଭକ୍ତିବାଦ-ପ୍ରଚାରକାରୀ, ଗାଲ-ଗଳ୍ପ-ମୂଳକ ଏସବୁ ପୌରାଣିକ ଚରିତଗୁଡ଼ିକୁ ଆଜିର ଲୋକେ ପୂର୍ବପରି ବିଶ୍ୱାସ କରିବା ସମ୍ଭବ ନୁହେଁ । ତେଣୁ ଏ ଶ୍ରେଣୀର ନାଟକ ରଙ୍ଗମଞ୍ଚରୁ ପ୍ରାୟ ଉଭେଇଗଲେଣି ।

**ଜାତୀୟତାମ୍ନକ ନାଟକାବଳି –**

କିନ୍ତୁ ଊନବିଂଶ ଶତାବ୍ଦୀର ଶେଷ ପଚିଶ ବର୍ଷ ଓ ବିଂଶ ଶତାବ୍ଦୀର ପ୍ରଥମ ପଚିଶ ବର୍ଷ ଧରି, ଏହି ପଚାଶ ବର୍ଷର ଓଡ଼ିଆ ରଙ୍ଗମଞ୍ଚରେ ସବୁଠାରୁ ମୁଖ୍ୟ ଘଟଣା ହେଉଛି ପାଠକ ଓ ଦେଖଣାହାରିମାନଙ୍କ ପ୍ରାଣରେ ଦେଶାନୁରାଗ ଜାଗ୍ରତ କରିବା ଲକ୍ଷ୍ୟରେ ଲିଖିତ ଜାତୀୟତାମୂଳକ ନାଟକାବଳି । ଭାରତବର୍ଷର ଅବସ୍ଥାନୁଯାୟୀ ଦ୍ୱି-ବିଧ ଦେଶାନୁରାଗକୁ ଲକ୍ଷ୍ୟ କରାଯାଉଥିଲା – ଆଞ୍ଚଳିକ ଓ ସର୍ବଭାରତୀୟ । ପ୍ରାୟ ସମଗ୍ର ବ୍ରିଟିଶ ରାଜତ୍ୱ-କାଳଧରି ଓଡ଼ିଶା ଓ ଓଡ଼ିଆଜାତି ଚାରିଟି ପ୍ରଦେଶରେ ଛିନ୍ନ-ବିଚ୍ଛିନ୍ନ ହୋଇ ପଡ଼ିରହିଥିଲା କେବଳ ନୁହେଁ, ପ୍ରତ୍ୟେକଟିରେ ସଂଖ୍ୟାଗରିଷ୍ଠ ଗୋଷ୍ଠୀଦ୍ୱାରା ଶୋଷିତ ଓ ଅତ୍ୟାଚାରିତ ହୋଇଥିଲା । ତେଣୁ ଏହି ଅର୍ଦ୍ଧଶତାବ୍ଦୀ କାଳ ଓଡ଼ିଆମାନଙ୍କର ଦେଶାନୁରାଗ ଯେ ଅଧିକାଂଶ ଭାବରେ ଆଞ୍ଚଳିକ ହେବ, ତାହା ସ୍ୱାଭାବିକ । ପୂର୍ବେ କୁହାଯାଇଛି ଯେ, ଆଧୁନିକ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ସ୍ରଷ୍ଟା ଓ ପ୍ରତିଷ୍ଠାତା ରାମଶଙ୍କର ପ୍ରଥମ ଓଡ଼ିଆ ନାଟକ ଲେଖିଥିଲେ, ଓଡ଼ିଶା ମାଟିରେ ବଙ୍ଗଳା ନାଟକର ବରାବର ଅଭିନୟରେ ଉଦ୍‌ବ୍ୟକ୍ତ ହୋଇ । କିନ୍ତୁ ଓଡ଼ିଶାର ମାଟିରେ ଭାରତ-ପ୍ରାଣତାର ପ୍ରାଚୁର୍ଯ୍ୟ ନଥାଇପାରିଲେହେଁ ଅଭାବ ନଥିଲା । ଐତିହାସିକ ଓଡ଼ିଆ ଜାତି ଯେ ଦୁଃଖ ବିପନ୍ନ ଅବସ୍ଥାରେ ପଡ଼ି, ତାର ପ୍ରତିବେଶୀମାନଙ୍କଦ୍ୱାରା ଘୃଣିତ ଓ ଶୋଷିତ ହେଉଥିଲା, ତା'ର ସଦ୍ୟ ପ୍ରତିକ୍ରିୟାରୂପେ ଉତ୍କଳପ୍ରାଣତାର ପ୍ରାଦୁର୍ଭାବ ଅତ୍ୟନ୍ତ ସ୍ୱାଭାବିକ ନୁହେଁ କି ? ତେଣୁ ଏହି କାଳ ଭିତରେ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଲେଖକ ଓ ନାଟ୍ୟକାରଙ୍କ ଲକ୍ଷ୍ୟ ହେଲା, ଅଧଃପତିତ ଓଡ଼ିଆମାନଙ୍କର ପ୍ରାଚୀନ ଐତିହାସିକ ଗୌରବ-

ସବୁ ସେମାନଙ୍କ ଆଗେ ବଖାଣି ସେମାନଙ୍କୁ ଏକ ଏକୀଭୂତ ଓ ପୁନର୍ଜୀବନ୍ତ ଜାତିରୂପେ ଠିଆକରେଇବା । ତେଣୁ ଆମେ ଦେଖୁ ଯେ ପ୍ରତିବେଶୀ ବଙ୍ଗଳାଭାଷାର ସେହି କାଳର ନାଟ୍ୟକାରମାନେ ସେମାନଙ୍କର ଜାତୀୟତାମୂଳକ ନାଟକାବଳି ଲେଖିବାପାଇଁ ରାଜପୁତ, ମରାଠା ଓ ମୋଗଲ ଇତିହାସ ସବୁ ଘାଣ୍ଟିଲାବେଳେ, ଓଡ଼ିଆ ନାଟ୍ୟକାରମାନେ ଆଖିପକେଇଛନ୍ତି ଓଡ଼ିଆ ଜାତିର ଐତିହାସିକ ବିଜୟୀ ସମ୍ରାଟ୍‌ମାନଙ୍କ ପ୍ରତି – ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମ, ମୁକୁନ୍ଦ ଓ ନରସିଂହ ଆଦିଙ୍କ ଉପରେ । ଏହି ଶ୍ରେଣୀୟ ନାଟକରେ ପ୍ରଧାନ ଭୂମିକା ହେଉଛି ସତ୍ୟବାଦୀ ସ୍କୁଲଗୋଷ୍ଠୀର ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର । ସ୍ୱର୍ଗତ ମିଶ୍ର ପ୍ରକୃତରେ ଥିଲେ ଏକ କବି । ମନୋଜ୍ଞ କାଳ୍ପନିକ ଓ ଅର୍ଦ୍ଧ-ଐତିହାସିକ ବାଲାଡ୍ (ଗାଥା) ସବୁ ଲେଖି ସେ ଉତ୍କଳ ସାହିତ୍ୟରେ ଅମରତ୍ୱ ଲାଭକରିଯାଇଛନ୍ତି । ସେ ପୁରୁଷୋତ୍ତମ ଦେବ ଓ ମୁକୁନ୍ଦ ଦେବ ନାମକ ମାତ୍ର ଦୁଇଖଣ୍ଡି ଐତିହାସିକ ନାଟକ ଲେଖିଛନ୍ତି । ସ୍ୱର୍ଗତ ମିଶ୍ରେ ଜୀବନକାଳରେ କୌଣସି ହେଲେ ରଙ୍ଗମଞ୍ଚ ସହିତ ସଂପୃକ୍ତ ନଥିଲେ । ତେଣୁ ତାଙ୍କ ନାଟକ ପୂରାପୂରି ରଙ୍ଗମଞ୍ଚୋପଯୋଗୀ ନହେବାର ବିସ୍ମୟର କାରଣ ନାହିଁ; କିନ୍ତୁ ଏହି ଦୁଇ ନାଟକରେ ଦେଶାନୁରାଗ ଜାଗରଣ କ୍ଷମତା ଓ ଏମାନଙ୍କର ମନୋଜ୍ଞ ଲଳିତ ଭାଷା ଓ ସୁକୁମାର ଭାବରାଜି ଏଗୁଡ଼ିକୁ, ବିଶେଷକରି ପୁରୁଷୋତ୍ତମ ଦେବ, ସମଗ୍ର ଓଡ଼ିଶାର ସ୍କୁଲ-କଲେଜମାନଙ୍କରେ ପ୍ରାୟ ହିଁ ଅଭିନୀତ ହେଉଥିଲା । 'ପୁରୁଷୋତ୍ତମ ଦେବ' ନାଟକର ଏକ ଗୀତ ପୃଥିବୀର ଯେକୌଣସି ଭାଷାରେ ଏକ ବିଜୟୀ ବାହିନୀର ମାର୍ଚ୍ଚିଂ-ସଙ୍ଗ୍ ହୋଇପାରେ । ନିମ୍ନରେ କେତୋଟି ପଙ୍‌କ୍ତି ଉଦ୍ଧାର କରାଯାଉଛି ।*

"ରଞ୍ଜିତ ଅସି ଧାରେ, ଶତ୍ରୁ-ରକ୍ତ ଗାରେ,
ଲେଖ ହେ ଆଜି ବିଜୟ ବିଭବ ଜନ୍ମଭୂମି ଭାଲେ ।
ଛିନ୍ନ କରିଛୁ ବଇରି ଗର୍ବ, ବଇରି ଦମ୍ଭ କରିଛୁ ଖର୍ବ,
ମୃତ୍ୟୁମନ୍ତ୍ର ଲେଖିଆସିଛୁ ଶତ୍ରୁର ଶତଭାଲେ ।
ଜୀବନ ପଣ କର ରେ ଭାଇ, ଦେଶକରମେ ପ୍ରାଣ ଦେଇ,
ବୀରଧର୍ମେ ପାଇବ ଫଳ, ଜୀବନ ପରପାରେ ।
ଇତିହାସ ଯା'ର ଭୀମ-ଲଳିତ, ସନ୍ତତି କଲେ ପୂତ ମହତ,
ଭୂଷିତ କର ସେ ଜନନୀ ତନୁ, କୀର୍ତ୍ତି-କୁସୁମ ମାଳେ ।"

---

* ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଆତ୍ମଚରିତ' ପ୍ରକାଶ ପାଇବା ପରେ ଏହି କବିତାଟିର ଲେଖକ କିଏ ତାହା ନେଇ ବାଦାନୁବାଦ ଓ କୁତ୍ସାମୂଳକ ଆକ୍ରମଣ ପ୍ରକାଶ ପାଇଛି । ଦୁଇ ବିବାଦ୍ୟ ଲେଖକଙ୍କ ଭିତରୁ ଜଣେ ମୃତଥିବାସ୍ଥଳେ ଅନ୍ୟର ବଚନକୁ ସତ୍ୟ ବୋଲି ଗ୍ରହଣକରିବା ଅଯୌକ୍ତିକ ହେବ । ତେବେ ଏଠାରେ ଏତିକି କହିରଖେ ଯେ, ଆଜି ନୁହେଁ, ଆଜିକି ତିରିଶି ବର୍ଷତଳେ ମଧ କଥାପ୍ରସଙ୍ଗରେ ପଣ୍ଡିତ ନୀଳକଣ୍ଠ ଏ ଗୀତଟିକୁ ସେ ଲେଖି ଦେଇଥିବାର, ଏ ଲେଖକକୁ ଏକାଧିକବାର କହିଥିଲେ । ରଚନାଶୈଳୀକୁ ଦୃଷ୍ଟିଦେଲେ, ଏ ଗୀତ ପଣ୍ଡିତ ଗୋଦାବରୀଶଙ୍କ ଅପେକ୍ଷା ନୀଳକଣ୍ଠଙ୍କ ଲେଖନୀର ସନ୍ତାନ ବୋଲି ଅଧିକ ସମ୍ଭାବନା । ଯା'ଠୁ ଅଧିକ କିଛି କହିହେବନି ।

## ଅଶ୍ୱିନୀକୁମାର ଓ କାଳୀଚରଣ –

ଏହି କାଳର ଶେଷଆଡ଼କୁ ଓଡ଼ିଆ ରଙ୍ଗମଞ୍ଚରେ ଯିଏ ପ୍ରଧାନ ପୁରୁଷ ହୋଇ ବିହାର କଲେ, ସେ ହେଉଛନ୍ତି ଅଶ୍ୱିନୀକୁମାର ଘୋଷ । ରାମଶଙ୍କର ରାୟଙ୍କର ପୃଷ୍ଠପୋଷକ ଭାବରେ ଦେଖାଦେଇଥିଲେ ଯେପରି କୋଠପଦାର ମହନ୍ତ, ଅଶ୍ୱିନୀକୁମାରଙ୍କ ନାଟକାବଳି ପାଇଁ ବର୍ତ୍ତମାନ ଦେଖାଦେଲେ ସେହିପରି ଆଉ ଏକ ନୂତନ ପୃଷ୍ଠପୋଷକ ଓ ଗ୍ରାମାଞ୍ଚଳର କେତେକ ନାଟକପ୍ରେମୀ । ପୁରୀ ଜିଲ୍ଲାର ପଲ୍ଲୀଅଞ୍ଚଳର ଏକ କୁସୀଦଜୀବୀ ବ୍ରାହ୍ମଣ ଶ୍ରୀ ବନମାଳୀ ପତି, ପରେ ସୁଧ-ଅତ୍ୟାଚାରିତ ଓ ଉତ୍ତ୍ୟକ୍ତ ଗ୍ରାମ୍ୟଜନମାନଙ୍କଦ୍ୱାରା କରୁଣ ଭାବରେ ନିହତ ହୋଇଥିଲେ, କିନ୍ତୁ ଯେଉଁ 'ଆର୍ଟ-ଥିଏଟର', ସାଂପ୍ରତିକ ଓଡ଼ିଆ ରଙ୍ଗମଞ୍ଚର ଜନନୀ, ଶ୍ରୀ ପତି ତାହାର ପ୍ରାଣପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବ ନାହିଁ । ପତିଙ୍କ କରୁଣ ମୃତ୍ୟୁ ପରେ, ଆର୍ଟ-ଥିଏଟର କିଛିକାଳ ପାଇଁ ଉଭେଇଗଲା; କିନ୍ତୁ ଦେଖାଦେଲା ଅନ୍ୟ ଏକ ଗ୍ରାମ୍ୟ ପୃଷ୍ଠପୋଷକଙ୍କ ଉତ୍ସାହ ଘେନି, 'ଅନ୍ନପୂର୍ଣ୍ଣା ଥିଏଟର୍‌' ଭାବରେ । ପୁରୀ ଓ କଟକ ଉଭୟତ୍ର ଅନ୍ନପୂର୍ଣ୍ଣା ଥିଏଟର ବର୍ତ୍ତମାନ ନିଜ ନିଜର ସ୍ଥାୟୀ ରଙ୍ଗମଞ୍ଚ ଉପରେ ପ୍ରତିଷ୍ଠିତ । ପୁଣି ଅଭିନେତା ଓ ଅଭିନେତ୍ରୀମାନଙ୍କର ଏକ ସଂଘ ମଧ୍ୟ କଟକ ନଗରରେ 'ଜନତା ଥିଏଟର୍‌' ପରି ସମଗ୍ର ଭାରତରେ ଏକ ଅନନ୍ୟ ଅନୁଷ୍ଠାନ ଠିଆକରେଇପାରିଛନ୍ତି ।*

ଅଶ୍ୱିନୀକୁମାର ଘୋଷ ଆଧୁନିକ ଓଡ଼ିଆ ରଙ୍ଗମଞ୍ଚରେ ଗଦ୍ୟକୁ ସୁପ୍ରତିଷ୍ଠ କରାଇଗଲେ, କହିବାକୁ ହେବ । ଶ୍ରୀ ଘୋଷ ଆର୍ଟ-ଥିଏଟର ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ; ଫଳରେ ତାଙ୍କର ପ୍ରାୟ ୩୦ଟିଯାକ ଛୋଟ ବଡ଼ ନାଟକରେ ଆମେ ସନ୍ତୋଷଜନକ ମଞ୍ଚୋପଯୋଗିତା ଦେଖିବାକୁ ପାଉଁ; କିନ୍ତୁ କେବଳ ରଙ୍ଗମଞ୍ଚର ଦାବି-ପୂରଣ ତ ନାଟକ-ରଚନାର ଏକମାତ୍ର ବା ମୁଖ୍ୟ ଲକ୍ଷଣ ହୋଇନପାରେ ? ଘୋଷଙ୍କ ନାଟକାବଳି ଲଳିତ ସାହିତ୍ୟିକ ସୌରଭଶୂନ୍ୟ ଓ ଶୁଷ୍କ ଭାବରେ ଗଦ୍ୟପ୍ରାଣମାତ୍ର ଏବଂ କଥୋପକଥନ ସ୍ୱାଭାବିକତା ହରାଇ ଆଶ୍ରୟ ନେଇଛି ନାଟକୀୟ ବଚନ-ବିନ୍ୟାସରେ ।

ଯାହାର ଲେଖନୀ ଓଡ଼ିଆ ରଙ୍ଗମଞ୍ଚରେ କଥୋପକଥନର ସ୍ୱାଭାବିକତା ଫେରାଇ-ଆଣିପାରିଲା ଓ କେବଳ ସେହି କାରଣରୁହିଁ ଅତି ଶୀଘ୍ର ଘୋଷ-ନାଟକାବଳିକୁ ରଙ୍ଗମଞ୍ଚରୁ ଅଚିରେ ସମ୍ପୂର୍ଣ୍ଣ ବିତାଡ଼ିତ କରିପାରିଲା, ସେ ହେଉଛନ୍ତି କାଳୀଚରଣ ପଟ୍ଟନାୟକ । ପଟ୍ଟନାୟକ ନାଟ୍ୟକାର କେବଳ ନୁହନ୍ତି, ସେ ଜଣେ ସଙ୍ଗୀତଜ୍ଞ ଓ ନିପୁଣ ଡିରେକ୍ଟର । ସେ ପ୍ରାୟ ତିରିଶଟି ନାଟକର ଲେଖକ । ସେମାନଙ୍କ ଭିତରେ 'ଭାତ'ର ଆଦ୍ୟ ପ୍ରକାଶ କ୍ରମାଗତ ଭାବରେ ଏକଶତ ରଜନୀ ଚାଲିଥିଲା, ଯାହା ଓଡ଼ିଶାରେ ସୃଷ୍ଟି କରିଛି ଏକ ରେକର୍ଡ । ପ୍ରାୟ କୋଡ଼ିଏ ବର୍ଷଧରି କାଳୀଚରଣ ନିଜର ଏକ ଦଳ ରଖି ଓଡ଼ିଶା

---

* ଇଂରାଜୀ ଗ୍ରନ୍ଥ ଲେଖିଲାବେଳେ 'ଜନତା ଥିଏଟର'ର ଏ ପ୍ରକାର ବ୍ୟକ୍ତିତ୍ୱ ଲେଖକଙ୍କୁ ଆଦୌ ଜଣାନଥିଲା । ତେଣୁ ସେଥିରେ ଏ ବାକ୍ୟଟି ନାହିଁ । ପରେ ଜନତା ଥିଏଟର୍‌ର ପରିଚାଳନା ବିଷୟ ଜାଣି ଲେଖକ ଇଲଷ୍ଟ୍ରେଟେଡ୍ ଉଇକ୍‌ଲିରେ ଏକ ପ୍ରବନ୍ଧରେ ଏହି ଶିଳ୍ପିସଂଘକୁ ଯଥୋଚିତ ସମ୍ମାନ ଦେବାକୁ ଚେଷ୍ଟାକରିଛି ।

ରଙ୍ଗମଞ୍ଚରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ ଓ ଡିରେକ୍ଟର ଭାବରେ ଗୁଡ଼ିଏ ଅବହେଳିତ କଣ୍ଟାମାଲରୁ ସାଂପ୍ରତିକ ଓଡ଼ିଶାର ସକଳ ମୁଖ୍ୟ ଅଭିନେତା ଓ ଅଭିନେତ୍ରୀଙ୍କୁ ତିଆରି କରି ଠିଆକରାଇଲେ । ପୂର୍ବେ ଓଡ଼ିଆ ରଙ୍ଗମଞ୍ଚର ଅଭିନୟ ଥିଲା ଦରବାରୀ ବସ୍ତୁ, ଅତ୍ୟନ୍ତ ଅସ୍ୱାଭାବିକ । କାଳିବାବୁ ହିଁ ସେଠି ସ୍ୱାଭାବିକତାକୁ ତା'ର ସ୍ୱ-ଅଧିକାର ଫେରାଇ-ଦେଇଛନ୍ତି । ସେ କଥୋପକଥନକୁ ମଧ୍ୟ ସ୍ୱାଭାବିକତା ଆଣିଦେଲେ ଓ ରଙ୍ଗମଞ୍ଚରେ ସଙ୍ଗୀତକୁ ଦେଲେ ଏକ ଶକ୍ତିଶାଳୀ ଭୂମିକା । ବସ୍ତୁତଃ କାଳିବାବୁଙ୍କ ନାଟକାବଳି ଶାସ୍ତ୍ରୀୟ ନାଟକୀୟ ଶିଳ୍ପପାଇଁ ସେତେ ମୂଲ୍ୟବାନ୍ ନୁହନ୍ତି, ଯେତେ ସେଗୁଡ଼ିକ ଜନପ୍ରିୟ ସେଥିରେ ଥିବା ସାଙ୍ଗୀତିକ ଉପାଦାନଯୋଗୁଁ । ନିମ୍ନ ଶ୍ରେଣୀର ସଂଖ୍ୟାଗରିଷ୍ଠ ଦେଖଣାହାରୀଙ୍କ ସନ୍ତୋଷବିଧାନ ପାଇଁ କାଳିବାବୁ ସାହିତ୍ୟିକ ନାଟକ ଭିତରେ ଯାତ୍ରା ଓ ସୁଆଙ୍ଗର ଅନେକ ଆକର୍ଷଣ ସହିତ, ସେମାନଙ୍କର କେତେକ ଇତରତା ମଧ୍ୟ ପୂରାଇଦେଇ ଓଡ଼ିଆ ନାଟକର ଅପକର୍ଷ ସୃଷ୍ଟିକରିଯାଇଛନ୍ତି, ତାହା କହିବାକୁ ହେବ । କାଳିବାବୁଙ୍କ ନାଟକୀୟ ସିଦ୍ଧିର ଏହି ଅଂଶହିଁ ଯେ ପରବର୍ତ୍ତୀ (ସାଂପ୍ରତିକ) କାଳରେ ଓଡ଼ିଆ ରଙ୍ଗମଞ୍ଚକୁ ଦୁର୍ବାର ଭାବରେ ପ୍ରଭାବିତ କରିଚାଲିଛି, ତାହା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ । ନାଟକ ବା ଡ୍ରାମା କହିଲେ ଯାହା ବୁଝାଏ, ତାକୁ କେବଳ ଏକ ଭୂମିକାରୂପେ ଥୋଇ, ତା' ଉପରେ ଯାତ୍ରା ଓ ସୁଆଙ୍ଗର ଗୀତ, ନାଚ୍ ଓ ଇତର ଶ୍ରେଣୀର ନକଲ ଓ ହାସ୍ୟରସର ପରିବେଷଣହିଁ ଏବେ ହେଲା ଓଡ଼ିଆ ନାଟକ । ଚରିତ୍ରମାନଙ୍କର ଆତ୍ମିକ ଅନ୍ତର୍ଦାହ, ମାନସିକ ବିରୋଧ ଓ ବିପ୍ଳବ, ସାହିତ୍ୟିକ ମର୍ଯ୍ୟାଦା ଓ ଉଚ୍ଚାଦର୍ଶ ପ୍ରଭୃତି ନାଟକର ଅପରିହାର୍ଯ୍ୟ 'ସିରିଅସ୍' ଉପାଦାନଗୁଡ଼ିକ ଏବେ ଓଡ଼ିଆ ରଙ୍ଗମଞ୍ଚରୁ ପ୍ରାୟ ଉଭେଇଗଲାଣି ।

କିନ୍ତୁ ସଦ୍ୟ ଜନପ୍ରିୟତା-ଲିପ୍ସୁ ନାଟ୍ୟକାରଗଣ ମନେରଖିବା ଉଚିତ ଯେ, କେବଳ ଖାଣ୍ଟି ସାହିତ୍ୟିକ ଗୁଣହିଁ ନାଟକକୁ ଦେବ ସ୍ଥାୟୀ ମୂଲ୍ୟ । ଯେହେତୁ ଏହି ଶ୍ରେଣୀର ନାଟକକୁ ଓଡ଼ିଆ ରଙ୍ଗମଞ୍ଚ ଛୁଇଁବ ନାହିଁ, ତେଣୁ ସେଗୁଡ଼ିକର ସଂଖ୍ୟା କମ୍ । ଯାହାହେଉ, ରଙ୍ଗମଞ୍ଚର କରତାଳି ପ୍ରତି ଆଦୌ ଭ୍ରୂକ୍ଷେପ ନକରି କେତେକ ଯେ ଏହି ଶ୍ରେଣୀର ନାଟକ ଓଡ଼ିଆରେ ଲେଖିଛନ୍ତି, ତାହାହିଁ ଶ୍ଲାଘାର ବିଷୟ ଏବଂ ହୁଏତ ତାତ୍କାଳିକ-ପ୍ରତିଷ୍ଠାପ୍ରାପ୍ତ ଅଧିକାଂଶ ନାଟକ ଅପେକ୍ଷା ଏହି କେତୋଟି ଅଭିନୀତ ନାଟକହିଁ ହୁଏତ କାଳ ଜୟ କରିବାର ଆଶା କରିପାରନ୍ତି ସାହିତ୍ୟର ଇତିହାସରେ । ଏହି ଶ୍ରେଣୀର ଉଲ୍ଲେଖଯୋଗ୍ୟ ସୃଷ୍ଟି ହେଉଛି – କାମପାଳ ମିଶ୍ରଙ୍କ 'ସୀତାବିବାହ', ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମ ଦେବ' ଓ 'ମୁକୁନ୍ଦଦେବ', କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ପିୟଦଶଶ୍ରୀ', ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ମୁକ୍ତିପଥେ' ଓ ଆଉ ଜଣେ ଲେଖକଙ୍କର 'ରାଜକବି', 'ପୂଜାରିଣୀ', 'ନଷ୍ଟନୀଡ଼', 'ବାରବାଟୀ' ଓ 'ବୁଦ୍ଧ' । ନାଟ୍ୟକାର ରାମଶଙ୍କରଙ୍କ ସୁଯୋଗ୍ୟ ପୁତ୍ର ପ୍ରଫେସର୍ ଗିରିଜା-ଶଙ୍କର ରାୟ 'ଓଡ଼ିଆ ନାଟ୍ୟକଳା' ନାମରେ ଓଡ଼ିଆ ନାଟ୍ୟ ଓ ରଙ୍ଗମଞ୍ଚ ଉପରେ ଯେଉଁ ପ୍ରାମାଣିକ ଗ୍ରନ୍ଥ ଲେଖିଛନ୍ତି, ସେଥିରେ ସର୍ବଶ୍ରେଷ୍ଠ ଓ ଦୀର୍ଘତମ ପ୍ରଶଂସା ଯେ ଅଜାଡ଼ି ହୋଇପଡ଼ିଛି, କୌଣସି ଲେଖକର ଏଯାବତ୍ ଅନଭିନୀତ ଏକ ଛୋଟ କାବ୍ୟ-ନାଟିକା

ଉପରେ, ଆଶାକରେ ତାହାହିଁ ପ୍ରମାଣ କରିବ ଇତର-ସାଧାରଣ-ପାରିତୋଷିକ, କ୍ଷଣ-ଚାଞ୍ଚଲ୍ୟ-ସୃଷ୍ଟିକାରୀ ଓ ମଞ୍ଚ-ସାଫଲ୍ୟ-ସର୍ବସ୍ୱ-ନାଟକ ଓ ନାଟ୍ୟକାରମାନଙ୍କର ସାହିତ୍ୟିକ ମୂଲ୍ୟ କ'ଣ ବା କେତେ ।*

ଉଲ୍ଲେଖଯୋଗ୍ୟ ସାଂପ୍ରତିକ ଓଡ଼ିଆ ନାଟ୍ୟକାର ହେଉଛନ୍ତି – ଭଞ୍ଜକିଶୋର ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, ମନୋରଞ୍ଜନ ଦାସ ଓ କମଳଲୋଚନ ମହାନ୍ତି । ଏମାନେ ସମସ୍ତେ ତରୁଣ । ଫଳତଃ ଏମାନଙ୍କର ସୃଷ୍ଟିଶୀଳତା ଏଇକ୍ଷଣି କର୍ମବ୍ୟସ୍ତ କହିବାକୁ ହେବ । ଏମାନଙ୍କର ଓଡ଼ିଆ ସାହିତ୍ୟକୁ ଦାନର ମୂଲ୍ୟ ନିରୂପଣ ପାଇଁ ଆମକୁ ବହୁକାଳ ଅପେକ୍ଷା କରିବାକୁ ପଡ଼ିବ ।

ପ୍ରାୟ ଚାରିଶତ ବର୍ଷଧରି ଓଡ଼ିଆମାନଙ୍କର ଛିନ୍ନଛତ୍ର ଅବସ୍ଥା ସ୍ମରଣ କଲେ, ସେମାନଙ୍କ ଭାଷାରେ ଯେଉଁ ନାଟକାବଳି ସଞ୍ଚିତ ହୋଇଛି, ଏପର୍ଯ୍ୟନ୍ତ ସେଥିରେ ସେମାନଙ୍କର ଲଜ୍ଜିତ ହେବାର କିଛି ନାହିଁ । ସଂଖ୍ୟା ମନ୍ଦ ନୁହେଁ ଏବଂ ପ୍ରାୟ ସବୁ ପ୍ରକାରର ନାଟକ ଦେଖା-ଦେଇଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ, ହରିହର ମିଶ୍ର ଓ ଚିକିଟୀ-ରାଜା ରାଜେନ୍ଦ୍ର-ଦେବଙ୍କର ପୂରାପୂରି ସଂସ୍କୃତ ଐତିହ୍ୟରକ୍ଷାକାରୀ ନାଟକ ଅଛି ଅଛି ପୁଣି ସଂପୂର୍ଣ୍ଣ ଏଲିଜାବେଥୀୟ ରୀତିକୁ ଧରି ଲିଖିତ ନାଟକ । ଅଛି ମଧ୍ୟ ଫାର୍ସ, ଟ୍ରାଜେଡ଼ି, କମେଡ଼ି, ଟ୍ରାଜିକ୍‌ମେଡ଼ି, ସାମାଜିକ, ଐତିହାସିକ, ରାଜନୈତିକ ଏବଂ ମନସ୍ତାତ୍ତ୍ୱିକ ନାଟକ । ନିକଟରେ ଏକାଙ୍କିକାମାନଙ୍କର ମଧ୍ୟ ପ୍ରାଦୁର୍ଭାବ ଦେଖାଦେଇଛି ।

**ଗଣ-ନାଟ୍ୟ –**

ଓଡ଼ିଶାର ଜନତା ନିଜର ଚୈତ୍ତିକ ଓ ସୌଷମିକ କ୍ଷୁନ୍ନିବୃତ୍ତିର ଯେଉଁ ବ୍ୟବସ୍ଥା କରିନେଇଛନ୍ତି, ତାହା ଓଡ଼ିଶାର ମାଟି ସହିତ ଘନିଷ୍ଠଭାବରେ ସଂପୃକ୍ତ । ସେଟଡ଼ିକର ଆଦ୍ୟ ଓ ଅଭିବର୍ଦ୍ଧନ ସେହି କାରଣରୁହିଁ ରହସ୍ୟାବୃତ । ମନେହେଉଛି, ଯେପରି ସେଗୁଡ଼ିକ ସ୍ୱୟଂଭୂ

---

* ଇଂରାଜୀରେ ଷ୍ଟେଜ୍-ପ୍ଲେ (ରଙ୍ଗମଞ୍ଚକୁଶଳ ନାଟକ) ଓ କ୍ଲୋଜେଟ୍-ପ୍ଲେ (କେବଳ ପଠନୀୟ ନାଟକ) ବୋଲି ନାଟକର ଦୁଇଟି ଶ୍ରେଣୀ ଅଛି । ବ୍ରାଉନିଂ, ଟେନିସନ୍, ସ୍ୱିନ୍‌ବର୍ଣ୍ଣ ଓ ସେଲୀ ପ୍ରଭୃତି ବିଶ୍ୱବିଖ୍ୟାତ କବିସବୁ ନାଟକ ଲେଖିଯାଇଛନ୍ତି, ଯାହା କେବେ ପେଶାଦାର ରଙ୍ଗମଞ୍ଚ ଗ୍ରହଣ କରେନା; କିନ୍ତୁ ଏଗୁଡ଼ିକର ଉଚ୍ଚ ସାହିତ୍ୟିକ ମୂଲ୍ୟଯୋଗୁଁ ପୃଥିବୀର ସର୍ବତ୍ର ପଠିତ । ସମଗ୍ର ବିଶ୍ୱସାହିତ୍ୟରେ ସେକ୍ସପିଅର୍ ଏକମାତ୍ର ଲେଖକ, ଯାହାଙ୍କର ନାଟକ ଏକାଧାରରେ ଅଭିନେୟ ଓ ପାଠ୍ୟ । ଓଡ଼ିଆରେ ଏ ଧରଣର ଆଲୋଚନାହିଁ ହୋଇନାହିଁ । ତେଣୁ ଏଠି ଯାହା ମଞ୍ଚସ୍ଥ ହେଲା ତାହା 'ନାଟକ' । ଇଂରାଜୀରେ ଏହି ପ୍ରବନ୍ଧ ଲେଖିବସିଥିଲାବେଳେ ମୁଁ ପ୍ରଥମକରି ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କ 'ଓଡ଼ିଆ ନାଟ୍ୟକଳା' ବହିଟି ପଢ଼ିଲି, ଯଦିବା ସେତେବେଳକୁ ସେ ବହି ପ୍ରକାଶିତ ହୋଇଯିବାର କୋଡ଼ିଏ-ପଚିଶ ବର୍ଷ ହୋଇଗଲାଣି ଓ ବୋଧହୁଏ ଦୁଇଟି ସଂସ୍କରଣ ମଧ୍ୟ ହୋଇଗଲାଣି । ସେ ବହିରେ ଲେଖକର ତରୁଣ ବୟସରେ ଲିଖିତ ଓ ବିସ୍ମୃତପ୍ରାୟ ଏହି ନାଟିକା 'ରାଜକବି'ର ଉଚ୍ଛ୍ୱସିତ ପ୍ରଶଂସା ପ୍ରଥମକରି ଦେଖିବାକୁ ପାଇ ମୁଁ ବିସ୍ମିତ ହେଲି ଓ ତାହାକୁ କ୍ଲୋଜେଟ୍ ଡ୍ରାମାର ସପକ୍ଷରେ ଏକମାତ୍ର ଶକ୍ତିଶାଳୀ ମନ୍ତବ୍ୟ ଦେଖି, ନିଜ ନାମକୁ ଲୁଚାଇ ତାକୁ ବ୍ୟବହାର କଲି ସାହିତ୍ୟିକ ନାଟକ ସପକ୍ଷରେ ।

 

ଓ ସ୍ୱୟଂସଂପୂର୍ଣ୍ଣ । ସେଥିରୁ କେତେକ ବିଶୁଦ୍ଧ ନୃତ୍ୟ ଓ କେତେକ ନୃତ୍ୟ ଓ ସଂଗୀତ, କେତେକ ନୃତ୍ୟ ଓ ଆବୃତ୍ତି କେତେକ ବା ସଙ୍ଗୀତ ଓ ଅଭିନୟର ମିଶ୍ରଣ । ବିଶୁଦ୍ଧ ନୃତ୍ୟ ହେଉଛି ଆଦିବାସୀଙ୍କର ଏବଂ ଚୈତ୍ରମାସରେ ଆଚରିତ ଗୋପାଳମାନଙ୍କର ଲାଠି-ଖେଳ । ଜଗନ୍ନାଥ ଦେଉଳରେ ବ୍ୟବସ୍ଥିତ ଦେବଦାସୀ-ନୃତ୍ୟ ଏବର ଓଡ଼ିଶୀ ନୃତ୍ୟ ଏବଂ ଜଟିଳ ଗୋଟିପୁଅ-ନୃତ୍ୟର ଆଦ୍ୟ ଉତ୍ସ; କିନ୍ତୁ କୌଣସି ଗୋଟିଏ ଘଟଣାପ୍ରବାହର ସଂଯୋଗ-ସୂତ୍ର ନଥିଲେ କେବଳ ଅବୟବ-ସଂଚାଳନ ଜନଚିତ୍ତକୁ କେତେକାଳ ବାନ୍ଧିରଖିବ ? ଗୋଟିପୁଅ-ନୃତ୍ୟ ଯେ ଓଡ଼ିଶାର ଜନସାଧାରଣର ଚିତ୍ତହରଣ କରିଥାଏ, ତାହା ନୃତ୍ୟକଳା ପାଇଁ ସେତେ ନୁହେଁ, ଯେତେ ରାଧାକୃଷ୍ଣ-କୈନ୍ଦ୍ରିକ ରସାଳ ଓ ଘଟଣାବିଚିତ୍ର ସଙ୍ଗୀତ ପାଇଁ । ପୁଣି ଓଡ଼ିଆ ଯାତ୍ରାରେ ଗଳ୍ପ, ନୃତ୍ୟ, ସଙ୍ଗୀତ ଓ ଅଭିନୟ – ଏ ସମସ୍ତ କଳାର ମିଶ୍ରଣ ଯୋଗୁଁ ତାହା ଓଡ଼ିଆ ଜନତା ନିକଟରେ ସବୁଠାରୁ ଅଧିକ ଜନପ୍ରିୟ ବିନୋଦନ ହୋଇଆସିଛି । ଯାତ୍ରାକୁ ତେଣୁ କୁହାଯାଇପାରେ ଗାଁ-ଦାଣ୍ଡର ରଙ୍ଗମଞ୍ଚହୀନ ମୁକ୍ତାକାଶୀ ଡ୍ରାମା ଏବଂ ଏହି ଯାତ୍ରା ଓଡ଼ିଆ ଜାତିର ଆଦିମକାଳରୁ ଯେ ପ୍ରବର୍ତ୍ତମାନ, ଏହାର ପ୍ରମାଣ ମିଳୁଛି । ଖଣ୍ଡଗିରିର କୌଣସି ଗୁମ୍ଫାର ଭିତ୍ତି-ଭାସ୍କର୍ଯ୍ୟରେ ଗଣ-ନାଟ୍ୟର ଛବି ଖୋଦିତ ଥିବା ଏବେ ଧରାପଡ଼ିଛି ଏବଂ ଜଣାପଡୁଛି ଯେ, ଦ୍ୱିତଳ ରାଜାବାସ, ରାଣୀଗୁମ୍ଫା ଜୈନ ଓ ବୌଦ୍ଧଯୁଗରେ ହୁଏତ ଏକ ରଙ୍ଗମଞ୍ଚରୂପେ ବ୍ୟବହୃତ ହେଉଥିଲା । କଳା-ସମାଲୋଚକ ଡକ୍ଟର ଚାର୍ଲସ୍ ଫାବ୍ରୀ କହିଛନ୍ତି –

''ଏମାନଙ୍କ ଭିତରେ ରାଣୀଗୁମ୍ଫାର ଭିତ୍ତି-ଭାସ୍କର୍ଯ୍ୟ ସବୁଠାରୁ ମନୋରମ ଓ କୌତୂହଳୋଦ୍ଦୀପକ ଭାସ୍କର୍ଯ୍ୟର କେତେକ ପ୍ରଶଂସନୀୟ ନମୁନା ହେଲେହେଁ ସମଗ୍ର ଭାବରେ ଏହାର ତାତ୍‌ପର୍ଯ୍ୟ ଏପର୍ଯ୍ୟନ୍ତ ଅବୋଧ ରହିଛି । ଏହା ଭାରହୁତ୍ ସ୍ତୂପର ଶୈଳୀରେ ଖୋଦିତ ଏକ ଲମ୍ବମାନ ଗାଥାଚିତ୍ର, ଯେଉଁଥିରେ ଆମେ ଦେଖୁଁ ନରନାରୀ ବିଶ୍ରାମ ନେଉଛନ୍ତି, ଯୁଦ୍ଧ କରୁଛନ୍ତି ଏବଂ ଏକ ନାରୀ ଅପହ୍ରିୟମାଣା ଅବସ୍ଥାରେ ଅଛି । ଏଥିରେ ଥିବା କେତୋଟି ନର-ନାରୀ ମୂର୍ତ୍ତି-ଗଠନ ବହୁ ପୁରାତନ କାଳର ହେଲେ ମଧ୍ୟ ଅତି ସରଳ ଓ ଉତ୍କୃଷ୍ଟ ଶ୍ରେଣୀର ଏବଂ ପ୍ରାଚୀନ ଭାରତୀୟ ଭାସ୍କର୍ଯ୍ୟର ଅତି ଉତ୍ତମ ନମୁନା ଭାବରେ ଗଣ୍ୟ ହେବାର ଯୋଗ୍ୟ । ଆଉ ଏକ କଥା – ନୃତ୍ୟର ଖୋଦନ ମଧ୍ୟରେ ଦେଖୁଁ ଶିବିର ସମ୍ମୁଖରେ ନର୍ତ୍ତକୀ ନର୍ତ୍ତନରତା ଓ ପଶ୍ଚାତ୍‌ଭୂମିରେ ବିବିଧ ବାଦ୍ୟକାରବୃନ୍ଦ ଉପବିଷ୍ଟ । ଖୁବ୍ ସମ୍ଭବତଃ, ସେହି ପ୍ରାଚୀନ ଯୁଗର ଓଡ଼ିଆ ଶିଳ୍ପୀମାନଙ୍କର ସେମାନଙ୍କର ପରିଚିତ ଗଣ-ବିନୋଦନକୁ ଖୋଦିତକରି ରଖିବାର ଏହା ଏକ ଆଦ୍ୟ ଚେଷ୍ଟା । ପରେ ମଧ୍ୟଯୁଗରେ ଓଡ଼ିଆ ଶିଳ୍ପୀମାନଙ୍କର ଏହା ଏକ ପ୍ରିୟ ବିଷୟ ହୋଇଉଠିଥିଲା ।''*

ଓଡ଼ିଶାର ଗଣନାଟ୍ୟ, ବିଷୟାନୁସାରେ ତିନୋଟି ସଂଜ୍ଞାରେ ନାମିତ ହୋଇଥାନ୍ତି; ଯଥା – ଲୀଳା, ସୁଆଙ୍ଗ ଓ ଯାତ୍ରା । ରାମଲୀଳା, ଭାରତଲୀଳା, କୃଷ୍ଣଲୀଳା ପ୍ରଭୃତି ସଂଜ୍ଞା

---

* ଡକ୍ଟର ଚାର୍ଲସ୍ ଫାବ୍ରୀଙ୍କ ପ୍ରଦତ୍ତ ଏକ ରେଡିଓ ଭାଷଣରୁ ସଂଗୃହୀତ ।

'ଲୀଳା' କ'ଣ ତାହା ସ୍ପଷ୍ଟ ସୂଚିତକରେ । ଆଦିମତମ ଗଣନାଟ୍ୟ ବୋଧହୁଏ ସୁଆଙ୍ଗ । ଏହା କୌଣସି ଦେବ ବା ଦେବୀଙ୍କୁ କେନ୍ଦ୍ରକରି ରଚିତ ହୋଇଥାଏ । 'ଯାତ୍ରା' ଏକ ଉଦାର ସଂଜ୍ଞା; ଯାହା ତଳେ ସବୁପ୍ରକାର ପୌରାଣିକ ଓ ସାମାଜିକ ବିଷୟ ରହିପାରେ; କିନ୍ତୁ ପ୍ରତ୍ୟେକ ଯାତ୍ରାରେ ଆମେ ପ୍ରଚୁର ଭାବରେ ଥିବାର ଦେଖିବା ହାସ୍ୟରସ, ଗୀତ, ବିବିଧ ଅଭିନୟ ଓ କୌଣସି ସୁନ୍ଦରୀର ଅପହରଣ ଓ ପରେ ତା'ର ଉଦ୍ଧାର । ଲୀଳା, ସୁଆଙ୍ଗ ଓ ଯାତ୍ରା, ବିଶେଷକରି ଲୀଳା ଓ ସୁଆଙ୍ଗ ଓଡ଼ିଶାରେ ବହୁକାଳରୁ ଚଳି ଆସୁଥିବାର ଅନୁମିତ ହୁଏ । ଏଠାରେ ପଞ୍ଚଦଶ ଶତାବ୍ଦୀର ଏକ ଓଡ଼ିଆ ସୁଆଙ୍ଗର ବିଷୟବସ୍ତୁର ବର୍ଣ୍ଣନା ତେଣୁ ଅପ୍ରାସଙ୍ଗିକ ହେବନାହିଁ ବୋଲି ମନେହୁଏ; କାରଣ ଆମେ ସେଥିରେ ଘରେ ଓ ସମାଜରେ ନାରୀର ସ୍ଥାନ ଓ ସମ୍ମାନ, ଜାତି-ବିହୀନ-ସମାଜ ଓ ଅନ୍ୟ ସାମାଜିକ ନୈତିକତା ବିସ୍ମୟଜନକ ଭାବରେ ପରିସ୍ଫୁଟ ଥିବାର ଦେଖିପାରିବା । ଏହା ଲକ୍ଷ୍ମୀପୁରାଣ ସୁଆଙ୍ଗ * ଏବଂ ଏହା ଜନପ୍ରିୟ ଓଡ଼ିଆ ରାମାୟଣର ପ୍ରତିଭାବାନ୍ ଲେଖକ ବଳରାମ ଦାସଙ୍କ ରଚନା । ବଳରାମ ଦାସ ଏହି ସୁଆଙ୍ଗଟିକୁ ଯେପରି ଭାବରେ କଳ୍ପନା ଓ ରଚନା କରିଛନ୍ତି, ସେପରି କରିଜାଣିଲେ, ଏ ଶ୍ରେଣୀର ସାହିତ୍ୟ ସମାଜ ଉପରେ ଯେ କି ପ୍ରଭାବ ପକାଇପାରେ, ତାହା ପ୍ରମାଣିତ ହେଉଛି । ଏହି ସୁଆଙ୍ଗ ଓ ତାର ତାତ୍ପର୍ଯ୍ୟ ସମଗ୍ର ଓଡ଼ିଆ ଜାତିର ସାମାଜିକ ଜୀବନ ଓ ଜାତୀୟଚେତନାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇପଡ଼ିଛି ।

ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାର, ଓଡ଼ିଶାର ପ୍ରତ୍ୟେକ ଗୃହସ୍ଥପକ୍ଷରେ ଲକ୍ଷ୍ମୀ-ପୂଜାର ଦିନ । ସେଦିନ ପ୍ରତ୍ୟେକ ଓଡ଼ିଆ ଘରଣୀ ଅତି ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗକରି ଓ ସ୍ନାନାଦି ଶେଷକରି ତାଙ୍କର ସମଗ୍ର ଘରଟିକୁ ଲିପି ପୋଛି ସୁନ୍ଦର କରିବା ଓ ନବ-ସଂଗୃହ ତ ଧାନ୍ୟ ଓ ଧାନ୍ୟପରିମାପକ ଆଧାରଗୁଡ଼ିକୁ ଲକ୍ଷ୍ମୀଙ୍କ ପ୍ରତୀକରୂପେ ପୂଜା କରିବାର ଆଶା କରାଯାଏ । ଏହିପରି ଏକ ଗୁରୁବାରର ପୂର୍ବଦିନ ପୁରୀ ଜଗନ୍ନାଥ ମନ୍ଦିରର ଗୃହିଣୀ ଲକ୍ଷ୍ମୀ ଠାକୁରାଣୀ ସ୍ୱାମୀଙ୍କୁ ଅନୁମତି ମାଗିଲେ ଯେ, ସେ ତହିଁ ଆରଦିନ ବଡ଼ିସକାଳୁ ମନ୍ଦିରରୁ ବାହାରି ସମଗ୍ର ପୁରୀ ନଗର ବୁଲି ଦେଖିବେ ଲୋକେ ପବିତ୍ର ଗୁରୁବାର କିପରି ପାଳନ କରୁଛନ୍ତି । ଲକ୍ଷ୍ମୀଦେବୀ ଅନୁମତି ପାଇଲେ ଓ ଦୁଇଭାଇ ଜଗନ୍ନାଥ ଓ ବଳରାମ ମଧ ଠିକ୍ କଲେ ଯେ, ସେମାନେ ସେ ଦିନଟା ବାହାରେ ବାହାରେ କଟାଇ ଆସିବେ । ଲକ୍ଷ୍ମୀ ଓ ଜଗନ୍ନାଥ ବଳ୍ଦ ମ ଅଲଗା ଅଲଗା ହୋଇ ଗୁରୁବାର ସକାଳେ ବାହାରିପଡ଼ିଲେ । ଦାସୀ-ପରିବୃତା ଲକ୍ଷ୍ମୀଦେବୀ ଏକ ବୃଦ୍ଧା ବ୍ରାହ୍ମଣୀରୂପେ ନଗରର ପ୍ରସିଦ୍ଧ ବଣିକମାନଙ୍କର, ମନ୍ତ୍ରୀମାନଙ୍କର ଓ ଦେଉଳର ମୁଖ୍ୟ ପୁରୋହିତଙ୍କର ଘର ସମେତ ବୁଲି ବୁଲି ଦେଖି ବିରକ୍ତ ହୋଇଉଠିଲେ ଯେ, ସେ ପର୍ଯ୍ୟନ୍ତ

---

* ଏହା ଏକ ପୁରାଣ ଓ ସୁଆଙ୍ଗ ନୁହେଁ ବୋଲି କେତେକ ସମାଲୋଚକ କହିଅଛନ୍ତି । ପୂର୍ବେ କୁହାଯାଇଛି ଏବଂ ଏଠାରେ ମଧ କହିରଖେ ଯେ, ଦଶପୃଷ୍ଠାର ବହି ପୁରାଣ ହୁଏନା । ପୁରାଣର ବିଷୟବସ୍ତୁ ମଧ ଭିନ୍ନ । ପୁଣି ଏହି ଛୋଟ ପୁସ୍ତିକାଟି ଯାତ୍ରା-ଅଭିନୟର ଏକାନ୍ତ ଉପଯୁକ୍ତ ଓ ଲେଖକ ପିଲାଦିନେ ସେହି ଅଭିନୟ ଦେଖିଛି । ତେଣୁ ଏହା ଯଥାର୍ଥରେ ସୁଆଙ୍ଗ ।

ଗୃହସ୍ଥ ଓ ଗୃହିଣୀମାନେ ଘୁଙ୍ଗୁଡ଼ି ମାରି ଶୋଇଛନ୍ତି ଏବଂ ତାଙ୍କର ପୂଜା ପାଇଁ ଘରଦ୍ୱାର ସଜାଇବେ କ'ଣ, ଚାରିଆଡ଼ ଅଳିଆ ହୋଇ ପଡ଼ିଛି ।

ଶେଷରେ ଲକ୍ଷ୍ମୀଦେବୀ ସହରର ପ୍ରାନ୍ତ ଦେଶକୁ ଆସିଲେ ଏବଂ ସେଠି ଦେଖି ବିସ୍ମିତା ହେଲେ ଯେ ଶ୍ରୀୟା ନାମକ ଚଣ୍ଡାଳୁଣୀ ଅତି ସକାଳୁ ନିଜେ ଗାଧୁଆ-ପାଧୁଆ କରି ଓ ଘରଦ୍ୱାର ଲିପା-ପୋଛା କରି ପବିତ୍ର ଗୁରୁବାର ପାଳନ ପାଇଁ ପ୍ରସ୍ତୁତ ହୋଇ ରହିଛି । ସେ ଆଉ ମଧ ଦେଖିଲେ ଯେ ଶ୍ରୀୟାର ଦରିଦ୍ର କୁଟୀରଟି କେବଳ ଲିପା-ପୋଛା ହୋଇନାହିଁ, ତାହାର କାନ୍ଥ ଓ ଦୁଆରବନ୍ଧ ଚିତାଦ୍ୱାରା ଅଳଂକୃତ ହୋଇଛି । ଶ୍ରୀୟା ତାର କୁଟୀର ଆଗରେ ଲକ୍ଷ୍ମୀଙ୍କ ପାଦ ଓ ଶତଦଳ ପଦ୍ମ ମୁରୁଜରେ ଆଙ୍କିଦେଇଅଛି । ପ୍ରଚ୍ଛନ୍ନବେଶଧାରିଣୀ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ଏକ ଚଣ୍ଡାଳ-ସ୍ତ୍ରୀର ଏପ୍ରକାର ଶୁଚିତା, ଭକ୍ତି ଓ ନିଷ୍ଠାରେ ମୁଗ୍‌ଧ ହୋଇ, ଆଗ୍ରହରେ ତାର କୁଟୀରକୁ ବିଜେକଲେ ଏବଂ ଲକ୍ଷ୍ମୀଦେବୀଙ୍କ ପାଦ ପଡ଼ନ୍ତେ, ସେହି ଦୀନ କୁଟୀର ସର୍ବସୌଭାଗ୍ୟପୂର୍ଣ୍ଣ ଏକ ପ୍ରାସାଦ ହୋଇଉଠିଲା ।

ଠିକ୍ ଏହି କାଳରେ ଦୁଇଭାଇ ଜଗନ୍ନାଥ ଓ ବଳରାମ ମଧ ସେହି ବାଟଦେଇ ଯାଉଥିଲେ । ସେମାନେ ଲକ୍ଷ୍ମୀଙ୍କୁ ଏକ ଚଣ୍ଡାଳ ଘରେ ଥିବାର ଦେଖିଲେ । କ୍ରୋଧୀ ବଳରାମ ଏଥିରେ ଭୀଷଣ କୁପିତ ହୋଇ ସାନଭାଇ ଜଗନ୍ନାଥଙ୍କୁ ଏହିପରି ଭର୍ତ୍ସନା କରିବାକୁ ଲାଗିଲେ –

"ଦେଖ ଦେଖ କହ୍ନାଇ ତୋ ଭାରିଯା ଆଚାର
ଉଭା ହୋଇ ଅଛଇ ଯେ ଚଣ୍ଡାଳୁଣୀ ଘର ।
ହାଡ଼ିଘରେ ଥିବ ଲକ୍ଷ୍ମୀ, ପାଣଘରେ ଥିବ
ସ୍ନାନ ନକରିଣ ବଡ଼ଦେଉଳେ ପଶିବ ।
ଏହି ରୂପେ ସବୁଦିନେ ଦେଉଳେ ପଶୁଛି
ଦୁଇଗୋଟି ଭାଇଙ୍କି ବିଟାଳ କରାଉଛି ।

× × ×

ଭାରିଯାରେ କାର୍ଯ୍ୟ ଯେବେ ଅଛି ରେ କହ୍ନାଇ
ଚଣ୍ଡାଳ ସାହିରେ ଘର ତୋଳ ବେଗେ ଯାଇ ।
ଆମ୍ଭ ବାକ୍ୟ ମାନି ତାକୁ ଦିଅ ଘଉଡ଼ାଇ
ଏପରି ଘରଣୀ ଥିଲେ ଭଲ ଗତି ନାହିଁ ।"

ବିଚାରା ଜଗନ୍ନାଥ ନମ୍ରଭାବରେ ବଡ଼ଭାଇଙ୍କି କହିଲେ ଯେ, ଲକ୍ଷ୍ମୀପରି ସ୍ତ୍ରୀଟିଏ ଆଉ ପାଇବା ସହଜ ନୁହେଁ; କିନ୍ତୁ କୋପନସ୍ୱଭାବ, କଠୋର-ନୀତିବିଦ୍ ବଳରାମ ସେସବୁକୁ କାନ ଦେଲେ ନାହିଁ । ଦୁଇଭାଇ ଦେଉଳକୁ ଫେରିଲେ ଏବଂ ଭାବିଲେ ଯେ ସେମାନେ ଏଥର ସ୍ତ୍ରୀ-ଜଞ୍ଜାଳ-ଶୂନ୍ୟ ଏକ ଶାନ୍ତିମୟ ଜୀବନ ଯାପନ କରିବେ ।

ଲକ୍ଷ୍ମୀ ଠାକୁରାଣୀ ଶ୍ରୀୟା ଚଣ୍ଡାଳୁଣୀ ଘରୁ ଫେରି ଦେଉଳରେ ପଶିଲା ବେଳକୁ ଦେଖନ୍ତି ଯେ ସ୍ୱୟଂ ଜଗନ୍ନାଥ ଦୁଆର ଜଗିଛନ୍ତି । ଠାକୁରାଣୀ ଦେଉଳ ଭିତରକୁ ପଶନ୍ତେ ତାଙ୍କର ନିଜ ସ୍ୱାମୀ ତାଙ୍କୁ ବାଧାଦେଲେ । ଏହା ଫଳରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଏକ ମନୋରମ ବାକ୍-ସଂଗ୍ରାମ ଚାଲିଲା । ଲକ୍ଷ୍ମୀଦେବୀ ବଡ଼ଭାଇଙ୍କ ଆଦେଶ ବିରୁଦ୍ଧରେ ନମ୍ରଭାବରେ ପ୍ରତିବାଦ କଲେ ଓ କହିଲେ, ଚଣ୍ଡାଳଘରକୁ ଯାଇ ସେ କୌଣସି ଅନ୍ୟାୟ କରିନାହାନ୍ତି । ଜଗନ୍ନାଥ କହିଲେ ଯେ, କେବଳ ଚଣ୍ଡାଳଘରକୁ ଯିବା ଲକ୍ଷ୍ମୀଙ୍କର ଏକମାତ୍ର ଅପରାଧ ନୁହେଁ । ଅନ୍ୟାନ୍ୟ ବହୁ କାରଣରୁ ମଧ୍ୟ ସେ ଏକ ଅନାକାଙ୍‌କ୍ଷିତା ପତ୍ନୀ ।

"ମୋହର ବଚନ ଏବେ ଶୁଣ ପ୍ରାଣସହି,
ତୋଠାରୁ ପାପିନୀ ଆଉ ସଂସାରରେ ନାହିଁ ।
ଜଗତେ ବୋଲନ୍ତି ତୋତେ ବାଇ ଠାକୁରାଣୀ
ବାଇ ପ୍ରାୟ ବୁଲୁଥାଉ ହୋଇ ମୋ ଘରଣୀ ।
ଏକ ଘର କରାଉ ସହସ୍ର ଘର ଭାଙ୍ଗି
ସହସ୍ର ଘର କରାଉ ଏକ ଘର ଭାଙ୍ଗି ।
ଏମନ୍ତ ପ୍ରକାରେ ଲକ୍ଷ୍ମୀ ମହିମା ତୋହର
ଯାଅ ଲକ୍ଷ୍ମୀ ବାହାରି ଗୋ, ନ ଥାଅ ମୋ' ଘର ।"

ଲକ୍ଷ୍ମୀ ଠାକୁରାଣୀ ବର୍ତ୍ତମାନ 'ପୁରୁଷୋଚିତ' ଉତ୍ତରଦେଲେ ଓ ଭାଇକଥାରେ ଭୁଲି ନିଜର ପତିବ୍ରତା ପତ୍ନୀକୁ ବର୍ଜନ କରିବାକୁ ଯାଉଥିବାର ଦୁର୍ବଳତାଯୋଗୁ ସ୍ୱାମୀଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ ।

"ଜଗନ୍ନାଥ କହୁଛନ୍ତି କୋପଭର ହୋଇ
ବାପ ତୋ ଲୁଣିଆ ଯେ ଗରଜିମରୁଥାଇ ।
ଝିଅ ଟେରୀ ତୋ ଦୁର୍ଗୁଣ କହିଲେ ନ ସରେ
ବାପର ଗର୍ଜନ ଶବ୍ଦେ କିଏ ରହିପାରେ ?

× × ×

ମହାଲକ୍ଷ୍ମୀ ବୋଲୁଛନ୍ତି ଠାକୁରଙ୍କୁ ଚାହିଁ
ଅଛବର ଘରେ ଦଣ୍ଡେ ଥିଲି ଉଭା ହୋଇ ।
ଅଛବ ବିଟାଳ ବୋଲି ଦିଅ ଘଉଡ଼ାଇ
ତୁମ୍ଭ ଜାତି କୁଳର ତ ଠିକଣା ନ ଥାଇ ।"

ତା'ପରେ ଜଗନ୍ନାଥ ଯେତେବେଳେ ଲକ୍ଷ୍ମୀଦେବୀଙ୍କି ତାଙ୍କ ଦେହରେ ଥିବା ସମସ୍ତ ମୂଲ୍ୟବାନ୍ ଅଳଙ୍କାର ସହିତ ଚାଲିଯିବାକୁ କହିଲେ, ଠାକୁରାଣୀ ସେସବୁ ନିଜ ଦେହରୁ କାଢ଼ିଦେଇ ସ୍ୱାମୀଙ୍କି ଜବାବ୍ ଦେଲେ –

"ଲକ୍ଷ୍ମୀଦେବୀ କହୁଛନ୍ତି ପ୍ରଭୁ ମୁଖ ଚାହିଁ
ସାବଧାନ ହୋଇ ଶୁଣ ବ୍ରହ୍ମାଣ୍ଡ-ଗୋସାଇଁ ।
ମୋହ ତୁଲ୍ୟ ଆଉ ଯେଉଁ ଭାରିଯା ଆଣିବ
ଏହି ସବୁ ଅଳଙ୍କାର ତାହାକୁ ଯେ ଦେବ ।"

ମହାମନସ୍ୱିନୀ ଲକ୍ଷ୍ମୀଦେବୀ ଦେହର ସମସ୍ତ ଅଳଙ୍କାର ସ୍ୱାମୀଙ୍କୁ ଫେରାଇଦେଇ ନଗରର ବହିଃସୀମାକୁ ଚାଲିଗଲେ ଓ ସେହିଠାରେ ବିଶ୍ୱକର୍ମାଙ୍କଦ୍ୱାରା ନିଜଲାଗି ଏକ ସ୍ୱତନ୍ତ୍ର ଆବାସ ନିର୍ମାଣ କରାଇ ସେହିଠାରେ ରହିଲେ । ତା'ପରେ ସେ ଦୁଇଭାଇଙ୍କି ସମୁଚିତ-ଶିକ୍ଷା ଦେବାପାଇଁ ବେତାଳମାନଙ୍କୁ ଲଗାଇ ବଡ଼ଦେଉଳରୁ ସକଳ ସମ୍ପତ୍ତି ଓ ଭକ୍ଷ୍ୟଦ୍ରବ୍ୟ ଗୋପନରେ ବୁହାଇଆଣିଲେ । ଏପରି କରିବାରେ ଠାକୁରାଣୀଙ୍କର ଏକ ମହତ୍ ଉଦ୍ଦେଶ୍ୟ ଥିଲା । ସେ ବିଶ୍ୱର ସମଗ୍ର ନାରୀ-ସମାଜର ଉପଯୁକ୍ତ ନେତ୍ରୀରୂପେ ଚିନ୍ତା ଓ କର୍ମ କରିବାକୁ ଲାଗିଲେ ।

"ଜଗନ୍ନାଥ ପ୍ରଭୁ ଯେବେ ମୋତେ ନ ଖୋଜିବେ
ନାରୀଙ୍କି ପୁରୁଷମାନେ ଆଉ ନ ଲୋଡ଼ିବେ ।
ମୋତେ ଛାଡ଼ି ପ୍ରଭୁ ଯେବେ କରିବେଟି ଘର
କଳିଯୁଗେ ନାରୀଙ୍କି ଯେ ନ ଖୋଜିବେ ନର ।"

ତେଣେ ଦୁଇଭାଇ, ଜଗନ୍ନାଥ ଓ ବଳରାମ, ତହିଁ ଆରଦିନ ଶଯ୍ୟା ତ୍ୟାଗକରି ଦେଖନ୍ତି ଯେ ସମଗ୍ର ବଡ଼ଦେଉଳ ଖାଲି ଓ ଶୂନ୍ୟ । ସେମାନେ କ୍ଷୁଧାତୁର ହୁଅନ୍ତେ, ରୋଷେଇଘରକୁ ଗଲେ; କିନ୍ତୁ ଦେଖିଲେ ଯେ ସେଠାରେ କୌଣସି ହେଲେ ଖାଦ୍ୟଦ୍ରବ୍ୟ ନାହିଁ । ଭୋକ ଅସହ୍ୟ ହେବାରୁ ଦୁଇଭାଇ ଭିକ୍ଷୁକ ବ୍ରାହ୍ମଣ ବେଶରେ ଦେଉଳରୁ ବାହାରି ଦାଣ୍ଡରେ ଅନ୍ନଭିକ୍ଷା କଲେ; କିନ୍ତୁ ସାଧାରଣ ଭିଖାରି ଭାବରେ ସେ ଦୁଆରୁ ତଡ଼ାଖାଇଲେ । ନାନା ଦୁଃଖଦାୟକ ଅଭିଜ୍ଞତା ପରେ ସେମାନେ ଶେଷରେ ସହର ବାହାରେ ନବନିର୍ମିତ ଆବାସଠାରେ ପହଞ୍ଚିଲେ । ସେହିଠାରେହିଁ ସେମାନେ ପ୍ରଥମ କରି ଆତିଥ୍ୟ ପାଇଲେ; ଯାହା ବଡ଼ଦେଉଳର ଦୈନନ୍ଦିନ ଜୀବନ ତାଙ୍କ ସ୍ମୃତିକୁ ଆଣିଲା । କ୍ରମେ ଲକ୍ଷ୍ମୀ ଓ ଜଗନ୍ନାଥ ପରସ୍ପରକୁ ଚିହ୍ନିଲେ ଓ ମଧୁର ମିଳନ ଘଟିଲା; କିନ୍ତୁ ଲକ୍ଷ୍ମୀ କେବଳ ଦୁଇଟି ସର୍ତ୍ତରେ ବଡ଼ଦେଉଳକୁ ଫେରିଯିବାକୁ ଅଡ଼ିବସିଲେ । ପ୍ରଥମ ଯେ ଲକ୍ଷ୍ମୀଠାକୁରାଣୀ ଜାତି-ବର୍ଣ୍ଣ-ନିର୍ବିଶେଷରେ ସମସ୍ତଙ୍କ ଘରକୁ ଯିବେ, ସେଥିରେ କେହି ବାଧା ଦେବେ ନାହିଁ । ଦ୍ୱିତୀୟରେ ଲକ୍ଷ୍ମୀଙ୍କ ରନ୍ଧା ପ୍ରସାଦ ଆବ୍ରାହ୍ମଣଚଣ୍ଡାଳ ସମସ୍ତେ ଏକାଠି ଭୋଜନ କରିବେ, ତାହା ପାପ ବୋଲି ଧରାଯିବ ନାହିଁ ।

ଏହାହିଁ ଜଗନ୍ନାଥଙ୍କ ଦେଉଳର ଏବର ଦୈନନ୍ଦିନ ଦୃଶ୍ୟ ।

ଏହା ହେଲା ପଞ୍ଚଦଶ ଶତାବ୍ଦୀର ମହାକବି ବଳରାମ ଦାସଙ୍କ ରଚିତ ଓଡ଼ିଆ ଭାଷାର ଲକ୍ଷ୍ମୀପୁରାଣ ସୁଆଙ୍ଗ । ଗତ ଚାରିଶତ ବର୍ଷଧରି ଏହା ଓଡ଼ିଆ ଜାତିକୁ ମୁଗ୍ଧ ଓ ଶିକ୍ଷିତ

କରିଆସିଛି । ବୋଧହୁଏ ଏହି କ୍ଷୁଦ୍ର ସୁଆଙ୍ଗହିଁ ଓଡ଼ିଶାର ଜାତୀୟ ଜୀବନରେ ମାର୍ଗଶିର ମାସ ଗୁରୁବାରପୂଜାକୁ ଏପରି ସର୍ବବ୍ୟାପ୍ତ ଅନୁଷ୍ଠାନରୂପେ ଠିଆ କରାଇପାରିଛି । ପୁରାଣ-ସାହିତ୍ୟ ପରି ଏହି ଗାଁ-ଦାଣ୍ଡନାଟକୋବଳି ଜନଚେତନା ଉପରେ କି ଗଭୀର ପ୍ରଭାବ ପକାଇପାରିଛି, ଏହି ଲକ୍ଷ୍ମୀପୁରାଣ ସୁଆଙ୍ଗହିଁ ତା'ର ଏକ ଦୃଷ୍ଟାନ୍ତ । ଜନଚିତ୍ତ ବିନୋଦନ ପ୍ରସଙ୍ଗ ଛାଡ଼ିଦେଲେ ମଧ୍ୟ କି ଚମତ୍କାର ମାନବିକ, ସାମାଜିକ ଓ ଜାନ୍ତବିକ ବିଳାସ ସୂଚିତ ନକରୁଛି ଏହି ଛୋଟ ଲକ୍ଷ୍ମୀପୁରାଣ ସୁଆଙ୍ଗଟି ! ଏ ଗ୍ରନ୍ଥ ହିନ୍ଦୁ ସମାଜର ଜାତିବିଭାଗ ପ୍ରଥାକୁ ଟିକି ଟିକି କରି ଭାଙ୍ଗିଦେବା ସଙ୍ଗେ ସଙ୍ଗେ, ଗୃହ ଓ ସମାଜରେ ନାରୀର ସମ୍ମାନନୀୟ ସ୍ଥାନକୁ ସୁଦୃଢ଼ ଭାବରେ ପ୍ରତିଷ୍ଠିତ କରିପାରିଛି । ଏ ଯୁଗରେ ଥିଏଟର-ଅଭିନୀତ ତଥାକଥିତ ବହୁ 'ନାଟକ' ଅପେକ୍ଷା ଗାଁ-ଦାଣ୍ଡର-ଅଭିନୀତ ଅନେକ ଗଣ-ନାଟ୍ୟ ଯେ ଅଧିକ ଶିଳ୍ପାଳଂକୃତ ଓ ଉନ୍ନତତର ସାହିତ୍ୟ, ତାହାର ସ୍ପଷ୍ଟ ପ୍ରମାଣ ଏହି ଲକ୍ଷ୍ମୀପୁରାଣ ସୁଆଙ୍ଗ ।

କିନ୍ତୁ ଓଡ଼ିଆ ଭାଷାରେ ଏହି ପ୍ରାଚୀନ ଲୀଳା, ସୁଆଙ୍ଗ ଓ ଯାତ୍ରାବଳି ମଧ୍ୟ ଇତିମଧ୍ୟରେ ଯୁଗୋପଯୋଗୀ ସଂସ୍କାର ବରଣ କରିବାକୁ ବାଧ୍ୟହୋଇଛନ୍ତି । ପୂର୍ବେ କୁହାଯାଇଛି ଯେ, ଓଡ଼ିଶାରେ ପ୍ରାଚୀନ ଗଣ-ନାଟ୍ୟ ଓ ଆଧୁନିକ ରଙ୍ଗମଞ୍ଚ ନାଟକ ପରସ୍ପରକୁ ବିଶେଷ ଭାବରେ ପ୍ରଭାବିତ କରିଆସୁଛନ୍ତି । ଓଡ଼ିଶାର ରଙ୍ଗମଞ୍ଚ-ସଂସାରରେ କାଳୀଚରଣ ପଟ୍ଟନାୟକଙ୍କ ଆବିର୍ଭାବ ପରଠାରୁ ଦେଖଣାହାରୀଙ୍କୁ ଆକର୍ଷଣ କରିବାପାଇଁ ହିଁ ରଙ୍ଗମଞ୍ଚରେ ଯାତ୍ରାର ବହୁ ଆଙ୍ଗିକ ଆଣି ଠିଆକରାଯାଇଛି; ଯାହା ଫଳରେ ବିଶୁଦ୍ଧ ନାଟକର ବିପର୍ଯ୍ୟୟ ଘଟିଛି ଓ ନାଟକୀୟ ସ୍ତର ତଳକୁ ଖସିଛି । ଏ କ୍ଷେତ୍ରରେ କାଳୀଚରଣଙ୍କ ଅଗ୍ରଗାମୀ ପଥପ୍ରଦର୍ଶକ ଅବଶ୍ୟ ହେଉଛନ୍ତି ଗୋବିନ୍ଦଚନ୍ଦ୍ର ଶୂରଦେଓ ଓ ମୋହନସୁନ୍ଦର ଦେବ ଗୋସ୍ୱାମୀ, ଯେଉଁମାନେ ରାସଲୀଳାକୁ ଗାଁ-ଦାଣ୍ଡରୁ ଟେକିଆଣି ଆଧୁନିକ ଥିଏଟର୍‌ରେ ଠିଆକଲେ ଏବଂ ଯାତ୍ରା ଥିଏଟର୍‌ର ମିଳନ ଗଣ-ଚେତନା ଉପରେ କି ଅପ୍ରତିରୋଧନୀୟ ପ୍ରଭାବ ପକାଇପାରେ, ତାହା ଦେଖାଇ ଦେଇଥିଲେ । ଅନ୍ୟପକ୍ଷରେ ଗ୍ରାମ୍ୟ ଯାତ୍ରା ଓ ସୁଆଙ୍ଗ ଇତିମଧ୍ୟରେ ନିଜକୁ ଯୁଗୋପଯୋଗୀ କରିବାକୁ ଯାଇ ଆଧୁନିକ ଥିଏଟର୍‌ର ବହୁ ଆଙ୍ଗିକ ଗ୍ରହଣ କରିସାରିଛନ୍ତି । ଏବେ ଯାତ୍ରାରେ ଗଦ୍ୟ ଓ ଅମିତ୍ରାକ୍ଷର ଛନ୍ଦର ବହୁଳ ବ୍ୟବହାର ହେଲାଣି ଓ ସେଗୁଡ଼ିକ ଅଙ୍କ ଓ ଦୃଶ୍ୟରେ ବିଭକ୍ତ ହେଲାଣି; ଯାହା ପୂର୍ବେ ହେଉନଥିଲା । ଅଭିନେତା-ଅଭିନେତ୍ରୀଙ୍କ ପରିଧାନ ଓ ସାଧାରଣ ସାଜସଜ୍ଜା ପ୍ରାୟ ହିଁ ରଙ୍ଗମଞ୍ଚୀୟ ।

**ବୈଷ୍ଣବ ପାଣି –**

ଯେଉଁମାନେ ପ୍ରାଚୀନ ଓଡ଼ିଶୀ ଯାତ୍ରାକୁ ଆଧୁନିକ କରିଗଲେ, ସେମାନଙ୍କ ମଧ୍ୟରେ ବିଖ୍ୟାତତମ ହେଉଛନ୍ତି ବୈଷ୍ଣବ ପାଣି । ଓଡ଼ିଆ ରଙ୍ଗମଞ୍ଚର ପିତା-ସ୍ୱରୂପ କୋଠପଦା ମଠର ମହନ୍ତଙ୍କ ଥିଏଟରରେ ସେ ଦିନେ ନଟ-ବାଳକ ହୋଇ ଦେଖାଦେଇଥିଲେ ।

ସେଦିନର ସେହି ନଟ-ବାଳକ ପାଣି, ଶତାଧିକ ଯାତ୍ରା-ନାଟକ ଛାଡ଼ିଯାଇଛନ୍ତି; ଯେଉଁଥିରୁ କେତେକ ୩୦ରୁ ୪୦ ସଂସ୍କରଣ ପର୍ଯ୍ୟନ୍ତ ଉଠିଥିଲା, ପାଣିଙ୍କ ଜୀବନ-କାଳରେ। ଆଧୁନିକ ଓଡ଼ିଶାର ଗଣ-ଚିତ୍ତକୁ ପାଣିଙ୍କ ଦାନ ପ୍ରକୃତରେ ଅମୂଲ୍ୟ ଓ ଶାଶ୍ୱତ ! ତାଙ୍କ ରଚିତ ଯେକୌଣସି ଯାତ୍ରାର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ପ୍ରମାଣ କରିବ ଯେ ପାଣି କି ଉଚ୍ଚସ୍ତରର ସାହିତ୍ୟସ୍ରଷ୍ଟା ଥିଲେ ଓ କି ପରିମାଣରେ ସେ ପ୍ରାଚୀନ ଓଡ଼ିଆ ଯାତ୍ରାକୁ ଆଧୁନିକ କରିଯାଇଛନ୍ତି ।

ଭାରତୀୟ ସାହିତ୍ୟରେ ଯାହା ଲାଇଲା-ମଜ୍‌ନୁ, ଆନ୍ତର୍ଜାତିକ ସାହିତ୍ୟରେ ଯାହା ପିରାମସ୍ ଓ ଥିସ୍‌ବୀ ବା ରୋମିଓ-ଜୁଲିଏଟ୍, ଓଡ଼ିଆରେ ସେହି କାହାଣୀର ନାମ କେଦାର-ଗୌରୀ । ରାଧାନାଥ ଏହି କାହାଣୀକୁ ଓଡ଼ିଆରେ କାବ୍ୟଗୌରବ ଦେଇଥିଲାବେଳେ, ବୈଷ୍ଣବ ପାଣି ଯାକୁ ଦେଇଯାଇଛନ୍ତି ଯାତ୍ରାଭିନୟ ରୂପ । ପାଣି ଏ ଗଳ୍ପଟିକୁ ଅଷ୍ଟମ ଶତାବ୍ଦୀରେ ଓଡ଼ିଶା ରାଜା ଲଲାଟେନ୍ଦୁ କେଶରୀଙ୍କ ରାଜତ୍ୱରେ ନେଇ ଥୋଇଲେ ମଧ୍ୟ, ଗଳ୍ପ ଭିତରେ ସମସାମୟିକ ସମସ୍ୟା ପୂରେଇବାକୁ ଭୁଲିନାହାନ୍ତି । ତେଣୁ ରାଜା ଲଲାଟେନ୍ଦୁ କେଶରୀ ଯେତେବେଳେ ରଙ୍ଗମଞ୍ଚରେ ଆବିର୍ଭୂତ ହୋଇ ମନ୍ତ୍ରୀଙ୍କୁ ରାଜ୍ୟର ହାଲଚାଲ୍ ପଚାରୁଛନ୍ତି, ମନ୍ତ୍ରୀ ଉତ୍ତର ଦେଉଛନ୍ତି –

''ନିଜ ରାଜକୋଷ୍ଟୁ ଦିବ୍ୟ ଶାସନ ନିର୍ମାଣି
ନିଯୋଗମାନ ଖଞ୍ଜିଛି ରାଜନ,
ଭାଜନ ନହେବ ତାକୁ କେହି,
ଯୋଗ୍ୟ ଚିକିତ୍ସକ ହେତୁ ରୋଗ ନାହିଁ ଦେଶେ
ଭୁଞ୍ଜି ମହୀ ଭୋଗୁଛନ୍ତି ପ୍ରଜାବର୍ଗ
ଖେଳୁଛନ୍ତି ଛାମୁ ଗୁଣ ଗାଇ ।
ବିଦ୍ୟାଳୟ ଛାତ୍ରାବାସ ପରିଚାଳନାରେ
ନଘଟଇ କ୍ଷତି, ଜାଣ କ୍ଷିତିପତି,
ବହୁଛି ଶିକ୍ଷାରୂପିଣୀ ନଈ,
କର୍ମଚାରୀଙ୍କ କର୍ମରେ ଭ୍ରମେ ତ୍ରୁଟି ଦିନେ
ନଦେଖିବେ ତୋଳେ ନଶୁଣିବେ ତିଳେ
ଶ୍ରୁତିବିଳେ ବଇଷ୍ଣବ କହି ।''

ଯା'ପରେ ରାଜା ଇଚ୍ଛା ପ୍ରକାଶ କଲେ ଯେ, ସେ ଏକ ସ୍ଥାନୀୟ ବିଦ୍ୟାଳୟ ପରିଦର୍ଶନ କରିଯିବେ । ସେଠାରେ ରାଜା ଏକାଶ୍ରେଣୀରେ ପାଠ ପଢୁଥିବା କେଦାର ଓ ଗୌରୀଙ୍କୁ ଭେଟନ୍ତି । ଯାତ୍ରା-ନାଟ୍ୟର କିଶୋର ନାୟକ ଓ ନାୟିକାଙ୍କୁ ଏହିପରି ଭାବରେ ମଞ୍ଚ ଉପରକୁ ଅଣାଇ, ପାଣି ଆଧୁନିକ ଭାବରେ ଅଭିନୟ ଆରମ୍ଭ କରିଛନ୍ତି । କିନ୍ତୁ ଠିକ୍ ପରଦୃଶ୍ୟରେ ପ୍ରାଚୀନ ଯାତ୍ରାର ଅଂଶବିଶେଷ 'ଦୂତ' ବାହାରିଛି । ଅଥଚ ସେ ଯେଉଁ

ଗୀତଟି ଗାଉଛି, ତାହା ଇଦାନୀନ୍ତନ 'ନିର୍ବାଚନ' ପ୍ରଥା ଉପରେ ଏକ କଠୋର କଷାଘାତ । ଦୂତ କହୁଛି –

''ଲାଗିଅଛି ମଜା ଦୁନିଆଯାକର / ବଢ଼ିଲାଣି ଛୋଟଲୋକଙ୍କ କଦର ।
ଏଡ଼େ ଛନ୍ତି ପୁଣି ଭୋଟର ରଙ୍ଗରେ / ନବୁଝନ୍ତି ସେ ତ ବାଙ୍କ ସଳଖରେ ।
ଟିକଟ ଖଣ୍ଡିକ ବାକସ ଫାଙ୍କରେ / ପଡ଼ିଲେ ତେଣିକି ଫୁଲାନ୍ତି ନାକରେ ।
ପାସୋରି ପକାନ୍ତି ପୂରୁବ ଦୁଃଖରେ / ସେ ନେଉରା ହାତଧରା ଯେତେକ ରେ ।
ଲଟ୍‌ପଟ ଭାଂଇ ନହୁଅ ପଙ୍କରେ / ବଇଆ ବୋଲଇ ନଶୁଭେ ଡାକରେ ।''

ବିଦ୍ୟାଳୟର କିଶୋର ଛାତ୍ରଛାତ୍ରୀ କେଦାର ଓ ଗୌରୀ ବଡ଼ ହୁଅନ୍ତେ ସାମାଜିକ ନିୟମ ଯୋଗୁଁ ଆଉ ପରସ୍ପରକୁ ଭେଟିପାରିଲେ ନାହିଁ । ତେଣୁ ଦିନେ ସେମାନେ ଠିକ୍ କଲେ ସେହି ରାତ୍ରି, ଭୁବନେଶ୍ୱର-ନଗର-ପ୍ରାନ୍ତସ୍ଥ ଜଙ୍ଗଲରେ ମିଶିବେ । ଘଟଣାସବୁ ଏପରି ଘଟିଲା ଯେ, କେଦାର ସେଠି ପହଞ୍ଚି ଭାବିନେଲା ଗୌରୀକୁ ବାଘ ଖାଇଯାଇଛି, ତେଣୁ ସେ ନିଜକୁ ହତ୍ୟା କଲା । ତା'ପରେ ଗୌରୀ ସେଠାରେ ପହଞ୍ଚି କେଦାରକୁ ମୃତ ଦେଖି, ସେ ମଧ୍ୟ ନିଜକୁ ହତ୍ୟାକଲା । ପାଣିଙ୍କ ଗୀତିନାଟ୍ୟରେ କେଦାର ନିଜକୁ ହତ୍ୟା କରିବା ପୂର୍ବରୁ, ନିଜର ପୁଞ୍ଜୀଭୂତ ଦୁଃଖ-ବେଦନାକୁ ଏହିପରି ଏକ ଗାନରେ ପ୍ରକାଶ କରିଛି –

''କେଣେ ଅଛୁ ରେ ନିର୍ଦ୍ଦୟ ଶାର୍ଦ୍ଦୂଳ ଦୁର୍ଦ୍ଦାନ୍ତ
ଆସ ମୋତେ କରି ଗ୍ରାସ ହୁଅ ତୁ ତୃପିତ,
କାହିଁପାଇଁ କରୁ ଡେରି,
ତୋ ଗରଭେ ଅଛି ମୋର ପ୍ରାଣର ଗଉରୀ ।
ତା ଅସ୍ଥିମାଂସରେ ମୋର ଅସ୍ଥିମାଂସ ମିଶା
ଜୀବନ୍ତେ ପୂର୍ଣ୍ଣ ନୋହିଲା ମିଳନର ଆଶା,
ଭଲା ଅନ୍ତିମେ ତା ହେଉ,
ବାହାରେ ମରି ତାହାରେ ପାଇବି ବା କାହୁଁ ।
ସାତଦିନୁ ଦିନେ ହୋଇନାହୁଁ ଛଡ଼ାଛଡ଼ି
କେ କାକୁ ଦଣ୍ଡେ ନଦେଖି ପ୍ରାଣ ଯାଏ ଉଡ଼ି,
ସଢ଼ିଯାଉ ଦୁଃଖ-ପଙ୍କେ,
ତଡ଼ିତଦେହା ମୋ ଆଜି ଜଡ଼ିଥାନ୍ତା ଅଙ୍କେ ।
ଛାଡ଼ି ତ ଅଇଲୁ ଘରଦ୍ୱାର ପରିବାରୀ,
କାଢ଼ି ତୁ ନେଲୁ ମୋ ପାଶୁଁ ସ୍ନେହର ଗଉରୀ
ଗୌର-ଅଙ୍ଗିନୀକି ତୁହି,
ଫାଟି ତ ଯାଉଛି ହୃଦ ବଇଷ୍ଣବ କହି ।''

ଉତ୍କଳର ଆଧୁନିକ ଗଣକବି ଏହି ବୈଷ୍ଣବ ପାଣିଙ୍କ ହାତରେ ଏହିପରି ସାଧାରଣ ଗଣନାଟ୍ୟ ଅତି ଉଚ୍ଚ ଶୈଳ୍ପିକ ସ୍ତରକୁ ଉଠିପାରିଛି । ଉଦ୍ଧୃତ ଅଂଶମାନ ପାଠକଙ୍କୁ ଏହି ବିଶ୍ୱାସ ଦେବାର ଆଶାକରୁ ଯେ, ଓଡ଼ିଶାର ଗଣନାଟ୍ୟ ଏକାଧାରାରେ ଶିଳ୍ପବିଭବ-ମଣ୍ଡିତ ଓ ସମସାମୟିକ ସମସ୍ୟାମାନଙ୍କ ପ୍ରତି ମଧ୍ୟ ଜାଗ୍ରତ । ଗଣକବି ସମସାମୟିକ ସମାଜରେ ଯାହା ଆଦରଣୀୟ ତାହାର ପ୍ରଶଂସା କରିଛନ୍ତି ଓ ନିନ୍ଦ୍ୟର ଅକୁତୋଭୟ ନିନ୍ଦା ମଧ୍ୟ କରିଛନ୍ତି ।

ଯାତ୍ରା-ଲୀଳା-ସୁଆଙ୍ଗକୁ ଛାଡ଼ିଦେଲେ, ଓଡ଼ିଶାରେ ଆଉ ଦ୍ୱିବିଧ ଗଣ-ବିନୋଦନ ଦେଖାଯାଏ, ଯାହା ଅନ୍ୟତ୍ର ଦେଖାଯାଏ ନାହିଁ । ଗୋଟିଏ ହେଉଛି ପାଲା; ଅନ୍ୟଟି ଦାସକାଠିଆ । ବଙ୍ଗଦେଶରେ ମଧ୍ୟ ପାଲା ଅଛି, କିନ୍ତୁ ଓଡ଼ିଶାରେ ପାଲାର ପ୍ରକାର ଓ ଚରିତ୍ର ତା'ଠାରୁ ଭିନ୍ନ । ଉଭୟ ପାଲା ଓ ଦାସକାଠିଆ ଉଚ୍ଚ ବୌଦ୍ଧିକ ଓ ସାହିତ୍ୟିକ ଗୁଣସଂପନ୍ନ ଓ ସମ୍ପୂର୍ଣ୍ଣ ଇତରତାଶୂନ୍ୟ । ପ୍ରାଚୀନ ଓଡ଼ିଆ କାବ୍ୟ-କବିତାକୁ ସୁମଧୁର କଣ୍ଠରେ ଏବଂ ଓଡ଼ିଆ ଓ ସଂସ୍କୃତରୁ ସମାନ୍ତର ଭାବ ଓ ବାଣୀ ଉଦ୍ଧାର କରି, ସେମାନେ ଯେପରି ପ୍ରଚାର କରନ୍ତି, ତାହା ଓଡ଼ିଆ ଜନତା ମନ୍ତ୍ରମୁଗ୍ଧ ପରି ଶୁଣନ୍ତି । ଦାସକାଠିଆ ଦୁଇଖଣ୍ଡି କାଠିରେ ତାଳ ଦେଇ ଦେଇ କୌଣସି ଏକ ଘଟଣା ବର୍ଣ୍ଣନା କରିଥାନ୍ତି, କିନ୍ତୁ ସେହି ଘଟଣାକୁ କେନ୍ଦ୍ରକରି, ରବିବିମ୍ବତଳସ୍ଥ ସକଳ ବିଷୟ ଆସିଯାଏ । ପାଲାବାଲାଏ ସାଧାରଣତଃ ଯୁଦ୍ଧ, ପ୍ରେମ, ବିବାହ ବା ଭକ୍ତି ପ୍ରଭୃତି କୌଣସି ଏକ ଅବସ୍ଥାକୁ କେନ୍ଦ୍ରକରି ଏକା ଏକା ବା ଅନ୍ୟ ଏକ ଦଳ ସହିତ ପ୍ରତିଦ୍ୱନ୍ଦ୍ୱିତାରେ ପ୍ରାଚୀନ ସାହିତ୍ୟର ଅପୂର୍ବ କଳା-କୌଶଳ ଦେଖାଇଥାନ୍ତି । ଆଜି ଯଦି ଓଡ଼ିଆ ଜନତା ଭିତରେ ପ୍ରାଚୀନ ସାହିତ୍ୟ ପ୍ରତି କ୍ଷୁଧା ଜାଗ୍ରତ ରହିଛି, ତେବେ ସେ ଗୌରବ ଦେଶର ଶାସକମାନଙ୍କର ବା ନବ-ପ୍ରତିଷ୍ଠ ମୁଦ୍ରା-ଯନ୍ତ୍ରରେ ନୁହେଁ, ତାହା ସମ୍ପୂର୍ଣ୍ଣରୂପେ ଏହି ଭ୍ରାମ୍ୟମାଣ ଦାସକାଠିଆ ଓ ପାଲାବାଲାମାନଙ୍କର ।

□□□

# ଷୋଡ଼ଶ ଅଧ୍ୟାୟ

## ସତ୍ୟବାଦୀ ସ୍କୁଲ

ରାଧାନାଥ-ମଧୁସୂଦନଙ୍କ ଅନୁସାରୀଗଣ ବିଂଶ ଶତାବ୍ଦୀର ଦ୍ୱିତୀୟ-ଦଶକ ପର୍ଯ୍ୟନ୍ତ ରଚନାରତ ଥିଲେହେଁ ପ୍ରଥମ ଦଶକ ବେଳକୁହିଁ ଏକ ନୂତନ-ସାହିତ୍ୟ-ରୀତିର ପ୍ରଚାରକ ଭାବରେ ସେମାନଙ୍କର ପ୍ରାଧାନ୍ୟ ଆଉ ନଥିଲା । ସେତେବେଳକୁ ଆଉ ଦଳେ ନୂଆ ଲେଖକ କ୍ଷେତ୍ରରେ ଆବିର୍ଭୂତ ହୋଇଗଲେଣି; ଯେଉଁମାନେ ରାଧାନାଥ-ମଧୁସୂଦନଙ୍କ କୃତିତ୍ୱ ପ୍ରତି କଟାକ୍ଷ କରିବାର ଦେଖାଗଲା । ପୁଣ୍ୟାତ୍ମା ଗୋପବନ୍ଧୁ ପ୍ରତିଷ୍ଠିତ ସତ୍ୟବାଦୀ ବନ-ବିହାର ଏହି ଦଳର ଅନ୍ୟ ନାମ ।

ବ୍ରିଟିଶ, ଓଡ଼ିଶା ଅଧିକାର କରିବାର ଠିକ୍ ଏକଶତ ବର୍ଷ ପରେ, ୧୯୦୩ରେ ଦେଶର ରାଜା ଓ ପ୍ରଜାଙ୍କୁ ଏକ ମଞ୍ଚରେ ଭାଇ ଭାଇ ରୂପେ ଠିଆକରାଇ ଉତ୍କଳ-ସମ୍ମିଳନୀର ଆରମ୍ଭହେଲା, ଯାହା ଏକକଣ୍ଠରେ ଦାବିକଲା ଯେ, ସମଗ୍ର ଓଡ଼ିଆ ଭାଷା-ଭାଷୀ ଅଞ୍ଚଳ ଏକ ଶାସନାଧୀନରେ ରହନ୍ତୁ । ପୂର୍ବେ କୁହାଯାଇଛି, କିପରି ଦେଶପ୍ରାଣ ସାମ୍ବାଦିକ ନୀଳମଣି ବିଦ୍ୟାରତ୍ନେ ଗଞ୍ଜାମ ଓ ଦକ୍ଷିଣ-ଓଡ଼ିଶାରେ ଏହି ନବଜାଗୃତିର ବୀଜ-ବପନ କରିଥିଲେ । "କିନ୍ତୁ ଉତ୍କଳ ସମ୍ମିଳନୀ ପ୍ରକୃତରେ ତତ୍‌କାଳୀନ ଉତ୍କଳ-ଭୀଷ୍ମ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଦ୍ୱାରାହିଁ ଲାଳିତ ଓ ପାଳିତ ହୋଇଥିଲା । ବସ୍ତୁତଃ ଉତ୍କଳ-ସମ୍ମିଳନୀ ହୋଇଉଠିଲା ମଧୁସୂଦନଙ୍କ ଜୀବନର ଶ୍ରେଷ୍ଠ ବ୍ରତ । ସେହି ବ୍ରତର ପ୍ରେରଣାରେ, ଲେଖକ ହୋଇନଥିଲେହେଁ, ଓକିଲ ମଧୁସୂଦନ ପ୍ରାଣସ୍ପର୍ଶୀ ଉଦ୍‌ବୋଧନମୟ କେତୋଟି ଜାତୀୟ ସଙ୍ଗୀତ ଲେଖିପକାଇଥିଲେ ।"* ଉତ୍କଳ ସମ୍ମିଳନୀ ଦେଇ ଓଡ଼ିଆମାନଙ୍କର ଭାଷାସୂତ୍ରରେ ପ୍ରଦେଶ ଗଠନ ଦାବି ଭାରତବର୍ଷରେ ସର୍ବପ୍ରଥମ । ୧୯୦୩ରୁ ଆଗାମୀ ୩୦ ବର୍ଷଧରି ଓଡ଼ିଆ-ଭାଷାଭାଷୀମାନଙ୍କର ଏକତ୍ରୀକରଣ ସମଗ୍ର ଓଡ଼ିଆ ଜାତିର ପ୍ରିୟତମ ସ୍ୱପ୍ନ ଓ ଏକାନ୍ତ ବାସନା ହୋଇ ରହିଲା ଏବଂ କେବଳ ଦେଶମିଶ୍ରଣ ଆନ୍ଦୋଳନର ନୁହେଁ; ସମଗ୍ର ଜାତୀୟ ପ୍ରାଣର ସକଳ ଆକାଙ୍କ୍ଷାର ପ୍ରାଣକେନ୍ଦ୍ର ହୋଇଉଠିଥିଲେ ଏହି କାଳରେ କବି, ଦେଶଭକ୍ତ ଓ ଋଷି ଗୋପବନ୍ଧୁ ଦାସ ।

---

* କୌଣସି ଓଡ଼ିଆ ସାହିତ୍ୟର ଇତିହାସରେ ମିଷ୍ଟର୍ ଦାସଙ୍କ କୀର୍ତ୍ତି ବର୍ଣ୍ଣିତ ହେବାର କଥା ନୁହେଁ । ତେଣୁ ମୂଳ ଇଂରାଜୀ ଗ୍ରନ୍ଥରେ ତାହା ଦିଆଯାଇନଥିଲା; କିନ୍ତୁ ଉତ୍କଳ ସମ୍ମିଳନୀର କଥା କହିବାକୁ ଯାଇ, ମଧୁସୂଦନଙ୍କ ସମ୍ପର୍କରେ ନୀରବ ରହିବା ସମ୍ଭବ ନୁହେଁ । ଏଠାରେ ତେଣୁ ମଧୁସୂଦନଙ୍କ ସମ୍ପର୍କରେ ତିନୋଟି ବାକ୍ୟ ନୂଆକରି ମିଶାଇଦିଆଗଲା । ଇଂରାଜୀ ପୁସ୍ତକରେ ଏହି ପ୍ରକାର ସଂଶୋଧନ ପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ପୁନାର ଫର୍ଗୁସନ କଲେଜ ଆଦର୍ଶରେ ଗୋପବନ୍ଧୁ ପୁରୀଠାରୁ ଏଗାର ମାଇଲ୍ ଉତ୍ତରକୁ, ସାକ୍ଷୀଗୋପାଳର ବକୁଳବନରେ ଏକ ବିହାର ସ୍ଥାପନ କରିଥିଲେ । ଗୋପବନ୍ଧୁଙ୍କ ଆଦର୍ଶ ଓ ପୁଣ୍ୟଶୀଳ ଜୀବନଦ୍ୱାରା ପ୍ରଭାବିତ ହୋଇ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ପରି ଉଚ୍ଚଶିକ୍ଷିତ ବ୍ୟକ୍ତି ସବୁ, ଯେଉଁମାନେ ସେକାଳରେ ଚାହିଁବାମାତ୍ରେ ଉଚ୍ଚ ସରକାରୀ ପଦ ସବୁ ପାଇପାରିଥାନ୍ତେ, ସେମାନେ ସାମାନ୍ୟ ବେତନରେ ସତ୍ୟବାଦୀ ସ୍କୁଲରେ ଯୋଗଦେଲେ । ସରଳ ଜୀବନ ଓ ଉଚ୍ଚଚିନ୍ତା— ଏହି ପ୍ରାଚୀନ ଭାରତୀୟ ଆଦର୍ଶକୁ ସେମାନେ ପୁନଃପ୍ରବର୍ତ୍ତିତ କରେଇବାର ଚେଷ୍ଟା କରିଥିଲେ ।

ଏପରି ଉଚ୍ଚଶିକ୍ଷିତ ଓ ଜାତିଗତପ୍ରାଣ ବ୍ୟକ୍ତିମାନେ ଯେଉଁଠି ଶିକ୍ଷକତା କରିବାକୁ ଆସିଲେ, ତାହା ଥିଲା ଗୋଟିଏ ହାଇସ୍କୁଲ ମାତ୍ର; କିନ୍ତୁ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଓ ତାଙ୍କର ଏହି ସହକର୍ମୀମାନଙ୍କର ବୌଦ୍ଧିକ ତୁଙ୍ଗିମାଯୋଗୁଁ, ସେହି ହାଇସ୍କୁଲଟି ପ୍ରାୟ ୨୦ ବର୍ଷଧରି ସମଗ୍ର ଓଡ଼ିଆ ଜାତିର ସାଂସ୍କୃତିକ କେନ୍ଦ୍ର ହୋଇପଡ଼ିଲା । ଗୋପବନ୍ଧୁ ଓ ତାଙ୍କର ଉପର୍ଯ୍ୟୁକ୍ତ ସହକର୍ମିବର୍ଗ ଛାତ୍ରାବସ୍ଥାରୁହିଁ ସାହିତ୍ୟରେ ଅନୁରାଗ ଓ ବିଚକ୍ଷଣତା ଦେଖାଇଥିଲେ ଏବଂ ସତ୍ୟବାଦୀ ସ୍କୁଲରେ ସେମାନେ ଏକତ୍ର ହେଲାପରେ ସାହିତ୍ୟକୁ ହିଁ ସ୍ୱ-ସ୍ୱ ଆଦର୍ଶ ପ୍ରଚାରର ଉପଯୁକ୍ତ ବାହନ ରୂପେ ବରିନେଲେ । ନିଜ ଦେଶବାସୀ ସେମାନଙ୍କ ପୂର୍ବପୁରୁଷମାନଙ୍କ ପରି ସ୍ୱାଧୀନ ମନୁଷ୍ୟ ହେବାକୁ ଯେପରି ଚେଷ୍ଟା କରିବେ, ସେଇ ଲକ୍ଷ୍ୟରେ ସେମାନଙ୍କ ଚିତ୍ତରେ ଜାତୀୟ ଚେତନା ଜାଗ୍ରତ କରିବାପାଇଁ, ସେମାନେ ଲେଖିଚାଲିଲେ ଇତିହାସ, କାବ୍ୟ, କବିତା, ନାଟକ ଓ ଅଜସ୍ର ପ୍ରବନ୍ଧାବଳି; ଯା' ଫଳରେ ଓଡ଼ିଆ ଭାଷା ପାଇଛି ବୈଶିଷ୍ଟ୍ୟ-ମଣ୍ଡିତ କିଛି ରଚନାବଳି । ଗାନ୍ଧି-ଆନ୍ଦୋଳନର ବନ୍ୟାରେ ସତ୍ୟବାଦୀ ସ୍କୁଲ ଶୀଘ୍ର ନିଶ୍ଚିହ୍ନ ହୋଇଗଲା । ଗୋପବନ୍ଧୁ ମଧ ଅକାଳରେ ପ୍ରାଣତ୍ୟାଗ କରିଗଲେ ଓ ତାଙ୍କ ସହକର୍ମିଗଣ ରାଜନୀତିର ଜଳାଭୂମିରେ ପଶି ଘାଣ୍ଟିହେଲେ; କିନ୍ତୁ ସତ୍ୟବାଦୀ ସ୍କୁଲରେ ଥିବାବେଳେ ଯେଉଁ ସ୍ୱଳ୍ପ କେତୋଟି ବର୍ଷ ସେମାନେ ସାହିତ୍ୟସେବାରେ ନିଜନିଜକୁ ନିୟୋଜିତ କରିଥିଲେ, କେବଳ ସେଇ ଯୋଗ୍ୟତା ବଳରେହିଁ ଏହି ଗୋଷ୍ଠୀ ଓଡ଼ିଶାର ଜାତୀୟ ଜୀବନରେ ମୃତ୍ୟୁହୀନ ହୋଇ ରହିଗଲେ ।

ସତ୍ୟବାଦୀ ସ୍କୁଲର ସାହିତ୍ୟିକ ଦାନ ବିଚାର କରିବାକୁ ବସିଲେ, ସେହି ଦଳର ନେତା ଗୋପବନ୍ଧୁଙ୍କଠାରୁହିଁ ଆରମ୍ଭ କରିବାକୁ ହେବ । ସେ ଯେ ଉଚ୍ଚକୋଟିର ସାହିତ୍ୟସ୍ରଷ୍ଟା ଥିଲେ, ତାହା ନୁହେଁ, କୌଣସିଭାବରେ ତାଙ୍କୁ ମୌଳିକ ସ୍ରଷ୍ଟା ବା ଚିନ୍ତକ କୁହାଯାଇ ନପାରେ; କିନ୍ତୁ ଏକ ପବିତ୍ର ନିଷ୍ଠାପର ଜାତିଗତପ୍ରାଣ ଜୀବନଯାପନ ହେତୁ, ଗୋପବନ୍ଧୁ ସମଗ୍ର ଓଡ଼ିଆ ଜାତୀୟଚେତନାର ମୂର୍ତ୍ତ-ବିଗ୍ରହସ୍ୱରୂପ ହୋଇଉଠିଥିଲେ ।

**ପଣ୍ଡିତ ଗୋପବନ୍ଧୁ (୧୮୭୭-୧୯୨୮) –**

ଗୋପବନ୍ଧୁ ବସ୍ତୁତଃ ଥିଲେ ମାନବ-ସେବକ । ଅଧିକନ୍ତୁ, ସେ ଏଯାବତ୍ ରହିଛନ୍ତି ଓଡ଼ିଶାର ଶ୍ରେଷ୍ଠ ବାଗ୍ମୀ, ଶ୍ରେଷ୍ଠ ଜାତୀୟବାଦୀ ଓ ସମାଜ-ସଂସ୍କାରକ ଏବଂ ଦୂରଦୃଷ୍ଟିସମ୍ପନ୍ନ

ଶିକ୍ଷାବିତ୍ । ଜନ୍ମରୁ ଖନା ଥିଲେହେଁ ମହତ୍‌ପ୍ରାଣ ଗୋପବନ୍ଧୁ ବୋଧହୁଏ କେବଳ ନିଜର ଅହରହ କରୁଣାସ୍ପନ୍ଦିତ ମହତ୍ ପ୍ରାଣକୁ ଜନଚିତ୍ତ ସହିତ ମିଶାଇଦେବାର ଦୁର୍ବାର ଆଗ୍ରହ-ବଶତଃ, ହୋଇଉଠିଲେ ଏକ ମର୍ମସ୍ପର୍ଶୀ ବକ୍ତା । ଉଚ୍ଚ-ଭାବାକୁଳ ତାଙ୍କର ବାଣୀ ସାଧାରଣ ବଚନର ଊର୍ଦ୍ଧ୍ୱକୁ ଉଠି ହୋଇପଡୁଥିଲା କବିତା । ଫଳରେ ବିବିଧ କାଉନ୍‌ସିଲ୍ ଓ କନ୍‌ଫରେନ୍‌ସରେ ଦେଇଥିବା ତାଙ୍କର ଭାଷଣମାନ ଆଜି ଧରାଯାଉଛି ସୁଶୋଭନ ଓଡ଼ିଆ ଗଦ୍ୟର ଦୃଷ୍ଟାନ୍ତ ରୂପେ । ନିଜ ବାଣୀର ଉଦ୍‌ବେଳନରେ ଗୋପବନ୍ଧୁ ବିରାଟ ଜନସଙ୍ଘ ସବୁକୁ ଯେପରି ହସେଇ ଓ କନ୍ଦେଇ ପାରୁଥିଲେ, ତାହା ଉତ୍କଳ ଦେଶରେ ପୂର୍ବେ ବା ପରେ ଏଯାବତ୍ ଦେଖାଯାଇନାହିଁ ।

କିନ୍ତୁ ପରଜୀବନରେ ରାଜନୈତିକ ଭାବରେ ପରିଚିତ ଏହି ଗୋପବନ୍ଧୁ ଜୀବନ ଆରମ୍ଭ କରିଥିଲେ ପ୍ରକୃତରେ କବି ଗୋପବନ୍ଧୁ ଭାବରେ । ଛାତ୍ରାବସ୍ଥାରେ ଗୋପବନ୍ଧୁ ଯାହାକିଛି ଲେଖିଥିଲେ, ସେଥିରେ ଏପରି ସ୍ୱକୀୟତାର ମୁଦ୍ରା ଦେଖାଦେଇଥିଲା ଯେ, ତାହା ଦୃଷ୍ଟି ଆକର୍ଷଣ କରିଥିଲା ଓଡ଼ିଆ ସାହିତ୍ୟର ତତ୍କାଳୀନ ଅଧିଦେବତା ରାଧାନାଥ ରାୟଙ୍କର; କିନ୍ତୁ ବିଶ୍ୱବିଦ୍ୟାଳୟ ଛାଡ଼ିଲା ପରେ ଗୋପବନ୍ଧୁ ଏତେ ପ୍ରକାର ଜାତୀୟ କର୍ମାବଳି ଭିତରେ ନିଜକୁ ମିଶାଇଦେଲେ ଯେ; ଆଦ୍ୟ-ଯୌବନର ପ୍ରେୟସୀ କବିତାକୁ ସେ ଭୁଲିଗଲେ । ସତ୍ୟବାଦୀ ସ୍କୁଲ ସ୍ଥାପନ ଓ ପରିଚାଳନ ଏହିସବୁ କର୍ମାବଳି ଭିତରେ ଥିଲା ବହୁ ଭିତରୁ ଏକତମ ମାତ୍ର । ଓଡ଼ିଆ ଜାତୀୟ ଜୀବନର ଏପରି କୌଣସି ବିଭାଗ ନଥିଲା ଯାହା ଗୋପବନ୍ଧୁଙ୍କ ଦୃଷ୍ଟି ଆକର୍ଷଣ କରିନଥିଲା ବା ଯାହା ସେହିହେତୁ ପାଇନଥିଲା କୌଣସି ଏକ ମୂଲ୍ୟବାନ୍ ସ୍ୱର୍ଣ୍ଣସ୍ପର୍ଶ । ଓଡ଼ିଶାର ଶିକ୍ଷିତ ଓ ଅଶିକ୍ଷିତ ଜନସମାଜରେ ନିଜ ଭାବ ଓ ଚିନ୍ତାର ପ୍ରଚାର ପାଇଁ ଗୋପବନ୍ଧୁ ପ୍ରଥମେ ପ୍ରକାଶକଲେ ମାସିକ 'ସତ୍ୟବାଦୀ' ଓ ପରେ ସାପ୍ତାହିକ 'ସମାଜ' । ଏହି ଦୁଇଟି ପତ୍ରିକାର ସମ୍ପାଦକୀୟ ସ୍ତମ୍ଭ ଦେଇ ଗୋପବନ୍ଧୁ ନିଜର ସମଗ୍ର ପ୍ରାଣ ଓ ପ୍ରାଣର ସମଗ୍ର ବେଦନାକୁ ଜାତି ଆଗରେ ଢାଳିବାରେ ଲାଗିଲେ । ସେ ସବୁରେ ଗୋପବନ୍ଧୁ ଯେଉଁ ଗଦ୍ୟ ବ୍ୟବହାର କଲେ, ଶିଷ୍ଟ ଓ ଗ୍ରାମ୍ୟ ଭାଷାର ମଧୁର ମିଶ୍ରଣରେ ଓ ମଞ୍ଜୁଳ ଧ୍ୱନିବତ୍ତା ଓ ଛନ୍ଦୋମୟତା ଘେନି, ତାହା ଏକ ମହାପ୍ରାଣର ସ୍ପର୍ଶରେ ମାନବର ବାଣୀ କି ଉଦାର ସୁନ୍ଦର ହୋଇପାରେ ତାହା ଦେଖାଇଦେବା ସଙ୍ଗେ ସଙ୍ଗେ, ଆମକୁ ସ୍ମରଣ କରାଇଦେଉଛି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ବାଇବଲୀୟ ମାଧୁରୀ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୁଅନ୍ତେ, ଦେଶପ୍ରାଣ ଗୋପବନ୍ଧୁ ନିଜର ସତ୍ୟବାଦୀ ବିହାର, ପତ୍ରପତ୍ରିକା ଓ ଓଡ଼ିଆଭାଷୀ ଦେଶ ମିଶ୍ରଣ ପ୍ରଭୃତି ଅନୁଷ୍ଠାନ ବା ଉଦ୍ୟୋଗ; ଯାହାର ସେ ସେତେବେଳକୁ ଆତ୍ମାସ୍ୱରୂପ ହୋଇଉଠିଥିଲେ, ସେସବୁ ପ୍ରତି ଭ୍ରୂକ୍ଷେପ ମାତ୍ର ନକରି, ସେହି ମହାସ୍ରୋତକୁ ଲମ୍ଫ ପ୍ରଦାନ କଲେ । ଓଡ଼ିଶାରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଗୋପବନ୍ଧୁ ଓ ତାଙ୍କର ସତ୍ୟବାଦୀ ସହକର୍ମୀମାନେ ହିଁ ନାୟକ ଓ ନିୟନ୍ତା ହେଲେ । ୧୯୨୨ରୁ ୧୯୨୪ ପର୍ଯ୍ୟନ୍ତ ଦୁଇବର୍ଷ ଗୋପବନ୍ଧୁ ବିହାରର ହଜାରିବାଗ ଜେଲ୍‌ରେ ବନ୍ଦୀହୋଇ ରହିଲେ, ଆନ୍ଦୋଳନରେ ସଂପୃକ୍ତ

ଥିବା ହେତୁ । କାରାଜୀବନର ନିଷ୍କର୍ମତା ଭିତରେ ଗୋପବନ୍ଧୁ ବର୍ତ୍ତମାନ ତାଙ୍କ ଛାତ୍ରଜୀବନର ପ୍ରେୟସୀ, କବିତା ନିକଟକୁ ଫେରିଆସି ସେହି ହଜାରିବାଗ ଜେଲ୍‌ରେ ଦୁଇଟି ଛୋଟ କାବ୍ୟଗ୍ରନ୍ଥ ଲେଖିପକାଇଲେ ।

ସେଥିମଧ୍ୟରୁ ଗୋଟିଏ ହେଉଛି 'ବନ୍ଦୀର ଆତ୍ମକଥା' । ରାଜବନ୍ଦୀ ଭାବରେ ଓଡ଼ିଶାରୁ ହଜାରିବାଗକୁ ଅପସାରିତ ହେଉଥିବାବେଳେ ଓଡ଼ିଶାର ପରିଚିତ ସ୍ଥାନ ସବୁ ଦେଖି ଦେଖି ଓ ଛାଡ଼ି ଛାଡ଼ି ଯାଉଥିବାବେଳେ ତାଙ୍କର ଯେଉଁ ମାନସିକ ପ୍ରତିକ୍ରିୟା ଘଟୁଥିଲା, ଗୋପବନ୍ଧୁ ଏଥିରେ ସେହିସବୁକୁ ସରଳ-ମଞ୍ଜୁଳ ଭାବରେ ବର୍ଣ୍ଣନା କରିଯାଇଛନ୍ତି । ଏକ ମହତ୍‌ପ୍ରାଣରୁ ନିଃସ୍ୟଂଦିତ ହେବା ଫଳରେ, କୌଣସି ପ୍ରକାରର ଅଳଙ୍କରଣର ପ୍ରଚେଷ୍ଟା ନଥିଲେ ମଧ୍ୟ, ଏ ଗ୍ରନ୍ଥର ସରଳ ପଦ୍ୟ, ଉଦାର କାବ୍ୟରେ ପରିଣତ ହୋଇଯାଇଛି । ଗୋପବନ୍ଧୁ ହଜାରିବାଗ ଜେଲ୍‌ରେ ଥିଲାବେଳେହିଁ ଏହି କାବ୍ୟଗ୍ରନ୍ଥ ଯେତେବେଳେ ସାପ୍ତାହିକ 'ସମାଜ'ର ସ୍ତମ୍ଭାବଳିରେ ଆତ୍ମପ୍ରକାଶ କଲା, ସେତେବେଳେ ସମଗ୍ର ଓଡ଼ିଶା ଚମତ୍କୃତ ହୋଇ-ଉଠିଥିଲା । ଏବେ ଏହି ଗ୍ରନ୍ଥର ବହୁ ପଙ୍‌କ୍ତି ପ୍ରତ୍ୟେକ ଶିକ୍ଷିତ ଓଡ଼ିଆର ଚେତନାର ଅଂଶ କହିଲେ ଚଳେ । କି କାରଣରୁ 'ବନ୍ଦୀର ଆତ୍ମକଥା' ଓଡ଼ିଆ ଚିତ୍ତକୁ ଏପରି ଗଭୀର ଭାବରେ ସ୍ପର୍ଶ କରିଥାଏ, ତାହାର ଦୃଷ୍ଟାନ୍ତସ୍ୱରୂପ ଏଠାରେ କେତେକ ପଙ୍‌କ୍ତି ଉଦ୍ଧାର କରି ଦିଆଯାଉଛି –

''ପହଁଚିଛି ରେଳ ଜେନାପୁରେ ଆସି / ପରିଚିତ ମୋର ଜେନାପୁରବାସୀ ।
ଆସିଥିଲି ଥରେ ଦୁଇବର୍ଷ ତଳେ / ବୁଡ଼ିଥିଲା ଜେନାପୁର ଯେବେ ଜଳେ ।
କେତେ ଗ୍ରାମ, କେତେ ଘର, କେତେ ଧନ / ହୋଇଥିଲା ବନ୍ୟା-ବିତ୍‌ପାତେ ଉଚ୍ଛନ୍ନ ।
କେତେ ଗ୍ରାମ ଦାଣ୍ଡେ ଚାଲୁଥିଲା ସୁଅ / କେତେ ନୟନରୁ ବହୁଥିଲା ଲୁହ ।
କେତେ ନରନାରୀ; କେତେ ଗୋରୁଗାଈ / ମରୁଥିଲେ କଷ୍ଟେ ଆହାର ନପାଇ ।
ପଡ଼ିଗଲେ ମନେ ସେବେଳ ଘଟଣା / ହୃଦେ ଏବେ ହୁଏ ଦାରୁଣ ବେଦନା ।

× × × ×

ଛାଡ଼ିବାକୁ ଗାଡ଼ି ଦେଲାଣି ସଂକେତ / ବାଜେ ଶେଷ ଘଣ୍ଟା ଉଡ଼େ ନୀଳକେତ ।
ସୁବିଧା ଥିଲେ ମୁଁ ଓହ୍ଲାନ୍ତି ଏଠାରେ / ଦେଖିଯାନ୍ତି ଜେନାପୁର ଏବେ ବାରେ ।
ବୁଲି ବ୍ରାହ୍ମଣୀର ତୀର ଜନ-ପଦେ / ବିଦାୟ ନିଅନ୍ତି କହି ପଦେ ପଦେ ।
ଦେଖନ୍ତି କିପରି ଅଛନ୍ତି ମୋ ଭାଇ / ଦଇବୀ, ମାନୁଷୀ ଦାଉ ଧକ୍କା ଖାଇ ।
ବ୍ରାହ୍ମଣୀ ବାଲିରେ ସାନ୍ଧ୍ୟ ସମ୍ମିଳନେ / କହିଯାଇଥାନ୍ତି ଥିଲା ଯାହା ମନେ ।
ଚାଲିଲା ପରା ଏ ନିଦାରୁଣ ଗାଡ଼ି / ଜେନାପୁର ସତେ ଅଇଲି କି ଛାଡ଼ି ?''

ଗୋପବନ୍ଧୁଙ୍କ ଦ୍ୱାରା ହଜାରିବାଗ୍ ଜେଲ୍‌ରେ ଲିଖିତ ଅନ୍ୟ ପୁସ୍ତକଟି ହେଉଛି 'ଧର୍ମପଦ' । କୋଣାର୍କ ଦେଉଳ ନିର୍ମାଣରେ ଜଣେ ବାଳକ ସେଠାରେ ନିଯୁକ୍ତ ଥିବା ଶିଳ୍ପୀକୁଳର ସମ୍ମାନ ରକ୍ଷା ପାଇଁ ନିଜ ଜୀବନକୁ ବଳି ଦେଇଥିବାର କିଂବଦନ୍ତୀ ଓଡ଼ିଶାରେ ପ୍ରଚଳିତ ଅଛି । ସେହି ବାଳକକୁ ଗୋପବନ୍ଧୁ କାଳ୍ପନିକ ନାମ 'ଧର୍ମପଦ' ଦେଇ ଏହି

କିଂବଦନ୍ତୀକୁ କାବ୍ୟରୂପ ଦେଇଛନ୍ତି ଓ ସେହି ସୂତ୍ରରେ ଆଧୁନିକ ଓଡ଼ିଆମାନଙ୍କ ଆଗରେ ଜାତି, ଗୋଷ୍ଠୀ ଓ ଦେଶର କଲ୍ୟାଣ ପାଇଁ ବ୍ୟକ୍ତି ନିଜ ସ୍ୱାର୍ଥ ନଭାବି ଆପଣାକୁ ବୃହତ୍ତର ସ୍ୱାର୍ଥରେ ନିଶ୍ଚିହ୍ନ କରାଇଦେବାର ଔଚିତ୍ୟ ଠିଆକରାଇଛନ୍ତି ।

ଏହି ଦୁଇଟିଯାକ କାବ୍ୟ-ଗ୍ରନ୍ଥ – ବନ୍ଦୀର ଆତ୍ମକଥା ଓ ଧର୍ମପଦ, ଓଡ଼ିଶାରେ ଲୋକଗୀତ ପରି ଜନପ୍ରିୟ ହୋଇଉଠିଛନ୍ତି । ଶୈଳ୍ପିକ ଦୃଷ୍ଟିକୋଣରୁ ଦେଖିଲେ ଏ ଦୁଇଟି ଯେ ଖୁବ୍ ଉଚ୍ଚକୋଟିର, ତାହା କହିହେବନି; କିନ୍ତୁ ସାଧାରଣ ଓଡ଼ିଆ ପାଠକଙ୍କୁ ସେଗୁଡ଼ିକର ନୈତିକ ଶୁଦ୍ଧତା ଓ ଆଦର୍ଶର ମହନୀୟତା ମୁଗ୍ଧ କରିଥାଏ । ଗୋପବନ୍ଧୁଙ୍କ ଯୌବନର କବିତା ସବୁ ଏବେ ଏକତ୍ର ପ୍ରକାଶିତ ହୋଇଛି । ଯେଉଁ ଉଦାର, ମହାନ୍ ମାନବିକତାମୟ ଗୋପବନ୍ଧୁଙ୍କୁ ଆମେ ଜାଣୁ, ତରୁଣ ବୟସର ସେହି କବିତାଗୁଡ଼ିକରେ ମଧ୍ୟ ଆମେ ତାଙ୍କର ପ୍ରତିବିମ୍ବ ଦେଖିପାରୁ ।

**ଗୋପବନ୍ଧୁଙ୍କ ସହକର୍ମୀଗଣ : ପଣ୍ଡିତ ନୀଳକଣ୍ଠ ଦାସ (ଜନ୍ମ ୧୮୮୪) –**

ଉତ୍କଳ ଦେଶରେ ନୀଳକଣ୍ଠ ଦାସ କବି ଅପେକ୍ଷା ପଣ୍ଡିତ ଲୋକ ବୋଲି ଅଧିକ ପରିଚିତ ଓ ସମ୍ମାନିତ; କିନ୍ତୁ ସାହିତ୍ୟରେ ସେ ବଞ୍ଚିରହିବେ ବୋଧହୁଏ ପାଣ୍ଡିତ୍ୟଯୋଗୁଁ ନୁହେଁ; ବରଂ ସତ୍ୟବାଦୀ ସ୍କୁଲବେଳେ ସେ ଯେଉଁ କାବ୍ୟ-କବିତା ଲେଖିଥିଲେ, ତା'ରି ଯୋଗୁଁ । ସେତେବେଳେ ସେ ଇଂରେଜ କବି ଟେନିସନ୍‌ଙ୍କର 'ଇନକ୍‌ଆର୍ଡେନ୍' ଓ 'ପ୍ରିନ୍‌ସେସ୍'ର ସୁନ୍ଦର, ସୁପାଠ୍ୟ ଅନୁବାଦ କରିଥିଲେ; ଯାହା ପଢ଼ିଲେ ମୌଳିକ କାବ୍ୟ ପରି ଲାଗେ । ବସ୍ତୁତଃ ସେସବୁ ଅନୁବାଦ ନୁହେଁ, ଆଶ୍ରିତ ରଚନା । 'ଇନକ୍‌ଆର୍ଡେନ୍'ର ଅନୁବାଦ 'ଦାସ ନାୟକ'ର ଶୈଳୀ ମନୋରମ ଭାବରେ ଗ୍ରାମ୍ୟ ଓ ସରଳ; 'ପ୍ରିନ୍‌ସେସ୍'ର ଅନୁବାଦ ମୌଳିକ ସରଳତା ହରାଇ ହୋଇଉଠିଛି ଗୁରୁ-ଗମ୍ଭୀର ଓ ସ୍ଥାନେ ସ୍ଥାନେ ଦୁର୍ବୋଧ । ସମ୍ରାଟ୍ ଖାରବେଳଙ୍କ ଜୀବନଚରିତକୁ ଆଶ୍ରୟ କରି ଲିଖିତ 'ଖାରବେଳ' କାବ୍ୟରେ କବି ପ୍ରାଚୀନ-ଓଡ଼ିଆ ଛାନ୍ଦରୀତିକୁ ଆଧୁନିକ ଐତିହାସିକ ବିଷୟବସ୍ତୁ ବର୍ଣ୍ଣନାରେ ପ୍ରୟୋଗ କରିଛନ୍ତି; କିନ୍ତୁ ମୂଳରୁ ଶେଷ ପର୍ଯ୍ୟନ୍ତ କଠିନ ଶୈଳୀରେ ଲେଖାଥିବାରୁ ଏ ଗ୍ରନ୍ଥ ଉତ୍କଳରେ ଆଦୌ ଜନପ୍ରିୟ ହୋଇପାରିନାହିଁ; ମାତ୍ର ତାଙ୍କର ସୁବୋଧ, ସୁପାଠ୍ୟ କାବ୍ୟ 'କୋଣାର୍କେ'ହିଁ ତାଙ୍କର ଶ୍ରେଷ୍ଠ କୃତି । ଏହାର ତିନୋଟି ଅଂଶ ଅଛି । ମୂଳଗ୍ରନ୍ଥ 'ମାୟାଦେବୀ' କାବ୍ୟ । 'ରାମଚଣ୍ଡୀଠାରେ ରାତି' ଓ 'ରାମଚଣ୍ଡୀଠାରେ ସକାଳ' ଏହାର ଦୁଇଟି ପୂର୍ବଭାଷ ।

ସତ୍ୟବାଦୀ ସ୍କୁଲର ହେଡ଼ମାଷ୍ଟର ଥିବାବେଳେ ସେଦିନର ତରୁଣ କବି ଓ ଦେଶଭକ୍ତ ନୀଳକଣ୍ଠ ବିଦ୍ୟାଳୟର ଛାତ୍ରମାନଙ୍କୁ ନେଇ ଥରେ କୋଣାର୍କ ଯାତ୍ରାକଲେ । ଦୁର୍ଭାଗ୍ୟକୁ କୋଣାର୍କ ଦେଖି ଫେରୁ ଫେରୁ ଘୋର ବର୍ଷା ଆରମ୍ଭ ହେଲା । ଛାତ୍ର ଓ ଶିକ୍ଷକ ସୂର୍ଯ୍ୟମନ୍ଦିରର ତିନି ମାଇଲ୍ ଦୂରରେ ଥିବା ରାମଚଣ୍ଡୀ ମନ୍ଦିରରେ ଆଶ୍ରୟ ନେଲେ । କ୍ଳାନ୍ତ କିଶୋର-ଛାତ୍ରଗଣ ଅଚିରେ ନିଦ୍ରାଭିଭୂତ ହୋଇପଡ଼ନ୍ତେ, ସୁଧୀ କବି ଉନିଦ୍ର ରହି

ଗୌରବମୟ କୋଣାର୍କର ଉତ୍ଥାନ ଓ ପତନ ସହିତ ତାହାର ସ୍ରଷ୍ଟା ଓଡ଼ିଆ ଜାତିର ଉତ୍ଥାନ ଓ ପତନ କଥା ଭାବିବାକୁ ଲାଗିଲେ । ସେ କଳ୍ପନା କଲେ ଯେ; ପିଲାଏ ହୁଏତ ସଦ୍ୟ ଦେଖିଆସିଥିବା କୋଣାର୍କକୁହିଁ ସ୍ୱପ୍ନରେ ଦେଖୁଥିବେ । ସେହି ସ୍ୱପ୍ନକୁ କେନ୍ଦ୍ରକରି କିଶୋର-ଛାତ୍ରମାନଙ୍କର ଅବଚେତନ ରାଜ୍ୟରେ କବି ଓଡ଼ିଶାର ସମଗ୍ର ଇତିହାସର ପଟଚିତ୍ର ଖୋଲି ଖୋଲି ଦେଖାଇ ଚାଲିଲେ । ତାହାହିଁ 'ରାମଚଣ୍ଡୀଠାରେ ରାତି' ।

ରାତ୍ରି ପ୍ରଭାତ ହୁଅନ୍ତେ ନିର୍ମେଘ ନିର୍ମଳ ବ୍ୟୋମ ତଳେ ପିଲେ ଦେଖିଲେ ବର୍ଷାଧୌତ କୋଣାର୍କର ଉଦାର ସୁଷମା-ସମ୍ଭାର, ତେଣେ ଉତ୍ତାଳତରଙ୍ଗାକୁଳ ସିନ୍ଧୁ ଓ ସ୍ୱର୍ଣ୍ଣରେଣୁମୟ ବିସ୍ତୀର୍ଣ୍ଣ ବେଳାଭୂମି ଏବଂ ସେହି ସ୍ୱର୍ଣ୍ଣଭୂମିକୁ ସର୍ପିଳ ନୀଳରେଖାରେ ଚିତ୍ରିତ କରି ଚାଲିଥିବା ନଦୀବେଣୀ । ଶିକ୍ଷକ-କବି ପିଲାଙ୍କୁ ଏହି ସବୁ ଅପୂର୍ବ ସୁଷମା ଦେଖାଇ ବୁଝାଉ ବୁଝାଉ ଯାଇ ପହଞ୍ଚିଛନ୍ତି ଯୁବରାଜ ନରସିଂହ ଓ ସାମନ୍ତକନ୍ୟା ମାୟାଦେବୀଙ୍କ ପ୍ରଣୟ କାହାଣୀରେ; ଯେଉଁଠି ଅପୂର୍ବ କୀର୍ତ୍ତି କୋଣାର୍କର ବୀଜ ନିହିତ । ଏହି ହେଲା ଦ୍ୱିତୀୟ ପୂର୍ବ-ଭାଷ, 'ରାମଚଣ୍ଡୀଠାରେ ସକାଳ' । ଯାପରେ ପାଠକ ପ୍ରବେଶ କରୁଛି ମୁଖ୍ୟଗ୍ରନ୍ଥ 'ମାୟାଦେବୀ' କାବ୍ୟ ଐନ୍ଦ୍ରଜାଲିକ ରାଜ୍ୟରେ ।

କୋଣାର୍କ ବେଢ଼ା ଭିତରେ ଏକ ମାୟାଦେବୀ ମନ୍ଦିର ଅଛି । ବୁଦ୍ଧ-ଜନନୀ, ମାୟାଦେବୀ ବୋଲି ବୌଦ୍ଧ ଧର୍ମ-ସାହିତ୍ୟରେ ପରିଚିତ । ସୂର୍ଯ୍ୟମନ୍ଦିର କୋଣାର୍କ ବେଢ଼ାରେ ବୁଦ୍ଧ-ଜନନୀଙ୍କ ମନ୍ଦିର କିପରି ଠିଆହେଲା, ଏ ରହସ୍ୟର ଉଦ୍‌ଘାଟନ ଏପର୍ଯ୍ୟନ୍ତ ହୋଇନାହିଁ । ବରଂ ଏହି ମନ୍ଦିରର ଅବସ୍ଥିତିଯୋଗୁଁ ଅନେକ ବିଶ୍ୱାସ କରନ୍ତି ଯେ, ଏବର କୋଣାର୍କ ଦିନେ ଏକ ବୌଦ୍ଧପୀଠ ଥିଲା; କିନ୍ତୁ ଏହା ମଧ ଏପର୍ଯ୍ୟନ୍ତ ବିବଦମାନ । ତରୁଣ-କବି ନୀଳକଣ୍ଠ ଉତ୍କଳରେ ପ୍ରଚଳିତ କିଂବଦନ୍ତୀମାନଙ୍କରୁ ଏହି ରହସ୍ୟର ଏକ ସମ୍ଭାବ୍ୟ ଉତ୍ତରଦେବାକୁ ଯାଇଛନ୍ତି ତାଙ୍କର 'ମାୟାଦେବୀ' କାବ୍ୟରେ । ସେ ସେହି କାବ୍ୟରେ କହିଛନ୍ତି ଯେ, ସେ ଥରେ ଓଡ଼ିଶା ଗଡ଼ଜାତ ବୁଲିବା ଭିତରେ ଏକ ଭ୍ରାମ୍ୟମାଣ ବନ୍ଦୀଠାରୁ ନିମ୍ନଲିଖିତ କାହାଣୀଟି ଶୁଣିବାକୁ ପାଇଥିଲେ ।

ସେତେବେଳେ ଓଡ଼ିଶାରେ ସମ୍ରାଟ୍ ଅନଙ୍ଗଭୀମଦେବଙ୍କ ଶାସନ । ଆଟବିକ ଅଞ୍ଚଳରେ ଏକ ଦୁର୍ଦ୍ଦାନ୍ତ ଦସ୍ୟୁ ଓ ତା'ର ଦଳର ଅତ୍ୟାଚାର ଏପରି ଦୁର୍ବାର ହୋଇଉଠିଲା ଯେ, ସ୍ୱୟଂ ଯୁବରାଜ ନରସିଂହ ଦେବ ଦସ୍ୟୁ-ଦମନର ଦାୟିତ୍ୱ ନେଲେ । ଦସ୍ୟୁତାଡ଼ନର ବହୁ ଅଭିଯାନ ଭିତରେ, ଥରେ ଯୁବରାଜ ନରସିଂହ ଶିଶୁପାଳଗଡ଼ର ସାମନ୍ତ-ରାଜକନ୍ୟା ରୂପସୀ ମାୟାଦେବୀଙ୍କୁ ଭେଟନ୍ତି । ଦସ୍ୟୁ ଅତ୍ୟାଚାରରେ ଶିଶୁପାଳଗଡ଼ ରାଜା ସେତେବେଳକୁ ସର୍ବସ୍ୱାନ୍ତ ହୋଇସାରିଲେଣି; କିନ୍ତୁ ଭେଟ ମାତ୍ରେ ଉତ୍କଳ ସାମ୍ରାଜ୍ୟର ଭବିଷତ୍ ଉତ୍ତରାଧି-କାରୀ ଯୁବରାଜ ନରସିଂହ ଓ ଏକ ଦରିଦ୍ର ସାମନ୍ତର କନ୍ୟା ମାୟାଦେବୀଙ୍କ ଭିତରେ ଗଭୀର ପ୍ରଣୟ ଉପୁଜିଲା । ଦସ୍ୟୁତାଡ଼ନ ବ୍ୟପଦେଶରେ ବାରମ୍ବାର ଆସି ଗୋପନରେ ତରୁଣ ନରସିଂହ ମାୟାଦେବୀଙ୍କୁ ଭେଟିଲେ । ସେମାନଙ୍କ ଭିତରେ ବିବାହ ଏକପ୍ରକାର ନିଶ୍ଚିତ ଥିଲା; କିନ୍ତୁ ତେଣେ ପିତା ଅନଙ୍ଗଭୀମ, ପ୍ରସିଦ୍ଧ ସାହିତ୍ୟଦର୍ପଣକାର ଓ ସାନ୍ଧିବିଗ୍ରହିକ

ବିଶ୍ୱନାଥ ମହାପାତ୍ରଙ୍କ ଦୌତ୍ୟରେ ଯୁବରାଜଙ୍କର କାଶ୍ମୀର ରାଜକନ୍ୟା ସହିତ ବିବାହ ନିର୍ବନ୍ଧ କରିପକାଇଲେ । ଏକଥା ଲୋକରେ ପ୍ରଚାରିତ ହୁଅନ୍ତେ, ଭଗ୍ନହୃଦୟ ନରସିଂହ ଜୀର୍ଣ୍ଣ ଶିଶୁପାଳଗଡ଼ରେ ପ୍ରିୟତମା ମାୟାଦେବୀଙ୍କି ଭେଟି ସାଶ୍ରୁଲୋଚନରେ ବିପର୍ଯ୍ୟୟର ସମ୍ବାଦ ଦେଲେ; କିନ୍ତୁ ଉଦାରଚିତ୍ତା ଶିଶୁପାଳଗଡ଼ ରାଜକନ୍ୟା ଏଥିରେ ସାମାନ୍ୟତମ ଦୁଃଖ ବ୍ୟକ୍ତ ନକରି, ସମ୍ବାଦକୁ କେବଳ ସମର୍ଥନା ଜଣାଇଲେ ନାହିଁ, ଯୁବରାଜଙ୍କୁ ଅନୁରୋଧ କଲେ ଯେ; ସେ ଯେପରି ବିବାହ ପରେ ଭବିଷ୍ୟତ୍ ଯୁବରାଣୀଙ୍କୁ ଧରି ଶିଶୁପାଳଗଡ଼କୁ ବିଜେ କରନ୍ତି ଓ ତାଙ୍କୁ (ମାୟାଦେବୀଙ୍କୁ) ନେଇଯାନ୍ତି ବାରବାଟୀ ଦୁର୍ଗକୁ କାଶ୍ମୀର ଜେମାଙ୍କର ଦାସୀରୂପେ ।

ନରସିଂହ କାଶ୍ମୀର ଜେମାଙ୍କୁ ବିବାହ କଲେ; କିନ୍ତୁ ପରେ ପରେ ତାଙ୍କୁ ଯିବାକୁ ପଡ଼ିଲା ଉତ୍କଳ ସାମ୍ରାଜ୍ୟର ସାମୁଦ୍ରିକ ବନ୍ଦର ତାମ୍ରଲିପ୍ତିକୁ ଜଳଦସ୍ୟୁ ଅତ୍ୟାଚାରରୁ ମୁକ୍ତ କରିବାକୁ । ତାମ୍ରଲିପ୍ତି ଯିବାପୂର୍ବରୁ ନରସିଂହ ନବବିବାହିତା ପତ୍ନୀଙ୍କୁ କହିଗଲେ, ସେ ଯେପରି ଶିଶୁପାଳଗଡ଼ ଯାଇ ସେଠାରେ ମାୟାଦେବୀଙ୍କୁ ଭେଟନ୍ତି । କାଶ୍ମୀର ରାଜଜେମା ମାୟାଦେବୀଙ୍କୁ ଭେଟି ତାଙ୍କର ସୌନ୍ଦର୍ଯ୍ୟ ଓ ବ୍ୟବହାରରେ ମୁଗ୍ଧା ହେଲେ; କିନ୍ତୁ କାଶ୍ମୀର ରାଜଜେମା ମାୟାଦେବୀଙ୍କି ଆଦରରେ ଆଲିଙ୍ଗନ କଲାବେଳକୁ ସେ ବାହୁଯୁଗ୍ମ ଉପରେ ଟଳିପଡ଼ିଲେ ଓ ଦେଖୁ ଦେଖୁ ପ୍ରାଣତ୍ୟାଗ କଲେ । ମାୟାଦେବୀ ଆଗରୁ ଏକ ସଖୀକୁ କହିରଖିଥିଲେ ଯେ, ଯଦି ତାଙ୍କର ନିକଟରେ ମୃତ୍ୟୁ ଘଟେ, ତେବେ ତାଙ୍କର ଶବ ଦଗ୍ଧ ନ ହୋଇ ଏକ ମଞ୍ଜୁଷାରେ ଭର୍ତ୍ତିହେବ ଓ ତାଙ୍କ ପ୍ରାଣଦେବତାଙ୍କ ଆବାସ ବାରବାଟୀ ଦୁର୍ଗକୁ ନେଇ ସେଇଠାରେ ନଦୀଜଳରେ ତାକୁ ଭସାଇ ଦିଆଯିବ । ତାଙ୍କର ସେଇ ଇଚ୍ଛାନୁରୂପ ରେ କାମ ହେଲା । ନରସିଂହ ତାମ୍ରଲିପ୍ତିକୁ ଜଳଦସ୍ୟୁମୁକ୍ତ କରି ସମୁଦ୍ରପଥରେ ଚନ୍ଦ୍ରଭାଗା ମୁହାଣସ୍ଥ ସେକାଳର ଚାରିତ୍ର ବନ୍ଦର ବାଟେ ରାଜଧାନୀକୁ ଫେରିଲେ । କାଶ୍ମୀର ରାଜଜେମା ସେହିଠାରେ ବିଜୟୀ ସ୍ୱାମୀଙ୍କୁ ଭେଟିବା ଓ ସମର୍ଥନା ଜଣାଇବା ପାଇଁ ଉପସ୍ଥିତ ଥିଲେ । ସେଠି ଲୋକେ କୁହାବୋଲା ହେବାର ଶୁଣାଗଲା ଯେ, ନଦୀଜଳରେ ଏକ ମଞ୍ଜୁଷା ଭାସୁଛି ଓ ସେଥିରେ ଏକ ନାରୀର ମୃତଦେହ ରକ୍ଷିତ ଅଛି; ଯାହାର ସୌନ୍ଦର୍ଯ୍ୟ ମୃତ୍ୟୁରେ ମଧ୍ୟ ମ୍ଳାନ ହୋଇନାହିଁ । ନରସିଂହ ସ୍ୱୟଂ ଯାଇ ସେହି ମଞ୍ଜୁଷାକୁ ନଦୀରୁ କୂଳକୁ ଆଣିଲେ । ସେ ଦେଖିଲେ ଯେ, ମୃତାନାରୀ ସ୍ୱୟଂ ମାୟାଦେବୀ । ମାୟାଦେବୀଙ୍କ ମୃତଦେହ ମଞ୍ଜୁଷାରୁ ଉଠାନ୍ତେ ନରସିଂହଙ୍କର କିଛିକ୍ଷଣପାଇଁ ଏକ ଆଧିଭୌତିକ ଅନୁଭବ ଘଟିଲା; ଯେଉଁଥିରେ ମାୟାଦେବୀ ତାଙ୍କୁ କହିବାର ଜଣାଗଲା ଯେ, ସୂର୍ଯ୍ୟଦେବହିଁ ମର୍ତ୍ତ୍ୟରେ ନରସିଂହଦେବ ରୂପେ ଜନ୍ମଲାଭ କରିଛନ୍ତି । ସୂର୍ଯ୍ୟଙ୍କର ଦୁଇ ପତ୍ନୀ ସଂଜ୍ଞା ଓ ଛାୟା । ସେହି ଦୁଇଜଣ ମାୟା ଓ କାଶ୍ମୀର ରାଜକନ୍ୟା । ମାୟା ଏ ଜନ୍ମରେ ତାଙ୍କର ସଖୀ କାଶ୍ମୀର ରାଜକନ୍ୟାଙ୍କୁ ସ୍ୱାମୀକୁ ସଂପୂର୍ଣ୍ଣଭାବରେ ଭୋଗ କରିବାର ସୁଯୋଗ ଦେବା ଲକ୍ଷ୍ୟରେ ଛାଡ଼ି ଚାଲିଗଲେ । ପରେ ନରସିଂହ, ମାୟାଦେବୀଙ୍କ ସ୍ମୃତିରେ ମାୟାଦେବୀ ମନ୍ଦିର ଓ ସୂର୍ଯ୍ୟଦେବତାଙ୍କ ଉଦ୍ଦେଶ୍ୟରେ ଅପୂର୍ବ କୋଣାର୍କ ମନ୍ଦିର ତିଆକଲେ ।

ତରୁଣ ନୀଳକଣ୍ଠ ଭାରତ ଓ ଓଡ଼ିଶାର ଏହି ମଧ୍ୟଯୁଗର ସାମନ୍ତିକ ପରିପ୍ରେକ୍ଷିତରେ ଏକ ରାଜକୀୟ ପ୍ରଣୟ-କାହାଣୀକୁ ଆଶ୍ରୟ କରି ଓଡ଼ିଆରେ ଯେଉଁ କାବ୍ୟଟି ସୃଷ୍ଟି କରିଯାଇଛନ୍ତି, ତାହାର ସୁଷମା ଆଦିମ ବନାନୀକୁ ସ୍ମରଣ କରାଇଥାଏ । ଟେନିସନ୍‌ଙ୍କ 'ପ୍ରିନ୍‌ସେସ୍' ପରି ଏ କାବ୍ୟ ଭିତରେ ଅନୁପମ ସାଙ୍ଗୀତିକ-ମାଧୁର୍ଯ୍ୟମୟ ଗାଥା ଓ ଗୀତି ସବୁ ଖଞ୍ଜାଯାଇଛି ଏବଂ ଏହାର ବଳିଷ୍ଠ ବ୍ୟକ୍ତିତ୍ୱର ମୁଦ୍ରା ଅବିସ୍ମରଣୀୟ । କାବ୍ୟର ପଙ୍‌କ୍ତିଗୁଡ଼ିକ ବ୍ରାଉନିଙ୍ଗୀୟ ଶକ୍ତି ଓ ମିଲ୍‌ଟନୀୟ ଗମ୍ଭୀରତା ଘେନି ଏକ ପାର୍ବତ୍ୟ ପ୍ରପାତ ପରି ବହିଚାଲିଛନ୍ତି । ତରୁଣ କବି ନିଜସ୍ୱ ଉପମା ଓ ରୂପକ ବିଞ୍ଚିଚାଲିଛନ୍ତି ଏବଂ ଶୈଳୀ କେତେବେଳେ ନମନୀୟ, କେତେବେଳେ ବୀର୍ଯ୍ୟବାନ୍, କାହିଁ ଦୁର୍ବୋଧ, କାହିଁ ମନୋଜ୍ଞ, କେଉଁଠି ସରଳ ସୌନ୍ଦର୍ଯ୍ୟ ଘେନି ସ୍ପନ୍ଦିତ, କେଉଁଠି ଆଭିଜାତ୍ୟ-ଅଳଙ୍କାରଭୂଷିତ । ସବୁ ମିଶି ଏହି ଗ୍ରନ୍ଥ ଏକ ଅପୂର୍ବ ଓ ମହନୀୟ ସୃଷ୍ଟିରୂପେ ଠିଆହୋଇଛି, ଯଦିବା ଅତ୍ୟୁତ୍ସାହଜନିତ ଦୁର୍ବୋଧତା ଏହାର ଏକ ଅଙ୍ଗାଙ୍ଗୀ ଦୂଷଣରୂପେ ବିଦ୍ୟମାନ ।

ପଣ୍ଡିତ ନୀଳକଣ୍ଠ ଓଡ଼ିଆ ଗଦ୍ୟରେ ମଧ୍ୟ ଏକ ଦିଗ୍‌ଗଜ ରୂପେ ପରିଚିତ । ସତ୍ୟବାଦୀ ସ୍କୁଲବେଳେ ଲିଖିତ ଓ ପ୍ରକାଶିତ 'ଆର୍ଯ୍ୟଜୀବନ' ନିଜେଇ ନିଜର ଏକ ଶ୍ରେଣୀ ଯଦିବା ଏହା ଆର୍ଯ୍ୟ ନୁହେଁ, ହିନ୍ଦୁ ଜୀବନ-ଆଦର୍ଶ ବ୍ୟାଖ୍ୟା କରୁଥିବା କେତେଗୁଡ଼ିଏ ପ୍ରବନ୍ଧ ମାତ୍ର । ଲିଖନଭଙ୍ଗୀ ଗୁରୁଗମ୍ଭୀର ଓ ନିଃସନ୍ଦିଗ୍ଧ ବାଣୀମୟ । ସାହିତ୍ୟରାଜ୍ୟରେ ପଣ୍ଡିତଜୀ ଗତ ଚାଳିଶବର୍ଷ ଧରି ରାଧାନାଥୀ କାବ୍ୟଧାରାର ନିନ୍ଦା କରିଆସିଛନ୍ତି । ତାଙ୍କ ମତରେ ରାଧାନାଥ ଓଡ଼ିଆ ଭାଷାରେ ନିଜସ୍ୱ ଚରିତ୍ରକୁ ଭ୍ରଷ୍ଟ କରିଯାଇଛନ୍ତି । ସଂସ୍କୃତ ଓ ଚାଲ୍‌ଡ଼ିଆ ସଂସ୍କୃତିରେ ଗଭୀର ଅବଗ୍ରାହୀ ପଣ୍ଡିତ ନୀଳକଣ୍ଠ, ସୁଯୋଗ ପାଇଲାମାତ୍ରେ ଆହୁର୍‌ମାଜ୍‌ଦା, ଆସିରିଆ ଓ ଜରାଥୁଷ୍ଟ୍ରଙ୍କ କଥା କହିଆସୁଛନ୍ତି । ସେ ପୁଣି ବୈଷ୍ଣବଧର୍ମର ଏକ ଅତୋଷ୍ୟ ଶତ୍ରୁ ଓ ଭକ୍ତିତନ୍ତ୍ରଜର୍ଜର ବଙ୍ଗୀୟ ସଂସ୍କୃତିକୁ ପ୍ରକାଶ୍ୟ ନିନ୍ଦାବାଦ କରିଆସିଛନ୍ତି । ଚୈତନ୍ୟଙ୍କ ଯୋଗୁଁ ଓଡ଼ିଶାରେ ଏହି ସଂସ୍କୃତି ପ୍ରବେଶ ଲାଭକରି ଓଡ଼ିଶାର ଜାତୀୟ ଚରିତ୍ରକୁ ବ୍ୟଭିଚାରିତ କରିଛି ବୋଲି ତାଙ୍କର ଦୃଢ଼ ମତ ।

**ପଣ୍ଡିତ ଗୋଦାବରୀଶ ମିଶ୍ର** (୧୮୮୬-୧୯୫୬) –

ବିଂଶ ଶତାବ୍ଦୀର ପ୍ରଥମ ପାଦ ଥିଲା ନିବିଡ଼ ଓଡ଼ିଶୀ ଜାତୀୟତାର ଯୁଗ । ସେତେବେଳେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଦୁଇଟି ନାଟକ ପୁରୁଷୋତ୍ତମଦେବ ଓ ମୁକୁନ୍ଦଦେବ ସମଗ୍ର ଓଡ଼ିଶାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଆମେ ଏହି ଗ୍ରନ୍ଥର ଦଶମ ଅଧ୍ୟାୟ (ଓଡ଼ିଶାରେ ନାଟକ ଓ ରଙ୍ଗମଞ୍ଚ)ରେ ଏହି ବିଷୟ ଆଲୋଚନା କରିସାରିଛେ । ଗୋଦାବରୀଶଙ୍କର ଏହି ନାଟକ ଦୁଇଟି ଏବେ ଆଉ କାହିଁ ଅଭିନୀତ ହୁଅନ୍ତି ନାହିଁ; କ୍ୱଚିତ୍ ପଠିତ ମଧ୍ୟ; କିନ୍ତୁ ଓଡ଼ିଶାର ଐତିହାସିକ ଘଟଣା ଓ କିଂବଦନ୍ତୀକୁ ନେଇ ପଣ୍ଡିତ ଗୋଦାବରୀଶ ଯେଉଁ ଗାଥା-କବିତା ରଚନା କରିଯାଇଛନ୍ତି, ସେସବୁ ପ୍ରକୃତରେ ଅନନ୍ୟସାଧାରଣ ଭାବରେ ମନୋଜ୍ଞ

ଓ ସେଗୁଡ଼ିକହିଁ ସେମାନଙ୍କର ସ୍ରଷ୍ଟାଙ୍କୁ କବିର ଶାଶ୍ୱତ ଗୌରବ ଦେଇପାରିବେ । ଏହି ଗାଥା-କବିତାର ସଂଗ୍ରହ 'ଆଲେଖିକା'କୁ 'ସମରତରଙ୍ଗ' ବା 'ଚିଲିକା' ଇତ୍ୟାଦି ପରି ସମଗ୍ର ଓଡ଼ିଆ ସାହିତ୍ୟରେ ଏକ ବିଜୟସ୍ତମ୍ଭ ପରି ଧରାଯାଇପାରେ । ଫକିରମୋହନ ଗଦ୍ୟରେ ଯାହା କରିଗଲେ, ଗୋଦାବରୀଶ 'ଆଲେଖିକା'ରେ ଜନ-ମୁଖ-ଭାଷାକୁ ପଦ୍ୟରେ ସେହି ଗୌରବ ଦେଇଗଲେ । ପୁଣି ଆମେ ଜାତୀୟ କବିତା କହିଲେ ହାଣ, କାଟ, ମାର, ଉଠ, ଧାଁଅ ବୋଲି ବୁଝିବା ଏକ ମାରାତ୍ମକ ଭ୍ରମ । ଜାତୀୟ କାବ୍ୟକବିତା ସେହି, ଯେଉଁଥିରେ ଜାତିର ଚିତ୍ତଲୋକ ପ୍ରତିବିମ୍ବିତ ହୋଇଛି । ଉତ୍କଳ ପ୍ରକୃତି ଓ ଉତ୍କଳ ଇତିହାସକୁ କାବ୍ୟ-ଜଗତରେ ବରେଣ୍ୟ ଆସନ ଦେଇ ରାଧାନାଥ ଯଥାର୍ଥ ଜାତୀୟକବି ହେଲେ; କିନ୍ତୁ ଓଡ଼ିଆ ଜାତିର ବହିରଙ୍ଗରହିଁ ମୁଗ୍ଧ ବର୍ଣ୍ଣନା କରୁ କରୁ ରାଧାନାଥ-ଲେଖନୀ କ୍ଳାନ୍ତ ହୋଇପଡ଼ିଛି । ସେ ଓଡ଼ିଆ ଜାତିର ଆତ୍ମାରେ ପ୍ରବେଶ କରିପାରିନାହାନ୍ତି । 'ଆଲେଖିକା' ବା 'ମାମୁ' ବା 'ଛ'ମାଣ ଆଠଗୁଣ୍ଠ'ରେ ଆମେ ଓଡ଼ିଆର ଚେତନ-ଅବଚେତନ ମାନସ-ସ୍ତରରେ ସଞ୍ଚରଣ କରିବାର ସୁଯୋଗ ପାଉଁ । ସେହି ଭାବରେ 'ଆଲେଖିକା' କେବଳ କେତୋଟି ଗାଥା ବା କାହାଣୀ ନୁହେଁ, ଏହା ଓଡ଼ିଆ ଜାତିର ଚିତ୍ତଲୋକର ଚିତ୍ରଶାଳା ।

'ଆଲେଖିକା'ର ଦଶଟି ଗାଥା ଭିତରୁ ସବୁ ଦିଗରୁ ଦେଖିଲେ 'ଦୁଃଖିଧନ' ବୋଧହୁଏ ସର୍ବୋତ୍କୃଷ୍ଟ । ଏହାର 'ମେସେଜ୍' ବା ବାଣୀ ସର୍ବଦେଶ ଓ ସର୍ବଜାତି ପାଇଁ, ଏହାର ଅନ୍ତର୍ଦାହ ଜଗତର ସକଳ ଜନନୀଙ୍କର ପ୍ରାଣର ବିଳାପ । ଛତ୍ରଗଡ଼ର ଦଳାଇଏ ବୃଦ୍ଧ ବୟସରେ ପୁତ୍ରଟିଏ ପାଇଲେ; କିନ୍ତୁ ପୁଅ ବଡ଼ ହେବା ଆଗରୁ ସେ ଆଖି ବୁଜିଲେ । ଭେଣ୍ଡାପୁଅ 'ଦୁଃଖିଧନ' ଦେଶ ଓ ବଂଶର ମାନରକ୍ଷା ପାଇଁ ଯୁଦ୍ଧରେ ପ୍ରାଣ ଦେଲା ଛୋଟ ରାଜ୍ୟର ଅନ୍ନପୂର୍ଣ୍ଣାରୂପିଣୀ ଦଳେଇଆଣୀ ପୁଅ ପାଇ ମଧ୍ୟ ଆଣ୍ଠୁକୁଡ଼ୀ ହୋଇ ବଞ୍ଚିରହିଲେ । କିନ୍ତୁ —

''ଦୁଃଖିଧନ ବୁକୁ ରକତେ ଯେ ମାଟି / ରଙ୍ଗ ହୋଇଅଛି ଦିନେ
ସରଗୁଁ ବଡ଼ ସେ, ଦଇନେ ତହିଁ ଗୋ / ମଣ୍ଟେ କି ରଖିବ ଜଣେ ?''

ଏହି କୀର୍ତ୍ତିଭୂଷିତ ପୁତ୍ରରତ୍ନ ଯେତେବେଳେ ଦଳେଇଆଣୀଙ୍କ କୋଳକୁ ଆସିନଥିଲା, ବୃଦ୍ଧ, ନିଃସନ୍ତାନ ଦଳେଇଙ୍କର ସକଳ ବିଭବ ଭିତରେ ମାନସିକ ତୁଚ୍ଛ-ଭାବ, ମର୍ମସ୍ପର୍ଶୀ-ଭାବରେ ବର୍ଣ୍ଣିତ । ନିଃସନ୍ତାନତାର ଏପରି ମନୋଜ୍ଞ ବର୍ଣ୍ଣନା ବୋଧହୁଏ ସମଗ୍ର ଓଡ଼ିଆ ସାହିତ୍ୟରେ ଆଉ ନାହିଁ ।

''ଏତେ ବଇଭବେ ଦଳେଇଙ୍କ ମନେ / ସୁଖ ତ ନଥାଏ ତିଳେ
ଦଶଦିଗ ତାଙ୍କୁ ଅନ୍ଧାର ଦିଶେ ଲୋ / ତୁଚ୍ଛ ସବୁ ମହୀତଳେ ।
ସକଳ ସମ୍ପଦୁ ବଡ଼ ସମ୍ପଦ ସେ / ପୁନିଅଁ ଜହ୍ନରୁ ତୋରା
ଦରିଦ୍ର ପସରା ଅନ୍ଧ ଲଉଡ଼ି ଲୋ / ବୁଡ଼ନ୍ତା ଲୋକର ଭେଳା ।
ତାହିଁ ଯାହା ମୁହଁ ସଂସାର ଗଞ୍ଜଣା / ଦଣ୍ଡକେ ଯାଏ ପାସୋର
ସେହୁ ନାହିଁ, ଘରଶୋହା କରିବ ଲୋ / ଉଆସ ଦିଶେ ଅନ୍ଧାର ।

ଦାନ ଧର୍ମ ଯେତେ କରନ୍ତି ଦଳାଇ / ଧନକୁ ଚାହାନ୍ତି ନାହିଁ
ଘରଣୀ ତାଙ୍କର ବ୍ରତ ଉପାସେ ଲୋ / କଣ୍ଟାଟି ଗଲେଣି ହୋଇ । *

ପଣ୍ଡିତ ଗୋଦାବରୀଶଙ୍କର ଅନ୍ୟାନ୍ୟ ଛୋଟ କବିତା ସବୁ ଗ୍ରନ୍ଥାକାରରେ ପ୍ରକାଶିତ ହୋଇଛି । ସେସବୁ ମହତ୍‌ଭାବବର୍ଜିତ ଓ ସେଗୁଡ଼ିକର ଶୈଳୀ ଶିଳ୍ପ-ଶୂନ୍ୟ; କିନ୍ତୁ ବକ୍ତବ୍ୟର ସ୍ୱାଭାବିକତା ସେଗୁଡ଼ିକୁ ସୁପାଠ୍ୟ କରିଥାଏ । ପଣ୍ଡିତ ମିଶ୍ରଙ୍କର ଗଦ୍ୟ-ରଚନାର ପରିମାଣ ମଧ୍ୟ ବିପୁଳ । ଗଳ୍ପ, ଅନ୍ୟାଶ୍ରିତ ଉପନ୍ୟାସ ଓ ବହୁ ପ୍ରବନ୍ଧ ତା ଭିତରେ ଅଛି । ପ୍ରାଞ୍ଜଳତା ତାଙ୍କ ଗଦ୍ୟ-ରଚନାର ବିଶେଷତ୍ୱ । ତାଙ୍କର ଅସମାପ୍ତ ଆତ୍ମଚରିତ ତାଙ୍କ ମୃତ୍ୟୁ ପରେ ପ୍ରକାଶିତ ହୋଇ ୧୯୬୨ରେ ଜାତୀୟ ସାହିତ୍ୟ ଆକାଡେମୀ ପୁରସ୍କାରପ୍ରାପ୍ତ ହୋଇଛି ।

**ପଣ୍ଡିତ କୃପାସିନ୍ଧୁ ମିଶ୍ର –**

ସତ୍ୟବାଦୀ-ଗୋଷ୍ଠୀରେ ପଣ୍ଡିତ କୃପାସିନ୍ଧୁ ଥିଲେ ଐତିହାସିକ । ତାଙ୍କର ଅକାଳ ମୃତ୍ୟୁ ଉତ୍କଳର ଦୁର୍ଭାଗ୍ୟ । ସେ ଠିକ୍ ସେହି ସମୟରେ ଚାଲିଗଲେ, ଯେତେବେଳେ ତାଙ୍କର ଲେଖନୀ ପରିପକ୍ୱତା ଲାଭକରିଆସୁଥିଲା ଓ ଭୂୟୋଦର୍ଶନ ଏବଂ ପଠନ ଫଳରେ ତାଙ୍କଠାରୁ ମହତ୍ତର ଗ୍ରନ୍ଥସବୁ ଜାତି ଆଶା କରୁଥିଲା । ତାଙ୍କର ଗ୍ରନ୍ଥ 'କୋଣାର୍କ' ମନ୍ଦିର-କୋଣାର୍କ ପରି ଏକ ଗୌରବାବହ ସ୍ମୃତି-ସ୍ତମ୍ଭ । ତାଙ୍କର ଅପର ରଚନା ହେଉଛି 'ବାରବାଟୀ' ଓ 'ଉତ୍କଳ ଇତିହାସ' । ସୁଖପାଠ୍ୟ ଶୈଳୀ ଓ ଆଲୋଚନାର ପ୍ରାଞ୍ଜଳତା ଘେନି ଏଗୁଡ଼ିକ ଶୁଷ୍କ ଇତିହାସରୁ ସାହିତ୍ୟସ୍ତରକୁ ଉନ୍ନୀତ ହୋଇଯାଇଛନ୍ତି । ଉତ୍କୃଷ୍ଟ ଗଦ୍ୟ-ରଚନା ଭାବରେ ତେଣୁ କୃପାସିନ୍ଧୁଙ୍କ ଇତିହାସ ଗ୍ରନ୍ଥସବୁ ଯେକୌଣସି ଓଡ଼ିଆ ସାହିତ୍ୟର ଇତିହାସରେ ସମ୍ମାନାସ୍ପଦ ଆସନ ପାଇବାର କଥା ।

ସତ୍ୟବାଦୀ ସ୍କୁଲର ସାହିତ୍ୟିକ ଦାନ ଏତିକିରେ ଶେଷ । ସତ୍ୟବାଦୀ ସ୍କୁଲ ସେକାଳର ଉତ୍କଳ-ସମ୍ମିଳନୀ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲା । ଉତ୍କଳ ସମ୍ମିଳନୀର ମୁଖ୍ୟ ଦାବି ଓ ଆଦର୍ଶ ହେଲା ଓଡ଼ିଆ ଦେଶମିଶ୍ରଣ । ତେଣୁ ସତ୍ୟବାଦୀ ସ୍କୁଲର ରକ୍ଷକମାନେ ଉତ୍କଳର ଗୌରବରେ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କଲାଭଳି ସାହିତ୍ୟ ସୃଷ୍ଟିକରି ଚାଲିଥିଲେ । ସେମାନେ ତା' ସାଥେ ସାଥେ ଆଉ ଦୁଇଟି ଭାବଧାରାକୁ ମଧ୍ୟ ଭୁଲିଯାଇନଥିଲେ । ଆଧୁନିକ ଯୁଗରେ ବୈଦିକ ଆଦର୍ଶର ପୁନଃପ୍ରବର୍ତ୍ତନର ପରୀକ୍ଷା ସେମାନେ କରିଥିଲେ । ପୁଣି ସମକାଳୀନ ଭିକ୍ଟୋରୀୟ ଯୁଗର ଚିନ୍ତାଧାରାରେ ପ୍ରଭାବିତ ଏହି ଦଳର ରଚନାବଳିରେ ଆମେ ମଧ୍ୟ ପାଉ ବିଶୁଦ୍ଧ ଆନ୍ତର୍ଜାତିକତା ଓ ବିଶ୍ୱଭ୍ରାତୃଭାବ । ଏମାନଙ୍କର ଓଡ଼ିଆ ଜାତୀୟତା ଆଦୌ

---

* ଇଂରାଜୀ ସଂସ୍କରଣରେ 'ଆଲେଖିକା'ର କୌଣସି ଗାଥାକୁ ଇଂରାଜୀରେ ବହୁଶଃ ଅନୁବାଦ କରିବାର ବା ତାହା ସମ୍ପର୍କରେ ଅଧିକ ଲେଖିବାର ବାସନା ଥିଲା; କିନ୍ତୁ ଗ୍ରନ୍ଥ ଦୀର୍ଘ ନକରିବାକୁ ଉପରୁ ବାରମ୍ବାର ତାଗିଦା ଆସିବାରୁ ଲେଖକ ସେଥିରୁ କ୍ଷାନ୍ତ ହୋଇ ରହିଲା । ଓଡ଼ିଆ ସଂସ୍କରଣରେ ଆଲେଖିକା-ସଂପୃକ୍ତ ଆଲୋଚନା ତେଣୁ ସଂପୂର୍ଣ୍ଣ ନୂତନ ।

ସଂକୀର୍ଣ୍ଣ ନଥିଲା । ବିଶେଷକରି ଗୋପବନ୍ଧୁଙ୍କ ରଚନା ଅନେକ ସ୍ଥାନରେ ବିଶୁଦ୍ଧ ବିଶ୍ୱଜନୀନତା ବିଚ୍ଛୁରିତ କରୁଛି ।

ଏହି ସତ୍ୟବାଦୀ ସ୍କୁଲ ପରକୁ ଆମେ ବର୍ତ୍ତମାନ ସେହି ସମୟରେ ଆସି ପହଞ୍ଚିଲୁଣି, ଯେତେବେଳେ ସମଗ୍ର ଏହି ଉପମହାଦେଶ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଫଳରେ ଆକୁମାରୀ-ହିମାଚଳ ବାତ୍ୟା-ପ୍ରକମ୍ପିତ ବନାନୀ ପରି ଦୋଳିବାକୁ ଲାଗିଲା । ଗୋପବନ୍ଧୁ ଓ ତାଙ୍କର ସହକର୍ମୀଗଣ ଜାତୀୟ ଆନ୍ଦୋଳନରେ ଅବିଚାରରେ ଝାସ ଦେଲେ । ଗତ କୋଡ଼ିଏ ବର୍ଷଧରି ଯେଉଁ ସତ୍ୟବାଦୀ ସ୍କୁଲ ଓଡ଼ିଶା ଦେଶର ସାହିତ୍ୟ ଓ ସଂସ୍କୃତିର କେନ୍ଦ୍ର ହୋଇଉଠିଥିଲା ଏବଂ ଯାହା ମଧ୍ୟ ଓଡ଼ିଆ ସାହିତ୍ୟର ଦୀର୍ଘ ପରମ୍ପରାକୁ ଅକ୍ଷୁଣ୍ଣ ରଖି ପ୍ରଗତିଶୀଳ କରାଇଚାଲିଥିଲା, ତାହାକୁ ଭାଙ୍ଗିଦିଆଗଲା । ଫଳରେ ଉତ୍କଳର ସାହିତ୍ୟ ଓ ସଂସ୍କୃତି ରାଜ୍ୟରେ ଏକ ଅରାଜକତା ଆସି ପହଞ୍ଚିଲା । 'ଉତ୍କଳ ସାହିତ୍ୟ'ର ପ୍ରବୀଣ ଓ ନିପୁଣ ସମ୍ପାଦକ ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ' ମାଧ୍ୟମରେ ଅସହଯୋଗ ଆନ୍ଦୋଳନର ତୀବ୍ର ପ୍ରତିବାଦ ବରାବର କରିଚାଲିଥିଲେ ।

□□□

# ସପ୍ତଦଶ ଅଧ୍ୟାୟ

# ସମସାମୟିକ ଚିତ୍ର

**ସବୁଜଗଣ –**

ସତ୍ୟବାଦୀ ସ୍କୁଲ ଭାଙ୍ଗିଯିବା ପରେ ଓଡ଼ିଆ ଜାତିର ସଂସ୍କୃତି, ବିଶେଷକରି ଓଡ଼ିଆ ସାହିତ୍ୟ, ବହୁବର୍ଷ ଧରି ଅରାଜକ ଅବସ୍ଥାର ସମ୍ମୁଖୀନ ହେଲା । ଯେଉଁ ସ୍କୁଲ କୋଡ଼ିଏ ବର୍ଷକାଳ ଓଡ଼ିଆ ଜାତୀୟ ଜୀବନ, ସାହିତ୍ୟ ଓ ସଂସ୍କୃତିର କେନ୍ଦ୍ରପୀଠ ହୋଇଥିଲା, ଇଂରାଜୀ ପଢ଼ା ହେଉଥିବାର ଅପରାଧଯୋଗୁଁ ତାହା ବର୍ତ୍ତମାନ ଧରାଗଲା ଏକ 'ସଇତାନ' ଅନୁଷ୍ଠାନ ବୋଲି । ବିଦ୍ୟାପୀଠଟିର ଧୀମାନ୍ ଶିକ୍ଷକବର୍ଗ, ବର୍ତ୍ତମାନ ଚରଖା ପ୍ରଚାର ଓ ତିଳକ ସ୍ୱରାଜ୍ୟପାଣ୍ଠି ପାଇଁ ଅର୍ଥ ସଂଗ୍ରହ କରି ବୁଲିଲେ ଦେଶଯାକ । ସତ୍ୟବାଦୀ ସ୍କୁଲ ଉତ୍କଳ ଦେଶରେ ସଂସ୍କାର ଓ ନୂତନତାର ଦୁଃସାହସିକ ନେତୃତ୍ୱ ଦେଇ ମଧ୍ୟ, ଏ ଜାତିର ସାହିତ୍ୟିକ ଓ ସାଂସ୍କୃତିକ ପରମ୍ପରା – ଯାହା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଖାରବେଳ ଶିଳାଲିପିରେ ଆରମ୍ଭ ହୋଇ କ୍ରମବର୍ଦ୍ଧମାନ ସ୍ରୋତରେ, କଳ୍ପଲୋକର ନବ ନବ ଦେଶ ଦେଶାନ୍ତର ଦେଇ, ଆଧୁନିକ କାଳପର୍ଯ୍ୟନ୍ତ ନିରବଚ୍ଛିନ୍ନ ଧାରାରେ ବହିଆସିଥିଲା, ତାହାରହିଁ ବାହକ ଥିଲା । ଗାନ୍ଧି ଆନ୍ଦୋଳନର ପ୍ରବଳ ବାତ୍ୟା ଓ ବନ୍ୟା ସେହି ପରମ୍ପରାକୁ ଛିନ୍ନ-ବିଚ୍ଛିନ୍ନ କରିଦେଲା । ଉତ୍କଳୀୟ ପରମ୍ପରାର ଏପ୍ରକାର ହତ୍ୟା ଓ ଧ୍ୱଂସ ଓଡ଼ିଆ ଜାତିର ଚାରିଶତ-ବର୍ଷ-ବ୍ୟାପୀ ଚାରି ପ୍ରଦେଶରେ ଛିନ୍ନବିଚ୍ଛିନ୍ନ ଜୀବନ କାଳରେ ମଧ୍ୟ ଘଟିନଥିଲା । ଏହି ଐତିହ୍ୟ ହତ୍ୟାର ମାରାତ୍ମକତା ବଢ଼ିଗଲା ଏହି ହେତୁରୁ ଯେ ସତ୍ୟବାଦୀ ସ୍କୁଲର ଅପସାରଣ ପରେ ପରେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଦଳେ ତରୁଣ ଲେଖକ ଦେଖାଦେଲେ, ଯେଉଁମାନଙ୍କର ପ୍ରେରଣାର ଚେର ଓଡ଼ିଶା ମାଟିରୁ ରସ ସଂଗ୍ରହ ନକରି, କଲା ଯାଇ ବଙ୍ଗଳା ଭାଷା ଓ ସାହିତ୍ୟରୁ, ଯେଉଁ ବ୍ୟାଧି ବିରୁଦ୍ଧରେ ସମଗ୍ର ସତ୍ୟବାଦୀ-ପୀଠ ଓ ବିଶେଷକରି ପଣ୍ଡିତ ନୀଳକଣ୍ଠ ସେମାନଙ୍କର ପ୍ରତ୍ୟେକ କର୍ମ, ବଚନ ଓ ଲିଖନରେ ନିରାପୋଷ କ୍ରୋଧରେ ଲଢ଼ିଆସିଥିଲେ ।

ଏହି ତରୁଣଦଳର ନେତା ଥିଲେ ଅନ୍ନଦାଶଙ୍କର ରାୟ; ଯିଏ ଏକ ଧୀମାନ୍ ବିଦ୍ୟାର୍ଥୀ ଭାବରେ ଦେଶରେ ଆଗରୁ ପରିଚିତ ହୋଇସାରିଥିଲେ । ରେଭେନ୍‌ସା କଲେଜରେ ସମକାଳରେ ପଢୁଥିବା କେତେକ ସତୀର୍ଥଙ୍କୁ ଏକାଠି କରି ସେ ଏକ ଦଳ ଗଢ଼ିଲେ; ଯାହା ପରେ ଦେଶରେ 'ସବୁଜଦଳ' ବୋଲି ପରିଜ୍ଞାତ ହୋଇଛି । ଏମାନଙ୍କର ସମବେତ ସୃଷ୍ଟିକୁ ଲୋକେ 'ସବୁଜସାହିତ୍ୟ' ବୋଲି ମଧ୍ୟ କହନ୍ତି ।

କିନ୍ତୁ ଓଡ଼ିଆ ସାହିତ୍ୟର ଏକ ଇତିହାସରେ, ଏହି ସମଗ୍ର ଦଳ ନୁହେଁ, ଦଳର କେବଳ ତିନିଜଣ ବିଚ୍ାରିତ ହେବାର ଯୋଗ୍ୟ । ସେମାନେ ହେଉଛନ୍ତି ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ ଓ କାଳିନ୍ଦୀଚରଣ ପାଣିଗ୍ରାହୀ । ଏମାନଙ୍କ ଭିତରୁ ପୁଣି ଅନ୍ନଦାଶଙ୍କର ଆଉ ଓଡ଼ିଆ-ଲେଖକ ହୋଇ ନାହାନ୍ତି । ସେକାଳରେ ଆଇ.ସି.ଏସ୍. ପରୀକ୍ଷାରେ ଭାରତରେ ପ୍ରଥମ ହେବାର ଗୌରବ ପାଇଲା ପରେ ପରେ, ସେ ଓଡ଼ିଶା ଓ ଓଡ଼ିଆ ଭାଷାକୁ ଛାଡ଼ି ବଙ୍ଗଳାକୁ ଚାଲିଗଲେ । ତଥାପି ତରୁଣ ଅନ୍ନଦାଶଙ୍କର, ବଙ୍ଗଳାର ଆଶ୍ରୟ ନେବା ପୂର୍ବରୁ ଓଡ଼ିଆରେ ଯେତିକି ଲେଖିଥିଲେ, ସ୍ୱଳ୍ପତା ସତ୍ତ୍ୱେ ଏହି ତିନିବନ୍ଧୁଙ୍କ ଭିତରେ, ତାହାରହିଁ ଶୈଳ୍ପିକ ମୂଲ୍ୟ ସର୍ବୋଚ୍ଚ ବୋଲି କହିବାକୁ ହୁଏ ।

ଯେତେବେଳେ ରାୟ, ପାଣିଗ୍ରାହୀ ଓ ପଟ୍ଟନାୟକ ହାଇସ୍କୁଲ ଛାଡ଼ି କଲେଜରେ ପ୍ରବେଶ କଲେ, ସେତେବେଳେ ରବୀନ୍ଦ୍ରନାଥଙ୍କ କବି-ଖ୍ୟାତିର ମଧ୍ୟାହ୍ନ-କାଳ । ସେହି ଅସାଧାରଣ ପ୍ରତିଭାର ଦୁର୍ନିରୋଧ ମାୟା ଏମାନଙ୍କର ତରୁଣଚିତ୍ତକୁ ଯେ ଆବିଷ୍ଟ କରିପକାଇଥିଲା, ଏଥିରେ ବିସ୍ମିତ ହେବାର କିଛି ନାହିଁ; କିନ୍ତୁ ଦଳବଦ୍ଧଭାବରେ ଏହି ସବୁଜ ବନ୍ଧୁଗଣ ଯେ ନିଜ ଦେଶ, ସମାଜ ଓ ତା'ର ସାଂସ୍କୃତିକ ପରମ୍ପରାକୁ ସଂପୂର୍ଣ୍ଣ ବିସ୍ମୃତ ହୋଇଯାଇ, ସେହି ମୋହର ସ୍ରୋତରେ ଭାସିଗଲେ, ତାହା ସେମାନଙ୍କର ସୃଜନ ପ୍ରକ୍ରିୟାରେ, ଅନ୍ତତଃ ବୀର୍ଯ୍ୟର ପ୍ରମାଣ ଦେଉନାହିଁ । 'ସବୁଜ'ଦଳର 'ସବୁଜ' ନାମଟି ମଧ୍ୟ ବଙ୍ଗ-ଦେଶରୁ ଆହୃତ – ରବୀନ୍ଦ୍ରନାଥଙ୍କ ବନ୍ଧୁ ଓ ସହକର୍ମୀ ଏବଂ ବଙ୍ଗଳା-ଗଦ୍ୟର ଜନୈକ ବିରାଟ ପୁରୁଷ ପ୍ରମଥ ଚୌଧୁରୀଙ୍କ 'ସବୁଜ-ପତ୍ରିକା'ରୁ ।

ରବୀନ୍ଦ୍ରନାଥଙ୍କ ନିଜ ରଚନାବଳିରେ 'ସବୁଜ' ଶବ୍ଦ ମଧ୍ୟ ତରୁଣର ବିଦ୍ରୋହୀ ଭାବର ପ୍ରତୀକରୂପେ ବାରମ୍ବାର ବ୍ୟବହୃତ ହୋଇଛି । ଉଭୟ ରବୀନ୍ଦ୍ରନାଥ ଓ ପ୍ରମଥ ଚୌଧୁରୀଙ୍କ ନିକଟରେ ପୁଣି ଏହି 'ସବୁଜ' କେବଳ ଏକ ଶବ୍ଦମାତ୍ର ନଥିଲା; ତାହା ଥିଲା ସେମାନଙ୍କର ନିଜନିଜର ଜୀବନଦର୍ଶନ ଓ ଜାତିପ୍ରତି ଆଦର୍ଶର ନିଶାଣ । ଏହି ଶବ୍ଦକୁ ଏ ଦୁହେଁ ସ୍ୱ-ସ୍ୱ ଜୀବନର ଅଭିଜ୍ଞତାର ଶେଷ ଧାପରେ, ବାର୍ଦ୍ଧକ୍ୟରେହିଁ ବ୍ୟବହାର କରିଥିଲେ । ସେମାନେ ଦେଖି ଦେଖି ଏହି ସ୍ଥିର ଚିନ୍ତାକୁ ଆସିଥିଲେ ଯେ, ଭାରତବର୍ଷର ଜନସାଧାରଣର ଦୁଃଖନିର୍ଯ୍ୟାତନା ଏକ ବିଦେଶୀର ଶାସନ ଯୋଗୁଁ ସେତେ ନୁହେଁ, ଯେତେ ନିଜର ମାନସିକ ଜଡ଼ତା ଓ ଆଳସ୍ୟଯୋଗୁଁ । ଜାତିର ଏହି ମାନସିକ ବାର୍ଦ୍ଧକ୍ୟକୁ ନବୋତ୍ସାହରେ ଜାଗ୍ରତ କରିବାପାଇଁ ହିଁ କୈଶୋର ଓ ତାରୁଣ୍ୟର ପ୍ରତୀକ 'ସବୁଜ'କୁ ଦେଶ ଆଗରେ ସେମାନେ ପ୍ରତୀକ କରି ଠିଆକଲେ । ସେମାନଙ୍କଠାରେ 'ସବୁଜ' ଶବ୍ଦ ଥିଲା ସମଗ୍ର ଜାତିପ୍ରତି ଏକ ଆହ୍ୱାନ । ବିଶେଷକରି ସେମାନେ ଚାହିଁଥିଲେ ଦେଶର ତରୁଣସମାଜ, ଏ ଜାତିର ଐତିହ୍ୟରେ ଯାହା ଜୀବନହୀନ, ଅର୍ଥହୀନ, ଆନନ୍ଦହୀନ ଓ କୁତ୍ସିତ, ସେସବୁକୁ ପଦାଘାତ କରି ପ୍ରାକୃତିକ 'ସବୁଜ' ପରି ଉନ୍ମୁଖ ହୋଇ ରହିବେ ବୌଦ୍ଧିକ ଓ ଆତ୍ମିକ ସ୍ପନ୍ଦନ ପାଇଁ, ଏହି ମାଟି-ଧରାର ଦେହ ଓ ପ୍ରାଣରେ ଥିବା ଅନ୍ତର୍ନିହିତ ସୁଷମାର ଅବବୋଧ ପାଇଁ ।

କିନ୍ତୁ ଓଡ଼ିଶୀ 'ସବୁଜ'ଦଳ ନିକଟରେ ଏ ମହତ୍ ଆଦର୍ଶ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା । ବସ୍ତୁତଃ ଜୀବନର କୌଣସି ସ୍ଥିର ଲକ୍ଷ୍ୟ ବା ଦର୍ଶନର ଉପଲବ୍ଧି ପାଇଁ ସବୁଜ-ବନ୍ଧୁମାନଙ୍କର ବୟସ ବି ହୋଇନଥିଲା । ସେତେବେଳକୁ ସେମାନେ ନିଜନିଜର ଜୀବନ ଆରମ୍ଭ କରିଥିଲେ ବୋଲି ମଧ୍ୟ କୁହାଯିବନି । ଯେଉଁ ଜୀବନ-ଅଭିଜ୍ଞତାରୁହିଁ ଯାହା କିଛି ଅର୍ଥବନ୍ତ ସୃଷ୍ଟିର ଜନ୍ମ ହୋଇଥାଏ, ତାହା ସେମାନଙ୍କଠାରୁ ସେତେବେଳେ ବହୁ ଦୂରରେ ଥିଲା । ପରେ ଯେତେବେଳେ ସେମାନେ ପ୍ରକୃତରେ ଜୀବନ-ରଣ-କ୍ଷେତ୍ରରେ ପ୍ରବେଶ କଲେ, ଆମେ ଦେଖି ବିସ୍ମିତ ହେଲୁଁ ଯେ, ଅପସୃୟମାଣ କାଳଧାରାର ରାଜନୈତିକ ଓ ସାହିତ୍ୟିକ ରଙ୍ଗ ସହିତ, ସବୁଜଗଣ ନିଜର ତଥାକଥିତ ସବୁଜ ମାଟିକୁ ଅମ୍ଳାନ ବଦନରେ ବାରମ୍ବାର ବଦଳାଇନେବାକୁ ଆଦୌ ପଶ୍ଚାତ୍‌ପଦ ହୋଇନାହାନ୍ତି ।

ସବୁଜଦଳର କର୍ମ-ଜୀବନର ଆରମ୍ଭ ୧୯୨୦ରେ; କିନ୍ତୁ ଦଳ ୧୯୩୦ ପର୍ଯ୍ୟନ୍ତ ନିଜର ଖଣ୍ଡିଏ ହେଲେ ପୁସ୍ତକ ପ୍ରକାଶ କରିପାରିନଥିଲେ । ଦଶବର୍ଷଧରି 'ଉତ୍କଳ ସାହିତ୍ୟ' ମାସିକପତ୍ରର ପୃଷ୍ଠାମାନଙ୍କରେହିଁ ଆତ୍ମପ୍ରକାଶ କରି କରି ୧୯୩୦ବେଳକୁ ଦଳର ପାଞ୍ଚ-ଜଣଙ୍କର କବିତା ସଂଗୃହୀତ ହୋଇ ପୁସ୍ତକାକାରରେ ପ୍ରକାଶ ପାଇଲା; କିନ୍ତୁ ଦଳର ଏହି ସଂଘବଦ୍ଧ ସଂଗ୍ରହପୁସ୍ତକରେ ମଧ୍ୟ ଆଦର୍ଶ ଓ ବିଶ୍ୱାସ ବା ଜାତୀୟ-ଜୀବନ ବା ସାହିତ୍ୟସଂସାରରେ କଅଣ ଧ୍ୱଂସ କରି ଏ ଦଳ କଣ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ ସେ ସମ୍ପର୍କରେ ପଦେହେଲେ କଥା ନାହିଁ । ପୁଣି, 'ସବୁଜ-କବିତା' ନାମକ ଏହି ଚୟନର କବିତାଗୁଡ଼ିକ ଅ-ସମ-ଗୁଣବିଶିଷ୍ଟ । ସେଗୁଡ଼ିକର କୌଣସି ସମଗ୍ରତା ନାହିଁ ବା ସବୁ ଭିତର ଦେଇ କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ-ସାମାଜିକ ବାର୍ତ୍ତା ମଧ୍ୟ ନାହିଁ । ଉତ୍କଳଦେଶରେ ପୁସ୍ତକଟି ଆଦୌ ଜନପ୍ରିୟ ମଧ୍ୟ ହୋଇନାହିଁ, ଯେହେତୁ ୩୦-୪୦ ବର୍ଷ ବିତିଗଲେ ମଧ୍ୟ ବହିଟି ଦ୍ୱିତୀୟ ସଂସ୍କରଣ ଦେଖିପାରିନାହିଁ ।

ପୁଣି, ସବୁଜଦଳର ଚେର ଯେ ଓଡ଼ିଶୀ ଜାତୀୟ ଚେତନା ବା ସଂସ୍କୃତିରେ ଆଦୌ ନଥିଲା, ତାହାର ଦୃଢ଼ତମ ପ୍ରମାଣହିଁ ଦଳର ଏହି ପ୍ରତୀକ ସଂଗ୍ରହ । 'ମହାନଦୀ' ଏହି ନାମଟି ଥରେ ମାତ୍ର ଉଲ୍ଲିଖିତ ହେବା ଛଡ଼ା, ଏହି ସମଗ୍ର ସଂଗ୍ରହରେ ଛବିଳ ଉତ୍କଳର ବିଚିତ୍ର ପ୍ରକୃତିର ସାମାନ୍ୟତମ ସ୍ପର୍ଶ ମଧ୍ୟ କୌଣସିଠାରେ ନାହିଁ । ଏକ ସାଧାରଣ ଲଘୁ ଝାପ୍‌ସା ଅନିର୍ଦ୍ଦିଷ୍ଟ ରୀତିରେହିଁ ସବୁଜବନ୍ଧୁମାନେ କେବଳ ପରୀ, ମେଘ ବା ନବକିଶଳୟ ଇତ୍ୟାଦିର ବର୍ଣ୍ଣନା କରିଚାଲିଲେ । ଏପରିକି କାଳିନ୍ଦୀଚରଣଙ୍କ 'ପୁରୀମନ୍ଦିର' ମଧ୍ୟ ଏପରି ଅସ୍ପଷ୍ଟ ଯେ, ତାହା ଯେକୌଣସି ଧର୍ମର ଯେକୌଣସି ପୀଠକୁ ମଧ୍ୟ ଆରୋପିତ କରାଯାଇପାରିବ । ପୁଣି ଏହି ସଂଗ୍ରହରେ ଥିବା କାଳିନ୍ଦୀଚରଣଙ୍କର କବିତାଗୁଡ଼ିକ ଛନ୍ଦଦୋଷ-ଯୁକ୍ତ ହୋଇ ରହିଛନ୍ତି । ପୁସ୍ତକାକାରରେ ବାହାରିବା ପୂର୍ବରୁ ସେଗୁଡ଼ିକ ସମ୍ପୂର୍ଣ୍ଣତଃ ସଂଶୋଧିତ ହେବା ଉଚିତ ଥିଲା ।

**ଅନ୍ନଦାଶଙ୍କର –**

କିନ୍ତୁ ଏହି ଅସମ-ଗୁଣ-ଦୋଷ-ଦୁଷ୍ଟ କବିତା-ସଂଗ୍ରହଟିରେ ମଧ୍ୟ ଅନ୍ନଦାଶଙ୍କରଙ୍କ କବିତାଗୁଡ଼ିକ ଅକୁଣ୍ଠ ପ୍ରଶଂସା ଦାବି କରନ୍ତି । ଅଳ୍ପ ହେଲେହେଁ, ରାୟଙ୍କ କବିତାଗୁଡ଼ିକ ଭିତରେ ଆମେ ଏକ ସଂଘର୍ଷମଥିତ ତରୁଣପ୍ରାଣର ବେଦନା ସହିତ ଜୀବନ ପ୍ରତି ଏକ

ବାଣୀ ପାଉଛୁଁ ଯାହା କୋମଳ ସୌନ୍ଦର୍ଯ୍ୟାନୁଭୂତିମଣ୍ଡିତ । ସେଗୁଡ଼ିକ ମଧ୍ୟ, କବିଙ୍କର ସେତେବେଳର ବୟସକୁ ଚାହିଁଲେ, ସମ୍ପୂର୍ଣ୍ଣ ଛନ୍ଦ-ଦୋଷ-ଶୂନ୍ୟ । କାଳିନ୍ଦୀଚରଣ, ବୈକୁଣ୍ଠନାଥ, ହରିହର ଓ ଶରତ୍‌ଚନ୍ଦ୍ର ପ୍ରଭୃତି 'ସବୁଜକବିତା'ର ଅନ୍ୟାନ୍ୟ ଲେଖକମାନଙ୍କ ରଚ଼ନା-ସଂଗ୍ରହରେ ଆମେ ସେହି ସଂପୂର୍ଣ୍ଣତା ପାଉଁନା, ଯାହା ପାଉଁ ଅନ୍ନଦାଶଙ୍କରଙ୍କ ଅନ୍ତ ସୃଷ୍ଟି ଭିତରେ । ତାହା ଅନ୍ତତଃ ଏତିକି ପ୍ରମାଣ କରୁଛି ଯେ, ଏ କବିତାଗୁଡ଼ିକର ଉଦ୍ଭବ ହୋଇଛି, ଓଡ଼ିଶାମାଟିରୁ ନହେଲେ ମଧ୍ୟ କବିଙ୍କ ନିଜ ଚିତ୍ତଲୋକରୁ । ଏହି କବିତାଗୁଡ଼ିକରେ ତରୁଣ ଅନ୍ନଦାଶଙ୍କର ମୁକ୍ତକଣ୍ଠରେ ଓ ସ୍ପଷ୍ଟଭାବରେ ବନ୍ଦନା କରିଛନ୍ତି ଯୌବନ, ପ୍ରେମ ଓ ସୌନ୍ଦର୍ଯ୍ୟକୁ; ଯାହା ତରୁଣ ଜନ ପକ୍ଷରେ ସ୍ୱାଭାବିକ । ସେହି ସଙ୍ଗେ ସଙ୍ଗେ ଧୀମାନ୍ ତରୁଣ କବି ବାହାର ଜଗତର, ନିଜ ଜୀବନାଦର୍ଶର ଓ କର୍ତ୍ତବ୍ୟର ଆହ୍ୱାନ ଶୁଣିପାରି ଏ ଜଗତରେ ଯାହା ଜରଦ୍‌ଗବ, ଯାହା ଜୀର୍ଣ୍ଣ ଓ ନିରୋଧକ ସେସବୁକୁ ଧ୍ୱଂସ କରିବାକୁ ମଧ୍ୟ ଚାହିଁଛନ୍ତି ।

''ଯେତେ ପାପ, ଯେତେ ମିଥ୍ୟା / ଯେତେ ମୋହ, ଯେତେ ପ୍ରବଞ୍ଚନା
ଧର୍ମ ନାମେ, ନୀତି ନାମେ / ଜାତି ନାମେ ଯେତେ ଆବର୍ଜନା,
ବୈଷମ୍ୟର ଭେଦ ରେଖା / ଭଣ୍ଡତାର ଯେତେ ଆଚ୍ଛାଦନ
ଦୁର୍ବଳର ହାହାକାର / ପୀଡ଼ିତର ମରମବେଦନ,
ବିଧି ପଦେ ଧରିତ୍ରୀର / ଦୁଃଖ ଶୋକେ ଭରା ଅର୍ଘ୍ୟଥାଳି –
ନିଷ୍ଠୁର ନିର୍ମମ ମୁହିଁ / ନିର୍ବିକାରେ ସବୁ ଦେବି ଢାଳି ।'' (ପ୍ରଳୟ-ପ୍ରେରଣା)

କିନ୍ତୁ ତରୁଣ କବି ଏହି ଧ୍ୱଂସାଭିଯାନରୁ କ୍ଷାନ୍ତ ହୋଇଛନ୍ତି, ତାଙ୍କ ନିଜର ବୟସ-ଧର୍ମ, ନିଜର ବ୍ୟକ୍ତିତ୍ୱର, ପ୍ରେମ ଓ ସୌନ୍ଦର୍ଯ୍ୟ ପ୍ରତି ପ୍ରତିକ୍ରିୟାରୁ । ସେ ସେତେବେଳେ ସ୍ଥିର କରିଛନ୍ତି ଯେ, ସେ ବରଂ ଗଜଦନ୍ତମିନାରରେ ରହି ପ୍ରେୟସୀର ସାହଚ଼ର୍ଯ୍ୟ-ମାଦକତା ଭିତରେ ନିଜକୁ ହଜାଇଦେବେ, କେବଳ ସୃଜନ-ରସରେ ମଜ୍ଜିରହି ।

''ଶୁଣିବ ଯଦି ଶୁଣ ଗୋ ରାଣୀ/ ସେ ନୁହେଁ ମୋର ମରମବାଣୀ/ସେ ନୁହେଁ ମନକଥା ମୋ,
ଯେ ଗୀତ ଦେଲି ସେଦିନ ଗାଇ/ ସେ ଗୀତେ ମୋର ହୃଦୟ ନାହିଁ/
ନାହିଁ ସେ ଗୀତେ ବ୍ୟଥା ଗୋ ।

× × × ×

କହୁଛି ସତ ଶୁଣ ଗୋ ମିତ / ଧ୍ୱଂସେ ମୋର ମନ ନାହିଁ ତ / ସେ ନୁହେଁ ମୋର ବ୍ୟସନ,
ପ୍ରଳୟ ଧୂମକେତୁ ମୁଁ ନୁହେଁ / ନୁହଇ ଭୂମିକମ୍ପ ମୁଁ ନୁହେଁ, / ସୃଷ୍ଟି ସ୍ଥିତି ନାଶନ ।

× × × ×

ସୃଜନଆଶୀ ସୃଜନକାମୀ / ଭାଳେ ମୁଁ ବସି ଦିବସଯାମୀ / କି ରୂପ ଆଜି ସୃଜିବି ?
ନବଜଗତେ ମୋ ମନ ଲୋଭା/ସୃଜିବି ନିତି କି ନବ ଶୋଭା ? / କି ସୁଖ ଦେଇ ମୁଁ ଯିବି ?

× × × ×

ଯିବି ପଳାଇ ଦୂରେ ସୁଦୂରେ / ସ୍ୱପନଲୋକେ ଗୋପନ ପୁରେ / ଗ୍ରହତାରକା ଏଡ଼ାଇ,

ଯଉବନର ଝରଣାକୂଳେ / ମଳୟ ଯହିଁ ନିୟତ ବୁଲେ / କୁସୁମକେତୁ ଉଡ଼ାଇ ।''

ଶେଷରେ ତରୁଣ କବି ଜୀବନର ଆହ୍ୱାନ ଶୁଣି ଓ ଜୀବନସଂଗ୍ରାମରେ ଝାସଦେବାକୁ ସ୍ଥିରକରି, 'କମଳବିଳାସୀର ବିଦାୟ' କବିତାରେ, ତାଙ୍କର କବିତାପ୍ରେୟସୀକୁ ଚମତ୍‌କାର ବାଣୀରେ ବିଦାୟ ମାଗିଛନ୍ତି ।

''ନିଷ୍ଠୁର ବାସ୍ତବ ରଣେ ଆସିଛି ଆହ୍ୱାନ / ଥାଅ ମୁଗ୍‌ଧା ପ୍ରଣୟିନୀ, ସ୍ୱପ୍ନାଳସା ବାଣୀ
କମଳବିଳାସୀ କବି ମାଗଇ ମେଲାଣି / ଆଜି ମୁଁ ଭୁଲିବି ତୋତେ, ଢାଳିଦେବି ପ୍ରାଣ ।
ଶତସ୍ୱରେ ଡାକେ ବିଶ୍ୱ, ଡାକେ ଗ୍ରହତାରା / ଡାକେ ମୋତେ ଅନନ୍ତ ଜଳଧି କଳରୋଳ,
କେମନ୍ତେ ରହିବି କହ, ସ୍ନେହର ଏ କାରାକକ୍ଷେ, / ଅଳସ ସ୍ୱପନ ବକ୍ଷେ ହୋଇ ଭୋଳ?''

ଏହି କବିତା, 'କମଳବିଳାସୀର ବିଦାୟ', ସମଗ୍ର ଓଡ଼ିଆ ସାହିତ୍ୟରେ ଅସପତ୍ନ-କୀର୍ତ୍ତି-ମଣ୍ଡିତ । ଯୌବନର ସନ୍ଧିକାଳରେ ମନୁଷ୍ୟ ଚିତ୍ତ ଯେଉଁ ସହସ୍ର ମାନସିକ ସଂଘର୍ଷରେ ମଥିତ ହୁଏ, ଏ କବିତା କେବଳ ତାହାର ଚିତ୍ର ନୁହେଁ, ସ୍ୱୟଂ ଅନ୍ନଦାଶଙ୍କର ଓଡ଼ିଆ ଓ ଓଡ଼ିଶାକୁ ଛାଡ଼ି ଯେ ବଙ୍ଗ ଓ ବଙ୍ଗଳାର ଆଶ୍ରୟ ଲୋଡ଼ିଲେ, ସେ ବିଦାୟର ମଧ୍ୟ ଅସୁଖକର ପ୍ରତୀକ ।

ଅନ୍ନଦାଶଙ୍କରଙ୍କ ସେହି ତରୁଣବୟସର କବିତାଗୁଡ଼ିକର ବହୁ ପଙ୍‌କ୍ତି; ଯଥା –

''ବସନ୍ତର ଚମ୍ପାସମ / ତରୁଣୀ ଯେବେ ଫୁଟିଲା
ସୌରଭର ସୁରା ତାହାର / ଦିଗ୍‌ବିଦିଗେ ଛୁଟିଲା ।'' ବା
''ଆହା ଯଉବନ ଥରେ ଗଲେ / ଆଉ ଆସେନା
ବୃଥା ବିଧୁର ପରାଣ ପୁରେ / ଝୁରେ ବାସନା ।''

ଇତ୍ୟାଦି, ବର୍ତ୍ତମାନ ସାଧାରଣ ଶିକ୍ଷିତ ଓଡ଼ିଆର ଓଷ୍ଠୋଚ୍ଚାରିତ ହୋଇଥାଏ । ସଂଖ୍ୟାରେ ଅଳ୍ପ ହେଲେହେଁ, ଶିଳ୍ପ-ସୁଷମାଦିଗରୁ ବିଚାର କଲେ, ଅନ୍ନଦାଶଙ୍କରଙ୍କର କବିତାଗୁଡ଼ିକ ସମଗ୍ର ଓଡ଼ିଆ ସାହିତ୍ୟରେ ଏକ ଏକ ନିଧି । ତାଙ୍କର ସବୁଜ ବନ୍ଧୁମାନଙ୍କର ରଚନା କେବଳ ନୁହେଁ, ଅନ୍ୟ ଅନେକଙ୍କର ରଚନାଠାରୁ ଅନ୍ନଦାଶଙ୍କରଙ୍କ ରଚନାର ବୈଶିଷ୍ଟ୍ୟ ଏହି ଯେ, ସେସବୁରେ ଆମେ ପାଉଁ ତରୁଣ-ପ୍ରାଣର ସ୍ୱାଭାବିକ ଓ ଜୀବନ୍ତ ବୌଦ୍ଧିକ ଅସ୍ଥିରତା, ଅନିଶ୍ଚିତତା ଓ ଉତ୍ତେଜନା ଏବଂ ପାଉଁ ଶେଷରେ ସେସବୁର ଜୀବନ ସହିତ ଏକ ଆପୋଷ ମୀମାଂସା; ଯାହା କେବଳ ଧୀମାନ୍ ବ୍ୟକ୍ତିମାନେହିଁ ଶାଳୀନ ଭାବରେ କରିଜାଣନ୍ତି । ତରୁଣ ଅନ୍ନଦାଶଙ୍କର ଅଳ୍ପ ଯାହା ଓଡ଼ିଆ ଭାଷାରେ ଲେଖିଯାଇଥିଲେ, ତାହାର ପ୍ରତ୍ୟେକ ପଙ୍‌କ୍ତିରେ ବୌଦ୍ଧିକ ଓ ସୌଷମିକ ଗୁଣ ପରିସ୍ଫୁଟ ରହିଛି ଓ ସେସବୁ ଧରିରଖିଛନ୍ତି ଏକ ତରୁଣ କବି-ଚିତ୍ତର ଇତିହାସ ଏବଂ ଓଡ଼ିଶାର ଯୁଗଯୁଗର ତରୁଣ ସଂପ୍ରଦାୟ ପ୍ରତି କିଛି ଅର୍ଥପୂର୍ଣ୍ଣ ବାଣୀ । *

**ବୈକୁଣ୍ଠନାଥ –**

କେବଳ 'ସବୁଜ କବିତା'ରେ ପ୍ରକାଶ ପାଇଥିବା କବିତାଗୁଡ଼ିକ ନୁହେଁ, ଏହି ବେଳରେ ରଚିତ ବୈକୁଣ୍ଠନାଥଙ୍କର ଅନ୍ୟ ଅନେକ କବିତା, ସଂପୂର୍ଣ୍ଣ ଛନ୍ଦଦୋଷଶୂନ୍ୟ ଥିବା ଛଡ଼ା,

* ଇଚ୍ଛାସତ୍ତ୍ୱେ ଇଂରାଜୀ ଗ୍ରନ୍ଥରେ ଅନ୍ନଦାଶଙ୍କରଙ୍କ କବିତାର କୌଣସି ଅଂଶ ଉଦ୍ଧୃତ ହୋଇପାରିନଥିଲା, ଗ୍ରନ୍ଥ ଦୀର୍ଘ ହୋଇଯିବା ଆଶଙ୍କାରେ ।

ସେମାନଙ୍କର ସାବଲୀଳ ପ୍ରକାଶ ଓ ଶବ୍ଦଯୋଜନାର ତାରଲ୍ୟ ଯେକୌଣସି କବିକୁ ମର୍ଯ୍ୟାଦା ଦେଇପାରିବ । ସେହି ତରୁଣବୟସରେ ବୈକୁଣ୍ଠନାଥଙ୍କ କବିତାରେ ଏପରି ଏକ ଉଷ୍ଣତା ଓ ସାଙ୍ଗୀତିକତା ଦେଖାଦେଇଥିଲା, ଯାହା ସ୍ମରଣ କରାଇ ଦେଉଥିଲା ଇଂରେଜ କବି ସେଲୀଙ୍କୁ; କିନ୍ତୁ ଦୁଃଖର କଥା ଯେ, ସେ ଅଗ୍ନିକଣା, ସେ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ଅତି ଶୀଘ୍ର ଉଭେଇଗଲା ଓ ରଖିଗଲା ଗଦାଗଦା 'ଡଗ୍‌ରେଲ୍', ବାଜେ କବିତା । ତଥାକଥିତ ସାମୂହିକ 'ସବୁଜ' କବିତା ଭିତରେ ପୁଣି ତାଙ୍କରି ରଚନା ସବୁଠାରୁ ଅସ୍ପଷ୍ଟ । ସାହିତ୍ୟରେ ଯାହା ଶ୍ରେଷ୍ଠ କବିତା ବୋଲି ଧରାଯାଇଥାଏ, ସେଥିରେ ଆମେ ଏକାଧାରରେ ବୁଦ୍ଧି ଓ ହୃଦୟାବେଗର ଏକ ରହସ୍ୟମୟ ସମନ୍ୱୟ ଦେଖୁ । ବୈକୁଣ୍ଠନାଥଙ୍କ କବିତାରେ ତାହା ଘଟିପାରିନାହିଁ । ତାଙ୍କର ତରୁଣ ବୟସର କବିତାଗୁଡ଼ିକ ତେଣୁ ପଢ଼ିବାକୁ ବା ଶୁଣିବାକୁ ଭଲଲାଗେ; କିନ୍ତୁ ତାର ମେସେଜ୍ ବା ବାଣୀ କ'ଣ ତାହା ସହଜରେ ବୁଝାପଡ଼େନାହିଁ । ତାଙ୍କ ବନ୍ଧୁ ଅନ୍ନଦାଶଙ୍କରଙ୍କ ରଚନାରେ ଆମେ ଚିନ୍ତାର ଯେଉଁ ପରିଚ୍ଛନ୍ନତା ଓ ସଂଘବଦ୍ଧତା ଦେଖିବାକୁ ପାଉଁ, ବୈକୁଣ୍ଠନାଥଙ୍କ କବିତାରେ ତା ମିଳେନା ।

ପରେ ଅବଶ୍ୟ ଉଭୟ ବୈକୁଣ୍ଠନାଥ ଓ କାଳିନ୍ଦୀଚରଣ ସେମାନଙ୍କର ସ୍ୱ-ସ୍ୱ ରଚନା-ବଳିକୁ ବୌଦ୍ଧିକ ମର୍ଯ୍ୟାଦା ଦେବାକୁ ଚେଷ୍ଟାକରିଛନ୍ତି; କିନ୍ତୁ ତା ଫଳରେ କବିତା ହୋଇ-ଉଠିଛି କେବଳ ଶସ୍ତା ଓ ଦୁର୍ବଳ ପ୍ରୋପାଗଣ୍ଡା ମାତ୍ର । ମଧ୍ୟବୟସରେ ବୈକୁଣ୍ଠନାଥ ଏକ ସନ୍ତାନ ହରାଇଲେ ଏବଂ ତଜ୍ଜନିତ ପଞ୍ଜରଭେଦୀ ଅନ୍ତର୍ଦାହକୁ ସେ ପ୍ରକାଶ କଲେ ଏକ ସନେଟ୍ ପର୍ଯ୍ୟାୟରେ । ସଂଖ୍ୟାରେ ଚାଳିଶଟି ମାତ୍ର ହେଲେହେଁ 'ମୃତ୍ତିକାଦର୍ଶନ' ନାମକ ଏହି ସନେଟ୍‌ପର୍ଯ୍ୟାୟ ହୁଏତ ହେବ ବୈକୁଣ୍ଠନାଥଙ୍କର ଶ୍ରେଷ୍ଠ କବିକୃତି । ତେବେ କବିଙ୍କ ଦୁଃଖର ତୀବ୍ରତା ଆହୁରି ଅଧିକ ପରିସ୍ଫୁଟ ହୋଇଥାନ୍ତା ଏହି ସନେଟ୍ ଗୁଡ଼ିକରେ, ଯଦି କବି ନିଜର କ୍ରମ-କ୍ଷିପ୍ତ ଚିନ୍ତାରାଜିକୁ ଓ କ୍ରମ-ବର୍ଦ୍ଧମାନ ବିଷାଦକୁ ଅଧିକ ଶୃଙ୍ଖଳିତ କରିଥାନ୍ତେ । ସେ ଯାହାହେଉ, ବୈକୁଣ୍ଠନାଥଙ୍କର ଏହି 'ମୃତ୍ତିକାଦର୍ଶନ' ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟସାଧାରଣ । ଏକ ସାଧାରଣ ମାନବିକ ଦୁଃଖ ଏହି 'ମୃତ୍ତିକାଦର୍ଶନ'ରେ ଜୀବନ-ଚିନ୍ତାର ସ୍ତରକୁ ଉଠିଯାଇଛି; ଯଦିବା ସେ ଜୀବନ-ଚିନ୍ତା ବାଇବେଲ୍‌ର ଏକ୍ଲିସ-ଆଷ୍ଟିସ୍ ଗ୍ରନ୍ଥ ବା ଭକ୍ତଚରଣଙ୍କ ମନବୋଧ ଚଉତିଶା ପରି ଶସ୍ତା ନୈରାଶ୍ୟ ଘେନି, ସମଶ୍ରେଣୀର ହେଲେ ମଧ୍ୟ, ଶିଳ୍ପ ଦିଗରୁ ଦେଖିଲେ, 'ମୃତ୍ତିକାଦର୍ଶନ' ଉଭୟଠାରୁ ନିମ୍ନ-ସ୍ତରର; କିନ୍ତୁ ଗଭୀର ଦୁଃଖାନୁଭୂତିଯୋଗୁଁ କବି ଯେତେବେଳେ ସତ୍ୟର ଆଲୋକ ପାଇଁ ମାନବିକ ମନସ୍ତତ୍ତ୍ୱର ସକଳ ମୁଖା ଖୋଲିଦେଇ ନିରାଟ ବାସ୍ତବତାକୁ ଦେଖିବାକୁ ଚାହିଁଛନ୍ତି, ସେତେବେଳେ କବିଙ୍କ ଆତ୍ମବିଶ୍ଳେଷଣକୁ ଆମ୍ଭେମାନେ ପ୍ରଶଂସା ନକରି ରହିପାରୁନାହିଁ ।

''ମାତା ଜନ୍ମଦାତ୍ରୀ, ମଣୁ ସବୁଠୁ ଅଭାଗୀ ? / ହୋଇକିପାରିବୁ ଚିରସଂସାରବିରାଗୀ?
କାଲି କାଲି ମାୟା ପୁଣି କରିବ ତ ଗ୍ରାସ/ଭୁଲିବୁ ସନ୍ତାନ-ଶୋକ, ମୃତ୍ୟୁ-କ୍ଷତ-ପ୍ରାସ ।
ରଚିବୁ ତୁ ଦେହେ ମାୟା, ଯାହା ଅଛି ବାକି/ନବୀନ ସୃଷ୍ଟିରେ ପୁଣି ଲଗାଇବୁ ଆଖି ।

କେତେ କେଶ-ପ୍ରସାଧନ, ସିନ୍ଦୂରଧାରଣ / ବହୁବିଧ ଅଙ୍ଗରାଗ ହେବ ପ୍ରୟୋଜନ ।
ପାଣ୍ଡୁର ଅଧର ପୁଣି କରିବୁ ରକ୍ତିମ / ବିଲୋଳ ବାସନା ତେଜେ ନୟନ ବଂକିମ ।
ଲୁଚାଇବୁ କାଳ କ୍ଷୟ ଯାହା ଶୁକ୍ଳ କେଶ/ଯୌବନେ ଯେସନେ ପୁଣି ମୋହ-ସମାବେଶ !
ଏ ତ ଶୂନ୍ୟେ ମେଘ-ଲୀଳା, ହସ ଉଚ୍ଚେ ହସ,/
ତୁଚ୍ଛ ସବୁ, ତୁଚ୍ଛ ପ୍ରୀତି-ସୌନ୍ଦର୍ଯ୍ୟ-ଆଦର୍ଶ !''

କି ସ୍ୱାଭାବିକ ରୀତିରେ ମଧ ଶୋକାୟମାନ କବି ଶେଷ ଆଶ୍ରୟରୂପେ ସେହି ଶୋକରେହିଁ ବୁଡ଼ିରହିବାକୁ ଚାହିଁଛନ୍ତି –

''ଯୁଗେ ଯୁଗେ ନର-ଶିଶୁ ଅନ୍ଧକାର ଚାହିଁ / ତୁଚ୍ଛକରି ଆପଣାର ବିଜ୍ଞାନ ବଢ଼ାଇ ।
ପୁଚ୍ଛିଅଛି ଜୀବନର ଗୁପତ ରହସ୍ୟ / ଗାଇଛି ବିଫଳେ କେତେ ଆଲୋକର ଯଶ ।
ମାତର ରହସ୍ୟମୟୀ ମୌନ, ମୌନତର / କିଛି ମିଳିନି ବ୍ୟାକୁଳ ପ୍ରଶ୍ନର ଉତ୍ତର ।
ମୃତ୍ୟୁ ଅନ୍ଧକାର ଜୀବୀ-ଶେଷ-ପରିଣତି, / ଯୁଗେ ଯୁଗେ ଅନ୍ଧକାର ଢାଳିଛି ପ୍ରଣତି ।
ସକଳ ସଂଗ୍ରାମ ଶେଷେ ଗୌରବ ନିର୍ବାଣେ/ଆଚ୍ଛାଦନ କରେ ଅନ୍ତେ ଏ ସୃଷ୍ଟି ପରାଣେ
ପରମ ଜନନୀ ସମ ଢାଳଇ ଆଶ୍ୱାସ / ସବୁ ସତ୍ୟ ସନାତନ ଅଶ୍ରୁକ୍ଷତ ପ୍ରାସ ।
ସେ ସତ୍ୟ ସାନ୍ନିଧ ଲଭି ପ୍ରୀତି-ପ୍ରଦ-ଶୋକ/ଭୁଲଇଁ ଦର୍ଶନ, ତର୍କ, ଛଳନା ଆଲୋକ ।''

**ସବୁଜଯୁଗର ସଫଳତା : କାଳିନ୍ଦୀଚରଣ –**

ସବୁଜ-ବନ୍ଧୁଗଣ ନିଜ ନିଜ ରୀତିରେ ପ୍ରଚୁର କବିତା ଲେଖିଚାଲିଲେ କେବଳ ନୁହେଁ, ସେମାନେ ମଧ ଲେଖିଲେ ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ । ବଙ୍ଗ-ସାହିତ୍ୟରେ ଘଟିଥିବା ଏକ ଘଟଣାର ଅନୁକରଣରେ ସେମାନେ ସଂଘବଦ୍ଧଭାବରେ 'ବାସନ୍ତୀ' ନାମକ ଏକ ଉପନ୍ୟାସ ପ୍ରକାଶ କଲେ; ଯାହା ସମସାମୟିକ ଓଡ଼ିଶାରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । କୌଣସି କୌଣସି ଓଡ଼ିଆ କବି ବା କାବ୍ୟ ଉପରେ ଅନ୍ନଦାଶଙ୍କର ଯେଉଁ ପ୍ରବନ୍ଧସବୁ ଲେଖିଥିଲେ, ସେସବୁ ନିଶ୍ଚିତଭାବରେ ଓଡ଼ିଆ ସାହିତ୍ୟରେ ସମାଲୋଚନାର ଏକ ନୂତନ ରୀତି ପ୍ରବର୍ତ୍ତିତ କଲା କହିବାକୁ ହେବ । ସେସବୁ ଭିତରେ ଆମେ ପ୍ରଥମ କରି ଆନ୍ତର୍ଜାତିକ ସାହିତ୍ୟର ଭୂୟୋପଠନର ପରିଚୟ ଓ ଆସ୍ୱାଦ ପାଇଲୁ । ଓଡ଼ିଶାରେ ଏପର୍ଯ୍ୟନ୍ତ ମଧ ସମାଲୋଚନା କହିଲେ ବୁଝାଏ ଅଜ୍ଞେୟ, ଫେନିଳ, ଅର୍ଥହୀନ ଗୁଡ଼ାଏ ସ୍ତୁତି । ଅନ୍ନଦାଶଙ୍କରଙ୍କ ସମାଲୋଚନା ହିଁ ଭାଷାର ସଂଯମ ଦେଇ, ପ୍ରଥମକରି ବିଚାରର ଯାଥାର୍ଥ୍ୟ ପ୍ରତିଷ୍ଠିତ କଲା ।

ସମଗ୍ର ଦଳ ଭିତରେ କାଳିନ୍ଦୀଚରଣ ପୁଣି କ୍ଷୁଦ୍ର ଗଳ୍ପର ଏକ ବିଶିଷ୍ଟ ସ୍ରଷ୍ଟାରୂପେ ନିଜକୁ ପ୍ରତିଷ୍ଠିତ କରିପାରିଲେ । କବି, ଗାଳ୍ପିକ, ପ୍ରାବନ୍ଧିକ ଓ ଔପନ୍ୟାସିକ କାଳିନ୍ଦୀଚରଣ ସେଦିନର ସବୁଜଦଳର ସକଳ କ୍ରିୟାକଳାପର ତଦାନୀନ୍ତନ ଏକକ ଜୀବନ୍ତ ପ୍ରତୀକରୂପେ ଦଣ୍ଡାୟମାନ । ତାଙ୍କର ଉପନ୍ୟାସମାନଙ୍କ ଭିତରେ କେବଳ 'ମାଟିର ମଣିଷ'ଟି ସିଦ୍ଧି ଅର୍ଜନ କରିପାରିଛି । ଭାରତର ଅନ୍ୟାନ୍ୟ ଭାଷାକୁ, ଓଡ଼ିଆ ଭାଷାର ଯେଉଁ ଦଶଖଣ୍ଡ ପୁସ୍ତକ ଅନୂଦିତ ହେବାର କଥା, ଜାତୀୟ ସାହିତ୍ୟ ଆକାଡେମୀ ସେମାନଙ୍କ ଭିତରେ ଏ ବହିଟିକୁ

ସ୍ଥାନ ଦେଇଛନ୍ତି । ଏହି ଗ୍ରନ୍ଥ ଫକିରମୋହନଙ୍କ ଲୋକକଥିତ ଭାଷାର ମର୍ଯ୍ୟାଦାକୁ ସମସାମୟିକ କାଳରେ ମଧ୍ୟ ପ୍ରତିଷ୍ଠିତ କରିଛି ଏବଂ ଏଥିରେ ଫୁଟିଥିବା ଗ୍ରାମ୍ୟ ଉତ୍କଳର ଚିତ୍ର ଅସତ୍ୟ ନୁହେଁ, ଯଦିବା ପୁସ୍ତକ-ପ୍ରଦର୍ଶିତ ଗାନ୍ଧ୍ୟାଦର୍ଶ, ଭାରତର ଯେକୌଣସି ଅଞ୍ଚଳ ପରି, ଓଡ଼ିଶାର ଗ୍ରାମାଞ୍ଚଳରେ ମଧ୍ୟ ସାଧାରଣ ବ୍ୟାପାର ନୁହେଁ ।

କାଳିନ୍ଦୀଚରଣଙ୍କ କବିତା କ୍ୱଚିତ୍ ଉଚ୍ଚସ୍ତରକୁ ଉଠିପାରିଛି । ତାଙ୍କ କବିତା ପ୍ରାୟ ଉଷ୍ମ-ସ୍ପର୍ଶହୀନ ଓ ସେଥିରେ ଛନ୍ଦ ସାଧାରଣତଃ ଅସାବଲୀଳ । ଶ୍ରେଷ୍ଠ କବିତାରେ ଆମେ କଳ୍ପନାର ଯେଉଁ ଧବଳଉତ୍ତାପ ଓ ଅନୁଭୂତିର ଯେଉଁ ବନ୍ଧନହୀନ ବିଳାସ ଏକାଧାରରେ ଅବସ୍ଥିତ ଥିବାର ଦେଖିବାକୁ ପାଇଥାଉ, କାଳିନ୍ଦୀଚରଣଙ୍କ କବିତାରେ ତାହା ମିଳେ ନାହିଁ । ନିକଟରେ ପ୍ରକାଶିତ ଏକ ଆଧୁନିକ-ସଂଗ୍ରହରେ * କାଳିନ୍ଦୀଚରଣଙ୍କ କବି-କୃତିର ପ୍ରତିନିଧିତ୍ୱ କରୁଥିବା ଦୁଇଟି କବିତାରୁ ଏଠାରେ କତିପୟ ପଙ୍କ୍ତି ପାଠକମାନଙ୍କ ନିଜ ବିଚାରାର୍ଥେ ରଖିଦିଆଯାଉଛି ।

ସୁନା –

''ନିରାଟ ନିର୍ଜୀବ ଆହେ ନିରୁପମ / ରୂପବାନ୍ ଧାତୁ,
ପ୍ରକଟିଲା ଧରା ପରେ ଜ୍ୟୋତି ତବ / ସେ କେଉଁ ପ୍ରଭାତୁ ?
ଖେଳାଇଲ ହାସ୍ୟ କେତେ / ବୁହାଇଲ ଲୋତକ ଯମୁନା
ଭୁବନ ବାଞ୍ଛିତ ଚିର ହେ ବିଜୟୀ / ହେ ମହାନ୍ ସୁନା !

× × ×

ପୁତ୍ର ହସ୍ତେ ବୁହାଇଲ / ଜନକର ରୁଧିର-ଝରଣା
ଭରିଲ ରୂପସୀ ବୁକେ / ଅବିଶ୍ୱାସ-ବିଷର ବାସନା ।
ସକଳ ବସ୍ତୁର ମୂଲ୍ୟ / ତୁମେ ଏକା କରିଛ ନିର୍ଣ୍ଣୟ
କାଳେ କାଳେ ଏ ଧରଣୀ / ଘୋଷୁଥିବ ତୁମରି ବିଜୟ ।''

× × ×

ଯାଦୁଘର –

''ଆଦିମ ଯୁଗରୁ ଦୁନିଆ ଭିତରେ ଗଢ଼ା ଯେତେ ସରକାର
ନିରେଖି ଚାହିଁଲେ, ସବୁଗୁଡ଼ିକ ତ ଧର୍ମର ଅବତାର ।
ଦୁନିଆଯାକର ମଣିଷ ପାଇଁ ତ ଧର୍ମ ନମିଳେ ଏକ
ସବୁ ପୂଜା, ସବୁ ଧିଆନ ଭଜନ ନୁହେଁ କି ଭୋଜନ-ଭେକ ?
ସବୁ ଦେଶେ ଅବା ସମାନ ଧର୍ମ ସତ୍ୟ ଆସିବ କାହୁଁ
ସମାନ ନୁହେଁ ତ ପୋଷାକ ଆହାର ସବୁଦେଶ ଜଳବାୟୁ ।
ପୁରୁଣା ପୋଷାକ ଫେସନ ଫୋପାଡ଼ି ନୂଆ ଲୋଡୁ ଆମେ ଯଥା
ପୁରୁଣା ଧର୍ମ ଏତ୍ୟର ମାନେ ଅବିକଳ ଏକା କଥା ।

* 'ଆଧୁନିକ କବିତା' – ସଂଗ୍ରାହକ ଅଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରା ।

ଧର୍ମ, ସତ୍ୟ, ଯାଉଛି ବଦଳି, ରହିଛି କେବଳ ନାମ
ବାସ୍ତବ ରୂପ ନମିଳଇ ଖୋଜି ନାହିଁ ତାର ଗୁଣ-ଧାମ ।''

**ସବୁଜ କବିତା –**

'ସବୁଜ' ଗୋଷ୍ଠୀ ଗଳ୍ପ, ପ୍ରବନ୍ଧ, ଉପନ୍ୟାସ, ନାଟକାଦି ଲେଖିଥିଲେହେଁ, ସମୂହ-ଭାବରେ ସେମାନେ ଯେଉଁ କବିତା ଛାଡ଼ିଗଲେ, ତାହାହିଁ କେବଳ ସେମାନଙ୍କୁ ଏ ସ୍ୱତନ୍ତ୍ର ଲେବୁଲର ସାର୍ଥକତା ଦେଇପାରିଛି ବୋଲି କହିବାକୁ ହେବ । ତରୁଣ ବୟସରେ ସବୁଜ ବନ୍ଧୁଗଣ ଯେଉଁ କବିତାବଳି ଅଜାଡ଼ି ଦେଇଗଲେ, ସେଥିରେ ଯେ ଯଥେଷ୍ଟ ସବୁଜିମା ଅଛି, ଏହା ନିଃସନ୍ଦେହ । ସେ ପର୍ଯ୍ୟନ୍ତ ଓଡ଼ିଆ କବିତା କହିଲେ ଯାହା ବୁଝାଉଥିଲା, ସବୁଜ-ମାନଙ୍କ କବିତା ଯେ ସେସବୁଠାରୁ ଭିନ୍ନ ଧାରାର, ଏହା ନିଶ୍ଚିତ କଥା । ଏହା ଅବଶ୍ୟ ସତ୍ୟ ଯେ, ସେ ଭିନ୍ନତା ପ୍ରତିବେଶୀଠାରୁ ଧାର ମାତ୍ର । ଏହା ମଧ୍ୟ ସତ୍ୟ ପୁଣି ଯେ, ସେହି ଅପରିପକ୍ୱ ତରୁଣଦଳର ଉତ୍ସାହ ଓ କଳ୍ପନାରେ କୌଣସି ହେଲେ ଯୋଜନା ନଥିଲା; ସତ୍ୟ ପୁଣି ଯେ ସେମାନଙ୍କର କାବ୍ୟସୃଷ୍ଟିରେ ଆଙ୍ଗିକରେ ପୂର୍ଣ୍ଣତାର ଅଭାବ ଥିଲା; କିନ୍ତୁ ଏସବୁ ସତ୍ତ୍ୱେ ଏହା ମଧ୍ୟ ସତ୍ୟ ଯେ ସବୁଜମାନଙ୍କ କାବ୍ୟସୃଷ୍ଟି ଓଡ଼ିଶୀ ବୁଦ୍ଧିଜୀବୀମାନଙ୍କୁ ରୂପ, ସଙ୍ଗୀତ ଓ ସ୍ୱାଧୀନତାର ଏକ ନୂତନ କଳ୍ପଲୋକ ସହିତ ପରିଚିତ କରାଇଦେଲା ଯାହା ସେମାନେ ପ୍ରାଚୀନ ଉପେନ୍ଦ୍ର ବା ଆଧୁନିକ ରାଧାନାଥଙ୍କ ରଚନା-ସଂସାରରେ କେବଳ ବେଳେବେଳେ ଦେଖିବାକୁ ପାଉଥିଲେ । ସବୁଜମାନେ ଓଡ଼ିଆ ଭାଷାରେ ନୂତନ ଛନ୍ଦ, ନୂତନ ସାଙ୍ଗୀତିକତା ପ୍ରବିଷ୍ଟ କରାଇଲେ; ଯାହା ଆଦ୍ୟକାଳର ବୈଦେଶିକ ଦ୍ୱେଷ ସତ୍ତ୍ୱେ ବର୍ତ୍ତମାନ ଓଡ଼ିଆ ଭାଷା ସହିତ ଯେ ଅଙ୍ଗୀଭୂତ ହୋଇଗଲାଣି, ତାହା ମାନିବାକୁ ହେବ । ସବୁଜମାନେ ପ୍ରେମ, ନାରୀ ଓ ଜୀବନ ଇତ୍ୟାଦି ପ୍ରତି ଯେଉଁ ସଂସ୍କାରଶୂନ୍ୟ, ସାହସିକ ଚିନ୍ତାକଳ୍ପ ପରିବେଷିତ କଲେ, ସେ ସମସ୍ତ ଆଜି ସାଧାରଣ ଓଡ଼ିଆ ବୁଦ୍ଧିଜୀବୀର ମାନସିକ ଛାଞ୍ଚର ସ୍ୱୀକୃତ ଅଂଶ । ପୁଣି ସବୁଜମାନେ ହିଁ ଓଡ଼ିଆ ଭାଷାରେ ପ୍ରଥମକରି ଆନ୍ତର୍ଜାତିକ ବାତାବରଣ ସୃଷ୍ଟିକଲେ ।

ଓଡ଼ିଆ ଭାଷାରେ ଏହିସବୁ ଅତି ଉପାଦେୟ ଓ ଆକାଙ୍କ୍ଷିତ ଗୁଣଗୁଡ଼ିକୁ ଆଣି ଯୋଗ କରିଥିବା ହେତୁରୁ ଆମ୍ଭେମାନେ ସବୁଜଦଳ ପ୍ରତି ପ୍ରକୃତରେ କୃତଜ୍ଞ । ସେମାନଙ୍କର ବାସ୍ତବ ସୃଷ୍ଟିରେ ହୁଏତ ଆମେ ଅସାଧାରଣ ସିଦ୍ଧି କିଛି ନପାଇପାରୁ; କିନ୍ତୁ ସେମାନେ ସିଦ୍ଧିବାନ୍ ବୋଲି ନିଶ୍ଚୟ ଗୃହୀତ ହେବେ, ସେମାନେ ଓଡ଼ିଆ ଭାଷାରେ ଯେଉଁ ନୂତନ ବାତାବରଣ ସୃଷ୍ଟି କଲେ, ଯେଉଁ ଦୂରପ୍ରସାରୀ ନୂତନ ବୌଦ୍ଧିକ ଚକ୍ରବାଳ ଆମମାନଙ୍କ ପାଇଁ ସେମାନେ ଆବିଷ୍କାର କଲେ ଏବଂ ଯେପରି ଭାବରେ ସେମାନେ ନୂତନ ସମ୍ବାଦ, ନୂତନ ରୀତିରେ କହିବସିଲେ, ସେଥିପାଇଁ ।

**ଏକକଗଣ –**

ସବୁଜମାନଙ୍କ ପଛେ ପଛେ ଅନେକ ଲେଖକ ଦେଖାଦେଲେ; ଯେଉଁମାନେ କୌଣସି ଦଳ ବା ଗୋଷ୍ଠୀର ସଭ୍ୟ ନଥିଲେ ଏବଂ କୌଣସି ବିଶିଷ୍ଟ ଲେବୁଲ୍ ବା ପତାକା ବହନ

ନକରି, ନିଜ ନିଜର ଅନ୍ତର୍ନିହିତ ସୃଷ୍ଟିର ପ୍ରେରଣା ଓ ଉତ୍ସାହରେ ହିଁ ଲେଖିଚାଲିଲେ । ଆଜିର ସାହିତ୍ୟ କ୍ଷେତ୍ର ଭିନ୍ନ ଭିନ୍ନ ଦଳ, ଗୋଷ୍ଠୀ ଲେବୁଲ ଓ ପତାକାର ହିଂସ୍ର ଓ କଳୁଷିତ ରଣଭୂମିରେ ପରିଣତ ହୋଇସାରିଥିଲାବେଳେ, ଏଇ କେତୋଟି ନିଃସଙ୍ଗ ଏକକ ଯେପରି ଭାବରେ ଆତ୍ମନିବେଦିତ ଭାବରେ ସରସ୍ୱତୀଙ୍କର ଆରାଧନା କରିଚାଲିଲେ, ତାହା ଭାବିବାର କଥା । ଏମାନଙ୍କ ଭିତରେ ଗଣନୀୟ ନାମଗୁଡ଼ିକ ହେଉଛନ୍ତି – ଗୋଦାବରୀଶ ମହାପାତ୍ର, ଏହି ପୁସ୍ତକର ଲେଖକ * ଓ ଶ୍ରୀ ରାଧାମୋହନ ଗଡ଼ନାୟକ । କିଞ୍ଚିତ୍ ପରେ ଆବିର୍ଭୂତ ହେଲେ ମଧ୍ୟ ଆତ୍ମିକଭାବରେ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଏହି ଦଳର ବୋଲି ଧରାଯିବେ ।

**ଗୋଦାବରୀଶ ମହାପାତ୍ର (୧୮୯୮-୧୯୬୫) –**

ଓଡ଼ିଶାରେ ଗୋଦାବରୀଶ ମହାପାତ୍ର ହେଉଛନ୍ତି ଏକମାତ୍ର ଲେଖକ ଯେ ନିଜ ଜୀବନରେ ପ୍ରମାଣିତ କରିପାରିଛନ୍ତି ଯେ, ସାହିତ୍ୟ-ଚର୍ଚ୍ଚା ଏକ ସମ୍ମାନନୀୟ ଜୀବିକା ହୋଇପାରେ । ପୂର୍ବତନ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ଗୋଦାବରୀଶଙ୍କର କୌଣସି ଡିଗ୍ରୀ ନଥିଲା; କିନ୍ତୁ ଥିଲା ଶକ୍ତିଶାଳୀ ଲେଖନୀ । ଜନତାକୁ ଯଥାସାଧ୍ୟ ପରିହାର କରି, ଗୋଦାବରୀଶ ନିଜର ରୁଦ୍ଧକକ୍ଷର ଚାରି କାନ୍ଥ ଭିତରେ ବସି ଜୀବନବ୍ୟାପୀ ନୀରବ ସାଧନାରେ ସେହି ଲେଖନୀଟିରହିଁ ଆରାଧନା କରିଚାଲିଲେ; କିନ୍ତୁ ସେହି ରୁଦ୍ଧକକ୍ଷର ନୀରବତା ଭିତରେ ରହି ମଧ୍ୟ ଓଡ଼ିଶାର ସାମାଜିକ ରାଜନୀତିକ ଜୀବନରେ ଗୋଦାବରୀଶଙ୍କ ଲେଖନୀର ଦୀର୍ଘ ୩୦-୪୦ ବର୍ଷଧରି ଏପରି ଏକ ଆଲୋଡ଼ନକାରୀ ଶକ୍ତି ଥିଲା ଯାହାକୁ କେହି ଅସ୍ୱୀକାର କରିପାରୁନଥିଲେ । କବି ଓ ଗାଳ୍ପିକ ଗୋଦାବରୀଶ ମଧ୍ୟ ପ୍ରୌଢ଼ ବୟସରେ ଆବିଷ୍କାର କଲେ ଯେ, ତାଙ୍କ ଭିତରେ ହାସ୍ୟରସ ଓ ସାଟାୟାର୍‌ର ଏକ ପ୍ରଚ୍ଛନ୍ନ ଖଣି ରହିଛି । ସେହି ଦିନଠାରୁ ନିଜ ସୃଜନୀଶକ୍ତିର ଅନ୍ୟ ସକଳ ଗୁଣକୁ ନିପାତ କରି, ସାଟାୟାରିଷ୍ଟ୍ ଗୋଦାବରୀଶ ଦେଶ ଆଗରେ ଆବିର୍ଭୂତ ହେଲେ ଏବଂ ସମଗ୍ର ଓଡ଼ିଶାରେ ହାସ୍ୟରସର ଏକମାତ୍ର ଓ ପ୍ରକୃଷ୍ଟ ଉତ୍ସରୂପେ ପରିଗଣିତ ହେଲେ । ସମସାମୟିକ ଓଡ଼ିଶାରେ ମହାପାତ୍ରେ ସର୍ବାଧିକ ପଠିତ ଲେଖକ ଥିଲେ ବୋଲି କହିବା ଅତ୍ୟୁକ୍ତି ହେବନାହିଁ । 'ନିଆଁଖୁଣ୍ଟା' ନାମକ ମାସିକପତ୍ରର ସମ୍ପାଦକ ଭାବରେ ମହାପାତ୍ରେ ସମଗ୍ର ଆଧୁନିକ ଭାରତୀୟ ସାହିତ୍ୟରେ ଏକ ରେକର୍ଡ ସୃଷ୍ଟି କରିଯାଉଛନ୍ତି କହିବା ମଧ୍ୟ ଅସଙ୍ଗତ ହେବନାହିଁ । ମହାପାତ୍ରେ ଏ ପତ୍ରିକାର ସମ୍ପାଦକ କେବଳ ନଥିଲେ, ସେ ଥିଲେ ଏହାର ଏକମାତ୍ର ଲେଖକ, ପୁଣି ମୁଦ୍ରାକର ଓ ବିକ୍ରେତା; କିନ୍ତୁ ପରିତାପର କଥା ଏହି ଯେ, ମହାପାତ୍ରଙ୍କ ଅଧିକାଂଶ ତଥାକଥିତ ସାଟାୟାର୍ ସାହିତ୍ୟିକ ଗୌରବର ଅଧିକାରୀ ହୋଇପାରିଲେ ନାହିଁ; କାରଣ ସେଗୁଡ଼ିକ ପ୍ରାୟତଃ ବ୍ୟକ୍ତିଗତ ଦୋଷଦୁର୍ବଳତାର ପ୍ରକାଶ

* ଇଂରାଜୀ ପୁସ୍ତକରେ ଏହି 'ଇତିହାସ'ର ଲେଖକ ଶ୍ରୀ ମାନସିଂହଙ୍କର କୌଣସିଠାରେ ନାମୋଲ୍ଲେଖ ନଥିଲା । ବହୁ ବନ୍ଧୁ ଏହା ଗ୍ରନ୍ଥରେ ଏକ ଅଭାବ ବୋଲି କହିବାରୁ, ଏହି ଓଡ଼ିଆ ପୁସ୍ତକରେ ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ଲିଖିତ ତାଙ୍କ-ସଂପୃକ୍ତ-ପ୍ରବନ୍ଧ ପରିଶିଷ୍ଟରୂପେ ଦିଆଯାଇଛି । (ପ୍ରକାଶକ)

ଓ ନିନ୍ଦାବର୍ଷଣ ମାତ୍ର । ସମୟ ସମୟରେ ବ୍ୟକ୍ତିଗତ ଈର୍ଷା-ଦ୍ୱେଷ-ବଶବର୍ତ୍ତୀ ହୋଇ ମହାପାତ୍ରେ ଯେ ତାଙ୍କ ସାଟାୟାରଗୁଡ଼ିକରେ ବହୁ ତଳକୁ ଖସିଆସୁଥିଲେ, ତାହା ଅବଶ୍ୟ ଶୋଚ଼ନୀୟ । ତାହାଦ୍ୱାରା ସେ ନିଜ ସୃଷ୍ଟିକୁ ନିମ୍ନସ୍ତରକୁ ଖସେଇବା ସାଥେ ସାଥେ, ସମଗ୍ର ଜାତି ଆଗରେ ଏକ ଦୂଷଣୀୟ ଆଦର୍ଶ ମଧ୍ୟ ଛାଡ଼ିଗଲେ । ସଦ୍ୟ ସଦ୍ୟ ଅବସ୍ଥାରେ ତୀବ୍ର ଆସ୍ୱାଦ ସତ୍ତ୍ୱେ ମହାପାତ୍ରଙ୍କ ବଳିଷ୍ଠ ରଚ଼ନାସବୁ ମାତ୍ର ସପ୍ତାହକ ପରେ ବାସି ହେବାକୁ ଲାଗିଲେ । ଏ ପ୍ରକାର ଶକ୍ତି, କେବଳ କ୍ଷଣିକ ବାହାବାରେ ବ୍ୟୟିତ ହୋଇଯିବା ଦୁଃଖର ବିଷୟ । ତାଙ୍କର କେତେକ ପଦ୍ୟ ସାଟାୟାର୍ 'କଣ୍ଟା ଓ ଫୁଲ' ଓ 'ବଙ୍କା ଓ ସିଧା' ନାମରେ ବହି ଆକାର ଧାରଣ କରି ପ୍ରକାଶିତ ହୋଇଛି; କିନ୍ତୁ ପତ୍ରିକାରୁ ବହିକୁ ସ୍ଥାନାନ୍ତର କରିଦେବାଦ୍ୱାରା ସେ କବିତାଗୁଡ଼ିକର ନିଜସ୍ୱ ଚରିତ୍ରର କୌଣସି ପରିବର୍ତ୍ତନ ହୋଇଯାଇଛି ବୋଲି କହିହେଉନି ।

ଗୋଦାବରୀଶଙ୍କ ଲିଖିତ କେତୋଟି କ୍ଷୁଦ୍ରଗଳ୍ପ ଓଡ଼ିଆ ଭାଷାର ଶ୍ରେଷ୍ଠ ଗଳ୍ପମାନଙ୍କ ଭିତରେ ଗଣନୀୟ ହେବ । ପୁଣି କବି ଗୋଦାବରୀଶଙ୍କ ଉର୍ଜସ୍ୱଳ ଭାବରାଜିକୁ ଉଦାର ଛନ୍ଦ ଓ ଉଦାତ୍ତ ବାଣୀରେ ପ୍ରକାଶ କରୁଥିବା 'ଉଠ କଙ୍କାଳ' କବିତାଟି ଉତ୍କଳର ଅମ୍ବରପଟକୁ ଚିରକାଳ ଧ୍ୱନିତ କରୁଥିବ । ତାହାର ଆଦ୍ୟ କେତେକ ପଙ୍‌କ୍ତି ମାତ୍ର ଏଠାରେ ଦିଆଯାଉଛି ।

''ଦୁର୍ଗମ ଗିରିଦୁର୍ଗପ୍ରାଚ଼ୀର ଜୀର୍ଣ୍ଣ ଦୁଆରେ ବସି
ଡାକେ ତାନ୍ତ୍ରିକ ମନ୍ତ୍ରସାଧନେ, — ଜାଗ୍ରତ ପୁରବାସୀ ।
ପୃଥ୍ୱୀ ବିଦାରି ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ,
ଖୋରଧାର ଶତ ସରଦାର ଶିର କର ଉନ୍ନତତର ।
ଉଠ କଙ୍କାଳ, ଛିଡୁ ଶୃଙ୍ଖଳ, ଜାଗ ଦୁର୍ବଳ ଆଜି,
ଉଠୁ ଗତଗୌରବ, ହୃତଗୌରବ, ମୃତଗୌରବ ରାଜି ।''

**ରାଧାମୋହନ ଗଡ଼ନାୟକ –**

ଆଧୁନିକ ଓଡ଼ିଆ ସାହିତ୍ୟରେ ଶ୍ରୀ ରାଧାମୋହନ ଗଡ଼ନାୟକ ନିଜର ଏକ ସ୍ୱତନ୍ତ୍ର ଓ ବିଶିଷ୍ଟ ଆସନ ଗଢ଼ିନେଇଛନ୍ତି । ପଣ୍ଡିତ ଗୋଦାବରୀଶଙ୍କ ପରେ, ଓଡ଼ିଆ ସାହିତ୍ୟରେ ଗଡ଼ନାୟକେ ଗାଥାକବିତା କ୍ଷେତ୍ରରେ ଅଦ୍ୱିତୀୟ । ସେ ଅଦ୍ୱିତୀୟ ପୁଣି ତାଙ୍କ 'କାବ୍ୟନାୟିକା'ର ଅନୁପମ ମାଧୁର୍ଯ୍ୟମଣ୍ଡିତ ଛାନ୍ଦସିକ ପଦ-ସଞ୍ଚାରଣ ପାଇଁ । ଓଡ଼ିଶା ଓ ଭାରତ ଇତିହାସର ବହୁ ଅଜ୍ଞାତ ଘଟଣା, ଗଡ଼ନାୟକଙ୍କ ଲେଖନୀ ପ୍ରସାଦରୁ ପ୍ରେରଣାଦାୟୀ କାବ୍ୟ-ଗୌରବ ପାଇପାରିଛନ୍ତି । ସେସବୁ ପଢ଼ିଲାବେଳେ ରବୀନ୍ଦ୍ରନାଥଙ୍କ 'କଥା ଓ କାହାଣୀ' ବରାବର ମନକୁ ଆସିଯାଇଥାଏ । ପୁଣି, ଇତିହାସ ବା କିଂବଦନ୍ତୀର ପ୍ରସିଦ୍ଧ ନର ବା ନାରୀଙ୍କ କଥା ଛାଡ଼ିଦିଅ, ଗଡ଼ନାୟକେ ସାହିତ୍ୟରେ ସୁଖ୍ୟାତ କେତେକ ପଶୁପକ୍ଷୀଙ୍କୁ ନେଇ ମଧ୍ୟ ଏକ ମନୋଜ୍ଞ 'ପଶୁପକ୍ଷୀର କାବ୍ୟ' ସୃଷ୍ଟିକରିପାରିଛନ୍ତି । ଗଡ଼ନାୟକେ ଅନୁବାଦ-କଳାରେ ମଧ୍ୟ

ଅସାଧାରଣ ପାଟବ ପ୍ରଦର୍ଶନ କରିଛନ୍ତି । ତାଙ୍କର 'ମେଘଦୂତ' ଓ 'ଗୀତଗୋବିନ୍ଦ'ର ଅନୁବାଦ ଓଡ଼ିଆ ସାହିତ୍ୟକୁ ଅଳଂକୃତ କରିଛି । ତାଙ୍କର ସମସ୍ତ ମୌଳିକ କବିତା ନିର୍ଦ୍ଦୋଷ ଯତିପାତ ଓ ଛାନ୍ଦସିକ ଅନବଦ୍ୟତା ହେତୁ ଶ୍ରୁତିସୁଖକର ଓ ଉପଭୋଗ୍ୟ । ତାଙ୍କର 'ଅପଥଗାମୀ' ନାମକ କବିତାଟି, କବିଙ୍କ ଅନିୟମ୍ୟ ପ୍ରତିଭାର ପ୍ରତିବିମ୍ବ କହିଲେ ଚଳେ । କବିତାଟିରେ ପରିବେଷିତ ଦୃଢ଼, ଆପୋଷ-ଅରାଜି-ବ୍ୟକ୍ତିତ୍ୱ ପାଠକକୁ ମୁଗ୍ଧ କରେ ।

"ହଁ, ମାନୁଛି ମୁଁ, ସହଜ, ସରଳ / ପରିଚିତ ତମ ପୁରୁଣା ପଥ
ଧରଣୀର ଏଇ ବକ୍ଷ-ବିତାନେ / ଲକ୍ଷିତ କେତେ ଲକ୍ଷ ଶତ ।
ନାହିଁ ତହିଁ ବାଧା / ନାହିଁ ବନ୍ଧନ,
ନାହିଁ ଅବସାଦ / ନାହିଁ କ୍ରନ୍ଦନ,
ଜୀବନ ସେ ପଥେ ସହଜ ସୁହାଗେ / ଗଡ଼ି ଗଡ଼ି ଯାଏ ଯନ୍ତ୍ରବତ ।
× × × ×
ଅପଥେ ମୁଁ ଯିବି, ଅପଥେ ମୁଁ ଯିବି / କର ପଛେ ମତେ ତିରସ୍କାର,
ନେପଥ୍ୟେ ଅଛି ଯେତେ ଯାହା ସବୁ / କରିବି ମୁଁ ତାର ଆବିଷ୍କାର ।
ମଥା ପାତି ନେବି ମାନ ଅପମାନ / ବୁକୁ ପାତିନେବି ଝଞ୍ଜା ତୋଫାନ,
ସମୟ ଆସିବ ଯେଉଁ ଦିନ ତମେ / ଯାଚି ଦେବ ମୋତେ ପୁରସ୍କାର ।"

ବିଶ୍ୱବିଦ୍ୟାଳୟର କୌଣସି ଡିଗ୍ରୀର ଛାପା ନଥିଲେ ମଧ୍ୟ ଗଡ଼ନାୟକେ ସଂସ୍କୃତ, ଓଡ଼ିଆ ଓ ବଙ୍ଗଳାରେ ଅସାଧାରଣ ଭାବରେ ବିଦ୍ୱାନ୍ ଓ ଇଂରାଜୀ ସାହିତ୍ୟ ସହିତ ମଧ୍ୟ ସୁପରିଚିତ । ଓଡ଼ିଆ-ସାହିତ୍ୟରେ ଛନ୍ଦ-ଧୁରନ୍ଧରଭାବରେ ଗଡ଼ନାୟକଙ୍କ ଶ୍ରେଷ୍ଠତା ଅପ୍ରତିଦ୍ୱନ୍ଦ୍ୟ ।

**ତଥାକଥିତ ଗଣକବିଗଣ –**

ଏହି ଶତାବ୍ଦୀର ତିରିଶ-ଦଶନ୍ଧି ଆଡ଼ିକି ଓଡ଼ିଆ ସାହିତ୍ୟରେ ନୂତନ ଭାବଧାରାସବୁ ଦେଖାଦେଲା । ଓଡ଼ିଶାର ମାଟିରେ କୌଣସି ଅସାଧାରଣ ଘଟଣାସବୁ ଘଟିବାର ପ୍ରତିକ୍ରିୟା-ଫଳରେ ଏହା ଯେ ଦେଖାଦେଲା, ତାହା ଅବଶ୍ୟ ନୁହେଁ । ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ୟୁରୋପ ମହାଦେଶରେ ମାନବିକ ଚିନ୍ତାଜଗତରେ ଯେଉଁ ବିପ୍ଳବ ଦେଖାଦେଇଥିଲା, ତା'ର କ୍ରମ-ପ୍ରସାରିତ ଢେଉ ଓ ଆବର୍ତ୍ତ ସବୁ ଭାରତୀୟ ଉପମହାଦେଶର ପୃଷ୍ଠଭୂମି ଉପରେ ଖେଳିଚାଲିଲା ପରେ, କଲିକତା ନଗରୀରୁ ଆମଦାନୀକୃତ ପୁସ୍ତକ ଓ ପତ୍ରିକାମାନଙ୍କ ମାଧ୍ୟମରେ, ସେସବୁର ବିଲୀୟମାନ ଧକ୍କାହିଁ ଉତ୍କଳଦେଶର କେତେକ ବୁଦ୍ଧିଜୀବୀଙ୍କର ଚେତନାରେ ଉପଜାତ କଲା ଏକ ବିଦ୍ରୋହର ଆଭାସ । ସେତେବେଳକୁ ମାର୍କସଙ୍କ ଚିନ୍ତାଧାରାକୁ ବାସ୍ତବ ରୂପ ଦେଇ ରୁଷିଆରେ ସାମନ୍ତବାଦୀ ଶାସନକୁ ମୂଳୋତ୍ପାଟିତ କରି ସୋଭିଏଟ୍ ଗଣତନ୍ତ୍ର ପ୍ରତିଷ୍ଠିତ ହୋଇସାରିଲାଣି । ଭାରତବର୍ଷରେ ଏକ 'ମହାତ୍ମା'ର ପ୍ରେରଣାମୟ ନେତୃତ୍ୱରେ ବହୁଯୁଗରୁ ସୁପ୍ତ ଏକ ବିରାଟ ଜାତିର ନିଦ୍ରାଭଙ୍ଗ ଘଟିଥିଲା

କେବଳ ନୁହେଁ, ସଦ୍ୟସୁପ୍ତୋତ୍ଥିତ ସେହି ଜାତି ନିଜର ମାଟିକୁ ବିଦେଶୀର ଅଧିକାରରୁ ଛଡ଼ାଇନେବାପାଇଁ ଏକ ବିପୁଳ ସଂଗ୍ରାମରେ ଝାସ ଦେଇଥାଏ; କିନ୍ତୁ ତିରିଶ-ଦଶନ୍ଧି ଆଡ଼ିକି ଆମେ ଦେଖିବାକୁ ପାଇବା ଯେ, ଭାରତୀୟ ବୁଦ୍ଧିଜୀବୀସମାଜରେ, ସତ୍ୟ-ଅହିଂସାର ଅବତାର ଗାନ୍ଧିଙ୍କର ବାଣୀ ଅପେକ୍ଷା, ମାର୍କସୀୟ ଦର୍ଶନ ଓ କର୍ମପନ୍ଥା ପ୍ରତି ଯେପରି ଅଧିକ ଆଗ୍ରହ ଓ ବିଶ୍ୱାସ ଫୁଟିଉଠୁଥିଲା, କୋଡ଼ିଏ-ଦଶନ୍ଧି ଶେଷଆଡ଼କୁ, ଭାରତୀୟ କବି ଓ ଲେଖକମଣ୍ଡଳୀର ଗାନ୍ଧିନୀରାଜନା ପ୍ରାୟ ସାଙ୍ଗହୋଇଆସିଥିଲା ଏବଂ ସେମାନଙ୍କଠାରେ ଜାତୀୟ ମୁକ୍ତି-ଆନ୍ଦୋଳନ ପ୍ରତି ରହିଥିଲା ମାତ୍ର ଏକ ଅନୁଷ୍ଣ ସହାନୁଭୂତି । ଗାନ୍ଧି-ଆନ୍ଦୋଳନ ପ୍ରତି ଭାରତୀୟ ବୁଦ୍ଧିଜୀବୀମାନଙ୍କର କ୍ରମଶଃ ବିତୃଷ୍ଣା ଘଟିବାର ଏକ କାରଣ ହେଲା ମହାତ୍ମାଜୀଙ୍କର ପ୍ରାନ୍ତୀୟ ସେନାପତି ଓ ଅନୁଗାମୀମାନଙ୍କର ଜୀବନ ଓ ଆଚରଣ । ବୁଦ୍ଧିଜୀବୀମାନେ ଗାନ୍ଧିଜୀଙ୍କର ମହାନ୍ ବ୍ୟକ୍ତିତ୍ୱ ଓ ମହାନ୍ ବାଣୀକୁ କେନ୍ଦ୍ରକରି ଏକ ଧରାସ୍ୱର୍ଗ ଓ ସତ୍ୟଯୁଗର ଅବତରଣର କଳ୍ପନା କରିନେଇଥିଲେ; କିନ୍ତୁ ପ୍ରଦେଶେ ପ୍ରଦେଶେ ତଥାକଥିତ ଗାନ୍ଧି-ପଥଗାମୀ-ଦଳର କର୍ମ ଓ ବଚନରେ ସେମାନେ ଯାହା ଆଖି ଆଗରେ ଦେଖିବାକୁ ବା କାନରେ ଶୁଣିବାକୁ ପାଇଲେ, ତାହା ସ୍ୱର୍ଣ୍ଣ-ପ୍ରତିମାର ମାଟିଗୋଡ଼ ପରି ଏକ ବିରାଟ ବିଭ୍ରମ ସୃଷ୍ଟିକଲା । ଅବଶ୍ୟ ଏହି ଭାରତୀୟ ବୁଦ୍ଧିଜୀବୀମାନେ କମ୍ୟୁନିଷ୍ଟ ରୁଷିଆର ମାଟିଗୋଡ଼ ସେ ପର୍ଯ୍ୟନ୍ତ ଦେଖିନଥିଲେ । ଦୂରତା, କମ୍ୟୁନିଷ୍ଟମାନଙ୍କର କୌଶଳପୂର୍ଣ୍ଣ ପ୍ରଚାର ଓ ସତ୍ୟ-ସମ୍ବାଦ-ନିରୋଧ ଫଳରେ ରୁଷିଆର ସୋଭିଏଟ୍‌ଶାସନ ପ୍ରତି ଚାରିଆଡ଼େ ଏକ ରହସ୍ୟମୟ ଆକର୍ଷଣ ସୃଷ୍ଟି ହୋଇପାରିଥିଲା ସେ ପର୍ଯ୍ୟନ୍ତ । କନ୍‌ସେଣ୍ଟ୍ରେସନ୍-କ୍ୟାମ୍ପମାନଙ୍କର ବିଭୀଷିକା, ନିରଙ୍କୁଶରୀତିରେ ବିରୋଧମତର ବିନାଶ, ବିନା ବିଚାରରେ ହତ୍ୟା ଏବଂ ଓତପ୍ରୋତ-ବିସ୍ତାରିତ ଚାର-ସଂସ୍ଥା (espionage) ଯେ, ଯେକୌଣସି କମ୍ୟୁନିଷ୍ଟ-ଶାସନର ଅବିଚ୍ଛେଦ୍ୟ ଅଙ୍ଗ, ଏହା ସେପର୍ଯ୍ୟନ୍ତ ବୁଦ୍ଧିଜୀବୀମାନେ ସମ୍ପୂର୍ଣ୍ଣ ବୁଝିବାକୁ ବାକି ଥିଲା ଏବଂ ତେଣୁ ସାଧାରଣ ମନୁଷ୍ୟପାଇଁ କମ୍ୟୁନିଜିମ୍ ଯେ ଧରାରେ-ସ୍ୱର୍ଗସ୍ଥାପନର ଏକମାତ୍ର ପନ୍ଥା, ସେହି ସ୍ୱପ୍ନ ଅବ୍ୟାହତ ରହିଥିଲା ।

କାର୍ଲ ମାର୍କସୀୟ ଧରା-ସ୍ୱର୍ଗର-ସ୍ୱପ୍ନ ସାଥିକି, ମନସ୍ତତ୍ତ୍ୱବିତ୍ ଫ୍ରୟେଡ୍ ଆଣି ଥୋଇଲେ ମନୁଷ୍ୟର ଅବଚେତନ ମନର ଏକ ନବାବିଷ୍କୃତ ସାମ୍ରାଜ୍ୟ ଏବଂ ଅନ୍ତର୍ଜାତୀୟ ଚିନ୍ତାଜଗତରେ ଦେଖାଦେଇଥିବା ଏହି ଦୁଇ ନୂତନ ଚିନ୍ତାଧାରା ପ୍ରତି ସମର୍ଥନହିଁ ଏହି କାଳରେ ଦେଖା-ଦେଇଥିବା ବହୁ ବୁଦ୍ଧିଜୀବୀଙ୍କୁ ଦେଲା 'ମଡର୍ଣ୍ଣ' (ନୂତନ) ବା 'ପ୍ରଗ୍ରେସିଭ୍' (ପ୍ରଗତିଶୀଳ)ର ସମ୍ମାନ । ଆମ ଓଡ଼ିଶାର ଅଭିଜ୍ଞତା ଏହି ଯେ, ଯେଉଁମାନେ ସେପର୍ଯ୍ୟନ୍ତ ଓଡ଼ିଶାରେ ମଧ ଜାତୀୟ କବି ବା ଲେଖକର ସମ୍ମାନ ପାଇନଥିଲେ, ସେମାନେ ହଠାତ୍ ଆନ୍ତର୍ଜାତୀୟ ହୋଇଉଠିଲେ, କେତେକ ମାର୍କସୀୟ ଓ ଫ୍ରୟେଡୀୟ ହଯବରଲ ମାତ୍ର ବାରମ୍ବାର ଆବୃତ୍ତି କରି କରି । ଏହି ତଥାକଥିତ 'ପ୍ରଗତିଶୀଳ' (ପ୍ରଗ୍ରେସିଭ୍) ଲେଖକମାନଙ୍କର ସବୁଠାରୁ ଉଦ୍ଭଟ ଦାବି ହେଲା ଯେ, ସେଇମାନେହିଁ ଗଣ ବା ଜନତାର କବି, ଯଦିବା ସେମାନଙ୍କର ହଯବରଲ ସାଧାରଣ କୃଷକ ବା ଶ୍ରମିକର ପିତୃପିତାମହ ମଧ ବୁଝିବାର କ୍ଷମତା ନଥିଲା କେବଳ ନୁହେଁ,

ଅତି ଉଚ୍ଚକୋଟିର ବୁଦ୍ଧିଜୀବୀ ପ୍ରତି ମଧ୍ୟ ତାହା ଥିଲା ଅବୋଧ୍ୟ ଓ ଦୁର୍ବୋଧ୍ୟ । ଏମାନଙ୍କର ମତରେ କୌଣସି ପଦ୍ୟରେ ଲେନିନ୍ ବା ଷ୍ଟାଲିନ୍ ଉଲ୍ଲିଖିତ ହେଲା- ମାତ୍ରେଇ ତାହା ହୋଇଉଠିବ ଉଚ୍ଚକୋଟିର କବିତା । ତାହା ନଥାଇ, କବିତାପଦବାଚ୍ୟ କିଛି ନଥାଇପାରେ । ଯାହାହେଉ, ଏବକୁ ଓଡ଼ିଆ ସାହିତ୍ୟରେ ଏପ୍ରକାର ବିପୁଳ ମତାନ୍ଧତାର ତୀବ୍ରତା ବହୁତ କମିଆସିଥିଲେ ମଧ୍ୟ, ହୁଏତ ବୋଧହୁଏ କେବଳ ଅଭ୍ୟାସବଶତଃ ବା ଅସାମର୍ଥ୍ୟ ଯୋଗୁ ହିଁ, ଦୁର୍ବୋଧ୍ୟତା ଓ ଅସଂଲଗ୍ନତା କବିତାର ଏକ ଉଚ୍ଚ ଲକ୍ଷଣ ବୋଲି ଧରାହେଉଛି ।

**ଭଗବତୀଚରଣ ପାଣିଗ୍ରାହୀ (୧୯୦୭-୧୯୪୩)**

କିନ୍ତୁ ଉତ୍କଳଦେଶରେ ମାର୍କସୀୟ ଭାବଧାରାର ଯିଏ ଥିଲେ ପ୍ରକୃତ ଭଗୀରଥ, ତାଙ୍କର ରଚନାରେ ଏସବୁ ଦୁର୍ଗୁଣ କିଛିହେଲେ ନଥିଲା । ସେ ଥିଲେ ବାହାରକୁ ନିରୀହ, ନିରହଙ୍କାର, ଆସ୍ଫାଳନହୀନ ଏକ ତରୁଣ; ଯାହାଙ୍କର ଅନ୍ତର ଥିଲା ସଂସ୍କୃତିର ନିର୍ଯ୍ୟାସରେ ଭରା । ତାଙ୍କ ବାଣୀରେ ନଥିଲା କୌଣସି ପ୍ରକାର ଅସ୍ପଷ୍ଟତା କି ନଥିଲା ତାଙ୍କଠି କୌଣସି ପ୍ରକାର ଛଦ୍ମତା ବା କୌଣସି ଅଯଥାର୍ଥ ଦାବିର ପ୍ରୟାସ । ସେ ହେଉଛନ୍ତି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସାନଭାଇ ସ୍ୱର୍ଗତ ଭଗବତୀଚରଣ ପାଣିଗ୍ରାହୀ; ଯାହାଙ୍କର ଅକାଳମୃତ୍ୟୁ ଓଡ଼ିଶା ପ୍ରତି ହୋଇ ରହିଲା ଏକ ଅପୂରଣୀୟ ସାଂସ୍କୃତିକ ହାନି । ଗଳ୍ପ, ପ୍ରବନ୍ଧ ଓ ବାସ୍ତବ ଜନସେବା ଦେଇ ଭଗବତୀ ଉତ୍କଳ ଦେଶରେ ବାମପନ୍ଥୀ ଚିନ୍ତାଧାରାର ମୂଳ ପତନ ପକାଇ-ଯାଇଛନ୍ତି । ତାଙ୍କର ସେଦିନର ବାମପନ୍ଥୀ ସହଚାରିଗଣଙ୍କ ଭିତରୁ ଯେଉଁମାନେ ଏବେ ବି ବଞ୍ଚିଛନ୍ତି ଓ ବାମପନ୍ଥୀ ପତାକା ଉଡ଼ାଉଛନ୍ତି ବୋଲି ସେମାନେ ଭାବନ୍ତି ବା ଅନ୍ୟେ ୮ ହନ୍ତି, ସେମାନଙ୍କର ନାମ ହେଲା — ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଓ ମନମୋହ‌ ମିଶ୍ର; କିନ୍ତୁ ଆମକୁ କହିବାକୁପଡୁଛି ଯେ, ଏମାନଙ୍କର କପାଳରେ ବାମପନ୍ଥୀ ତିଳ‌ ଯେ ପରିମାଣରେ ଦେଖାଯାଏ, ସେ ପରିମାଣରେ ପ୍ରକୃତ ଭକ୍ତି ଏମାନଙ୍କଠି ଅଛି ବା କେବେ ଥିଲା, ତାହା ଦ୍ରଷ୍ଟବ୍ୟ । ଶ୍ରୀ ମନମୋହନ ମିଶ୍ର ଦିନେ ଉତ୍ତେଜନାପୂର୍ଣ୍ଣ ବାମପନ୍ଥୀ ଗୀତ-ରଚକ ଓ ଗୀତ-ଗାୟକ ଭାବରେ ଖ୍ୟାତି ଅର୍ଜନ କରିଥିଲେ; କିନ୍ତୁ ପରେ ସେ ନିଜର ସେକାଳର କମ୍‌ରେଡ଼ମାନଙ୍କୁ ଛାଡ଼ି ଚାଲିଆସିଲେ କେବଳ ନୁହେଁ, ତାଙ୍କର ବାମପନ୍ଥୀ ଚିନ୍ତାଧାରାକୁ ପ୍ରକାଶ୍ୟରେ ନିନ୍ଦିତ ମଧ୍ୟ କଲେ । ଶ୍ରୀ ଅନନ୍ତ ପଟ୍ଟନାୟକ .ବେ ବି ବୋଧହୁଏ 'କମ୍‌ରେଡ଼' ଅଛନ୍ତି; କିନ୍ତୁ ସେ ଏବେ ଯେଉଁ ହଯବରଲ ଲେଖନ୍ତି, ସେଥିରୁ ତାଙ୍କର ବକ୍ତବ୍ୟଟା ବୁଝିପାରିବା ଅନ୍ତତଃ ଆମ ପରି ସାଧାରଣ ପାଠକପକ୍ଷରେ ସହଜ କାମ ନୁହେଁ । ମାର୍କସ୍‌ବାଦ ସହିତ ଅସଂପୃକ୍ତ ତାଙ୍କର କେତୋଟି କବିତାର ଛନ୍ଦ ଓ ଶବ୍ଦଯୋଜନା, ଯାହାହେଉ ଏ ଦୋଷରୁ ବହୁ ପରିମାଣରେ ମୁକ୍ତ ।

**ସଚ୍ଚି ରାଉତରାୟ —**

କିନ୍ତୁ ଏହି ସମଗ୍ର ତଥାକଥିତ ବାମପନ୍ଥୀ ଗୋଷ୍ଠୀରେ ଯିଏ ଉତ୍କଳଦେଶରେ ବାମପନ୍ଥୀ ଚିନ୍ତାଧାରାର ଉଭୟ ଭଗୀରଥ ଓ ଅର୍ଜୁନ ବୋଲି ବିଘୋଷିତ, ସେ ହେଉଛନ୍ତି ସଚ୍ଚି

ରାଉତରାୟ । କବି, ଗାଳ୍ପିକ, ପ୍ରାବନ୍ଧିକ ଓ ଔପନ୍ୟାସିକ ରାଉତରାୟ ଆଧୁନିକ ସାହିତ୍ୟରେ ଯେ ଜଣେ ଶକ୍ତିଶାଳୀ ଲେଖକ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ସେ ନିଜେ ଓ ତାଙ୍କର ବାମପନ୍ଥୀ ସହସ୍ରଷ୍ଟାମାନେ ଯେ 'ଗଣକବି'ର ଦାବି କରିଥାନ୍ତି, ଏହା ତାଙ୍କରିଠାରୁହିଁ ଆରମ୍ଭ ହୋଇଛି । ଦିନେ ରାଉତରାୟ ଶକ୍ତିଶାଳୀ ଲେଖନୀର ଅଧିକାରୀ ଥିଲେ । ବାମପନ୍ଥୀ ଲେଖକମାନଙ୍କ ଭିତରେ ରାଉତରାୟଙ୍କ ଭାଷଣ ଦିନେ ଥିଲା ସ୍ପଷ୍ଟ, ସାବଲୀଳ ଓ ଶକ୍ତିମାନ୍ । ବାମପନ୍ଥୀ ବା ସରରିୟାଲିଷ୍ଟ ହଯବରଳ ଯାହା ବି ସେ ଲେଖନ୍ତି, ଅନ୍ୟ ସମଧର୍ମୀମାନଙ୍କ ଲେଖାଠାରୁ କେବଳ ତାଙ୍କରି ଲେଖାରେହିଁ ସେହି ନନ୍‌ସେନ୍‌ସ ସବୁ ମଧ ଉପଭୋଗ୍ୟ ବୋଧହୋଇଥାଏ; କିନ୍ତୁ ଏପ୍ରକାର ଶକ୍ତି ସତ୍ତ୍ୱେ, ରାଉତରାୟଙ୍କ ପ୍ରକୃତ ଚିରସ୍ଥାୟୀ ସୃଷ୍ଟିର ପରିମାଣ ଯେ ବଡ଼ ଅଳ୍ପ, ଏହା ପରିତାପର କଥା । ତାଙ୍କର ତରୁଣ ବୟସର 'ପଲ୍ଲିଶ୍ରୀ' ସେହି ଶ୍ରେଣୀର ଉତ୍ତମ ରଚନା ଭିତରେ ଅନ୍ୟତମ । ତାଙ୍କର କ୍ଷୁଦ୍ରଗଳ୍ପାବଳିରେ ତାଙ୍କ ଲେଖନୀର, ପଲ୍ଲୀଜନତାର ମନ ଓ ହୃଦୟ ଭିତର କଥା ଜାଣିବାର ଶକ୍ତି ପ୍ରଶଂସନୀୟ; ମାତ୍ର ସେପରି ଗଳ୍ପର ମୋଟ ସଂଖ୍ୟା ଏକ ଡଜନ ହେବ କି ନା ସନ୍ଦେହ ।

**ଓଡ଼ିଆ ସାହିତ୍ୟରେ ସାଧାରଣ ମଣିଷ –**

ଶ୍ରୀ ରାଉତରାୟ ବା ତାଙ୍କର ସମଧର୍ମୀ ବାମପନ୍ଥୀ ଲେଖକମାନେ ନିଜକୁ 'ଗଣକବି' ବୋଲି ପ୍ରଚାର କରିବାର ଅର୍ଦ୍ଧଶତାବ୍ଦୀ ପୂର୍ବରୁହିଁ, ଗଳ୍ପ-ଉପନ୍ୟାସରେ ଫକିରମୋହନ ଓ କବିତାରେ ନନ୍ଦକିଶୋର ବଳ, ସାଧାରଣ ମନୁଷ୍ୟକୁ ସାହିତ୍ୟର ଯାଦୁ-ମନ୍ଦିର ଭିତରକୁ ନେଇଆସିଲେ ଓ ତାକୁ ସମ୍ମାନିତ ଆସନ ଦେଇଗଲେ, ମୃତ୍ୟୁହୀନ ବାଣୀ ଦେଇ । ଅବଶ୍ୟ, ଏମାନେ 'ଶ୍ରେଣୀ ସଂଘର୍ଷ' ବା 'ଶ୍ରମିକର ସାର୍ବଭୌମତ୍ୱ' ଇତ୍ୟାଦି ସ୍ଲୋଗାନ୍ ଚିତ୍କାର କରିନଥିଲେ ବା ଜନତାର ଏକାନ୍ତ-ଅବୋଧ ଗୁଡ଼ାଏ କିଛି ଉଦ୍‌ଗୀର୍ଣ୍ଣ କରିବା ସାଥେ ସାଥେ ନିଜନିଜକୁ ସେହି ଜନତାର କବି ବୋଲି ପ୍ରଚାର କରିବା ପ୍ରଚେଷ୍ଟା କଳ୍ପନାକୁ ମଧ ଆଣି-ନଥିଲେ । 'ସର୍ବହରା'ର ଦୁଃଖ ଆମେ ପୁଣି ସଚ୍ଚି ରାଉତରାୟଙ୍କ ସମଗ୍ର ରଚନା ଅପେକ୍ଷା, ପଦେ ଦେଖାଦେଇଥିବା ଓ କୌଣସି ସ୍ଲୋଗାନ୍ ଚିତ୍କାର କରୁନଥିବା, କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ କବିତାରେ ପ୍ରଚୁର ପ୍ରକଟିତ ହୋଇଥିବାର ଦେଖୁ । ପୁଣି ମନୁଷ୍ୟର ଦୁଃଖ କ'ଣ କେବଳ ଅର୍ଥନୈତିକ ଯେ, ସେହି କଥାଟାକୁ ସ୍ଲୋଗାନ୍ କରି ଚିତ୍କାର କଲେ ବା ଶ୍ରେଣୀ-ସଂଘର୍ଷ ପାଇଁ ଆହ୍ୱାନ ଦେଲେଇ କୌଣସି ଲୋକ 'ଗଣ-କବି' ବୋଲାଇବ, ନଚେତ୍ ନୁହେଁ ? ସୋଭିଏଟ୍ କମ୍‌ରେଡ୍‌ମାନଙ୍କ ସହିତ ସମଗ୍ର ବିଶ୍ୱର ବରେଣ୍ୟ ବ୍ୟକ୍ତିସବୁ, ମାନବର ଅନୁପମ ସ୍ୱପ୍ନ-କୋଣାର୍କର ଶିଳ୍ପସ୍ଥାପତ୍ୟ ଦେଖି ମୁଗ୍ଧ ହେଲେହେଁ, କୋଣାର୍କ ଦେଖି ସେଦିନର ସମୃଦ୍ଧ ଉତ୍କଳ-ସାମ୍ରାଜ୍ୟର ସୁସ୍ଥ-ସୁନ୍ଦର ଜାଗିରି-ଭୋଗୀ 'ସର୍ବହରା' ପଥୁରିଆମାନଙ୍କ ପାଇଁ ସଚ୍ଚି ରାଉତରାୟ ଯେ କେବଳ ଅଶ୍ରୁ ବିସର୍ଜନ କରିଚାଲିଲେ, ଏହା ବାମପନ୍ଥୀ ଭଣ୍ଡାମି ଓ କପଟ କୁଶଳ-ପ୍ରଚାର ଛଡ଼ା ଆଉ କିଛି ହୋଇପାରେ କି ? ଅଥଚ ସେ କିପରି ଗଣଭାଷାରେ ବାଣୀ ପ୍ରଚାର କରନ୍ତି, ତାହାର ଏକ ନମୁନା ପାଠକେ ଦେଖନ୍ତୁ –

''ଜ୍ୟାମିତି –

''ସବୁଜ ତାଳର ସମାନ୍ତରାଳ ରେଖା
କେନାଲର ଦୁଇଧାରେ,
ନୀଳ ନୀଳ ଖେତେ ଧାନର ଏ ମାନଚିତ୍ର
ତ୍ରିକୋଣ ମେଘର କୋମଳ ହାତରେ ଲେଖା ।
ବନର ତ୍ରିଭୁଜେ ମେଘର ପତାକା ଉଡ଼େ
(ହରିତ, ଧୂସର, କୋମଳ ବନର ଚୂଡ଼େ)
ଘାସର ଗାଲିଚ୍ଚା ଧରଣୀରେ ଆଜି ପଡ଼େ ।
ହବ, ହବ ଆମ ଦେଖା ।
କୃଷ୍ଣାନଦୀରେ ଉଠିଚ୍ଚି କି ଆଜି ଢେଉ,
ବର୍ଷା-ବିହ୍ୱଳ ଗଙ୍ଗାର ଉପତ୍ୟକା
ତିସ୍ତା, ମେଘନା କୂଳେ ତରୀ ନେଉ ନେଉ
ଦକ୍ଷିଣପଥେ ଘୂରି ଯେ ମୁଁ ଗଲି ସଖା
ହୀରାର ମାଛର ତୀର୍ଯକ ଗତିକୋଣ
ହଠାତ୍ ଫେରିଲା, କିପରି ଫେରିଲା ଜାଣ ?
ସୁନାର ମାଛର ଆଖିର ପ୍ରସ୍ରବଣ
ହଠାତ୍ ଯେ ତାର ତରୀ ପଥେ ଦେଲା ଧକ୍କା !''

ଯା'ଠୁ ସରଳତର ଗଣ-କବିତା ଆଉ କ'ଣ ହୋଇପାରେ ? ଅଥଚ୍ ଶ୍ରୀ ସଚ୍ଚି ରାଉତରାୟ କହନ୍ତି ଯେ, ଅଧିକାଂଶ 'ଆଧୁନିକ' କବିମାନଙ୍କର ରଚ୍ନା ତାଙ୍କ ପକ୍ଷରେ ଏକାନ୍ତ ଦୁର୍ବୋଧ ।

**ଯୁଦ୍ଧୋଦ୍ୟତ 'ନୂତନ'ଗଣ –**

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଦୃଶ୍ୟପଟ ପରିବର୍ତ୍ତିତ ହେବାର ଦେଖାଗଲା । ଗତ ଦଶକର ଦା'-ହାତୁଡ଼ିର ଚିତ୍କାର ଆଉ ଶୁଣାଗଲାନାହିଁ । ସେ କେତେବର୍ଷ, ବିଚ୍ଚାରା ରିକ୍ସାବାଲା ଯେ ଗଳ୍ପ ଓ କବିତାର ସର୍ବପ୍ରିୟ ଧୀରୋଦାତ୍ତ ନାୟକ କିପରି ହୋଇଉଠିଥିଲା, ପୁଣି ତା'ର ସେ ଅଚିରସ୍ଥାୟୀ ଭାଗ୍ୟୋନ୍ନତି ବା ହଠାତ୍ ଉଭେଇଗଲା କିପରି, ତାହା ଜଣାଯାଏ ନାହିଁ । ଏବକୁ ଗଳ୍ପ ବା କବିତାରେ ଦା'-ହାତୁଡ଼ିର କାହିଁ କେଉଁଠି ଚିହ୍ନ-ବର୍ଣ୍ଣହିଁ ଆଖିରେ ପଡୁନି । ବର୍ତ୍ତମାନ କ୍ଷେତ୍ରାଧିକାରୀ କେତେକ ବୌଦ୍ଧିକ ବାମନ ଏଲିୟଟ୍ ବା ଏଜ୍ରାପାଉଣ୍ଡଙ୍କ ଢିଲା ପୋଷାକ ପିନ୍ଧି ରଙ୍ଗମଞ୍ଚରେ ଆବିର୍ଭୂତ ହେବାର ଦେଖାଯାଏ ।

ଓଡ଼ିଶାରେ ଦେଖାଦେଇଥିବା ଏହି 'ନୂତନ' ବା 'ପ୍ରଗାମୀ'ଦଳର ଅଧିକାଂଶଙ୍କର ଅପହରଣ ନ ହେଲେ ମଧ, ନକଲୀକରଣ ଆଲୋଚ୍ଚିତ ହୋଇଯାଇଛି । ଦିନେ 'ସବୁଜ'ଗଣ ବଙ୍ଗଳାରୁ ଭାବ, ଭାଷା ଓ ଛନ୍ଦ ଗୋଟେଇ 'ନୂତନତା' ଦେଖାଇଥିଲେ; କିନ୍ତୁ ବର୍ତ୍ତମାନ

ଦେଖାଗଲା ଯେ, କେତେକ 'ମଡର୍ଣ୍ଣ' ଅନ୍ୟଭାଷାର କବିଙ୍କର ପୂରା ଏକ ଏକ କବିତା ଉତାରିନେଇ, ତାହା ନିଜର ବୋଲି ଓଡ଼ିଶା ଦେଶର ପାଠକମାନଙ୍କ ଆଗରେ ନିଜର ବାହାଦୁରି ଦେଖେଇବାକୁ ତିଆର । ଅପହରଣ ଧରାପଡ଼ି ଉପହସିତ ଓ ସମାଲୋଚିତ ହେଲେ ମଧ, ଫେର୍ ସେହି କଥା ! ମୌଳିକତାହୀନ, ଉପାଦାନହୀନ, ଅଧ୍ୟୟନହୀନ, ଇତର ଜନଗଣର କବିଯଶାକାଙ୍‌କ୍ଷା ପୂରଣ ଲାଗି ଅନ୍ୟତର ସୁବିଧା ଉପାୟ ବା କି ଅଛି ? ଏଥିରୁ ଅଧିକାଂଶ ନିଜ ଦେଶ, ଜାତି ଓ ମାତୃଭାଷା ସହିତ ଭଲଭାବରେ ପରିଚିତ ନୁହନ୍ତି । ନିଜର ସ୍ୱତନ୍ତ୍ର, ମୌଳିକ କିଛି ସୃଷ୍ଟିକରିବା ସେମାନଙ୍କର କ୍ଷମତାର ବାହାରେ । ସେମାନେ କେବଳ ଗୋଳମାଳିଆ ଗଦ୍ୟକୁ ପଦ୍ୟର ଆକାର ଦେଇ ଠିଆ କରେଇ ପାରିବେ । ପାଶ୍ଚାତ୍ୟ ଜଗତରେ କି କି ସ୍ତର ଦେଇ କଳା ଓ ସାହିତ୍ୟ ସମସାମୟିକ ଅବସ୍ଥାକୁ ଆସିଛି, ତାହା ସେମାନଙ୍କର ଏକାନ୍ତ ଅଜ୍ଞାତ । ସେମାନଙ୍କ ରଚନାରେ ଫିଉଚରିଜିମ୍ (Futurism), ଇମେଜିଜିମ୍ (Imageism), ସିଂବଲିଜିମ୍ (Symbolism) ବା ସର୍ରିୟାଲିଜିମ୍ (Surrealism)ର କୌଣସି ସ୍ପର୍ଶହିଁ ଆମେ ଦେଖିବାକୁ ପାଇବାନି । ସେମାନେ ଅଧିକାଂଶ ଭାବରେ କେବଳ ସମ-ସାମୟିକ ବଙ୍ଗଳା କବିତାର ବାହ୍ୟ ରୂପଟାକୁହିଁ ଅନୁକରଣ କରିବାରେ ଲାଗିଛନ୍ତି ଓ 'ଇଏ କି କବିତା' ବୋଲି ପଚାରିଲେ, ସ୍ୱ-ପ୍ରତିରକ୍ଷା ପାଇଁ ସାଧାରଣତଃ ଗୁଡ଼ାଏ ବିଖ୍ୟାତ ନାଁ ଉଚ୍ଚାରଣ କରିଥାନ୍ତି । ଅବସ୍ଥା ଏପରି ଯେ, ଉତ୍କଳଦେଶରେ ଏବେ କୌଣସି ସୁଲିଖିତ-ବୋଲି-ପ୍ରତୀୟମାନ ରଚନାକୁ ପ୍ରଶଂସା କରିବା ବିପଜ୍ଜନକ ବ୍ୟାପାର ହୋଇଉଠିଲାଣି; କାରଣ କିଏ ଜାଣେ କେଉଁ ଅଜ୍ଞାତ ଅନ୍ୟଭାଷୀୟ ପତ୍ରପତ୍ରିକାର ଅଭ୍ୟନ୍ତରରେ ଆମେ କେବେ ତା'ର ପିତୃପୁରୁଷକୁ ନ ଭେଟିବା ? *

---

* ୧୯୬୪ ମସିହା ଡିସେମ୍ବର ମାସରେ କଟକରେ ନିଖିଳଭାରତ ବଙ୍ଗସାହିତ୍ୟ ସମ୍ମିଳନୀ ବସିଥିଲା । ତା'ର ସଭାପତିତ୍ୱ କରିଥିଲେ ବଙ୍ଗଳାର ପ୍ରସିଦ୍ଧ ଔପନ୍ୟାସିକା ଶ୍ରୀମତୀ ଆଶାପୂର୍ଣ୍ଣା ଦେବୀ । ତାଙ୍କର ମୁଦ୍ରିତ ସଭାପତି-ଭାଷଣରୁ ବଙ୍ଗଳାର 'ନୂତନ'ଦଳଙ୍କ ସଂପର୍କରେ ତାଙ୍କର ଅଭିମତ (ପୃ-୬) ଏଠାରେ ଉଦ୍ଧାର କରିଦେଉଛି । ପାଠକେ ତାହା ସହିତ ବହୁପୂର୍ବରୁ ଲିଖିତ ଓ ପ୍ରକାଶିତ ଲେଖକର ଓଡ଼ିଶୀ 'ନୂତନ'ମାନଙ୍କ ସଂପୃକ୍ତ ଉପରିଲିଖିତ ମନ୍ତବ୍ୟ ସହିତ ତୁଳନା କରି ବିବେଚନା କରିବେ ବୋଲି ଆଶା ।

''ଏହି ସୂତ୍ରରେ ମୁଁ ଆଜିର ତରୁଣ ବା ଆଧୁନିକ ଲେଖକଙ୍କ ବିଷୟ କିଛି କହୁଛି । ଆଜିର କେତେକ ଲେଖକଙ୍କ କଲମରେ ଶକ୍ତିର ସ୍ୱାକ୍ଷର ଦେଖିବାକୁ ମିଳେ । × × କିନ୍ତୁ ଦୁଃଖର ସହିତ ବୋଲିବାକୁ ହେଉଛି ଯେ, ଏମାନଙ୍କର କଲମରେ ଶକ୍ତିର ସ୍ୱାକ୍ଷର ଥିଲେହେଁ ଭକ୍ତିର ସ୍ୱାକ୍ଷର ନାହିଁ । ଏମାନେ ଜୀବନଧର୍ମୀ ସାହିତ୍ୟ ସୃଷ୍ଟି କରିବାକୁ ଚାହାନ୍ତି; କିନ୍ତୁ ଜୀବନକୁ ଜାଣିବାର ଚେଷ୍ଟା ଏମାନଙ୍କଠି ନାହିଁ । ଦେଶର ମାଟି ଓ ଦେଶର ମନୁଷ୍ୟ ସମ୍ପର୍କରେ ସଂପୂର୍ଣ୍ଣ ଉଦାସୀନ ରହି ଏମାନେ ବିଦେଶୀ ସାହିତ୍ୟରୁ ସାଗରପାରି ସମାଜର ଯୁଗ-ଯନ୍ତ୍ରଣାକୁ ଓଟାରି ଆଣି ତାକୁ ବଙ୍ଗଳା ଅକ୍ଷରରେ ସଜେଇ ଥୋଇବାରେହିଁ ନିଜ ନିଜ କଲମକୁ ନିୟୋଜିତ କରୁଛନ୍ତି; କିନ୍ତୁ ସେ ସାମଗ୍ରୀ ବଙ୍ଗଳା ଅକ୍ଷରରେ ଆମ ଆଗରେ ଆସି ଦେଖାଦେଲେହେଁ ବଙ୍ଗଳା ଦେଶର ହୃଦୟ-ମନ ଭିତରେ ପଶିପାରୁନାହିଁ । × × ×''

ମୋଟଉପରେ କହିବାକୁ ଗଲେ ଅଧିକାଂଶ ମତର୍ଣ୍ଣ ବା ନୂତନମାନଙ୍କର ସିଦ୍ଧି ଅକିଞ୍ଚିତ୍‌କର । ଅବଶ୍ୟ, ସିଦ୍ଧି ତୁଳନାରେ ସେମାନଙ୍କର ଚିତ୍କାର ଅତି ବେଶୀ । କାରଣ ସେମାନେ, ସାହିତ୍ୟ-ସ୍ରଷ୍ଟା ସାଧାରଣତଃ ଯେପରି ବ୍ୟବହାର ଦେଖାଇଥାନ୍ତି, ସେପରି ନକରି ରାଜନୈତିକ ଗୋଷ୍ଠୀସବୁ ଯେପରି ଆଚରଣ କରିଥାନ୍ତି ସେପରି କରିଥାନ୍ତି । ଏକାଧିକ ଥର ସେମାନଙ୍କୁ ସାହିତ୍ୟିକ ଆଲୋଚନା ପାଇଁ ଆହ୍ୱାନ କରାଯାଇଛି; କିନ୍ତୁ ଯୁକ୍ତି ଓ ଆଲୋଚନା ପରିବର୍ତ୍ତେ, ତାଙ୍କ ପଟୁ ଚିତ୍କାର, ମୁଷ୍ଟିପ୍ରଦର୍ଶନ ଓ ଭୀତିପ୍ରଦର୍ଶନହିଁ ବେଶି ଦେଖାଦେଇଛି । ସେମାନଙ୍କ ମତରେ ବୋଧହୁଏ ଏହି ପ୍ରକାର ଅସୌଜନ୍ୟ ବ୍ୟବହାର ମଧ୍ୟ ସାହିତ୍ୟିକ ଆଲୋଚନାର ଏକ ଅଙ୍ଗ ।

ଦଶବର୍ଷ ତଳେ ଏହି ଦଳର ଧର୍ମ-ରକ୍ଷକ ଭାବରେ ଦେଖାଦେଲେ ଜନୈକ ଇଂରାଜୀ ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତି । ଏହି ଅଧ୍ୟାପକ ପ୍ରଚାର ଚଳାଇଲେ କି, ତାଙ୍କର ଆଶୀର୍ବାଦପ୍ରାପ୍ତ ଦୁଇଜଣ 'ନୂତନ' କବି ଶ୍ରୀ ଭାନୁଜୀ ରାଓ ଓ ଶ୍ରୀ ଗୁରୁପ୍ରସାଦ ମହାନ୍ତିଙ୍କ ରଚନାପରି ଉତ୍କୃଷ୍ଟ ସୃଷ୍ଟି ସମଗ୍ର ଓଡ଼ିଆ ସାହିତ୍ୟରେ କେବେହେଲେ ଦେଖାଦେଇନଥିଲା । 'ନୂତନ କବିତା'ର ପ୍ରତୀକଭାବରେ ଏହି ଦୁଇ ଲେଖକଙ୍କର କବିତାବଳିକୁ ନେଇ 'ନୂତନ କବିତା' ନାମକ ଏକ ସଂଗ୍ରହ ପ୍ରକାଶ କରି ଅଧ୍ୟାପକ ମହାନ୍ତି, ନୂତନ କବିତା ଉପରେ ଯେଉଁ ପ୍ରଚାର କରିଛନ୍ତି, ତାହାର ଏକାଂଶ ଏହି –

''ତେଣୁ ଆଧୁନିକ ଓଡ଼ିଆ କବିତାର ପରିପ୍ରେକ୍ଷିତରେ ବିଚାର କଲେ, ଏହି 'ନୂତନ-କବିତା'ର ଯଥେଷ୍ଟ ଗୁରୁତ୍ୱ ଅଛି । ଏଲିୟଟ୍‌ଙ୍କର Unification of sensibility ଓ dissociation of sensibility ମଧ୍ୟରେ ଯେତିକି ପ୍ରଭେଦ, 'ନୂତନ କବିତା' ଓ ଆଜିର ଓଡ଼ିଆ କବିତା ମଧ୍ୟରେ ଠିକ୍ ସେତିକି ପ୍ରଭେଦ । ଗୋଟିକୁ ଯଦି ପରିତ୍ୟାଗର କବିତା କୁହାଯିବ, ଅନ୍ୟଟି ସମନ୍ୱୟର କବିତା । ଏହି ସମନ୍ୱୟକ୍ଷମ ମାନସ, 'ନୂତନ କବିତା'ର ବଡ଼ କଥା । ଏହାର ନୂତନତା କେବଳ କାବ୍ୟ ଆବେଗ, ଆଙ୍ଗିକ ବା ଶୃଙ୍ଖଳାରେ ସୀମାବଦ୍ଧ ନୁହେଁ, କାବ୍ୟ-ଅନ୍ତର୍ନିହିତ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ମଧ୍ୟ ଓଡ଼ିଆ କବିତାରେ ଅଭିନବ ।''

ଏହି ସାଡ଼ମ୍ବର ଘୋଷଣା ସହିତ, ଇଦୃକ୍ ଉଚ୍ଛ୍ୱସିତ-ପ୍ରଶଂସିତ ତଥାକଥିତ 'ନୂତନ-କବିତା' ଭିତରେ କି ବ୍ୟବଧାନ, ପାଠକେ ନିଜେହିଁ ତା'ର ବିଚାର କରନ୍ତୁ । ଏହି 'ନୂତନ-କବିତା' ନାମକ ସଂଗ୍ରହ-ପୁସ୍ତକରେ ଅଧ୍ୟାପକ ମହାନ୍ତିଙ୍କର ପ୍ରଥମ ପ୍ରିୟ କବି ଗୁରୁପ୍ରସାଦ ମହାନ୍ତିଙ୍କର ଛଅଟି କବିତା ସ୍ଥାନ ପାଇଛି । ସେଗୁଡ଼ିକ ସବୁ ପ୍ରେମ-କବିତା; କିନ୍ତୁ ପ୍ରେମ

---

ବଙ୍ଗାଳୀ ଗୁରୁମାନଙ୍କର ଦୋଷଦୁର୍ବଳତା ଯେ ଓଡ଼ିଶୀ ଚେଲାମାନଙ୍କ ରଚନାବଳିରେ ଛାଙ୍କି-ହୋଇ ପଶିଯାଉଛି, ଏଥିରେ ବିସ୍ମିତ ହେବାର କି ଅଛି ? 'ସବୁଜ'ବେଳୁ ବଙ୍ଗଳାନୁକରଣ ଅପହରଣ ଆରମ୍ଭ ହେଲା । ଆମେ ଦେଖିବା ଯେ, ପରେ ପରେ ବଙ୍ଗଳା ଭାଷାରେ ଯେଉଁ ଯେଉଁ 'ନୂତନତା' ଦେଖାଦେଉଛି, ଓଡ଼ିଆରେ ଠିକ୍ ସେହି ସେହି 'ନୂତନତା' ପ୍ରତିବିମ୍ବିତ ହୋଇଆସୁଛି । କେବଳ ପ୍ରତିବିମ୍ବ ବହନ କରି ହିଁ ଓଡ଼ିଶାରେ ବହୁ କବି-ଲେଖକ 'ଯୁଗସ୍ରଷ୍ଟା' ଓ 'କ୍ରାନ୍ତିକାରୀ' । ଆମେ କି ଲଜ୍ଜାଧର୍ମକୁ ଏକାବେଳକେ ପରିତ୍ୟାଗ କଲେ ?

ନାମକ ଯେଉଁ ମାନବିକ-ଅନୁଭୂତି ଜୀବନକୁ ରୂପାନ୍ତର ଦିଏ, ସେ ପ୍ରେମର ଚିହ୍ନହିଁ ଏଠି ନାହିଁ । ଏଠି ପ୍ରେମ କେବଳ ଜାନ୍ତବ ନୁହେଁ, ତାହା ଘୋର ଅସାମାଜିକ ମଧ୍ୟ । କେତୋଟି ଦୃଷ୍ଟାନ୍ତ ଦିଆଯାଉଛି –

× × ×

''ବାଲିରେ ମୁଁ ବୁଲିଯାଏ ସନ୍ଧ୍ୟାବେଳେ ଆଜିକାଲି ବିବର୍ଣ୍ଣ ସନ୍ଧ୍ୟାରେ
ଏଇ ବାଲି ଚରେଚରେ ମୁଁ ଦେଖେ ବହୁତ ଲୋକ ନାଲି ନେଳି ବହୁତ ରଙ୍ଗର,
ନିଛାଟିଆ କେତେବେଳେ ଦୀର୍ଘଶ୍ୱାସ ଜମିଆସେ ଆଉ ରାତି ଚାପି ହୋଇ ଆସେ
ଏ ବାଲିରେ ସବୁ ଛାଡି ଦୁହିଁ ହୋଇ ହୁଏ ଏକାକାର ।

× × ×

ଯେତେ ବାଲି କୁଢ଼ କୁଢ଼ ହୁଏ, ଯେତେ ଦେହ ଜଳିପୋଡ଼ିଯାଏ
ତୁମେ ଆସ ତା'ଭିତରୁ ଯେତେ ଯାହା ଅଭଦ୍ର, ଅଶ୍ଳୀଳ,
ତୁମରି ଓଠର ତଳେ ଗୋପା ଗୋପା ଝରାଇ ଝରାଇ,
ତୁମେ ଆସ ସତୀତ୍ୱ ବା ପୁଞ୍ଜୀଭୂତ-ଯେତେ ବ୍ୟଭିଚାର,

× × ×

ତୁମରି ଦାନ୍ତରେ ମୋର ଓଠ ଯିବ ଛିନ୍ନଭିନ୍ନ ହୋଇ
ତୁମରି ଛାତିରେ ଯିବ ଦଳିହୋଇ ବାଲିଚର ନିଶୂନ, ନିଘଞ୍ଚ,
ତୁମରି ଦେହର ରକ୍ତ ପାଣି ଫାଟି ଥଣ୍ଡା ହୋଇଯିବ
ତୁମରି ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ ।'' (ପ୍ରିୟ ବାନ୍ଧବୀ)

''ନିଛାଟିଆ ଏ ଗଳିରୁ ସନ୍ଧ୍ୟାଯାଏ ଲୁଚି ଲୁଚି ଛପି ଛପି
ପ୍ରେମିକର ପରି,
ମୁଁ ବସେ ଝରକା ପାଖେ, ଜକିଜୁକି ଗୋଲକରି,
ରଖି ମୋର ଛାତି ପକେଟ୍‌ରେ
ମଲ୍ଲୀହାର, ଚମ୍ପାକଢ଼ି, ଶାଢ଼ି ତା'ର, ବ୍ଲାଉଜ୍ ତା'ର,
ଗୋଲ ଛାତି କଳା ଆଖି ତା'ର,
ରୁମାଲରେ ଢାକିଜୁକି ମନ ମୋର, ଦେହ ମୋର,
ଆତ୍ମା ମୋର, ମୋ ପୁରୁଷକାର ।

× × ×

ମୁଁ କହିବି ଶୁଣୁଚ ହେ, ଗୋଟେ କଥା ପଚାରିବି ଆଜି,
ଜାଣିଚ୍ଚଟି କୁମ୍ଭୀପାକ ନରକରେ ଅସତୀର ଦଶା,
ଜାଣିଚ୍ଚଟି ପରିଣାମ, ରତହେଲେ ପର ପୁରୁଷରେ ?'' (ଗୋବରଗଣେଶ)

''ତୁମକୁ ମୁଁ ଦେଖେ ପରେ ଜୋତା ଷ୍ଟ୍ରାପ୍
ତୁମେ ଧୀରେ ଖୋଲ,

ତୁମେ ଆସି ଲୋଟିପଡ଼ ବିଛଣାରେ,
ବେଣୀ ଆଉ ଶାଢ଼ି ଅସଂଯତ,
ତୁମେ ପୁଣି ଆସ୍ତେ ଉଠ, ଲୁଗାପଟା ଠିକ୍‌ଠାକ୍ କରି,
ଟାଉନ୍‌ହଲ ସଭାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।
× × ×
ତା ଭିତରେ ତୁମେ ପୁଣି ପ୍ରେମ କରି ଗର୍ଭବତୀ ହୁଅ,
ସିନେମାର ହାଣ୍ଡବିଲ୍ ମୁଁ ଦେଖିଛି ତୁମରି ଦେହରେ,
ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତମର ସ୍ୱପ୍ନ ଦେଖେଁ ମୋର ଢିଲା ପାଇଜାମା କମିଜର
ଅମରାବତୀରେ ।'' (ଅଳକା ସାନ୍ୟାଲ୍)

ଆଉ ଅଧିକ କହିବା ଦର୍କାର କି ?

ପାଠକେ, ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତିଙ୍କ ଦୃଢ଼ବିଘୋଷିତ ଏହି ଯୁଗାନ୍ତକାରୀ କବିତାରେ ଏତେବେଳକୁ ଏଲିୟଟ୍‌ଙ୍କର 'unification of sensibility' 'ସମନ୍ୱୟକ୍ଷମ ମାନସ', 'ଜୀବନ ପ୍ରତି ଅଭିନବ ଦୃଷ୍ଟିଭଙ୍ଗୀ' ଇତ୍ୟାଦି ବିରାଟ ଗୁଣାବଳି; ଯାହା ଶ୍ରୀ ମହାନ୍ତି ଏସବୁଥିରେ ଦେଖିବାକୁ ପାଇ ଏପରି ଉଚ୍ଛ୍ୱସିତ ହୋଇଉଠିଛନ୍ତି, ସେସବୁ ନିଜେ ଏତେବେଳକୁ ହୃଦୟଙ୍ଗମ କରିସାରିବେଣି । ଅଧ୍ୟାପକ ଯେପରି କହିଛନ୍ତି, ଏପ୍ରକାର ଉଚ୍ଚ କବିତା ପ୍ରକୃତରେ ସମସ୍ତ ଓଡ଼ିଆ ସାହିତ୍ୟରେ କେବେ ଦେଖାଦେଇନଥିଲା – ସେସବୁ ସଂପୂର୍ଣ୍ଣ ଅଭିନବ । ଅଧ୍ୟାପକ ମହାନ୍ତିଙ୍କ ବିଦଗ୍ଧ ମତରେ ଜୀବନ ପ୍ରତି ଏହି 'ନୂତନ' ଦୃଷ୍ଟିକୋଣ, ବୋଧହୁଏ କେବଳ ଜାନ୍ତବ ଯୌନ-କ୍ଷୁଧା ପ୍ରତି ଦୃଷ୍ଟିପାତ; ଯାହା ଉପରିଲିଖିତ ପଦ୍ୟାଂଶମାନଙ୍କରେ ସ୍ପଷ୍ଟ ପ୍ରମାଣିତ ।

'ନୂତନ କବିତା'ର ଏପରି ବୈଦଗ୍ଧ ଓ ସୂକ୍ଷ୍ମବିଚାରପୂର୍ଣ୍ଣ ଭୂମିକା ଲେଖି ମଧ୍ୟ ଅଧ୍ୟାପକ ମହାନ୍ତି ନିଶ୍ଚେଷ୍ଟ ରହିପାରିଲେ ନାହିଁ । ତାଙ୍କର ପ୍ରିୟ କବିମାନଙ୍କର ଆହୁରି ଅଧିକ ପ୍ରଚାର ଉଦ୍ଦେଶ୍ୟରେ ଶ୍ରୀ ମହାନ୍ତି 'ପ୍ରଜ୍ଞା' ନାମକ ଏକ ପତ୍ରିକା ପ୍ରକାଶ କରିବସିଲେ । ଏହାର ତୃତୀୟ ସଂଖ୍ୟାର ପୃଷ୍ଠା ଅଧ୍ୟାପକ ମହାନ୍ତିଙ୍କର ଅନ୍ୟତର ପ୍ରିୟକବି ଭାନୁଜୀ ରାଓଙ୍କ ଏକ କବିତାଦ୍ୱାରା ଅଳଂକୃତ । ଏହା ଏକ 'କବିତା' ବୋଲି ଆମେ ଜାଣୁଛୁ କେବଳ ସୂଚିପତ୍ରରୁ; ନଚେତ୍ ଏହା ବସ୍ତୁତଃ ସାଦା ଗଦ୍ୟମାତ୍ର । 'ନୂତନ କବିତା'ର ଏହି ନୂତନତମ ପ୍ରତିନିଧିର କେତୋଟି 'ପାରାଗ୍ରାଫ୍' (ଶ୍ଳୋକ କହିହେଉନି) ନିମ୍ନରେ ଦିଆଗଲା :

''କାମନାର ସମୁଦ୍ରରେ ଯେତେବେଳେ ଝଡ଼ ଆସେ, କଳା କଳା ଢେଉଗୁଡ଼ାକ ହୋଇଉଠନ୍ତି ଉତ୍ତାଳ – ସର୍ବଗ୍ରାସୀ । ଯେତେବେଳେ ମୋର ଦେହର ଜାହାଜ ଦିଗ ହଜାଏ, ରିପୁର ତାଡ଼ନାରେ ଧଇଁହୁଏ, ଭୁଲରେ ଭାବେ, ଏ ସ୍ତନ ଦୁଇଟା ସେଇ ସମୁଦ୍ରରେ ଭାସମାନ 'ବୟା' ବୋଲି, ଯେଉଁଠି ସେ ପାଇବ ଲଙ୍ଗର ପୋତିବାର ନିଶ୍ଚିନ୍ତ ଆଶ୍ରୟ ।''

''ଦିନେ ଦିନେ ଏ ସ୍ତନ ଦୁଇଟାକୁ ମନେହୋଇଛି ଥଣ୍ଡା ଆଉ ମୃତ ଟାଣ ମାର୍ବଲରେ

ତିଆରୀ କବରଖାନାର ଦୁଇଟି ସମାଧି – ମସ୍‌ଜିଦ୍‌ର ଗମ୍ବୁଜର ଆକାରରେ ଗଢ଼ା; କିମ୍ବା ଏ ଦୁହେଁ ଜ୍ୟୋତିର୍ମଣ୍ଡଳର ଯୁଗଳ ଗ୍ରହ – 'ସୂର୍ଯ୍ୟ' ଆଉ 'ଚନ୍ଦ୍ର' ।''

''ଶୀତ-ରାତିରେ ଏ ସ୍ତନ ଲାଗିଛି ଚୁଲିରୁ ସଦ୍ୟ ନିଷ୍କାସିତ ଯୋଡ଼ିଏ ଉଷ୍ମ ଫୁଲା ରୁଟି ପରି । ତା'ପରେ ରାତିର ଆକାଶରେ ତାରାସବୁ ଯେତେବେଳେ ନିଭିଯାଇଛି, ସେତେବେଳେ ବିନିଦ୍ର ବିଛଣାରେ ଶୋଇ ଶୋଇ ଭାବୁଛି ଏସବୁ ମିଛ, ସ୍ତନ ଦୁଇଟା ମନପରୁଆର ଉପରର ଢାଙ୍କୁଣୀ କେବଳ ।''

ପାଠକେ; ସାହିତ୍ୟର ଦୀର୍ଘ ଇତିହାସରେ 'ବିଦ୍ରୋହ' 'ବିପ୍ଳବ' ନୂଆ ନୁହେଁ । ଗୋଡ଼କୁ ଉପରକୁ ଟେକି ମୁଣ୍ଡରେ ଚାଲିବା 'ନୂଆ କଥା' ବା ଚାଞ୍ଚଲ୍ୟକର ଘଟଣା ହୋଇପାରେ; କିନ୍ତୁ ତାହାକୁ କୌଣସିମତେ ଗତିର ଏକ ବିପ୍ଳବାତ୍ମକ ରୂପ ବୋଲି କହିହେବ ନାହିଁ । ଯେକୌଣସି ବିପ୍ଳବ ଏକାନ୍ତରେ ଆତ୍ମିକ । ତାହା ସାଧାରଣତଃ ହୋଇଥାଏ ଅନ୍ୟାୟ ବା ଅସଙ୍ଗତି ବିରୁଦ୍ଧରେ ଜେହାଦ୍, ତାହା ଅଗ୍ନିମୟ; ତାହା ସର୍ବଂସହା ଧରିତ୍ରୀର ସାମୟିକ ଭୂମିକମ୍ପ ପରି । ସ୍ନାୟୁଶକ୍ତିହୀନ, ଏସବୁ ତଥାକଥିତ 'ନୂତନ-କବିତା'ରେ କାହିଁ ସେ ଧର୍ମୀୟ କ୍ରୋଧ ବା ଜେହାଦ୍‌ର ଉଷ୍ମତା ? ସଚ୍ଚି ରାଉତରାୟ ଓ ତାଙ୍କର ସେକାଳର ସମପଥୀମାନଙ୍କର ଦା'-ହାତୁଡ଼ି କବିତାରେ ଆମେ ସେହି ଉଷ୍ମତାର କିଛି ହେଲେ ପାଉଥିଲୁ ଓ ସେହି ପରିମାଣରେ ସେସବୁ ଥିଲା ଉପଭୋଗ୍ୟ; କିନ୍ତୁ ଏହି ନକଲି ଏଲିୟଟ୍ ଓ ପାଉଣ୍ଡମାନଙ୍କର ଏସବୁ କବିତାରେ, ବାମପନ୍ଥୀମାନଙ୍କର ଭୂ-ସ୍ୱର୍ଗ ସ୍ୱପ୍ନ ନାହିଁ କି 'ଉଏଷ୍ଟଲାଣ୍ଡ'ର ବ୍ୟର୍ଥତାମୟ ଯୁଗଯନ୍ତ୍ରଣା ନାହିଁ; ନାହିଁ ମଧ୍ୟ ଏଜ୍ରାପାଉଣ୍ଡଙ୍କର 'କାଣ୍ଟୋ'ମାନଙ୍କ ତଳେ ଥିବା ବିସ୍ମୟକର ପାଣ୍ଡିତ୍ୟ । ଏସବୁ କବିତା କୌଣସି ଶ୍ରେଣୀରହିଁ ନୁହଁନ୍ତି ଓ ଆଲୋଚ୍ନା ବାହାରର ଦ୍ରବ୍ୟ ।

**ବୈଦେଶିକୀଗଣ –**

ଏଇ 'ନୂତନ'ମାନଙ୍କ ମଧ୍ୟରେ ଆଉ ଦଳେ ଦେଖାଦେଇଛନ୍ତି, ଯେଉଁମାନେ ଉପରବର୍ଣ୍ଣିତମାନଙ୍କ ପରି ଏତେ ଆତ୍ମ-କୈନ୍ଦ୍ରିକ ନୁହନ୍ତି ସତ; କିନ୍ତୁ ସେମାନେ ସେମାନଙ୍କର ସମସ୍ତ ଭରସା ଢାଳିଦେଇଛନ୍ତି ଅପରିଚିତ, ଅଦେଖା ଓ ଅନିକଟ ଉପରେ – ତାକୁଇ 'ନୂତନ'ତାର ଶ୍ରେଷ୍ଠ ଲକ୍ଷଣ ଧରି । ଏମାନଙ୍କ ନିକଟରେ ଓଡ଼ିଶା, ତା'ର ମାଟି, ତା'ର ଇତିହାସ ଓ ସଂସ୍କୃତିର କୌଣସି ଅର୍ଥ ନାହିଁ । 'ମଡର୍ଣ୍ଣ' ହେବାକୁ ହେଲେ ଲେଖକ ନିଜକୁ ସମ୍ପୂର୍ଣ୍ଣରୂପେ ଐତିହ୍ୟ-ମୁକ୍ତ ଓ ସ୍ଥାନୀୟ-ଚେତନା-ଶୂନ୍ୟ ହୋଇଥିବାର ଦେଖେଇଦେବା ଦରକାର ବୋଲି ବୋଧହୁଏ ଏମାନଙ୍କ ବିଶ୍ୱାସ । ଏ ଦଳର ଅଗ୍ରଣୀ ହେଉଛନ୍ତି ବିନୋଦଚନ୍ଦ୍ର ନାୟକ । ଓଡ଼ିଶାର ଏକ ଦୂର-ପ୍ରାନ୍ତୀୟ ଅଞ୍ଚଳର ପଲ୍ଲୀ-ଗ୍ରାମରେ ବସି, ନାୟକେ ନିଜର ଚତୁଃପାର୍ଶ୍ୱକୁ ଏକାବେଳକେ ଭୁଲିଯାଇ, ଦୀର୍ଘ ମେରୁବରଜନୀର ନିଃସଙ୍ଗତା, ଅରୋରା-ବୋରିଆଲିସ୍‌ର ଆଲୋକ-ଛଟା, ବିଷୁବୀୟ ଆଫ୍ରିକାରେ ବାମନମାନଙ୍କର ନୃତ୍ୟ ବା ଜାଞ୍ଜିବର ଦ୍ୱୀପ-ସୁନ୍ଦରୀମାନଙ୍କର ଲବଙ୍ଗପୁଷ୍ପ ତୋଳିବାବେଳର ସ୍ମିତହାସ୍ୟକୁ ବର୍ଣ୍ଣନା କରିଥାନ୍ତି । ନାୟକଙ୍କ କବିତା ବାଦ୍‌ଦେଇ ମଧ୍ୟ ଏହିପରି ଭୌଗୋଳିକ 'ପ୍ରଗତିଶୀଳତା'ର ଆଉ ଏକ ଦୃଷ୍ଟାନ୍ତ

ଏଠାରେ ଦେଉଛୁ; ଯାହା ପ୍ରମାଣ କରିବ ଏହି ଅନ୍ଧବିଶ୍ୱାସର ବ୍ୟାପ୍ତି । ଏ କବିତାଟି ହେଉଛି ଗୋଟିଏ ଓଡ଼ିଆ ଝିଅର, ତା'ର ଇଂଲାଣ୍ଡରେ ପଢୁଥିବା ପ୍ରଣୟୀ ନିକଟକୁ ପତ୍ର; କିନ୍ତୁ ସେ ଓଡ଼ିଆ ଝିଅ ଓଡ଼ିଶାର କୌଣସି ଗ୍ରାମ ବା ନଗରରୁ ଚିଠି ଲେଖୁନି । ତା'ନହେଲେ ସେ 'ମଡର୍ଣ୍ଣ' ବୋଲାଇବ କିପରି ? ସେ ଚିଠି ଲେଖୁଛି କାଲିମ୍ପଙ୍ଗ୍ ସହରରୁ –

''ପ୍ରିୟତମ,

ଶୁଣିଲି ତମେ ମାର୍କସ୍‌ବାଦୀ ହୋଇଛ । ତୁମ ସେଲ୍‌ଫରୁ କୀଟ୍‌ସ୍, ବାଇରନ୍‌ଙ୍କୁ
ତୁମେ ଚାଲାନ୍ କରିଛ ସେକେଣ୍ଡହାଣ୍ଡ ବୁକ୍‌ଷ୍ଟଲ୍‌କୁ,
ଆଉ ତା ବଦଳରେ ଟଲଷ୍ଟୟ, ଟୁର୍ଗେନିଭ୍ ଆଉ ଗର୍କି, ଏଞ୍ଜେଲ୍‌ସ୍‌ଙ୍କୁ କରୁଛ ପୂଜା ।
ହାଇଡ୍ ପାର୍କର ରାସ୍ତାକଡ଼ର ସମିତିର – ସଭ୍ୟ ହୋଇଛ ।
ଲେଖିଛ, ମସ୍କୋ କିମ୍ବା ଲେନିନ୍‌ଗ୍ରାଡ୍‌ରେ
କରିବ ରିସାର୍ଚ୍ଚ, ଡାରଉଇନ୍ ଥିଓରି ଉପରେ,
ଫେରିଲାବେଳେ କଣ୍ଟିନେଣ୍ଟ ଭ୍ରମଣରେ ଯିବ ସ୍ଲାଭ ଅଞ୍ଚଳକୁ,
ଏବଂ ଚୀନ୍ ଦେଖି ଫେରିବ । ଛିଃ, ଏ କ'ଣ ହେଲା ତୁମର ?
ରୋମ୍ ବା ଇଟାଲୀର ଟ୍ୟୁରିନ୍, ଜିବ୍ରାଲ୍‌ଟର କିମ୍ବା ଭେନିସ୍‌କୁ କ'ଣ ଯିବନି ?
ଯେଉଁଠି ଧୂସର ଆକାଶତଳେ 'ଟ୍ୟୁସ୍‌କାନି' ମଦ୍ୟ ପିଇ
ସେଲୀ ରଚିଥିଲେ କାବ୍ୟ । ସେଇ ସୁଇଜରଲାଣ୍ଡର ବରଫ, ମାଟି
ଓ ରଙ୍ଗବେରଙ୍ଗର କଳା-ନୀଳ-ନାଲି ମେଘ ସମସ୍ତେ ଦେଖିଯାଆନ୍ତି –
ତୁମେ ବି ଯିବ । ବାସର ରାତ୍ରିର ସେଇ ମେଷଲୋମର
ପ୍ରୁସିଆନ୍ ପୁଲ୍‌ଓଭର ଓ ଫର୍‌କୋଟ ନେବାକୁ ଭୁଲିବନି,
ମୋ ରାଣ ! ପୁଣି କହୁଚ ଷ୍ଟାଲିନ୍ ଦେଶକୁ ଯିବ ?
ନା, ନା, ମୁଁ ଅନୁମତି ଦେଇପାରିବିନି;
ଏମିତି ହେବ ତ 'ପୋଟାସିୟମ୍'ର ଆଶ୍ରୟ ନେବି,
କହିଦେଉଛି । ଛି, ଛି, ମୋ ଦେହ ଶୀତେଇ ଉଠୁଛି ।
ତୁମେ ଅକ୍‌ସଫୋର୍ଡର ଡିଲିଟ୍, କଲମ୍ବିଆର ଏ. ଏମ୍. ।
ବାପାଙ୍କର ସିପ୍-ବିଲ୍‌ଡିଂ କମ୍ପାନୀ ତୁମ ନାମରେ ଉଇଲ୍ କରିଦେଇଛନ୍ତି ।
ତଥାପି ତୁମେ ଗଲ ବିଦେଶକୁ, ପୁଣି ହେଲ କମ୍ୟୁନିଷ୍ଟ
ଏସବୁ କି ପାଗଳାମି କହ ତ ?

('ବିନିମୟ', ବାସବଦତ୍ତା ମିଶ୍ର, ଶ୍ରୀ ଯଦୁନାଥ ଦାଶମହାପାତ୍ର ଓ ବ୍ରଜନାଥ ରଥ ସଙ୍କଳିତ 'ଧରିତ୍ରୀ' ନାମକ ଆଧୁନିକ-କବିତା-ସଂଗ୍ରହରୁ)

ବୋଧହୁଏ ଏପ୍ରକାର କୌଣସି ଚିଠି ଏପର୍ଯ୍ୟନ୍ତ ଓଡ଼ିଆ ଅକ୍ଷରରେ ଲିପିଗତ ହୋଇନାହିଁ, ଯେହେତୁ ଦୁଇକୋଟି ସଂଖ୍ୟକ ଓଡ଼ିଆଙ୍କ ଭିତରେ ଜଣେ ହେଲେ କେହି ନାହିଁ; ଯେ କି ତା'ର ବିପଥଗାମୀ ମାର୍କସିଷ୍ଟ ଜାମାତାକୁ ଏକ ଜାହାଜ-ତିଆରି-କାରଖାନା ଉଇଲ୍

କରିଯିବ । ଓଡ଼ିଶାରେ ଏପରି ଏକ ଉଚ୍ଚଶିକ୍ଷିତ ଓ ସଂସ୍କୃତି-ସମ୍ପନ୍ନ ବିଶ୍ୱ-ଭ୍ରମଣକାରୀ ଧନୀ ଜାମାତା ବା କାହିଁ ? ଏସବୁ କେବଳ ଗୋଟିଏ ଭ୍ରାନ୍ତଗୋଷ୍ଠୀର ଧୂଆଁବାଣ, ଯେଉଁମାନେ ମନେକରନ୍ତି ଯେ, ଓଡ଼ିଆ କବିତାରେ ଗୁଡ଼ାଏ ବିଦେଶୀ ଶବ୍ଦ ଓ ଅନ୍ୟ ଦେଶ ଏବଂ ସମାଜରେ ଘଟୁଥିବା ଗୁଡ଼ାଏ ଘଟଣାବଳି ଭର୍ତ୍ତିକରିଦେଲେଇ ରଚନା ହୋଇଉଠିବ ମଡର୍ଣ୍ଣ (ନୂତନ) ଓ ପ୍ରଗ୍ରେସିଭ୍ (ପ୍ରଗତିଶୀଳ) ।

**ପ୍ରକୃତ ସ୍ରଷ୍ଟାବର୍ଗ –**

ସୁଖର ବିଷୟ ଏହି ଯେ, ଆଧୁନିକ ଓଡ଼ିଆସାହିତ୍ୟ କ୍ଷେତ୍ରରେ ଏହି ଉଦ୍‌ଭ୍ରାନ୍ତ, ଯୁଦ୍ଧୋଦ୍ୟତ ଓ କେନ୍ଦ୍ରଚ୍ୟୁତ ତଥାକଥିତ ଆଧୁନିକ ବା ନୂତନ କବିଗୋଷ୍ଠୀ ଏକମାତ୍ର ଲେଖକଶ୍ରେଣୀ ନୁହନ୍ତି । ସାହିତ୍ୟିକ-ପ୍ରତିଭା ବା ସିଦ୍ଧି ତୁଳନାରେ ନୂତନ କବିଗଣଙ୍କର ପ୍ରଚାର ସମ୍ଭବ ହେଉଛି କେବଳ ସେମାନଙ୍କର ଗୋଷ୍ଠୀଭାବ, ସଂଗ୍ରାମ-ତତ୍‌ପରତା, ଆତ୍ମ-ପ୍ରଚାର-ନିପୁଣତାଯୋଗୁଁ ଏବଂ ହୁଏତ ରଚନାର ଅଭିନବ କୌଶିକତାଯୋଗୁଁ ।

କିନ୍ତୁ ଏମାନଙ୍କ ଛଡ଼ା ବହୁ ଲୋକ ଅଛନ୍ତି ଯେଉଁମାନେ ନୀରବ ସାଧନା ଦେଇ ଓଡ଼ିଆ ସାହିତ୍ୟକୁ ପ୍ରକୃତରେ ଋଦ୍ଧିମନ୍ତ କରିବାରେ ଲାଗିଛନ୍ତି । ତାହାହିଁ ବଡ଼ ଆଶାର କଥା । ସୃଷ୍ଟିଶୀଳତାର ଲକ୍ଷଣ ହେଲା ଏହି ଯେ, ତାହା ଏକାନ୍ତରେ ବ୍ୟକ୍ତିକୈନ୍ଦ୍ରିକ । ଗୋଷ୍ଠୀବଦ୍ଧ ଭାବରେ ବୈଜ୍ଞାନିକ ରିସର୍ଚ୍ଚ ହୋଇପାରେ – କିନ୍ତୁ କବିତା ଲେଖାଯାଇପାରିବନି । ଯିଏ ପ୍ରକୃତ ସ୍ରଷ୍ଟା, ସେ ଏକାନ୍ତ ଓ ନିବିଡ଼ଭାବରେ ଏକକ । ସେ ସ୍ଲୋଗାନ୍ ବା ଲେବୁଲ୍ ନେଇ ମାତି ପାରେନା । ତା'ର ରଚନାର ପ୍ରେରଣା ସେ ପାଇବ ତା'ର ନିଜ ଅନ୍ତର୍ଲୋକରୁ । ତେଣୁ ହିଁ ପ୍ରତ୍ୟେକ ପ୍ରକୃତ ସ୍ରଷ୍ଟାର ବାଣୀ ସ୍ୱତନ୍ତ୍ର; କାରଣ, ଯେଉଁ ପରିବେଶରେ ସେ ଚଳ-ପ୍ରଚଳ ହୁଏ, ତା'ର ନିଜର ଚକ୍ଷୁ ଓ ଚିତ୍ତ ଉପରେ ସେ ପରିବେଶ ଯେଉଁ ପ୍ରତିବିମ୍ବ ପକାଏ ବା ଯେଉଁ ପ୍ରତିକ୍ରିୟା ସୃଷ୍ଟିକରେ, ତା'ର ନିଜସ୍ୱ ବାଣୀ ହେବ ତାହାହିଁ । ଅନ୍ୟର ବାଣୀ, ଅନ୍ୟର ଦୃଷ୍ଟିଭଙ୍ଗୀ, ଅନ୍ୟର ମତ, ଅନ୍ୟର ସ୍ଲୋଗାନ୍‌କୁ ନିଜର ବାଣୀ ବୋଲି ପ୍ରଚାର କରିବା ଓ ସେଥିପାଇଁ ପୁଣି ଦାମ୍ଭିକ ଆଚରଣ କରିବା କେବଳ ଇତର ଚେତନାର ସ୍ତରରେହିଁ ସମ୍ଭବ । ତଥାକଥିତ ବାମପନ୍ଥୀ ବା ମଡର୍ଣ୍ଣମାନେ ଯେଉଁ ସ୍ଲୋଗାନ୍ ସଂଗ୍ରାମ ଆରମ୍ଭ କରିଛନ୍ତି ବା ଯେଉଁ ଲେବୁଲଛତ୍ରତଳେ ଆଶ୍ରୟ ନେଇ ଆତ୍ମରକ୍ଷା ଓ ଆତ୍ମପ୍ରତିଷ୍ଠା କରୁଛନ୍ତି, ସେ ଆଚରଣ ରାଜନୀତି-ଜଗତର; କଳାକ୍ଷେତ୍ରର ନୁହେଁ ।

ଇଦାନୀନ୍ତନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଲେବୁଲ୍ ସ୍ଲୋଗାନ୍ ନିସ୍ପୃହ ରହି ଯେଉଁ କେତୋଟି ସୃଜନଶୀଳ ବ୍ୟକ୍ତି ଉତ୍କଳ ସରସ୍ୱତୀଙ୍କ ଆରାଧନାରେ ପୂର୍ଣ୍ଣପ୍ରାଣରେ ଲାଗିଛନ୍ତି, ସେମାନଙ୍କ ଭିତରେ ପ୍ରଥମେହିଁ ଶ୍ରୀ ଅନନ୍ତପ୍ରସାଦ ପଣ୍ଡାଙ୍କ * ନାମ ମନକୁ ଆସେ ।

---

* ଲେଖକର ବିଶିଷ୍ଟ ବନ୍ଧୁ ଶ୍ରୀ ପଣ୍ଡାଙ୍କ ନାମ ଇଂରାଜୀ ସଂସ୍କରଣରେ କେବଳ ଅନବଧାନତା ଯୋଗୁଁ ହିଁ ସ୍ଥାନପାଇପାରିନାହିଁ । ବହିଟା ପ୍ରକାଶିତ ହେଲାପରେହିଁ ଏହା ଖିଆଲ ହେଲା; ଯେପରି ହେଲା ରାଜକବି ଶ୍ରୀ ସଚ୍ଚିଦାନନ୍ଦ ଦେବଙ୍କ ସଂପର୍କରେ ।

ସରକାରୀ ଚାକିରିଆ ରହି ଶ୍ରୀ ପଣ୍ଡା ଯେପରି ଭାବରେ ଓଡ଼ିଆ ସାହିତ୍ୟର ନିରବଚ୍ଛିନ୍ନ ସେବା କରିଆସିଛନ୍ତି, ତାହା ଅତ୍ୟନ୍ତ ଶ୍ଳାଘ୍ୟ । ତାଙ୍କୁ ଅବଶ୍ୟ ମୌଳିକ ସ୍ରଷ୍ଟା କୁହାଯିବନି ବା ସେ ମଧ୍ୟ ସେପରି ଦାବି କରିନାହାନ୍ତି କେବେ । ନିଜ ଶକ୍ତି ଅନୁଯାୟୀ ନୈବେଦ୍ୟ ଅର୍ପଣ ହେଲା ତାଙ୍କର ଆଦର୍ଶ । ସମବାୟ ବିଭାଗରେ ତାଙ୍କର ଚାକିରିକୁ ସେ ଚାକିରି ମାତ୍ର ବୋଲି ମନେନକରି, ସେ ଯେ ତାକୁ ଜାତିଗଠନର ଏକ ମିସନ୍ ରୂପେହିଁ ବ୍ୟବହାର କରିଆସିଲେ, ସେଥିପାଇଁ ଶ୍ରୀ ପଣ୍ଡା ସମଗ୍ର ଓଡ଼ିଆ ଜାତିର ଧନ୍ୟବାଦାର୍ହ । ଶ୍ରୀ ପଣ୍ଡାଙ୍କର ଲେଖନୀ, ନାନା ଗଳ୍ପ ଓ ଉପନ୍ୟାସ ଦେଇ, ସହଯୋଗ ଆନ୍ଦୋଳନର ଉଦାର ଲକ୍ଷ୍ୟ; ଯାହାକି ଏକ ନୀରବ ସାମାଜିକ ବିପ୍ଳବ, ତାହାକୁହିଁ ଜାତି ଆଗରେ ଠିଆକରେଇବାକୁ ଚେଷ୍ଟା କରି-ଆସିଛି । ସେସବୁଥିରେ ଆମେ ତାଙ୍କର ଦୁସ୍ଥ, ଅନ୍ୟାୟିତ ନରନାରୀ ପ୍ରତି ଗଭୀର ସମବେଦନା, ପ୍ରକୃତିର ଆକର୍ଷଣ ପ୍ରତି ସଚେତନତା, ପୁଣି ଏକ ନୂତନ ସମାଜ, ନୂତନ ସଂସାର ଗଢ଼ିବାର ପ୍ରଚୁର ଉତ୍ସାହ ବରାବର ଦେଖୁ । ଗଳ୍ପ, ଉପନ୍ୟାସ, କବିତା, ଏକାଙ୍କିକା, ଭ୍ରମଣ-କାହାଣୀ ଇତ୍ୟାଦି ସାହିତ୍ୟର ବହୁ ବିଭାଗରେ ସେ କଲମ ପରୀକ୍ଷା କରିଛନ୍ତି । ତାଙ୍କର କାନାଡ଼ା-ଭ୍ରମଣ କାହାଣୀଟି ସୁଖପାଠ୍ୟ ଗ୍ରନ୍ଥ; କିନ୍ତୁ ମୋଟଉପରେ ଶ୍ରୀ ପଣ୍ଡାଙ୍କ ରଚନାରେ ଉତ୍ସାହ ସହିତ କିଞ୍ଚିତ୍ ଅଧିକ ଶିଳ୍ପ ସଂଯୁକ୍ତ ହୋଇଥିଲେ ଭଲହୋଇଥାନ୍ତା । ନିକଟରେ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହୋଇଛି । ସୁଖର କଥା, ପ୍ରଥମ ଖଣ୍ଡରେ 'ଶଗଡ଼' ନାମକ ଏକ ଗଳ୍ପର ଉଚ୍ଚପ୍ରଶଂସା ବିଘୋଷିତ ହୋଇଛି । ପାଠକେ ସେହି ଗଳ୍ପ ସହିତ, ଗୋଦାବରୀଶ ମହାପାତ୍ରଙ୍କ 'ମାଗୁଣିର ଶଗଡ଼'କୁ ତୁଳନା କଲେ, ରସସୃଷ୍ଟି ଓ କେବଳ ରଚନା ଭିତରେ ଏବଂ କେବଳ ଉତ୍ସାହ ଓ ପ୍ରକୃତ ଶିଳ୍ପ ଭିତରେ ପ୍ରଭେଦ କ'ଣ, ତାହା ତୁଏତ ବୁଝିପାରିବେ ବୋଲି ଆଶାକରୁ । କାରଣ ବିଷୟଟି ଦୁଇଟି-ଯାକ ଗଳ୍ପରେ ଏକ; କିନ୍ତୁ କହିଜାଣିବା ଭେଦଯୋଗୁଁ ସେଇ ଏକା କଥା କିପରି ଭିନ୍ନ ଭିନ୍ନ ରୂପ ଗ୍ରହଣ କରିଛି, ତାହାହିଁ ଲେଖା ଓ ଲେଖା ଭିତରେ କି ଗୁରୁ ପ୍ରଭେଦ ଠିଆ- କରିପାରେ, ତାହା ପ୍ରଣିଧାନର ବିଷୟ ।

ଦୀର୍ଘ ସାଧନାରତ ଅନ୍ୟ ଏକ ସାହିତ୍ୟସେବକ ହେଉଛନ୍ତି ଶ୍ରୀ କୁଞ୍ଜବିହାରୀ ଦାଶ; ଯିଏ ସମସାମୟିକ ଓଡ଼ିଆ ସାହିତ୍ୟରେ ସାଧାରଣତଃ ସ୍ମରଣ କରାଇଥାନ୍ତି ସ୍ୱର୍ଗତ କବି ଚିନ୍ତାମଣି ମହାନ୍ତିଙ୍କୁ । କୁଞ୍ଜବିହାରୀ ଦାଶଙ୍କ ରଚନା ହୋଇଉଠିଲାଣି ପ୍ରଚୁର ଓ ତା'ର ଧାରା ଏପର୍ଯ୍ୟନ୍ତ ଅବ୍ୟାହତ ଅଛି; କିନ୍ତୁ ତାଙ୍କର କବିତା, ଅଧିକାଂଶ ଭାବରେ ସୁପାଠ୍ୟ ପଦ୍ୟ ମାତ୍ର, ଯଦିଓ ସେଥି ନ୍ତ ଉତ୍କଳଚେତନା ଓ ସାମାଜିକଚେତନା ବିଚ୍ଛୁରିତ ରହିଛି । କଳା, ଶିଳ୍ପ, କବିତାଦିଗରେ ଉତ୍ସାହ ବା ପରିମାଣ ବା ପ୍ରଚାର ବଡ଼ କଥା ନୁହେଁ, ବଡ଼ କଥା ଏକ ରହସ୍ୟମୟ ସ୍ପର୍ଶ ଓ ଉଷ୍ମତା, ଯାହା କୌଣସି ସାଧନାରୁ ଆସେନାହିଁ । ପ୍ରସ୍ଫୁଟିତ ପୁଷ୍ପର ବର୍ଣ୍ଣ ଓ ସୌରଭରେ ବା ଉଭିନ୍ନଯୌବନା ରୂପସୀର ଲାବଣ୍ୟରେ ଆମେ ଏହି ରହସ୍ୟର ସମ୍ମୁଖୀନ ହେଉ; ଯାହାର କୌଣସି ବିଶେଷଣହିଁ ସମ୍ଭବ ନୁହେଁ ଏବଂ କେବଳ

ସେହି କାରଣରୁହିଁ ସେଗୁଡ଼ିକର ଇହ-ଜଗତରେ ଏପରି ଦୁର୍ବାର ଆରାଧନା ପ୍ରକୃତ କଳା ଓ ଶିଳ୍ପରେ ଆମେ ଏହି ରହସ୍ୟମୟତାର ସମ୍ମୁଖୀନ ହୋଇଥାଉଁ । ଜାତୀୟ ବା ସାମାଜିକ ସ୍ଲୋଗାନ୍ ବା ଅଙ୍ଗୁଳି-ଶ୍ରମର ପରିଚୟ ସେଠି ପ୍ରଶଂସନୀୟ ଗୁଣ ନୁହେଁ ।

କୁଞ୍ଜବିହାରୀ ପୁଣି ଉତ୍କଳରେ ପଲ୍ଲୀଗୀତି ସଂଗ୍ରାହକ ଭାବରେ ଖ୍ୟାତି ପ୍ରତିପତ୍ତି ଖୋଜିଛନ୍ତି; କିନ୍ତୁ ଏ କ୍ଷେତ୍ରରେ ଓଡ଼ିଶାରେ ତାଙ୍କର ବହୁ ଆଗରୁ ଜନୈକ ନୀରବ ସାଧକ ହେଉଛନ୍ତି ଚକ୍ରଧର ମହାପାତ୍ର । ଶ୍ରୀ ମହାପାତ୍ର ଓ ତାଙ୍କର ପତ୍ନୀ ସେଦିନର ଅଗମ୍ୟ ଓ ଅନାଲୋକିତ ଗଡ଼ଜାତ ନରସିଂହପୁରରେ ଥାଇ ମଧ, କୌଣସି ହେଲେ ସାଂସାରିକ ଲାଭାଶା ମନରେ ନରଖି, କେବଳ ନଶ୍ୟମାନ ଏକ ଜାତୀୟ-ସମ୍ପଦକୁ ଉଦ୍ଧାର କରିବା ଲକ୍ଷ୍ୟରେହିଁ; ଗତ ୩୦-୪୦ ବର୍ଷଧରି ପଲ୍ଲୀକଥା ଓ ପଲ୍ଲୀଗୀତ ସଂଗ୍ରହ କରିଆସିଛନ୍ତି । ଏହି ପତି-ପତ୍ନୀ ଏ କ୍ଷେତ୍ରରେ ଓଡ଼ିଶା ଦେଶରେ ପ୍ରକୃତ ଭଗୀରଥ । ଏମାନେ ଉତ୍କଳ ଜାତୀୟତାର ଏହି ସମ୍ପଦ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ପ୍ରଥମେ ଆକର୍ଷିତ କରିଥିଲେ । ପୁଣି ଜୀବନର ସେହି ଏକ ଲକ୍ଷ୍ୟ ସାଧନା ସେମାନଙ୍କଠି ଏବେ ବି ଚଳମାନ ଅଛି । ନିକଟରେ ମହାପାତ୍ରଙ୍କ ବିସ୍ତୃତ ସଂଗ୍ରହ ପୁସ୍ତକାକାରରେ ଦେଖାଯାଇଛି, ମହାପାତ୍ରଙ୍କ ଦୀର୍ଘ ଭୂମିକା ସହ । ଏହା ସମଗ୍ର ଭାରତୀୟ ସାହିତ୍ୟରେ ଏ କ୍ଷେତ୍ରରେ ଏକ ବିଶିଷ୍ଟ ଆସନ ଲାଭକରିବ ବୋଲି ଆଶା । ନିକଟରେ ପ୍ରକାଶିତ ତାଙ୍କଦ୍ୱାରା ସମ୍ପାଦିତ 'ଯଦୁମଣି ଗ୍ରନ୍ଥାବଳୀ' ମଧ ମହାପାତ୍ରଙ୍କ ସାହିତ୍ୟିକ ବିଜ୍ଞତାକୁ ଅଧିକ ପ୍ରତିଷ୍ଠିତ କରିଅଛି ।

ଦୈନ୍ୟ ଓ ଦୁର୍ବିପାକଗ୍ରସ୍ତ ହୋଇ ଅଳ୍ପ ବୟସରେ ପ୍ରାଣକୃଷ୍ଣ ସାମଲଙ୍କର ଇହଧାମ ପରିତ୍ୟାଗଦ୍ୱାରା ଓଡ଼ିଆ ସାହିତ୍ୟ ଯେ କ୍ଷତିଗ୍ରସ୍ତ ହୋଇଛି, ଏଥିରେ ସନ୍ଦେହ ନାହିଁ । ପ୍ରାଣକୃଷ୍ଣ କିନ୍ତୁ ଥିଲେ ଏହି ନିଷ୍ଠାପର ଗୋଷ୍ଠୀର ଲେଖକ ଓ ତାଙ୍କ ରଚନା ସୂକ୍ଷ୍ମ-ସୌନ୍ଦର୍ଯ୍ୟାନୁଭବରେ ଅଭିଷିକ୍ତ ଥିଲା । ତାଙ୍କର ତରୁଣ ବୟସର ରଚନାମାନଙ୍କରେ ଆମେ କେତେଗୁଡ଼ିଏ ସୁଲକ୍ଷଣ ଦେଖିବାକୁ ପାଇଥିଲୁ, ଯାହା ଦେଖାଦେଇଥିଲା ପ୍ରସିଦ୍ଧ ଇଂରେଜ କବି କୀଟ୍‌ସଙ୍କ ଆଦ୍ୟ ରଚନାବଳିରେ । ଠିକ୍ ଯେଉଁ ସମୟକୁ ପ୍ରାଣକୃଷ୍ଣଙ୍କ ଶକ୍ତିସବୁ ପରିପକ୍ୱତା ପାଇଆସୁଥିଲା, ସେହିବେଳେ ଯେ ସେ ହଠାତ୍ ମସ୍ତିଷ୍କବିକୃତିରେ ଆକ୍ରାନ୍ତ ହେଲେ ଓ ଶେଷରେ ସେହି ଅବସ୍ଥାରେ ପ୍ରାଣତ୍ୟାଗ କଲେ, ଏହା ଅତ୍ୟନ୍ତ ମର୍ମନ୍ତୁଦ ଘଟଣା । ପ୍ରାଣକୃଷ୍ଣ ୧୯୫୮ ମସିହାରେ ମାତ୍ର ୪୬ ବର୍ଷ ବୟସରେ ପ୍ରାଣତ୍ୟାଗ କରିଗଲେ ।

ନିଷ୍ଠାବାନ୍ ସାହିତ୍ୟିକଙ୍କ ମଧରେ ଏବକାଳରେ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ନାମ ମଧ ଉଲ୍ଲେଖ ଦାବି କରେ । ନଗରରୁ ବହୁଦୂର ପଲ୍ଲୀମାନଙ୍କରେ ବାସକରୁଥିବା ଏହି ଦରିଦ୍ର ସ୍କୁଲଶିକ୍ଷକ ଯେ ପରିମାଣରେ ସ୍ୱାଗତ ପାଇବାର କଥା, ଉତ୍କଳ ଦେଶରେ ତାହା ସେ ପାଇନାହାନ୍ତି; କାରଣ ସେ ଆସ୍ଫାଳନହୀନ, ସେ 'ମାନବ-ବାଦ' ଛଡ଼ା ହୁଏତ ଅନ୍ୟ କୌଣସି 'ବାଦ'ରେ ବିଶ୍ୱାସ କରନ୍ତି ନାହିଁ ଏବଂ ହୁଏତ ସେ ପ୍ରତିବେଶୀ ଭାଷାରୁ ଚୋରିର କୌଶଳ ଓ ନିର୍ଲଜ୍ଜତା ହାସଲ କରିନାହାନ୍ତି ବୋଲି । କିନ୍ତୁ ସ୍ଲୋଗାନ-ହୀନ ଓ ଦାବିହୀନ ପଲ୍ଲୀବାସୀ ତ୍ରିପାଠୀଙ୍କ ରଚନାରେ ସମାଜର ନିମ୍ନସ୍ତରର ଦୁସ୍ଥ ଜନତା ପାଇଁ ଯେଉଁ

ସମବେଦନା, ଯେପରି ଶିଳ୍ପ-ସୁଷମା ପ୍ରକଟିତ ହୋଇପାରିଛି, ସେପରି ଘଟିନାହିଁ ତଥାକଥିତ 'ଗଣ-କବି'ମାନଙ୍କ ରଚନାରେ । ତ୍ରିପାଠୀଙ୍କ ରଚନାରେ ଆମେ ପ୍ରକୃତ କବିର ଏହି ଲକ୍ଷଣ ଦେଖୁ ଯେ, ତାହା କବିଙ୍କ ନିଜର ଦୁଃଖାଶ୍ରୁରେ ଆର୍ଦ୍ର ହେବା ସାଥେ ସାଥେ, କବିଙ୍କର ଗ୍ରାମ, ପ୍ରତିବେଶୀ, ଦେଶ, ଜାତି ଓ ଶେଷରେ ସମଗ୍ର ମନୁଷ୍ୟଗୋଷ୍ଠୀର ଦୁଃଖରେ ମଧ୍ୟ ବ୍ୟଥିତ । ତାଙ୍କ କଲମରେ 'ମୂଷା ହାଡ଼ି' ଓ 'ପଧାନ ସାହିର ଦାମିଆ-ଝିଅ ନେତ' କେବଳ ଓଡ଼ିଶାର ନୁହେଁ, ପୃଥିବୀର ଯେକୌଣସି ପ୍ରାନ୍ତର ଦୁସ୍ଥ ଜନସଙ୍ଘର ପ୍ରତୀକରୂପେ ଦଣ୍ଡାୟମାନ । ତ୍ରିପାଠୀ ତାଙ୍କର ଚାରିଆଡ଼େ ଘେରିରହିଥିବା ପ୍ରକୃତି ଓ ମନୁଷ୍ୟ ସମ୍ପର୍କରେ-ହିଁ କୁତୂହଳୀ ଏବଂ ସେହିଥିରୁ ସେ ପାଇଥାଆନ୍ତି ଯଥେଷ୍ଟ କାବ୍ୟ-ପ୍ରେରଣା, ଯେପରି ପାଇଥାଏ ପ୍ରକୃତ କବିପ୍ରତିଭା ସକଳ ଯୁଗ ଓ ସକଳ ଦେଶରେ । ପ୍ରକୃତ କବି-ପ୍ରତିଭା ନିଜ ଦେଶ ଓ ମାଟିକି ଛାଡ଼ି ଦୂରଦୂରାନ୍ତ ଦେଶ, ମାଟି, ଜାତି ପାଖକୁ ଧାଇଁନଥାଏ ପ୍ରେରଣା ଓ କାବ୍ୟ-ବସ୍ତୁ ସଂଗ୍ରହ ପାଇଁ । ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଆମେ କେବଳ ତ୍ରିପାଠୀଙ୍କ କବିତାରେହିଁ ପଲ୍ଲୀ-ଉତ୍କଳର ବାସ୍ତବ ମନୋରମ ଚିତ୍ର ପାଇଥାଉଁ ଏବଂ ପାଇଥାଉଁ ମଧ୍ୟ ସେହି ମନୋରମ ପରିବେଶ ଭିତରେ ମାନବାତ୍ମାର ହାହାକାର । ତ୍ରିପାଠୀ, ମାନବିକ ବ୍ୟଥାର କବି ଯେପରି, ସେହିପରି ସେ ମଧ୍ୟ କବି ଉତ୍କଳୀୟ ଜାତୀୟତାର (ଆହୂତି) ଓ ବିପ୍ଳବର (ଶଙ୍ଖ) । ସାଂପ୍ରତିକ ଓଡ଼ିଆ ସାହିତ୍ୟରେ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଦଢ଼ଚିତ୍ତ, ନିରବଚ୍ଛିନ୍ନ କାବ୍ୟସେବା ଅସାଧାରଣ । ସେ ପ୍ରଚାରଶୀଳ ନୁହନ୍ତି ଏବଂ ତାଙ୍କର ଆନୁଗତ୍ୟ କୌଣସି ଦଳ, ବାଦ, ଗୋଷ୍ଠୀ, ସ୍ଲୋଗାନ ବା ଲେବୁଲ୍ ପ୍ରତି ନଯାଇ, ସ୍ଥିର ରହିଛି ନିଜର ଅନ୍ତଃସ୍ଥଳର ନିର୍ଦ୍ଦେଶ ପ୍ରତି । ସେହି ନିର୍ଦ୍ଦେଶ ଅନୁଯାୟୀ, ଜୀବନରେ ସେ ଯେଉଁ ସତ୍ୟ ଦେଖିପାରିଛନ୍ତି, ତାକୁହିଁ ସେ ପ୍ରକାଶ କରିବାକୁ ଚେଷ୍ଟାକରିଆସିଛନ୍ତି କବିର ସ୍ୱାଭାବିକ ଆବେଗ ସହିତ ।

ସମସାମୟିକ ଉତ୍କଳ ସାହିତ୍ୟର ନାରୀ ଲେଖିକାମାନଙ୍କ ଭିତରେ ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀ କିଛିକାଳ ପ୍ରଚୁର-ପରିମାଣ କବିତା ସୃଷ୍ଟିକରି ହଠାତ୍ ବନ୍ଦହୋଇଯାଇଛନ୍ତି; କିନ୍ତୁ ତାଙ୍କର ପ୍ରତ୍ୟେକଟି କବିତା ଅତ୍ୟନ୍ତ ସୁଖପାଠ୍ୟ; ଶ୍ରୁତିସୁଖକର ଓ କୋମଳ-ଗୁଣାନ୍ୱିତ । ତାଙ୍କର ପ୍ରକାଶନର ସାବଲୀଳତା ଅସାଧାରଣ । ତାଙ୍କ କବିତାର ଚରଣଗୁଡ଼ିକ ସ୍ୱଚ୍ଛନ୍ଦଗତିସମ୍ପନ୍ନ, ପଦଗୁଡ଼ିକ ଅକୁଣ୍ଠ ଭାବରେ ଅଭିବ୍ୟକ୍ତ । ସେମାନଙ୍କର ସମାହାରରେ ରହିଥାଏ ଏକ ସୁଷମ, ସମଞ୍ଜସ, ସୁମଞ୍ଜୁଳ ଗତି ଓ ପରିବେଶ । ଯାହାହେଉ, ଏହି ନାରୀକବିଙ୍କ ରଚନାବଳିରେ ନାରୀଜନସୁଲଭ ଏହି କୋମଳ, ସାବଲୀଳ ସ୍ପର୍ଶ ଛଡ଼ା ଯେ ଅନ୍ୟ କୌଣସି ନାରୀଗୁଣ ନାହିଁ, ତାହାହିଁ ପରିତାପର କଥା । ତାଙ୍କ କବିତା ନାରୀଚିତ୍ତ ଓ ଅନ୍ତରର ସ୍ୱତନ୍ତ୍ର ସମସ୍ୟା ଦେଖାଇଦେବାକୁ ଭୟକରିଛି ଯେପରି । ଏହି କବିତାଗୁଡ଼ିକର କବି-ଭାବରେ ଯଦି ଜଣେ ପୁରୁଷର ନାମ ଦେଖା ଦେଇଥାଆନ୍ତା, ତେବେ ବିଶେଷ ଅସଙ୍ଗତି ଧରାପଡ଼ିଥାନ୍ତା ବୋଲି କହିହେବନି । ତେଣୁ ମୋଟଉପରେ ବିଦ୍ୟୁତ୍‌ପ୍ରଭାଙ୍କ ରଚନାକୁ ଉଚ୍ଚ କବିତା ନକହି, ଆମେ ଉଚ୍ଚଶ୍ରେଣୀର ଉପଭୋଗ୍ୟ ପଦ୍ୟହିଁ କହିପାରୁ ।

ଅନ୍ୟପକ୍ଷରେ ଶ୍ରୀମତୀ ମନୋରମା ମହାପାତ୍ରଙ୍କ ରଚନାରେ ବିଦ୍ୟୁତ୍‌ପ୍ରଭାଙ୍କ ଶିଳ୍ପ-କୌଶଳ ନାହିଁ ସତ; କିନ୍ତୁ ଆମେ ସେଥିରେ ନାରୀଚିତ୍ତର ସ୍ୱତନ୍ତ୍ର ସ୍ପର୍ଶ ପାଉଁ । ଶ୍ରୀମତୀ ତୁଳସୀଙ୍କ କବିତା ମଧ୍ୟ ଚିନ୍ତକର ଲେଖା – ନାରୀ-ବ୍ୟକ୍ତିତ୍ୱର ଛାପ ସେଥିରେ ନାହିଁ । ବିଦ୍ୟୁତ୍‌ପ୍ରଭାଙ୍କ ଲେଖନୀର କମନୀୟତା ନ ଥିଲେହେଁ, ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତିଙ୍କ ରଚନା ଅବଶ୍ୟ ଏକାନ୍ତ ଭାବରେ ପୌରୁଷର ବା ପାରୁଷ୍ୟରେ ଦୂଷିତ ବୋଲି କହିହେବନି ।

ରୁଗ୍‌ଣ, ଦୀନ ଏବଂ ସଂସାର ଓ ସମାଜଦ୍ୱାରା ଅବହେଳିତ ରବୀନ୍ଦ୍ରନାଥ ସିଂହ, ସାଂପ୍ରତିକ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ବିଦ୍ରୋହୀ ବୁଦ୍ଧିଜୀବୀର ଏକ ଅନୁପମ ପ୍ରତୀକରୂପେ ଦଣ୍ଡାୟମାନ । ଶ୍ରୀ ସିଂହ ଏପର୍ଯ୍ୟନ୍ତ ଯାହା କିଛି ଲେଖିଛନ୍ତି, ତାହାର ପ୍ରତ୍ୟେକଟିରେ ଫୁଟିଉଠିଛି ବେସାଲିସୀ ବିଦ୍ରୋହ । ଏ ହେଲା ଦ୍ୱିତୀୟ-ବିଶ୍ୱ-ଯୁଦ୍ଧ ପରେ ଇଂଲଣ୍ଡର ସାହିତ୍ୟ-କ୍ଷେତ୍ରରେ ଦେଖାଦେଇଥିବା ତଥାକଥିତ କ୍ରୁଦ୍ଧ ତରୁଣ (angry young man)ର ଭାଷା ମାତ୍ର । ଚିରସ୍ଥାୟୀ ସୃଷ୍ଟି ଏପର୍ଯ୍ୟନ୍ତ ଦେଖାଦେଇନି ହୁଏତ ପରେ ଆସିବ ।

**ନୋଟ୍** – ଇଂରାଜୀ ସଂସ୍କରଣରେ ଏତିକିମାତ୍ର ଲେଖାଥିଲା । ଇତିମଧ୍ୟରେ ରବୀନ୍ଦ୍ରନାଥ ସିଂହଙ୍କର ଅନେକ କବିତା ପୁସ୍ତକ ପ୍ରକାଶିତ ହେଲାଣି । ସେଥିରୁ ଅଧିକାଂଶ ଆଣି ପଢ଼ିଲି; କିନ୍ତୁ ଦୁଃଖର ସହିତ କହିବାକୁ ପଡୁଛି ଯେ, ପ୍ରାୟ ଦଶବର୍ଷ ତଳର ଉପର୍ଯ୍ୟୁକ୍ତ ମତ ଆଜି ପରିବର୍ତ୍ତନ କରିବାର କୌଣସି କାରଣ ଦେଖୁନାହିଁ । ଇଂରାଜୀ ସଂସ୍କରଣରେ ବ୍ୟବହାର କରାଯାଇଥିବା angry young man ବିଶେଷଣଟି ସିଂହଙ୍କ ପକ୍ଷରେ ମୋଟଉପରେ ଆପ୍ରୋପ୍ରିଯେଟ୍ (ଯଥାଯୋଗ୍ୟ) ହୋଇଥିବାରୁ ବୋଧହୁଏ, ସିଂହଙ୍କର ପର-ପ୍ରକାଶିତ ପୁସ୍ତକସବୁର ଭୂମିକାମାନଙ୍କରେ ଉତ୍କଳର ଦୁଇଜଣ ପ୍ରତିଷ୍ଠିତ ଲେଖକ ତାକୁ ଧୋଇବାକୁ ଯାଇ, ବରଂ ଦୃଢ଼ ପ୍ରତିଷ୍ଠିତ କରିଯାଇଛନ୍ତି କହିଲେ ଚଳେ । ଶ୍ରୀ ସଚ୍ଚି ରାଉତରାୟ କି ଉଦ୍ଦେଶ୍ୟରେ ଲେଖିଥିଲେ କେଜାଣି, ତାଙ୍କର ପ୍ରତ୍ୟେକଟି ବାକ୍ୟ ଲେଖକର ପ୍ରାୟ ଦଶବର୍ଷ ତଳର ମତକୁ ଅଧିକ ପରିପୋଷିତ କରୁଛି କି ନାହିଁ ପାଠକେ ବିଚାରିବେ । ସେ ଲେଖିଛନ୍ତି –"କବି ରବୀନ୍ଦ୍ରନାଥ ସିଂହଙ୍କୁ ଖାଲି ଜଣେ 'କ୍ରୋଧୀ ତରୁଣ' କହିଲେ ସବୁକଥା କୁହାଗଲା ନାହିଁ । କ୍ରୋଧହିଁ ତାଙ୍କର ଜୀବିକା, ଘୃଣାହିଁ ତାଙ୍କର ଏକମାତ୍ର ଉପଜୀବ୍ୟ ବିଷୟ । ତାଙ୍କର ଏହି ଅପ୍ରୀତିକର ପରିଚୟହିଁ ତାଙ୍କର କାବ୍ୟଧର୍ମର ଏକମାତ୍ର ପରିଚୟ ।"

ଘୃଣା, କ୍ରୋଧ, ଦ୍ୱେଷ ଉପରେ ଠିଆହୋଇ କୌଣସି ସୂକ୍ଷ୍ମ-ଶିଳ୍ପ ବା କଳା ଦୂରେଥାଉ, କୌଣସି ବ୍ୟକ୍ତି ବା ଗୋଷ୍ଠୀଜୀବନ ମଧ୍ୟ ତିଷ୍ଠି ନପାରେ; କିନ୍ତୁ ଶ୍ରୀ ସିଂହଙ୍କ ରଚନାରେ କେବଳ ସେୟା ହିଁ ଦେଖାଦେଇଛି ଓ ଏବେ ବି ଦେଖାଯାଉଛି । କ୍ରୋଧ ବା ଘୃଣା ଏକ ଜୈବ ଗୁଣ; କିନ୍ତୁ ସକଳ ଜୈବଗୁଣ, କାବ୍ୟ ଓ କଳାସ୍ତରକୁ ଆସିଲାବେଳକୁ sublimated ବା ମହତ୍ତ୍ୱପ୍ରାପ୍ତ ହୋଇଯାଇଥିବାର ଆମେ ଦେଖୁ । ଦୁଷ୍ମନ୍ତ ଓ ଶକୁନ୍ତଳା ଯାହା କଲେ, ତାହା କୋଟି-ଜୀବନର ଦୈନନ୍ଦିନ କର୍ମ; କିନ୍ତୁ 'ଶକୁନ୍ତଳା'ରେ ଆମେ ସେହି କର୍ମକୁହିଁ ଭୁଲିଯାଇ, ଏକ ସୂକ୍ଷ୍ମ ଓ ଅପୂର୍ବ ବର୍ଣ୍ଣ-ସୌରଭମୟ ଜଗତରେ ପ୍ରବେଶ କରୁ ।

ତାହାହିଁ କଳାର କର୍ମ – ଜୀବନର ଘୃଣିତ କଞ୍ଚାମାଲରୁ ପରମ ଉପଭୋଗ୍ୟ ରସ ବା ସୌରଭ ପ୍ରକଟିତ କରିବା । ଧର୍ମ ଓ ସାହିତ୍ୟରେ, କ୍ରୋଧ righteous anger ବା ନ୍ୟାୟପ୍ରେରିତ କ୍ରୋଧରୂପେହିଁ ଦେଖା ଦେଇଥାଏ ଏବଂ ସେହି କାରଣରୁ ସମ୍ମାନିତ ହୋଇଥାଏ; କିନ୍ତୁ ସିଂହଙ୍କର ଏସବୁ ଗ୍ରନ୍ଥପର୍ଯ୍ୟାୟରେ ପ୍ରକାଶପାଇଥିବା କ୍ରୋଧ କାହିଁକି ଓ କାହାକୁ ଲକ୍ଷ୍ୟ କରି ? 'ବିଦୀର୍ଣ୍ଣ' ନାମକ ପୁସ୍ତକରେ ଶ୍ରୀ ସିଂହ ନିଜର ଜୀବନ-କାହାଣୀ ପ୍ରକାଶ କରିଛନ୍ତି । ତାହା ବିଶେଷ ଦୟନୀୟ; କିନ୍ତୁ ସେଥିରେ ମହନୀୟ ବା କମନୀୟ ବା ବରଣୀୟ କ'ଣ ଅଛି ? ତରୁଣ ମୋହନ ଦାସ ମିଛ କହିଛି, ଚୋରି କରିଛି, ଲୁଚେଇ ଅପକର୍ମ କରିଛି ଓ ସ୍ତ୍ରୈଣ ହୋଇଛି; କିନ୍ତୁ ପରକାଳର 'ମହାତ୍ମା'ର ବୀଜ ମଧ୍ୟ ସେହିଠାରେ ବୁଣାହୋଇଥିବାରୁ ସେ କାହାଣୀ ଏତେ ମହତ୍ ହୋଇଉଠିଛି । ଦୈନ୍ୟ ଓ ଦୁର୍ଦ୍ଦଶା ଇହଜୀବନ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ବୁଦ୍ଧ ଯେ ଆବିଷ୍କାର କଲେ ଜୀବନମାତ୍ରେହିଁ ଦୁଃଖ, ଏ ମହାନ୍ ସତ୍ୟର ପ୍ରମାଣ ଆମ ପ୍ରତ୍ୟେକର ବ୍ୟକ୍ତିଗତ ଜୀବନ । ବରଂ ଧନୀ-ମାତ୍ରେଇ ଦୁଃଖୀ ଥିବାର ଦେଖାଯାଏ । ତେଣୁ ଦୈନ୍ୟ ବଡ଼ କଥା ନୁହେଁ ଏବଂ ତାକୁଇ ଦେଖେଇ ଜଗତଠୁ ସମ୍ମାନ ଆଦାୟ କରିବାକୁ ଯିବା ଏକ ଉପହାସ୍ୟ ପ୍ରୟାସ । ବଡ଼ କଥା ହେଉଛି, ଦାରିଦ୍ର୍ୟ, କୁଅଭ୍ୟାସ ଓ ମନ୍ଦ ପରିବେଶ ଇତ୍ୟାଦି ସହିତ ସଂଗ୍ରାମ କରି ଉପରକୁ ଉଠିବା, ଯେପରି ଉଠିଛି ବିଭ୍ରାନ୍ତ ମୋହନ ଦାସ ଭିତରୁ ମହାତ୍ମା ଗାନ୍ଧି ।

ପୁଣି 'ବିଦ୍ରୋହ' କହିଲେ, ବିଶେଷତଃ ଶିଳ୍ପ ବା କାବ୍ୟକ୍ଷେତ୍ରରେ, କେବଳ ମାର୍, ଧର୍, ହାଣ୍, କାଟ୍, ଧ୍ୱଂସକର, ଚୂର୍‌ମାର୍ କର ଇତ୍ୟାଦି ଶବ୍ଦଗୁଡ଼ିକର ବ୍ୟବହାର ବୋଲି ହିଁ ବୁଝାଯିବ କି ? କଳା-ଜଗତରେ ବିଦ୍ରୋହର ଯଥାର୍ଥ ଅର୍ଥ ହେଉଛି, ଗତାନୁଗତିକତାକୁ ପରିତ୍ୟାଗ କରି ଏକ ସ୍ୱକୀୟ ପନ୍ଥା ସୃଷ୍ଟି କରିବା – ଦୃଷ୍ଟାନ୍ତ, ଆମେରିକାନ୍ କବି ହୁଇଟ୍‌ମାନ୍ । ଏ ଅର୍ଥରେ ପ୍ରତ୍ୟେକ ବିଶିଷ୍ଟ ବା ପ୍ରକୃତ କବି ମଧ୍ୟ ଅଳ୍ପେ ବହୁତେ ବିଦ୍ରୋହୀ । ତା' ନହେଲେ 'ବୈଶିଷ୍ଟ୍ୟ' ଆସିବ କୁଆଡୁ ? ସେହି ଅର୍ଥରେ ଓଡ଼ିଆ ସାହିତ୍ୟରେ ବିଜୟୀ ରାଧାନାଥ ଏକ ବିରାଟ ବିଦ୍ରୋହୀ । 'ଦରବାର' ଲେଖି ରାଧାନାଥ ପ୍ରକୃତ ପ୍ରତିଭାର ସହଜାତ ଲକ୍ଷଣ, righteous anger ବା ନ୍ୟାୟ-ପ୍ରେରିତ କ୍ରୋଧ କ'ଣ, ତାହା ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମେ ଦେଖାଇଗଲେ । ଏହି ଅର୍ଥରେ ବଂଶୀଧର ଯେନା ଓ ସେନାପତି ଅସାଧାରଣ ବିଦ୍ରୋହୀ ସାହିତ୍ୟିକ । ଧନରେ ସ୍ୱଚ୍ଛଳ ଇଂରେଜ କବି ସେଲୀ, ଶିଳ୍ପ ଓ ସମାଜ-ସଂସ୍କାର ଉଭୟ ଦିଗରୁ ବିଦ୍ରୋହୀ ଥିଲେ; କିନ୍ତୁ ନିଜକୁ ଭଲ ଖାଇବାକୁ-ପିନ୍ଧିବାକୁ ନମିଳିଲା ବୋଲି, ସମଗ୍ର ମାନବଜାତି, ସମାଜ ଓ ସଂସାରକୁ ଧ୍ୱଂସ କରିବାର ଚେଷ୍ଟା ଚିନ୍ତାର ଶିଶୁତ୍ୱହିଁ ସୂଚିତ କରେ । ମହାକବି ହୋମର୍ ଭିଖ ମାଗି ପେଟ ପୋଷୁଥିଲେ । ସେକସ୍‌ପିଅର୍ ନିଜ ଜୀବିକା ପାଇଁ ଲଣ୍ଡନ ସହରର ଥିଏଟର୍-ଦେଖାଳିଙ୍କ ଘୋଡ଼ା ଦିନାକେତେ ଜଗିଥିଲେ । ଆମର ଭୀମ ଭୋଇ ଓ ମେହେର ଅନ୍ତତଃ ଶ୍ରୀ ସିଂହଙ୍କଠାରୁ ଅଧିକ ଦାରିଦ୍ର୍ୟ ଜାଣିଥିଲେ; କିନ୍ତୁ ତା ସତ୍ତ୍ୱେ ଜଣେ ଲେଖିଗଲେ, 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ' ଏବଂ ଆଉ ଜଣେ ଲେଖିଗଲେ,

'ବିଶ୍ୱ ଦେଖ ମଧୁମୟ ରେ ଜୀବନ, ବିଶ୍ୱ ଦେଖ ମଧୁମୟ' । ଏ ଦୃଶ୍ୟର ମହନୀୟତାରୁ ଆମର କି କିଛି ହେଲେ ଶିଖିବାର ନାହିଁ ? ନିଜର ଦୈନ୍ୟ-ଦୁର୍ଦ୍ଦଶା-ପ୍ରଚାର ଓ ତଜ୍ଜନିତ ବ୍ୟର୍ଥଭାବ କେବଳ ଯେଉଁ କବିତାର ଏକମାତ୍ର ଉପାଦାନ, ସେ କବିତା ଗୋଟାଏ ଜାତୀୟ ସାହିତ୍ୟକୁ କିପରି ସମୃଦ୍ଧ କରିବ ?

'ବିଦୀର୍ଣ୍ଣ'ରେ ପ୍ରକାଶିତ ଆତ୍ମ-ପ୍ରକାଶରେ ଶ୍ରୀ ସିଂହ, କବିତାରେ rhyme ଓ rhythmର ନିଶ୍ଚିତ ଆବଶ୍ୟକତା ଉପରେ ଜୋର୍ ଦେଇଛନ୍ତି । ଅର୍ଥାତ୍, ଏ ଗୁଣ ତାଙ୍କ କବିତାରେ ଯେପରି ଅଛି, ସମଗ୍ର ଉତ୍କଳ ସାହିତ୍ୟରେ ହୁଏତ ସେପରି କାହିଁ ନାହିଁ ଆଉ; କିନ୍ତୁ ଏ କ୍ଷେତ୍ରରେ ମଧ ଶ୍ରୀ ସିଂହଙ୍କ କବିତା ପରମ୍ପରାହୀନ ମୌଳିକ ବୈଶିଷ୍ଟ୍ୟ ବା ଅଭିନବତ୍ୱ ବା ଚମତ୍କାରିତ୍ୱ ଦାବି କରିବାର କୌଣସି ଦୃଢ଼ ଯୁକ୍ତି ଅଛି ବୋଲି ମନେ-ହେଲାନି । ଏଥିରେ ନାହିଁ ମେହେରଙ୍କ classical ଯତିପାତ ଓ ପଦ-ଯୋଜନା, ନାହିଁ ଗଡ଼ନାୟକଙ୍କ ଛାନ୍ଦସିକ କୌଶଳ, ନାହିଁ ମଧ ଗୋଦାବରୀଶ ମହାପାତ୍ରଙ୍କ ଲେଖନୀର ସାବଲୀଳତା । ବରଂ ପାଠକ ଯଦି ଓଡ଼ିଆ ସାହିତ୍ୟ ଓ ବଙ୍ଗ ସାହିତ୍ୟର କାବ୍ୟଧାରା ସମ୍ପର୍କରେ ବିଦଗ୍ଧ ହୋଇଥିବେ, ତେବେ ଶ୍ରୀ ସିଂହଙ୍କ କବିତାଗୁଡ଼ିକ ପଢୁ ପଢୁ ହୁଏତ ତାଙ୍କର ମନେହେବ ସେ ଯେପରି ରାଧାମୋହନ ଗଡ଼ନାୟକ ଓ ନଜରୁଲ୍ ଇସ୍‌ଲାମଙ୍କୁ ମିଶାଇ ପଢୁଛନ୍ତି । ଅନ୍ତତଃ ଏହି ଲେଖକର ସେହିପରି ପ୍ରତ୍ୟୟ ହେଲା । ସେସବୁର କୌଣସି ଏକାନ୍ତ ବୈଶିଷ୍ଟ୍ୟ ବା ଅଭିନବତ୍ୱ ବା ଧୂରନ୍ଧରତ୍ୱ ଦାବିର କୌଣସି ଯଥାର୍ଥତା ଅଛି ବୋଲି ମନେହେଉନି । ଅଥଚ –

''ପ୍ରତିଭାର ଭାରେ ଅବନତ ଶିର'' (ଅବତାର, ଭ୍ରୂକୁଟି)

ଏହି କବି ଲେଖି ମଧ ପାରନ୍ତି –

''ନିରୁତ୍ତାପ ଯେ କବିତା ଗୀତ ସବୁ ଲେଖିଥିଲେ
ସାମ୍ରାଜ୍ୟର ପଦଲେହୀ କବି,
ଯା' ଭିତରେ ନାହିଁ ଥିଲା ପ୍ରଭାତର ସାମାନ୍ୟ ଭୈରବୀ !'' (ପାଦଟୀକା)

ଅର୍ଥାତ୍, ବନ୍ଦେମାତରମ୍‌ର କବି ବଙ୍କିମଚନ୍ଦ୍ର, ଜନ-ଗଣ-ମନର କବି ରବୀନ୍ଦ୍ରନାଥ ଓ ଶିବାଜୀଙ୍କ ଉତ୍ସାହବାଣୀର ଲେଖକ ରାଧାନାଥ ଇତ୍ୟାଦି ଥିଲେ 'ସାମ୍ରାଜ୍ୟର ପଦଲେହୀ କବି' ମାତ୍ର ଓ ସେମାନଙ୍କର ଲେଖାରେ ନଥିଲା ଆଦୌ କିଛି ହେଲେ 'ଉତ୍ତାପ' । ଏସବୁ ଗୁଣ ପ୍ରଥମେ ଦେଖାଦେଇଛି, ସମଗ୍ର ଭାରତୀୟ ସାହିତ୍ୟରେ ବୋଧହୁଏ ସିଂହଙ୍କ କବିତାରେ କେବଳ !

ଯାହାହେଉ ଏତିକି ସାନ୍ତ୍ୱନା ଯେ, ସିଂହଙ୍କ କବିତା-ଗ୍ରନ୍ଥଗୁଡ଼ିକରୁହିଁ ଦେଖୁଛି ଯେ, ଓଡ଼ିଶା ଦେଶରେ ମଧ ତାଙ୍କର ଅନେକ ବନ୍ଧୁ ଓ ସମାଲୋଚକ ତାଙ୍କୁ ଏକଥା ଚେତାଇ-ସାରିଲେଣି ଯେ, ସବୁବେଳେ ଘୃଣା-ଦ୍ୱେଷ-ଉଦ୍‌ଗିରଣ କରିବା ଭଲ କଥା ନୁହେଁ ଓ କେବଳ ଆତ୍ମ-ପ୍ରଚାର ଉତ୍କୃଷ୍ଟ କଳା-ସୃଷ୍ଟି ମଧ ନୁହେଁ । ନିରତିଶୟ-ପ୍ରତିଭା-ସଚେତନ କବି-ବନ୍ଧୁମାନଙ୍କର ଏହି ସଦୁପଦେଶ ଏବେ ବି ଶୁଣିଲେ ଭଲ ହୁଅନ୍ତା ବୋଲି ମନେହୁଏ ।

ନିଜ ଦେଇ କେବଳ ନିଜର ପ୍ରକାଶ କଳା ନୁହେଁ, ନିଜ ଦେଇ ନିଖିଳର ପ୍ରକାଶ ଯେଉଁଠି ଘଟେ, ତାହାହିଁ ଶ୍ରେଷ୍ଠ କଳା । ସେହି ଯୋଗୁହିଁ, ଯାହା ହୁଏତ ତରୁଣ କାଳିଦାସଙ୍କର ନିଜର ବିରହାନୁଭୂତି ଥିଲା, ତାହା ହୋଇଉଠିଛି ଭାରତୀୟ ସାହିତ୍ୟର ଉଜ୍ଜ୍ୱଳ ରତ୍ନ 'ମେଘଦୂତ' । ଯାହା ଆମର କେବଳ ଜାନ୍ତବ ପ୍ରେରଣା, ତାହା କଳାରେ ଦେଖାଦିଏ ଦୈବତଶ୍ରୀ-ଭୂଷିତ ହୋଇ । କୋଣାର୍କଗାତ୍ରରେ ସେହି ଅଘଟନ ଘଟିଥିବାରୁହିଁ ବିଶ୍ୱର ସର୍ବପ୍ରାନ୍ତରୁ ଦର୍ଶକ ଧାଉଁଛନ୍ତି ସେଠିକି । ନିଜର ମଇଳା ଶେଯ-କନ୍ଥା-ମସିଣା ଆଦି ଦାଣ୍ଡରେ ଝାଡ଼ିବାଟାକୁ ସାହିତ୍ୟିକ ମର୍ଯ୍ୟାଦା ଦିଆଯାଇ ପାରିବ କି ନା, ନିଜେ କବି ସିଂହ, ତାଙ୍କର ପାଠକବର୍ଗ ଓ ଉତ୍କଳଦେଶର ସାହିତ୍ୟିକ-ସମୀକ୍ଷକ-ବର୍ଗ ଗଭୀର ଭାବରେ ପ୍ରଣିଧାନ କରିବା ଉଚିତ ।

ଆହୁରି ଅନେକ ତରୁଣ ଲେଖକ କୌଣସି ପ୍ରକାର ସ୍ଲୋଗାନ୍ ବା ଗତରେ ବିଶ୍ୱାସ କରୁନଥିଲେ ମଧ୍ୟ 'ଆଧୁନିକ କବିତା'ର ଛନ୍ଦ-ଯତି-ହୀନ ଆଙ୍ଗିକକୁ ଗ୍ରହଣ କରିନେଇଛନ୍ତି; କାରଣ 'କବି' ହେବାପାଇଁ ଏପରି ସହଜ-ସାଧ୍ୟ ପନ୍ଥା ଓ ସହଜ-ବ୍ୟବହାର୍ଯ୍ୟ-ଯନ୍ତ୍ର ଇତିହାସରେ ଦେଖାନଥିଲା କେବେ । ଫଳରେ 'କବି' ଏବେ ବର୍ଷାଦିନେ ଛତୁ ଫୁଟିଲାପରି ଫୁଟିଉଠୁଛନ୍ତି । ଯାହା ଗାରେଇବ ତାହା ହେଲା ଏବେ କେବଳ କବିତା ନୁହେଁ, ଶ୍ରେଷ୍ଠ କବିତ୍ୱ ମଧ୍ୟ । ବହୁ ନାମ ମଧ୍ୟରୁ ତେଣୁ କେବଳ କେତେକମାତ୍ର ଏଠାରେ ଉଲ୍ଲେଖ କରୁଛି ।* ସେମାନେ ହେଉଛନ୍ତି – ସର୍ବଶ୍ରୀ ଜ୍ଞାନୀନ୍ଦ୍ର ବର୍ମା, ଚିନ୍ତାମଣି ବେହେରା, ରମାକାନ୍ତ ରଥ, ବିନୋଦ ରାଉତରାୟ, ଦୁର୍ଗାମାଧବ ମିଶ୍ର, ଦୁର୍ଗାଚରଣ ପରିଡ଼ା, ବ୍ରଜନାଥ ରଥ, ମନୋଜ ଦାସ, ଯଦୁନାଥ ଦାଶ ମହାପାତ୍ର । ଆଧୁନିକ ଆଙ୍ଗିକ ଭିତରେ ମଧ୍ୟ ଦୁର୍ଗାମାଧବ ମିଶ୍ର, ରମାକାନ୍ତ ରଥ, ବିନୋଦ ରାଉ ରାୟ, ଚିନ୍ତାମଣି ବେହେରା ଓ ଜ୍ଞାନୀନ୍ଦ୍ର ବର୍ମାଙ୍କ କବିତାରେ ବ୍ୟକ୍ତିଗତ ଅନୁଭବ ଫୁଟି ଠିବାର ଦେଖୁଁ । ଅଧିକାଂଶ ଆଧୁନିକ କବିତା ନୈର୍ବ୍ୟକ୍ତିକ ଅର୍ଥାତ୍ ଯାନ୍ତ୍ରିକ ପରି ମନେହୁଏ । କାରଣ ଅଧିକାଂଶ କେବଳ ଅନୁକରଣ ମାତ୍ର; କୌଣସି ଉଦାର ମହାନ୍ ଅନୁଭବରୁ ସେମାନଙ୍କର ଜନ୍ମ ଘଟୁନି । ଜ୍ଞାନୀନ୍ଦ୍ର ବର୍ମାଙ୍କ ବ୍ୟଙ୍ଗ, ଚିନ୍ତାମଣି ବେହେରା ଓ ବିନୋଦ ରାଉତରାୟଙ୍କର ପ୍ରଣୟ, ଦୁର୍ଗାମାଧବ ମିଶ୍ରଙ୍କ ଦୈନନ୍ଦିନ ଗୃହସ୍ଥ ଜୀବନର ଛୋଟ ଛୋଟ ଘଟଣାବଳି ଏବଂ ରମାକାନ୍ତ ରଥଙ୍କର ବାହାର ଘଟଣାମାନଙ୍କ ପ୍ରତି ବୌଦ୍ଧିକ ପ୍ରତିକ୍ରିୟା ଯେପରି ଭାବରେ ଫୁଟିଉଠୁଛି, ସେଥିରୁ ମନେହେଉଛି, ଆଧୁନିକ କବିତାର

* ଇଂରାଜୀ ସଂସ୍କରଣରେ ଏହି ନାମ-ତାଲିକା ଦେଖି ଏକାଧିକ ବାହାରର ସମାଲୋଚକ ନାସିକା-କୁଞ୍ଚନ କରିଛନ୍ତି । କାରଣ, ଜଣେ ବମ୍ୱେ ବା ମହୀଶୂରର ପାଠକ ନିକଟରେ ଏଗୁଡ଼ିକ ସଂପୂର୍ଣ୍ଣ ଅର୍ଥହୀନ ନୁହେଁ କି ? ପୁଣି ଏକ 'ସାହିତ୍ୟ'ର ଇତିହାସ ଯେ ଏକ ନାମମାଳା ମାତ୍ର ହେବ, ତାହା କେବଳ ଏହି ଓଡ଼ିଶା ଦେଶର ପଣ୍ଡିତମ୍ମନ୍ୟ କେତେକ ଅଧ୍ୟାପକଙ୍କ ବିଚାର । ତେଣୁ 'ଦେଶାଚାର' ଅନୁରୋଧରେହିଁ ଏପରି ଏକ ତାଲିକା ସମସାମୟିକ ଚିତ୍ରରେ ଦେଇଥିଲି, ମୋର ରୁଚି ବିରୁଦ୍ଧରେ । ଏକ ସାହିତ୍ୟର ଇତିହାସରେ ବିଚାରିତ ହେବାର ଯାଥାର୍ଥ୍ୟ ଏମାନଙ୍କ ଭିତରୁ କାହାଠି ଅଛି, ତାହା ହୁଏତ ପ୍ରମାଣିତ ହେବ ଆଜିଠୁ ପଚାଶ ବର୍ଷ ପରେ । ଇତିମଧ୍ୟରେହିଁ ଏମାନଙ୍କ ଭିତରୁ ଅନେକଙ୍କ ଲେଖନୀ ନୀରବ ହୋଇସାରିଲାଣି । ପ୍ରକୃତ କବି-ପ୍ରତିଭାର ଏହା ଲକ୍ଷଣ ନୁହେଁ ।

ଆଙ୍ଗିକ ହୁଏତ ବିଶେଷ ବିଶେଷ ଲକ୍ଷ୍ୟ ସାଧନ ପାଇଁ ଅପ୍ରଶସ୍ତ ନୁହେଁ । ବିଶ୍ୱସାହିତ୍ୟରେ ଲିରିକ୍, ଏପିକ୍, ସନେଟ୍, ସଙ୍ଗୀତ, ବାଲାଡ୍ ଇତ୍ୟାଦି ଭିନ୍ନ ଭିନ୍ନ ଯୁଗରେ ଉଦ୍ଭାବିତ ହୋଇଥିଲା, ମାନବର ଚିନ୍ତା, ସ୍ୱପ୍ନ ଓ ଅନୁଭବକୁ ଭିନ୍ନ ଭିନ୍ନ ଯଥାଯୋଗ୍ୟ ରୀତିରେ ପ୍ରକାଶ କରିବାପାଇଁ । ସେହିପରି ଆଧୁନିକ କବିତାର ଆଙ୍ଗିକ ମଧ୍ୟ କୌଣସି କୌଣସି ଲକ୍ଷ୍ୟ ପାଇଁ ପ୍ରଶସ୍ତ ବୋଧହେବ; କିନ୍ତୁ ଗୋଟିଏ ଷ୍ଟାଇଲ୍ ବା ଫର୍ମ ମାତ୍ରକୁ ଅତ୍ୟାଧୁନିକମାନେ ଯେପରି ପୂଜା କରିବାକୁ ବସିଛନ୍ତି ଓ ନିଜର ଅନିପୁଣତା ଓ ଛିନ୍ନଭିନ୍ନ ଚିନ୍ତାଜାଳକୁ ଶ୍ରେଷ୍ଠ ପ୍ରତିଭାର ଚିହ୍ନ ବୋଲି ଟେବୁଲ ବାଡ଼େଇ ପ୍ରତିଷ୍ଠିତ କରିବାକୁ ଯାଉଛନ୍ତି, ମନେହୁଏ, ଲୋକେ ଏତେ ମୂର୍ଖ ହୋଇନାହାନ୍ତି ଯେ ସେହି ପ୍ରତାରଣାକୁ ସେମାନେ ଏତେ ସହଜରେ ଗ୍ରହଣ କରିଯିବେ ।

ଏମାନଙ୍କ ଭିତରେ ଆମେ ଜ୍ଞାନୀନ୍ଦ୍ର ବର୍ମାଙ୍କ କବିତାବଳିରେ ମୌଳିକ ଚିନ୍ତାଶୀଳତାର ବହୁ ପରିଚୟ ପାଉଁ । ଏ ଭିତରେ, ତାଙ୍କ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ ଓ କବିତାସଂଗ୍ରହ ପ୍ରକାଶିତ ହୋଇଛି । ଗ୍ରନ୍ଥାବଳୀଟି (ପ୍ରଥମ ଭାଗ) କୌଣସି ପୂର୍ବତନ ଓଡ଼ିଆ କବିଙ୍କର ପ୍ରତିଧ୍ୱନି-ମୁଖର ବୋଲି ବୋଧହେଲେହେଁ କବିତାବଳିର ବହୁ କବିତା ବିଶେଷଣାତ୍ମକ ଭାବନାରେ ପୂର୍ଣ୍ଣ; କିନ୍ତୁ ବିଚାର୍ଯ୍ୟ ବିଷୟ ଏହି ଯେ, କବିତା କ'ଣ ନିହତ-ହସ୍ତ-ପଦ ପ୍ରବନ୍ଧ ? ବା ସୃଷ୍ଟିରେ ଅଧିକ ମହିମାମୟ କିଏ – ଚିନ୍ତା ନା ଲାବଣ୍ୟ ? ଆମର ଚିତ୍ତଲୋକରେ କପିଳ ମୁନିଙ୍କ ସାଂଖ୍ୟ ଦର୍ଶନ ବା ଅଜନ୍ତାର ପଦ୍ମହସ୍ତ ଅବଲୋକିତେଶ୍ୱର, କିଏ ଗଭୀରତର ରେଖାପାତ କରୁଛି ଓ କାହିଁକି ? ଚିଲିକା ବା ମେଘଦୂତ ପ୍ରବନ୍ଧ କି ? ମୋଟଉପରେ, ଜ୍ଞାନୀନ୍ଦ୍ରଙ୍କ କବିତାଗୁଡ଼ିକରେ ଅକୁତୋଭୟ ଚିନ୍ତା ସେଗୁଡ଼ିକୁ ବୈଶିଷ୍ଟ୍ୟ ଦାନ କରୁଥିଲେହେଁ, ବିଶୁଦ୍ଧ ଶିଳ୍ପ-ବିଚାରରୁ ସେଗୁଡ଼ିକ ଯେ ଦୁର୍ବଳ ହେଉଛନ୍ତି, ଏହା ଦୁଃଖର ବିଷୟ । ସ୍ୱର୍ଗତ ଶିଳ୍ପୀ ବି. ବର୍ମା ଓ କବି ପଦ୍ମଚରଣ ପଟ୍ଟନାୟକଙ୍କ ଦୁର୍ଦ୍ଦଶାମୟ ମୃତ୍ୟୁରେ ହୁଏତ ଜ୍ଞାନୀନ୍ଦ୍ର ହିଁ ଏକମାତ୍ର ଓଡ଼ିଆ କବି ଯେ କି ଆତ୍ମାର ତପ୍ତ ଅଶ୍ରୁ ବର୍ଷଣ କରିଛନ୍ତି । ତାହା ତାଙ୍କର ଦରଦୀ ପ୍ରାଣର ଓ ଉଷ୍ମ ଜାତୀୟତାରହିଁ ପରିଚୟ ଦିଏ । ତାଙ୍କ ଗ୍ରନ୍ଥାବଳୀରେ ନିଜର ବରେଣ୍ୟ ଗ୍ରାମବାସୀ ଓ କୌଟୁମ୍ବିକ ପଲ୍ଲୀକବି ନନ୍ଦକିଶୋର ଓ ଶିଳ୍ପୀ ବର୍ମାଙ୍କୁ ନେଇ ସଂଯୋଜିତ ନାଟିକା ଓଡ଼ିଆ ସାହିତ୍ୟରେ ଅନନ୍ୟ ଏବଂ ତାହା ମଧ୍ୟ ତାଙ୍କ ଗଭୀର ଜାତିପ୍ରାଣତାର ସୂଚକ ।

ଶ୍ରୀ ରମାକାନ୍ତ ରଥଙ୍କର କେତେକ କବିତା 'କେତେଦିନର' ନାମ ଧାରଣ କରି ଇତିମଧ୍ୟରେ ଗ୍ରନ୍ଥାକାରରେ ବାହାରିସାରିଛି । ଇଂରାଜୀ ସଂସ୍କରଣରେ ତାଙ୍କର ଯେଉଁ କେତୋଟି କବିତା ସମସାମୟିକ ପତ୍ରପତ୍ରିକାରେ ପଢ଼ି, ଆଧୁନିକ କବିମାନଙ୍କ ଭିତରେ ତାଙ୍କ ରଚନା ଆପେକ୍ଷିକ ଭାବରେ ସୁବୋଧ ଓ ସୁସଙ୍ଗତ ବୋଲି ମତ ଦେଇଥିଲି, ସେ କେତୋଟି (ଯଥା : ଭୟ, ବାଘାବଲୋକନ) ଏଥିରେ ଅଛି; କିନ୍ତୁ ଏ ଗ୍ରନ୍ଥରେ ନୂଆକରି ଦେଖୁଥିବା ତାଙ୍କର ବହୁ କବିତାର ଅବୋଧତା, ଦୁର୍ବୋଧତା ଓ ଅପବୋଧତା କିଛି କମ୍ ନୁହେଁ । ଶ୍ରୀ ରଥ 'ଆଧୁନିକ କବିତା'ର ମାନିଫେଷ୍ଟୋ ଭାବରେ, ଏହି ଗ୍ରନ୍ଥରେ ଏକ

'ମୁଖବନ୍ଧ' ନଲେଖି, ଏକ 'ପୃଷ୍ଠବନ୍ଧ' ଲେଖିଛନ୍ତି । 'ଆରମ୍ଭଗୁର୍ବୀ କ୍ଷୟିଣୀ କ୍ରମେଣ' ରୀତିରେ ସେ ପ୍ରବନ୍ଧ; କିନ୍ତୁ ଯୁକ୍ତିଯୁକ୍ତ ସିଦ୍ଧାନ୍ତରେ (ଯଦି କିଛି ଥିବାର ସମ୍ଭାବନା ଥିଲା !) ନ ପହଞ୍ଚୁଣୁହିଁ ବାଟ ମଝିରେ ବନ୍ଦହୋଇଯାଇଛି । ସେ ଯାହାହେଉ, ସେହି ପ୍ରବନ୍ଧ ମଝିରେ ସେ ଏହି ନିଷ୍ପତ୍ତି ଦେବାକୁ ଯାଉଛନ୍ତି ଯେ, "ଅପେକ୍ଷାକୃତ ନୂତନ ହେଲେହେଁ ଆମେ ଅଧିକ ସଫଳ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ-ପାଇବା ସ୍ଥଳେ (ଆମର ଆଧୁନିକ ଓଡ଼ିଆରେ), କାବ୍ୟ-କବିତାର ଦାରିଦ୍ର୍ୟ ଶୋଚନୀୟ ।"

ଏତିକି ଆମେ କହୁ – ତଥାସ୍ତୁ । କିନ୍ତୁ ଏହି 'ଶୋଚନୀୟତା' ଆସୁନାହିଁ କି ତଥାକଥିତ 'ଆଧୁନିକ' କବିତାର ଝଞ୍ଜାଯୋଗୁଁ ? ଭଞ୍ଜ-ଦୀନକୃଷ୍ଣ-ବଳଦେବ-ଗୋପାଳକୃଷ୍ଣ-ଭୀମଭୋଇ-ରାଧାନାଥ-ମଧୁସୂଦନ-ନନ୍ଦକିଶୋର-ପଦ୍ମଚରଣଙ୍କ ଦାନସମୃଦ୍ଧ-ଓଡ଼ିଆ କାବ୍ୟ-କବିତାଭଣ୍ଡାରର 'ଦାରିଦ୍ର୍ୟ' କାହିଁକି 'ଶୋଚନୀୟ' ହେବ ଆମେ ବୁଝିପାରୁନୁ ? କିନ୍ତୁ ସେ ଯାହାହେଉ; ଯଦି ଲେଖକ ମନେକରନ୍ତି ଯେ, ଓଡ଼ିଆ ଭାଷାରେ କାବ୍ୟ-କବିତାର 'ଶୋଚନୀୟ ଦାରିଦ୍ର୍ୟ' ଘୁଞ୍ଚେଇପାରେ କେବଳ ତାଙ୍କର ଏହି 'କେତେଦିନର' ପରି ଗ୍ରନ୍ଥ, ତେବେ ଆଶଙ୍କା ହେଉଛି ଯେ, ଏ ମତ କେବଳ ତାଙ୍କରି, ଏ ସମଗ୍ର ଦେଶରେ ଦ୍ୱିତୀୟ ସମର୍ଥକ ହୁଏତ ମିଳିବେନି ଏ ମତ ପାଇଁ । ଏଠାରେ କି ପ୍ରକାର କବିତା ଓଡ଼ିଆ କାବ୍ୟ-କବିତାର 'ଶୋଚନୀୟ ଦାରିଦ୍ର୍ୟ' ଘୁଞ୍ଚାଇପାରେ, ଶ୍ରୀ ରଥଙ୍କର 'କେତେଦିନର'ରୁ କେତୋଟି ନମୁନା ନିମ୍ନରେ ଦିଆଗଲା ।

"ସଦ୍ୟପ୍ରସୂତ ଜହ୍ନ ଉଠୁଚି / ବିଦାରି ମାତାର କୁମାରୀ ଯୋନି,
ରକ୍ତର ଜଳେ ଗାଧୋଇ-ପାଧୋଇ / ନିଠୁର ହାସ୍ୟ ଓଠରେ ଘେନି !
ଆକାଶ ଗୋଟାକ ରକ୍ତ ଛିଡ଼ିକା / ଆକାଶ ଗୋଟାକ କେବଳ ଡରା,
ଜ୍ୟୋତ୍ସ୍ନା ଯାହାକୁ ଦୁନିଆଁ କହୁଚି / ବିକଳ ଗୋଟାଏ ରକ୍ତଝରା ।" (ଘଣ୍ଟା)

ବା

"ଯେମିତି ନିଭୃତ ଏକ ଗଡ଼ଜାତୀ ଅରଣ୍ୟ ଭିତରେ
ଦୀର୍ଘକାୟ ଅଜଗର ଖସି ଖସି ଓସ୍ତଗଛ ଡାଳୁ,
ଧୀରେ ଧୀରେ ଘେରିଗଲା ଅସହାୟ ମିରିଗଛୁଆକୁ
ଚକ୍ରାକୃତି ହୋଇ ତାର ଚୂରିଦେଲା **ଅସ୍ଥି** ଆଉ **ହାଡ଼**
ଉଦରସ୍ଥ କରି ସର୍ପ ଆରମ୍ଭିଲା ସୁଦୀର୍ଘ ପହୁଡ଼,
ଆଶ୍ଳେଷର ହରିକାଠେ ଚନ୍ଦ୍ରମାର ଅନୁଭୂତି ମଲା,
ଝାଳର ଗନ୍ଧରେ ହେଲା ଲୁପ୍ତ ତାର ସକଳ ଚେତନା;
ଚୁମ୍ବନର ଚାବୁକରେ ଗାଲ ଆଉ ଛାତିର ଜୀବନ,
କୃପଣର ଧନ ପରି ଅନ୍ଧାରର ସିନ୍ଦୁକେ ଲୁଚିଲା ।" (ଚନ୍ଦ୍ରମାର ଚୁଡ଼ି)
"ଅତି ଉଚ୍ଚ ଦେବଦାରୁ ଡାଳେ ଅବା ଶାଳର କୋଟରେ
ଅବା କେବେ ଅକସ୍ମାତ ଆକାଶରେ ଉଡୁ ଉଡୁ ତାର

ଧଳା ଧଳା ମେଘ ସହ, କଳା କଳା ପକ୍ଷର ସଂଗମ,
ଆସନ୍ନପ୍ରସବା ନାରୀ ସ୍ତନ-ଚୂଳେ ପାଣ୍ଡୁରତା ସମ ।'' (ଚିଲ)

**ଯୁଗମାନଙ୍କର ଶୋଭାଯାତ୍ରା –**

କିନ୍ତୁ ଓଡ଼ିଆ ସାହିତ୍ୟରେ ସବୁଠାରୁ ବିସ୍ମୟକର ଘଟଣା ଏହି ଯେ, ଏଠି ଏପ୍ରକାର ଅତ୍ୟାଧୁନିକମାନଙ୍କ ସହିତ ଅତି ପୁରାତନ ମଧ୍ୟ କାନ୍ଧ ପକାଇ ଚାଲିବାର ଦେଖାଯାଉଛି, ଆନ୍ତର୍ଜାତୀୟମାନଙ୍କ ପାଖରେ ସଂକୀର୍ଣ୍ଣ ଜାତୀୟତାବାଦୀ ମଧ୍ୟ ଦଣ୍ଡାୟମାନ । ଅତ୍ୟାଧୁନିକ କବିତା ପାଖେ ପାଖେ ଆମେ ମଧ୍ୟ ଦେଖିବାକୁ ପାଇବା ଭଞ୍ଜୀୟ ବା ସାରଳାଦାସୀୟ ରୀତିରେ ଲିଖିତ ନୂତନ କାବ୍ୟଗ୍ରନ୍ଥ । ଚତୁର୍ଦ୍ଦଶ ଶତାବ୍ଦୀର ସାରଳା ମହାଭାରତ ଅନୁକରଣରେ ଏବେ ମଧ୍ୟ 'ଗାନ୍ଧି ମହାପୁରାଣ' ପ୍ରକାଶ ପାଇଛି । ଏଣେ ଅତ୍ୟାଧୁନିକମାନେ ଟାଙ୍କ ପସରାର ମାଲ୍‌କୁ ଯେଉଁପରି ଦୃଢ଼ଭାବରେ ବିଜ୍ଞାପିତ କରିବାରେ ପ୍ରୟାସୀ, ସେହିପରି ମଧ୍ୟ ପ୍ରୟାସୀ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ପ୍ରତିଷ୍ଠିତ 'କଳିଙ୍ଗଭାରତୀ' ଅନୁଷ୍ଠାନ ମଧ୍ୟଯୁଗୀୟ ଛାନ୍ଦ-ପ୍ରତିଷ୍ଠ କବିତା-ରୀତିହିଁ ଓଡ଼ିଆ ଭାଷାର ଏକମାତ୍ର ନିଜସ୍ୱ ରୀତି ବୋଲି ଉପସ୍ଥାପିତ କରିବାରେ ।

## ଗଦ୍ୟ ବିଭାଗ

**ଗଳ୍ପ ଓ ଉପନ୍ୟାସ –**

ସଂସ୍କାର ଓ ସଂଗଠନର କେନ୍ଦ୍ରସ୍ଥଳୀ ସତ୍ୟବାଦୀ ବିହାର ଓଡ଼ିଆ ଗଦ୍ୟ-ସାହିତ୍ୟକୁ ମଧ୍ୟ କିପରି ବିଶେଷଭାବରେ ଋଦ୍ଧିମନ୍ତ କରିଯାଇଛି, ତାହା ପୂର୍ବେ ସୂଚିତ ହୋଇଛି । ପଣ୍ଡିତ ଗୋପବନ୍ଧୁଙ୍କର ବକ୍ତୃତା, ପ୍ରବନ୍ଧ ଓ ସାମ୍ୟାଦିକ ସମାଲୋଚନାର ଶାନ୍ତ, ଲଳିତ, ଶାଳୀନତା ଓ ପଣ୍ଡିତ ନୀଳକଣ୍ଠଙ୍କ ଗଦ୍ୟଶୈଳୀର ବୀର୍ଯ୍ୟବତ୍ତାର କଥା ଆଗରୁ କୁହାଯାଇଛି । ସବୁଜ- ବନ୍ଧୁଗଣ ଓଡ଼ିଆ ଗଦ୍ୟକୁ ଏକ ଆନ୍ତର୍ଜାତୀୟ ସ୍ପର୍ଶ ଦେଲେ, ଯାହା ପୂର୍ବେ ଓଡ଼ିଆରେ ନଥିଲା । ସଚ୍ଚି ରାଉତରାୟଙ୍କ ଗଦ୍ୟ ବୈଶିଷ୍ଟ୍ୟହୀନ ହେଲେହେଁ, ତାଙ୍କର ଏକମାତ୍ର ଉପନ୍ୟାସ 'ଚିତ୍ରଗ୍ରୀବ' ଓଡ଼ିଆରେ ଦୀର୍ଘତମ ବ୍ୟଙ୍ଗାତ୍ମକ-ଗଳ୍ପ ହୋଇ ରହିଛି । କିନ୍ତୁ ତଥାକଥିତ ବାମପନ୍ଥୀ ସାହିତ୍ୟିକଗଣ ପ୍ରଚାରକୁଶଳୀ ହେଲେହେଁ ଓଡ଼ିଆରେ ଏପର୍ଯ୍ୟନ୍ତ ବାମପନ୍ଥୀ ଜୀବନ-ଦର୍ଶନ ବା କଳା-ଦର୍ଶନଟା ପ୍ରକୃତରେ କ'ଣ, ତାହା ବୁଝାଇ ପ୍ରତିଷ୍ଠାପିତ କରିବାପାଇଁ ଖଣ୍ଡିଏ ହେଲେ ଗ୍ରନ୍ଥ ପ୍ରକାଶ କରିପାରିନାହାନ୍ତି । ସେଥିରୁ ଜଣାପଡୁଛି ଯେ, ଏହା ସାହିତ୍ୟିକ ଅପେକ୍ଷା ଏକ ରାଜନୈତିକ କାରବାର ବା ଦୂରଦୂରାନ୍ତରରେ ଅନ୍ୟ ଦେଶ ଓ ଜାତିରେ ଦେଖାଦେଇଥିବା ମାନସିକ ବନ୍ୟାର ଉଜାଣି ଫେରିଆସୁଥିବା ମନ୍ଦଗତି ପାଖୁଆ ଧାରଟାଏ ମାତ୍ର – ଓଡ଼ିଶା ଦେଶର ମାଟିର ନିଜସ୍ୱ ସମସ୍ୟାରୁ ଏହା ଜନ୍ମ ନେଇନାହିଁ ।

## ଗୋପୀନାଥ ମହାନ୍ତି –

ସବୁଜଦଳ ଓଡ଼ିଆ ସାହିତ୍ୟକୁ ଦୁଇଟି ପ୍ରସିଦ୍ଧ ଉପନ୍ୟାସ ଦେଇଗଲେ – 'ବାସନ୍ତୀ' ଓ 'ମାଟିର ମଣିଷ'। 'ବାସନ୍ତୀ' ନଗର-କୈନ୍ଦ୍ରିକ; 'ମାଟିର ମଣିଷ' ପଲ୍ଲୀ-କୈନ୍ଦ୍ରିକ; କିନ୍ତୁ ଉଭୟରେ ହିଁ ଆମେ କେବଳ ମଧ୍ୟବିତ୍ତଶ୍ରେଣୀର ଦୃଷ୍ଟିକୋଣ ଓ ପରିଚୟ ପାଇବା । ସବୁଜ-ବନ୍ଧୁଗଣ ସେମାନଙ୍କର ଚିନ୍ତାଧାରାକୁ ପୂରାପୂରି ମାଟି ସହିତ ମିଶାଇ ପାରିନଥିଲେ । ଆମେ ସେମାନଙ୍କଠି ମଧ୍ୟବିତ୍ତଶ୍ରେଣୀର ଶାଳୀନ ଦୃଷ୍ଟିଭଙ୍ଗୀହିଁ ଅଧିକାଂଶ ଭାବରେ ଦେଖିବାକୁ ପାଇବା ।

ସବୁଜମାନଙ୍କର ଏ ପ୍ରକାର ଭଦ୍ର, ଶାଳୀନ, ମଧ୍ୟବିତ୍ତୀୟ ପରିବେଶ ପରେ ହଠାତ୍ ଦେଖାଦେଲେ ଗୋପୀନାଥ ମହାନ୍ତି, ଯାହାଙ୍କର ଅଚଷା, ଟାଣୁଆ, ଆବୁଖାବୁଆ ଗଦ୍ୟ ଆମ ସାମନାକୁ ଆଣିଦେଲା ଚାଷଜମି, ଗହନ ଜଙ୍ଗଲ, ବଙ୍କାଟଙ୍କା ପର୍ବତ-ଶୃଙ୍ଗଶ୍ରେଣୀ ଓ କ୍ଷିପ୍ରବେଗବତୀ ନଦୀକୁ । ଏଇଠି ଆମେ ଭେଟୁଛୁ ଏକ ନୂତନ ଗଦ୍ୟଶୈଳୀ; ଯାହା ଏକ ଅସାଧାରଣ ବ୍ୟକ୍ତିତ୍ୱର ସ୍ୱାକ୍ଷର ବହନ କରି ଚାଲିଛି । ଏପ୍ରକାର ଗଦ୍ୟ କେବଳ ଗୋପୀନାଥ ମହାନ୍ତି ଲେଖିପାରନ୍ତି – ଆଉ କେହିଁ ନୁହେଁ ।

ଗୋପୀନାଥ ମହାନ୍ତି ଅନେକ ଦିଗରୁ ଏକ ନବ-ପଥ-ସ୍ରଷ୍ଟା । ପ୍ରକାଶନ ବା ବିକ୍ରିର ସମସ୍ୟା ପ୍ରତି ସାମାନ୍ୟତମ ଚିନ୍ତା ନଦେଇ ସେ ବିରାଟ ଉପନ୍ୟାସମାନ ଲେଖିଚାଲିଛନ୍ତି । ଜନପ୍ରିୟତା ପ୍ରତି ମଧ୍ୟ ସେ ନଜର ଦେଇନାହାନ୍ତି । ତା' ନହୋଇଥିଲେ ମଧ୍ୟବିତ୍ତଶ୍ରେଣୀର ସୌଖିନ ରୋମାଣ୍ଟିକ୍ ସମାଜକୁ ପଛରେ ପକାଇ ସେ ତାଙ୍କ ଉପନ୍ୟାସର ଉପାଦାନ ଖୋଜିବାକୁ ଯାଇନଥାନ୍ତେ କୋରାପୁଟ ଜିଲ୍ଲାର ଜଙ୍ଗଲରେ ବାସକରୁଥିବା ଆଦିବାସୀମାନଙ୍କ ନିକଟକୁ । ସରକାରୀ ଚାକିରିଆ ସ୍ୱତଃ ଜନତାଠାରୁ ଦୂରେଇଯିବାର କୁହାଯାଏ; କିନ୍ତୁ ସରକାରୀ ଚାକିରିରେ ଥାଇ ମଧ୍ୟ ଶ୍ରୀ ମହାନ୍ତି ପୂର୍ଣ୍ଣଭାବରେ ଜନତା ସହିତ ନିଜକୁ ମିଶାଇପାରିଛନ୍ତି କେବଳ ନୁହେଁ, ସେ ଗ୍ରାମ ଓ ଜଙ୍ଗଲର ସରଳ ନରନାରୀଙ୍କ ଭିତରେ ମହାର୍ଘ ମାନବିକତା ଦେଖିପାରିଛନ୍ତି, ଯାହା ପାରନ୍ତି ନାହିଁ ଏ ଦେଶର ସହସ୍ର ସହସ୍ର ସରକାରୀ ଚାକିରିଆ । ଏହି ସୂତ୍ରରେ ମହାନ୍ତି ତାଙ୍କ ଗଦ୍ୟ-କାବ୍ୟସବୁର ଉପାଦାନରୂପେ ଆଦିବାସୀର ଜାଙ୍ଗଲିକ ଜୀବନକୁ ରୂପାନ୍ତରିତ କରିପାରିଛନ୍ତି କେବଳ ନୁହେଁ, ସେ ମଧ୍ୟ ସେମାନଙ୍କ ଭାଷାରେ ପ୍ରଥମ ବ୍ୟାକରଣ ଲେଖିଛନ୍ତି । ସ୍ୱାଧୀନ ଓ ଗଣତାନ୍ତ୍ରିକ ଭାରତୀୟ ରାଷ୍ଟ୍ରରେ ଶ୍ରୀ ମହାନ୍ତି ଏକ ଯୋଗ୍ୟ ଅଫିସର । ମୁଁ କାହିଁକି ଲେଖେ ପର୍ଯ୍ୟାୟରେ ସେ ଯଥାର୍ଥ କହିଛନ୍ତି ।*

''ତେବେ ମୁଁ ଲେଖେ କାହିଁକି ? ତା'ର ସହଜ ଉତ୍ତର, କାରଣ ଲେଖା ମାଡ଼େ । ଏ ମୋ ମନର ସହଜ ସ୍ୱାଭାବିକ ପ୍ରକ୍ରିୟା । ଏହି ପ୍ରକ୍ରିୟାକୁ ଆଲୋଚି ଦେଖିଲେ, ପ୍ରଥମେ ଲାଗେ, ମୁଁ ଲେଖେ, କାରଣ ମୁଁ ଭଲପାଏଁ । ମୁଁ ମୋର ଦେଖା-ଅଦେଖା ଜଗତକୁ ଭଲପାଏଁ, ମଣିଷକୁ ଭଲପାଏଁ, ଜୀବନକୁ ଭଲପାଏଁ । ମାଠିଆରେ ପାଣି ପଶିଲାପରି

* ଡଗର, ଷୋଡ଼ଶ ଖଣ୍ଡ, ସଂଖ୍ୟା ୪ ।

ଗଦ୍‌ଗଦେଇଉଠେ; ମୋ ଘଟରେ ମୋ ଭଲପାଇବା ଉଚ୍ଛୁଳିପଡ଼ି ହୁଏ ମୋର ଲେଖା । ଏହି ତୀବ୍ର ସମ୍ପର୍କ ଯୋଗୁଁ, ଯେତେ ପ୍ରକାର ପ୍ରାଣର ଦାହ, ପରର ସମସ୍ୟା, ପରର ଦୁଃଖ ନିଜର ହୋଇଯାଏ । ପୁଣି ବାହାରର ଆନନ୍ଦ-ଉଲ୍ଲାସ ପଶେ ନିଜଠି । ଯେତେ ଥର ମୁଁ ଲେଖିବସେ, ସେତେ ଥର ମୋ ମନ ନିରୋଳରେ ନିବିଡ଼ ସମ୍ବନ୍ଧ ଏହିମାନଙ୍କ ସହିତ – ଏହି ଦେଶ, ଯାହାର ପ୍ରତି ଧୂଳିକଣା ମୋ ପାଇଁ ସ୍ନେହର ସମ୍ଭାର, ଏହି ପ୍ରକୃତି – ଯାହା ମୋ ବ୍ୟକ୍ତିତ୍ୱର ଆଧାର । ଏହି ମଣିଷ, ସେ ଯେଉଁ ବର୍ଣ୍ଣରେ ଯେତେ ଦୂରରେ ଥାଉ ପଛେ, ମୋ'ଠି ତା'ଠି ଏକାରକ୍ତର ଧାର । ଏ ସମ୍ବନ୍ଧ ଅତି ଘନିଷ୍ଠ-ମିଳନ-କ୍ରିୟା, ତା'ର ଆନନ୍ଦ ଅନ୍ୟତ୍ର ନାହିଁ । ତେଣୁ ପରିସ୍ଥିତିର ଅନ୍ଧାରରେ ଜାଳି ରଖିହୁଏ ଦୀପଶିଖା, ମିଳନର ସୃଷ୍ଟି ଉପୁଜେ– ଭାବେନାହିଁ ହେତୁବାଦୀ ଦୁନିଆର ହାଟରେ ତା'ର ମୂଲ ତଉଲ କେତେ !''

କୋରାପୁଟ ଜିଲ୍ଲାର କନ୍ଧ ଆଦିବାସୀମାନଙ୍କ ଜୀବନ ନେଇ ଲିଖିତ ମହାନ୍ତିଙ୍କର ଉପନ୍ୟାସ 'ଅମୃତର ସନ୍ତାନ' ଜାତୀୟ ସାହିତ୍ୟ ଆକାଡେମୀ ଦ୍ୱାରା ଯେ ପୁରସ୍କୃତ ହୋଇଛି, ତାହା ଯଥାର୍ଥ କହିବାକୁ ହେବ । ହେଲେହେଁ, ତାହା ବୋଧହୁଏ ମହାନ୍ତିଙ୍କର ଶ୍ରେଷ୍ଠ କୃତି ବୋଲି ଗ୍ରହଣୀୟ ନହୋଇପାରେ । ସେହି ଆଦିବାସୀ-ଜୀବନ ନେଇ ଲିଖିତ 'ପରଜା' ଅଧିକ ସୁଗଠିତ ମନେହୁଏ । ପୁଣି, ମହାନ୍ତି କେବଳ ଯେ ଆଦିବାସୀ-ଜୀବନ ନେଇ ଉପନ୍ୟାସ ଲେଖିଛନ୍ତି, ତା' ମଧ ନୁହେଁ । ମୂଲକରାଜ ଆନନ୍ଦଙ୍କ 'ଅଛୁବ' (The Untouchable) ଉପନ୍ୟାସ ଅପେକ୍ଷା ସେହି ବିଷୟ ଉପରେ ଗଠିତ ମହାନ୍ତିଙ୍କ 'ହରିଜନ' ଅଧିକ ବାସ୍ତବ ଓ ଅଧିକ ଶକ୍ତିଶାଳୀ ମନେହୁଏ । ଜଣେ ନିମ୍ନ-ମଧ୍ୟବିତ୍ତ ଗୃହସ୍ଥ ତା'ର ପିଲାଛୁଆଙ୍କ ମୁହଁକୁ ଚାହିଁ, କିପରି ନିଜର ବିବେକର ବେକ ମୋଡ଼ି ସଂସାର ଓ ଜୀବନ ସହିତ ନାନା ଅପ୍ରୀତିକର ସାଲିସ୍ କରିବାକୁ ବାଧ ହୁଏ, ତାର ଚିତ୍ର ଆମେ ମହାନ୍ତିଙ୍କ 'ଦାନାପାଣି'ରେ ପାଇବା ।

କିନ୍ତୁ ଏହା ମଧ କହିବାକୁ ହେଉଛି ଯେ, ମହାନ୍ତିଙ୍କ ଶ୍ରମ, କୌତୂହଳ ଓ ଉତ୍ସାହ ତୁଳନାରେ ତାଙ୍କ ଗ୍ରନ୍ଥମାଳାର ପ୍ରକୃତ ଶୈଳ୍ପିକ ମହିମା ହୁଏତ ବହୁ ପରିମାଣରେ ଊଣା । ମହାନ୍ତି ନିଜ ପାଇଁ ନୂଆ ରାସ୍ତା ଅବଶ୍ୟ କାଟିଛନ୍ତି; କିନ୍ତୁ ପ୍ରକୃତ ଶିଳ୍ପୀର ନୂଆ ସଡ଼କ ତିଆରି କରିବାକୁ ଯିବା ଯେ ଏକାନ୍ତ ଆବଶ୍ୟକ, ତାହା ନୁହେଁ । ଶିଳ୍ପୀର ଅନନ୍ୟତା ଶିଳ୍ପରେ ହିଁ ଫୁଟିବ । ମହାନ୍ତିଙ୍କ ରଚନାବଳି ଶିଳ୍ପର ଔଦ୍ୟାନିକ ସାମଞ୍ଜସ୍ୟ ଅପେକ୍ଷା ଅଧିକ ମନେପକାନ୍ତି ଏକ ଜଙ୍ଗଲକୁ । ମହାନ୍ତିଙ୍କ ଉପନ୍ୟାସ ପ୍ରାୟ ସୁଖପାଠ୍ୟ ନୁହେଁ । ମହାନ୍ତି କେଉଁଠି କଲମକୁ ବନ୍ଦ କରିବେ ତାହା ଆଦୌ ଅଭ୍ୟାସ କରିନାହାନ୍ତି ଓ ଲେଖିଚାଲିଥାନ୍ତି; ଯେପରିକି ତାଙ୍କର ସହିଷ୍ଣୁତମ ପାଠକର ମଧ ଶେଷରେ ଧୈର୍ଯ୍ୟଚ୍ୟୁତି ଘଟିବ । ତାଙ୍କର ଗଳ୍ପ ହୋଇଉଠନ୍ତି ପ୍ରବନ୍ଧ ଓ ପ୍ରବନ୍ଧ ବର୍ଣ୍ଣ ଗ୍ରହଣ କରନ୍ତି ଗଳ୍ପର । ତାଙ୍କର ଉପନ୍ୟାସାବଳି ବେଶି କାଳ ଜନପ୍ରିୟ ନହେବାର ଆଶଙ୍କା; କାରଣ ସେଗୁଡ଼ିକରେ କୌଣସି ଶାଶ୍ୱତ ମାନବିକ ସମସ୍ୟାସବୁର ବିଚାର ହୋଇନି, ହୋଇଛି କୌଣସି କୌଣସି ସାମାଜିକ ଅବସ୍ଥାର; ଯାହା ଅଳ୍ପ କାଳ ଭିତରେ ପରିବର୍ତ୍ତିତ ହୋଇଯିବାର ଆଶା । ମହାନ୍ତି ବାସ୍ତବତା

ଅନୁରୋଧରେ ତାଙ୍କ ଉପନ୍ୟାସମାନଙ୍କରେ ବେଳେବେଳେ ସ୍ଥୂଳ ଓ ଇତର ବର୍ଣ୍ଣନା ସବୁ ମଧ ଦେଇବସିଛନ୍ତି, ଯାହା ନଥିଲେ ସେହି ସେହି ଉପନ୍ୟାସର କୌଣସି ଗାଠନିକ କ୍ଷତି ଘଟିଥାନ୍ତା ବୋଲି ମନେହୁଏନାହିଁ ।

## କାହ୍ନୁଚରଣ ମହାନ୍ତି –

ଗୋପୀନାଥ ମହାନ୍ତିଙ୍କ ବଡ଼ଭାଇ କାହ୍ନୁଚରଣ ମହାନ୍ତି, ସାନଭାଇ ଅପେକ୍ଷା କମ୍ ବିଚକ୍ଷଣ ହେଲେହେଁ, ନିଜକୁ ଅଧିକ ଫଳପ୍ରସୂ ପ୍ରମାଣିତ କରିଛନ୍ତି । ଗତ ଚାଳିଶ ବର୍ଷଧରି, କାହ୍ନୁଚରଣ ପ୍ରତି ବର୍ଷକୁ ପ୍ରାୟ ଏକ ଏକ ଉପନ୍ୟାସ ଲେଖିଚାଲିଛନ୍ତି କହିଲେ ଚଳେ । ସାନଭାଇଙ୍କ ଉପନ୍ୟାସ ଅପେକ୍ଷା ବଡ଼ଭାଇ କାହ୍ନୁଚରଣଙ୍କ ଉପନ୍ୟାସର ବଜାରଚାହିଦା ମଧ ଯଥେଷ୍ଟ ବେଶି; କିନ୍ତୁ ମୋଟଉପରେ କାହ୍ନୁଚରଣଙ୍କ ଉପନ୍ୟାସ-ସୃଷ୍ଟି ମଧ ଶୈଳ୍ପିକ ଦୃଷ୍ଟିକୋଣରୁ ବେଶି ଉପରକୁ ଉଠିପାରିଛି ବୋଲି କହିହେବନାହିଁ । ସଂଖ୍ୟା ଉପରେ ଆଖି ନରଖି, ଗୁଣ ଉପରେ ଆଖି ରଖିଥିଲେ ଭଲହୋଇଥାନ୍ତା ।

ତାଙ୍କର କେତେକ ଉପନ୍ୟାସ ରଙ୍ଗମଞ୍ଚ ଓ ସିନେମାରେ ସାଫଲ୍ୟ ସହିତ ନାଟକୀକୃତ ହେଉଥିବାର ଦେଖିବାକୁ ମିଳେ । ଓଡ଼ିଶାରେ ବହି ଲେଖି ଆର୍ଥିକ ସାଫଲ୍ୟମଣ୍ଡିତ ହୋଇଥିବା ଲେଖକଙ୍କ ମଧରୁ କାହ୍ନୁଚରଣ ଅନ୍ୟତମ । ଭାଇ ଗୋପୀନାଥଙ୍କ ପରି କାହ୍ନୁଚରଣ ମଧ ଯେ ଉଚ୍ଚ ସରକାରୀ ଚାକିରିରେ ରହି, ଦୀର୍ଘ ଚାଳିଶବର୍ଷ ଧାରାବାହିକ ଭାବରେ ନିଜମାତୃଭାଷାର ସେବା କରିଆସିଛନ୍ତି, ଏହା ସର୍ବଥା ପ୍ରଶଂସନୀୟ ଓ ଅନୁକରଣୀୟ ।

ଗୋପୀନାଥଙ୍କ ପରି କାହ୍ନୁଚରଣ ମଧ ତାଙ୍କର 'କା' ଉପନ୍ୟାସ ପାଇଁ ଜାତୀୟ ସାହିତ୍ୟ ଆକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି; କିନ୍ତୁ ହୁଏତ ତାଙ୍କର ଅନ୍ୟତମ ଉପନ୍ୟାସ 'ଶାସ୍ତି' ତାଙ୍କର ଶ୍ରେଷ୍ଠ କୃତି ବୋଲି ସ୍ୱୀକୃତ ହେବ । ଏକ ଲକ୍ଷ୍ମୀଛଡ଼ା ଜାତି-ବାସନ୍ଦ-ଲୋକ ପାଇଁ ଏକ ପଲ୍ଲୀବାଳିକାର କରୁଣ ପ୍ରେମକାହାଣୀ ଏହି ଗ୍ରନ୍ଥରେ ବର୍ଣ୍ଣିତ । ଏହି ପଲ୍ଲୀବାଳିକାର ଚିତ୍ର ବାସ୍ତବ ଓ ମର୍ଯ୍ୟାଦାବନ୍ତ ହୋଇଉଠିବା ସାଥେ ସାଥେ, କୌଣସିଠାରେ ସେ ଯେ ତାର ଗ୍ରାମ୍ୟପରିବେଶରୁ ଭିନ୍ନ ବୋଲି ମନେହେଉନାହିଁ, ଏହା ଉତ୍ତମ କାରିଗରି କହିବାକୁ ହେବ ।

## ଚିନ୍ତାନନ୍ଦ ନିତ୍ୟାନନ୍ଦ * –

କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସୁଯୋଗ୍ୟ ଉତ୍ତରାଧିକାରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଉତ୍କଳଦେଶରେ କେବଳ ଲେଖକ ନୁହେଁ, ସାମ୍ବାଦିକ, ସମ୍ପାଦକ ଓ ରାଜନୀତିକ ଭାବରେ

---

* ଇଂରାଜୀ ସଂସ୍କରଣରେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କର ନାମୋଲ୍ଲେଖ ଥିଲା; କିନ୍ତୁ ତାଙ୍କ ରଚନାବଳି ଉପରେ କୌଣସି ଆଲୋଚନା ଦିଆଯାଇପାରିନଥିଲା । କାରଣ, ସେ ବହି ଶୀଘ୍ର ସାରିଦେବାକୁ ଉପରୁ ବାରମ୍ବାର ତାଗିଦା ଆସିଲା ଏବଂ ସେ ଭିତରେ ନିତ୍ୟାନନ୍ଦବାବୁଙ୍କର ରଚନାବଳି ଧାରାବଦ୍ଧ ଭାବରେ ପଢ଼ିବା ଲେଖକପକ୍ଷରେ ସମ୍ଭବ ହୋଇନଥିଲା । ଏ ଭିତରେ ଯେତିକି ପଢ଼ିପାରିଛି, ତା'ରି ଉପରେ ସାମାନ୍ୟ ଆଲୋଚନା ପରିବେଷଣ କରିବାକୁ ସାହସ କରିଛି । – ଲେଖକ

ମଧ୍ୟ ପରିଚିତ । ପିତୃ-ପ୍ରତିଷ୍ଠିତ 'ଡଗର' ନାମକ ପତ୍ରିକାଟିକୁ ପବିତ୍ର ପିତୃ-ସ୍ମୃତି ହିସାବରେ ସେ ବଞ୍ଚାଇରଖିଛନ୍ତି ବହୁବର୍ଷଧରି, ଯଦିଓ ତାଙ୍କର ସମ୍ପାଦକୀୟ ବିଚକ୍ଷଣତା ଅଛି ବୋଲି କୁହାଯାଇନପାରେ । ଅଧିକ ତତ୍ତ୍ୱ ତଦ୍‌ବିରି ହୋଇପାରିଥିଲେ, ଏହା ଯେପରି ଚୀର-ପରିହିତ ହୋଇଦେଖାଦେଇ ଆସୁଛି, ସେପରି ହୋଇନଥାନ୍ତା ବୋଧହୁଏ । ଶ୍ରୀ ନିତ୍ୟାନନ୍ଦ, ଯଥାଯଥ ତତ୍ତ୍ୱ ତଦ୍‌ବିରି ନିଜର ସୃଷ୍ଟି ପ୍ରତି ମଧ୍ୟ ସେହିପରି ନଦେଇପାରି ତାକୁ ବିପୁଳ ସମ୍ଭାବନା ସତ୍ତ୍ୱେ ଅପୁଷ୍ଟ, ଅବର୍ଦ୍ଧିତ କରି ରଖିଅଛନ୍ତି ବୋଲି କୁହାଯାଇପାରେ । ନିତ୍ୟାନନ୍ଦଙ୍କର ଏତାବତ୍ ପ୍ରକାଶିତ ରଚନାବଳି ସହିତ ପରିଚିତ ହେବା ପରେ ତାଙ୍କର ଏହି ନିଷ୍ଫଳ ସମ୍ଭାବନାହିଁ ଚିତ୍ତକୁ ବ୍ୟଥିତ କରାଏ । କାରଣ ସାର୍ଟିଫିକେଟ୍ ପ୍ରମାଣରେ ସ୍ୱଳ୍ପବିଦ୍ୟ ହେଲେହେଁ, ନିତ୍ୟାନନ୍ଦଙ୍କ ରଚନାରେ ଚିନ୍ତାର ତୀକ୍ଷ୍ଣତା ଓ ଜ୍ଞାନର ଭୂୟୋବ୍ୟାପ୍ତି ଦେଖି ଅଭିଭୂତ ହେବାକୁ ହୁଏ । ସମସାମୟିକ ଓଡ଼ିଆ ଗଦ୍ୟରାଜ୍ୟରେ ତରୁଣ ପ୍ରାବନ୍ଧିକ ଶ୍ରୀମାନ୍ ଚିତ୍ତରଞ୍ଜନ ଦାସଙ୍କୁ ଛାଡ଼ିଦେଲେ, ନିତ୍ୟାନନ୍ଦ ହେଉଛନ୍ତି ଏକମାତ୍ର ଲେଖକ, ଯାହାଙ୍କ ରଚନାରେ ଗଭୀର ମନନଶୀଳତା ଦେଖିବାକୁ ମିଳେ । କିନ୍ତୁ ତାଙ୍କ ଲେଖନୀର ନାହିଁ ଏ ଦିଗ ବା ନାହିଁ ଖାଣ୍ଟି ସୃଜନଶୀଳତା, କୌଣସିଟିକୁ ହେଲେ ସେ ରାଜନୈତିକ ବ୍ୟସ୍ତତା ଯୋଗୁଁ ଯେ ପରିପୂର୍ଣ୍ଣାଙ୍ଗତା ଦେଇପାରିନାହାନ୍ତି, ତାହାହିଁ ଦୁଃଖ । ନିତ୍ୟାନନ୍ଦଙ୍କ ଏତାବତ୍ ପ୍ରକାଶିତ ରଚନାବଳି ସ୍ମରଣ କରାଉଛି, ସୁବର୍ଣ୍ଣରେଖାର ସୈକତଶଯ୍ୟାର ତାହା ଯେପରି ଖଣ୍ଡେ । ତାହା ମୋଟାମୋଟି ସୁନ୍ଦର, ଖୋଜିଲେ ଅନେକ ସୁନାକଣିକା ମିଳିବ ନିଶ୍ଚୟ — କିନ୍ତୁ ବହୁ ପରିମାଣର ଗୋଡ଼ି ବାଲି ପଥର ମିଶା । ରାଜନୀତି ସଂସାରରେ ସୈନିକତ୍ୱ ଓ ସେନାପତିତ୍ୱର ଆପାତକର୍ମଠତା ମଧ୍ୟରେ ତରବରରେ ରାମ୍ପିଚାଲିଥିବା ପୁସ୍ତକାବଳି ଭିତରେ, କେବଳ ଜହୁରୀ ସେହି ସ୍ତୁପରାଶି ଭିତରେ ଖାଣ୍ଟି ସୁନାର ଆଭାସ ବିଚ୍ଛୁରିତ ରହିଥିବାର ଦେଖି ମୁଣ୍ଡରେ ହାତ ଦେବ ।

ନିତ୍ୟାନନ୍ଦଙ୍କର 'ପତ୍ର ଓ ପ୍ରତିମା' ଓ 'ସୁଖର ସନ୍ଧାନେ' ପ୍ରଭୃତି ଗ୍ରନ୍ଥ ଉତ୍କଳଦେଶରେ ଯେପରି ପ୍ରଚାରିତ ଓ ସମ୍ମାନିତ ହେବାର କଥା, ସେପରି ହୋଇଛି ବୋଲି ମନେହେଉନି । 'ସୁଖର ସନ୍ଧାନେ'ରେ ଲେଖକ ଯେ ପ୍ରକାର ଦୀର୍ଘଦୃଷ୍ଟି ଓ ଦୂରଗାମୀ ଚିନ୍ତାଶକ୍ତି ଦେଖାଇପାରିଛନ୍ତି, 'ହିଡ଼ମାଟି' ଓ 'ଭଙ୍ଗାହାଡ଼' ପ୍ରଭୃତି ଉପନ୍ୟାସରେ ସେହି ଲେଖକ କିପରି ନିଜର କ୍ଷୀୟମାଣ କରଣସମାଜରୁ ଉପରକୁ ଉଠିପାରିନାହାନ୍ତି ଦେଖି ବିସ୍ମିତ ହେବାକୁ ହୁଏ, ଯଦିଓ ଲେଖକ ଏହି ଗୋଷ୍ଠୀର ବୃଥା ଜାତ୍ୟାଭିମାନ ତଳେ ତଳେ ପ୍ରବହମାନ ଅନୈତିକତା, ଅଯୌକ୍ତିକତା ଓ ଅମାନବିକତାକୁ ପଦେ ପଦେ ଚାବୁକ ମାରିଛନ୍ତି; କିନ୍ତୁ ନିତ୍ୟାନନ୍ଦ-ଲେଖନୀ ପାଇଁ ଏହା କି ଗୋଟିଏ ଯଥାଯୋଗ୍ୟ ଉପାଦାନ ? ଓଡ଼ିଆ ଜାତି ବା ଭାରତୀୟ ସମାଜ ଆଗରେ ପ୍ରକୃତ-ସମସ୍ୟା କ'ଣ କରଣ-ଗୋଲାମ-ବ୍ରାହ୍ମଣ-ଚଷାର ସମସ୍ୟା ? ଆଜି ଆମର ବାସ୍ତବତମ ସମସ୍ୟା ହେଉଛି ଆମେ ଭାରତୀୟ ବା ଓଡ଼ିଆମାନେ ଜାପାନୀ, ଜର୍ମାନ, ଚୀନାମାନଙ୍କ ସହିତ ସମଭାବରେ ସମ୍ମାନିତ ଓ ସମସ୍କନ୍ଧ ହୋଇ କାହିଁକି ଠିଆ ହୋଇ ପାରୁନେ ? କିନ୍ତୁ ଓଡ଼ିଆ ଔପନ୍ୟାସିକ ଓ ନାଟ୍ୟକାରମାନେ ସେହି ଦିଅର-ଭାଉଜ ବା

ବ୍ରାହ୍ମଣ-ଝିଅ-ଚଷାପୁଅ ସମ୍ବାଦ, ବା ବଡ଼ହେଲେ ପୁଞ୍ଜିପତି ଅବମାନନାରେହିଁ ରହିଛନ୍ତି । 'ଜିଅନ୍ତା ମଣିଷ' ବୋଲି ଏଡ଼େ ନାଁଟେ ଦେଇ ନିତ୍ୟାନନ୍ଦ ବି ସେହି ଘୃଣ୍ୟ ଦିଅର-ଭାଉଜ ରହସ୍ୟ ବର୍ଣ୍ଣନା କରିବା ଦେଖି ବ୍ୟଥିତ ହେବାକୁ ପଡ଼ିଛି । 'ହିଡ଼ମାଟି' ଓ 'ଭଙ୍ଗାହାଡ଼'ରେ ନିତ୍ୟାନନ୍ଦ ଏପରି ବିଷୟବସ୍ତୁକୁ ଧରିଥିଲେ, ଯାହା ସଲୋକଭ୍‌ଙ୍କ ରୁଷୀୟ ବିପ୍ଳବର-ଔପନ୍ୟାସିକ-ମହାକାବ୍ୟ 'ଧୀରେ ବହିଯାଏ ଡନ୍' (Quiet Flows the Dawn) ପରି ବିରାଟ ଗୌରବମୟ ହୋଇପାରିଥାନ୍ତା; କିନ୍ତୁ ଏତେ ବଡ଼ ସମ୍ଭାବନା ମାଟିରେ ମିଶିଗଲା, କେବଳ ପଟ୍ଟନାୟକ – ପଟ୍ଟନାୟକ ବା ମିଶ୍ର –ପଟ୍ଟନାୟକଙ୍କ ତୁଚ୍ଛ ଗାଉଁଲି ବିବାଦରେ ବା ପାଠୁଆ ବିରୁଦ୍ଧରେ ଅପାଠୁଆଙ୍କୁ ଗୌରବାନ୍ୱିତ କରିବାର ଚେଷ୍ଟାରେ ।

ଗାଠନିକ ଦିଗରୁ ମଧ୍ୟ ଏହି ଦୁଇ ଉପନ୍ୟାସ; ଯାହା ନିତ୍ୟାନନ୍ଦଙ୍କର ମାଷ୍ଟରପିସ୍ ବୋଲି ମନେହେଉଛି, ବାଞ୍ଛନୀୟତାର ବହୁ ନିମ୍ନରେ ରହିଗଲେ । କାରଣ, ଏଗୁଡ଼ିକରେ ଆଦ୍ୟ-ମଧ୍ୟ-ଅନ୍ତ ଥାଇ ବା ନାୟକ-ନାୟିକାର ଆଗମନ-ଅପସାରଣ ଦେଇ କୌଣସି ଏକ ବିଶେଷ କାହାଣୀ ଥିଲାପରି ମନେହେଉନି । ଏହା କେବଳ ମୁଖ୍ୟତଃ କେତେକ ଓଡ଼ିଶୀ ସାମାଜିକ ଗୋଷ୍ଠୀର ସଂଘର୍ଷ । ଗଳ୍ପ କ୍ଲାଇମାକ୍ସକୁ ଉଠିଛି କେବଳ ଦ୍ୱିତୀୟ ମହାଯୁଦ୍ଧ ଓ ୧୯୪୩ର ବଙ୍ଗଳା-ଓଡ଼ିଶା-ଦୁର୍ଭିକ୍ଷ-ଜନିତ ବାହ୍ୟ ଘଟଣାଯୋଗୁଁ, ଚରିତ୍ରମାନଙ୍କର ପାରସ୍ପରିକ ସଂଘାତରୁ ନୁହେଁ; ଯେପରି ଘଟିଥାଏ ସବୁ ମାଷ୍ଟରପିସ୍‌ରେ, ଯେପରି ଘଟିଛି ଫକିରମୋହନଙ୍କ ଉପନ୍ୟାସମାନଙ୍କରେ । ଅଧ୍ୟାୟ-ଅନୁଚ୍ଛେଦ-ହୀନ ଏହି ନିରବଚ୍ଛିନ୍ନ-ଭାବରେ କଥ୍ୟମାନ କାହାଣୀମାନଙ୍କରେ; ବେଳେବେଳେ ମଝିରେ ମଝିରେ ଯେଉଁ ନୈତିକ-ଆର୍ଥିକ-ସାମାଜିକ ବକ୍ତୃତା; ସେସବୁ ନାୟକ-ନାୟିକ ବା ନିଜେ ଲେଖକଙ୍କର, ତାହା ଅସ୍ପଷ୍ଟ ହୋଇଉଠେ । ଫକିରମୋହନଙ୍କ ପରେ, ଖାଣ୍ଟି ଓଡ଼ିଶୀ ଗ୍ରାମ-ଭାଷାରେ ଲେଖକ ଅସାମାନ୍ୟ ମନୋଜ୍ଞ ଶକ୍ତିଶାଳିତା ଅନାୟାସରେ ଫୁଟାଇପାରିଥିଲେ ମଧ୍ୟ ସଂସ୍କାରକ-ଲେଖକ, ଗ୍ରାମ୍ୟ ଚଷା-ଚାଷୁଣୀଙ୍କ ମୁଖରେ ଉଚ୍ଚସ୍ତରର ସାମାଜିକ ବିଶ୍ଳେଷଣ ଓ ସମାଧାନ ସବୁ ପୂରେଇଦେଇ ସେହି ପରମ ଉପଭୋଗ୍ୟ ସ୍ୱାଭାବିକତାଟାକୁ ମଧ୍ୟ ନଷ୍ଟ କରି-ଦେଇଛନ୍ତି ବହୁସ୍ଥାନରେ । ସେନାପତିଙ୍କ 'ମାମୁ'ରେ ନିରାହା ନିରକ୍ଷରା ଆଈମା ନାହାକ ଡକାଇ ଚାନ୍ଦମଣିଙ୍କ କୋଷ୍ଠୀ ବିଚାର କରେଇଲେ, ପ୍ରିୟ ଶିଶୁନାତୁଣୀଟିର ଭବିଷ୍ୟତ ଜାଣିବାପାଇଁ । ନାହାକ କହିଥିଲେ – ସବୁ ଭଲ, କିନ୍ତୁ ଜାତକରେ ସ୍ୱାମୀଦୋଷ ରହିଛି । ପରମ ଉପଭୋଗ୍ୟ ନିରୀହତାରେ ଆଈମା କବାଟ ପଛରୁ ନିବିଡ଼ ଆନ୍ତରିକତାରେ କହିଲେ – 'ନାହାକ ଆପଣେ, ମୋ ପିଲାର କୋଷ୍ଠୀରୁ ସେତକ ଲିଭେଇଦେଲେ ହେବନି ?' ଇଏ ଉପଭୋଗ୍ୟ ନା ଜ୍ୟୋତିଷଶାସ୍ତ୍ର ଉପରେ ଲମ୍ବା ବକ୍ତୃତା ଉପଭୋଗ୍ୟ ?

କିନ୍ତୁ ଏସବୁ ଅଭାବ ସତ୍ତ୍ୱେ 'ହିଡ଼ମାଟି' ଓ 'ଭଙ୍ଗାହାଡ଼' ଉତ୍କଳ ଦେଶରେ ଯେପରି ପ୍ରଚାରିତ ଓ ଆଲୋଚିତ ହେବାର କଥା, ସେପରି ମଧ୍ୟ ହୋଇଛି ବୋଲି ମନେହେଉନି । ଏହି ଦୁଇଟି ପୁସ୍ତକରେ ସାହିତ୍ୟିକ ଅନନ୍ୟତା ସଙ୍ଗେ ବିପୁଳ ଚଳଚ୍ଚିତ୍ରୀୟ ସମ୍ଭାବନା ମଧ୍ୟ ରହିଛି ବୋଲି ମନେହୁଏ; କିନ୍ତୁ ଦେଶଭକ୍ତ ବୋଲାଇବାର ବୃଥା ଅଭିମାନରେ ନିତ୍ୟାନନ୍ଦ

ନିଜର ଲେଖନୀର ଶାଶ୍ୱତ ସମ୍ଭାବନାକୁ ଅବହେଳା କରି, ଦେଶର ଓ ନିଜର ଆତ୍ମାକୁ ଶେଷରେ ଯେପରି ଅପମାନିତ କରିଯିବେନି ବୋଲି ଆଶା ।

ଗଳ୍ପ-ଉପନ୍ୟାସକ୍ଷେତ୍ରରେ ଅନ୍ୟ ଯେଉଁମାନେ ନିଜନିଜର ଅଳ୍ପ-ବହୁତ ଦାନ ଦେଇ-ଚାଲିଛନ୍ତି ବା ଦେଇପାରିଛନ୍ତି, ସେମାନେ ହେଉଛନ୍ତି ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ଓ ସର୍ବଶ୍ରୀ ଲକ୍ଷ୍ମୀଧର ନାୟକ, ଶାନ୍ତନୁକୁମାର ଆଚାର୍ଯ୍ୟ, ରାଜକିଶୋର ପଟ୍ଟନାୟକ ଓ ତାଙ୍କର ଭଗିନୀ ବସନ୍ତକୁମାରୀ । ବିଜ୍ଞାନ-ଅଧ୍ୟାପକ ଶ୍ରୀ ଗୋକୁଳାନନ୍ଦ ମହାପାତ୍ର ଓଡ଼ିଆରେ ବୈଜ୍ଞାନିକ ଉପନ୍ୟାସର ଧାରା ଫିଟାଇସାରିଛନ୍ତି । ଆଡ଼ଭୋକେଟ ରାଜକିଶୋର ପଟ୍ଟନାୟକ ଓ ତାଙ୍କର ସୁଶିକ୍ଷିତା ଭଗିନୀ ବସନ୍ତକୁମାରୀ ଯେପରି ନିଷ୍ଠାର ସହିତ ମାତୃଭାଷାର ସେବା କରିଆସିଛନ୍ତି, ସେଥିପାଇଁ ସେ ଭାଇଭଉଣୀ ଦୁହେଁ ପ୍ରତ୍ୟେକ ଓଡ଼ିଆଠାରୁ ପ୍ରଶସ୍ତି ଦାବି-କରିପାରନ୍ତି । ଦିହେଁ ଗଳ୍ପ ଓ ଉପନ୍ୟାସ ଗଣ୍ଡା ଗଣ୍ଡା ଲେଖି ଛାପିଚାଲିଛନ୍ତି ନିଜ ଖର୍ଚ୍ଚରେ । ଇତିମଧ୍ୟରେ ବସନ୍ତକୁମାରୀଙ୍କ 'ଅମଡ଼ାବାଟ' ସିନେମା ଓ ରଙ୍ଗମଞ୍ଚରେ ଅପୂର୍ବ ସାଫଲ୍ୟ ଲାଭକରିଛି । ଭାଇ-ଭଉଣୀ ଦିହେଁ ବ୍ୟକ୍ତିତ୍ୱ-ସଚେତନ । ସେମାନଙ୍କର ପ୍ରତ୍ୟେକଟି ଲେଖା ନିଜନିଜର ସ୍ୱତନ୍ତ୍ର ଶୈଳୀ ଓ ପର୍ଯ୍ୟବେକ୍ଷଣ ବହନ କରି ବାହାରେ – ଭାଇର ଅଲଗା, ଭଉଣୀର ଅଲଗା – ପୁଣି ଦୁହେଁ ଅନ୍ୟମାନଙ୍କ ଠାରୁ ଅଲଗା । ବସନ୍ତକୁମାରୀଙ୍କ ରଚନାରେ ପୁଣି ନାରୀ-ଚିତ୍ତର ସ୍ୱକୀୟ ସ୍ପର୍ଶ ଆମେ ପାଉଁ ।

'ଅତ୍ୟାଧୁନିକ' କାଳରେ ଶ୍ରୀ ବିଭୂତି ପଟ୍ଟନାୟକ ଅନ୍ତତଃ ସଂଖ୍ୟାଦିଗରୁ ଔପନ୍ୟାସିକ ଭାବରେ ସମଗ୍ର ଓଡ଼ିଆ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ତରୁଣ ବୟସ ହେଲେହେଁ ଏ ଅବଧି ସେ ପ୍ରାୟ ୪୦ର ଖଣ୍ଡ ଉପନ୍ୟାସ ଲେଖିସାରିଲେଣି; କିନ୍ତୁ ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ବିଚାର କରିବାକୁ ଆମ୍ଭମାନଙ୍କୁ କିଛି କାଳ ଅପେକ୍ଷା କରିବାକୁ ପଡ଼ିବ । ଠିକ୍ ସେପରି ସାଂପ୍ରତିକ କାଳରେ କବିତା-କ୍ଷେତ୍ରରେ ମଧ୍ୟ ସର୍ବଶ୍ରୀ ବିଭୂଦତ୍ତ ମିଶ୍ର, ସୀତାକାନ୍ତ ମହାପାତ୍ର, ଉମାଶଙ୍କର ପଣ୍ଡା, ନୃସିଂହକୁମାର ରଥ, ସୌଭାଗ୍ୟକୁମାର ମିଶ୍ର, ମଙ୍ଗଳଚରଣ ବିଶ୍ୱାଳ ଓ କେଶବ ମେହେର ଇତ୍ୟାଦିଙ୍କ ନାମ ଉଲ୍ଲେଖଯୋଗ୍ୟ; କିନ୍ତୁ ଏମାନଙ୍କ ଦାନର ମୂଲ୍ୟାୟନ ମଧ୍ୟ କାଳସାପେକ୍ଷ ।

ରାଜନୈତିକ ନେତା ଡକ୍ଟର ହରେକୃଷ୍ଣ ମହତାବ ସମସାମୟିକ ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଜଣେ ଲେଖକ ଭାବରେ ମଧ୍ୟ ପରିଚିତ । ଅହମଦନଗର ଜେଲ୍‌ରେ ବନ୍ଦୀ ଅବସ୍ଥାରେ ସମୟ କଟେଇବାପାଇଁ ହିଁ ସେ ଓଡ଼ିଶାର ଇତିହାସ ଆଲୋଚନା ଆରମ୍ଭ କରି ବସିଲେ । ଫଳରେ ତାଙ୍କ ହାତରୁ ଆମେ ଓଡ଼ିଶାର ଏକ ନୂତନ ଇତିହାସ ପାଇଲୁ । ଏ ଇତିହାସ ଦଲିଲ-ପ୍ରମାଣରେ ଭର୍ତ୍ତି ସତ; କିନ୍ତୁ ଏହାର ସାହିତ୍ୟିକ ମୂଲ୍ୟ ବିଶେଷ ଅଛି ବୋଲି କହିହେଉନି । ଶ୍ରୀ ମହତାବ କେତେ ଖଣ୍ଡ ଉପନ୍ୟାସ ମଧ୍ୟ ଓଡ଼ିଆରେ ଲେଖିଛନ୍ତି; ଯେଉଁଗୁଡ଼ିକର ବୈଶିଷ୍ଟ୍ୟ ଓ ଅଭିନବତ୍ୱ ହେଉଛି ଏହି ଯେ, ସେଥିରେ ନାୟକନାୟିକାଙ୍କର କର୍ମପ୍ରେରଣା ଆସିଛି ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରୁ । ଏ କ୍ଷେତ୍ରରେ ଶ୍ରୀ ମହତାବ ଅଗ୍ରଗ କହିଲେ ଚଳେ । ପୁଣି, ସେଗୁଡ଼ିକରେ ଆମେ ବାଲେଶ୍ୱର ଜିଲ୍ଲାର ଏକ ବାସ୍ତବ

ଚିତ୍ର ମଧ୍ୟ ପାଇଁ; କିନ୍ତୁ କେବଳ ଉପନ୍ୟାସ ନୁହେଁ, ଶ୍ରୀ ମହତାବଙ୍କ ସବୁ ଲେଖା ମର୍ଯ୍ୟାଦା ହରାଇଥାଏ ଏକ ଭୂଷଣହୀନ ଲିଖନ-ଭଙ୍ଗି ଯୋଗୁଁ, ଯେଉଁଥିରେ ନଥାଏ ଅନୁଭୂତିର ଗଭୀରତା ବା କଳ୍ପନାର ବର୍ଣ୍ଣବୈଭବ; କିନ୍ତୁ ସତ୍ୟବାଦୀ ସ୍କୁଲ ପରେ, ଏକମାତ୍ର ଶ୍ରୀ ମହତାବଙ୍କଠାରେ ସଂସ୍କୃତି ଓ ରାଜନୀତି ଏକତ୍ର ଅବସ୍ଥାନ କରିଥିବାରୁ ସେ ଉତ୍କଳରେ ସେଥିପାଇଁ ବିଶେଷ ପ୍ରତିଷ୍ଠା ଅର୍ଜନ କରିଅଛନ୍ତି । ତାଙ୍କର ରବିବାସରୀୟ ପ୍ରଜାତନ୍ତ୍ର, ଝଙ୍କାର ମାସିକପତ୍ର ଓ ବାର୍ଷିକ ବିଷୁବମିଳନ ଦେଇ ଓଡ଼ିଶାର ଅନେକ ତରୁଣ ଲେଖକ ଓ ଲେଖିକା, ଲେଖନୀ-ଚାଳନାରେ ଉତ୍ସାହିତ ହୋଇ ଆସିଛନ୍ତି । ଲୋକପ୍ରତିନିଧି ଶ୍ରୀ ମହତାବଙ୍କର ଲୋକ-ସମ୍ପର୍କର କାହାଣୀ ହୁଏତ ବହୁକାଳ ଲାଗି ଗୌରବ ବହନ କରି ଚାଲିବ । ଲୋକ-ଚେତନାର-ସ୍ତରରେ-ଲେଖା, ତାଙ୍କ 'ଗାଁ ମଜଲିସ୍' ଯାହା ମଫସଲ ଲୋକଙ୍କୁ କ'ଣ କହିବ ଓ କିମିତି କହିବ, ତା'ର ଏକ ବାଟ ଫିଟାଇଛି ବୋଲି କହିବାକୁ ହେବ ।

କ୍ଷୁଦ୍ରଗଳ୍ପ-କ୍ଷେତ୍ରରେ ସର୍ବଶ୍ରୀ ସୁରେନ୍ଦ୍ର ମହାନ୍ତି, ରାଜକିଶୋର ରାୟ, ମହାପାତ୍ର ନୀଳମଣି ସାହୁ, ବାମାଚରଣ ମିତ୍ର, ମନୋଜ ଦାସ, ପ୍ରାଣବନ୍ଧୁ କର ଏବଂ ବ୍ରହ୍ମାନନ୍ଦ ପଣ୍ଡାଙ୍କ ନାମ ଉଲ୍ଲେଖ୍ୟ । ମହାପାତ୍ର ନୀଳମଣି, ଚତୁରାନନ୍ଦ (ରାମଚନ୍ଦ୍ର ମିଶ୍ର) ଓ ସୁନୀଳ ମିଶ୍ର ବ୍ୟଙ୍ଗ ଗଳ୍ପ ପାଇଁ ପ୍ରସିଦ୍ଧ ହୋଇଉଠିଛନ୍ତି; କିନ୍ତୁ ବୌଦ୍ଧିକ ଗୁଣ ଏବଂ ସୂକ୍ଷ୍ମ ବ୍ୟଙ୍ଗ ଓ ବ୍ୟଞ୍ଜନା ପାଇଁ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପଗୁଡ଼ିକର ଅନନ୍ୟତା ନିଶ୍ଚିତ-ସ୍ୱୀକାର୍ଯ୍ୟ । ଏକମାତ୍ର ଶ୍ରୀ ମହାନ୍ତି ହିଁ ଏପର୍ଯ୍ୟନ୍ତ ତାଙ୍କର ଗଳ୍ପ ଓ ଉପନ୍ୟାସରେ ଓଡ଼ିଶାରେ ରାଜନୈତିକ ପ୍ରତାରଣା ଓ ଭଣ୍ଡାମିକୁ ଟିକିଟିକି କରି କାଟିପକାଇବାକୁ ଚେଷ୍ଟାକରିଛନ୍ତି । ସମ୍ବଲପୁରର ଶ୍ରୀ ଶ୍ରଦ୍ଧାକର ସୂପକାରଙ୍କ ଗଳ୍ପମାଳାରେ ସମ୍ବଲପୁର ଅଞ୍ଚଳର ସ୍ୱକୀୟ ବର୍ଣ୍ଣାଢ଼୍ୟତା ଫୁଟିଉଠୁଥିବାରୁ ସେଗୁଡ଼ିକ ବିଶେଷ ଉପଭୋଗ୍ୟ ହୋଇଉଠିଛନ୍ତି ।

ଓଡ଼ିଆରେ ଦୈନିକ ଓ ମାସିକ ପତ୍ରର ସଂଖ୍ୟା ଦ୍ରୁତଗତିରେ ବଢ଼ି ଚାଲିଛି । ସେମାନଙ୍କ ମାଧ୍ୟମରେ ଓଡ଼ିଆ ଗଦ୍ୟର ପ୍ରକାଶନ-କ୍ଷମତା ମଧ୍ୟ କ୍ରମେ ବୃଦ୍ଧିପାଉଛି । କ୍ରମେ ଅଧିକରୁ ଅଧିକ ଭ୍ରମଣକାହାଣୀ ଦେଖାଦେଉଛି । ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ବିଶେଷ ନଥିଲେ ମଧ୍ୟ, ସେସବୁ ଉତ୍କଳର ଜନସାଧାରଣରେ ବୃହତ୍ତର ପୃଥିବୀର ପରିଚୟ ଯେ ପହଞ୍ଚାଉଛନ୍ତି ତାହାହିଁ ଏକ ବଡ଼ ଲାଭ । ଏ କ୍ଷେତ୍ରରେ ଡ. ଶ୍ରୀରାମଚନ୍ଦ୍ର ଦାଶ, ଡ. ରାଧାନାଥ ରଥ, ଶ୍ରୀ ଅନନ୍ତପ୍ରସାଦ ପଣ୍ଡା, ଶ୍ରୀ ଗୋଲୋକବିହାରୀ ଧଳ, ଶ୍ରୀ ଶ୍ରୀହର୍ଷ ମିଶ୍ରଙ୍କ ନାମ ଉଲ୍ଲେଖ୍ୟ । କଲିକତାକୁ ଛାଡ଼ିଦେଲେ, ସମଗ୍ର ପୂର୍ବଭାରତରେ ଓଡ଼ିଶା ହେଉଛି ଏକମାତ୍ର ରାଜ୍ୟ, ଯେଉଁଠି ତିନିଟା ରଙ୍ଗମଞ୍ଚ ବ୍ୟବସାୟ-ସୂତ୍ରରେ ସାରା ବର୍ଷ ଓ ବର୍ଷବର୍ଷଧରି ନାଟକ ପରିବେଷଣ କରିଚାଲିଛନ୍ତି । ଏକାଙ୍କିକାମାନଙ୍କର ସଂଖ୍ୟା ବି କ୍ରମବର୍ଦ୍ଧମାନ । ଏକ ବର୍ଷ ଶ୍ରୀ ପ୍ରାଣବନ୍ଧୁ କରଙ୍କ ଏକ ଏକାଙ୍କିକା ସମଗ୍ର ଭାରତରେ ଶ୍ରେଷ୍ଠ ବିବେଚିତ ହୋଇଥିଲା । ଓଡ଼ିଆରେ ଜ୍ଞାନକୋଷ ମଧ୍ୟ ପ୍ରକାଶିତ ହେବା ଆରମ୍ଭ ହେଲାଣି ।

**ଆଲୋଚନା :**

ଓଡ଼ିଆରେ ଆଲୋଚନା-ସାହିତ୍ୟ ମଧ୍ୟ ଆସ୍ତେ ଆସ୍ତେ ବୃଦ୍ଧିପାଉଛି । ଓଡ଼ିଆ ସାହିତ୍ୟର ଭିନ୍ନ ଭିନ୍ନ ଯୁଗ ଉପରେ ଶ୍ରୀ ନଟବର ସାମନ୍ତରାୟ ଓ ଶ୍ରୀ ବଂଶୀଧର ମହାନ୍ତିଙ୍କ ଆଲୋଚନା ନୂତନ ଆଲୋକପାତ କରିଛି । ଗତ ଶତାବ୍ଦୀର ମଧ୍ୟଭାଗରୁ ଏ ଶତାବ୍ଦୀର ମଧ୍ୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ପଶ୍ଚାଦ୍‌ପଟ ଉପରେ ନଟବର ସାମନ୍ତରାୟଙ୍କ ଗବେଷଣା, ସେହି ଆଲୋଚନା ପାଇଁ ମୂଳପତ୍ତନ ଯୋଗାଇଛି କହିଲେ ଚଳେ । ସର୍ବଶ୍ରୀ ଚିନ୍ତାମଣି ବେହେରା, ଗୋପାଳ ଚନ୍ଦ୍ର ମିଶ୍ର, ଅସିତ କବି, ବେଣୁଧର ରାଉତ, ନରେନ୍ଦ୍ର କୁମାର ମିଶ୍ର, ନିତ୍ୟାନନ୍ଦ ଶତପଥୀ, ସର୍ବେଶ୍ୱର ଦାସ, ପଠାଣି ପଟ୍ଟନାୟକ, ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓ ଗଙ୍ଗାଧର ବଳ ପ୍ରଭୃତି ଓଡ଼ିଆ ଅଧ୍ୟାପକବର୍ଗ ସ୍ୱ-ସ୍ୱ ଜ୍ଞାନଶକ୍ତି ଅନୁଯାୟୀ ଆଲୋଚନା ବିଭାଗକୁ ପରିପୁଷ୍ଟ କରୁଛନ୍ତି । କିନ୍ତୁ ଏହି ଆଲୋଚନାର ସ୍ତର ଊର୍ଦ୍ଧ୍ୱଗ ନହୋଇ, ସାଧାରଣତଃ ସନ-ତାରିଖ-ଗାଁ-ଶବ୍ଦାର୍ଥ ପୋଥିସଂଖ୍ୟା ପ୍ରଭୃତି ସାହିତ୍ୟରାଜ୍ୟର ଅପ୍ରଧାନ ସ୍ତରରେହିଁ ରହିଯାଇଥାଏ । ସ୍ଲୋଗାନ୍ ସଂଗ୍ରାମ୍ ତ ପୁଣି ଅଛି ବାମପନ୍ଥୀ ଓ ପ୍ରଗତିବାଦୀମାନଙ୍କ ତରଫରୁ । ଏହି ବ୍ୟାପକ ଅରାଜକତା ଓ ରକ୍ଷଣଶୀଳତା ଭିତରେ ଏକମାତ୍ର ତରୁଣ ଚିତ୍ତରଞ୍ଜନ ଦାସଙ୍କ ରଚନା, ବିଚାର ଓ କଳ୍ପନାର ନୂତନ ଧ୍ୱନି ବହନ କରି ପ୍ରକୃତରେ ଚିତ୍ତରଞ୍ଜକ ହୋଇଉଠୁଛି । ଓଡ଼ିଆ ସାହିତ୍ୟର ପ୍ରବନ୍ଧ ବିଭାଗ ଏହି ଡିଗ୍ରୀହୀନ ଅଥଚ ବିଜ୍ଞ ଓ ମନସ୍ୱୀ ତରୁଣଙ୍କଦ୍ୱାରା ବିପୁଳ ଭାବରେ ସମୃଦ୍ଧ ହୋଇଉଠିବ, ଏହା ଆମର ଦୃଢ଼ ଆଶା । ନିକଟରେ ପ୍ରକାଶିତ ତାଙ୍କର 'ଜୀବନ ବିଦ୍ୟାଳୟ' ଓଡ଼ିଶାର ଶିକ୍ଷା ଓ ରମ୍ୟଚିନ୍ତା-ରାଜ୍ୟରେ ଏକ ନୂତନ ଘଟଣା ।

ମୃତ୍ୟୁପର୍ଯ୍ୟନ୍ତ-ଅକ୍ଲାନ୍ତ-ସାଧନାରତ ଆର୍ତ୍ତବଲ୍ଲଭ ମହାନ୍ତି, ତରୁଣମାନଙ୍କଠାରୁ ଅଧିକ ଉତ୍ସାହରେ ସାହିତ୍ୟଚର୍ଚ୍ଚା କରିଚାଲିଥିଲେ; କିନ୍ତୁ ପ୍ରାଚୀନ ଗ୍ରନ୍ଥମାନଙ୍କର ନବ-ସଂସ୍କରଣ ପ୍ରକାଶିତ କରି ସେ ଯେଉଁ ଦୀର୍ଘ ଭୂମିକାସବୁ ଯୋଗକରିଗଲେ, ସେଗୁଡ଼ିକ ପରିଶ୍ରମର ପରିଚାୟକ ସତ୍ୟ, ପ୍ରକୃତ ପାଣ୍ଡିତ୍ୟର ନୁହେଁ । ସେସବୁ ଭୂୟୋବଲୋକନ ଏବଂ ପଦ ଓ ଭାବ-କଳ୍ପମାନଙ୍କର ଯାଥାର୍ଥ୍ୟର ପ୍ରତ୍ୟୟ ଅଭାବରୁ, ଆବୁରୁ-ଜାବୁରୁ ହୋଇ ରହିଗଲା । କବିତା-ରଚନା ପରି ପ୍ରବନ୍ଧ-ରଚନା ମଧ୍ୟ ଯେ ଏକପ୍ରକାର ଅନ୍ତର୍ଦୃଷ୍ଟି ଦରକାର କରେ, ଏହା ଚିତ୍ତରଞ୍ଜନଙ୍କ ରଚନା ବ୍ୟତୀତ ଉତ୍କଳ ଦେଶରେ ଏପର୍ଯ୍ୟନ୍ତ ଅନ୍ୟମାନଙ୍କର ହୃଦ୍‌ଗତ ହେଲାଣି ବୋଲି ମନେହେଉନାହିଁ ।

ଆର୍ତ୍ତବଲ୍ଲଭ ମହାନ୍ତି ଓ ତାଙ୍କପରିକା ଦାମ୍ଭିକତାପୂର୍ଣ୍ଣ ବହୁ ଡିଗ୍ରୀଧାରୀ ଅଧ୍ୟାପକ-ଲେଖକଙ୍କ ବିପରୀତ ଦିଗରେ ଏକାକୀ ଦଣ୍ଡାୟମାନ, ପଣ୍ଡିତ ବିନାୟକ ମିଶ୍ର । ନିଜର ପାଣ୍ଡିତ୍ୟ ଓ ନୀରବ କିନ୍ତୁ ବିସ୍ମୟକର ସିଦ୍ଧି ପାଇଁ ସମଗ୍ର ଜାତିଠାରୁ ଯେଉଁ ସମ୍ମାନ ପାଇବାର କଥା ସେସବୁ କିଛି ନପାଇ, ସେ ଦାରିଦ୍ର୍ୟ ଓ ଅବହେଳାରେ ଶେଷ ଜୀବନ-ଯାପନ କରୁଛନ୍ତି । ପୂର୍ବର ମଧ୍ୟ-ଇଂରାଜୀ ବିଦ୍ୟାଳୟର ଶିକ୍ଷାମାତ୍ରପ୍ରାପ୍ତ ପଣ୍ଡିତ ବିନାୟକ, ହାଇସ୍କୁଲ ବା କଲେଜର ସୀମା ନମାଡ଼ି, ଇଂରାଜୀ ସହିତ ବହୁଭାଷାରେ ନିଜକୁ ବିଦ୍ୱାନ୍ କରାଇପାରିଛନ୍ତି

କେବଳ ନୁହେଁ, ନିଜ ଗବେଷଣା ଫଳରେ ଓଡ଼ିଶା ଦେଶର ଇତିହାସରେ ଏକ ଗୌରବମୟ ଅଧ୍ୟାୟ, ଭୌମରାଜବଂଶକୁ ଯୋଗକରିଯାଇଅଛନ୍ତି । ଏପର୍ଯ୍ୟନ୍ତ ତାଙ୍କର 'ଓଡ଼ିଆ ଭାଷାର ଇତିହାସ' ଓ 'ଓଡ଼ିଆ ସାହିତ୍ୟର ଇତିହାସ' ସେହି କ୍ଷେତ୍ରରେ ଦୃଢ଼ାସୀନ । ପଣ୍ଡିତ ବିନାୟକ, ଜରାଜୀର୍ଣ୍ଣ ସ୍ୱାସ୍ଥ୍ୟ ଓ ଦୈନ୍ୟ ପରିସ୍ଥିତିରେ ମଧ୍ୟ ସାଧନାରତ । ପୁରସ୍କାର-କାମନାହୀନ ଏ ପ୍ରକାର ଜ୍ଞାନତପସ୍ୱୀଙ୍କର ବିରାଟ ସାଧନା ଓ ସିଦ୍ଧି ଯେ ଏ ଦେଶରେ କୌଣସି ଶୁଭ ପ୍ରତିକ୍ରିୟା ଆଣିପାରିନି, ତାହା ଏକ ଐତିହାସିକ ଜାତିପକ୍ଷରେ ନିନ୍ଦାର କଥା ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ନାନା ଗ୍ରନ୍ଥ ରଚନା ଭିତରେ, ଜୀବନବ୍ୟାପୀ ସାଧନାର ଫଳସ୍ୱରୂପ ଯେଉଁ ବର୍ଣ୍ଣନାତ୍ମକ ବିପୁଳକାୟ 'ଓଡ଼ିଆ ସାହିତ୍ୟର ଇତିହାସ' ଭାଷାକୁ ଦେଇଗଲେ, ତାହାହିଁ ତାଙ୍କୁ ସ୍ମରଣୀୟ କରି ରଖିବ । ଦାଶଙ୍କ 'ଇତିହାସ' ଅଧ୍ୟବସାୟ-ଗୌରବମୟ, ଯଦିଓ ଭୂୟୋଜ୍ଞାନମୂଳକ ପ୍ରବୀଣ ଆଲୋଚନାଶୂନ୍ୟ । ତାହା ତାଙ୍କ ଲେଖନୀର କ୍ଷମତାର ବାହାରେ ।

**ବିଜ୍ଞାନର ପ୍ରସାର –**

ଡକ୍ଟର ବସନ୍ତ କୁମାର ବେହୁରା, ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର ଗଦାଧର ମିଶ୍ର, ଡକ୍ଟର ବିଦ୍ୟାଧର ପାଢ଼ୀ ପ୍ରଭୃତି ବିଜ୍ଞାନାଧ୍ୟାପକମାନେ ଓଡ଼ିଆ ଭାଷାରେ ବୈଜ୍ଞାନିକ-ତତ୍ତ୍ୱର ପ୍ରଚାର ଓ ପ୍ରସାର ପାଇଁ ଯଥେଷ୍ଟ ଆଗୁଆ କାମ କରିଗଲେଣି । ତରୁଣ ବୈଜ୍ଞାନିକମାନଙ୍କଦ୍ୱାରା ସ୍ୱ-ଇଚ୍ଛା ଓ ଉଦ୍ୟମରେ ପ୍ରତିଷ୍ଠିତ 'ବିଜ୍ଞାନ-ପ୍ରଚାର-ସମିତି' ଖୁବ୍ ଭଲ କାମ କଲେଣି ଓ କରିବେ ବୋଲି ଆଶା କରାଯାଉଛି । ରାଜନୀତି, ଅର୍ଥନୀତି ଓ ସମାଜନୀତି କ୍ଷେତ୍ରରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଓ ଡକ୍ଟର ବୈଦ୍ୟନାଥ ମିଶ୍ର ପ୍ରଭୃତି ସାମୟିକ ସମସ୍ୟାମାନଙ୍କ ଉପରେ ଯଥାଯୋଗ୍ୟ ପ୍ରବନ୍ଧ ବା ପୁସ୍ତକ ପ୍ରକାଶ କରି ଜନମତକୁ ଦିଗ୍‌ଦର୍ଶନ ଦେଉଛନ୍ତି । ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଶ୍ରୀ କେଦାରନାଥ ମହାପାତ୍ର, ଡକ୍ଟର ନବୀନ କୁମାର ସାହୁ ଓ ଶ୍ରୀ ସୁଧାକର ପଟ୍ଟନାୟକ ପ୍ରଭୃତିଙ୍କ ଐତିହାସିକ ପ୍ରବନ୍ଧାବଳି ସୁଖପାଠ୍ୟ ଓ ମୂଲ୍ୟବାନ୍ ।

କିନ୍ତୁ ସମସାମୟିକ କାଳରେ ପ୍ରକୃଷ୍ଟ ଓଡ଼ିଆ ଗଦ୍ୟଶୈଳୀ ପାଇଁ ଯଦି ପୁରସ୍କାର ଦିଆଯିବାର କଥା ହୁଏ, ତେବେ ତାହା ବୋଧହୁଏ ଯିବ କୃଷ୍ଣପ୍ରସାଦ ବସୁଙ୍କ ହାତକୁ । 'ଝଙ୍କାର' ମାସିକ ପତ୍ରର ପୃଷ୍ଠାମାନଙ୍କରେ ଶ୍ରୀ ବସୁ ଓଡ଼ିଆ ଯାତ୍ରାର ଆଧୁନିକ ଇତିହାସ 'ଆଖଡ଼ାଘରେ ବୈଠକ' ନାମ ଦେଇ ଲେଖିବସିଲେ । ଶ୍ରୀ ବସୁ ଆଉ କେବେ ଓଡ଼ିଆ-ଗଦ୍ୟ ଲେଖିଥିବାର ଜଣାନଥିଲା । ତାଙ୍କର କୌଣସି ସାହିତ୍ୟିକ ସମ୍ମାନ ପାଇଁ ଆସ୍ଫାଳନ ଏବେ ବି ନାହିଁ; କିନ୍ତୁ ଏହି 'ଆଖଡ଼ାଘରେ ବୈଠକ' ଓଡ଼ିଆ ଗଦ୍ୟର ଏକ ବିସ୍ମୟକର ପ୍ରକାଶ । ଗ୍ରାମ୍ୟ ଓ ଶିଷ୍ଟର ଅପୂର୍ବ ସମ୍ମିଶ୍ରଣରେ, ସୂକ୍ଷ୍ମ ହାସ୍ୟରସର ଓତପ୍ରୋତତାରେ, ବାକ୍ୟର ଅବାକ୍‌କାରୀ ସାବଲୀଳତାରେ ଏବଂ ବର୍ଣ୍ଣନାର କ୍ଷମତାରେ ଶ୍ରୀ ବସୁଙ୍କ ଆଖଡ଼ାଘରେ ବୈଠକ' ପ୍ରକୃତରେ ପରମ ଉପଭୋଗ୍ୟ ସାହିତ୍ୟ ହୋଇଉଠିଛି ।

**ଉଚ୍ଚସ୍ତରୀୟ ସମାଲୋଚନା –**

କିନ୍ତୁ ସମସାମୟିକ ଓଡ଼ିଆ ସାହିତ୍ୟରେ ଦୁର୍ବଳତମ ଓ ଦରିଦ୍ରତମ ବିଭାଗ ହୋଇ ରହିଯାଉଛି ବୋଧହୁଏ ସାହିତ୍ୟ-ସମାଲୋଚନା । ପତ୍ରପତ୍ରିକାମାନଙ୍କର ପୃଷ୍ଠାମାନଙ୍କରେ ଲମ୍ବା ଲମ୍ବା ଆଲୋଚନା ପ୍ରଚୁର ପ୍ରକାଶିତ ହେଉଛି ସତ; କିନ୍ତୁ ସେସବୁର ସ୍ତର ଅତି ନିମ୍ନ । ସାହିତ୍ୟକ୍ଷେତ୍ରରେ ମୂଲ୍ୟ ନିର୍ଦ୍ଧାରଣ ଏକ ସୂକ୍ଷ୍ମ, କୋମଳ, ଅନ୍ତର୍ଦୃଷ୍ଟି-ସମ୍ପନ୍ନ ପ୍ରଚେଷ୍ଟା । ସେଠି ଗୁଡ଼ାଏ ଅବାନ୍ତର କଥା ଗଦାକରି ନିଜର ପାଣ୍ଡିତ୍ୟ ପ୍ରତିଷ୍ଠାପିତ କରିବାର ପ୍ରୟାସ କେବଳ ହାସ୍ୟକର ନୁହେଁ, ବରଂ ଏକ ବିପଜ୍ଜନକ ବ୍ୟାପାର । ଏହା ଯେ ବିଶେଷ ଭାବରେ ଆସୁଛି ଓଡ଼ିଆ ଅଧ୍ୟାପକମାନଙ୍କଠାରୁ ତାହାହିଁ ଅତି ପରିତାପର କଥା ଓ ଅତି ଅଶୁଭ ଲକ୍ଷଣ । ଏବର ଓଡ଼ିଆ ଶିକ୍ଷକ ଓ ଅଧ୍ୟାପକମାନେ ଅଧିକାଂଶ ଭାବରେ ଇଂରାଜୀ ଓ ସଂସ୍କୃତ ସହିତ ଘନିଷ୍ଠ ସମ୍ପର୍କହୀନ । ଖାଲି ଓଡ଼ିଆ ପଢ଼ି, ସାହିତ୍ୟ ତତ୍ତ୍ୱର ଆଲୋଚନା ବା ବିଶ୍ୱସାହିତ୍ୟର ପରିପ୍ରେକ୍ଷିତରେ ସାହିତ୍ୟର ମୂଲ୍ୟାଙ୍କନ କିପରି ସମ୍ଭବ ହୋଇପାରେ ଆଜିର ଯୁଗରେ ? ଫଳରେ ଏହି ଅଧ୍ୟାପକମାନଙ୍କ ପ୍ରବନ୍ଧ-ପ୍ରସାଦାତ୍, ଓଡ଼ିଆରେ ଏବେ ସମାଲୋଚନା କହିଲେ ଗୁଡ଼ାଏ ଉଦ୍ଧୃତିର ସମାହାର ବା ଅଯୁକ୍ତିପ୍ରତିଷ୍ଠ ନିନ୍ଦା ବା ପ୍ରଶଂସା; ଯାହା ବିଶ୍ୱସାହିତ୍ୟ ସହିତ ଅନାସକ୍ତ ଓ ନିରପେକ୍ଷ । ପୂର୍ବେ କଳିଙ୍ଗ-ଭାରତୀର କଥା କୁହାଯାଇଛି । ସମସାମୟିକ ଓଡ଼ିଆ ସାହିତ୍ୟରେ କ୍ରମବ୍ୟକ୍ତ ଅନ୍ଧକାରର ପ୍ରକୃଷ୍ଟ ପ୍ରତୀକ ହୁଏତ ଏହି କଳିଙ୍ଗ-ଭାରତୀ, ଯାହାର ଅନୁଗାମୀମାନେ ମନେକରନ୍ତି ଓ ଟେବୁଲ ବାଡ଼େଇ ପ୍ରଚାର କରନ୍ତି ଯେ ମଧ୍ୟ-ଯୁଗୀୟ ଓଡ଼ିଆ ଛାନ୍ଦ-କାବ୍ୟମାନଙ୍କ ପରି ଅପୂର୍ବ ସୃଷ୍ଟି ସମଗ୍ର ବିଶ୍ୱସାହିତ୍ୟରେ ନାହିଁ । ଆମ ଦେଶରେ ମନ୍ତ୍ରୀ, ପଣ୍ଡିତ ଓ ବୁଦ୍ଧିଜୀବୀ ବି ଏପରି ଅଛନ୍ତି ଯେଉଁମାନଙ୍କର ସତ୍‌ସାହସ ନାହିଁ ଯଥାର୍ଥ କଥା କହିବାକୁ । ସାମୟିକ ବାହାବାପାଇଁ ସେମାନେ ଏଇପରି ଅଭିମତକୁ ମଧ୍ୟ ସମର୍ଥନ କରିଚାଲନ୍ତି ।

କିନ୍ତୁ ମନେରଖିବାକୁ ହେବ ଯେ, ଏସବୁ ଏକ ଜାତୀୟ ସାହିତ୍ୟର ସୁସ୍ଥ ସବଳ ଅଭିବୃଦ୍ଧିର ପନ୍ଥା ନୁହେଁ । ଆମର ପ୍ରିୟ କବି ଦୀନକୃଷ୍ଣ, ଦୁଇଶହ ବର୍ଷ ତଳେ ତାଙ୍କ ମନୋଜ୍ଞ କାବ୍ୟ 'ରସକଲ୍ଲୋଳ' (ଶେଷ ଛାନ୍ଦ)ରେ ସମାଲୋଚକ ଓ ସମାଲୋଚନାର ଗୁରୁତ୍ୱ ନେଇ ଯାହା କହିଯାଇଛନ୍ତି, ତାହାହିଁ ହେଲେ ଆଜିର ବୁଦ୍ଧିଜୀବୀମାନଙ୍କୁ ଏ ଦିଗରେ ବାଟ ଦେଖାଉ !

''କବିତ୍ୱ ବନିତା, କବି ତା ପିତା / କହିବା ଲୋକ ତାର ଉପମାତା,
କଲେ ତାକୁ ଭୋଗ ରସିକ ନେତା / କେତେହେଁ ଅବା ରହଇ ଯୋଗ୍ୟତା,
କୁମତି ଗୁଆଁର, / କେବଳ ବଇମାତ୍ର ଭାଇ ତାର ।''

× × × ×

''କବିତ୍ୱ-କୋଷେ ନାନା ଦ୍ରବ୍ୟ ଥାଇ / କିଛି ଯାର ଜ୍ଞାନ-ଚକ୍ଷୁ ନଥାଇ
କରନ୍ତି ଯାଇ ତହିଁ ଅଧିକାର / କିଅଁତ ଲାଜ ନ ଥାଇ ତାଙ୍କର,
କାର୍ଯ୍ୟ ପଡ଼ିଗଲେ, / କେବଳ ବେଭାର ସରଇ ଭଲେ ।''

ବର୍ତ୍ତମାନ ପାଠକମାନଙ୍କଠାରୁ ସୁପରିଚିତ ଅଥଚ ଅପୂର୍ବ ଔପନିଷଦିକ ଶାନ୍ତିବାଚନ ଶୁଣାଇହିଁ ବିଦାୟ ନିଏଁ । ପାଠକପାଠିକାମାନଙ୍କଠାରେ ଓଡ଼ିଶାର ପ୍ରତ୍ୟେକ ପୁରାଣ-ପାଠକର ଯେଉଁ ମଧୁର କ୍ଷମା-ଭିକ୍ଷା, 'ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇବ, ଲେଖନକାର ଦୋଷ ନ ଧରିବ' – ତାହା ମଧ୍ଯ ମାଗିରଖୁଛି ।

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ,
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

## ପରିଶିଷ୍ଟ : ୧ । ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ

'ସବୁଜ ସ୍କୁଲ'ର ଠିକ୍ ପଛେ ପଛେ ଆସି ଦେଖାଦେଇଥିଲେହେଁ, ମାୟାଧର ମାନସିଂହଙ୍କ ପ୍ରତିଭା ସବୁଜଧାରାରୁ ଏକ ବଳିଷ୍ଠ ଓ ଅପ୍ରତ୍ୟାଶିତ ବ୍ୟତିକ୍ରମ । 'ସବୁଜ ବିଦ୍ୟାଳୟ'ର ସ୍ରଷ୍ଟାମାନଙ୍କ ପ୍ରତି ଏହି ପ୍ରାୟ-ସମସାମୟିକ କବି ମାନସିଂହଙ୍କ 'ପରଧର୍ମ' ପ୍ରବନ୍ଧରେ ଯେଉଁ କାବ୍ୟିକ ପ୍ରତିବାଦ ନିହିତ, ତାହାରି ମଧ୍ୟରେହିଁ ମାନସିଂହଙ୍କର ସୃଷ୍ଟି-ମୌଳିକତାର ସାର୍ଥକ ପରିଚୟ ବିଦ୍ୟମାନ । ଏହି ସ୍ରଷ୍ଟା ପ୍ରାୟ ଗତ ଅର୍ଦ୍ଧଶତାବ୍ଦୀଧରି ଏହି ଜାତିକୁ ତାଙ୍କର ଗୀତିକବିତା, କଥା ବା ଗାଥାକବିତା, ଚତୁର୍ଦ୍ଦଶପଦୀ କବିତା, ବ୍ୟଙ୍ଗ କବିତା, କାବ୍ୟ, ନାଟକ, କାବ୍ୟ-ନାଟିକା, ସମୀକ୍ଷାଧର୍ମୀ ସାରସ୍ୱତ ପ୍ରବନ୍ଧ, ସାହିତ୍ୟର ଇତିହାସ, ପୁଣି ଶିକ୍ଷା, କଳା ଓ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧାବଳି ଦାନ କରିଆସିଛନ୍ତି । ଜାତିପ୍ରତି ତାଙ୍କର ଏହି ଅଜସ୍ର ଦାନ ମଧ୍ୟରେ ଶ୍ରୀ ମାନସିଂହଙ୍କର ସୃଷ୍ଟି-ପ୍ରତିଭା ମୁଖ୍ୟତଃ କାବ୍ୟଧର୍ମୀ ବୋଲି ସ୍ୱୀକୃତ ହେଉଥିଲେହେଁ ତାଙ୍କ ସୃଷ୍ଟିର ଅନ୍ୟାନ୍ୟ ବିଭାବ ଓ ବିଭବ (ସ୍ଥଳବିଶେଷକୁ ପରିହାର କଲେ) ସ୍ୱକୀୟତା ମାଧୁରୀରେ ସ୍ନିଗ୍ଧ ଏବଂ ଶକ୍ତିମାନ୍, ସୃଷ୍ଟି-ବ୍ୟଞ୍ଜନା ଦୃଷ୍ଟିରୁ ଅନବଦ୍ୟ ଓ କାଳଜୟୀ ।

ମାନସିଂହଙ୍କ ସୃଷ୍ଟି-ପ୍ରତିଭାକୁ ଆଲୋଚନାର ସହଜ ଅବବୋଧ ପାଇଁ ମୁଖ୍ୟତଃ ସୌନ୍ଦର୍ଯ୍ୟ, ପ୍ରଣୟ ଓ ପରିଣୟ, ସତ୍ୟ ଓ ମାନବିକତା ଏବଂ ପରିଶେଷରେ ଐଶୀଚେତନା ଓ ସାର୍ବଭୌମିକ ପରିକଳ୍ପନା ଦୃଷ୍ଟିରୁ ଆଲୋଚନା କରାଯାଇପାରେ । ଅଳ୍ପକଥାରେ କହିଲେ, ଏହି ପ୍ରତିଭା ଭାରତୀୟ ସାହିତ୍ୟ ଓ ସଂସ୍କୃତିର ପରମ୍ପରା ଦୃଷ୍ଟିରୁ ସର୍ବଦା 'ସତ୍ୟ, ଶିବ ଓ ସୁନ୍ଦର'ର ପୂଜାରୀ ଏବଂ 'ସତ୍ୟ'ହିଁ ତାଙ୍କର ସମସ୍ତ ସୃଷ୍ଟି ମଧ୍ୟରେ ଏକ ସକ୍ରିୟ ଭୂମିକାରୂପେ ତାଙ୍କର ସମ୍ବେଦନଶୀଳ ଆତ୍ମା ଓ ସହଜ ବୌଦ୍ଧିକ ଚିନ୍ତାର ବାହକ ହୋଇ ଆସିଛି । ଭୌଗୋଳିକ ପରିବେଶ ବା ସମସାମୟିକ ରାଜନୀତିକ ସ୍ଲୋଗାନମୁକ୍ତ ତାଙ୍କର ସୃଷ୍ଟିଜୀବନ ସର୍ବଦା ହୋଇଆସିଛି ମାନବାତ୍ମାର ମୁକ୍ତିସନ୍ଧାନୀ ।

**ପଲ୍ଲୀକବି ମାନସିଂହ –**

ଏହି କାବ୍ୟ-ପୁରୁଷର ଜନ୍ମ, ସ୍ନିଗ୍ଧ-ପ୍ରାକୃତିକ-ପରିବେଶ-ମଣ୍ଡିତ ଏକ କ୍ଷୁଦ୍ର ପଲ୍ଲୀ-ଗ୍ରାମରେ; ଯାହାର ଛବିଳ ସୌନ୍ଦର୍ଯ୍ୟର ଚିତ୍ର କବି ନିଜେ ତାରୁଣ୍ୟର ତରଳତା ଦେଇ

ଅଙ୍କନ କରିଛନ୍ତି –

''ବିସ୍ତୀର୍ଣ୍ଣ ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତ-ସିକତା ବିସ୍ତାରେ
ମହୋଦଧି ତଟପ୍ରାନ୍ତେ । ସିନ୍ଧୁ-ସିକତାରେ
କ୍ରୀଡ଼ନ୍ତି ନିଶୀଥେ ତହିଁ ଜଳକନ୍ୟାଗଣ
କିଆକୁଞ୍ଜେ ଲୁଚକାଳି କୋମଳଚରଣ
ବୁଡ଼େ ନାହିଁ ବାଲୁକାରେ । ବର୍ଷାରମ୍ଭେ ତହିଁ
ପୁନ୍ନାଗ କୁସୁମ ଗନ୍ଧ ପ୍ରାଣ ଦିଏ ଦହି
ବିରହୀ ତରୁଣଙ୍କର । କ୍ଷୁବ୍ଧ ପାରାବାର
ଢାଳେ ଚୂର୍ଣ୍ଣ-ମଣି-ଚୂଡ଼ ଦୀର୍ଘ ଉର୍ମିବାର
ସେ ଭୂମିର ପଦତଳେ; ତା ଗୁରୁଗର୍ଜନ
ରଚେ ତହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।।''

ପଲ୍ଲୀ-କ୍ରୋଡ଼ରେ-ଲାଳିତପାଳିତ ଏହି କାବ୍ୟପ୍ରତିଭା ନିଜର କୈଶୋର ଓ ଯୌବନରେ ବହୁ କାବ୍ୟ-କବିତା ରଚନା କରିଯାଇଛି; ଯାହା ତାଙ୍କର ସେହି ପଲ୍ଲୀଜୀବନ-ବୋଧର ଉଜ୍ଜ୍ୱଳ ଓ ଅଭ୍ରାନ୍ତ ସ୍ମାରକୀ । 'ଘରପଶା', 'ପଲ୍ଲୀସ୍ନାନଘାଟେ', 'ମାଲୁଣି', 'ରେଙ୍ଗୁନଚିଠି', 'ବିଲଲକ୍ଷ୍ମୀ', 'ବର୍ଷାସନ୍ଧ୍ୟା', 'ପଲ୍ଲୀପ୍ରିୟା', 'ପଲ୍ଲୀସନ୍ଧ୍ୟା' ଓ 'ତଅପୋଇ-ବିଳାପ' ପ୍ରଭୃତି କବିତାବଳି ଏବଂ 'ସାଧବଝିଅ' ଓ 'ଜେମା' କାବ୍ୟମାନ ତାଙ୍କର ଏହି ସୃଜନଧାରାର ସାର୍ଥକ ନିଦର୍ଶନ । ଓଡ଼ିଆ ସାହିତ୍ୟରେ ପ୍ରଥମ ପଲ୍ଲୀକବି ନନ୍ଦକିଶୋର ଓ ପରବର୍ତ୍ତୀ 'ପଲ୍ଲୀଶ୍ରୀ'ର କବି ସଚ୍ଚିଦାନନ୍ଦଙ୍କ ମଧରେ ମାନସିଂହଙ୍କ ପଲ୍ଲୀରସାଶ୍ରୟୀ କାବ୍ୟ-କବିତାମାନ ଯଥାର୍ଥରେ ଏକ ମନୋଜ୍ଞ ସଂଯୋଗସେତୁ ।

**ସ୍ୱଦେଶକବି ମାନସିଂହ –**

ଏହି ଶତକର ଦ୍ୱିତୀୟ ଦଶନ୍ଧିର ପ୍ରାରମ୍ଭରେ କବି ମାନସିଂହଙ୍କ କାବ୍ୟ-ପ୍ରତିଷ୍ଠାର ଆବିର୍ଭାବ ଆମେ ଯେତେବେଳେ ପ୍ରଥମେ ଲକ୍ଷ୍ୟ କରୁ, ତାହାର ପ୍ରଥମ ପଦଚାରଣ ସ୍ୱଦେଶର ପ୍ରକୃତିମାଧୁରୀ, ମାନବିକ କୀର୍ତ୍ତିକଳାପ ଓ ଆତ୍ମିକ ରସ ସମ୍ପଦକୁ ନେଇହିଁ ଗଠିତ ଥିଲା । 'କୋଣାର୍କ', 'ବାରବାଟୀ', 'ମହାନଦୀରେ ଜ୍ୟୋତ୍ସ୍ନାବିହାର' ବା 'ଗୋପ-ତର୍ପଣ' ପ୍ରଭୃତି କବିତା ତାଙ୍କ ପ୍ରତିଭାର ଏହି ଆଦ୍ୟ ଲାବଣ୍ୟ ଓ ସୌଷ୍ଠବ ବହନ କରିଛନ୍ତି । ଏହି ସୃଷ୍ଟି-ସୌନ୍ଦର୍ଯ୍ୟ ବିକାଶ ଆମେ ପରେ ପୁଣି ତାଙ୍କର 'ବାପୁତର୍ପଣ', 'ରାଜକବି', 'ବାରବାଟୀ', 'ସାଧବଝିଅ' ବା 'ପୂଜାରିଣୀ' ପ୍ରଭୃତି ପରବର୍ତ୍ତୀ କବିତା, ନାଟକ ଓ କାବ୍ୟନାଟିକା ପ୍ରଭୃତିରେ ମଧ ଦେଖୁ । ଏ ଦେଶର ମୂକ ଶିଳାଖଣ୍ଡର ପ୍ରାଣସ୍ୱପ୍ନ, ଏ ଦେଶର ଗୁଳ୍ମଲତାର ପ୍ରାଣବାର୍ତ୍ତା, ଏ ଦେଶ ମଣିଷର ଗୌରବମୟ ଇତିହାସର ଆଲେଖ୍ୟ, ଏ ଦେଶର ପ୍ରେମିକ ପ୍ରେମିକାର ମିଳନ-ବିରହ-ଜନିତ ଶଙ୍କା, ସଂଶୟ ଓ ଅଶ୍ରୁଳ

ପ୍ରାଣସ୍ପନ୍ଦନ ଏବଂ କେବଳ ଏ ଦେଶର ନୁହେଁ, ସର୍ବଦେଶୀୟ ଓ ସାର୍ବକାଳିକ ଜଣେ ସାଧାରଣ ମନୁଷ୍ୟର ଅନୁଭୂତି ଓ ହୃଦୟାବେଗହିଁ ତାଙ୍କର ଏହିସବୁ ସୃଷ୍ଟି ମଧ୍ୟରେ ରୂପ ଓ ରସରମ୍ୟତା ଯେ ଅର୍ଜନ କରିଛି, ଏହା ନିଃସନ୍ଦେହ । ଅଥଚ ଏ ଦେଶର ମଧ୍ୟଯୁଗୀୟ ଇତିହାସର ଗୌରବୋଜ୍ଜ୍ୱଳ ଅତୀତ ତାଙ୍କ ଶିଳ୍ପପୁର ମଧ୍ୟରେ ଯେପରି ପୁନର୍ଜୀବିତ, ସେହିପରି ମଧ୍ୟ ନବଯୁଗର ଆଶା-ଆକାଙ୍‌କ୍ଷା ଓ ଆନନ୍ଦବେଦନା ମୂର୍ତ୍ତିମନ୍ତ ଓ ଜୀବନ୍ତ । ଯେକୌଣସି ମହାନ୍ ସ୍ରଷ୍ଟାଙ୍କ ପରି କବି ମାନସିଂହଙ୍କର ସୃଷ୍ଟିପ୍ରତିଭା ଏକାଧାରରେ ପରମ୍ପରାଧର୍ମୀ ଓ ପୁରୋଦୃଷ୍ଟିସମ୍ପନ୍ନ । ତେଣୁ ତାଙ୍କର ସୃଷ୍ଟି-ସୌଧ ମୂଳରେ ସ୍ୱଦେଶୀ ଓ ବିଦେଶୀ, ଜାତୀୟ ଓ ବିଜାତୀୟ ବହୁ ଅଗ୍ରଜ ଶିଳ୍ପସୂରିଙ୍କର କାବ୍ୟସାଧନାର ପରଂପରା ଆମେ ଲକ୍ଷ୍ୟ କରୁ । କେବଳ ଐତିହ୍ୟକୁ ମୂଳଧନ ବା ପାଥେୟ ନକରି ଏହି ଉଚ୍ଚକୋଟିର ପ୍ରତିଭା, ନିଜ ଭାବୈଶ୍ୱର୍ଯ୍ୟର ବିକାଶସାଧନ କଲାଭଳି ଗୃହୀତ-ପରଂପରା ଓ ଶିଳ୍ପାଦର୍ଶ ଉପରେହିଁ ସ୍ୱକୀୟ ନୂତନ ଓ ବିଚିତ୍ର ରସସରଣୀ ନିର୍ମାଣର ସୌଭାଗ୍ୟ ଅର୍ଜନ କରିଛନ୍ତି ।

**ରୂପ ଓ ପ୍ରଣୟର କବି –**

ସ୍ୱଦେଶୀୟ ମୃତ୍ତିକା, ମନୁଷ୍ୟ ଓ ଇତିହାସକୁ ଆଧାର କରି ମାନସିଂହଙ୍କର କାବ୍ୟ-ଜୀବନର ଅଯମାରମ୍ଭ ହୋଇଥିଲେହେଁ ମାନବିକ ସୌନ୍ଦର୍ଯ୍ୟ ଓ ପ୍ରଣୟର ବର୍ଣ୍ଣାଢ଼୍ୟ ଯୁଗ୍ମଚିତ୍ର ମଧ୍ୟରେହିଁ ତାଙ୍କ ପ୍ରତିଭାର ପ୍ରତିଷ୍ଠା ଏ ଦେଶରେ ପ୍ରଥମେ ସ୍ୱୀକୃତି ଅର୍ଜନ କରିଛି । ତେଣୁ ତାଙ୍କ ଶିଳ୍ପ-ସୃଷ୍ଟିର ଦେବାଳୟ ମଧ୍ୟରେ ପାଠକ ଯେତେବେଳେ ପ୍ରବେଶକରେ, ସେତେ-ବେଳେ ସେ ପ୍ରଥମେ ଲକ୍ଷ୍ୟ କରିଥାଏ ଯେ ପ୍ରୀତି-ପୁଲକିତ ଓ ଭାବବିହ୍ୱଳ ଏକ ମୁଗ୍ଧ ଶିଳ୍ପୀପ୍ରାଣ, ସାରସ୍ୱତ ଆରାଧନାର ନିବିଷ୍ଟ ଚିତ୍ତରେ ସର୍ବଦା ଯେପରି ଧ୍ୟାନରତ । ତରୁଣ ମାନସିଂହଙ୍କର "ନିବିଡ଼ ଅନ୍ତରେ, ପ୍ରଣୟ ଛଳଛଳ ଜାଗଇ" ଏବଂ ପ୍ରଣୟ-ଛଳଛଳ ସେହି ପ୍ରୀତି-ଧୂପ-ଦଗ୍‌ଧ କବିପ୍ରାଣହିଁ ତାଙ୍କ ସାରସ୍ୱତ ଆରାଧନାର ଯେପରି ପ୍ରଧାନ ପ୍ରତୀକ । ତାଙ୍କର ପ୍ରଣୟାଭିସିଂଚିତ ତାରୁଣ୍ୟର ଏହି ପ୍ରାଥମିକ ଧୂପକାଠିଗୁଡ଼ିକ ପୁଣି ବହୁ ବର୍ଣ୍ଣ ଓ ସୌରଭର । ମାନବିକ ପ୍ରଣୟର ତାରୁଣ୍ୟ-ଜନିତ ଉଦ୍‌ବେଳ ସୌରଭ, ତପ୍ତ ଓ ଅତୃପ୍ତ ପ୍ରେମର ଅସ୍ଥିର ପିପାସା, ବିରହର ବିଷାଦ କାରୁଣ୍ୟଭରା ବିଗଳିତ ଅଶ୍ରୁବାଷ୍ପ, ଦେହଜ ପ୍ରେମ ସହିତ ଦେହାତୀତ ପ୍ରେମର ସମ୍ମିଳିତ ରାକ୍ଷୀ-ବନ୍ଧନର ଚଟୁଳ ଓ ଛବିଳ ଅଭିଜ୍ଞତା, ଏହି ଧୂପକାଠିଗୁଡ଼ିକରୁ ପାଠକ ପ୍ରଚୁର ଆଘ୍ରାଣ, ଆସ୍ୱାଦନ ଓ ଅନୁଭବ ସୁଖ ପାଇଥାଏ । ତେଣୁ କବିଙ୍କର 'ଧୂପ' କବିତା ଗ୍ରନ୍ଥହିଁ ତାଙ୍କ ପ୍ରତିଭା-ପ୍ରତିଷ୍ଠାର ପ୍ରଥମ ସ୍ମାରକୀରୂପେ ଆଜି ବିବେଚିତ । ଏହି ଗ୍ରନ୍ଥ-ନିହିତ କବିତାବଳି ମାନବିକ ପ୍ରଣୟର ସଫଳ ଓ ବାସ୍ତବ ପ୍ରୀତିର ଯେପରି ଗୀତିହାର, ସେହିପରି ତାହା ଅରୂପ ଓ ଅତୀନ୍ଦ୍ରିୟର ସଂଜ୍ଞା-ସଂଧାନୀ ଏକ ଦେହବ୍ୟର୍ଥ ପ୍ରଣୟର ପ୍ରଶ୍ନବାଚୀ । ଅଥଚ ମନେହୁଏ ଯେପରି କି ମାନସିଂହ-କାବ୍ୟ-ପୁରୁଷର ନବନବ ଜନ୍ମ ପାଇଁ ଏହି ପ୍ରଥମ ପ୍ରୀତିଧୂପ ହିଁ ସାର୍ଥକ ସାଂକେତିକ ଓ ଦିଗ୍‌ଦର୍ଶକ । ଏହି ପ୍ରଣୟର ଆଦିମ ଜିଜ୍ଞାସାହିଁ ହୁଏତ କବିଙ୍କୁ ନିତ୍ୟ-ଜୀବନ, ସୌନ୍ଦର୍ଯ୍ୟ

ଏବଂ ସତ୍ୟ ଓ ଧର୍ମ-ପଥରେ ଅଗ୍ରସର କରାଇନେଇଛି । 'ଧୂପ'ର କବି ମାନସିଂହଙ୍କର ପରବର୍ତ୍ତୀ କାବ୍ୟଜୀବନକୁ ଗତି କରିବା ପୂର୍ବରୁ ତାଙ୍କର 'ଧୂପ' ନିହିତ କବିତାବଳି ମଧ୍ୟରୁ 'ତରୁଣ କବିର ଆଶା', 'ପାପ ଓ ପ୍ରେମ', 'ପ୍ରଣୟ ସାଧନା', 'ଆଷାଢ଼ ଅଭିସାର', 'ମୌନବିଦାୟ', 'ରାସସ୍ଥଳୀ', 'ପ୍ରେମର ଭାଷା' ଓ 'ପ୍ରେମ ଓ ମୃତ୍ୟୁ' କବିତାଗୁଡ଼ିକ ସ୍ମରଣୀୟ । ଏହି ବିଦଗ୍ଧ ଧୂପର ସୌରଭ କବିଙ୍କର 'ପୁଷ୍ପିତା', 'ପୂଜାରିଣୀ' ଓ 'ସାଧବଝିଅ'ରେ ମଧ୍ୟ ଆମେ ଆଘ୍ରାଣ କରିଥାଉଁ ।

**ହେମଶସ୍ୟ –**

ତାରୁଣ୍ୟର ରୂପସାଗରରେ ଅବଗାହନ କରି କବି ନିଜ ଯୌବନରେ କବିତାର ଯେଉଁ ଅରୂପ ରତ୍ନ ଲାଭ କରିଥିଲେ, ତାହା କ୍ରମଶଃ ଆତ୍ମଜ୍ୟୋତିଃରେ କିପରି ଅମ୍ଳାନ ଓ ଉଦ୍ଭାସିତ ହୋଇଉଠିଛି, ତା'ର ନିର୍ଭୀକ ସାକ୍ଷୀ ହେଉଛି କବିଙ୍କର ପରବର୍ତ୍ତୀ କବିତାଗୁଚ୍ଛ 'ହେମଶସ୍ୟ' । 'ଧୂପ'ରେ ଯେଉଁ ପ୍ରଣୟାନୁଭୂତି ମୁଖ୍ୟତଃ ରୂପ ଓ ଇନ୍ଦ୍ରିୟଧର୍ମୀ ଥିବାର ଆମେ ଲକ୍ଷ୍ୟ କରୁ, ତାହା 'ହେମଶସ୍ୟ'ରେ ରୂପୋତ୍ତର ଓ ଆତ୍ମସଂବଳୀ ହୋଇଉଠିଛି । ଅଶ୍ରୁସମ୍ବଳୀ ପ୍ରାଣ ଯେ ପ୍ରୀତିର ସୂତିକାଗାର ଏବଂ ଶରବିଦ୍ଧ ହୃଦୟର ଅବ୍ୟକ୍ତ ଯନ୍ତ୍ରଣା ଯେ ପ୍ରକୃତ ପ୍ରଣୟ, ତାହା ନିଜର ପରିଣତ ଜୀବନପଥରେ କବି କ୍ରମଶଃ ଅନୁଭବ କରିଛନ୍ତି । 'ଧୂପ'ର ପ୍ରେମସ୍ରୋତ ଏକ ବର୍ଷାକାଳୀନ ନଦୀପ୍ରବାହ; ତାହା ଉଚ୍ଛ୍ୱାସମୟୀ ଓ ଅପ୍ରତିରୋଧ ବନ୍ୟଗତିରେ ନିରନ୍ତର ଆବେଗମୟୀ । ସେଥିରେ ଅଛି ଉଦ୍ଦାମତା, କ୍ଷିପ୍ରତା ଓ କ୍ଷୁବ୍‌ଧତାର ବୈପ୍ଳବିକ କଣ୍ଠସ୍ୱର । ମାତ୍ର 'ହେମଶସ୍ୟ'ର ବହୁ କବିତାରେ ନାହିଁ ଏହି ଉଦ୍ଦାମ ଆବେଗ, କ୍ଷିପ୍ରତା ଓ ଦୀପ୍ତ ତେଜସ୍ୱିୟତା । ତା'ର ଅନ୍ତର୍ନିହିତ ପ୍ରେମସ୍ରୋତ ଯେପରି ଏକ ଶରତ୍‌କାଳୀନ ନଦୀପ୍ରବାହ; ତାହା ଧୀରା, ନିର୍ମଳା ଓ ମୃଦୁଭାଷିଣୀ । ଭାବ, ଭାଷା ଓ ଛନ୍ଦଦୃଷ୍ଟିରୁ 'ହେମଶସ୍ୟ' ସଂଯମ-ଗୌରବ ଅର୍ଜନ କରିଥିଲେହେଁ 'ଧୂପ'ର ସରସ ଶିଳ୍ପର ଗୌରବ ତାହା ବହୁ ପରିମାଣରେ ହରାଇଥିବାର ସାଧାରଣ ପାଠକ ଅନୁଭବ କରିଥାଏ । "ତୁମର ପ୍ରଣୟ ଦେଲା ମୋତେ ନାରୀତ୍ୱର ସତ୍ୟ ପରିଚୟ", "ସୁରାପାନ ପରେ ପ୍ରେମ ତବ ସୁଧାସମ ପ୍ରାଣେ କାର୍ଯ୍ୟ କରେ", "ସୁଖ ସେ ପ୍ରେମରେ ଗ୍ରହଣ ନକରି ଖାଲି ତ୍ୟାଗ ପରସ୍ପରେ", "କିନ୍ତୁ ମୋ ଆତ୍ମାର ସୌନ୍ଦର୍ଯ୍ୟ ତହିଁରୁ ବଳି, ଯାର ସମ୍ମୁଖରେ ମନୁଷ୍ୟ ନୁଆଏଁ ମଥା", "ପ୍ରଣୟ ଆମର ରୂପ-ପର ଥିଲା ଦିନେ ଆଜି ରୂପୋତ୍ତର", "ସ୍ମରଣର ପ୍ରଦୀପ ଲଗାଇ, ଆଲୋକିବି ଆତ୍ମା ବିରହୀର" ଅଥବା "ତେବେ ପରାଜୟ ବରିନେଲି, ତୋ' ଗୌରବ ହେଉ ବିଶ୍ୱମୟ" ପ୍ରଭୃତି କାବ୍ୟ-ପଙ୍‌କ୍ତିଗୁଡ଼ିକ ପରିଣୟ ଦେଇ କବି ମାନସିଂହଙ୍କର ଜନ୍ମାନ୍ତରର ପରିଚାୟକ ଓ ସ୍ୱଦେଶୀ-ବିଦେଶୀ ପ୍ରଣୟ-ସାହିତ୍ୟର ପରମ୍ପରା ତାଙ୍କ ସୃଷ୍ଟି ମଧ୍ୟରେ ଆମେ ସ୍ଥଳବିଶେଷରେ ଚେତନା ଓ ଚିତ୍ରଣରେ [illegible] କରୁଥିଲେହେଁ, ସମକାଳୀନ ଓଡ଼ିଆ କାବ୍ୟସାହିତ୍ୟରେ ମାନସିଂହ ଏକ ଅଦ୍ୱିତୀୟ [illegible] [illegible]ମାନ, ଯେ କି ଧୂପ ଓ ଅରୂପର ମିଳନରେ ନିଜ ସିଦ୍ଧହସ୍ତତା ଓ ସୃଷ୍ଟି-

ଦକ୍ଷତାର ରୁଚିବନ୍ତ ଓ ଶୁଚିଦୀପ୍ତ ପରିଚୟ ପ୍ରଦାନ କରିଛନ୍ତି । ମିଳନଚିତ୍ର ଦେବାରେ ତାଙ୍କର ତୂଳୀ ଯେପରି ନିପୁଣ, ବିରହାଲେଖ୍ୟ ଅଙ୍କନ କରିବାରେ ସେହିପରି ଶକ୍ତିଶାଳୀ ।

ପ୍ରଣୟାନୁଭୂତିର ଚିତ୍ରପର୍ଯ୍ୟାୟରେ କବି ମାନସିଂହଙ୍କର ତୂଳୀନିପୁଣତାର ସାର୍ଥକ ପରିଚୟ .ଆମେ ତାଙ୍କର ଅନ୍ୟାନ୍ୟ ସୃଷ୍ଟି 'ସାଧବଝିଅ', 'ପୂଜାରିଣୀ', 'ଜେମା', 'କୋଣାର୍କ', 'ଶୁଭଦୃଷ୍ଟି' ଓ 'ନିକ୍ୱଣ' ପ୍ରଭୃତି କାବ୍ୟ, କାବ୍ୟନାଟିକା ଓ ଖଣ୍ଡକାବ୍ୟ ବା ଦୀର୍ଘ କବିତାଗୁଡିକରେ ମଧ୍ୟ ପାଇଥାଉଁ । 'ସାଧବଝିଅ' ବା 'ଜେମା' ମାନବଜୀବନର ମଧୁଯାମିନୀ ନୁହେଁ, ତାହା ଅଶ୍ରୁ-ଜାଗରଯାପିତ ବିରହର ଅମାନିଶି । କବିଙ୍କ 'ସାଧବଝିଅ'ର ହୃଦୟ-ସଙ୍ଗାଳି ସାଧବପୁଅ ନାରୀ-ହୃଦୟ ଓ ନାରୀ-ଲୁହ ଘେନି ବାଣିଜ୍ୟ କରିବା ଭଳି, କବି ମଧ୍ୟ ସ୍ୱକୀୟ ଭାବରାଜ୍ୟରେ ଏହି ପ୍ରୀତି-ବାଣିଜ୍ୟ ବହୁ ସମୟରେ କରିଚନ୍ତି ସତ; କିନ୍ତୁ ସେଥିରେ ଅସାଧୁତା ବା ବିଶ୍ୱାସଘାତକତା କେଉଁଠି ପ୍ରକାଶିତ ହୋଇନାହିଁ – ବରଂ ପ୍ରକାଶ ପାଇଛି ଶିଳ୍ପୀପ୍ରାଣର ନିଷ୍ଠା, ବିଶ୍ୱାସ ଓ ଆନ୍ତରିକତା । ଏହି ଆନ୍ତରିକତା ଓ ନିଷ୍ଠା ଘେନିହିଁ କବି ଆଙ୍କିଛନ୍ତି ମିଳନ-ବିରହର ଜୀବନ୍ତ ଓ ବିଶ୍ୱସ୍ତ ଚିତ୍ର ।

କବିଙ୍କର ଜୀବନ ଜିଜ୍ଞାସା ସୌନ୍ଦର୍ଯ୍ୟସମ୍ବଳୀ ପ୍ରେମ ଦିନେ ରୂପୋତ୍ତର ହେବା ଭିତର ଦେଇ ଏପରି ଏକ ସ୍ତରରେ ଆସି ଉପନୀତ ହୋଇଛି, ଯେତେବେଳେ ଜୀବନଦେବତାଙ୍କର ରହସ୍ୟ ଉପଲବ୍ଧି ପାଇଁ ଅନୁଭୂତି-କକ୍ଷର ଉର୍ଦ୍ଧ୍ୱ ବାତାୟନ କବି-ପ୍ରାଣରେ ଆପେ ଆପେ ଉନ୍ମୋଚିତ ହୋଇଉଠିଛି । ସେତେବେଳେ ଏହି ରୂପାତୀତ ପ୍ରେମ କବି ନିକଟରେ ହୋଇଉଠିଛି 'ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ଦର୍ପଣ' ଏବଂ ବିଶ୍ୱମାନବର ଅଶ୍ରୁବେଦନା ତା ମଧ୍ୟରେ ହୋଇଛି ପ୍ରତିବିମ୍ବିତ । ଇଂରାଜୀ କବି ରସେଟିଙ୍କ ପ୍ରତି ସମାଲୋଚକଙ୍କର ମନ୍ତବ୍ୟ, "Deepest down lay a mystical passion for the beauty which culminates in the human form, which, like everything else in the man, was not a sentiment but a strong constraining influence. To him the forms of human liveliness were in themselves dear and adorable, but they were only, so to speak, the first steps in a shining stairway that led among the stars : they were but the alphabet of passion whose finished scrolls were written by the very fingers of God." – ର * ପରମ ସାର୍ଥକତା

---

* ଓଡ଼ିଆ ଅନୁବାଦ "(କବି ରସେଟିଙ୍କର) ଆତ୍ମାର ଗଭୀର ଅତଳ ସ୍ତରରେ ସୌନ୍ଦର୍ଯ୍ୟ ପ୍ରତି କୌଣସି ଏକ ଗୂଢ଼ ପିପାସା ନିହିତ ଥିଲା; ଯାହାର ଶେଷ ପ୍ରକାଶ ବୋଧହୁଏ ମାନବିକ ପ୍ରତିମାରେ; କିନ୍ତୁ ମନୁଷ୍ୟର ଅନ୍ୟ ପ୍ରତ୍ୟେକ ଅନ୍ତର୍ନିହିତ ଗୁଣ ପରି, ଯେଉଁ ରୂପ-ତୃଷ୍ଣା ମଧ୍ୟ ମନୁଷ୍ୟକୁ ଭାବପ୍ରବଣତାରେ ଭସାଇନଦେଇ, ତା'ର ବ୍ୟକ୍ତିତ୍ୱକୁ ସଂଯତ କରିଥାଏ । ମାନବ-ପ୍ରତିମାନିହିତ ରୂପୈଶ୍ୱର୍ଯ୍ୟ ପ୍ରତି କବି ରସେଟିଙ୍କର ଆକର୍ଷଣ ସମ୍ପୂର୍ଣ୍ଣ ଅହେତୁକ ଥିଲେହେଁ, ତାହା ମଧ୍ୟ ଥିଲା ଏକ ଜ୍ୟୋତିର୍ମୟ ନିଃଶ୍ରେଣୀର କେବଳ ପ୍ରଥମ ଧାପ; ଯାହାକି ତାଙ୍କୁ ଉର୍ଦ୍ଧ୍ୱରେ ନକ୍ଷତ୍ର-

କବି ମାନସିଂହଙ୍କର କାବ୍ୟଜୀବନରେହିଁ ଆମେ ଉପଲବ୍ଧି କରିଥାଉଁ । 'ହେମପୁଷ୍ପ'ର 'ବିଶ୍ୱଦେବାଳୟ' କବିତା, 'ଅକ୍ଷତ'ର 'କବିଗୌରବ' ଓ 'କ୍ରୁଶବହନ' କବିତା, 'ଜୀବନଚିତା'ର 'ନିଦ୍ରିତ ଭଗବାନ', 'ଧରଣୀବାସ', 'ବିଶ୍ୱରୂପ', 'ଦେବପୂଜା', 'ତୁମର ପ୍ରୟୋଜନ' ଓ 'ଅଶ୍ରୁପୂଜା' ପ୍ରଭୃତି କବିତା ଏବଂ 'କ୍ରୁଶ'ର 'ଏକାନ୍ତ ଏକାକୀ', 'ନୂତନ-ପ୍ରଣୟ', 'ଈଶ୍ୱର ସାଧାରଣ', 'ଅମୃତତ୍ୱ ଲୋଡ଼ାନାହିଁ', 'ମୋ କ୍ରୁଶ' 'କ୍ରୁଶ କୋଟି କୋଟି', 'ନିଜେଇ ବୋହିବ' ପ୍ରଭୃତି କବିତାବଳିରେ କବିଙ୍କର ଏହି ନୂତନ ଜୀବନବୋଧ ଓ ଜୀବନ-ଜିଜ୍ଞାସା, ଆତ୍ମ-ଅନ୍ୱେଷା ଓ ଦିବ୍ୟ ପିପାସାର ସ୍ୱାକ୍ଷର ସ୍ପଷ୍ଟ । 'ଧୂପ' ଓ 'ହେମଶସ୍ୟ'କୁ କବିଙ୍କର ଯଦି ଯୌବନ-ସଙ୍ଗୀତ ବୋଲି ଗ୍ରହଣ କରାଯାଏ, ତେବେ 'ଜୀବନ ଚିତା' ଓ 'କ୍ରୁଶ'କୁ ତାଙ୍କର ଜୀବନ-ସଂହିତାରୂପେ ବିବେଚନା କରାଯିବା ଉଚିତ । ''ନିବିଡ଼ ଦୁଃଖାନଳେ ଜଳି ମୁଁ ମରେ ପଛେ / ତମରି ଲୀଳା ପରକାଶୁ ହେ / ନିବିଡ଼ ନିରାଶାର ଅନ୍ତ ଭେଦି ପ୍ରଭୋ, ଗଭୀର ବିଶ୍ୱାସ ଆସୁ ହେ । / ଆଜି ମୋ ପ୍ରାଣେ ପ୍ରଭୋ, ସେହି ତ ଆୟୋଜନ, ବକ୍ଷେ ତବଲାଗି, ପ୍ରାଣର ଇନ୍ଧନ, / ମୋର ଏ ହୋମାନଳ-ଦଗ୍‌ଧ-ଚିତାଧୂଳି-ଲୋଡ଼ାରେ ତବ ହେଲେ ଆସୁ ହେ'' ବା ''ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ, ମେଣ୍ଟିବି ମାନବଦୁଃଖ କ୍ରୁଶ ଅଙ୍ଗେ ନେଇ ।'' ''ଜୀବନ ମମ, ଘୋର ଯେ ନାଥ ଚନ୍ଦନ ପରି ହେ, ସିକ୍ତ କର ଅଙ୍ଗ ମମ, ଲାଞ୍ଛନା ବାରିରେ ନୟନ ମମ, ଓଦାଅ ନିତ୍ୟ, ଲୋତକ ଅଞ୍ଜନେ, ନେବ କି ଧରି, କେବେ ହେ ତବ, ଦେଉଳ ଅଙ୍ଗନେ ? ।।'' ବା – ''ବିରାଟୁ ବିରାଟ ଯେହୁ କଳ୍ପନାର ପାରେ 'ମୁହିଁ ତାଙ୍କୁ ଜାଣେ' ବୋଲି ଘାସ କହିପାରେ ।।'' ''ଅମୃତତ୍ୱ ଲୋଡ଼ାନାହିଁ ପ୍ରତ୍ୟେକ ମୃତ୍ୟୁରେ ଯଦି ଫୁଲ ହୋଇ ଫୁଟେ ଜୀବନର କୂଳେ'' ବା – ''ଜଣେ ନୁହେଁ କୋଟି କୋଟି ଜନ ଏ ଧରାରେ ଚାଲେ ବୋହି ଶୋଣିତାକ୍ତ ପୃଷ୍ଠେ କ୍ରୁଶ-ଭାର ।'' ଅଥବା ''ତୁମ ହାସ୍ୟ-ଅଶ୍ରୁ ସୁଖଦୁଃଖ ହିଁ ଈଶ୍ୱର, ସେହି କ୍ରୁଶ ବୋହିବ କି ତାକୁ କେ ଅପର ।'' ପ୍ରଭୃତି କାବ୍ୟ-ପଦ୍‌କ୍ତିଗୁଡ଼ିକରେ ମନୁଷ୍ୟ ପ୍ରତି କବିପ୍ରାଣର ନିର୍ମଳ ଶ୍ରଦ୍ଧା ଓ ସହାନୁଭୂତି, ନିଜର ଆତ୍ମ-ଦର୍ଶନ ଓ ଜୀବନ-ଜିଜ୍ଞାସା ଏବଂ ମାନବାତ୍ମା ଓ ଦେବାତ୍ମାର ନିଗୂଢ଼ ରହସ୍ୟାକର୍ଷଣର ଚିତ୍ର ଉତ୍‌କୀର୍ଣ୍ଣ । ''× × × each man is responsible for the action of the entire human race and the entire human race is responsible for the action of each man."* – ଏହି ମହାଭାବର ବାଣୀ ତାଙ୍କର ଏହି କବିତାଗୁଡ଼ିକ ମଧ୍ୟରେ ମୂର୍ତ୍ତ ।

---

ମଣ୍ଡଳରେ ନେଇ ପହଞ୍ଚାଇପାରୁଥିଲା । ତାଙ୍କର ନର-ସୌନ୍ଦର୍ଯ୍ୟସ୍ତବକୁ ଧରାଯାଇପାରେ; ମାତ୍ର ଏକ ଆଦ୍ୟରେଖା, ଯାହାଦେଇହିଁ ସ୍ୱୟଂ ବିଶ୍ୱ-ସ୍ରଷ୍ଟାଙ୍କର ଅଙ୍ଗୁଳିଜାଳ ରଚନା କରିଛି ବିଶ୍ୱ-ପ୍ରକୃତିର ନିପୁଣ ଚିତ୍ରାବଳି ।''

* ଓଡ଼ିଆ ଅନୁବାଦ – ''ପ୍ରତ୍ୟେକ ମନୁଷ୍ୟହିଁ ସମଗ୍ର ମାନବଜାତିର କର୍ମ ପାଇଁ ଦାୟୀ ଏବଂ ସେହିପରି ମଧ୍ୟ ଦାୟୀ ସମଗ୍ର ମାନବଜାତି ପ୍ରତ୍ୟେକ ମନୁଷ୍ୟର କର୍ମ ପାଇଁ ।''

### ଆର୍ତ୍ତ ମାନବାତ୍ମାର କବି –

ପୁଣି, ଅତୀନ୍ଦ୍ରିୟ ଜଗତର ନିବିଡ଼ ରହସ୍ୟାନୁଭୂତି କବି ସ୍ୱୀୟ ପ୍ରାଣରେ ଅନୁଭବ କରିଥିଲେହେଁ ଧରଣୀର ଜୀବନ ଓ ଜଗତ ପ୍ରତି ଶିଳ୍ପୀପ୍ରାଣର ସହଜାତ ସହାନୁଭୂତି ଓ ମଣିଷର ଦୁଃଖବିପାକ ପ୍ରତି ଅନ୍ତରର ମର୍ମବେଦନା ନିଜ ଶିଳ୍ପସୃଷ୍ଟିରେ ସର୍ବଦା ସେ ଅକ୍ଷୁଣ୍ଣ ରଖିଛନ୍ତି । ଏହି ମୌଳିକ ଶିଳ୍ପଧର୍ମ କୌଣସି ପ୍ରଚାରକ କଣ୍ଠର ସାମୟିକ ଉତ୍ତାପ ଉତ୍ତେଜନାକୁ ଆଶ୍ରୟ ନକରି ଶିଳ୍ପୀକଣ୍ଠର ସ୍ୱରଲାଳିତ୍ୟ ଓ କର୍ମନୀୟତା ମଧ୍ୟରେହିଁ ସର୍ବଦା ଆତ୍ମପ୍ରକାଶ କରିଛି । ବିଶ୍ୱର ଦଳିତ ଓ ଲାଞ୍ଛିତ ମାନବ ପ୍ରତି ତାଙ୍କର କରୁଣାସିକ୍ତ ସହାନୁଭୂତି ମାନସିଂହଙ୍କର ବହୁ କବିତା, କାବ୍ୟ ଓ ନାଟକ-ନାଟିକା ମଧ୍ୟରେ ପ୍ରକାଶିତ । 'ସେଦିନର କବିତା', 'ଅକ୍ଷତ', 'ମାଟିବାଣୀ', 'ଜୀବନଚିତା' ଓ 'କୃଶ' ପ୍ରଭୃତି କବିତାଗ୍ରନ୍ଥ, 'ଜେମା' ଓ 'କମଳାୟନ' କାବ୍ୟ ଏବଂ 'ବୁଦ୍ଧ' ନାଟକରେ ବେଦନାବିଦ୍ଧ ମାନବାତ୍ମାର ଏହି ସଜଳ ଅଶ୍ରୁ-ସଙ୍ଗୀତ ଆମେ ଶୁଣିଥାଉଁ । କବିଙ୍କର 'ତଳିଆଜୀବର ବିଳାପ' ଶୀର୍ଷକ କବିତାଗୁଚ୍ଛ 'ଅନୂଢ଼ା', 'ତୀର୍ଥଯାତ୍ରା', 'ସାମାନ୍ୟ ସଞ୍ଚୟ' ଓ 'ଅଶ୍ରୁର ହିସାବ' ପ୍ରଭୃତି କବିତାଗୁଡ଼ିକରେ ଏହି ବେଦନାଜାତ ମୂର୍ଚ୍ଛନା ବଳିଷ୍ଠ ଓ ସୁଦୂରପ୍ରସାରୀ । ପୁଣି ଏସବୁ କବିତାରେ ଆମେ ଦେଖୁଁ ଯେ, ଏ ଯୁଗର ସୃଷ୍ଟି-ବିଶୃଙ୍ଖଳାରେ ଶିଳ୍ପୀ-ପ୍ରାଣ କେବଳ ବିଚଳିତ ନହୋଇ ସମାଜର ସମସ୍ତ ଅନ୍ୟାୟ ବୈଷମ୍ୟକୁ ନିଃଶେଷ କରିବାପାଇଁ ମନୁଷ୍ୟକୁ ଆତ୍ମଶକ୍ତି-ସଚେତନ ଓ ସଂଗ୍ରାମୀ ହେବାକୁ ମଧ୍ୟ ନିର୍ଦ୍ଦେଶ ପ୍ରଦାନ କରିଛି । କବି ନିଜେ ମଧ୍ୟ ଏହି ଆତ୍ମଶକ୍ତିରେ ମହୀୟାନ୍ ହେବାକୁ ସ୍ରଷ୍ଟାଙ୍କ ନିକଟରେ ନିବେଦନ ଜଣାଇ କହିଛନ୍ତି, ''ଜଗତରୁ ଦୁଃଖ ପୋଛିଦେବି କରେ, ଦେଖିବି ଆନନ୍ଦରେଖା ନିଖିଳ ମୁଖରେ,'' ଅଥବା ସେ ଗାଇଛନ୍ତି; ''ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ, ମେଣ୍ଟିବି ମାନବଦୁଃଖ କ୍ରୁଶ ଅଙ୍ଗେ ନେଇ ।''

### କମଳାୟନ –

ଏହି ଯୁଗୀୟ ଜୀବନବୋଧ ଓ ମାନବାତ୍ମାର ବେଦନାବୋଧର ବୃହତ୍ତର ଚିତ୍ର କବିଙ୍କର 'କମଳାୟନ' କାବ୍ୟରେ ଆମେ ବିଶେଷଭାବରେ ଲକ୍ଷ୍ୟକରୁ । ନାୟକ ଓ ନାୟିକା କମଳ ଓ କରୁଣାର ଜୀବନାୟନ ମଧ୍ୟରେ କବି ଭାରତର ସ୍ୱାଧୀନତା ସଂଗ୍ରାମର ଅତୀତ ଓ ବର୍ତ୍ତମାନ ଏବଂ ବିପର୍ଯ୍ୟସ୍ତ ବିଶ୍ୱଜୀବନର ବର୍ତ୍ତମାନ ଓ ଭବିଷ୍ୟତ ଏହି କାବ୍ୟରେ ପ୍ରଦର୍ଶିତ କରିଛନ୍ତି । ଅଜ୍ଞତା ଓ ସ୍ୱାର୍ଥ ପ୍ରଭୃତି ଅନ୍ତରର ଦାନବୀୟ ଶକ୍ତି ସହିତ ସଂଗ୍ରାମ କରି ଶୁଭ୍ର ମାନବିକତାର ବିଜୟସ୍ତମ୍ଭ ପୃଥିବୀରେ ନିର୍ମାଣ କରିବାକୁ, ସାମ୍ୟ-ମୈତ୍ରୀର କରୁଣା-ଦୃଷ୍ଟିରେ ପୃଥିବୀକୁ ମଧୁମୟ କରିବାକୁ ଏବଂ ବିଶ୍ୱକୁ ଏକ ପରିବାରରୂପେ କଳ୍ପନା କରି ହିଂସାଦ୍ୱେଷର ବୀଜ ଧରଣୀବକ୍ଷରୁ ଲୋପ କରିବାକୁ ଏହି ବୃହତ୍ କାବ୍ୟରେ କବି ନିର୍ଦ୍ଦେଶ ଦେଇଛନ୍ତି । କବିଙ୍କର ପ୍ରତ୍ୟେକଟି ବିଶିଷ୍ଟ କବିତା ଯେପରି ଏକ ଏକ ନୂତନ ଏକ୍ସପେରିମେଣ୍ଟ ବା ଉଦ୍ୟମ, 'କମଳାୟନ' ମଧ୍ୟ ସେହିପରି ଆଧୁନିକ ଯୁଗର ମହାକାବ୍ୟ ରଚନାରେ ଏକ ଚେଷ୍ଟା । ଦାନ୍ତେଙ୍କ 'ଡିଭାଇନ୍ କମେଡ଼ି' ବା କାଳିଦାସଙ୍କ 'ରଘୁବଂଶ' ବା ସେକ୍ସପିଅରଙ୍କ

ନାଟକାବଳି ଯେପରି କାଳାତୀତ ହୋଇ ମଧ୍ୟ ଏକାନ୍ତରେ ସେହି ସେହି କବିଙ୍କର ସମସାମୟିକ କାଳର ପ୍ରକୃଷ୍ଟ ପ୍ରତିବିମ୍ବ ବୋଲି ଧରାଯାନ୍ତି; ମନେହୁଏ ଦୂର ଭବିଷ୍ୟତରେ ଆମ କାଳର ଛବି ଯଦି କେହି ଖୋଜିବସିବେ, ତେବେ ହୁଏତ ସେ ତାହା ବିଶେଷ ଭାବରେ ପାଇବେ ଏହି 'କମଳାୟନ'ରୁ । ପ୍ରଥମ ଭାଗରେ କମଳ ଓ କରୁଣାର, ନିଉୟର୍କ ଜୀବନରୁ ଫେରି ଆମ ଭାରତର ପଲ୍ଲୀ-ଉନ୍ନୟନ ଭିତରେ ପ୍ରାଣତ୍ୟାଗ ଏବଂ ଦ୍ୱିତୀୟ ଭାଗରେ ସେମାନଙ୍କର ଏକମାତ୍ର ସନ୍ତାନ ବିଶ୍ୱମିତ୍ରାର ଅକ୍ସଫୋର୍ଡରେ ଶିକ୍ଷା, ଇଉକ୍ରେନିୟାନ୍ ତରୁଣ ସେପିଲକୋ ସହିତ ପ୍ରଣୟ ଏବଂ ୧୯୫୬ର କମ୍ୟୁନିଷ୍ଟ-ସାମ୍ରାଜ୍ୟବାଦ ବିରୁଦ୍ଧରେ ଘଟିଥିବା ହଙ୍ଗେରୀୟ ବିପ୍ଳବରେ ସେପିଲକୋର ଆତ୍ମାହୁତି ଦେଇ, ସେହି ପ୍ରଣୟର ବ୍ୟର୍ଥତା ହଙ୍ଗେରୀୟ ସାମରିକ ନେତାର ସ୍ତ୍ରୀ ମେରାୟାଠାରୁ ବିଶ୍ୱମିତ୍ରା ପ୍ରତି ଦୀର୍ଘ କରୁଣ ପତ୍ର ଇତ୍ୟାଦି ଦେଇ, କମଳାୟନ ଯଥାର୍ଥରେ ଉଭୟ ସମସାମୟିକ କାଳର ଓ ପ୍ରକୃତ ଲୋକତନ୍ତ୍ର ଓ ମାନବିକତାର ମହାକାବ୍ୟ ହୋଇଉଠିଛି ।

**ଗଦ୍ୟସ୍ରଷ୍ଟା ମାନସିଂହ –**

କାବ୍ୟ-କବିତା-ନାଟକ-ନାଟିକା ପରି ଗଦ୍ୟରାଜ୍ୟରେ ମଧ୍ୟ ମାନସିଂହପ୍ରତିଭା ପ୍ରଚୁର ଓ ପ୍ରକୃଷ୍ଟ ଭାବରେ ନିଜକୁ ଆତ୍ମ-ପ୍ରକାଶ କରିପାରିଛି । ଏ କ୍ଷେତ୍ରରେ ତାଙ୍କର ବ୍ୟକ୍ତିତ୍ୱ ଓ ସୃଜନାତ୍ମକ ପ୍ରତିଭା ଯେଉଁଥିରେ ପ୍ରୋଜ୍ଜ୍ୱଳ ଭାବେ ପ୍ରକାଶିତ, ତାହା ହେଉଛି ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ', ଶିକ୍ଷକଜୀବନର ଗାଥା ଏବଂ କଳା, ସଂସ୍କୃତି ଓ ମାନବ-ଜୀବନର ସମସ୍ୟା-ସମ୍ୱଳିତ ପ୍ରବନ୍ଧାବଳୀ ଏବଂ ସର୍ବୋପରି ଓଡ଼ିଆରେ ଏନ୍‌ସାଇକ୍ଲୋପେଡିଆ ପ୍ରତିଷ୍ଠା । ଏହି ସକଳ ଗଦ୍ୟରଚନାର ଅନ୍ତଃସ୍ୱର ବହୁ ସମୟରେ ତାଙ୍କ କାବ୍ୟ-ପ୍ରତିଭାର ସହମର୍ମୀ ଓ ସମଧର୍ମୀ । ସାହିତ୍ୟବ୍ୟାପାରରେ ସୃଷ୍ଟିକର୍ମହିଁ ହେଉଛି ପ୍ରଧାନ ଏବଂ ସମାଲୋଚନା ହେଉଛି ତା'ର ଅନୁସାରକ ବା ଅନୁଗାମୀ ମାତ୍ର । ପଦ୍ୟ ଓ ଗଦ୍ୟରେ ଏହି ସମଶକ୍ତିସଂପନ୍ନ ସବ୍ୟସାଚିତ୍ୱହିଁ କବି ମାନସିଂହଙ୍କ ପ୍ରତିଭାର ଏକ ଅନନ୍ୟ-ସାଧାରଣ ଧର୍ମ । ତାଙ୍କର 'ଜୀବନପଥ' ବା 'ଜୀବନୀ ଓ ପ୍ରବନ୍ଧ' ବଳିଷ୍ଠ ଗଦ୍ୟସାହିତ୍ୟର ଯେପରି ନମୁନା, ତାଙ୍କର 'କବି ଓ କବିତା' ବା 'ମାଟିର ମହାକବି ସାରଳା ଦାସ' ସାରସ୍ୱତ ସମାଲୋଚନାର ସେହିପରି ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଓଡ଼ିଆ ଗଦ୍ୟ-ସାହିତ୍ୟର କ୍ରମପରିଣାମ ପଥରେ କବି ମାନସିଂହଙ୍କର ଏ ସକଳ ଆଲୋଚନା ବା ପ୍ରବନ୍ଧାବଳି ନିଜର ସତ୍ୟ ସୌନ୍ଦର୍ଯ୍ୟ ଓ ସୌଷ୍ଠବ ପାଇଁ ଅବିସ୍ମରଣୀୟ ହୋଇ ରହିବେ ।

**କବିପ୍ରାର୍ଥନା –**

କାବ୍ୟ-ସ୍ରଷ୍ଟା ଓ ଗଦ୍ୟସ୍ରଷ୍ଟା ଭାବରେ ମାନସିଂହ ତାଙ୍କର ଆଦ୍ୟ ଆବିର୍ଭାବ କାଳରୁହିଁ ଏପର୍ଯ୍ୟନ୍ତ ଗତ ପ୍ରାୟ ଅର୍ଦ୍ଧ-ଶତାବ୍ଦୀ ଧରି ଉତ୍କଳ ଦେଶର ବୌଦ୍ଧିକ ରାଜ୍ୟରେ ଏକ କ୍ରମାଗତ ପ୍ରଭଞ୍ଜନ ହୋଇଆସିଛନ୍ତି । ଏହି ପ୍ରତିଭାର ଅଭ୍ୟୁଦୟ, ଅଭିବୃଦ୍ଧି ଓ ଭବିଷ୍ୟତ୍‌ର ସମୀକ୍ଷା ତେଣୁ ପ୍ରୀତିପ୍ରଦ ଓ ମୂଲ୍ୟବାନ୍ । କିନ୍ତୁ କବି ନିଜେ ତାଙ୍କର 'ସମାଧି' କବିତାରେ

ନିଜର ଭବିଷ୍ୟତ୍ ସମ୍ବନ୍ଧରେ ବିଶ୍ୱପତିଙ୍କ ନିକଟରେ ଯେଉଁ ଅପୂର୍ବ ପ୍ରାର୍ଥନା ଜଣାଇଛନ୍ତି, ତାହା ଏଠାରେ ଉଦ୍ଧାର ନକରି ରହିପାରୁନାହିଁ ।

"ହେ ନାଥ, ଭରିଛ ପ୍ରାଣ ନାନା ଲାଞ୍ଛନାରେ
ଶୂନ୍ୟ ତାହା ଆଜିଯାଏଁ ଖାଲି ବଂଚନାରେ;
କେବେ କିନ୍ତୁ ନାହିଁ ଦିଅ; ଅଯାଚିତ ନବ ଅପମାନ,
ମାପିତ ହେବାରେ, ମୋର କ୍ଷୁଦ୍ର ଆଉ ନଗନ୍ୟ ସମ୍ମାନ
ମାନଦଣ୍ଡେ, ଅର୍ଥ ହାକିମିର, ବଞ୍ଚେ ମରେ ଖାଲି କବି
ଚକ୍ଷେ ଯା'ର ପର ପାଇଁ ନୀର ।
ଛୋଟ ଏକ ସମାଧିଟି ଶ୍ୟାମଘାସ ପରେ
ଥାଇପାରେ ପଲ୍ଲୀ ବା ନଗରେ,
ଏକମାତ୍ର ଚିହ୍ନରୂପେ, ଦୀନ ଏହି ପୃଥିବୀବାସୀର
ମୃତ୍ୟୁରାଜ୍ୟେ ଯିବି ଯେବେ, ଛାଡ଼ି କୋଳ ମାଆ ଧରିତ୍ରୀର ।
ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋସ୍ନାରେ
ସ୍ମରି କେବେ, ମୋ ଦେଶର ଯୁବକ ଯୁବତୀ,
ଆସି ସେ ସମାଧିପରେ, ପୁଷ୍ପ ଢାଳି ପ୍ରୀତିଭରେ
କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନଯାତ୍ରାର ।"

ତେଣୁ ମାନସିଂହ-ପ୍ରତିଭାର ଭବିଷ୍ୟତ୍-କଳ୍ପନା-ସଂପର୍କରେ ବିଶ୍ୱ-ବିଶ୍ରୁତ ଔପନ୍ୟାସିକ ବାଲଜାକ୍‌ଙ୍କର ଅମରବାଣୀ, "Glory is the sunlight of the dead" ବାକ୍ୟକୁହିଁ କବି ମାନସିଂହଙ୍କ ପ୍ରତି ପ୍ରୟୋଗ କରି ଏହି ପ୍ରବନ୍ଧର ଉପସଂହାର କରୁଛି ।

ଚିନ୍ତାମଣି ବେହେରା

## ପରିଶିଷ୍ଟ : ୨

### ମାନସିଂହଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଉପରେ ମସ୍କୋରୁ ପତ୍ର –

Dr. M. Mansinha,
Principal, Khallikote College,
Berhampur (Ganjam Dist.) India, Orissa,

Dear Dr. Mansinha,

I was very glad to receive your letter of 22-10-1965, wherein you had enquired whether we study Oriya language and

literature in our country. I would like to let you know in this connection that Oriya language is studied by B. Karpushkin, Mrs. Bikova and Mrs. Chevkina of our Institute and Mrs.Svetovidova, of our Leningrad branch. Especial attention to the study of Oriya language and literature is paid by Mr.Boris Karpushkin. Although Oriya language is being studied since the last few years, only something in that field has been done. A monograph by Mr. Karpushkin titled "Oriya Language' had seen the light of the day in 1964. He has also to his credit a few articles devoted to some problems of Oriya grammar.

Unfortunately, the study of Oriya language and literature is handicapped by the shortage of books in this language. It is but natural, therefore, what a great interest your letter and your desire to establish scientific links with our Insititute has created amongst our scholars.

Some articles on Oriya literature have been contributed by our scholars to the Literature Encyclopaedia. Let me state with all frankness that the main source material on Oriya literature remains your book "History of Oriya Literature' which is held in high esteem by our scholars.

I shall be much obliged if you kindly send us any materials on this subject, to my address. They would become valuable addition to our library.

Let me, once again, express my deep sense of gratitude for your kind letter availing us the opportunity of establishing scientific links with you.

Yours sincerely,

(V. V. Balabushevich)

Head of Indian Dept.

Institute of the Peoples of Asia

Academy of Sciences, U S S R.

2. Armiansky Per,

Moscow,

27. XII 1965.

## ପ୍ରଥମ ଅଧ୍ୟାୟ

## ପ୍ରାଚୀନ ଓଡ଼ିଆ କାବ୍ୟ

ଭଞ୍ଜ ଓ ଭଞ୍ଜାନୁଗ ଓଡ଼ିଆ କବିମାନଙ୍କର କାବ୍ୟ-ଜଗତକୁ ଅଖଣ୍ଡ ଭାବରେ ଭାବିବସିଲେ ଏକ-ପ୍ରାସାଦ-ବାସିନୀ ରାଜରାଣୀର କଳ୍ପନାହିଁ ମନକୁ ଆସେ। ଉତ୍କଳର କଳାସମୃଦ୍ଧ ଦେବାଳୟମାନଙ୍କ ପରି, ଏ ପ୍ରାସାଦର ପ୍ରତ୍ୟେକ ପ୍ରସ୍ତରଖଣ୍ଡ ସୂକ୍ଷ୍ମ ଓ ଜଟିଳ ଶିଳ୍ପରେ ଗୁମ୍ଫିତ ହୋଇ ରହିଛି। ସେ ପ୍ରାସାଦର ଅଙ୍ଗନ କର୍ପୂର ରଜରେ ବିଲୁଳିତ; ଟଭାଫଳ-ଖୋସା ଚେଟୀ ପ୍ରାତଃକାଳରେ ମୟୂରପୁଚ୍ଛର ସମ୍ମାର୍ଜନୀରେ ସେ ଅଙ୍ଗନ ମାର୍ଜନ କରିଯାଏ। ବିରହ ଛଡ଼ା ସେଠାରେ ବେଦନା ନାହିଁ– ପ୍ରେମାଶ୍ରୁ ଛଡ଼ା ଅଶ୍ରୁ ନାହିଁ; କ୍ରୋଧ କେବଳ ଅଭିମାନରେ ପର୍ଯ୍ୟବସିତ। ରାଣୀ ଓ ସହଚରୀଗଣ ଅସୂର୍ଯ୍ୟଂପଶ୍ୟା। ରାଜାନ୍ତଃପୁରର ବାହାରେ ଅଗଣିତ ଜନସଂଘ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ। ଉଦ୍ୟାନ-ଲତା ପରି ସେମାନଙ୍କ ଜୀବନ-ଲତାରେ ପ୍ରେମ-ପୁଷ୍ପର ଉଦ୍‌ଗମହିଁ ସେମାନଙ୍କ ଜୀବନର ଏକମାତ୍ର ସାର୍ଥକତା।

ରାଷ୍ଟ୍ର ଓ ସମାଜରେ ରାଜା, ରାଜପୁତ୍ର, ରାଜକନ୍ୟା, ପ୍ରାସାଦ, ବିଳାସବ୍ୟସନର ପ୍ରୟୋଜନ ଅଛି; କିନ୍ତୁ ଏମାନେ ଏକମାତ୍ର ବା ପ୍ରଧାନ ପ୍ରୟୋଜନ ନୁହନ୍ତି। ଯେତେ ବିଭବଶାଳୀ ରାଜପ୍ରାସାଦ ହେଉ ନା କାହିଁକି, ତାହା ଜନପଦ ସୃଷ୍ଟି କରିପାରିବନାହିଁ; ଦରିଦ୍ର କୃଷୀବଳର ଅଗଣ୍ୟ କୁଟୀରମାଳାହିଁ ତାହା କରେ। ସେହିପରି, ସାହିତ୍ୟରେ କଳ୍ପନା ଓ ସ୍ୱପ୍ନର ନିତାନ୍ତ ପ୍ରୟୋଜନ ଥିଲେହେଁ, ତାହା ଏକମାତ୍ର ବା ପ୍ରଧାନ ପ୍ରୟୋଜନ ନୁହେଁ। ମାନବଜୀବନର ଅଗଣିତ ଦୁଃଖ-ବେଦନାହିଁ ସାହିତ୍ୟକୁ ପ୍ରକୃତରେ ମେରୁଦଣ୍ଡ ଦାନ କରେ ଓ କଲ୍ୟାଣମୟ କରେ। ଆମ୍ଭମାନଙ୍କର ପ୍ରାଚୀନ କାବ୍ୟସଂସାର କବି-କଳ୍ପନାର ସ୍ଫଟିକ ପ୍ରାଚୀର ମଧ୍ୟରେ ବଢ଼ିଆସିଛି। ବାହାରେ ଦୃଶ୍ୟମାନ୍ ଧୂଳିମୟ ସୃଷ୍ଟିର ସତ୍ୟ ସହିତ ତାର ବିଶେଷ ସମ୍ପର୍କ ନାହିଁ। କିନ୍ତୁ ଏହି ଧୂଳି-ଆବର୍ଜନାର ସୃଷ୍ଟି ତ ସତ୍ୟସୃଷ୍ଟି। ଏଠାରେ ଅଗଣିତ ନରନାରୀ, ପ୍ରତ୍ୟେକେ ଏକ ଏକ ଇତିହାସ ସୃଷ୍ଟି କରି ଭଗବାନଙ୍କ ରାଜପଥରେ ଯୁଗଯୁଗାନ୍ତଧରି ତୀର୍ଥ-ଯାତ୍ରା କରିଆସୁଛନ୍ତି; ଏମାନଙ୍କ ସମ୍ବାଦ ଆମ ପ୍ରାଚୀନ କବିବୃନ୍ଦ ରଖିନାହାନ୍ତି। ଓଡ଼ିଶାର ପ୍ରାଚୀନ ସାହିତ୍ୟର ଏହି ଏକ ପରମ ଅଭାବ। ଏହି ଅଭାବଯୋଗୁଁ ଆମର ସାରସ୍ୱତ ଭଣ୍ଡାର ଅପୂର୍ଣ୍ଣ ରହିଯାଇଛି; ସାହିତ୍ୟର ଶରୀର, ମେରୁଦଣ୍ଡ ଅଭାବରେ, ପଙ୍ଗୁ ହୋଇ ରହିଯାଇଛି।

ଅନେକ ପ୍ରାଚୀନପନ୍ଥୀ, ନବ୍ୟ ସାହିତ୍ୟରେ ବିତୃଷ୍ଣ ହୋଇ ଓଡ଼ିଆ ସାହିତ୍ୟର ସେହି ସ୍ୱର୍ଣ୍ଣ-ଯୁଗକୁ ସ୍ମରଣ କରି ହାୟ ହାୟ କରିଥାନ୍ତି। ଆମର ମନେହୁଏ, ଏମାନଙ୍କର ବିଚାର ଏକପାକ୍ଷିକ। ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣଙ୍କର

ମଧୁର ପଦାବଳୀର ସମକକ୍ଷ ସାହିତ୍ୟସଂପଦ ବର୍ତ୍ତମାନ ସାହିତ୍ୟରେ ନାହିଁ। କିନ୍ତୁ ବର୍ତ୍ତମାନର ସାହିତ୍ୟରେ ଏପରି ଅନେକ ମଣିମାଣିକ୍ୟର ସଂଗ୍ରହ ହୋଇଛି, ଯାହା ପ୍ରାଚୀନମାନଙ୍କ ନିକଟରେ ଆଶାକରାଯାଏନାହିଁ। ନୂତନ ସାହିତ୍ୟ ଏପରି କେତେକ ନବୀନ ରସଧାରାରେ ରସବନ୍ତ ହୋଇଉଠିଛି ଯେ, ପ୍ରାଚୀନ ସାହିତ୍ୟ ନିକଟରେ ତାର ଦାରିଦ୍ର୍ୟ ଘେନି ଲଜ୍ଜିତ ହେବାର କୌଣସି କାରଣ ନାହିଁ।

ଆମ୍ଭମାନଙ୍କର ଆଳଙ୍କାରିକମାନେ ନବରସର ଉଲ୍ଲେଖ କରିଅଛନ୍ତି। ଏହି ରସ କଣ? ଏହା ମାନବ ମନର ଏକ ଏକ ଅନୁଭବ ମାତ୍ର। ନବରସ, ମାନବଚିତ୍ତର ନଅଟି ପ୍ରଧାନ ଅନୁଭବର ନାମ ମାତ୍ର। ଆମ୍ଭମାନଙ୍କର ଆଳଙ୍କାରିକମାନଙ୍କର ବିଶ୍ଳେଷଣ ଏପରି ସୂକ୍ଷ୍ମ ଯେ, ଏ ନଅଟିର ବାହାରେ ମାନବର ଆଉ ବିଶେଷ ଅନୁଭୂତି ଥିବାର ଜଣାଯାଏନାହିଁ। କିନ୍ତୁ ମାନବ ଚରିତ୍ର ଦେଖିବାକୁ ଗଲେ ଏଇ ପ୍ରଧାନ ଅନୁଭୂତିଗୁଡ଼ିକର ବହୁ ଉପଜାତି ଆମ୍ଭମାନଙ୍କର ଦୃଷ୍ଟିରେ ପଡ଼େ। ଧରନ୍ତୁ, ଶୃଙ୍ଗାର ରସ। ପ୍ରେମିକ-ପ୍ରେମିକାର ପୂର୍ବରାଗ, ଅନୁରାଗ, ବିରାଗ, ମାନ, ଅଭିମାନ, ଚାଟୁ, ବିନୟ, ଉପେକ୍ଷା, ପ୍ରତୀକ୍ଷା, ଏଇପରି ନାନା ଅବସ୍ଥା ଏଇ ଶୃଙ୍ଗାର ରସ ମଧ୍ୟରେ ଗଣିବାକୁ ହେବ। ଶୃଙ୍ଗାର ରସ ପରି ଅନ୍ୟ ରସମାନଙ୍କର ମଧ୍ୟ ଉପଜାତି ରହିଛି। ଏହିପରି ଗଣିବାକୁ ବସିଲେ ଆମ୍ଭେମାନେ ଦେଖିବା ମାନବ ଚିତ୍ତର ଅନୁଭୂତି ନଅଟିରେ ଶେଷ ହେବ ନାହିଁ। ହୁଏତ ଆମ୍ଭମାନଙ୍କୁ ନଅରେ ଶୂନ ପ୍ରୟୋଗ କରିବାକୁ ହେବ। କାଳ-ଧର୍ମର ପରିବର୍ତ୍ତନ ଅନୁସାରେ ମଧ୍ୟ ମାନବର ଅନୁଭୂତିର ପରିବର୍ତ୍ତନ ହେଉଛି। ବିଜ୍ଞାନର ପ୍ରଭାବରେ ଆଜିକାଲି ନାସ୍ତିକମାନଙ୍କର ସଂଖ୍ୟା ବଢୁଛି। ୟୁରୋପର ଗୋଟିଏ ବିଶାଳ ଜାତି ଭଗବାନଙ୍କୁ ତାର ସମାଜରୁ ବହିଷ୍କାର କରିବାର ଯତ୍ନରେ ଅଛି। ଆମର ଆଳଙ୍କାରିକମାନଙ୍କର ନବରସ ମଧ୍ୟରେ ଏ ବିଦ୍ରୋହ-ଭାବର ସ୍ଥାନ ନାହିଁ। ସେହିପରି, ବର୍ତ୍ତମାନର ଦେଶପ୍ରେମ ଆଉ ଏକ ନୂତନ ଅନୁଭୂତି।

ମାନବ ଚିତ୍ତର ଏହି ବହୁ ଅନୁଭୂତିର ପ୍ରକାଶହିଁ ସାହିତ୍ୟ। ଆମ୍ଭମାନଙ୍କ ମଧ୍ୟରେ ଏପରି ଜଣେ ଜଣେ ଲୋକ ଜନ୍ମଗ୍ରହଣ କରନ୍ତି, ଯେଉଁମାନେ ମାନବର ଏହି ଅନୁଭୂତିଗୁଡ଼ିକ, ସମାଜର ଆଉ ଦଶଜଣ ଅପେକ୍ଷା ନିବିଡ଼ତର ଭାବରେ ଅନୁଭବ କରନ୍ତି। ମାନବ-ଚରିତ୍ର ବିଶ୍ଳେଷଣ କରିବାରେ, ସୃଷ୍ଟିର ତତ୍ତ୍ୱ ଉପଲବ୍ଧି କରିବାରେ, ଯେଉଁମାନଙ୍କର ସହଜ-ଲବ୍ଧ ବୁଦ୍ଧି ଥାଏ ଏବଂ ଏଇ ଅନୁଭୂତି ଓ ଏଇ ତତ୍ତ୍ୱଜ୍ଞାନକୁ ଭାଷାରେ ପ୍ରକାଶ କରିବାର କ୍ଷମତା ଯେଉଁମାନଙ୍କର ଥାଏ, ସେଇମାନେ କବି। କବିର କାର୍ଯ୍ୟ, ଅଗଣିତ ଜନସଂଘର ସତ ସତ ମୂକ ଅନୁଭୂତିକୁ ଭାଷା ଦାନ କରିବା। ଯେଉଁ କବି ଯେଉଁ ପରିମାଣରେ ମାନବ ଅନୁଭୂତିକୁ ଭାଷାର ଶିଳ୍ପ ଦେଇ ପ୍ରକାଶ କରିପାରିଛି, ସେ ସେହି ପରିମାଣରେ ପ୍ରିୟ ଓ ପୂଜ୍ୟ। ଯେଉଁ ସାହିତ୍ୟରେ ମାନବର ବିଚିତ୍ର ଅନୁଭୂତି ଯେଉଁ ପରିମାଣରେ ପ୍ରକାଶ ପାଇଛି, ସେ ସାହିତ୍ୟ ସେଇ ପରିମାଣରେ ପୂର୍ଣ୍ଣ। ଏଇ ପ୍ରମାଣ ଅନୁସାରେ ଯଦି ଆମ୍ଭେମାନେ କାବ୍ୟ ଓ ସାହିତ୍ୟର ମୂଲ୍ୟ ନିରୂପଣ କରିବା, ତେବେ ଇଂରାଜୀ ସାହିତ୍ୟ କିପରି ପୂର୍ଣ୍ଣାଙ୍ଗ ଓ ଇଂରାଜୀ କବି

ସେକ୍‌ସପିୟର କିପରି ବରେଣ୍ୟ, ତାହା ସହଜରେ ବୋଧଗମ୍ୟ ହେବ।

ଏଇ ପ୍ରମାଣ ଅନୁସାରେ ବୁଝିବସିଲେ, ଆମର ପ୍ରାଚୀନ ସାହିତ୍ୟ ନିତାନ୍ତ ଅପୂର୍ଣ୍ଣ, ଅଭାବଗ୍ରସ୍ତ ଓ ପଙ୍ଗୁ ବୋଲି ଜଣାପଡ଼େ। ଆମର ପ୍ରାଚୀନ କବିମାନଙ୍କର ବୀଣାର ତାରସଂଖ୍ୟା ନିତାନ୍ତ ଅଳ୍ପ। ସେଇ କେତୋଟି ତନ୍ତ୍ରୀ ଉପରେ ଶତାବ୍ଦୀ ପରେ ଶତାବ୍ଦୀ ଏ ଦେଶରେ କବିଗଣ ଅଙ୍ଗୁଳିଚାଳନା କରିଆସିଛନ୍ତି– ନୂତନ ତନ୍ତ୍ରୀ ସଂଯୋଗ କରି ସଙ୍ଗୀତରେ ପୂର୍ଣ୍ଣତା ଆଣିବା ପାଇଁ କେହି ଯତ୍ନ କରିନାହାନ୍ତି। ଏ ଯେପରି କୋକିଳର ଚିରପରିଚିତ ଯୁଗ୍ମ-ଧ୍ୱନି, ଚିରସୃଷ୍ଟି ଧରି ସେହି କୂ-ଉ, କୂ-ଉ। କିନ୍ତୁ ବନାଙ୍ଗନର ମଜଲିସରେ କୋକିଳ ଏକମାତ୍ର ଗାୟକ ଥିଲେ, ତାର କଣ୍ଠସ୍ୱର କର୍ଣ୍ଣରସାୟନ ହୁଅନ୍ତା ନାହିଁ। ବନଭୂମିର ନିରବଚ୍ଛିନ୍ନ ନିସ୍ତବ୍ଧତା ମଧ୍ୟରେ ତାର ନିରବଚ୍ଛିନ୍ନ କୂ-ଉ-କୂ କର୍ଣ୍ଣକଟୁ ନହେଉ ପଛେ, ବୈଚିତ୍ର୍ୟର ଅଭାବରୁ ସମସ୍ତ ମାଧୁରୀ ହରାନ୍ତା। ବନଭୂମିର ଅଗଣିତ ବିହଗ-କଣ୍ଠ ମଧ୍ୟରେ କୋକିଳର ସଙ୍ଗୀତ ପ୍ରକାରଭେଦରେହିଁ ମଧୁର ହୋଇଉଠେ।

ଆମର ପ୍ରାଚୀନ କାବ୍ୟ-କବିତାରେ ଏଇ ବୈଚିତ୍ର୍ୟ ଅଭାବ ବିଶେଷଭାବରେ ଆଖିରେ ପଡ଼େ। ପ୍ରାଚୀନ କବି ହୁଏତ ଧର୍ମ, ନ ହେଲେ ପ୍ରେମ, ଏଇ ଦୁଇଟିରେହିଁ ତାଙ୍କର ସମସ୍ତ ପ୍ରତିଭା ନିୟୋଜିତ କରିଦେଇଅଛନ୍ତି। ଅନେକ ସ୍ଥଳରେ ଧର୍ମ ଓ ପ୍ରେମ ହାତ ଧରାଧରି ହୋଇ ଚାଲିଛନ୍ତି; ଯେହେତୁ ଆମର ଧର୍ମର ଦେବତା ଆଦର୍ଶ-ପ୍ରେମିକ। ରାଧା ଓ କୃଷ୍ଣ, କବିମାନଙ୍କୁ ଏକଆଡ଼େ ଚଉଷଠି ବନ୍ଧ ପାଇଁ ଉପାଦାନ ଯୋଗାଇଛନ୍ତି ଏବଂ ଅନ୍ୟଆଡ଼େ ଆତ୍ମା ଓ ପରମାତ୍ମା ରୂପରେ ମଧ୍ୟ ପ୍ରତୀକ ହୋଇଅଛନ୍ତି। ଅଭିମନ୍ୟୁ, ଦୀନକୃଷ୍ଣ, ବଳଦେବ, ଗୋପାଳକୃଷ୍ଣ ଏଇ ଶ୍ରେଣୀର କବି। ରାଜପୁତ୍ର ଉପେନ୍ଦ୍ର ରାଜସିକ ଧର୍ମର ଉପାସକ। ସେ ଧର୍ମର ତ୍ରିସୀମା ନ ମାଡ଼ି, ରାଧା-କୃଷ୍ଣଙ୍କର ଆଶ୍ରୟ ନ ନେଇ ରକ୍ତ-ମାଂସର ନାୟକ-ନାୟିକାମାନଙ୍କୁ ନେଇ ଆପଣାର କେଳିପୁର ରଚନା କରିଅଛନ୍ତି। ଅଧିକାଂଶ କାବ୍ୟପ୍ରଣେତା ଭଞ୍ଜଙ୍କର ଶିଷ୍ୟ।

ତଥାପି, ଭଞ୍ଜ ଓ ଭଞ୍ଜାନୁଗ କବିବୃନ୍ଦ ସାହିତ୍ୟକୁ ଯଦି ବାସ୍ତବ ଜୀବନ ଅନୁଭୂତିର ପ୍ରକାଶ ବୋଲି ମନେକରିଥାନ୍ତେ, ତେବେ ଏଇ ବିଷୟଦ୍ୱନ୍ଦ୍ୱର ବୈଚିତ୍ର୍ୟରେହିଁ ପ୍ରାଚୀନ ଓଡ଼ିଆ ଭାଷା ସମୃଦ୍ଧ ହୋଇଉଠିଥାନ୍ତା। କିନ୍ତୁ ସେମାନଙ୍କର କାବ୍ୟସୃଷ୍ଟି କେବଳ ବିଧିବଦ୍ଧ ନିୟମ ଓ ପ୍ରାଚୀନ ଉଦାହରଣ ଅନୁସରଣ କରି, ଏକାବେଳକେ ଜୀବନ ହରାଇ ବସିଛନ୍ତି। ସମସ୍ତ କାବ୍ୟ କେବଳ ପ୍ରେମପ୍ରଧାନ। ସମସ୍ତ କାବ୍ୟର ଗଳ୍ପ, ବର୍ଣ୍ଣନା, ଛାନ୍ଦ ଓ ଭାଷା ମଧ୍ୟ ପ୍ରାୟ ଏକ। ନାୟକ-ନାୟିକାର, ଜନ୍ମରୁ ଯୌବନ ଯାଏଁ କ୍ରମବର୍ଦ୍ଧନର ବର୍ଣ୍ଣନ; ଯୌବନରେ ପ୍ରେମୋଦ୍‌ଗମ; ଉଭୟେ ଉଭୟର ସ୍ୱପ୍ନ-ଦର୍ଶନ, ତା'ପରେ ଚିତ୍ରପଟ-ଦର୍ଶନ, ମଙ୍ଗଳକୃତ୍ୟ, ପୁଷ୍ପଶଯ୍ୟା ଓ ରତୁ ଅନୁକ୍ରମେ ରତିକ୍ରୀଡ଼ା। ଏଇ ଗଳ୍ପବସ୍ତୁ ଓଲଟପାଲଟ ହୋଇ, ସବୁ କାବ୍ୟକୁ ମେରୁଦଣ୍ଡ ଯୋଗାଇଛି। ପ୍ରେମୋଦ୍‌ଗମଠାରୁ ରତିକ୍ରୀଡ଼ାଯାଏ ପ୍ରଣୟର ବର୍ଣ୍ଣନା ମଧ୍ୟ ଏକ। ସ୍ୱପ୍ନ-ଦର୍ଶନ ପରେ ନାୟିକାକୁ ଜ୍ୱରାକ୍ରମଣ; ସହଚରୀମାନଙ୍କର ଭାବନା, କୋମଳାଙ୍ଗୀ ନାୟିକାର ଜ୍ୟୋତ୍ସ୍ନା

ମଧ ସହ୍ୟ ହେଲାନାହିଁ, ଶୀତଳ-ଉଶୀର-ଚନ୍ଦନ ମଧ ଦେହରେ ଲିପ୍ତ ହେଲାମାତ୍ରେ ତପ୍ତ ହୋଇଉଠିଲା । ଏହାପରେ ବିବାହର ଆୟୋଜନ; ମଧୁଶଯ୍ୟାକୁ ଅଭିସାରବେଳେ ସହଚରୀମାନଙ୍କର ପରିହାସ; ତା'ପରେ ମଧୁଶଯ୍ୟାର ଚିରାଚରିତ ରତିଲୀଳା । କାହିଁ କାହିଁ ଅନ୍ୟ ନାୟିକାର ଈର୍ଷାରେ କାବ୍ୟନାୟିକାର ଅଭିମାନ ଗଳ୍ପରେ ବୈଚିତ୍ର୍ୟ ଆଣେ; ନଚେତ୍ ବୈଚିତ୍ର୍ୟ ଖୋଜି ପାଇବା ଦୁଷ୍କର ।

କବିର ସୃଷ୍ଟି ପ୍ରେମକେନ୍ଦ୍ରିକ ଓ ପ୍ରେମାଚ୍ଛନ୍ନ ହେବା ସ୍ୱାଭାବିକ । ପ୍ରଣୟ ବିନା ନାୟକ ଓ ନାୟିକାର ଚରିତ୍ର ଅପୂର୍ଣ୍ଣ ହୋଇ ରହିବ । ତେଣୁ ରାମ ସୀତା; ହର ଗୌରୀଙ୍କ ପରି ଜଗତପୂଜ୍ୟ ନାୟକ-ନାୟିକାମାନଙ୍କର ମଧ ପ୍ରେମବିଳାସ ବର୍ଣ୍ଣନା କରିବାକୁ କବିମାନେ ଛାଡ଼ିନାହାନ୍ତି । କିନ୍ତୁ ବାଲ୍ମୀକି-ବା-କାଳିଦାସ ଯଦି କେବଳ ନାୟକ-ନାୟିକାମାନଙ୍କର ପ୍ରେମବିକାଶ ନେଇ କାବ୍ୟ ପୂର୍ଣ୍ଣକରିଥାନ୍ତେ, ତେବେ ସେମାନଙ୍କର କାବ୍ୟର ଓ ଚରିତ୍ରମାନଙ୍କର ମହତ୍ତ୍ୱ ବହୁତ ନ୍ୟୂନ ହୋଇଯାଇଥାନ୍ତା । ଯେଉଁ ପୁରୁଷ-ପୁଙ୍ଗବ ପ୍ରିୟାର ଜୀବନହୀନ ସ୍ୱର୍ଣ୍ଣପ୍ରତିମାକୁ ଚାହିଁ ଚାହିଁ ବିରହ ମେଣ୍ଟାଇବାକୁ ବସିଥିଲେ, ସେ ପ୍ରେମିକ ନୁହନ୍ତି ତ ଆଉ କିଏ ? ଏ ପ୍ରେମ ଏତେ ଶକ୍ତିମାନ୍ ଯେ, ନିରପରାଧିନୀ ସୀତାଙ୍କର କ୍ରୂର ନିର୍ବାସନରେ ମଧ, ତାଁର ଶୁଦ୍ଧତାରେ ଆମର ସନ୍ଦେହ ଜାତହୁଏନାହିଁ । ପ୍ରେମର ଏ ଚିତ୍ରଣ ପାଇଁ କବିଙ୍କୁ ରାମ-ସୀତାଙ୍କର ରତିକ୍ରୀଡ଼ାର ଆୟୋଜନ କରିବାକୁ ପଡ଼ିନାହିଁ । ହର-ପାର୍ବତୀଙ୍କର ପ୍ରଣୟ-ବର୍ଣ୍ଣନା କାଳିଦାସ ଠିକ୍ କେଳି-ମନ୍ଦିରର ଦ୍ୱାରଦେଶରେ ସାଙ୍ଗକରିଅଛନ୍ତି । ନୈତିକ କବି ଜାଣିଥିଲେ ଯେ, ପ୍ରେମର ସାଧନାହିଁ ପ୍ରେମର ଶ୍ରେଷ୍ଠାଂଶ । ଏହି ସାଧନାରେ ମାନବିକ ଚରିତ୍ରର ବିକଚ ବିକାଶ ହୁଏ । ଦୈହିକ ସମ୍ଭୋଗ ପ୍ରଣୟର ଅଂଶ ହେଲେହେଁ, ତା' ଏତେ ସାମାନ୍ୟ ଓ ସାଧାରଣ କ୍ରିୟା ଯେ, ସେଥିରେ ପୌରୁଷ ଓ ନାରୀତ୍ୱର ପରମ ବିକାଶ ହୋଇନପାରେ । ଦୈହିକ ଭୋଗ, ମନୁଷ୍ୟ କାହିଁକି, ଜୀବଜନ୍ତୁ-କୀଟପତଙ୍ଗର ମଧ ସ୍ୱାଭାବିକ ଲୀଳା । କିନ୍ତୁ ସତୀଙ୍କର ଶବକୁ ସ୍କନ୍ଧଦେଶରେ ମାଳା କରି ବିରହ-ବିଳାପରେ ବିଶ୍ୱବାୟୁକୁ ଉଷ୍ଣ କରିବା କେବଳ ଶଙ୍କର ପାରନ୍ତି । ପ୍ରଣୟର ମର୍ଯ୍ୟାଦା ଏହି ସାଧନାରେ— ଚଉଷଠି ବନ୍ଧରେ ନୁହେଁ ।

ଓଡ଼ିଆ ପ୍ରାଚୀନ କାବ୍ୟ-କବିତାରେ ଏପ୍ରକାର ଉଚ୍ଚ ମାନବିକତାର, ବା ଦୃଢ଼ ଚରିତ୍ରର ଚିତ୍ର ନାହିଁ କହିଲେ ଚଳେ । ଶକ୍ତିମାନ୍ ପ୍ରେମିକ ବା ଶକ୍ତିମତୀ ପ୍ରେମିକା ଦୁର୍ଲଭ; ଅଥଚ ସମସ୍ତ ସାହିତ୍ୟଟା ପ୍ରେମକୁ ଆଶ୍ରୟ କରି ଗଠିତ ହୋଇଉଠିଛି । ନାୟକ-ନାୟିକାମାନଙ୍କର ଜୀବନରେ ପ୍ରେମହିଁ ଶ୍ରେଷ୍ଠ ଓ ଏକମାତ୍ର ଘଟଣା; ଅଥଚ ପ୍ରାୟ ସମସ୍ତ କବିଙ୍କର ସମସ୍ତ ନାୟକ-ନାୟିକା ପ୍ରେମର ନିମ୍ନତମ ସ୍ତରରେ । ଏଠାରେ କୌଣସି ଶକୁନ୍ତଳା ପ୍ରତ୍ୟାଖ୍ୟାତ ହୋଇ ବ୍ରହ୍ମଚାରିଣୀ ହୋଇନାହିଁ, କୌଣସି ଜୁଲିଏଟ୍ ପ୍ରେମ ପାଇଁ ଆତ୍ମତ୍ୟାଗ କରୁନାହିଁ, କୌଣସି ସୁଭଦ୍ରା ପ୍ରେମ ପାଇଁ ପ୍ରଣୟୀର ରଥଚାଳନା କରି ବାହାରିଯାଉନାହିଁ । ସମସ୍ତଙ୍କର ପ୍ରଣୟ କେବଳ ବିଳାପ, ଅଶ୍ରୁ, ଅଭିମାନ ଓ ରତିକ୍ରୀଡ଼ା ।

ଅବଶ୍ୟ ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ପଦାବଳୀରେ ପ୍ରଣୟାନୁଭୂତିର ଯେଉଁ

ମଧୁର ଚିତ୍ର ଅଛି, ତାର ଉପମା ନାହିଁ। ବିଦ୍ୟାପତିଙ୍କର 'ଜନମ ଅବଧି ହମ୍ ରୂପ ନେହାରଲ, ନୟନ ନ ତିରପିତ ଭେଲା'ର ତୁଳନା, ଅଭିମନ୍ୟୁଙ୍କ କାବ୍ୟରେ ନଥିଲେହେଁ ଅଭିମନ୍ୟୁଙ୍କର ଅନେକ ମଧୁର-ପଙ୍‌କ୍ତି ବିଦ୍ୟାପତିଙ୍କର ଈର୍ଷା ଆଣିବ। ଗୋପାଳକୃଷ୍ଣଙ୍କ ପଦାବଳୀରେ ପ୍ରେମର ନାନା ଭାବର ଯେ ଚିତ୍ର ଦିଆହୋଇଛି, ପ୍ରକୃତରେ ତା' ଗୌରବର ସାମଗ୍ରୀ। ଅନେକ ଦିଗରୁ ଦେଖିବାକୁ ଗଲେ ଉତ୍କଳର ପ୍ରେମ-କବିମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ସମସ୍ତଙ୍କଠାରୁ ଅଧିକ ମୌଳିକ। ରାଧା-କୃଷ୍ଣ ପରି ସାଧାରଣ କାବ୍ୟ-ସମ୍ପଦକୁ ସେ ଯେପରି ନିଜସ୍ୱ କରିଛନ୍ତି, ତା' ପ୍ରଥମ ଶ୍ରେଣୀର ପ୍ରତିଭାର ପରିଚୟ ଦିଏ।

କିନ୍ତୁ ପ୍ରଣୟ କ'ଣ ନର-ନାରୀ ଜୀବନର ଏକମାତ୍ର ଘଟଣା ଓ ସିଦ୍ଧି? ପ୍ରେମ କ'ଣ ଏକମାତ୍ର ଅନୁଭୂତି? ସେ ସମୟରେ ଓଡ଼ିଆମାନେ ଦିଗ୍‌ବିଜୟ କରି ଫେରୁଥିଲେ। ପ୍ରାଚୀନ କାବ୍ୟରେ ତାର ତ ଛାୟା ନାହିଁ। ଓଡ଼ିଆ ବଣିକ, ସମୁଦ୍ର ପାରିହୋଇ ମଣି-ମୁକ୍ତା ଆହରଣ କରି ଘରକୁ ଫେରୁଥିଲେ। ଖଣ୍ଡେ ପାଲା ଓ ଗୋଟିଏ ଓଷାର କଥା ବ୍ୟତୀତ ଓଡ଼ିଆ ସାହିତ୍ୟରେ ତାର ତ ଗନ୍ଧ ନାହିଁ।* ସେ କାଳରେ ଲୋକେ କ'ଣ ହାସ-ପରିହାସ କରୁନଥିଲେ? ପ୍ରାଚୀନ କାବ୍ୟରେ ହାସ୍ୟରସର ଏକାନ୍ତ ଅଭାବ କାହିଁକି? ବାଲ୍ୟ-ବିଧବାର ଉଷ୍ଣ ନିଶ୍ୱାସରେ ସେ କାଳର ବାୟୁ ବ୍ୟଥିତ ହେଉନଥିଲା? କୌଣସି ପ୍ରାଚୀନ କବି ଏକାବେଳକେ ସେ କଥାର ନାମ ଧରିନାହାନ୍ତି। ବଣିକ ଗୃହ ଛାଡ଼ି ପାରାବାର ଆରପାରକୁ ଚାଲିଯାଏ, ପ୍ରୋଷିତଭର୍ତ୍ତୃକା ବଣିକ-ପତ୍ନୀର ବିରହ-ଦିବସ କିପରି କଟୁଥିଲା, ସେ କଥା କ'ଣ କାବ୍ୟରେ କହିବାର ନ ଥିଲା? ଓଡ଼ିଆ କବି, ସମାଜ-ଜୀବନର ଏ ସବୁ ବୈଚିତ୍ର୍ୟ ପ୍ରତି ଆଦୌ ଦୃଷ୍ଟି ନ ଦେଇ, ଯୁଗ ପରେ ଯୁଗ କେବଳ ଏକ-ତନ୍ତ୍ରୀ ପ୍ରେମ-କାବ୍ୟ ଲେଖି, ସାହିତ୍ୟକୁ ଏକରସ-ଦୋଷରେ ଦୂଷିତ କରିଯାଇଛନ୍ତି।

ଓଡ଼ିଆ ସାହିତ୍ୟର ଧର୍ମ-ଭାଗରେ ଜଗନ୍ନାଥ ଦାସଙ୍କ ଭାଗବତ ଲକ୍ଷ ଲକ୍ଷ ଓଡ଼ିଆପ୍ରାଣରେ ଅମୃତ ଢାଳୁଛି। ତାଙ୍କର ଗ୍ରନ୍ଥ ଅନୁବାଦ ହେଲେହେଁ ତାକୁ ଅନୁବାଦ ନ କହି ସମ୍ପୂର୍ଣ୍ଣ ନୂତନ ସୃଷ୍ଟି କୁହାଯିବ। ଭାଗବତର କଠିନ ତତ୍ତ୍ୱକୁ ଜଗନ୍ନାଥ ସରଳ ଭାଷାରେ ପ୍ରକାଶ କରିଅଛନ୍ତି। କିନ୍ତୁ ଭଗବାନଙ୍କ ସଙ୍ଗରେ ଭକ୍ତର ଯେ ବ୍ୟକ୍ତିଗତ ସମ୍ବନ୍ଧ, ଯାହା ମାନ, ଅଭିମାନ, କ୍ରୋଧ, ବୈରାଗ୍ୟ ମଧ୍ୟରେ ମନୋହର ଭାବରେ ପ୍ରକାଶପାଏ, ତା' ଜଗନ୍ନାଥ ଦାସଙ୍କ ଭାଗବତରେ ତ ନାହିଁ; ଓଡ଼ିଆ ସାହିତ୍ୟରେ ଅନ୍ୟ କୌଣସିଠାରେ ଅଛି କି? କବୀର ଓ ରବୀନ୍ଦ୍ରନାଥଙ୍କ ପଦାବଳୀରେ

* ଏହା ଲେଖାହେଲାବେଳକୁ ଓଡ଼ିଆଭାଷାରେ ଅସାଧାରଣ ସାମରିକ ଚେତନାବାହୀ ଗ୍ରନ୍ଥ ''ପାଇକଖେଦା'' ଆବିଷ୍କୃତ ହୋଇନଥିଲା। ଓଡ଼ିଆମାନଙ୍କର ସାମୁଦ୍ରିକ ଓ ସାମରିକ ଐତିହ୍ୟର ହୃଦ୍‌ବୋଧକ ଚିତ୍ର ପାଇଁ, ପାଠକେ ଲେଖକର The Saga of the Land of Jagannath ଗ୍ରନ୍ଥର, ସଂପୃକ୍ତ ଦୁଇଟି ଅଧ୍ୟାୟ ପଢ଼ିବାକୁ ଅନୁରୋଧ।

ଭଗବତ୍-ପ୍ରେମର ଯେ ମଧୁର ଅଭିବ୍ୟକ୍ତି ହୋଇଅଛି, ତା' ପ୍ରାଚୀନ ଓଡ଼ିଆ ସାହିତ୍ୟରେ କୌଣସିଠାରେ ଅଛି କି? ବୈଷ୍ଣବକବିଗଣ ବ୍ୟକ୍ତିଗତ ଅନୁଭୂତିକୁ ରାଧା ଓ କୃଷ୍ଣଙ୍କର ମୁଖରେ ବ୍ୟକ୍ତ କରିଅଛନ୍ତି। ଏଇ କବିତାର ଅଧିକାଂଶ କେବଳ ଦେବ-ଦେବୀ ଓ ରାଧା-କୃଷ୍ଣଙ୍କର ସ୍ତୁତି, – ଅର୍ଥାତ୍, ରୂପ ବର୍ଣ୍ଣନା ଓ ଗୁଣ ବର୍ଣ୍ଣନା।

ପ୍ରାଚୀନ ସାହିତ୍ୟର ଏହି ବୈଚିତ୍ର୍ୟ-ହୀନତାର ଅନେକ କାରଣ ଦେଖାଯାଏ। ସେ କାଳରେ ସାମାଜିକ ଜୀବନ ନିତାନ୍ତ ଶାନ୍ତ ଥିଲା – ଜୀବନ-ସଂଗ୍ରାମ ଏତେ ଭୀଷଣ ନଥିଲା। ଲୋକେ ପଲ୍ଲୀର ଗୃହସଂପଦ ଛାଡ଼ି ଉଦରପୋଷଣ ପାଇଁ ନଗରକୁ ପଳାୟନ କରିବାର ଆବଶ୍ୟକତା ଅନୁଭବ କରୁନଥିଲେ। ନଗର ଓ ପଲ୍ଲୀଜୀବନରେ ବିଶେଷ ପ୍ରଭେଦ ମଧ୍ୟ ନ ଥିଲା। ଘାତ-ପ୍ରତିଘାତ ନ ଥିଲେ ଜୀବନରେ ବୈଚିତ୍ର୍ୟ ଆସେନାହିଁ। ସୃଷ୍ଟିର ଅଧିକାଂଶ ଘାତ-ପ୍ରତିଘାତ ଆହାରସଂଗ୍ରହରୁ ହୁଏ। ସେ କାଳରେ ଆହାର ଯଥେଷ୍ଟ ଥିଲା, ଜୀବନରେ ଅଭାବ ନଥିଲା। ତେଣୁ, ସ୍ୱଭାବତଃ ଲୋକେ ରସିକତାରେହିଁ ବୈଚିତ୍ର୍ୟ ଖୋଜୁଥିଲେ। ଜନତାର ରସିକତା ସବୁ ଦେଶରେ ସ୍ଥୂଳ। ଜନତାର ମନୋ-ରଞ୍ଜନ କରିବାକୁ ଯାଇ କବିବୃନ୍ଦ ଏଇ ସ୍ଥୂଳ-ରସ-ସାହିତ୍ୟ ଛାଡ଼ିଯାଇଛନ୍ତି। ସମୃଦ୍ଧ ପାଶ୍ଚାତ୍ୟ ଦେଶମାନଙ୍କରେ ଏବେ ଏହିପ୍ରକାର ଇତର ମୁକ୍ତ-ଯୌନ ଅବସ୍ଥା ଆସିଯାଇଛି।

କେହି ବା ସ୍ୱତନ୍ତ୍ର ପନ୍ଥା ଧରିଥାନ୍ତେ, କିନ୍ତୁ ଯୁଗ-ଯୁଗଧରି ଯେଉଁ ସମାଜ-ଜୀବନରେ ପ୍ରତ୍ୟେକ କ୍ରିୟା ବ୍ରାହ୍ମଣର ଶାସନ ମାନି ଆସିଛି, ସେହି ମାନସିକ ଦାୟିତ୍ୱକୁ ଉଭେଦ କରି ଜଣେ ବ୍ୟକ୍ତି ପକ୍ଷରେ ସ୍ୱତନ୍ତ୍ର ପଥ ଧରିବା ସହଜ ନୁହେଁ। ଗତାନୁଗତିକତାହିଁ ସାମାଜିକତାର ପ୍ରାଣ। ଯେଉଁ କବି ଜନପ୍ରିୟ ହେବାକୁ ଇଚ୍ଛା କରନ୍ତି, ସେ ଆସ୍ତିକ ସମାଜରେ ନାସ୍ତିକ ହେବେ କାହିଁକି; ରସିକ ସମାଜରେ ବେରସିକ ହେବେ କାହିଁକି?

ସେ କାଳରେ ଜାତୀୟତା ନଥିଲା – ଥିଲା ରାଜଭକ୍ତି। ପ୍ରାଚୀନ ସାହିତ୍ୟରେ ରାଜଭକ୍ତିର ପରିଚୟ ବହୁସ୍ଥାନରେ ମିଳେ। ଅଧିକାଂଶ କାବ୍ୟରେ ନାୟକ-ନାୟିକା ରାଜବଂଶର। କବି ନିଜେ କବିତା ଲେଖି ରାଜାଙ୍କ ନାମରେ ଭଣିତା କରିଯାଇଛନ୍ତି ଏବଂ ହାସ୍ୟୋଦ୍ଦୀପକ ପ୍ରଶସ୍ତି ମଧ୍ୟ ଗାଇଯାଇଛନ୍ତି।

ସାମାଜିକ ସମସ୍ୟା ସେତେବେଳେ ଥାଇ ମଧ୍ୟ ନଥିଲା। ପାଶ୍ଚାତ୍ୟ-ସଭ୍ୟତାର ସ୍ପର୍ଶ ପାଇ ଆଧୁନିକ ମନ, ସମାଜର ବହୁ ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରିବାକୁ ଶିଖିଛି। କିନ୍ତୁ ସେକାଳରେ ଶାସ୍ତ୍ରର ଶାସନ ଅମୋଘ ଥିଲା। ଲୋକେ ବିଶ୍ୱାସ କରୁଥିଲେ ଯେ, ଶାସ୍ତ୍ର ... ଋଷିମାନଙ୍କଦ୍ୱାରା ରଚିତ, ସେମାନେ ସେହି କାର୍ଯ୍ୟ ପାଇଁ ଦେବ-ପ୍ରେରିତ। ଶାସ୍ତ୍ରର ଅବମାନନା କହିଲେ ଇହକାଳରେ ତ ଦୁରବସ୍ଥାର ସୀମା ନଥିଲା, ପରକାଳ ପାଇଁ ମଧ୍ୟ ବ୍ରାହ୍ମଣମାନେ ବ୍ୟବସ୍ଥା କରି ରଖୁଥିଲେ। ଏଥିରେ ସୁଖ-ପ୍ରିୟ ରସିକ କବି, ବିଧବାର କ୍ରନ୍ଦନ ବା ପତିତର ଦୁରବସ୍ଥା ପାଇଁ ଲେଖନୀ ଧାରଣ କରନ୍ତେ କାହିଁକି? ଆଜିକାଲି ଏ ପ୍ରକାର ଲେଖାରେ ଯେ ବିଶେଷ ଗୌରବ ମିଳୁଛି – ସେକାଳରେ ସେପରି ନଥିଲା। ପୁଣି ସାମାଜିକ ସମସ୍ୟା ନେଇ କବିତା

ରଚନା କରିବା- ପାଶ୍ଚାତ୍ୟ ଦେଶରୁ ଶିଖିବା କଥା— ସେ କାଳରେ ସେମାନେ ତାହା କାହୁଁ ଜାଣିବେ ?

ସାହିତ୍ୟରେ ସ୍ଥୂଳ ରସିକତାର ଆଉ ଏକ କାରଣ ଏହି ଯେ, ରାଜ ଦରବାର କାବ୍ୟ-କବିତାର ଆଶ୍ରୟସ୍ଥଳ ଥିଲା। "ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା"— ତେଣୁ କବିତାକୁ ରାଜାଶ୍ରୟ ନେବାକୁ ପଡୁଥିଲା। ରାଜସଭାର ସ୍ଥୂଳ କାମୁକତା, ସବୁ ଜାତିରେ ଓ ସବୁ ଦେଶରେ ପ୍ରସିଦ୍ଧ। ଶକୁନ୍ତଳା ଯେଉଁ ରାଜପୁରୁଷର ହାତ ଧରିଲେ, ତାଙ୍କର ତ ଆଉ ଦୁଇଟି ରାଣୀ ଥିବାର କାଳିଦାସଙ୍କର ନାଟକରେ ମିଳେ; ପ୍ରକୃତରେ ଯେ କେତୋଟି ଥିଲେ, ତା' ଦଶରଥ ପ୍ରଭୃତି ପୂଜ୍ୟ ନରପତିମାନଙ୍କ ଇତିହାସରୁ ଆମ୍ଭମାନଙ୍କୁ ଅନୁମାନ କରିନେବାକୁ ପଡ଼ିବ। ଉଦ୍‌ବେଗହୀନ ଓ ଅଭାବ-ରହିତ ରାଜପୁରୁଷମାନଙ୍କର ଜୀବନରେ ଶୃଙ୍ଗାର ରସହିଁ ଏକମାତ୍ର ବୈଚିତ୍ର୍ୟ ଓ ସୁଖ। ସେଇ ଅନୁସାରେ ଆମର ସାହିତ୍ୟ ଗଠିତ ହୋଇ ଆସିଛି।

ଏସବୁ ଛଡ଼ା ଛଦ୍ମ-ପ୍ରେମମୟ ବୈଷ୍ଣବ ଧର୍ମ ତ ଅଛି। ଏଇ ଧର୍ମ ଚଉଷଠି ବନ୍ଧକୁ ମନ୍ତ୍ର-ପୂତ କରି, ଘୃଣା ଓ ଲଜ୍ଜାର ଉପରକୁ ଟେକି, ଆଭିଜାତ୍ୟ ଦାନ କରି ଦେଇଗଲା। ଦେବଦେବୀ ଯେତେବେଳେ ଏଥିପାଇଁ ଲାଳାୟିତ, ସାଧାରଣ ଲୋକେ କ'ଣ ? ଏଇ ଧର୍ମ ଉପରେ ଆଜିକାଲି ଯଥୋଚିତ ଭାବରେ ଆକ୍ରମଣ କରାଯାଉଅଛି। ସେଥିପାଇଁ ବେଶୀ କହିବାର ଆବଶ୍ୟକତା ନାହିଁ।

ଲେଖକର ପ୍ରାଚୀନ ସାହିତ୍ୟରେ ପାଣ୍ଡିତ୍ୟ ତ ନାହିଁ, ପାଣ୍ଡିତ୍ୟର ଛାୟା ମଧ୍ୟ ନାହିଁ। ସାମାନ୍ୟ କେତେଖଣ୍ଡ ପ୍ରାଚୀନ କାବ୍ୟକବିତା ଆଲୋଚନା କରିବା ପରେ ତାର ଯା' ଅନୁଭୂତି, ତାହାହିଁ ସେ ଏଠାରେ ଦେଇଛି। ଆଜିକାଲି ଏଇ ପ୍ରାଚୀନ କାବ୍ୟ-କବିତାର ପ୍ରତ୍ୟେକ ଅକ୍ଷରକୁ ଗୋଟିଏ ଗୋଟିଏ ମଣି-ମାଣିକ୍ୟ ବୋଲି ପ୍ରମାଣ କରିବାର ଚେଷ୍ଟା ଉତ୍କଳରେ କେତେକଙ୍କଦ୍ୱାରା ଚାଲିଅଛି। ନିଜର ବାପ-ବଡ଼ବାପଙ୍କର ସମ୍ପତ୍ତିକୁ ବଡ଼ ବୋଲି ମନେକରିବା ମନୁଷ୍ୟର ସ୍ୱଭାବ। ଯା' ବୋଲି ବାପ-ବଡ଼ବାପଙ୍କ ଖପରାକୁ ମଧ୍ୟ ସୁନା-ରୁପା କହି ଛାତି ଫୁଲାଇଲେ, ଛାତି-ଫୁଲା ସିନା ଆଉ ହେବ, ଦାରିଦ୍ର୍ୟ ତ ଘୁଞ୍ଚିବ ନାହିଁ! ଆମ୍ଭେମାନେ ଚାଟଶାଳୀରେ ଖଣ୍ଡିଏ ଛୋଟ ଗୋପୀଭାଷା ପଢ଼ିଥିଲୁ। ସେ ମୋଟେ ଦୁଇ ଅଧ୍ୟାୟ ଥିଲା— ସେ ଦୁଇଟି ଅଧ୍ୟାୟରେ ଉତ୍କଳର ଗ୍ରାମ୍ୟ ନାରୀଜୀବନର ମଧୁର ବର୍ଣ୍ଣନା ନିହିତ ଅଛି। ଇତିମଧ୍ୟରେ 'ଗୋପୀଭାଷା' ମୁଦ୍ରାରାକ୍ଷସର ଗର୍ଭରୁ ପ୍ରକାଣ୍ଡ କଳେବର ଘେନି ଉଦ୍‌ଗୀର୍ଣ୍ଣ ହୋଇଅଛି। ବନ୍ଧୁମେଳରେ ଏଇ ପରିଚିତ ପୁସ୍ତକକୁ ଆଲୋଚନା କରି ଦେଖିଲୁ, ଯାହା ଘେନି କଳେବର ବୃଦ୍ଧି କରାହେଉଅଛି, ସେ କେବଳ ଆବର୍ଜନା। ଏ ଆବର୍ଜନା ଲୋକଲୋଚନର ଅଗୋଚର ଥିଲେ ତ ଭଲ ହୋଇଥାଆନ୍ତା। ସେଇ କାରଣରୁ ବୋଧହୁଏ ଏହାର ପ୍ରଚାର ଏତେକାଳ ଅଜ୍ଞାତ ଥିଲା। ଯେଉଁମାନେ 'ଲୁପ୍ତ-ରତ୍ନ' ଉଦ୍ଧାର କରିବାକୁ ଯାଇ ଏପ୍ରକାର ଅଙ୍ଗାର ମାତ୍ର ଉତ୍ତୋଳନ କରି ଆଣୁଛନ୍ତି, ସେମାନେ କ'ଣ ସାରସ୍ୱତ ଭଣ୍ଡାରର ମହତ୍ତ୍ୱ ବୁଝିନାହାନ୍ତି ? ସେମାନେ କ'ଣ ଜାଣନ୍ତିନାହିଁ ଯେ, ଏଠି କେବଳ

ବ୍ରହ୍ମଜାତି ହୀରାରହିଁ ସ୍ଥାନ? 'ମୌକ୍ତିକଂ ନ ଗଜେ ଗଜେ'— ସବୁ ହାତୀ ମୁଣ୍ଡରୁ ମୁକ୍ତା ବାହାରେ ନାହିଁ; ସବୁ ତାଳପତ୍ର ପୋଥିରୁ 'ଲୁପ୍ତ-ରତ୍ନ' ବାହାରିବ ନାହିଁ। ''ପ୍ରାଚୀନ-ସାହିତ୍ୟ'' ବୋଲି ଏହାର ଯେ ଅଭାବ ନାହିଁ, ଏହା ଯେ ଏକାବେଳକେ ପୂର୍ଣ୍ଣାଙ୍ଗ, ଏପରି ଭାବିବା ସମ୍ପୂର୍ଣ୍ଣ ଭୁଲ। *

ଅବଶ୍ୟ, ଉପରେ ଯାହା ପ୍ରକାଶ କରାଯାଇଛି, ତାହା କେବଳ ଭଞ୍ଜ ଓ ଭଞ୍ଜାନୁଗାମୀ କାବ୍ୟ-ସୃଷ୍ଟି ସଂବଂଧରେ ପ୍ରଯୋଜ୍ୟ। ଏହି କାବ୍ୟସମୁଚ୍ଚୟ ସମଗ୍ର ଓଡ଼ିଆ ସାହିତ୍ୟ ନୁହେଁ। ସାରଳା ଦାସ ବା ଜଗନ୍ନାଥ ଦାସଙ୍କ ସୃଷ୍ଟି-ସଂସାରରେ ବହୁ ରସ ଓ ରତ୍ନ ସଂଚିତ ଅଛି। ନାନା ମଧୁର ରାଗରାଗିଣୀରେ ଏହି ସଂସାର ଚିରଲଳିତ। ଏକ ପ୍ରଚ୍ଛନ୍ନ ଓ ଗଭୀର ଆଧ୍ୟାତ୍ମିକତାରେ ଏହି ସଂସାର ଓତପ୍ରୋତ। ନବୀନ ଓଡ଼ିଆ କବି ଓ ସାହିତ୍ୟିକମାନଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟରୁ ଅନେକ କଥା ଯେ ଶିଖିବାର ନାହିଁ, ତାହା ନୁହେଁ। ତାହାର ଆଲୋଚନା ଅନ୍ୟତ୍ର।

## ଦ୍ୱିତୀୟ ଅଧ୍ୟାୟ

## ଓଡ଼ିଆ ଜାତିର ବୈଶିଷ୍ଟ୍ୟ **

ସମାଗତ ବନ୍ଧୁଗଣ,

ଏହି ସମ୍ମିଳନୀରେ ମତେ ପୁରୋଧାରୂପେ ବରଣ କରି ମତେ ଅଡୁଆରେ ପକାଇବା ସଙ୍ଗେ ସଙ୍ଗେ ଆପଣମାନଙ୍କ ଆୟୋଜନ ପ୍ରତି ଆପଣମାନେ ଅନ୍ୟାୟ କରିଛନ୍ତି ବୋଲି ମୋର ଧାରଣା। ଏକେ ଅର୍ବାଚୀନ ମୁଁ, ତା'ପରେ ଅବ୍ରାହ୍ମଣ କୃଷକ କୁଳରେ ଜନ୍ମ ହେତୁ, ମନ୍ତ୍ର ପାଠ କରି ଅନୁଷ୍ଠାନ ଆରମ୍ଭ ଓ ସାଙ୍ଗ କରିବାର ସ୍ୱାଭାବିକ ଅଭ୍ୟାସ ମୋର କାହିଁ? ଆପଣମାନେ ମୋ'ଠୁ କ'ଣ ଆଶା କରି ମତେ ନିମନ୍ତ୍ରଣ କରି ଆଣିଛନ୍ତି? ହୁଏତ ମୁଁ ଆପଣମାନଙ୍କୁ ନିରାଶ କରିବି। ତେବେ ଗ୍ରାମ୍ୟ ପୁରୋହିତ ତଣ୍ଡୁଳାୟ ସ୍ୱାହା, ନଡ଼ିଆୟ ସ୍ୱାହା କରି ମୂର୍ଖ କୃଷକ ଓ ତାର ପରଲୋକଗତ ପୂର୍ବପୁରୁଷ ସମସ୍ତଙ୍କୁ ଯେପରି ସନ୍ତୁଷ୍ଟ କରି ଚାଉଳ-ନଡ଼ିଆତକ ଗାମୁଛାରେ ବାନ୍ଧି ଘରକୁ ଫେରେ, ତା' ମୁଁ ଦେଖିଛି। ସେୟା କରି ଏ ଯଜମାନିରୁ

---

* ଇଚ୍ଛାପୁର-ସାହିତ୍ୟ-ସମ୍ମିଳନୀର ପ୍ରଥମ ଅଧିବେଶନରେ ପଠିତ। କାଳ ବୋଧହୁଏ, ୧୯୩୦। ଏଥିରେ ସାମାନ୍ୟ ପରିବର୍ତ୍ତନ ସ୍ଥାନେ ସ୍ଥାନେ କରାଯାଇଛି ମାତ୍ର।

** କଲିକତାଠାରେ ଅନୁଷ୍ଠିତ ହୋଇଥିବା ପ୍ରବାସୀ ଉତ୍କଳ-ସାହିତ୍ୟ-ସମ୍ମିଳନୀ (୧୯୧୪)ରେ ସଭାପତି ଅଭିଭାଷଣରୂପେ ପଠିତ।

କାଳେ ଉଦ୍ଧାର ପାଇଯିବି ବୋଲି ମୁଁ ଆଶା ପାଉଛି। ଆପଣମାନଙ୍କୁ ନୈରାଶ୍ୟଦେଲେ ମୁଁ ଆପଣମାନଙ୍କ ଅପେକ୍ଷା ଅବଶ୍ୟ ବେଶୀ ଦୁଃଖିତ ହେବି; କିନ୍ତୁ ଆପଣମାନେ ମୋତେ କ୍ଷମା କରିବେ ବୋଲି ମୋର ବିଶ୍ୱାସ।

ଏ ସଭାର କାର୍ଯ୍ୟ ଆରମ୍ଭ ହେବା ଆଗରୁ, ଅଳ୍ପଦିନ ହେଲା ଆମ୍ଭମାନଙ୍କୁ ଛାଡ଼ିଯାଇଥିବା ଆମର ପ୍ରିୟ କବିଗୁରୁ ରବୀନ୍ଦ୍ରନାଥଙ୍କର ମହତ୍ ସ୍ମୃତିକୁ ମୁଁ ନମସ୍କାର କରେ। ସେ ତ କେବଳ ବଙ୍ଗଭାଷାର କବି ନଥିଲେ, ସେ ଥିଲେ ଭାରତର ସକଳଭାଷାଭାଷୀ କୋଟି କୋଟି ମୂକ ଜନତାର ପ୍ରାଣମୟୀ ଭାରତୀ। ଭାରତର ନିଷ୍ପେଷିତ ଜନସଂଘର ମର୍ମଦାହୀ ଦୁଃଖ କିଏ ଆଉ ହୃଦୟବିଦାରକ ଭାଷାରେ ତାଙ୍କ ପରି ପ୍ରକାଶ କରିବ? ସହସ୍ର-ସହସ୍ର-ବର୍ଷ-ବୃଦ୍ଧ ଆମର ଏହି ପୁରାଣ ସଭ୍ୟତାର ଅନ୍ତର୍ନିହିତ ମୂଳ ସତ୍ୟସବୁ କିଏ ଆଉ ଅନୁପମ ଭାଷାରେ ବ୍ୟାଖ୍ୟାନ କରିବ? କିଏ ଆଉ ସମଗ୍ର ମାନବଜାତିର ଦୁଃଖ, ସୁଖ, ଆନନ୍ଦ ଓ ନୈରାଶ୍ୟ ପ୍ରାଣସ୍ପର୍ଶୀ ସଙ୍ଗୀତରେ ଫୁଟାଇପାରିବ? ତାଙ୍କ ପ୍ରୟାଣ ଭାରତବର୍ଷକୁ ମୂକ କରିଦେଇଛି। ରବୀନ୍ଦ୍ରନାଥ ପୁଣି କେବଳ ମହାକବି ନ ଥିଲେ; ସେ ଥିଲେ କବିଗୁରୁ। ଭାରତବର୍ଷରେ ଆଜି ଏପରି କୌଣସି କବି ନ ଥିବେ, ଯେ କୌଣସି ନା କୌଣସି ଭାବରେ ରବୀନ୍ଦ୍ରପ୍ରତିଭାଦ୍ୱାରା ପ୍ରଭାବିତ ଓ ସଂବୁଦ୍ଧ ହୋଇନଥିବେ। ଆମର ଚିନ୍ତାର ପ୍ରକୃତି ଓ ପ୍ରକାଶର ଧରଣ ତାଙ୍କଦ୍ୱାରା ପରିବର୍ତ୍ତିତ ହୋଇଯାଇଛି। ସେ ବଙ୍ଗଦେଶର ଗୌରବ; କିନ୍ତୁ ଯେହେତୁ ସେ ସମଗ୍ର ଭାରତବର୍ଷର, ତେଣୁ ତାଙ୍କଠି ଆମର ବି ଦାବି ଅଛି। ଆଜି ଏହି ଓଡ଼ିଆ ସାହିତ୍ୟ ସମ୍ମିଳନୀର ପ୍ରାରମ୍ଭରେ ତେଣୁ ମୁଁ ମୋର ଓ ଆମ ସମସ୍ତଙ୍କର ଗୁରୁଦେବ ମହାଦ୍ରଷ୍ଟା ଓ ମହାସ୍ରଷ୍ଟା କବି ରବୀନ୍ଦ୍ରନାଥଙ୍କ ମହତ୍ ସ୍ମୃତି ଉଦ୍ଦେଶ୍ୟରେ ନମସ୍କାର କରି ଏହି ଅନୁଷ୍ଠାନର କ୍ରିୟାରମ୍ଭର ସୂଚନା କରୁଛି।

ବନ୍ଧୁଗଣ, ଉତ୍କଳର ବାହାରରେ ଓ ଦୂରରେ ଏହି ବିରାଟ ସାର୍ବଜନୀନ ନଗରୀ କଲିକତାରେ ଓଡ଼ିଆ-ସାହିତ୍ୟ-ସମ୍ମିଳନୀ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଆନନ୍ଦ ସଞ୍ଚାର କରିବାର କଥା। ଓଡ଼ିଶାର ବାହାରେ ଅଧିକାଂଶ ଶିକ୍ଷିତ ଭାରତୀୟ ମଧ୍ୟ ଓଡ଼ିଆ ବୋଲି ଯେ ଗୋଟିଏ ଉନ୍ନତ ଭାଷା ଅଛି, ତାହା ଜାଣନ୍ତି ନାହିଁ; ଅଥଚ ଆମର ପ୍ରତିବେଶିନୀ ବଙ୍ଗଭାଷା ଆଜି ବିଶ୍ୱବିଦିତା। ଅବଶ୍ୟ ଗୋଟିଏ ସାହିତ୍ୟ ବିଶ୍ୱବିଦିତ ହେବାକୁ ହେଲେ ରବୀନ୍ଦ୍ରନାଥଙ୍କ ପରି ଗୋଟିଏ ଅସାମାନ୍ୟ ପ୍ରତିଭା ଦରକାର। ତା' ତ ଆମ ହାତରେ ନାହିଁ। ବୁଦ୍ଧିମାନ୍ ଓ ଜାତିପ୍ରାଣ ସମଗ୍ର ବଙ୍ଗାଳୀଜାତି ଚେଷ୍ଟା କରି ଆଉ ଏକ ରବୀନ୍ଦ୍ରନାଥ ସୃଷ୍ଟି କରିପାରିବେ ନାହିଁ। କିନ୍ତୁ ଏକମାତ୍ର ରବୀନ୍ଦ୍ରନାଥ ବଙ୍ଗଳାର ସମୃଦ୍ଧ ସାହିତ୍ୟକୁ ଗଢ଼ିପକାଇନାହାନ୍ତି। ଯା' ପଛରେ ବହୁ ପ୍ରତିଭାର ଏକଶତାବ୍ଦୀବ୍ୟାପୀ ସାଧନା ରହିଛି। ଏହି ସାଧନା, ରବୀନ୍ଦ୍ରନାଥଙ୍କ ଆଗମନ ପାଇଁ କ୍ଷେତ୍ର ପ୍ରସ୍ତୁତ କରି ରଖିଥିଲା। କ୍ଷେତ୍ର ଅଭାବରୁ ଚନ୍ଦ୍ରଶେଖରଙ୍କ ପରି ବୈଜ୍ଞାନିକ ଓ ଗଙ୍ଗାଧରଙ୍କ ପରି ସାହିତ୍ୟିକଙ୍କର ପ୍ରତିଭା କିପରି ଝରକଢ଼ା ହୋଇ ମଲା, ତାହା ତ ଓଡ଼ିଆମାନଙ୍କୁ ବୁଝାଇଦେବାକୁ ହେବନାହିଁ। ଏ ଦୁର୍ଦ୍ଦଶା ଘୁଞ୍ଚାଇବା କ'ଣ

ଆମ ହାତରେ ନାହିଁ? ଏ ଲଜ୍ଜା ଯଦି ଆମେ ନିର୍ବିକାର ଭାବରେ ସହିଯିବା, ତେବେ ଆମକୁ ଅନ୍ୟଭାଷୀ ଲୋକେ କାହିଁକି ଗୋଟିଏ ସଭ୍ୟଜାତି ବୋଲି ସ୍ୱୀକାର କରିବେ, କାହିଁକି ଘୃଣା ନ କରିବେ? ଆମେ ଆମ କବିଙ୍କି ଯଦି ଉପାସରେ ମରାଇବା, ତେବେ ଆମ ଭାଷା ମଧ୍ୟ ଯେ ଉପାସରେ ମରିବ, ଏଥିରେ ସନ୍ଦେହ କ'ଣ? ପୂର୍ବେ ରାଜପୁରୁଷମାନେ କବି ଓ ସାହିତ୍ୟିକମାନଙ୍କର ପୃଷ୍ଠପୋଷକ ଥିଲେ। ରାଜଦରବାରରେ ଆମ ଦେଶର କାବ୍ୟକବିତା ଗଢ଼ିଉଠିଥିଲା। ବର୍ତ୍ତମାନ ତ ଦେଶର ଶାସକ ବିଦେଶୀ; ସେମାନଙ୍କର ଭାଷା ଆମ ଭାଷା ନୁହେଁ, ସେମାନେ ଆମ ଭାଷାର ଅଭିବୃଦ୍ଧି କରିବେ ବୋଲି ଆମେ ଆଶା କରିବା କାହିଁକି? ତଥାକଥିତ ରାଜା ମହାରାଜା ପ୍ରଭୃତି ସାମନ୍ତ ନୃପତି, କିଛି ଯେ ସାହିତ୍ୟିକ ପୃଷ୍ଠପୋଷକତା କରି ନାହାନ୍ତି, ତାହା ନୁହେଁ; ତେବେ କୃତଜ୍ଞ ହେଲା ଭଳି ବା ଆଶା କରି ଅନେଇରହିବା ଭଳି ମୁକ୍ତହସ୍ତ ଉଦାରତା ସେମାନଙ୍କଠାରୁ ଦେଶ କେବେହେଲେ ପାଇନାହିଁ। ଦେଶରେ ଆଜି 'ଗଣ'ର ମହିମା ଓ ଅଧିକାର ପାଇଁ ତୀବ୍ର ପିପାସା ଯେପରି ଜାଗ୍ରତ ହୋଇଅଛି ଓ ଆବଶ୍ୟକତା ଯେପରି ଅନୁଭୂତ ହେଉଅଛି, ସେଥିରେ କୌଣସି 'ଜଣ'ର ହାତକୁ ଅନେଇରହିବାରେ ଜାତିର ପ୍ରାଣ-ପ୍ରତିବିମ୍ବ ସାହିତ୍ୟର ମର୍ଯ୍ୟାଦା ହାନି ହେବ ବୋଲି ମଧ୍ୟ ମୋର ଆଶଙ୍କା। ତେଣୁ ବନ୍ଧୁଗଣ, ଆମ ଜାତିର ନୂତନ ବାଣୀମନ୍ଦିରର ଭାର ଆମକୁଇ ଆଜି ବହନ କରିବାକୁ ହେବ। ଆମେ ଯେଉଁ ନୂତନ ସୌଧ ଠିଆକରେଇବା, ତାହାର ପାହାଚ୍ଚରେ କୌଣସି ଲକ୍ଷପତିର ନାମ ମର୍ମର ପ୍ରସ୍ତର ଉପରେ ଅଙ୍କିତ ରହି, ଆମର ଋଣିତ୍ୱକୁ ଯେପରି ଅହରହ ଆମ ଆଖି ଆଗରେ ଧରେଇ, ଚିରଅପମାନରେ ଆମ ମୁଣ୍ଡ ତଳକୁ କରେଇବାର ସୁଯୋଗ ପାଇବ ନାହିଁ। ସେ ସୌଧର ପ୍ରତ୍ୟେକ ଇଷ୍ଟକଖଣ୍ଡ ଆମେଇ ଆମ ହାତରେ ସଜେଇ ଆମରି ହାତତିଆରି ଚୂନସୁରକିରେ, ଅପର ଇଟାଖଣ୍ଡ ସହିତ ଗାନ୍ଥିନି କରିବା। ଭାବୁଛ କି, ଆମେ ପାରିବା ନାହିଁ? ଅବିଶ୍ୱାସ ଓ ସନ୍ଦେହ ହେଲେ, ସ୍ମରଣ କର ଯେ, ଆମେ ଓଡ଼ିଆ– ପୁରୀ, ଭୁବନେଶ୍ୱର ଓ କୋଣାର୍କର ବିରାଟ ମନ୍ଦିରସମୂହ ଆମର ବାହୁବଳ ଓ ନିହାଣମୁଗୁରଦ୍ୱାରା ଠିଆକରାଇ, ଆମ ଛବିଳ ଉତ୍କଳର ନଭୋମଣ୍ଡଳକୁ ଚିରକାଳ ପାଇଁ ଏପରି ବିଚିତ୍ର କରିଛୁଁ, ଯେପରି କି କ୍ୱଚିତ୍ ଅନ୍ୟତ୍ର ଦେଖାଯାଏ। ତେବେ ଆମରି ବିପୁଳ ବିଚିତ୍ର ମନ୍ଦିରମାଳାଦ୍ୱାରା ଦେଶକୁ ବିଚିତ୍ର କରିବା ଲାଗି ଯେଉଁ ମହାପ୍ରାଣ ନରପତିମାନେ ଜାତିକୁ ଉଦ୍‌ବୁଦ୍ଧ କରିଥିଲେ, ସେମାନେ ଆଜି ନାହାନ୍ତି। ତେଣୁ କେବଳ ସଂଗଠନ ନୁହେ, ସେଥିଲାଗି ପ୍ରାରମ୍ଭିକ ଉଦ୍‌ବୋଧନ କ୍ରିୟା ମଧ୍ୟ ଆମକୁ କରିବାକୁ ହେବ। ଆପଣମାନେ ଏ ଯେଉଁ ସମ୍ମିଳନୀର ଆୟୋଜନ କରିଛନ୍ତି, ଏହି ପ୍ରକାର ସମ୍ମିଳନୀସମୂହ ଜାତିର ସ୍ୱବାସ ଓ ପ୍ରବାସରେ ବାରମ୍ବାର ଅନୁଷ୍ଠିତ ହେଲେ ଜାତିର ଉଦ୍‌ବୋଧନ ଶୀଘ୍ର ହେବ ବୋଲି ମୁଁ ତେଣୁ ପ୍ରଥମେ କହିଛି ଯେ ଏହା ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଆନନ୍ଦ ଦାନ କରିବ।

ଏ ପ୍ରକାର ସାହିତ୍ୟିକ ସମ୍ମେଳନ ବାରମ୍ବାର ହେବାର ମୁଁ ଆଉ ଏକ ଆବଶ୍ୟକତା ମଧ୍ୟ ଅନୁଭବ କରୁଛି। ସେ କାରଣଟି ଆପଣମାନଙ୍କ କାନକୁ ଟିକିଏ ଆଶ୍ଚର୍ଯ୍ୟଜନକ ଶୁଣାଯିବ; ତାହା ଏହି ଯେ, ଆମ ଜାତିକୁ ଆଧୁନିକ ରାଜନୀତିରୁ ରକ୍ଷାପାଇବାକୁ ହେବ। ଏଥିପାଇଁ ସାହିତ୍ୟର ଅଭିବୃଦ୍ଧି ଓ ପ୍ରଚାରହିଁ ଏକମାତ୍ର କଲ୍ୟାଣର ପନ୍ଥା ବୋଲି ମୁଁ ମନେକରେ। ପାଞ୍ଚବର୍ଷ ତଳେ ରାଜନୀତି କହିଲେ ଆମେ ଆମ ପରାଧୀନ ଦେଶର ମୁକ୍ତି-ସଂଗ୍ରାମ ବୋଲି ବୁଝିଥିଲୁଁ। ଏବେ ସେ ସ୍ୱପ୍ନ ନିଷ୍ଠୁର ଭାବରେ ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯାଇଛି। ଆଜି ରାଜନୀତି କହିଲେ କେତେକ ଅବୁଦ୍ଧିଜୀବୀ, ବୈଶ୍ୟ-ଓ-ଶୂଦ୍ର-ଭାବାପନ୍ନ ଲୋକଙ୍କର ସ୍ୱାର୍ଥ-ସଂଘର୍ଷର ଦେଶବ୍ୟାପୀ କୁତ୍ସିତ ବୀଭତ୍ସତା। ଏ ବୀଭତ୍ସତା ଆଜି ଜାତିର ସକଳ ସ୍ତରକୁ ଏପରି ପ୍ରଭାବିତ କରିବାକୁ ବସିଲାଣି ଯେ, ଦେଶର ଗାଁରୁ ସହର ପର୍ଯ୍ୟନ୍ତ ବା ସ୍କୁଲରୁ ଆସେମ୍ବଲି ପର୍ଯ୍ୟନ୍ତ କେଉଁଠି ହେଲେ, ଜଣେ ସାଧୁଲୋକ ପାଇବାକୁ ଆଶା କରିବା ଏକ ବିଡ଼ମ୍ବନା ହୋଇଉଠିଲାଣି। ଏ ପ୍ରକାର ଦୁର୍ନୀତି ଯଦି ଜାତିକୁ ଗ୍ରାସକରିବସେ, ତେବେ ବନ୍ଧୁଗଣ, ମନେରଖନ୍ତୁ ଯେ, ଆମର ରାଜନୀତିକ ସ୍ୱାଧୀନତା ଯଦି କେବେ ଆମ ଭାଗ୍ୟରେ ଜୁଟେ, ତେବେ ତାହା ଏକ ଅଭିଶାପ ବୋଲି ଗଣିତ ହେବ। ସେତେବେଳେ ଦେଖିବା ଯେ, ପରପାପଠାରୁ ଆତ୍ମ-ପାପର ତାପଦହନ ବେଶି ବରଂ, କମ୍ ନୁହେଁ। ଲେଡ଼ିଗୁଡ଼ କହୁଣିକି ବୋହିବା ଆଗରୁ, ଆସ, ଆମେ ଆଗରୁ ସାବଧାନ ହେବା। ଏ ଦିଗରେ ଜାତିର ସାହିତ୍ୟର ଯେ ଦାୟିତ୍ୱ ଅଛି, ତାହା ଆମ୍ଭେମାନେ ଏପର୍ଯ୍ୟନ୍ତ ସମ୍ୟକ୍ ବୁଝିନାହୁଁ।

ଦେଶକୁ 'ଦଳ' ମାଡ଼ିବସିବାର ଗୋଟିଏ କାରଣ ଏହି ଯେ, ବୋଧହୁଏ ଜାତିର ଜନତାର ମନ ଆକର୍ଷଣ କରିବାକୁ ଅନ୍ୟ କିଛି ଦେଶରେ ନାହିଁ ବା ଜନସଂଘର ଜୀବନ କୌଣସି ଉଚ୍ଚ ଆଦର୍ଶଦ୍ୱାରା ଅନୁପ୍ରାଣିତ ହେଉନାହିଁ। କାବ୍ୟ, ନାଟକ, କବିତା, ଗଳ୍ପ, ପ୍ରବନ୍ଧାଦିଦ୍ୱାରା ଜନତାର ଚିତ୍ତକୁ ଭିନ୍ନ ଦିଗରେ ଓ ଭିନ୍ନ ଆଦର୍ଶ ଆଡ଼କୁ ଟାଣିନେଇପାରିଲେ, ଜାତିଜୀବନରେ ଗୋଟିଏ ମମତା ଆସିପାରନ୍ତା ବୋଲି ମୋର ବିଶ୍ୱାସ। ସାହିତ୍ୟର ଅଧିକତର ସାର୍ଥକତା ବା କ'ଣ? ବ୍ୟକ୍ତି ବା ଜାତିର ଜୀବନକୁ ଯଦି ସାହିତ୍ୟ ଉଚ୍ଚତର ସ୍ତରକୁ ନେଇନପାରେ, ତେବେ ସାହିତ୍ୟ କେବଳ ଗୋଟିଏ ବିଳାସସାମଗ୍ରୀ ହୋଇ ରହିବ। ବୀଣାପାଣିଙ୍କ ବିପଞ୍ଚୀ କ'ଣ ବିଳାସର ସାମଗ୍ରୀ? ସାହିତ୍ୟକୁ ଯେଉଁ ଯେଉଁ ଦେଶ ଓ କାଳରେ ପାପକର୍ମରେ ଲଗାହୋଇଛି, ତାର ଫଳ ହୋଇଛି ଜାତିର ଅଧୋଗତି।

ଜାଣନ୍ତି ତ ବନ୍ଧୁଗଣ, ୫୦ ବର୍ଷ ପୂର୍ବେ ଜର୍ମାନୀର ସ୍ଥାନ ପୃଥିବୀର ମନୋଜଗତରେ କ'ଣ ଥିଲା? ସେତେବେଳେ ଜର୍ମାନୀ ଥିଲା ବିଶ୍ୱର ସକଳ ବୁଦ୍ଧିଜୀବୀର ଶ୍ରୀକ୍ଷେତ୍ର ଓ ଜର୍ମାନ୍ ଜାତି ଥିଲା ସମସ୍ତଙ୍କର ନମସ୍ୟ। ହିଗେଲ୍, କାଣ୍ଟ୍ ପ୍ରଭୃତି ଦାର୍ଶନିକ, ଗେଟେ, ସିଲର୍, ହେଇନି ପ୍ରଭୃତି କବି, ସର୍ବୋପରି ବାଗ୍‌ନର, ଭିଟୋଫନ୍, ସୁବର୍ଟ ପ୍ରଭୃତି ସଙ୍ଗୀତର ଯାଦୁକରମାନଙ୍କ ଜନ୍ମଭୂମିରୂପେ ଜର୍ମାନ୍ ଦେଶ ଓ ଜାତି ସମଗ୍ର ବିଶ୍ୱର ସୁଧିବର୍ଗଙ୍କର ଶ୍ରଦ୍ଧା ଓ ବିସ୍ମୟର କାରଣ ହୋଇ ରହିଥିଲା। କିନ୍ତୁ ପରେ

ପରେ ଜନ୍ମହେଲେ ବିସ୍‌ମାର୍କ, କାଇଜର୍, ନିଟ୍‌ଜେ ପ୍ରଭୃତି ସିପାହିମନୋବୃତ୍ତିର ଜର୍ମାନ୍, ଯେଉଁମାନେ ନିଜେ ଇଚ୍ଛା କଲେ ଓ ନିଜ ଜାତିକୁ ମତାଇଲେ ଯେ, ଜର୍ମାନ୍‌ଜାତି ମନୋଜଗତରେ ଯେପରି ବିଶ୍ବର ଶ୍ରେଷ୍ଠ, ପାର୍ଥିବ ଜଗତ୍‌ରେ ମଧ୍ୟ ସେହିପରି ଶ୍ରେଷ୍ଠ ହେବା ଉଚିତ। ଫଳରେ ସାହିତ୍ୟ-ସଙ୍ଗୀତକୁ ପଛକୁ ଫିଙ୍ଗିଦେଇ, ଚାଲିଲେ ସେହି ପ୍ରତିଭାବାନ୍ ଜାତିକୁ ସିପାହି ବନେଇବାର ଚେଷ୍ଟା। ହିଟଲର୍ ସେହି ଚେଷ୍ଟାର ଶେଷତମ ଓ ବୀଭତ୍ସତମ ପ୍ରତିମୂର୍ତ୍ତି। କିନ୍ତୁ ଏହି ଚେଷ୍ଟା ଫଳରେ ଆଏନ୍‌ଷ୍ଟାଇନ୍, ଟମାସ୍‌ମାନଙ୍କୁ ବାହାର କରିଦିଆଯାଇଅଛି, ଏବଂ ଯେଉଁ ଜର୍ମାନ୍ ଜାତି ପୃଥିବୀର ପୂଜ୍ୟ ହୋଇ ରହିଥିଲା, ଆଜି ସେ ଘୃଣା, ଭୟ, ଆତଙ୍କର କାରଣ ହୋଇଛି। କେବଳ ଜର୍ମାନୀ ନୁହେଁ, ସୂକ୍ଷ୍ମକଳାକୁଶଳ ଜାପାନୀ ଓ ଇଟାଲିୟାନ୍‌ମାନଙ୍କୁ ଦେଖ। ନିରୀହ ସ୍ତ୍ରୀ ଓ ବାଳକବାଳିକାମାନଙ୍କୁ ହତ୍ୟା କରିବା ଏବଂ ଲକ୍ଷ ଲକ୍ଷ ନରନାରୀଙ୍କୁ ଗୃହହୀନ, ବାସହୀନ କରି ପଶୁପଲପରି ଧ୍ୱଂସ ଓ ବିତାଡ଼ିତ କରିବାରେ ଏମାନଙ୍କର ବିବେକରେ ବୃଶ୍ଚିକ ଦଂଶନ ନହୋଇ, ଏମାନଙ୍କ କଳୁଷିତ ଚିତ୍ତରେ ଆନନ୍ଦ ଓ ଗୌରବ ଅନୁଭୂତ ହୁଏ। ମନୁଷ୍ୟର ଏ ପ୍ରକାର ଅଧୋଗତି କିପରି ହୁଏ? ଆଧ୍ୟାତ୍ମିକ, ମାନସିକ ଓ ନୈତିକ ଜୀବନକୁ ତାଚ୍ଛଲ୍ୟ କରି ମନୁଷ୍ୟ ଯେତେବେଳେ ପାର୍ଥିବ ଜୀବନକୁ ସବୁଠାରୁ ଶ୍ରେଷ୍ଠ ମନେକରେ, ମନୁଷ୍ୟ ଯେତେବେଳେ କେବଳ ତାର କ୍ଷଣିକ ବର୍ତ୍ତମାନକୁହିଁ ଚିରନ୍ତନ ବୋଲି ଭୁଲ କରେ, ସେତେବେଳେ ସେ ଏବଂବିଧ ପଶୁତ୍ୱ ଆଡ଼କୁ ଗତି କରିବା ଅନିବାର୍ଯ୍ୟ ହୋଇପଡ଼େ।*

ଅନ୍ୟର ଭ୍ରମପ୍ରମାଦକୁ ଆମେ ଜାଣି ଜାଣି ଆମ ଜୀବନରେ କ'ଣ ପୁନରାବୃତ୍ତି କରିବା, ନା ଏଥିରୁ କିଛି ଶିଖିବା? ଆମର ଜନ୍ମ ଏପରି ଏକ ଜାତିରେ, ଯାହା କି ମୂଳରୁ କ୍ଷଣିକ ପ୍ରତି ତାଚ୍ଛଲ୍ୟ କରି ଚିରନ୍ତନ ଉପରେ ଆଖି ରଖିବାକୁ ଶିଖିଅଛି। ବନ୍ଧୁଗଣ, ଆମେ ଏ ମହାନ୍ ଆଦର୍ଶକୁ, କି ଲାଭ ଆଶାରେ ଫିଙ୍ଗିଦେଇ, ଆମରି ଆଖି ଆଗରେ ଯେଉଁ ସଭ୍ୟତାର ପତନ ଦେଖୁଛେ, ତାର ଆଦର୍ଶକୁ ଶ୍ରେୟଃ ବୋଲି ଗ୍ରହଣ କରିବା? ଅବଶ୍ୟ କ୍ଷଣିକକୁ ଏକାବେଳକେ ପରିତ୍ୟାଗ କରିବାକୁ ଭାରତର ସଭ୍ୟତା କେବେ କହି ନାହିଁ— କହିଛି, ଚିରନ୍ତନକୁ ସବୁବେଳେ ସ୍ମରଣ ରଖିବାକୁ। ଆମର ଜନତା କ୍ଷଣିକରେ ମତ୍ତ ଥିଲାବେଳେ ଆମର ସାହିତ୍ୟ ଯଦି ତାଙ୍କ କାନରେ ସବୁବେଳେ ଚିରନ୍ତନର ବାଣୀ ଶୁଣାଉଥାଏ, ତେବେ ଜାତିର ସାହିତ୍ୟ ତାର ଦାୟିତ୍ୱ କେତେକ ପରିମାଣରେ ତୁଲେଇଲା ବୋଲି ମୋର ବିଶ୍ୱାସ। ତେଣୁ ମୁଁ କହେ, ଜନଚିତ୍ତକୁ ଭିନ୍ନ ବାଟରେ ବ୍ୟସ୍ତ ରଖିବାକୁ ଓ ଉଚ୍ଚତର ସ୍ତରକୁ ଘେନିଯିବାପାଇଁ ଏ ପ୍ରକାର ସମ୍ମିଳନୀ ବାରମ୍ବାର ବସୁ, ଏହାହିଁ ମୋର ଇଚ୍ଛା। ଅନ୍ୟ ସମ୍ମିଳନୀସବୁପରି ୟା'କୁ ମଧ୍ୟ ଗୋଟିଏ ତମାସାପରି କଲେ ସାହିତ୍ୟ ପ୍ରତି ଆମ୍ଭେମାନେ ଘୋର ଅପରାଧ କରିବା।

---

* ଏହି ଅନୁଚ୍ଛେଦ-ବର୍ଣ୍ଣିତ ଘଟଣାସବୁ ବିଶ୍ୱ-ଯୁଦ୍ଧ ବେଳର।

ଆପଣମାନଙ୍କୁ ଜଣାଇଦେବା ଏ ସ୍ଥଳରେ ଅପ୍ରାସଙ୍ଗିକ ହେବନାହିଁ ଯେ, Nationalism ବା ଜାତୀୟତା ବା ରାଷ୍ଟ୍ରୀୟତା ପ୍ରତି ମୋର ଆକର୍ଷଣ ବଡ଼ କମ୍। ୟୁରୋପରୁ ଏ ବିଷ ଉଦ୍‌ଗୀର୍ଣ୍ଣ ହୋଇ ସାରା ପୃଥିବୀକି ଏପରି ରୁଗ୍‌ଣ କରିପକାଇଛି ଯେ, ବିଶ୍ୱମାନବକୁ ନିକଟରୁ ନିକଟତର କରିବା ପାଇଁ ବିଜ୍ଞାନ ଆମ ହାତରେ ଯେତେ ସୁବିଧା ଦେଲେହେଁ ମାନବଜାତି ଆଜି ଏପରି ଭାବରେ ଛିନ୍ନଭିନ୍ନ ହୋଇପଡ଼ିଛି, ଯାହା ଇତିହାସରେ କେବେଁ ଘଟିନଥିଲା। ମନୁଷ୍ୟକୁ ମନୁଷ୍ୟଠାରୁ ଯାହା ଦୂରରେ ରଖେ, ଯାହା ମନୁଷ୍ୟକୁ ତାର ପ୍ରତିବେଶୀକୁ ଘୃଣା, ବିଦ୍ୱେଷ, ଅବିଶ୍ୱାସ କରିବାକୁ ଶିଖାଏ, ତାହା ଘୃଣାର ବିଷୟ। ୟୁରୋପୀୟ ନାସନାଲିଜିମ୍ ପ୍ରତ୍ୟେକ ଜାତି ଭିତରେ ବୃଥା ଅହଙ୍କାର ପୂରେଇ ଜଗତ୍‌ର ବାର୍ତ୍ତମାନିକ ସକଳ ଅନିଷ୍ଟର କାରଣ ହୋଇଅଛି। ମିଷ୍ଟର୍ ରୁଜ୍‌ଭେଲଟ୍ ଡିମୋକ୍ରାସି ପାଇଁ ନିଦରେ ଶୋଉନାହାନ୍ତି; କିନ୍ତୁ ଶ୍ୱେତାଙ୍ଗ ୟାଙ୍କି, କୃଷ୍ଣାଙ୍ଗ ନିଗ୍ରୋ ପ୍ରତି କି ବ୍ୟବହାର କରେ ତାହା ଆମେ ଭୁଲିଯିବାନାହିଁ। ଏହି ଅସତ୍ୟ ମନୋବୃତ୍ତିର କୁତ୍ସିତ ଓ ହାସ୍ୟକର ଫଳ ଆଜି ଆମେ ଜର୍ମାନୀ ଓ ଜାପାନରେ ଦେଖୁଁ— କାରଣ ଏ ଦୁଇଟି ଦେଶର ଅଧିବାସୀ ମନେକରନ୍ତି ଯେ, ସେମାନେ ଜଗତ୍‌ରେ ଶ୍ରେଷ୍ଠ ଜାତି ଓ ସାରା ପୃଥିବୀ ଶାସନ କରିବାକୁ ଜଗନ୍ନିୟନ୍ତା ପରମେଶ୍ୱରଙ୍କର ସେମାନଙ୍କ ପ୍ରତି ସ୍ୱତନ୍ତ୍ର ଗୁପ୍ତ ନିର୍ଦ୍ଦେଶ ଅଛି। ପଶୁବଳର ଦର୍ପ ଛଡ଼ା ଏ ଧାରଣାକୁ ସମର୍ଥନ କରିବାକୁ ଆଉ କିଛି ନାହିଁ। ପ୍ରକୃତ ସତ୍ୟ ଏହି ଯେ, କୌଣସି ମନୁଷ୍ୟର କୌଣସି ଅନ୍ୟ ମନୁଷ୍ୟ ଉପରେ କର୍ତ୍ତୃତ୍ୱ କରିବାର ନୈସର୍ଗିକ ଅଧିକାର ନାହିଁ ଏବଂ ଜାତୀୟତାର ଅର୍ଥ ଏହା ନୁହେ ଯେ, ଗୋଟିଏ ଜାତି ଅନ୍ୟ ଜାତିଠାରୁ ନିଜକୁ ମହତ୍ତର ମନେକରି ତାକୁ ଅବଜ୍ଞା କରିବ। ଆମ୍ଭମାନଙ୍କ ନିକଟରେ ଜାତୀୟତାର ଅର୍ଥ ଏହା ହେବା ଉଚିତ ଯେ, ଯେହେତୁ ସମଗ୍ର ମାନବଜାତିର ସେବା କରିବାର ଶକ୍ତି ଓ ସୁଯୋଗ ବିଧାତା ଆମ୍ଭମାନଙ୍କୁ ଦେଇନାହାନ୍ତି, ତେଣୁ ଗୋଟିଏ ଛୋଟ ଅଂଶକୁ ଆମର ସେବା ଦାନକରି ଆମ ହୃଦୟର ସେବାତୃଷ୍ଣା ଆମେ ମେଣ୍ଟାଇବା। ଯେଉଁ ଦେଶରେ ମୋର ଜନ୍ମ ଏବଂ ଯେଉଁମାନେ ମୋର ଭାଷା ବୁଝିପାରନ୍ତି, ସେମାନଙ୍କପ୍ରତି ମୋର ପ୍ରତିବେଶୀ-ଭାବହିଁ ମୋର ଜାତୀୟତା। ଏହି ଦୃକ୍‌କୋଣରୁ ମୁଁ ପ୍ରତ୍ୟେକ ମନୁଷ୍ୟକୁ ସର୍ବପ୍ରଥମେ ମନୁଷ୍ୟ ଭାବରେ ବିଚାର କରିବି। ସେ ଯଦି ଭଲ ମନୁଷ୍ୟ ନୁହେ, ସେ ଓଡ଼ିଆ ହୋଇଥିଲେ ମଧ୍ୟ ତାକୁ ଘୃଣା କରିବି। ଆମ ଆଖିରେ ଆମ ଦେଶ ମଧ୍ୟ ଅନ୍ୟାୟ କରିବାର ଦେଖିଲେ, ଆମେ ଦେଶ ବିରୁଦ୍ଧରେ ଠିଆହେବା।

କିନ୍ତୁ ଓଡ଼ିଆ ଜାତି ଓ ଦେଶକୁ ମୁଁ ଆପଣଙ୍କ ପରି ଭଲପାଏ ବୋଲି ମୁଁ ଦୃଢ଼ଭାବରେ ଦାବି କରିପାରେ। ବନ୍ଧୁଗଣ! କିନ୍ତୁ ମୋ ଭଲପାଇବାରେ କୌଣସି ଅହମିକାର ଆସ୍ଫାଳନ ନାହିଁ। ମୋର ଜାତିପ୍ରତି ସ୍ନେହ ଅନ୍ୟ କୌଣସି ଜାତିପ୍ରତି ମୋର ଶ୍ରଦ୍ଧାଭାବକୁ ଅବରୋଧ କରେନାହିଁ। ମୁଁ ଓଡ଼ିଆ ଜାତିକୁ ତିନୋଟି କାରଣରୁ ଭଲପାଏ। ସେ କାରଣଗୁଡ଼ିକ ଏହିପରି—

ପ୍ରଥମ କାରଣ ଅବଶ୍ୟ ଏହି ଯେ, ମୋର ଜନନୀ ମତେ ଯେଉଁ ଭାଷା ଶିଖାଇଥିଲେ, ଓଡ଼ିଆ ଜାତି ସେହି ଭାଷା କହେ। ଏହି ଭାଷା ମୋର ରକ୍ତରେ ମିଶିଯାଇଛି। ଅନ୍ୟ ଯେତେ ଲୋକଙ୍କ ରକ୍ତରେ ଏ ଭାଷା ମିଶିଛି, ସେମାନଙ୍କ ପ୍ରତି ମୋର ଆକର୍ଷଣ ହେବା ସ୍ୱାଭାବିକ। ସେହିମାନେହିଁ ଓଡ଼ିଆ ଜାତି।

କିନ୍ତୁ ଏ ଆକର୍ଷଣ ଆକସ୍ମିକ। ମୁଁ ଯଦି ବଙ୍ଗାଳୀ ବା ନିଗ୍ରୋ ପରିବାରରେ ଜନ୍ମ ହୋଇଥାନ୍ତି, ତାହାହେଲେ ମୋର ଆକର୍ଷଣ ଅନ୍ୟ ପ୍ରକାର ଧରିଥାନ୍ତା ଏବଂ ହୁଏତ ମୁଁ ଓଡ଼ିଆ ଜାତିକି ଘୃଣା କରିଥାନ୍ତି ବା ହୁଏତ ମୁଁ ଏ ଜାତି ସମ୍ବନ୍ଧରେ ସଂପୂର୍ଣ୍ଣ ଅଜ୍ଞ ଥା'ନ୍ତି।

ପ୍ରଥମ କାରଣଠାରୁ ଆଉ ଟିକିଏ ବଳବତ୍ତର କାରଣ, ଅର୍ଥାତ୍ ଓଡ଼ିଆ ଜାତି ପ୍ରତି ମୋର ଆକର୍ଷଣର ଦ୍ୱିତୀୟ କାରଣ, ଗୋଟିଏ ସ୍ୱଚ୍ଛନ୍ଦ, ଉନ୍ନତ ସଭ୍ୟଜାତିର ଅଧଃପତନ। ଗ୍ରୀକ୍ ଓ ସେକ୍ସପେରୀୟ ଟ୍ରାଜେଡ଼ୀ ପ୍ରତି ପାଠକ ଓ ଦର୍ଶକମାନଙ୍କର ଯେଉଁ ଆକର୍ଷଣ, ଏ ଆକର୍ଷଣ ତାର ଅନୁରୂପ। ମୋର ଘର ଚିଲିକାକୂଳସ୍ଥ ଗୋଟିଏ ଛୋଟ ପଲ୍ଲୀରେ। ୩୦।୪୦ଟି ପରିବାର ମାତ୍ର ସେଠି ବାସ କରନ୍ତି। ସେମାନେ ସମସ୍ତେ ଖଣ୍ଡାୟତ; କିନ୍ତୁ ଖଣ୍ଡାୟତର ଗୌରବମୟ ଇତିହାସ ସେମାନେ କିଛି ହେଲେ ଜାଣନ୍ତି ନାହିଁ। ସେମାନେ ସମସ୍ତେ ପ୍ରାୟ ମୂର୍ଖ। କିନ୍ତୁ ପ୍ରାଚୀନ ପ୍ରଥାନୁସାରେ ଦଶହରାକୁ ସେମାନେ କୌଳିକ ସନ୍ତକ ଖଣ୍ଡାଟିମାନଙ୍କୁ ପୂଜା କରନ୍ତି। ଆମରି ଘରେ ସେ ପୂଜା ବସେ। ବିଜୟାଦଶମୀର ବିମଳ ଜ୍ୟୋତ୍ସ୍ନାରେ ଧରଣୀ ଆଲୋକିତ ହୋଇ-ଉଠିଲେ, ଗ୍ରାମ ଦାଣ୍ଡରେ ଗ୍ରାମ୍ୟ ହାଡ଼ିର ଗମ୍ଭୀର ଢୋଲଧ୍ୱନି ଛୋଟ ଗ୍ରାମରେ ସମସ୍ତଙ୍କ ପ୍ରାଣକୁ ଚଞ୍ଚଳ କରିପକାଏ। ଗ୍ରାମ୍ୟ ପୁରୋହିତ ପୂଜା ଶେଷ କରନ୍ତେ ଗ୍ରାମର ଟୋକା ଓ ବୁଢ଼ାମାନେ କାଳକଳଙ୍କିତ ଓ ଅବ୍ୟବହୃତ ମୌନ ଖଣ୍ଡା, ତରବାରି, ଢାଲ ଓ ପଟାବାଡ଼ି ସବୁ ଧରି ବାହାରିପଡ଼ନ୍ତି, ଗ୍ରାମ ଦାଣ୍ଡକୁ ଶ୍ରେଣୀବଦ୍ଧ ଭାବରେ। ଗ୍ରାମ ଶେଷରେ ଗ୍ରାମଦେବତାଙ୍କ ମନ୍ଦିର। ଶ୍ରେଣୀବଦ୍ଧ ପାଇକେ ସେଠାକୁ ଯାଇ ଦେବତାଙ୍କୁ ନମସ୍କାର କରି ଫେରିଆସିଲାବେଳେ ଢୋଲବାଦ୍ୟରେ ତାଙ୍କ ପାଦସବୁ ବୀରଦର୍ପରେ ଆପେ ଆପେ ନାଚିଯାଏ। ଗ୍ରାମର ମଝିଦାଣ୍ଡକୁ ଆସିଲେ ତାଙ୍କୁ ଆଉ ରଖେ କିଏ? ଜଣ ଜଣ ହୋଇ ଢାଲ ତରବାରି ଧରି ଖପାଖପ ଡେଇଁପଡ଼ନ୍ତି ଓ ନୃତ୍ୟମୟ ପାହୁଲରେ ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କରିଦିଅନ୍ତି। ବନ୍ଧୁଗଣ, ଆପଣମାନେ ବିଶ୍ୱାସ କରନ୍ତୁ ବା ନକରନ୍ତୁ, ମୁଁ ଯେତେ ଥର ସେଠାରେ ଉପସ୍ଥିତ ହୋଇଛି, ମୋର ଗ୍ରାମବାସୀଙ୍କର ସେଇ ମୁହୂର୍ତ୍ତକର ରଣନୃତ୍ୟ ଦେଖି ସେତେଥର ମୋର ଆଖି ଲୋତକଯୁକ୍ତ ହୋଇଉଠିଛି। ଅବଶ୍ୟ କାଳେ କିଏ ଦେଖିବ ବୋଲି, ମୁଁ ଜନତାର ଅନ୍ତରାଳରେ ମୋର ଭାବାବେଶକୁ ରୁଦ୍ଧ କରିପକାଏ; ସେ ଦୃଶ୍ୟର କରୁଣ ମାଧୁରୀ ମୋର ଜାତୀୟତାର ଏକ ପ୍ରଧାନ ଉପାଦାନ ହୋଇ ରହିଛି। ମୋର ସେ ଗ୍ରାମବାସୀ, ଉତ୍କଳର ପ୍ରାଚୀନ ଯୋଦ୍ଧୃବର୍ଗଙ୍କର ଅଧଃପତିତ ବଂଶଧରଗଣ ଆଜି ଭୋକ-ଉପାସରେ କାହିଁ ରେଙ୍ଗୁନ୍, କଲିକତା, ଆସାମରେ ମାଟିକାମ କରିବାକୁ

ବାଧ ହେଉଛନ୍ତି। ସେମାନେ ଏତକ ବିଶ୍ୱାସ କରିବେ ନାହିଁ ଯେ, ତାଙ୍କରି ପୂର୍ବପୁରୁଷ କାଞ୍ଚି, ବାରାଙ୍ଗଳ ପ୍ରଭୃତି ଦୂରଦେଶରେ ଯୁଦ୍ଧ କରି ଜୟମାଲ୍ୟ ନେଇ ଫେରଥିଲେ। ମହତ୍‌ର ପତନରେ ଯେଉଁ କରୁଣା ଉଦ୍ରେକ ହୁଏ, ନୀଚର ପତନରେ ତାହା ହୁଏନାହିଁ। ଓଡ଼ିଆ ଜାତିର ଆଧୁନିକ ଦୁଃଖ, ଦାରିଦ୍ର୍ୟ, ମୂର୍ଖତା ମତେ ଏ ଜାତିପ୍ରତି କରୁଣାମୟ କରି ରଖେ। ନରନାରାୟଣର ସେବା କରିବାରେ ଯଦି ମୋ ଜୀବନର ସାର୍ଥକତା, ତେବେ ମୁଁ ଆଉ କୁଆଡ଼େ ଯିବି? ଏହି ଓଡ଼ିଶା ଦେଶ ତ ତାର ପ୍ରକୃତ କ୍ଷେତ୍ର। ଏହି ଅଧଃପତିତ ଓଡ଼ିଆଜାତି ପ୍ରତି ଦୁଇଟୋପା ଲୁହ ଅନ୍ତତଃ ଢାଳିଥିଲେ ମୋର ମନୁଷ୍ୟତ୍ୱ ବ୍ୟର୍ଥ ହୋଇନାହିଁ ବୋଲି ମୁଁ ମନେକରିବି।

କିନ୍ତୁ ଏ ଦ୍ୱିତୀୟ କାରଣ ମଧ୍ୟ ଆକସ୍ମିକ। କାରଣ ଦୁଃଖଦୁର୍ଦ୍ଦଶା ସବୁ ଦେଶରେ ଅଛି। ସମୃଦ୍ଧ ଇଂଲଣ୍ଡରେ ମୁଁ ଦାରିଦ୍ର୍ୟର ଜଘନ୍ୟତମ ଚିତ୍ର ଦେଖିଆସିଛି; ସେଥିଲାଗି ଦରିଦ୍ର ଇଂରେଜ ପ୍ରତି ମଧ ମୋର କରୁଣା ଆସିଛି, ଯେପରି କରୁଣା ମୁଁ ଅନୁଭବ କରିଛି ମୁଁ ମୋର ଦରିଦ୍ର ଗ୍ରାମବାସୀ ପ୍ରତି।

ତେଣୁ ଓଡ଼ିଆ ଜାତିକି ମୁଁ ଭଲ ପାଇବାର ତୃତୀୟ ଓ ଶ୍ରେଷ୍ଠ କାରଣ ଏହି ଯେ, ଓଡ଼ିଆଜାତି ଏକ ସ୍ରଷ୍ଟାର ଜାତି। ଓଡ଼ିଆର ସ୍ୱପ୍ନ ଅଛି ଏବଂ ସେ ତା'ର ସ୍ୱପ୍ନକୁ ଏପରି ଭାବରେ ରୂପ ଦେଇପାରିଛି, ଯାହା କେବଳ ସଭ୍ୟତମ ମାନବହିଁ କରିପାରେ। ମୁଁ ବାଲ୍ୟକାଳରୁ ଓଡ଼ିଶାର ଗୌରବସୂଚକ କବିତା ଓ ଗୀତ ଶୁଣିଆସୁଛି। ଟିକିଏ ବଡ଼ ହେଲା ପରେ, ଓଡ଼ିଶାର ଇତିହାସ ବାରମ୍ବାର ପାଠକଲି; ଏବେ ବି ବେଳେବେଳେ ପଢ଼େ। ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମଙ୍କର ବିଜୟବାହିନୀ କିପରି ଉତ୍କଳର ସୀମା ଛାଡ଼ି ସହସ୍ର ସହସ୍ର କ୍ରୋଶ ଦୂର ପର୍ଯ୍ୟନ୍ତ ମାଡ଼ିଯାଇଥିଲା, ସେ କାହାଣୀସବୁ ମୁଁ ବାରମ୍ବାର ପଢ଼ିଛି। କିନ୍ତୁ ମୁଁ ସେଥିରେ ବିଶେଷ ମୁଗ୍ଧ ହୋଇପାରିଲିନାହିଁ; କାରଣ ଏସବୁ ବ୍ୟାପାର ପ୍ରତ୍ୟେକ ଦେଶର ଇତିହାସରେ କିଛି ନା କିଛି ଘଟିଛି। ତା' ପରେ, ଯେଉଁ ଗୌରବ ମନୁଷ୍ୟର ରକ୍ତରେ ଅଭିଷିକ୍ତ ଏବଂ ଯେଉଁ ଆନନ୍ଦ ଅନ୍ୟ ମନୁଷ୍ୟର ଦୁଃଖରୁ ଜାତ, ତାହା ଘୃଣ୍ୟ। ଯେ ଖୁବ୍ ହଣାହଣି କରିପାରେ, ସେ ଗୋଟିଏ ସିପାହି; ସେ ବୀର ନୁହେଁ। ବୀର ବୃଥା ନାଶ କରେନାହିଁ; ବରଂ ନିଜେ ନଷ୍ଟ ହୋଇଯାଏ, ମାନବର ମଙ୍ଗଳ ପାଇଁ। ରାବଣକୁ ମାରି ରାମଚନ୍ଦ୍ର ବୀର ହୋଇନାହାନ୍ତି। ସତ୍ୟ ଓ ଧର୍ମର ଜୟ ଓ ନାରୀର ସମ୍ମାନ ରକ୍ଷା ପାଇଁ ସେହି ରାଜକୁମାର ସାରା ଜୀବନ ଯେଉଁ ଦୁଃଖ କ୍ଳେଶ ଭୋଗ କଲେ ତାହାହିଁ ରାମାୟଣ; ସେହି ଆଦର୍ଶହିଁ ତାଙ୍କ ବୀରତ୍ୱର ଶ୍ରେଷ୍ଠ ଉପାଦାନ। ଦୁଃଖ କ୍ଳେଶ ସହି ରାମଚନ୍ଦ୍ର ଜଗତ୍‌କୁ ଏକ ମହାନ୍ ଆଦର୍ଶର ସ୍ମୃତି ଦେଇଯାଇଛନ୍ତି, ତେଣୁ ସେ ବୀର, ସେ ନରୋତ୍ତମ। ମନୁଷ୍ୟର ଶ୍ରେଷ୍ଠତ୍ୱ ଭାଙ୍ଗିବାରେ, ହାଣିବାରେ, କଷ୍ଟ ଦେବାରେ ନୁହେଁ– ତାର ଶ୍ରେଷ୍ଠତ୍ୱର ବିକାଶ ହୁଏ ଗଢ଼ିବାରେ, ଯେଉଁଠି କିଛି ନଥିଲା, ସେଠି କିଛି ଛାଡ଼ିଯିବାରେ, ଯାହା କ୍ଳେଶଦାୟକ ଥିଲା, ତାକୁ ସୁନ୍ଦର ଓ ସୁଖଦାୟକ କରିବାରେ। ଓଡ଼ିଶା ଇତିହାସର ବିଜୟ ଅଭିଯାନମାନଙ୍କର ଏ ମାନବିକ

ଦାନର ଚିହ୍ନ ମୁଁ ଦେଖିଲି ନାହିଁ। ତେଣୁ ଓଡ଼ିଆମାନେ ଅତୀତକୁ ନେଇ ଯେଉଁ ଗର୍ବ କରନ୍ତି, ସେ ଗର୍ବ ମୁଁ ଅନୁଭବ କରିପାରେନାହିଁ।

କିନ୍ତୁ ମୁଁ ପୁରୀ ଗଲି, ଭୁବନେଶ୍ୱର ଗଲି; ଗଲି ଶେଷରେ କୋଣାର୍କ। ସେଇଠି ଦେଖିଲି ଓଡ଼ିଆ ଜାତିର ଗର୍ବ ଓ ଗୌରବ। ଅନ୍ୟ ଜାତିର ଇତିହାସ ବହିରେ ଲେଖାଅଛି ସିନା, ଓଡ଼ିଆ ତାର ଇତିହାସ ଲେଖିଛି ପଥରରେ। ଏ ଇତିହାସରେ ସନ ନାହିଁ, ତାରିଖ ନାହିଁ, କେଉଁ ରାଜା କେବେ ସେସବୁ ଗଢ଼ିଥିଲେ, ସେ ସବୁର କିଂବଦନ୍ତୀମାତ୍ର ଦେଶରେ ଅଛି। ଯେଉଁ ଶିଳ୍ପୀ ଓ ମିସ୍ତ୍ରି ପ୍ରାଣର ସ୍ୱପ୍ନ ଓ ଦେହର ରକ୍ତ ଦେଇ ସେସବୁ ଯୁଗ-ଯୁଗଧରି ଗଢ଼ିଥିଲେ, ତାଙ୍କର ନାମଗନ୍ଧ ନାହିଁ। ବରଂ କିଂବଦନ୍ତୀ ଏହି ଯେ, ପୁରୀ ମନ୍ଦିର ସଂପୂର୍ଣ୍ଣ କରି ନିର୍ମାତା ଇନ୍ଦ୍ରଦ୍ୟୁମ୍ନ ଦେବତାଙ୍କୁ ଏହି ବର ମାଗିଲେ ଯେ, ଦେଉଳର ନିର୍ମାଣ ନେଇ ଅହଙ୍କାର କରିବାକୁ ତାଙ୍କ ବଂଶରେ ଯେପରି କେହି ନ ରହେ। ଉତ୍କଳର ଶିଳ୍ପ-ଇତିହାସରେ ଏହି ମହାନ୍ ଆଦର୍ଶ ଯେପରି ଅକ୍ଷରେ ଅକ୍ଷରେ ପାଳିତ ହୋଇଅଛି। ଯେଉଁ କୋଣାର୍କରେ ଗୋଟିଏ ଗୋଟିଏ ମୂର୍ତ୍ତିର ସ୍ରଷ୍ଟା ହେବାକୁ ବିଶ୍ୱର ଶ୍ରେଷ୍ଠ ଶିଳ୍ପିଗଣ ଜୀବନର ଶ୍ରେଷ୍ଠ ସିଦ୍ଧି ବୋଲି ମନେକରନ୍ତେ, ତାକୁ ଯେଉଁ ପ୍ରସ୍ତର-କବିଗଣ ଲେଖିଯାଇଛନ୍ତି, ତାଙ୍କର ନାମ ଧାମ କାଳଦେହରେ ଲୀନ। ତାଜମହଲ ଯେଉଁମାନେ ଗଢ଼ିଥିଲେ, ସେମାନଙ୍କର ନାମ, ଧାମ ଓ ଦରମାର ତାଲିକା ଆମେ ପାଉଛୁ। କିନ୍ତୁ ଓଡ଼ିଆ ଶିଳ୍ପୀ, ନିଜ ସୃଷ୍ଟିରେହିଁ ନିଜକୁ ମିଶେଇଦେଇଯାଇଛି। ବୀଜ ନିଜକୁ ନଷ୍ଟ କରି ବୃକ୍ଷରେ ପରିଣତ ହେଲାପରି, ଓଡ଼ିଆ ଶିଳ୍ପୀ କଳାରେ ନିଜର ସମଗ୍ର ଅସ୍ତିତ୍ୱକୁ ସମର୍ପଣ କରିଯାଇଛି। କଳାସୃଷ୍ଟିର ଇତିହାସରେ ଏ ଅବଦାନ ଅତୁଳନୀୟ। ମୁଁ ତେଣୁ ଓଡ଼ିଆ ଶିଳ୍ପୀକୁ ବାରମ୍ବାର ନମସ୍କାର କରେ ଏବଂ ସେହି ସୂତ୍ରରେ ଓଡ଼ିଆ ଜାତିକୁ ଭଲପାଏ। ପୁଣି କି ଶିଳ୍ପ! ଆପଣମାନେ କୋଣାର୍କ କେବେ ଯାଇଛନ୍ତି ତ? ପ୍ରତ୍ୟେକ ଓଡ଼ିଆର ଜୀବନରେ ଥରେ କୋଣାର୍କ ଦେଖି ଆସିବା ଉଚିତ। ହଣ୍ଟର୍ ସାହେବ ଓଡ଼ିଶାର ଇତିହାସ ଲେଖିବସି ପ୍ରଥମେ କହିଛନ୍ତି ଯେ, ଓଡ଼ିଆ ଜାତିର ବିଶ୍ୱସଭ୍ୟତାକୁ ଦାନ କରିବାର କିଛି ନାହିଁ। ହଣ୍ଟର୍‌ଙ୍କ ସମୟରେ କୋଣାର୍କ ଭଗ୍ନସ୍ତୂପ ହୋଇ ରହିଥିଲା; ନଚେତ୍ ସେ ଅନ୍ୟ କଥା ଲେଖିଥାନ୍ତେ। କେଉଁ ସାହେବ କ'ଣ କହିଲା ବା ନ କହିଲା, ସେଥିକି ଆମର ଖାତିର କରିବା ଦରକାର ମଧ୍ୟ ନାହିଁ। ଆପଣମାନେ ଥରେ ଯାଇ ଆଖିରେ ଦେଖିଆସନ୍ତୁ ଓ ବୁଝନ୍ତୁ, ଓଡ଼ିଆ ଜାତି କିପରି ବୀର ଥିଲା ଓ କିପରି ସ୍ରଷ୍ଟା ଥିଲା। ନଦୀଗଣ୍ଡକୁ ଓଡ଼ିଆ ପୋତିପକେଇଛି; ଶତ ଶତ ମାଇଲ ଦୂରରେ ଥିବା ପର୍ବତକୁ ଓଡ଼ିଆ ଚୂନା କରିପକେଇ, ସାରା ପାହାଡ଼କୁ ଶତ ଶତ ମାଇଲ ବାଟ ଘୋଷାରି ଆଣିଛି, ଆଉ ଯେଉଁଠି କିଛି ନଥିଲା, ସେଠି ଢିମାପଥର ଦେହରେ ଏକ ବିରାଟ ମନୋଜ୍ଞ ଚିତ୍ରଶାଳା ଠିଆକରିଛି– ତାହାର ବିପୁଳତା ଯେପରି ବିସ୍ମୟକର, କଳାର ସୂକ୍ଷ୍ମତା ଓ ଜୀବନ୍ତ ଭାବ ସେହିପରି ଅସାଧାରଣ। କୋଣାର୍କର ସୈକତ ପ୍ରାଙ୍ଗଣରେ ଠିଆହୋଇ ବିସ୍ମୟ ଓ ବିନୟରେ ମଥା ନତ କରି ମୁଁ ତେଣୁ

ଓଡ଼ିଆକୁ ବାରମ୍ବାର ନମସ୍କାର କରିଛି। କାରଣ ଓଡ଼ିଆ ସ୍ରଷ୍ଟା ଏବଂ ସେହି ସୂତ୍ରରେ ଓଡ଼ିଆ ଜାତିକୁ ମୁଁ ଭଲପାଇଛି।

କେବଳ ଓଡ଼ିଆ ଜାତି ନୁହେଁ, ସ୍ରଷ୍ଟା ଭାବରେ ମୁଁ ସବୁ ଦେଶକୁ ଓ ସବୁ ଦେଶର ଲୋକଙ୍କୁ ନମସ୍କାର କରେ। ସାଧୁ, – ସେ ଯେଉଁ ଜାତିର ହେଉନା କାହିଁକି – ମୋର ଶ୍ରଦ୍ଧାଭାଜନ; ସ୍ରଷ୍ଟା, – ସେ ଯେଉଁ ଜାତିର ହେଉନା କାହିଁକି, ମୋର ନମସ୍କରଣୀୟ। ମନୁଷ୍ୟର ଶ୍ରେଷ୍ଠତ୍ୱ କେବଳ ଯେ ସୃଷ୍ଟିରେ, ଏକଥା ଆମେ ବରାବର ଭୁଲିଯାଉ। ମନୁଷ୍ୟ ଓ ଇତର ପ୍ରାଣୀମାନଙ୍କ ମଧ୍ୟରେ ଏହିଠାରେହିଁ ପାର୍ଥକ୍ୟ। ଆମର ଯିମିତି ତଥାକଥିତ 'ଲିଡର୍' ଓ 'ପାର୍ଟି' ଦଳ ଓ ନେତା ଅଛନ୍ତି, ହାତୀ, ହରିଣ ପ୍ରଭୃତିଙ୍କର ମଧ୍ୟ ସେମିତି ଅଛନ୍ତି ଏବଂ ଆମ ଲିଡର୍ ଓ ପାର୍ଟିମାନଙ୍କର ସଂଘର୍ଷ ବନ୍ୟପଶୁମାନଙ୍କର ସଂଘର୍ଷଠାରୁ ବିଶେଷ କିଛି ପୃଥକ୍ ନୁହେଁ। କିନ୍ତୁ ହାତୀ ବା ହରିଣଙ୍କର ଶିଳ୍ପୀ, ବୈଜ୍ଞାନିକ, କବି, ଗାୟକ, ବାଦକ କାହାନ୍ତି? ବିଧାତା ନିଜର ସୃଜନଶକ୍ତିର କଣିକାଏ ମନୁଷ୍ୟ ଭିତରେ ପୂରେଇଦେଇଥିବାରୁ ତାହା ଏତେ ବିଚିତ୍ର ରୂପରେ ପ୍ରକାଶ ପାଇ ଆମର ଏହି ବିଚିତ୍ର ମାନବିକ ସଭ୍ୟତା ଗଢ଼ିପାରିଅଛି। ମାନବସଭ୍ୟତାର ମୂଳରେ ଏହି ସୃଜନ-ଶକ୍ତି। ଇତର ପ୍ରାଣୀମାନେ ପୁରୁଷରୁ ପୁରୁଷ ମରନ୍ତି, – ପଛରେ ତାଙ୍କର କିଛି ରହେନାହିଁ। କିନ୍ତୁ ଏହି ସୃଜନଶକ୍ତି ବଳରେ ମନୁଷ୍ୟ ଜୀବନର ଯାହା କ୍ଷଣିକ, ତାହା ଚିରନ୍ତନ ହୋଇପାରୁଛି। ପ୍ରତ୍ୟେକ ବ୍ୟକ୍ତି ଓ ଜାତିର ଏହାହିଁ ଶ୍ରେଷ୍ଠ ସମ୍ପଦ। ଯେଉଁ ଜାତି ଏତକ ହରାଏ ବା ଯାହାର ଏତକ ନାହିଁ, ସେ ପ୍ରାଣୀଗୋଷ୍ଠୀ ସଙ୍ଗେ ସମାନ। ଆମେ ଓଡ଼ିଆ; ଆମର ଇତିହାସର ଗର୍ବ କରୁ। କାହାନ୍ତି ସେ ବୀର ସମ୍ରାଟ୍‌ଗଣ? କାହିଁ ତାଙ୍କର ସାମ୍ରାଜ୍ୟ? କାହିଁ ତାଙ୍କର ଧନଧାନ୍ୟ, ଗର୍ବ ଅହଂକାର? ସେସବୁ କାଳର ଶ୍ମଶାନରେ ପାଉଁଶ ହୋଇ ଉଡ଼ିଯାଇଛି। କିନ୍ତୁ ଆମ ଜାତିର ଦରିଦ୍ର କବି ଓ ମହାରଣାମାନେ ଯାହା ଥୋଇଯାଇଛନ୍ତି, ସେହି ଆଜି ଆମକୁ ଜାତି ବୋଲି ଚିହ୍ନେଇଦେଉଛି – ତାଙ୍କ ଯୋଗୁଁ ଆମେ ମଣିଷରେ ଗଣାହେଉଛୁଁ।

× × × ×

ମୁଁ ତେଣୁ ପ୍ରସ୍ତାବ କରେ ଯେ, ଦେଶରେ ସାହିତ୍ୟ ଓ କଳାର ଅଭ୍ୟୁତ୍ଥାନ ଓ ପ୍ରଚାର ପାଇଁ ଏ ପ୍ରକାର ସାହିତ୍ୟ ସମ୍ମିଳନୀ ପ୍ରତିବର୍ଷ ସ୍ୱବାସ ଓ ପ୍ରବାସରେ ବସୁ; କିନ୍ତୁ ଅସମ୍ବନ୍ଧ ଭାବରେ ଏ ବର୍ଷ ସେ ବର୍ଷ ବା ଏଠି ସେଠି ନ କରି, ଗୋଟିଏ ମୂଳ ଅନୁଷ୍ଠାନର ଅଧୀନ ରହି ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଏସବୁ ହେଉ। ମୋ ମତରେ 'ନିଖିଳ ଉତ୍କଳ କୃଷ୍ଟିସଂଘ' ନାମରେ ଗୋଟିଏ ସଂଘ ଗଢ଼ି ତା'ରି ଅଧୀନରେ ଉତ୍କଳର ସାହିତ୍ୟ ଓ ସକଳ ପ୍ରକାର କଳାର ଉଦ୍ଧାର ଓ ପ୍ରଚାର କ୍ରିୟା ଅନୁଷ୍ଠିତ ହେଉ। * ଏ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ପ୍ରତିଦ୍ୱନ୍ଦ୍ୱୀ

* ଏହି ପ୍ରସ୍ତାବ ପ୍ରାୟ ଦଶବର୍ଷ ପରେ ଲେଖକ ସେବର ଉତ୍କଳ-ବିଶ୍ୱବିଦ୍ୟାଳୟ ଦେଇ, ଓଡ଼ିଶା ସରକାରଙ୍କୁ ଓଡ଼ିଆ-ଜ୍ଞାନ-କୋଷ ସହିତ ଓଡ଼ିଶା-ସାହିତ୍ୟ-ଏକାଡେମୀର ଚିଠା-ବ୍ୟବସ୍ଥା ଦେଇଥିଲା, ଯାହା ଫଳରେହିଁ ସେହି ସେହି ଅନୁଷ୍ଠାନସବୁ ଠିଆହେଲା।

ହେବା ଉଚିତ ନୁହେଁ, ଏହା ସମାଜର ପରିପୂରକ ହେବ; କିନ୍ତୁ ଏ ଦୁହେଁ ଆପଣା ଭିତରେ ଭିନ୍ନ ଭିନ୍ନ କାମ ବାଣ୍ଟିନେବା ଉଚିତ। ସାହିତ୍ୟ ସମାଜ ଆମ ଭାଷାର ବୈଜ୍ଞାନିକ ଓ ଗବେଷଣା ଭାଗ ନେଇ ବ୍ୟସ୍ତ ରହିବା ଉଚିତ। ସାହିତ୍ୟ ସମାଜର ବାର୍ଷିକୋତ୍ସବ ପ୍ରଭୃତି ଲୋକପ୍ରିୟ ଅନୁଷ୍ଠାନଗୁଡ଼ିକ ଉତ୍କଳ କୃଷ୍ଟିସଂଘ ଉପରେ ଛାଡ଼ିଦେବା ଉଚିତ। ଏହି ସଂଘ ପ୍ରତିବର୍ଷ ଦେଶର ସ୍ଥାନେ ସ୍ଥାନେ ଉତ୍ସବ କରି ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଏକସୂତ୍ରରେ ବାନ୍ଧିବା ସଙ୍ଗେ ସଙ୍ଗେ ଦେଶର କଳା, କୃଷ୍ଟି, ସାହିତ୍ୟର ବୃଦ୍ଧି ଓ ପ୍ରସାର ପାଇଁ ସରକାରଙ୍କୁ ବାଟ ଦେଖାଇବ ଏବଂ ଯେଉଁଠି ଯେତେବେଳେ ଯାହାଦ୍ୱାରା ବା ଯେଉଁ କର୍ମ ଯୋଗୁଁ ଦେଶର କଳା, କୃଷ୍ଟି, ସାହିତ୍ୟର କ୍ଷତି ହେବାର ଜଣାପଡ଼ିବ, ତାର ତୀବ୍ର ପ୍ରତିବାଦ ଓ ପ୍ରତିରୋଧ କରିବ।

କିନ୍ତୁ କେବଳ ଗୋଟିଏ ସଂଘ ବା ସମାଜ ଉପରେ ଭାର ଦେଇ ଆମେ ସମସ୍ତେ ନିଶ୍ଚେଷ୍ଟ ରହିଲେ ଚଳିବ ନାହିଁ। ସାହିତ୍ୟର ପରିପୁଷ୍ଟି ପାଇଁ ଆମ ସମସ୍ତଙ୍କୁ କିଛି ନା କିଛି ଚେଷ୍ଟା କରିବାକୁ ହେବ। ସାଧାରଣ ପାଠକସବୁ ଯାହା ଭଲ ବହି ବୋଲି ମନେକରନ୍ତି, ସେଥିପାଇଁ, ଅନ୍ୟ ଆନନ୍ଦୋତ୍ସବ ପାଇଁ ଯେପରି ଅକୁଣ୍ଠିତ ଭାବରେ ଅର୍ଥ ବ୍ୟୟ କରନ୍ତି, ସେଥିପାଇଁ ବି, ସେହିପରି ଅର୍ଥବ୍ୟୟ କରିବାର ଅଭ୍ୟାସ କରିବା ଉଚିତ। ଯେଉଁମାନେ ମାସରେ ୪-୬ ଥର ସିନେମା ଦେଖନ୍ତି, ଆପଣମାନଙ୍କ ମଧ୍ୟରୁ ଯେ ବା ପାନ, ସିଗାରେଟ୍ ପ୍ରଭୃତି ବ୍ୟସନରେ ଅକାତରରେ ଅର୍ଥ ନଷ୍ଟ କରନ୍ତି, ସେମାନେ ନିଜ ସାହିତ୍ୟର ଉନ୍ନତି ଅର୍ଥରେ ମାସିକ ଚାରିଅଣା, ଆଠଅଣା ଅନ୍ତତଃ ବ୍ୟୟକଲେ ଅନେକ କଥା ହୁଅନ୍ତା। ଆମେ ସମସ୍ତେ ଓ ପ୍ରତ୍ୟେକେ ଯଦି ଜାତି କଥା ନ ଭାବିବା, ତେବେ ତାହାପାଇଁ କିଏ ଭାବିବ? କାରଣ, ଆମ ସମସ୍ତଙ୍କୁ ନେଇ ତ ଜାତି !

ଆପଣମାନେ ଯେଉଁମାନେ ଭିନ୍ନ ଭିନ୍ନ ପ୍ରଦେଶରେ ଆସି ଅଛନ୍ତି, ଦେଶୀୟ ସାହିତ୍ୟର ବହି କିଣି ପଢ଼ିବା ଛଡ଼ା ଆପଣମାନଙ୍କର ଆହୁରି ଏକ ବଡ଼ କର୍ତ୍ତବ୍ୟ ଅଛି ବୋଲି ମୁଁ ମନେକରେ। ଆପଣମାନେ ଯେଉଁ ଯେଉଁ ଦେଶରେ ରହିଛନ୍ତି, ସେ ସ୍ଥାନର ଯାହାକିଛି ଶ୍ରେଷ୍ଠ ଓ ମହତ୍, ତାହା ଆମ କୃଷ୍ଟି ଓ ସାହିତ୍ୟରେ ପୂରେଇବାର ଚେଷ୍ଟା କରନ୍ତୁ। ଆମ ଅଧୋଗତିର ଗୋଟିଏ ବଡ଼ କାରଣ, ଆମର କୂପମଣ୍ଡୁକତା। ଆମର ଚିନ୍ତାନାୟକମାନେ ଆମର ଚାରିପଟେ ହୁଡ଼ା ଦେଇ ଆମ ଜାତିକି ଗୋଟିଏ ବନ୍ଧ ଜଳାଶୟରେ ପରିଣତ କରିବାକୁ ଚାହାନ୍ତି। ସେମାନେ ଭାବୁଛନ୍ତି, ହୁଡ଼ା ପକେଇ-ଦେଲେ ଆମର ନିଜତ୍ୱ ରକ୍ଷା ହେବ; କିନ୍ତୁ ମୁଁ କହେ ଚାରିଆଡୁ ସିଆର କାଟିପକାଅ, ଆମ ବିଲକୁ ଚାରିପଟର ପାଣି ଓ ପଟୁମାଟି ଆସି ତାକୁ ଉର୍ବରା କରିବ। ଆପଣମାନେ ଜାଣନ୍ତି, ଆମ ଗାଁମାନଙ୍କରେ ପଞ୍ଚାୟତ ପ୍ରଥା ଏକ ପ୍ରକାର ମୃତ; କିନ୍ତୁ ଭାରତବର୍ଷଠୁ ଧାର କରିନେଇ ଜାପାନ ତାର ସମାଜରେ ଏହି ପ୍ରଥାକୁ ରୋଇଦେଇଛି। ଜାପାନ ଏହିପରି ଜଗତ୍‌ରେ ଯେଉଁଠି ଯାହା ଉତ୍କୃଷ୍ଟ ଦେଖିଛି, ତାକୁ ନିଜ ସମାଜ ଓ ରାଷ୍ଟ୍ରର ଅଙ୍ଗୀଭୂତ କରିନେବାରୁ ତାର ଏପ୍ରକାର ଆଶ୍ଚର୍ଯ୍ୟଜନକ ଅଭ୍ୟୁଦୟ ଘଟିଲା; କିନ୍ତୁ

ଏତେ ଜାତିରୁ ଏତେ ଧାର କରି ମଧ୍ୟ ଜାପାନୀ ଜାପାନୀ ହୋଇ ରହିଛି। ତେଣୁ ତୁମେ ଓଡ଼ିଆ ତୁମର ନିଜତ୍ୱ କୃଷ୍ଟିକି ହରାଇବ ବୋଲି ଭୟ କରନାହିଁ। ତୁମେ ଅନ୍ୟର କୃଷ୍ଟିକୁ ଚିହ୍ନିଲେ, ନିଜ କୃଷ୍ଟିକୁ ଭଲଭାବରେ ଯାଚି ବିଚାର କରିବ। ତେଣୁ ବିଦେଶରେ ଯିଏ ଯେଉଁଠି ଅଛ, ସେ ଦେଶର ସାହିତ୍ୟ ଓ ସମାଜର ଯାହା ଉତ୍କୃଷ୍ଟ, ସେ ସବୁକୁ ତନ୍ନତନ୍ନ କରି ବିଶ୍ଳେଷଣ କର ଏବଂ ଦେଖ, କାହିଁକି ସେମାନଙ୍କର ଉନ୍ନତି ହୋଇଛି ଏବଂ ଆମ ଲୋକଙ୍କୁ କୁହ, ତାଙ୍କର କେଉଁ କେଉଁ ଗୁଣ ଅନୁସରଣ କଲେ ଆମର କଲ୍ୟାଣ ହେବ।

ଜର୍ମାନ ପର୍ଯ୍ୟଟକ ଆସି ଭୁବନେଶ୍ୱରର ତାଳପତ୍ର ପୋଥି କିଣିବାର ଆପଣମାନେ ଶୁଣିଛନ୍ତି ତ? ଉନ୍ନତ ଜର୍ମାନ୍ ଜାତି ଆମଠୁ ବି ଉପାଦାନ ସଂଗ୍ରହ କରିବାକୁ ଉତ୍ସୁକ ଥିଲାବେଳେ ପ୍ରତିବେଶୀ ଜାତିମାନଙ୍କଠାରୁ ଆମର ଗୁଣ ଗ୍ରହଣ ପାଇଁ ଅନିଚ୍ଛା ଓ ନିଶ୍ଚେଷ୍ଟତା ନୀଚତାର ପରିଚାୟକ ଓ ଲଜ୍ଜାର ବିଷୟ ନିଶ୍ଚୟ। ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ଏକପ୍ରକାର ଦ୍ୱି-ଭାଷୀ ପ୍ରଦେଶ; ଅର୍ଥାତ୍ ସେଠି ପ୍ରତ୍ୟେକ ଶିକ୍ଷିତ ଓଡ଼ିଆ ତେଲଗୁ ଜାଣନ୍ତି ଏବଂ ପ୍ରତ୍ୟେକ ତେଲଗୁ ଓଡ଼ିଆ ଜାଣନ୍ତି; କିନ୍ତୁ ତଥାପି ଆମେ ଓଡ଼ିଆଏ, ତେଲଗୁ ଭାଷା ଓ ସାହିତ୍ୟ ସମ୍ବନ୍ଧରେ କଅଣ ଜାଣୁ? ସହସ୍ର ସହସ୍ର ଓଡ଼ିଆ ଆସାମ ଓ ବର୍ମାରେ କାମ କରନ୍ତି; କିନ୍ତୁ ସେ ଦେଶର ରୀତିନୀତି ସମ୍ବନ୍ଧରେ ଆମର ଖଣ୍ଡିଏ ହେଲେ ବହି ଅଛି କି? ଚାରିଆଡ଼ୁ କବାଟ କିଳି ଆମେ ତ ଘରେ ବସିରହିଲୁଁ; ଆମେ ଯେ ଅନ୍ଧାରରେ ରହିଛୁଁ, ଦୋଷଟା ତେବେ କାହାର?

ଅନେକେ କହିବାର ଶୁଣାଯାଏ, "ବହି ଲେଖିଲେ, କିଣିବ କିଏ, ପଢ଼ିବ କିଏ?" ଅନେକଙ୍କର ଏହି ଧାରଣା ଯେ, ଓଡ଼ିଆମାନେ ବହି ପଢ଼ନ୍ତି ନାହିଁ। ସେ ଧାରଣା ଏକାବେଳକେ ଅମୂଳକ। ଆପଣମାନେ ଜାଣନ୍ତି ପୁରାଣ, ଯାତ୍ରା, ପ୍ରାଚୀନ କାବ୍ୟକବିତା ପ୍ରଭୃତିର କିମିତି କାଟତି ହୁଏ, ଓଡ଼ିଶାର ମଫସଲରେ। ଗୋଟିଏ ଗୋଟିଏ ପ୍ରକାଶକ ଏସବୁ ପୁସ୍ତକରୁ ସହସ୍ର ସହସ୍ର ଟଙ୍କା ଉପାର୍ଜନ କରି ବଡ଼ଲୋକ ହେଉଛନ୍ତି। ତେବେ, ନିରାଶା ଓ ଅଭିମାନ କରିବା କାହା ଉପରେ ଓ କାହା ପାଇଁ? ପଣ୍ଡିତ କୁଳମଣି ଦାସଙ୍କ ସମ୍ପାଦିତ କବିସୂର୍ଯ୍ୟ ଗ୍ରନ୍ଥାବଳୀ ଉଚ୍ଚ ଦାମ୍ ସତ୍ତ୍ୱେ ଅଳ୍ପକାଳ ମଧ୍ୟରେ ଏକାଧିକ ସଂସ୍କରଣ ଲାଭ କଲା; କିନ୍ତୁ ହୁଏତ ଚାରଣା ଦାମର ଖଣ୍ଡେ ଆଧୁନିକ କବିତା ବହି ଆଦୌ କଟିଲା ନାହିଁ। ଏହାର କାରଣ ଏହା ନୁହେଁ ଯେ, ଆମ ଲୋକେ ପଇସା ଦେଇ ବହି ପଢ଼ିବାକୁ ଅନିଚ୍ଛୁକ। ତାର ଅନେକ ଅନ୍ୟ କାରଣ ଥାଇପାରେ। ହୁଏତ ବହିଟିର ନିଜର ଗୁଣ ନାହିଁ, ହୁଏତ ବହିଟି ଭଲ ପ୍ରକାଶନ ବା ବିଜ୍ଞାପନ ପାଇଲା ନାହିଁ। ହୁଏତ ବହିଟି ଲୋକପ୍ରିୟ ଭାବରେ ଲେଖା ହୋଇନି ବା ହୁଏତ ବହିଟି ଆଧୁନିକ ଲୋକରୁଚିର ବହୁ ଉପରେ। ଏସବୁର ଅନୁସନ୍ଧାନ କରିବାକୁ ହେବ। ଭଲ ଭଲ ବହିର ବିକ୍ରି ଯେପରି ହେବ, ତାର ଭାର ମୋର ପ୍ରସ୍ତାବିତ କୃଷ୍ଟିସଂଘ ନିର୍ବିକାର ଭାବରେ ନିଜ କାନ୍ଧକୁ ନେଇପାରେ।

କିନ୍ତୁ ଏହା ଆମକୁ ସ୍ୱୀକାର କରିବାକୁ ହେବ ଯେ, ବର୍ତ୍ତମାନର ଓଡ଼ିଆ ସାହିତ୍ୟ, ଆମ ପ୍ରାଚୀନ ସାହିତ୍ୟ ଓ ଓଡ଼ିଆଭାଷାର ସ୍ୱତନ୍ତ୍ର ରୀତିଠାରୁ ଏତେ ଅଲଗା ଯେ, ଆମର 'ମାସ୍' ତାକୁ ନିର୍ବିକାର ଭାବରେ ଗଳାଧଃକରଣ କରିବାର ଆଶା କରିବା ଆମର ଉଚିତ ନୁହେଁ। ହୁଏତ ଆମର 'ମାସ୍' ସମଗ୍ର ଭାବରେ ନୂତନ ରୀତିରେ ଶିକ୍ଷାପ୍ରାପ୍ତ ହେଲା ପର୍ଯ୍ୟନ୍ତ ଆମକୁ ଅପେକ୍ଷା କରିବାକୁ ପଡ଼ିବ; ନଚେତ୍ ଆମରି କବି ଓ ଲେଖକମାନଙ୍କୁ ମାସ୍-ଗ୍ରହଣ-କଲାଭଳି ରୀତିରେ ନୂତନ ଭାବରାଜିକୁ ପରଷିବାକୁ ହେବ। ପ୍ରାଚୀନ ବଙ୍ଗଭାଷାର ମୌଳିକ ରୀତିସବୁକୁ ବାହନ କରି ରବୀନ୍ଦ୍ରନାଥ ଯେପରି ଭାବରେ ବଙ୍ଗଭାଷାକୁ ନୂତନ ସୌନ୍ଦର୍ଯ୍ୟରେ ବିଭୂଷିତ କରିଛନ୍ତି, ତାହା ଓଡ଼ିଆ ଲେଖକମାନଙ୍କର ଆଦର୍ଶ ହେବା ଉଚିତ। ଓଡ଼ିଆ ଲୋକମାନେ ନିଜର ପୁରୁଣା ମାଟି ଉପରେ ଠିଆହୋଇ ସୃଷ୍ଟି କଲେ ତାଙ୍କ ସୃଷ୍ଟି ଜାତିର ମାଟିରେ ଚେର ଧରିବାର ବେଶୀ ଆଶା। ଆମ ସମସ୍ତଙ୍କର ମନେରଖିବା ଉଚିତ ଯେ, ସାହିତ୍ୟ ଏକ ବିଳାସ ନୁହେଁ— ଏହା ଏକ ସାଧନା। ମାନବ ସମାଜର ସେବା ଲାଗି ବିଧାତା କବି ହସ୍ତରେ ଭାଷାର ଯେଉଁ ବ୍ୟାପକ ଅସ୍ତ୍ର ଦେଇଛି, କବି ତାର ସଦ୍‌ବ୍ୟବହାର କରିବା ଉଚିତ। ବାଲ୍ମୀକି, କାଳିଦାସ, ରବୀନ୍ଦ୍ରନାଥ, ତୁଳସୀଦାସ, କବୀର ପ୍ରଭୃତି ଭାରତର ଶ୍ରେଷ୍ଠ କବିଗଣେ ଆମ ଆଗରେ ଏଇ ମହାନ୍ ଆଦର୍ଶ ଥୋଇଯାଇଛନ୍ତି। ଆମ ଓଡ଼ିଆ ଭାଷାରେ ଜଗନ୍ନାଥ ଦାସ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଜାତିର କି କଲ୍ୟାଣସାଧନ କରିଛନ୍ତି, ତାହା ବୁଝେଇବାକୁ ହେବ ନାହିଁ। ବର୍ତ୍ତମାନର ଓଡ଼ିଆ ଲେଖକମାନଙ୍କୁ ମୋର ଅନୁରୋଧ, ସେମାନେ ସୁନ୍ଦରର ସୃଷ୍ଟି କଲାବେଳେ ସତ୍ୟ ଓ ଶିବକୁ ଯେପରି ନ ଭୁଲନ୍ତି ଏବଂ ସାହିତ୍ୟକୁ ଜାତିର କଲ୍ୟାଣ ପାଇଁ ଅସ୍ତ୍ରରୂପେ ଯେପରି ବ୍ୟବହାର କରନ୍ତି।

## ତୃତୀୟ ଅଧ୍ୟାୟ

## ପରଧର୍ମ *

[ ଓଡ଼ିଆ ସାହିତ୍ୟରେ ବଙ୍ଗଳା-ଉପାଦାନ ]

ପଞ୍ଚଭୂତଙ୍କର ସମାହାରରେ ଏହି ସୃଷ୍ଟି ଗଠିତ ହେଲେହେଁ ପ୍ରତ୍ୟେକ ଭୂତର ସ୍ୱତନ୍ତ୍ର ସତ୍ତା ଯୋଗୁଁ ଏହା ନିୟତ ସକ୍ରିୟ ହୋଇ ରହିଛି। କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ— ସମସ୍ତେ ସମସ୍ତଙ୍କର ସତ୍ତା ପରସ୍ପର ଦେହରେ ମିଶାଇଦେବାରୁ ଏହି ବସୁନ୍ଧରା ଓ ଏହି ସୌରମଣ୍ଡଳ ସମ୍ଭବ ହୋଇଅଛି। ଅପର ପକ୍ଷରେ ସୃଷ୍ଟିର ଜୀବନ-କ୍ରିୟା ସମ୍ଭବ ହେଉଛି, ଏହି ପଞ୍ଚ ଉପାଦାନର ସ୍ୱତନ୍ତ୍ର ସ୍ୱତନ୍ତ୍ର ଧର୍ମ ଯୋଗୁଁ।

* ସହକାର, ୧୩ଶ ଭାଗ, ୧୧ଶ ସଂଖ୍ୟା।

ମରୁତ୍‌ର ଧର୍ମ ଚଞ୍ଚଳ ଗତି। ସେ ଯଦି କହେ, ନା, ମୁଁ କ୍ଷିତି ପରି ସ୍ଥିର ହୋଇ ଠିଆ ହୋଇ ରହିବି, ତେବେ ଏ ଜୀବଗ୍ରାମ କ୍ଷଣକେ ବସୁନ୍ଧରାର ଲୀଳା ସାଙ୍ଗ-କରିବାକୁ ବାଧ୍ୟ ହେବ। ସେହିପରି ବ୍ୟୋମ ଯଦି କହେ, 'ମୁଁ ମରୁତ୍ ପରି ଚଞ୍ଚଳ-ଗତିରେ ବିଶ୍ୱଭ୍ରମଣ କରିବି', ତେବେ ଆକାଶର ଅଜଣା ଜ୍ୟୋତିଷମଣ୍ଡଳୀ ସହସା କକ୍ଷଚ୍ୟୁତ ହୋଇ ପରସ୍ପରକୁ ଆଘାତ କରି ଏହି ସୃଷ୍ଟିକୁ ଭସ୍ମୀଭୂତ କରିଦେବେ। କିନ୍ତୁ ଏହି ବ୍ୟତିକ୍ରମ ହୁଏ ନାହିଁ; ତେଣୁହିଁ ଏହି ସୃଷ୍ଟି କେବଳ ସମ୍ଭବ ହେଉନାହିଁ, ସୁନ୍ଦର ଓ ସୁଶୃଙ୍ଖଳ ଭାବରେ ଚାଲିଛି। ବିଧାତାଙ୍କ ସୃଷ୍ଟିର କୌଶଳ ଏହି ଯେ, ଏହା ଅଲଙ୍ଘ୍ୟ ନିୟମାବଳି ଉପରେ ପ୍ରତିଷ୍ଠିତ ଓ ଚାଳିତ। ବିରାଟ ଜ୍ୟୋତିଷମାନଙ୍କଠାରୁ ଆରମ୍ଭକରି ନଗଣ୍ୟତମ କୀଟ ପର୍ଯ୍ୟନ୍ତ ସମସ୍ତଙ୍କୁ ଏହି ନିୟମର ଶାସନ ମାନିବାକୁ ହୁଏ। ସୃଷ୍ଟିର ପ୍ରତ୍ୟେକ ଉପାଦାନ ପାଇଁ ତାର ନିଜର ଗୋଟିଏ ସ୍ୱତନ୍ତ୍ର ପରିଧି ଅଛି। ଏହି ପରିଧି ଏହାର ବିକାଶ ପାଇଁ ଯଥେଷ୍ଟ। ଏହି ସୀମା ଲଂଘନ କଲେ ଏହାର ବିକାଶ ତ ସମ୍ଭବ ନୁହେଁ; ବିନାଶ ନିଶ୍ଚିତ। ନିଜର ସୀମା ମଧ୍ୟରେ ରହି ନିଜକୁ ବିକଶିତ କରିବାର ନାମ ଧର୍ମ। ଜୀବର ବିକାଶ, ଉଦ୍ଭିଦର ବିକାଶ ଏକ ନୁହେଁ; ଯଦିବା ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ପ୍ରମାଣ କରିଅଛନ୍ତି ଯେ, ଜୀବ ଓ ଉଦ୍ଭିଦ ଏକ ଜୀବନ-ନିୟମରେ ଜୀବନ୍ତ। ଏହି ସ୍ୱାତନ୍ତ୍ର୍ୟ ଏମାନଙ୍କର ପ୍ରତ୍ୟେକର ସ୍ୱତନ୍ତ୍ର ଧର୍ମ। ଧର୍ମ ମଧ୍ୟଦେଇ ବିକଶିତ ହେବା ସୃଷ୍ଟିର ଶ୍ରେଷ୍ଠ ପନ୍ଥା। ଏହାର ବ୍ୟତିକ୍ରମ ଆଦୌ ଶୁଭଙ୍କର ନୁହେଁ। ସେଥିପାଇଁ 'ପରଧର୍ମୋ ଭୟାବହଃ' ବୋଲି ଗୀତା କହେ।

ଏହି ଧର୍ମ ଓ ଏହି ସ୍ୱାତନ୍ତ୍ର୍ୟ ସୃଷ୍ଟିର ସବୁଠାରେ ଲକ୍ଷିତ ହୁଏ। ପୃଥିବୀରେ ସବୁ ସ୍ଥାନରେ ମାନବ ନାମକ ପ୍ରାଣୀର ଆକୃତି ଓ ଅବୟବ ସମାନ। ସେହି ମୁଖ, ନାସିକା, ଚକ୍ଷୁ, ହସ୍ତ, ପଦ, ଜାପାନୀର ଯେପରି, ଜର୍ମାନ୍‌ର ମଧ୍ୟ ସେହିପରି; କିନ୍ତୁ ଆକୃତି ଓ ଅବୟବର କାର୍ଯ୍ୟ ଓ ଅନୁଭୂତିର ଯଥେଷ୍ଟ ସାମ୍ୟ ସତ୍ତ୍ୱେ ଜାପାନୀର ସଭ୍ୟତା, ଭାଷା ଓ ସାହିତ୍ୟ ଜର୍ମାନ୍‌ର ଭାଷା, ସାହିତ୍ୟ, ସଭ୍ୟତାଠାରୁ ଭିନ୍ନ କିପରି ? ଚୀନ ଓ ଜାପାନ ଏକ ମଙ୍ଗୋଲୀୟ ପରିବାରର ଅନ୍ତର୍ଭୁକ୍ତ; କିନ୍ତୁ ତାହା ସତ୍ତ୍ୱେ ଏମାନଙ୍କର ସଭ୍ୟତା ସ୍ୱତନ୍ତ୍ର। ଗ୍ରୀକ୍ ଓ ହିନ୍ଦୁ ଏକ ଆର୍ଯ୍ୟ-ଜାତିର ଲୋକ; କିନ୍ତୁ ସେମାନଙ୍କର ସଭ୍ୟତା ପରସ୍ପରଠାରୁ ଭିନ୍ନ। ଏହିପରି ଦେଖିଆସିଲେ, ଆମ୍ଭେମାନେ ଦେଖିପାରିବା ଯେ ଜାତିଜାତି କଥା ଛାଡ଼ିଦିଅ, ଏକ ପରିବାର ମଧ୍ୟରେ ଏକ ପିତା-ମାତାଠାରୁ ସଂଭୂତ ସନ୍ତାନ-ସନ୍ତତି ମଧ୍ୟ ପ୍ରତ୍ୟେକେ ପ୍ରତ୍ୟେକଠାରୁ ଭିନ୍ନ। ବିଧାତାଙ୍କର ଏ ଏକ ବିଚିତ୍ର ବିଧାନ। ଏହି ବୈଚିତ୍ର୍ୟହିଁ ସୃଷ୍ଟିକୁ ଉପଭୋଗ୍ୟ ରଖିବାର ଏକ ପ୍ରଧାନ କାରଣ। ମୁଁ ଯଦି ଠିକ୍ ମୋ ପିତାଙ୍କ ପରି ହୁଅନ୍ତି ଓ ଏହି କ୍ରମରେ ବଂଶପରମ୍ପରା ଚାଲିତ ହୁଅନ୍ତା, ତେବେ ପୃଥିବୀରେ ନୂତନ ଜୀବନର ଉଦ୍‌ଭବ ଅନା-ବଶ୍ୟକ ହୋଇଉଠନ୍ତା। ଧରନ୍ତୁ, ଯଦି ପୃଥିବୀରେ ସକଳ ତରୁଣୀ କଳଗଢ଼ା ପିତୁଳା ପରି ଏକ ଆକୃତିବିଶିଷ୍ଟ ହୋଇଯାନ୍ତେ, ତେବେ ଏ ପୃଥିବୀପୃଷ୍ଠ ତ କ୍ଷଣକେ ରକ୍ତାକ୍ତ ହୁଅନ୍ତା। ଅପରପକ୍ଷରେ, ତ୍ରିଚତୁର୍ଥାଂଶ ତରୁଣୀ ଅବିବାହିତ ରହନ୍ତେ ଏବଂ ଜଗତ୍‌ର

କବି ଓ ଚିତ୍ରକରବର୍ଗ ଏଯାବତ୍ ଯେପରି ତରୁଣୀପାଗଳ ହୋଇ ଆସିଅଛନ୍ତି, ଆଉ ସେପରି ହୁଅନ୍ତେ ନାହିଁ। ମନୁଷ୍ୟ ଚକ୍ଷୁରେ ନାରୀର ମାଧୁରୀହିଁ ନଷ୍ଟ ହୁଅନ୍ତା; କିନ୍ତୁ ବିଧାତା ସୃଷ୍ଟିକୁ ତ ଏପରି ନୀରସ କରିବାକୁ ଦେଇନାହାନ୍ତି। ତାଙ୍କର ସୃଷ୍ଟି ରସହୀନ ସାମ୍ୟ ମଧ୍ୟଦେଇ ଚାଳିତ ନହୋଇ, ସରସ ସ୍ୱତନ୍ତ୍ରତା ଓ ବୈଚିତ୍ର୍ୟ ମଧଦେଇ ଗତି କରୁଅଛି। ସ୍ୱାତନ୍ତ୍ର୍ୟ ସୃଷ୍ଟିର ଧର୍ମ ଏବଂ ଏହି ଧର୍ମହିଁ ଏ ଧରଣୀକୁ ଧରିରଖିଛି।

ବଙ୍ଗ ଓ କଳିଙ୍ଗ ବୋଲି ଦୁଇଟି ପୌରାଣିକ ଦେଶ ଭାରତର ପୂର୍ବ ଦିଗରେ ଲଗାଲଗି ହୋଇ ରହିଛି। ଏହି ଦୁଇ ଦେଶର ଅଧିବାସୀମାନଙ୍କର ଆକୃତି, ସଭ୍ୟତା ଓ ମୁଖ ଦେଖିଲେ ଏମାନେ ଯେ ଏକ ପରିବାରର ଲୋକ, ତାହା ସହଜରେ କହିହେବ। ଏମାନେ ଯେ ଏକ ଭୂମିରୁ, କାଳକ୍ରମେ ଦୁଇ ଦେଶରେ ବ୍ୟାପ୍ତ ହୋଇଅଛନ୍ତି, ଏହା ନିତାନ୍ତ ସମ୍ଭବ କଥା। କିନ୍ତୁ ଶତ ଶତ ବର୍ଷ ହେଲା ଏମାନେ ପରସ୍ପରଠାରୁ ଛିନ୍ନ ହୋଇ, ନିଜନିଜର ସ୍ୱାତନ୍ତ୍ର୍ୟ, ସଭ୍ୟତା ଗଢ଼ିଯାଇଅଛନ୍ତି। ଏହା ସମ୍ଭବ ହୋଇଥାଇପାରେ ଯେ, ଚଣ୍ଡୀ ଦାସ ଓ ଜଗନ୍ନାଥ ଦାସଙ୍କର ଅତିବୃଦ୍ଧ ପିତାମହ ପିତାମହୀ ଏକ ହୋଇଥାଇପାରନ୍ତି; କିନ୍ତୁ ଏମାନଙ୍କର କୁଳଭୂଷଣ ଚଣ୍ଡୀ ଓ ଜଗନ୍ନାଥ ଦୁଇଟି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାଷାକୁ ସ୍ୱ-ସ୍ୱ ଦାନରେ ଗରିଷ୍ଠ କରିଯାଇଅଛନ୍ତି। ଏହି ଦୁଇଟି ଭାଷା ଓ ଜାତିର ସ୍ୱତନ୍ତ୍ର ବିକାଶ ବହୁ ଶତାବ୍ଦୀ ହେଲା ଚାଲିଆସିଲାଣି। ଆଜି ଉତ୍କଳ ଦେଶ, ବଙ୍ଗ ଦେଶର ସାହିତ୍ୟ ଓ ସଭ୍ୟତା ଆଗରେ ମସ୍ତକ ଅବନତ କଲେହେଁ, ଏ ଦେଶର ଅତୀତ ଭିନ୍ନ ଦୃଶ୍ୟ ଦେଖାଏ। ଏ ଦେଶର ଗରିମାମୟ ଅତୀତ ବଙ୍ଗ ଦେଶର ନାହିଁ। ଏ ଦେଶର ଖାରବେଳର ସମକକ୍ଷ ଚକ୍ରବର୍ତ୍ତୀ ବଙ୍ଗ ଦେଶର ନାହିଁ; ଏ ଦେଶର ସମ୍ରାଟ୍ ସଙ୍ଗେ ଚୀନ ସମ୍ରାଟ୍ ବନ୍ଧୁତା କରିଥିଲେ, ସେ ଗୌରବ କୌଣସି ବଙ୍ଗଳା-ରାଜା ପାଇନାହାନ୍ତି। ବଙ୍ଗଳା ମୁସଲମାନ-ପଦରେ ତିନିଶତ ବର୍ଷଧରି ଦଳିତ ହେଉଥିଲାବେଳେ ଏ ଦେଶର ପ୍ରତାପଶାଳୀ ରାଜାମାନେ କେବଳ ଯେ ସ୍ୱାଧୀନ-ପତାକା ଉଡ଼ାଇରଖିଥିଲେ, ତାହା ନୁହେଁ, ଗଙ୍ଗାଠାରୁ ଗୋଦାବରୀଯାଏଁ ସମସ୍ତ ଭୂ-ଖଣ୍ଡର ନିରଙ୍କୁଶ ଶାସକ ହୋଇଥିଲେ। ସେତେବେଳେ ଉତ୍କଳ ସମ୍ରାଟଙ୍କର ସାହଚର୍ଯ୍ୟ ପାଇଁ ବିଜୟନଗର ଓ ବାହମନୀ ବ୍ୟାକୁଳ ହୋଇ ରହିଥିଲେ ଏବଂ ବଙ୍ଗର ସୁଲତାନ ଭୟରେ ସୁବର୍ଣ୍ଣରେଖା ପାର ହେଉନଥିଲେ। ଏ ଗୌରବ ବଙ୍ଗଳାର ନାହିଁ। ସେହି ବିରାଟ ଗୌରବର ମୂକ ସାକ୍ଷୀରୂପେ ଆଜି ଉତ୍କଳର ଉତ୍ତୁଙ୍ଗ ଦେବାଳୟରାଜି ଦଣ୍ଡାୟମାନ। ଏହି ଦେଉଳମାନଙ୍କର ଚରଣ ସ୍ପର୍ଶ କରିବାକୁ ମଧ ବଙ୍ଗଳାର ପ୍ରସ୍ତର-ଶିଳ୍ପ ନାହିଁ। ଉତ୍କଳର ଶିଳ୍ପ ପରି ଉତ୍କଳର ସାହିତ୍ୟ ମଧ ସ୍ୱତନ୍ତ୍ର ଓ ଗୌରବମୟ ବିକାଶ ଲାଭ କରିଅଛି। ସାରଳା, ଜଗନ୍ନାଥ, ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, ବଳଦେବ, ଗୋପାଳକୃଷ୍ଣଙ୍କର ସମକକ୍ଷ ଲେଖକ ପ୍ରାଚୀନ ବଙ୍ଗଳାସାହିତ୍ୟରେ ନାହାନ୍ତି। ଓଡ଼ିଆ ଭାଷାର ପୁସ୍ତକ ଅନୂଦିତ ହୋଇ ଦିନେ ବଙ୍ଗଦେଶରେ ପଠିତ ହେଉଥିଲା। ସାରଳା ଦାସଙ୍କ ମହାଭାରତ ବଙ୍ଗଳାରେ ଅନୁବାଦ ହୋଇ ବିସ୍ତୃତ-ପ୍ରଚାର ଲାଭ କରିଥିଲା। ଏବେ ମଧ ଜଗନ୍ନାଥଙ୍କ ଭାଗବତ ମେଦିନୀପୁର, ମାନଭୂମ ଓ ବାଙ୍କୁଡ଼ାରେ ବିସ୍ତୃତ ଭାବରେ ପଠିତ। ନେପାଳର ନବା-

ବିଷ୍ଣୁତ ବୌଦ୍ଧ ଦୋହାଁ ଓ ଗାନରେ କୃଷ୍ଣାଚାର୍ଯ୍ୟ ନାମକ ଜଣେ କବିଙ୍କର ବହୁତ ଗାନ ଦେଖିବାକୁ ମିଳେ। ଶ୍ରୀଯୁକ୍ତ ହରପ୍ରସାଦ ଶାସ୍ତ୍ରୀ ତାଙ୍କୁ ବଙ୍ଗାଳୀ ବୋଲି ପ୍ରମାଣ କରିଅଛନ୍ତି; କିନ୍ତୁ ଦୋହାଁର ଭାଷା ଦେଖିଲେ ଜଣାପଡୁଛି ଯେ, କେବଳ କୃଷ୍ଣାଚାର୍ଯ୍ୟ ନୁହେଁ, ଅନେକ ଦୋହାଁ ଓ ଗାନ ଓଡ଼ିଶାର ସମ୍ପଦ।

ଓଡ଼ିଶାର ସେଦିନର ଏ ଗୌରବ, ଏ ଉନ୍ନତି, ଏ ସଭ୍ୟତାରେ ଅନ୍ୟ କାହାର ଅଂଶ ନ ଥିଲା। ଏହି 'ଉଡ଼େ ଭେଡ଼ା'ମାନଙ୍କର ମସ୍ତିଷ୍କହିଁ ଏହି ବିରାଟ ଦେବାଳୟରାଜି, ଏହି ସାହିତ୍ୟ ଓ ସେହି ବିସ୍ତୀର୍ଣ୍ଣ ସାମ୍ରାଜ୍ୟ ଗଢ଼ିପାରିଥିଲା। ସେଦିନ ଓଡ଼ିଆକୁ ଶିକ୍ଷା ଦେବାକୁ ବଙ୍ଗାଳୀର କିଛି ନ ଥିଲା।

ମୁଁ ଶୁଣୁଛି, କୌଣସି ଓଡ଼ିଆ ଯୁବକ ଗୁଜରାଟ ବିଦ୍ୟାପୀଠରେ ଅଧ୍ୟୟନ କରୁଥିଲାବେଳେ କୌଣସି ଗୁଜରାଟୀ ଅଧ୍ୟାପକ ଓଡ଼ିଆ ଶିଖିବା ଲାଗି ମନ ବଳାଇଲେ। ସେ ମହାଶୟ ବଙ୍ଗଳା ଜାଣିଥିଲେ। ଆମର ଓଡ଼ିଆ ଯୁବକ ତାଙ୍କର ଅଧ୍ୟାପକଙ୍କୁ କେତେକ ଆଧୁନିକ ଓଡ଼ିଆ ପୁସ୍ତକ ଦେବାରୁ, ସେ ତାହା ପଢ଼ି ଦିନେ ତାଙ୍କୁ କହିଲେ– ଓଡ଼ିଆ କ'ଣ ବଙ୍ଗଳାର ଉପଭାଷା ? ଓଡ଼ିଆ ଯୁବକ ତାଙ୍କର ଭୁଲ ବୁଝିପାରି ତାଙ୍କୁ ସମାଜ ଖବରକାଗଜ ଓ ପ୍ରାଚୀନ ଓଡ଼ିଆ ପୁସ୍ତକ ପଢ଼ିବାକୁ ଦେଇଥିଲେ। ଏ ସବୁ ପଢ଼ିଲାପରେ ଗୁଜରାଟୀ ଅଧ୍ୟାପକ ଜାଣିଲେ ଯେ, ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା। ଆଧୁନିକ ଓଡ଼ିଆ ଗଦ୍ୟ ବା ପଦ୍ୟ ପଢ଼ି ଗୁଜରାଟୀ ଅଧ୍ୟାପକଙ୍କର ମତ ଯାହା ହୋଇଥିଲା, ଅନ୍ୟ ସମସ୍ତଙ୍କର ମତ ମଧ୍ୟ ଯେ ସେଇଆ ହେବ, ଏଥିରେ ବୋଧହୁଏ ସନ୍ଦେହ ନାହିଁ।

ଅନେକେ ଭାଷାର ସଂପ୍ରସାରଣ ଇଚ୍ଛା କରି କହିବେ ଯେ, ବାହାର ପ୍ରଭାବ ପାଇଁ ଆମ ସାହିତ୍ୟକୁ ଉନ୍ମୁକ୍ତ ରଖ। ଏ ଉତ୍ତମ ପ୍ରସ୍ତାବ। ଏଥିରେ ଆପତ୍ତି ନାହିଁ; କିନ୍ତୁ ବାହାର ପ୍ରଭାବରେ ନିଜର ସ୍ୱାତନ୍ତ୍ର୍ୟ ହରାଇବାଟା ମଧ୍ୟ କି ଏହି ବିଶ୍ୱଜନୀନ ନୀତିରେ ସହ୍ୟ କରିବାକୁ ହେବ ? ଇଂରେଜ ସାହିତ୍ୟ ଉପରେ ବାରମ୍ବାର ବାହ୍ୟ-ପ୍ରଭାବ ପଡ଼ିଆସିଛି। ଷୋଡ଼ଶ ଶତାବ୍ଦୀରେ ଇଟାଲୀର, ସପ୍ତଦଶ ଓ ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀରେ ଫ୍ରାନ୍ସର ଓ ଉନବିଂଶ ଶେଷପାଦରେ ଜର୍ମାନୀର ପ୍ରଚୁର ପ୍ରଭାବ ଇଂରେଜ ସାହିତ୍ୟ ଉପରେ ପଡ଼ିଛି। କିନ୍ତୁ ଏ କେବଳ ଭାବ-ସ୍ରୋତର ପ୍ରଭାବ। ଜର୍ମାନ୍ ବା ଫରାସୀ ମନୀଷୀଙ୍କର ନୂତନ ଭାବସମୂହ, ଇଂରାଜୀ କବି ଓ ଲେଖକମାନେ ଗ୍ରହଣକରି ନିଜ ଭାଷାରେ ସ୍ୱତନ୍ତ୍ର ସାହିତ୍ୟ ଗଠନ କରିଅଛନ୍ତି। ଏଥିରେ ସେମାନଙ୍କ ସ୍ୱାତନ୍ତ୍ର୍ୟ ନଷ୍ଟ ହୋଇନାହିଁ। ଫରାସୀ ରାଷ୍ଟ୍ର-ବିପ୍ଳବର ଭାବବିକାଶ ଫରାସୀ ସାହିତ୍ୟରେ ଆରମ୍ଭ ହେଲେହେଁ, ତାର ପରିପୂର୍ଣ୍ଣ ପରିଣତି ଇଂରାଜୀ ସାହିତ୍ୟରେ ଘଟିଅଛି। ମାନବୀୟ ସ୍ୱାଧୀନତାର ବଜ୍ର-ବାଣୀ ଶେଲି-ବାଇରନ୍‌ଙ୍କ କାବ୍ୟ-କବିତାରେ ଯେପରି ଶୁଣାଯାଏ, କୌଣସି ଫରାସୀ କବିର ଲେଖାରେ ସେପରି ହୋଇନାହିଁ, ଯଦିବା ସ୍ୱାଧୀନତାର ଦୁନ୍ଦୁଭି ପ୍ରଥମେ ଫରାସୀ ରାଜଧାନୀରେ ବାଜିଉଠିଥିଲା। ବିଦେଶୀ ଭାବ, ଲୋକକୁ ବିଦେଶୀ କରାଏ ନାହିଁ; ବିଦେଶୀ ବେଶହିଁ ଲୋକକୁ ଇତର

କରିପକାଏ। ମୁଁ ଯଦି ମୁସଲମାନର ଏକେଶ୍ୱରବାଦ ଗ୍ରହଣ କରେ, ତେବେ ମୋର ବନ୍ଧୁମାନେ ମତେ ଘୃଣା କରିବେ ନାହିଁ; କିନ୍ତୁ କୋରାନ୍‌ର କିଛି ନ ଜାଣି, ମୁସଲମାନ ହେବା ଲାଗି ମୁଁ ଯଦି ଛାଗଳ ଶ୍ମଶ୍ରୁ ରଖି, ଫେଜ୍‌ଟୋପି ଓ ଲୁଙ୍ଗି ପିନ୍ଧି ବଜାରରେ ବୁଲେ, ତେବେ ମୋ ବନ୍ଧୁମାନେ ମତେ କିପରି ଇତର ଭାବିବେ, ମୁଁ ଜାଣେ। କୌଣସି ନିର୍ବୋଧ ରବୀନ୍ଦ୍ରନାଥଙ୍କର ବିଶ୍ୱଜନୀନ ଭାବସମୂହକୁ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିବାରେ ବାଧା ଦେବନାହିଁ; କିନ୍ତୁ ଓଡ଼ିଆ ଭାଷାକୁ ବଙ୍ଗାଳୀ ବେଶ ଦେଇ ସୁନ୍ଦର କରିବାର ଇତରତା ସହ୍ୟ କରାଯିବ କାହିଁକି ?

ବଙ୍ଗଳାରେ କାଜି ନଜରୁଲ୍ ଇସଲାମ୍, ବଙ୍ଗ ଓ ପାରସିକ ଶବ୍ଦ ମିଶାଇ କବିତା ରଚନା କରିଅଛନ୍ତି। ଏଇ ପ୍ରୟାସରେ ସେ ବହୁତ ପାରସିକ ଶବ୍ଦ ବଙ୍ଗ ଭାଷାରେ ନୂତନ ପ୍ରବେଶ କରାଇଅଛନ୍ତି। ଏଥିଯୋଗୁଁ ଅନେକ ସ୍ଥଳରେ ତାଙ୍କ କବିତା ଦୁର୍ବୋଧ ହୋଇଉଠିଛି। ରବୀନ୍ଦ୍ରନାଥ ଏହି ଅବାଧ ଖେଚଡ଼ି କ୍ରିୟାର ପ୍ରତିବାଦ କରିଥିଲେ। ନଜରୁଲ୍ ପାରସିକ 'ଖୁନ' ଶବ୍ଦକୁ ବଙ୍ଗଳାରେ 'ରକ୍ତ' ଅର୍ଥରେ ବ୍ୟବହାର କରୁଥିବାରୁ, ମହାକବି ବଙ୍ଗଳା ଭାଷାର ସ୍ୱତନ୍ତ୍ର ମର୍ଯ୍ୟାଦା ନଷ୍ଟ ହେଉଛି ବୋଲି କହୁଥିଲେ। ରବୀନ୍ଦ୍ରନାଥ ବିଶ୍ୱକବି। ଜଗତ୍‌ର ସମସ୍ତ ଜାତିକୁ ସେ ଏକ କରିବା ଲାଗି ପ୍ରୟାସ କରିଆସୁଅଛନ୍ତି। ଏପରି ଲୋକ ଏ ସଂକୀର୍ଣ୍ଣତା ଦେଖାଇଲେ କାହିଁକି? ବଙ୍ଗଳା ଭାଷା ପାରସ୍ୟ ଭାଷା ହେବାରେ ତାଙ୍କର ଆପତ୍ତି କାହିଁକି? ବଙ୍ଗଳା ଯଦି ପାରସ୍ୟ ଆକ୍ରମଣରୁ ନିଜକୁ ରକ୍ଷା କରିବା ଲାଗି ତତ୍ପର, ତେବେ ଓଡ଼ିଆ ଲେଖକମାନେ ବଙ୍ଗଳା ଭାଷାର ଆକ୍ରମଣକୁ ନିମନ୍ତ୍ରଣ କରି ଆଣୁଛନ୍ତି କେଉଁ ନିର୍ଲଜ୍ଜତାରେ ?

ଏହି ବଙ୍ଗ-ପ୍ରଭାବ ଓଡ଼ିଆ ଭାଷାରେ ଏପରି ପରିବ୍ୟାପ୍ତ ହୋଇ ରହିଛି ଯେ, ଆଜିକାଲି ବିଶୁଦ୍ଧ ଓଡ଼ିଆ ଲେଖା ଆଖିରେ ଦେଖିବାକୁ ବିରଳ ହୋଇଉଠୁଛି। ଗଦ୍ୟ, ପଦ୍ୟ, ଗଳ୍ପ, କବିତା, ଉପନ୍ୟାସ, ଚିଠି-ପତ୍ର, ନାୟକ-ନାୟିକା, ସମାଜଚିତ୍ର— ସର୍ବତ୍ର କେବଳ ବଙ୍ଗ-ସାହିତ୍ୟର ପ୍ରତିବିମ୍ବହିଁ ଆମ୍ଭେମାନେ ଦେଖିବାକୁ ପାଉଁ। ଓଡ଼ିଆ ଭାଷା, ଓଡ଼ିଆ ନାଆଁ, ଓଡ଼ିଆ ସମାଜ, ଓଡ଼ିଆ ଚରିତ୍ର ଲେଖକମାନଙ୍କ ଆଖି ଆଗରେ ପଡୁନାହିଁ; ପଡୁଛି ବଙ୍ଗାଳୀ ସମାଜ, ବଙ୍ଗଳା କବିତା, ବଙ୍ଗାଳୀ ଚରିତ୍ର। ସରସ୍ୱତୀ ଫକୀରମୋହନଙ୍କ ସେହି ନିଖୁଣ ଓଡ଼ିଆ ଭାଷାରେ ନିଖୁଣ ଓଡ଼ିଆ ଚରିତ୍ର ଆଉ ସମ୍ଭବ ହେଉନାହିଁ। ଫକୀରମୋହନ ତାଙ୍କ ଉପନ୍ୟାସମାନଙ୍କର ନାମ ରଖିଲେ 'ମାମୁ', 'ଛ'ମାଣ ଆଠଗୁଣ୍ଠ', 'ରାଣ୍ଡୀପୁଅ ଅନନ୍ତା'। ତାଙ୍କ ଚରିତ୍ରମାନଙ୍କର ନାମ ହେଲା ଭଗିଆ, ସାରିଆ, ରାମଚନ୍ଦ୍ର ମଙ୍ଗରାଜ, ରାଜୀବଲୋଚନ, ନାକଫୋଡ଼ିଆମା, ଚିନ୍ତ୍ରା, ଗୋପୀ ସାହୁ ଇତ୍ୟାଦି। ଏଗୁଡ଼ିକ ଖାଣ୍ଟି ଓଡ଼ିଆ ଜିନିଷ; କିନ୍ତୁ ଅଧୁନାଲିଖିତ ଓଡ଼ିଆ ଗଳ୍ପ କବିତାମାନଙ୍କର ନାମ ହେଲା— 'ସବୁଜ-କବିତା', 'ଦେଶର ଡାକ', 'ପାଷାଣୀର-ପ୍ରତୀକ୍ଷା', 'ମୁକ୍ତାଗଡ଼ର କ୍ଷୁଧା' ଓ ନାୟକନାୟିକାମାନଙ୍କର ନାମ ହେଲା 'ବାସନ୍ତୀ', 'ନିରୁପମା', 'ଚାମେଲି', 'ରମେଶ' ଇତ୍ୟାଦି। ସାଧୁଭାବରେ ବିଚାର କରି ଦେଖନ୍ତୁ, ଏଗୁଡ଼ିକ ଓଡ଼ିଆ ନା ବଙ୍ଗାଳୀ ? ଓଡ଼ିଶାର ଶତ ଶତ ପଲ୍ଲୀରେ

ଯାଇ ପଚ଼ାରନ୍ତୁ, 'ସବୁଜ' ଶବ୍ଦର ଅର୍ଥ କ'ଣ ଏବଂ ଦେଖନ୍ତୁ, ଏହାର କି ଉତ୍ତର ଆପଣ ପାଉଛନ୍ତି। ଦେଶର ଯେଉଁ କିଶୋରଗଣ ଆଜି ଓଡ଼ିଶାର ସ୍କୁଲମାନଙ୍କରେ ଏହି ଆଧୁନିକ ସାହିତ୍ୟ ଆଗ୍ରହ ସହକାରେ ପାଠ କରୁଥିବେ, ସେମାନଙ୍କୁ ପଚ଼ରାଯାଉ, 'ସବୁଜ କବିତା'ର ଅର୍ଥ କ'ଣ ? ମୋର ଖୁବ୍ ବିଶ୍ୱାସ, ସେମାନେ ମୁଖକୁ ଅର୍ଦ୍ଧବ୍ୟାଦାନ କରି କେବଳ ପରସ୍ପରକୁ ଚାହିଁବେ। ଏପରିସ୍ଥଳେ ଭାଷାକୁ ଏ ନୂଆ ଆମଦାନି କି ଆବଶ୍ୟକ ଅଛି ? ରବୀନ୍ଦ୍ରନାଥ ଓ ତାଙ୍କ ବନ୍ଧୁ ପ୍ରମଥ ଚୌଧୁରୀ ଜରାଜୀର୍ଣ୍ଣ ସମାଜରୁ ଜାଡ୍ୟଭାବ ଦୂର କରି ନୂତନ ଜୀବନରେ ସଂଜୀବିତ କରିବା ଲାଗି ସବୁଜ ବର୍ଣ୍ଣକୁ ନବ-ଜୀବନର ପ୍ରତୀକ ଧରି, 'ସବୁଜ-ପତ୍ରିକା' ପ୍ରକାଶ କରିଥିଲେ। ଏହି ପତ୍ରିକାରେ ଏହି ଧରଣର ଉଦ୍ଦୀପନାମୟ ଲେଖା ମଧ୍ୟ ପ୍ରକାଶ ପାଉଥିଲା। ରବୀନ୍ଦ୍ରନାଥଙ୍କର 'ଓରେ ସବୁଜ ଓରେ କାଁଚା' ଶୀର୍ଷକ କବିତା ଏଇ ସମୟରେ ଓ ଏହି ଉଦ୍ଦେଶ୍ୟରେ ଲିଖିତ। ଉତ୍କଳ ଦେଶରେ ଏପ୍ରକାର ଯୌବନ-ଆନ୍ଦୋଳନର ନାମଗନ୍ଧ ନାହିଁ। 'ସବୁଜ-କବିତା' ନାମକ କବିତା-ଗ୍ରନ୍ଥରେ ଏକପ୍ରକାର ଗୋଟିଏ କବିତା ଛଡ଼ା ସେଥିରେ ବରଂ ବିପରୀତ ଭାବର କବିତା ସ୍ଥାନ ପାଇଅଛି। ଏପରି ସ୍ଥଳେ ଏହି ନାମରେ ନାମିତ କବିତା ପୁସ୍ତକ ମସ୍ତିଷ୍କ-ହୀନ ଅନୁକରଣର ଫଳ ଛଡ଼ା ଆଉ କ'ଣ ହୋଇପାରେ ? ଏହାର ଆବଶ୍ୟକତା ବା କ'ଣ ? ଅକାରଣେ ଅନ୍ୟ ଭାଷାଠାରୁ ଏ ଋଣଗ୍ରହଣ କାହିଁକି ?

ଅନେକେ ବଡ଼ ଉଶ୍ୱାସିଆ ଭାବରେ କହନ୍ତି, ବଙ୍ଗଳା ଓଡ଼ିଆ ମଧ୍ୟରେ ପ୍ରଭେଦ ଆଉ କ'ଣ ? ଭାଷା ଦୁଇଟା ତ ଏକପ୍ରକାର ସମାନ– କ'ଣ କରାଯିବ ? ସେମାନଙ୍କୁ ମୁଁ ପଚ଼ାରେ, ସେମାନେ କ'ଣ ଫକୀରମୋହନଙ୍କ ଉପନ୍ୟାସ ପଢ଼ିଛନ୍ତି ? ପଣ୍ଡିତ ଗୋପବନ୍ଧୁଙ୍କର ଗଦ୍ୟ-ଲେଖା ପଢ଼ିଛନ୍ତି ? ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶଙ୍କ କବିତା ପଢ଼ିଛନ୍ତି ? ଯଦି ସେମାନେ ପଢ଼ିନାହାନ୍ତି, ତେବେ ସେମାନେ ପଢ଼ନ୍ତୁ ଓ ଦେଖନ୍ତୁ, ଓଡ଼ିଆ ବଙ୍ଗଳାଠାରୁ ପ୍ରଭେଦ କି ନାହିଁ। ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବଙ୍ଗଳାର ଗନ୍ଧ ନାହିଁ। ବଙ୍ଗପ୍ରଭାବିତ ଆଧୁନିକ ଲେଖକମାନଙ୍କର ଲେଖା ପଢ଼ିଲେ ବଙ୍ଗଳା-ଓଡ଼ିଆରେ ପ୍ରଭେଦ ଦେଖିବା ବାସ୍ତବିକ ଦୁଷ୍କର। ଆମ୍ଭେମାନେ କେବଳ ବଙ୍ଗାଳୀଙ୍କ ଭାଷା ଯେ ବ୍ୟବହାର କରୁଛୁ, ତା' ନୁହେଁ; ବଙ୍ଗାଳୀଙ୍କ ପରି ଭାବୁଛୁ ମଧ୍ୟ। ମୂଳ ଦୋଷ ବୋଧହୁଏ ଏହିଠାରେ। ମୁଁ ଏହିଠାରେ ପଲ୍ଲୀର ଜଳହୀନ କରୁଣ ଦୃଶ୍ୟ ବର୍ଣ୍ଣିତ ହୋଇଥିବା ଦୁଇଟି ଗଦ୍ୟାଂଶ ଉଦାହରଣ ଦେଉଅଛି। ଆପଣ ଦେଖନ୍ତୁ, କେଉଁ ଲେଖା ଖାଣ୍ଟି ଓଡ଼ିଆ ଓ କେଉଁଟା ବଙ୍ଗଳାପ୍ରଭାବିତ। ପ୍ରଥମେ ପୂଜ୍ୟପାଦ ପଣ୍ଡିତ ଗୋପବନ୍ଧୁଙ୍କ ଖାଣ୍ଟି ଓଡ଼ିଆ ଲେଖନୀରୁ ନିଃସୃତ ଏହି ଗଦ୍ୟାଂଶ ପଢ଼ନ୍ତୁ–

"ଅନେକ ଗାଁରେ ଜଳକଷ୍ଟ କହିଲେ ନ ସରେ। ବର୍ଷାଦିନେ ଗାଁରେ ଚାରିଆଡ଼େ ପାଣିକଷ୍ଟ ଜଣାପଡ଼େ ନାହିଁ। ଶୀତ ଶେଷଯାଏ କୌଣସିମତେ ଚଳିଯାଏ। ତେଣିକି ବିପତ୍ତି। ଯେ ଗାଁରେ କୂଅ ଅଛି, ଖାରିଆ ହେଉ ବା ମିଠା ହେଉ, ଲୋକେ ମନ୍ଦାଏ ପିଇବାକୁ ପାଆନ୍ତି। ତା' ନହେଲେ ଚୁଆ, ପୋଖରୀ, ଖାତ ଗାଡ଼ିଆମାନଙ୍କର

ପଙ୍କ ପାଣି ପିଅନ୍ତି। ସେଇଥିରେ ମାଇପେ ମିଣିପେ ଗାଧୁଅନ୍ତି, ଘର ମଇଲା ଲୁଗା ଧୁଆହୁଏ, ଧୋବା ଲୁଗା କାଚେ, ଝୋଟ, କାଠ, ବାଉଁଶ କଷା ହୁଏ, ଗୋରୁ ମଇଁଷି ଗାଧୁଆନ୍ତି, ସେଇଥିରୁ ପିଇବାକୁ ଘର-କାରବାର କରିବାକୁ ପାଣି ଯାଏ। ଏ ଅବସ୍ଥାରେ ଲୋକେ ଯେ ବଞ୍ଚୁଛନ୍ତି କିପରି, ଦେଖିଲେ ବଡ଼ ବଡ଼ ଡାକ୍ତରଙ୍କ ବିଦ୍ୟାବୁଦ୍ଧି ବିଚଳିତ ହୋଇଯିବ ନାହିଁ କି? × × × ଖାଇବା ପିଇବା ଯୋଡ଼ାଏ କଥାରେ ମଣିଷ ପ୍ରାଣ ରହିଛି। ପିଇବା କଥା ତ ଏପରି, ଖାଇବା ଅବସ୍ଥା କିଏ ନ ଜାଣେ?

''ପାଣିକଷ୍ଟ ଚାରିମାସ, ଖାଇବା କଷ୍ଟ ଚାରିମାସ।
ଗର୍ଭେ ଧଇଲି ଦଶମାସ, କୋଳେ ଧରିବା ନାହିଁ ଆଶ।''

''ପଲ୍ଲି କୃଷକ ବର୍ଷଯାକ ଲାଗି ଲାଗି ଯେ ଫସଲ କରେ, ଆମଦାନି ସଙ୍ଗେ ସଙ୍ଗେ ସେଥିରୁ ଭାଗେ ଯାଏ ଜମିଦାର ମରେଇକି; ବାକିତକ ଯାଏ ମହାଜନ କୋଠିକି। ନାହିଁ ଯେବେ ଜମିଦାର ମହାଜନ ଏକା ଲୋକ ହୁଅନ୍ତି, ତେବେ ଏକା ଛେଳିକି ସହସ୍ରେ ଚୋଟ ଦରକାର ହୁଏ ନାହିଁ, ଏକା ଚୋଟକେ ନିକାଶ। ପୁଷ ମାସ ପର ଦି'ମାସ ନ ଯାଉଣୁ ଚାଷୀ ଟୋକେଇ ଧରି ପୁଣି ବାରଦ୍ୱାର ଶୁଣ୍ଢିପିଣ୍ଡା ହୁଅନ୍ତି। 'ଅନ୍ତରୁ ରୋଗ, ଆକାଶରୁ ମହରଗ'। ଶାଗମୁଗ, କାଞ୍ଜି, ଖୁଦୁପିଠା ଘେନି ଲୋକେ ଯେବେ ଦୁଇବେଳା ପେଟ ପୂରାଇ ଦୁଇ ବଖତ ଖାଇବାକୁ ପାଆନ୍ତେ, ତେବେ ପଥକଷ୍ଟ, ଜଳକଷ୍ଟ ବା ଅନ୍ୟାନ୍ୟ କୌଣସି କଷ୍ଟ ସେମାନଙ୍କୁ ସେତେ ବାଧନ୍ତା ନାହିଁ, ମାତ୍ର ପଲ୍ଲିବାସୀ ବାରଣା-ଚୌଦଣା ଲୋକଙ୍କ ଭାଗ୍ୟରେ ଏହା ଘଟେ ନାହିଁ। ଯେଉଁମାନେ ଚାଷ କରନ୍ତି, ସେମାନଙ୍କ ଦୁର୍ଦ୍ଦଶା ତ ଏପରି, ଆଉ କିଣିଖିଆଙ୍କ କଥା କଣ?''

ଏ ଦେଶରେ ଏପରି ଧୃଷ୍ଟତା କାହାର ଅଛି, ଯେ ଏହି ଲେଖାରେ ବଙ୍ଗଳାର ଛାୟା ମଧ ଅଛି ବୋଲି କହିବ ଏବଂ ଏହା ପାଠକଲା ପରେ କିଏ ସେ କହିବ, ବଙ୍ଗଳା ଗଦ୍ୟ ଓ ଓଡ଼ିଆ ଗଦ୍ୟ ଦୁଇଟି ସ୍ୱତନ୍ତ୍ର ପଦାର୍ଥ ନୁହେଁ? ଏବଂ କିଏ ସ୍ୱୀକାର କରିବ ନାହିଁ ଯେ ଓଡ଼ିଆ ଗଦ୍ୟରେ ମଧ ଗୋଟିଏ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଅଛି? ମୁଁ ବର୍ତ୍ତମାନ 'ମୁକ୍ତାଗଡ଼ର କ୍ଷୁଧା' ନାମକ ଉପନ୍ୟାସରୁ ଗୋଟିଏ ଗଦ୍ୟାଂଶ ଉଦ୍ଧାର କରୁଅଛି। ଏହା ନ'ଅଙ୍କ ସମୟର ଜଳହୀନ ଓଡ଼ିଶାର କରୁଣ ବର୍ଣ୍ଣନା,– ଦେଖନ୍ତୁ।

''କିଏ ଜାଣିଥିଲା ଏହି ବୃଷ୍ଟିପରେ ଆକାଶର କରୁଣାର ଦ୍ୱାର ଭୂପୃଷ୍ଠ ପାଇଁ ରୁଦ୍ଧ ହୋଇଗଲା, ଦେଶବ୍ୟାପୀ ପ୍ରଳୟର ସୂଚନା କରି ଅକ୍ଟୋବର ମଧ ପର୍ଯ୍ୟନ୍ତ କୃଷକ ଆକାଶକୁ ଚାହିଁ ରହିଲା। ମଧେ ମଧେ କ୍ଷୁଦ୍ର କ୍ଷୁଦ୍ର ବଉଦଖଣ୍ଡ ଆକାଶରେ ଭାସିଗଲେ, ଆଶାୟୀ କୃଷକ-ଲଳନା ତାର ଗୃହର ସାରବସ୍ତୁ, ସଞ୍ଚିତ ସମସ୍ତ ଶସ୍ୟ ଦ୍ୱାରଦେଶରେ ମୁକ୍ତ କରି ରଖିଦେଲା। ଅଭିପ୍ରାୟ, 'ହେ ଇନ୍ଦ୍ର, ହେ ବୃଷ୍ଟିର ଦେବତା! ମୋ ଗୃହର ସମସ୍ତ ଶୀତ ବସ୍ତ୍ର, ସମସ୍ତ ସଞ୍ଚିତ ଧନ ତୁମ ପ୍ରତି ଉତ୍ସର୍ଗ କରିଦେଲି। ଥରେ ମାତ୍ର କୃପା ବର୍ଷଣ କରିଯାଅ।' ନିଷ୍ଠୁର ଇନ୍ଦ୍ର ସେ ମିନତି ଶୁଣିଲା ନାହିଁ।

ରାଜସ୍ୱ ଦେବାର ଶକ୍ତି ପ୍ରଜାର ପ୍ରାୟ ସମୂଳେ ନଷ୍ଟ ହୋଇଅଛି। ଆଗାମୀ କୃଷିର ଅବସ୍ଥା ଅନୁମାନ କରି ପ୍ରଜା ହତବୁଦ୍ଧି ହୋଇପଡ଼ିଅଛି। ଥରେ କୃଷିଶସ୍ୟ ଥରେ ଆକାଶକୁ ଚାହିଁଦେଇ କୃଷକର ଆତଙ୍କ ଦିନକୁ ଦିନ ବୃଦ୍ଧି ଲାଭ କଲା। ଶସ୍ୟକ୍ଷେତ୍ର ଯେପରି ଶୁଷ୍କ ହୋଇ ଆସିଲା, ପ୍ରଜାର ଅନ୍ତର ମଧ୍ୟ ସେହି ଅନୁପାତରେ ବି ଶୁଷ୍କ ହେଲା। କିଏ ଯେପରି ସକଳ ମୁଖରେ ଗୋଟାଏ ମର୍ମନ୍ତୁଦ ବିଷାଦର କାଳିମା ଲେଖିଦେଇଅଛି। ଗୋଟାଏ ଅଶ୍ରୁହୀନ ମରଣର ବିଭୀଷିକାରେ ସକଳ ପ୍ରାଣ ଆତଙ୍କିତ।''

ମୁଁ କହିବି ନାହିଁ ଏହା ବଙ୍ଗଳା। କିନ୍ତୁ ଗୋପବନ୍ଧୁଙ୍କ ବର୍ଣ୍ଣନା ଓ ଏ ବର୍ଣ୍ଣନାରେ କି ପ୍ରଭେଦ? ଏଥିରେ ଓଡ଼ିଆ ଭାଷାର ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ କାହିଁ? ଗୋପବନ୍ଧୁଙ୍କ ଭାଷାଠାରୁ ଏ ଭାଷା ବଙ୍ଗଳା ଭାଷାର କେତେ ନିକଟତର! ଓଡ଼ିଆ ମାଇକିନା କେଉଁଠି ଇନ୍ଦ୍ରକୁ 'ହେ ବୃଷ୍ଟିର ଦେବତା' ବୋଲି ଡାକେ? 'କିଏ ଯେପରି ସକଳ ମୁଖରେ ଗୋଟାଏ ମର୍ମନ୍ତୁଦ ବିଷାଦର କାଳିମା ଲେଖିଦେଇଅଛି, ଗୋଟାଏ ଅଶ୍ରୁହୀନ ମରଣର ବିଭୀଷିକାରେ ସକଳ ପ୍ରାଣ ଆତଙ୍କିତ'– ଏହି ବାକ୍ୟଟି ଓଡ଼ିଆଧର୍ମୀ ନା ବଙ୍ଗଧର୍ମୀ ?

ପ୍ରାୟ ୩୦ ବର୍ଷ ତଳିଆ ଜମିଦାର-ପୁଅ କଟକ କଲେଜରେ ପଢୁଥିଲାବେଳେ କିପରି ଭାଷାରେ ପତ୍ର ଲେଖିଥିଲା, ତା'ର ନମୁନା ଫକୀରମୋହନ ଦେଇଅଛନ୍ତି; ଦେଖନ୍ତୁ –

''ପରମ ପୂଜନୀୟ ଶ୍ରୀ ଶ୍ରୀ ଶ୍ରୀମତୀ ଜେଜିମା' ଠାକୁରାଣୀଙ୍କ ଶ୍ରୀଚରଣକୁ ଅଧୀନ ଦାସ ନରହରିର ଶତ ଶତ ଦଣ୍ଡବତ ଓଳଗି– ଆମେ ଏ ନିମନ୍ତେ କଟକ ମୁକାମ ବସାଘରଠାରେ ଥାଇ ଲେଖିଲୁ କି ଏଠାରେ ମୋ ଦେହପା ସମସ୍ତ ମଙ୍ଗଳ; ଆପଣମାନଙ୍କ କ୍ଷେମକୁଶଳକୁ ଶ୍ରୀ ଶ୍ରୀ ଯୁଗଳକିଶୋର ଦେଉ ବିଚାରୁଅଛନ୍ତି। ମାତା ଠାକୁରାଣୀଙ୍କ ଶ୍ରୀଚରଣରେ ମୋର ଲକ୍ଷ ଜୁହାର ଜଣାଇବ। ସୁରକୁ କହିବ, ମାଇନର୍ ପରୀକ୍ଷା ଫଳ ବାହାରିଲେ ଦେଖାଯିବ। ସେ ଯଦି ପାସ୍ କରିଥାଏ, କଟକକୁ ଆସି ଇଂରେଜୀ ପଢ଼ିବ, ମଉସା ଏକଥା କହିଛନ୍ତି। ମୁଁ ଏଣ୍ଟ୍ରେନ୍ସ ପରୀକ୍ଷା ପ୍ରଥମ ବିଭାଗରେ ପାସ କରିଥିବା ଖବର ପୂର୍ବ ଚିଠିରେ ଜଣାଇଥିଲି। ମାସିକ ପନ୍ଦର ଟଙ୍କା ଜଳପାନି ପାଏ। ଗଲା କାଲି କଲେଜ ପ୍ରିନ୍ସପାଲ ସାହେବ ତିନିମାସର ବୃତ୍ତି ପାଇଁ ପଞ୍ଚଚାଳିଶ ଟଙ୍କା ଏକସଙ୍ଗରେ ମତେ ଦେଲେ। ମୁଁ ସେ ଟଙ୍କା ମଉସାଙ୍କୁ ଦେବାରେ ସେ ନେଲେନାହିଁ– ଖରଚ କରିବା ସକାଶେ ମତେ କହିଲେ। ଏଠିକା ଖରଚ ତ ମଉସା ଦେଉଛନ୍ତି– ମୁଁ ଆଉ କ'ଣ ଖରଚ କରିବି? ସେହି ଟ୪୫ଙ୍କା ଭୀମ ମଲ୍ଲ ହମରା ହାତରେ ପଠାଇଲି। ଶୁଣାଶୁଣିରେ ଆପଣ ଉଛୁଣି ଖରଚପତ୍ରରେ ଟାଣଟୁଣ ଅଛନ୍ତି। କି ସକାଶେ ଟାଣଟୁଣ– ମାମୁ କି ଖରଚ ଦଉନାହାନ୍ତି?''

ଏ ଭାଷା ଯେ ଓଡ଼ିଆ ଭାଷା ଓ ଓଡ଼ିଆ ମୁହଁରୁ ବାହାରିବା ସଙ୍ଗତ, ତାହା ଆଉ ବୁଝିବାକୁ ହେବନାହିଁ। କିନ୍ତୁ ଯେତେବେଳେ ଗଞ୍ଜାମରେ ଗୋପାଳକୃଷ୍ଣ ଓ ବଳଦେବ କବିତା ରଚନା କରୁଥିଲେ, ନ'ଅଙ୍କ ଦୁର୍ଭିକ୍ଷର ୨୦ ବର୍ଷ ପୂର୍ବେ, ଜଣେ

ଓଡ଼ିଆ ରାଜା ଗୋଟିଏ ଉଇଲ୍ କି ଭାଷାରେ ଲେଖିଛନ୍ତି, ତାହା 'ମୁକ୍ତାଗଡ଼ର କ୍ଷୁଧା'ରୁ ଦେଖନ୍ତୁ–

"ଏ ମୋର ଆତ୍ମଲିପି– ମୋର ଅଶୀତିବର୍ଷ ବୟସର ସ୍ୱୀକାରୋକ୍ତି। ଜୀବନର ଏହି ସୁଦୀର୍ଘ ପଥ ଭ୍ରମଣ କରି ଶୁଣିଲି ଅନେକ, ଦେଖିଲି ଅନେକ– ଅନେକ ରସାସ୍ୱାଦନ, ଅନେକ ସ୍ପର୍ଶ ଅନୁଭବ କଲି, ଅର୍ଜନ କଲି ଯଥେଷ୍ଟ ଖ୍ୟାତି ସମ୍ମାନ। କିନ୍ତୁ ହାଲ ବୁଝିଲି ଅତି ଅଳ୍ପ। ଲାଭ କଲି, ଦାନ କଲି; କିନ୍ତୁ ହେଲି ନିଜେ କ'ଣ। × × ଜୀବନର ଆଜି ଏହି ଦୀର୍ଘପଥ ପାର ହୋଇ ଦେଖୁଛି, ସେ ଗୋଟାଏ ବିରାଟ ରହସ୍ୟରେ ଆଚ୍ଛନ୍ନ।"

ଏହି ଲଜ୍ଜାକର ଅସଙ୍ଗତି କିପରି ସମ୍ଭବ ହେଲା ? ଯେଉଁ ସମୟରେ ଯଦୁମଣି ଓଡ଼ିଶାର ରାଜନ୍ୟମଣ୍ଡଳୀ ମଧ୍ୟରେ ପରିହାସ ସୃଷ୍ଟି କରି ପୁରସ୍କୃତ ହେଉଥିଲେ, ସେହି ସମୟରେ ଜଣେ ଓଡ଼ିଆ ମୁହଁରେ ଏହି ରବୀନ୍ଦ୍ରନାଥୀ ଭାଷା କିପରି ଦିଆଗଲା ? ଆଜି ଆମେ ଓଡ଼ିଆଏ ଏପରି ସ୍ଥଳରେ ପହଁଚିଛୁ, ଯେଉଁଠାରେ କି ଆମ୍ଭେମାନେ ନିଜର ସମସ୍ତ ସ୍ୱତନ୍ତ୍ରତା ଭୁଲି ପର-ପଦାର୍ଥକୁ ଆନନ୍ଦରେ ନିଜର ବୋଲି ଗ୍ରହଣ କରୁଅଛୁଁ। ଏ ଭାଷା ଯେ ବଙ୍ଗଳା ଗଦ୍ୟର ସମର୍ଥନ, ଏଥିରେ ସନ୍ଦେହ ନାହିଁ। କିନ୍ତୁ ଲେଖକ ଏତେ ଦୂର ବଙ୍ଗପ୍ରଭାବିତ ଯେ, ୮୦ ବର୍ଷ ତଳର ଓଡ଼ିଆ ମୁହଁରେ ରବୀନ୍ଦ୍ରନାଥୀ ଭାଷା ଦେବାକୁ କୁଣ୍ଠିତ ହେଲେନାହିଁ।

ଏହି 'ମୁକ୍ତାଗଡ଼ର କ୍ଷୁଧା' ପ୍ରତି ମୋର ବିଦ୍ୱେଷ ନାହିଁ। ଏହି ପ୍ରବନ୍ଧଟି ଲେଖିଲାବେଳେ, ଏହି ପୁସ୍ତକଟି ମୋର ହାତ ପାଖରେ ଥିବାରୁ ଆଧୁନିକ ଭାଷାର ପ୍ରତିନିଧି ବୋଲି ଧରିନେଇ ତହିଁରୁ ଦୃଷ୍ଟାନ୍ତ ଦେଇଅଛି। ଏହି ପୁସ୍ତକରେ 'ଅତିଷ୍ଠ କରି ତୋଳିଲା', 'ଅସ୍ୱସ୍ତି ବୋଧକଲେ', 'ବିଲକ୍ଷଣ ବସନ୍ତର ଚୈତାଳି' ପ୍ରଭୃତି ବଙ୍ଗୀୟ ଯୋଗାରୂଢ଼ ପ୍ରୟୋଗ ସବୁ ଦେଖିବାକୁ ପାଇଲି। ଉଦାର ମତାବଲମ୍ବନ ଲାଗି ଏସବୁ ମଧ୍ୟ କ'ଣ ଓଡ଼ିଶାରେ ସହ୍ୟ କରିହେବ ?

ଓଡ଼ିଆ ଗଦ୍ୟଠାରୁ ଓଡ଼ିଆ କବିତାର ଦୁର୍ଦ୍ଦଶା ଆହୁରି ଅଧିକ। ଅଧିକ ବାକ୍ୟ ବ୍ୟୟ ନ କରି ମୁଁ କେବଳ ଦୃଷ୍ଟାନ୍ତଦ୍ୱାରା ଦେଖାଇଦିଏ, ଆଧୁନିକ ଓଡ଼ିଆ କବିତାରେ ଆଧୁନିକ ଓଡ଼ିଆ ଭାଷା କିପରି ଅଧୋଗତି ଲାଭ କରିଅଛି। ପ୍ରଥମେ କେତେ ପ୍ରାଚୀନ କବିଙ୍କ ଲେଖା ଉଦ୍ଧୃତ କରୁଛି। ଦେଖନ୍ତୁ, ଏ କବିତାର ଭାଷା ବଙ୍ଗଳାଠାରୁ କେତେ ଭିନ୍ନ। ଓଡ଼ିଆ-ଅନଭିଜ୍ଞ ବଙ୍ଗାଳୀ ପକ୍ଷରେ ଏ କବିତା ବୁଝିବାହିଁ ଦୁଷ୍କର ହେବ କି ନାହିଁ, ଦେଖନ୍ତୁ। ଭାଷାର ସେ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଏ କବିତାରେ କିପରି ଫୁଟିଛି, ତାହା ମଧ୍ୟ ଦେଖନ୍ତୁ। ଉପେନ୍ଦ୍ରଭଞ୍ଜଙ୍କ ଲେଖା ଦେଖନ୍ତୁ–

"ବଢ଼ାଇଦେଲେ ପୟର,    ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି।
ବ୍ରହ୍ମାରେ ଧୌତ ଯେ ପଦ    ନୋହିଛି ଶିବେ ବିଷାଦ
ନପାଇ ଚରଣାମୃତ ପାନକୁ ଇଚ୍ଛି।

ବିଜ୍ଞାନୀ କୈବର୍ତ୍ତ ଧୋଇଲା,
ବିଶ୍ୱେ ପତିତପାବନ ନାମ ରହିଲା।''

ଅଭିମନ୍ୟୁଙ୍କର ଦେଖନ୍ତୁ–

''କି ଘେନି ମନରେ, ସଣ ସୁମନରେ, ନୟନ
ପଡ଼ିଲେ ନ ଚଳଇ
ସେ ଅତି ଆଦରେ, କୁଙ୍କୁମ ହୃଦରେ, ନିରବଧି
ବୋଳି ହେଉଥାଇ,
ଆରେ ପ୍ରୀତିମତି,
ରଜନୀରେ କେତେ କରେ ସ୍ତୁତି।
ବଳାଇ ଆଶକୁ ତୋ ପିନ୍ଧା-ବାସକୁ
ଶ୍ରୀଅଙ୍ଗେ ଲଗାଏ, ଏ କି ରୀତି।''

ବଳଦେବ ରଥଙ୍କର ଦେଖନ୍ତୁ–

''ଫାଟିପଡ଼ିବାର ନିକୁଞ୍ଜ ସଞ୍ଚାର-ଶ୍ରମୁଁ ମୋ ଚରଣତଳ
ଫତୁରିଖୋର ଆଖରକୁ ହେବାର ଏହି ଏକା ଏଥୁ ଫଳ
ରେ କିଶୋରି! ଫିଟିଗଲା ଯେ ସନ୍ଦେହ,
ଫୁଲିଗଲୁ ଫୁଲ-ଲଳାମରସିକା ଜାଣି ପରା ଶ୍ୟାମ-ସ୍ନେହ।''

ଗୋପାଳକୃଷ୍ଣଙ୍କର ଦେଖନ୍ତୁ–

''ବ୍ରଜବିଧୁକୁ ଥୋକେ ହୁଡ଼ାଇଲା ରେ,
କେ କିସ କହି ବିଗଡ଼ାଇଲା ରେ?
ସୁଖେ ପୁଆଇବି ନିଶା, ବୋଲି କରିଥିଲି ଆଶା
ନ ସହି କେ ମୋର–
ମନୋରଥ-ଆଶା-ମୂଳ ଉପୁଡ଼ାଇଲା ରେ।''

ବର୍ତ୍ତମାନ ଦେଖନ୍ତୁ, ଏ ସବୁ ଓଡ଼ିଆ ଭାଷାରେ ଲେଖାହୋଇଅଛି କି ନା? ଏମାନଙ୍କରେ ଆମ ଭାଷାର ଗୋଟିଏ ବ୍ୟକ୍ତିଗତ ରୁଚିରେ ବିକଶିତ ହୋଇଅଛି କି ନା? କିଏ ଏପରି ଧୃଷ୍ଟ ଅଛି, ଯେ ଏସବୁ ଧାଡ଼ିକୁ ଖାଣ୍ଟି ଓଡ଼ିଆ ବୋଲି ନ କହିବ? ଏସବୁ ଓଡ଼ିଆ ଜାତିର ଅନ୍ତରର ଭାଷା। ଏ କାହାର ପ୍ରତିଧ୍ୱନି ନୁହେଁ, ଅନ୍ୟ କାହାର ଶିଖାଣରେ ଏ ଭାଷା କୁହା-ହୋଇନାହିଁ। ଏମାନଙ୍କର ପ୍ରକୃତ ମାଧୁର୍ଯ୍ୟ ଏହିଠାରେ। ବର୍ତ୍ତମାନ ଆଧୁନିକ କବିତାରେ ବଙ୍ଗଳା ଭାଷାର ପ୍ରତିଧ୍ୱନି ଶୁଣନ୍ତୁ। ଭାଷା ତାର ନିଜସ୍ୱ-ସୌନ୍ଦର୍ଯ୍ୟ କିପରି ହରାଇଅଛି, ତା' ଦେଖନ୍ତୁ। ଭାଷାର ଅଧୋଗତି କିପରି ହୋଇଅଛି, ତା' ବୁଝନ୍ତୁ–

''ସେ ତ ଆସିଥିଲା ଦିନେ ଏସନ ନୀରବ ରାତିରେ
ମୋର ତରୁଣ ମନଟି ଅଧୀରେ ଉଠିଲା ମାତି ରେ।

ଆସିଲେ ଯେସନେ ନିଶାର ସପନ
ଲୋତକପୂରିତ କଜଳ ନୟନ
ସେ'ବା ମଳିନ ମଳୟ କୁସୁମ-ବେଦନା
ବହି ଆଣିଥିଲା ଛାତିରେ
ଆସିଥିଲା ଦିନେ ଏସନ ନୀରବ ରାତିରେ।''
(ବୈକୁଣ୍ଠନାଥ – 'ସବୁଜ କବିତା')

''ବିବାହ ଶଙ୍ଖ ଉଠୁ ଗୋ ମନ୍ଦେ ବାଜି
ପକ୍ୱ ଧାନର ବିପୁଳ ଗନ୍ଧେ
ସୋରିଷ ଫୁଲର ମାଦକ ଛନ୍ଦେ
ପୂରିଛି ଗଗନ, ଥରିଛି ପବନ
ଭାସିଛି ଭୁବନ ଆଜି
ବିବାହ ଶଙ୍ଖ ଉଠୁ ଗୋ ମନ୍ଦେ ବାଜି।''
(କାଳିନ୍ଦୀ – 'ସବୁଜ କବିତା')

''ଆସ ଗୋ ମୋ ପ୍ରାଣ-ଅତିଥି
ଆସ ଗୋପନ ଚରଣପାତେ
ଆସ ଶ୍ୟାମ ରୋମାଞ୍ଚେ ଉଲ୍ଲସି ଧରା
କିରଣ-ମୁକୁଟ ମାଥେ।
ଆସ ପରଷି ମୃଦୁଳ ବାୟେ
ଆସ ବିଳପି ଚପଳ ଛାୟେ
ଆସ ନୀଳ ନଭେ ବାହି ଚରଣର ଭେଳା।
ବରଣର ମାଳା ହାତେ।
ଆସ ମୋ ଗୋ ପ୍ରାଣ-ଅତିଥି
ଆସ ଗୋପନ ଚରଣ-ପାତେ।''
(ହରିଶ୍ଚନ୍ଦ୍ର ବଡ଼ାଳ –'ଆହ୍ୱାନ' – ଉତ୍କଳ ସାହିତ୍ୟ, ୩୫ଶ ଭାଗ, ୫ମ ସଂଖ୍ୟା)

''ସେ ନୁହେ ଗୋ ମୋର
ସୁଖ ବିଳାସର
ଚଳ-ଖିଆଲର ଖେଳନା
ମନସୁଖେ ଭଙ୍ଗା-ଗଢ଼ାର,
ସେ ନୁହେ ଗୋ ମୋର
ଅଳସ ପ୍ରାଣର
ଆକାଶକୁସୁମ ରଚନା
ଅକଳା ମାୟାର ପ୍ରସାର।
ସେ ଯେ ଗୋ ସକଳ ଜୀବନର ମୂଳେ

ସେ ଯେ ଗୋ ସକଳ ଧରମର ଚୂଳେ
ସେ ଯେ ଗୋ ସକଳ କରମର ମୂଳେ
ମୂର୍ତ୍ତ ସଫଳ ସାଧନା,
ସେ ଯେ ଗୋ ମୋହର, ନିଶି ଦିବସର
ଅନ୍ତରତମ ବାସନା ।''

(ଜୀବନ-ଦେବତା, ହ. ବରାଳ, ଉତ୍କଳ ସାହିତ୍ୟ ୧୩୩୯, ବୈଶାଖ)

ମନ୍ଦ୍ର ମୁରଜ ବଜ୍ର-ଆରବେ
ଉଠିବ ଚକିତେ ଶିହରି,
ଧ୍ୱାନ୍ତ ଧୂସର ଶ୍ରବଣ-ଆକାଶେ
ତୋଳିବି ସଂଗୀତ-ଲହରୀ;
ନିଖିଳର ପଦେ ଆପଣାକୁ ଦାନ
କରି ମୁଁ ଗାଇବି 'ପୂର୍ଣ୍ଣ'ର ଗାନ
ଅଧୀର ପୁଲକେ ମୋ ତରୁଣ ପ୍ରାଣ
ବାଇବ ମଧୁର ମୁରଲୀ,
ମନ୍ଦ୍ର-ମୁରଜ ବଜ୍ର-ଆରବେ
ଉଠିବ ଚକିତେ ଶିହରି ।

(ସଚ୍ଚିଦାନନ୍ଦ ରାଉତରାୟ –ଶିଶିର, ନୀହାର, ୧୨ଶ ବିନ୍ଦୁ)

''ଏ ଜୀବନ ଖାଲି ବ୍ୟର୍ଥ ବିଫଳ ଗାନ
ପୁଲକି ପୁଲକି ନାଚିଉଠ ଆରେ ପ୍ରାଣ
ହଜିଯାଏ ଯାହା, ଯାଏ ସେ ମିଳାଇ
ବିଦାରି ମରମ, ରୁଧିର ଗଳାଇ
ନ ଫେରେ ସେ ଆଉ, ସକଳ ଭୁବନ
କରିଯାଏ ଶମଶାନ,
ପୁଲକି ପୁଲକି ନାଚିଉଠ ଆରେ ପ୍ରାଣ ।''

(କା. ପାଣିଗ୍ରାହୀ, ଉ.ସା. ୩୫, ୮ମ ଭାଗ)

''ତାର ଅପମାନେ ହସି ଉଠ ତୁମେ ରୁଦ୍ର
ଦୀପ୍ତ ତା ମୁଖ କି ବୁଝିବି ମୁହିଁ କ୍ଷୁଦ୍ର
ତା କୋମଳ ଡାକେ କାନ୍ଦେ ପରାଣ
ପୌରୁଷ ମୋର ଲଭେ ଅପମାନ
ମୌନ ଚାଲେ ସେ କାଳ ଅନ୍ଧାର ହାଣି
ଶୁଣିଛି ରୁଦ୍ର ! ତୁମ ଆଲୋକର ବାଣୀ ।

(ବୈକୁଣ୍ଠନାଥ, ଉ.ସା. ୩୬, ୧ମ, ରୁଦ୍ରଦେବତା)

ଏ ସବୁ ଯେ ରବୀନ୍ଦ୍ରନାଥୀ କବିତାର ପ୍ରତିଧ୍ୱନି, ଏ କଥା କଣ ଆଉ ବୁଝାଇ

କହିବାକୁ ହେବ ? ଯେଉଁମାନଙ୍କର ଓଡ଼ିଆଭାଷା ସହିତ ପରିଚୟ ଅଛି, ସେମାନେ ଏହା ସ୍ୱୀକାର କରିବେ। ଏସବୁ କବିତା ଲେଖିବାକୁ ବିଶେଷ ଆୟାସ ପଡ଼ିବନାହିଁ। ଛନ୍ଦ ଓ ଭାବ ବଙ୍ଗଳା-ସାହିତ୍ୟରେ ଥୁଆହୋଇଛି, ତାକୁ ଓଡ଼ିଆରେ ଟିକିଏ ଏପାଖ-ସେପାଖ କରିଦେଲେ ସୁଖପାଠ୍ୟ କବିତା ହେଲା। କିନ୍ତୁ ଲେଖକମାନେ ଭାବୁନାହାନ୍ତି, ଏ ଢଙ୍ଗସବୁ ଓଡ଼ିଆ ଭାଷାର ଧାତୁରେ ସହ୍ୟ ହେବ ନାହିଁ। ବଙ୍ଗଳା ଓ ଓଡ଼ିଆ ଭାଷାର ଧାତୁ ଅଲଗା।

ଓଡ଼ିଆ ଭାଷାର ଛାନ୍ଦବନ୍ଦି ଯେପରି ବଙ୍ଗଳାରେ ଖାପ ଖାଇବ ନାହିଁ, ସେହିପରି ଏ ଏ ସହଜ-କରଣୀୟ କ୍ଷିପ୍ରଗତି ଛନ୍ଦ ମଧ୍ୟ ଖାପ ଖାଉନାହିଁ। ଯଦିବା ନୂତନ ଛନ୍ଦ ଓଡ଼ିଆ ଭାଷାର ସମୃଦ୍ଧି ଲାଗି ପ୍ରବେଶ କରାଯିବା ଉଚିତ, ତେବେ ଲେଖକମାନେ ଖାଣ୍ଟି ଓଡ଼ିଆ ଭାଷା ବ୍ୟବହାର ନ କଲେ କେବଳ ଅନୁକରଣ କରିବେ ମାତ୍ର, ସୃଷ୍ଟି କରିବେ ନାହିଁ; କିନ୍ତୁ ଆମର ଓଡ଼ିଆ ଲେଖକମାନେ ସେତେକ ଆୟାସ କରିବାକୁ ମଧ୍ୟ ନାରାଜ। ସେମାନେ ବଙ୍ଗଳା ଛନ୍ଦ, ବଙ୍ଗଳାର ଭାବ ସଙ୍ଗେ ବଙ୍ଗଳା ଭାଷା ମଧ୍ୟ ଅନୁକରଣ କରୁଅଛନ୍ତି। ଉପରିଲିଖିତ କବିତାଂଶମାନଙ୍କରୁ ଏହା ସ୍ପଷ୍ଟ ବୁଝାଯିବ। ରବୀନ୍ଦ୍ରନାଥଙ୍କ ଅନୁଗମନ କରି 'ଜୀବନ-ଦେବତା' ସମ୍ବନ୍ଧରେ କବିତା ଲେଖ, ବିଶେଷ ଆପତ୍ତି ନାହିଁ। କିନ୍ତୁ ଠିକ୍ ତାଙ୍କରି ପରି ଯଦି ଲେଖ –

"ଆସ ପରଶି ମୃଦୁଳ ବାୟେ
ଆସ ବିଳସି ଚପଳ ଛାୟେ
ଆସ ନୀଳ ନଭେ ବାହି ବରଣର ଭେଳା
ବରଣର ମାଳା ହାତେ।"

ଆଉ ଜଣକର ଭାବ ଓ ଭାଷା ଉଭୟ ଚୋରିକରି, ତେବେ ହେ କବି, ତମର ନିଜର ବ୍ୟକ୍ତିତ୍ୱ ଆଉ ରହିଲା କେଉଁଠି ? ଆଉ ଜଣକର ଛନ୍ଦ, ଆଉ ଜଣକର ଭାଷା ମଧ୍ୟ ବ୍ୟବହାର କଲ, ତେବେ 'ମନ୍ଦଃ କବିଯଶଃପ୍ରାର୍ଥୀ' ହୋଇ ଉପହାସ୍ୟତା ବରଣ କରୁଛ ସିନା ! ନିଜେ ଦେଖ କବି, ଏ ଭାଷାରେ ବଙ୍ଗଳା-ଉପାଦାନ କେତେ ପରିମାଣରେ ଓ ଓଡ଼ିଆ ଉପାଦାନ କେତେ ପରିମାଣରେ ଅଛି। ନିଜେ କଲମ ଧରି ଗୋପାଳକୃଷ୍ଣଙ୍କ କବିତା ଓ ଏ କବିତାକୁ ବଙ୍ଗଳାରେ ଅନୁବାଦ କର, ଦେଖ ତ, କେଉଁଥିରେ ବିଶେଷ ଶ୍ରମ ଲାଗୁଛି ? ମୁଁ ଜାଣେ, ଗୋପାଳକୃଷ୍ଣଙ୍କୁ ବଙ୍ଗଳା ଭାଷାରେ ଥୋଇଲାବେଳକୁ, ତମର ଶ୍ରମକାତର ଦେହ-ଯଷ୍ଟି ଗଳଦ୍‌ଘର୍ମ ହୋଇଉଠିବ; କିନ୍ତୁ ଏ କବିତା ସବୁ ଅନୁବାଦ କରିବାକୁ ତମର ହସ୍ତ-ପଦାଦି ସଂଚାଳିତ କରିବା ଆବଶ୍ୟକ ହେବ ନାହିଁ; ତାହା ଆପେ ଆପେ ବଙ୍ଗଳା ହୋଇ ଉଠିବ। ଏ ସବୁ କଣ ଉଚିତ ହେଉଛି ? ହେ ଉତ୍କଳର ତରୁଣ କବି-ବୃନ୍ଦ, ଭାଷା-ଜନନୀକୁ ପର-ବେଶ ପିନ୍ଧାଇ ସୁନ୍ଦରୀ କରିବାର ଇତରତା ତମ ମନରେ ଘୃଣାଜାତ କରାଉନାହିଁ ? ଆମ ମାଆର କଣ ପାଟପଟନି ନାହିଁ, ମଣି-ମୁକ୍ତା, ଅଷ୍ଟ-ଅଳଙ୍କାର ନାହିଁ ? ତାକୁ ଖୋଜ ଓ ତମର ନିଜର ରୁଚି ଅନୁସାରେ ମାଆକୁ ଭୂଷିତ କର। ଏପରି

ବଙ୍ଗାଳୁଣୀ କରିବାରେ ମାଆର ଗୌରବ ବଢ଼ିବ କି?" ବଙ୍ଗଲକ୍ଷ୍ମୀ କଟନ ମିଲର କପଡ଼ା ଫିଙ୍ଗିଦିଅ, ମାଣିଆବନ୍ଦି ଶାଢ଼ିର ସୌନ୍ଦର୍ଯ୍ୟ ବୁଝ। ଓଡ଼ିଆଣୀକି ଏହି ଲୁଗାହିଁ ମାନିବ; ଆଉ ଯାହା ସବୁ ମାଗିଆଣିଲା ପରି ଦିଶିବ ସିନା। ଏତକ କ'ଣ ବୁଝିପାରୁନା ହେ ତରୁଣ କବିକୁଳ!

ଅନେକେ ଭାବୁଥିବେ ଯେ, ଏ ଛନ୍ଦ ଓ ଏ ଭାଷା ନହେଲେ ନୂତନ ଗୀତିରେ କବିତା ଲେଖା ହୋଇପାରିବନାହିଁ। ଏ ଧାରଣା ଭୁଲ୍। ନୂତନ ରୀତି କହିଲେ ବଙ୍ଗଳା ରୀତି ବୁଝାଏ ନାହିଁ। ସମ୍ପୂର୍ଣ୍ଣ ଓଡ଼ିଆ ରୀତିରେ ଯେ ନୂତନ ଭାବ ଓ ଉନ୍ନତ ଭାବର କବିତା ଓ ଗଦ୍ୟ ସୃଷ୍ଟି କରାଯାଇଛି, ଏ କଥା ସେମାନେ ବୋଧହୁଏ ପାସୋରି ପକାନ୍ତି। ଫକୀରମୋହନଙ୍କ ଉପନ୍ୟାସ, ଗୋପବନ୍ଧୁଙ୍କ ପ୍ରବନ୍ଧ, ପଣ୍ଡିତ ନୀଳକଣ୍ଠଙ୍କ ସନ୍ଦର୍ଭ, ପଣ୍ଡିତ ଗୋଦାବରୀଶଙ୍କ ନାଟକରେ ଓଡ଼ିଆ ଗଦ୍ୟର କି ଉଦାର ଓ ସ୍ୱତନ୍ତ୍ର ବିକାଶ ଘଟିଛି, ତା କଣ ସେମାନେ ଜାଣନ୍ତିନାହିଁ? ନିଖୁଣ ଓଡ଼ିଆ ଭାଷାରେ 'ମାମୁ' ପରି ପ୍ରକାଣ୍ଡ ଉପନ୍ୟାସ, 'ଆର୍ଯ୍ୟଧର୍ମ' ପରି ଉଚ୍ଚ ଦାର୍ଶନିକ ସନ୍ଦର୍ଭ, 'ପୁରୁଷୋତ୍ତମ ଦେବ' ପରି ନାଟକ ଯଦି ଲେଖାଯାଇପାରେ, ତେବେ ଭାଷାକୁ ବଙ୍ଗାଳିଆ କରିବସିଲେ କାହିଁକି ସହ୍ୟ କରିବା? ଏଥିରେ ଲେଖକଙ୍କର ଶକ୍ତିର ଅଭାବ ନ ଦେଖି, ଭାଷାର ଦୋଷ ଦେବା ଉଚିତ କି? ସେହିପରି ନିଖୁଣ ଓଡ଼ିଆ ରୀତିରେ ପଣ୍ଡିତ ନୀଳକଣ୍ଠଙ୍କର 'କୋଣାର୍କେ', 'ଦାସ ନାଏକ' ପ୍ରଭୃତି କାବ୍ୟ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର 'ଆଲେଖିକା' ଓ ଅନ୍ୟାନ୍ୟ କବିତାସମୂହ ଲିଖିତ। ଏସବୁ କାବ୍ୟ-କବିତାର ବିଜ୍ଞାପନ ହୋଇନାହିଁ ବୋଲି ମୟୂର-ପୁଚ୍ଛଧାରୀ କାକସବୁ ଓଡ଼ିଆ ଭାଷାର କାବ୍ୟ-ପ୍ରାଙ୍ଗଣକୁ ମୁଖରିତ କରୁଅଛନ୍ତି। କିନ୍ତୁ ମୋର ବିଶ୍ୱାସ, ଏମାନଙ୍କଠାରୁ ଅଧିକ ଉପଭୋଗ୍ୟ ପଦାର୍ଥ ଉତ୍କଳ-ସାହିତ୍ୟରେ ଅଛି କି ନା, ସନ୍ଦେହ। ଓଡ଼ିଆ ଭାଷାରେ ଯଦି ଏ ସବୁ ଲେଖାହୋଇ ପାରିଲା, ତେବେ ବଙ୍ଗଳା ଭାଷାରୁ ଏ ଅନାବଶ୍ୟକ ଋଣଗ୍ରହଣ କାହିଁକି?

'ବାରୁଣୀ' ପତ୍ରିକା ପ୍ରକାଶିତ ହେଲାବେଳେ ତା'ର କର୍ତ୍ତାମାନେ ଏହି ବଙ୍ଗାନୁକୃତିକୁ ଥଟ୍ଟା କରିଥିଲେ। ତା ପରେ ଦେଶର ପତ୍ରପତ୍ରିକାରେ ବହୁ ଥର ଏହି କବିତା-ମାନଙ୍କର ବିରୁଦ୍ଧ ସମାଲୋଚନା ହୋଇଅଛି। ଦେଶର କେତେକ ଗଣ୍ୟମାଣ୍ୟ ସାହିତ୍ୟିକଙ୍କ ସଙ୍ଗେ କଥା ହେଲାବେଳେ ଏହି ବଙ୍ଗପ୍ରଭାବ କଥା ମୁଁ ଶୁଣିଛି। 'ସହକାର'ର କୌଣସି ଗତ ସଂଖ୍ୟାରେ ସମ୍ପାଦକ ମହାଶୟ ଏ ବିଷୟରେ ଟିପ୍ପଣୀ ଦେଇଥିଲେ। ୧୯୩୩ ଡିସେମ୍ବର ସଂଖ୍ୟା 'ବୈତରଣୀ'ରେ ସମ୍ପାଦକ ଓଡ଼ିଆ ଉପନ୍ୟାସ କିପରି ବଙ୍ଗଭାବାପନ୍ନ ହୋଇପଡୁଛି, ତାହା ଲେଖିଛନ୍ତି। ସେ ଓଡ଼ିଆ ଉପନ୍ୟାସ ସମ୍ବନ୍ଧରେ ଯାହା କହିଅଛନ୍ତି, ତାହା ଓଡ଼ିଆ କବିତାକୁ ଖାଟିବ। ଏ ସମସ୍ତ ଲୋକମତ କଣ କେବଳ ବ୍ୟକ୍ତିବିଦ୍ୱେଷର ଫଳ?

ମୋ ମତରେ 'ସବୁଜ ସାହିତ୍ୟ ସମିତି' ଏହି ବଙ୍ଗ-ପ୍ରଭାବ ପାଇଁ ବିଶେଷ ଭାବେ ଦାୟୀ। ଏହି ସମିତି ଯୋଗ୍ୟ ବ୍ୟକ୍ତିମାନଙ୍କଦ୍ୱାରା ପରିଚାଳିତ ହେଉଥିଲା;

କିନ୍ତୁ ଦୋଷ ଏତିକି ଯେ, ଏହି ଓଡ଼ିଶା ଦେଶର ଧୂଳି-ମାଟି ସଙ୍ଗେ ଏମାନେ ସମ୍ପର୍କ ନ ରଖି ବଙ୍ଗାଳୀ ସମାଜର ଶିକ୍ଷିତ ସଭ୍ୟ ଭଦ୍ର ବାୟୁମଣ୍ଡଳରେ ଅନବରତ ବୁଲୁଥିଲେ। ଏ ଦେଶରେ ଯେ କିଆ-ପୋଲାଙ୍ଗ ଫୁଟି ଝଡ଼ିପଡୁଛି, ସେ ଖବର ନ ରଖି ଏମାନେ ଚାମେଲି, ଗୋଲାପ, ବେଲ୍‌ଫୁଲ, ହାସ୍ନା-ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ। ସାଂଧ୍ୟଝିଅ ନଈରେ ଗାଧୋଇଲାବେଳେ ଛିଣ୍ଡିପଡ଼ିବା ବାରହାତ ଲମ୍ବ ବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନାଇ ରହିଛି, ସେ ଦୃଶ୍ୟ କବିମାନେ ଦେଖିପାରୁନାହାନ୍ତି; ସେମାନେ ସବୁଜ-ପରୀ, ଆସ୍‌ମାନୀ ପରୀର ନୃତ୍ୟ ଆମକୁ ଦେଖାଉଅଛନ୍ତି। ଏ ଜୀବ ଏ ମାଟିରେ ପରିଚିତ ନୁହେଁ। ଏମାନଙ୍କୁ ବୁଝିବାକୁ ଓଡ଼ିଆ ଜାତିକି ବହୁବର୍ଷ ଟ୍ରେନିଂ ପାଇବାକୁ ହେବ। ଏ ପ୍ରକାର ସାହିତ୍ୟ ଏ ଭାଷାର କେବେହେଲେ ସମୃଦ୍ଧି ସାଧନ କରିନ ନାହିଁ; କାରଣ ଏଥିରେ ଜାତିର ପ୍ରାଣ ପ୍ରକାଶ ପାଉନାହିଁ। ପ୍ରତ୍ୟେକ ଜାତିର ଓ ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ଧର୍ମ ଓ ପ୍ରାଣ ଅଛି। ଓଡ଼ିଆ ଜାତିର ଅନ୍ତର କୋଇଲି, ଚଉତିଶା ଛାନ୍ଦରେ ବିକଶିତ ହୋଇଉଠିଛି। ବଙ୍ଗଳାର ପ୍ରାଣ ବାଉଲ ଗାନରେ ଫୁଟିଉଠିଛି। କୌଣସିଟି ଘୃଣା କରିବାର ଜିନିଷ ନୁହେଁ, ପ୍ରତ୍ୟେକରେ ଗର୍ବ କରିବାର ସଂପଦ ଅଛି। ଯେଉଁ ଦେଶର ସାହିତ୍ୟ ସେହି ଦେଶର ମାଟିରୁହିଁ ଜୀବନ-ରସ ସଂଗ୍ରହ କରିନପାରେ, ସେ ସାହିତ୍ୟର ଜୀବନ-କାଳ ସସୀମ – ସେ ସାହିତ୍ୟ କେବେହେଁ ସୁସ୍ଥ-ସବଳ ରହିପାରିବନି। ପିଚ୍‌କାରିରେ ଖାଦ୍ୟ ଖୁଆଇ କୌଣସି ଲୋକକୁ ସୁସ୍ଥ କରାଯାଇନପାରେ; ସୁସ୍ଥ ହେବାକୁ ହେଲେ ନିଜ ଖାଦ୍ୟଟା ନିଜେ ସଂଗ୍ରହ କରି, ନିଜେ ଉଦରରେ ଜୀର୍ଣ୍ଣକରି ରକ୍ତ ସୃଷ୍ଟି କରିବାକୁ ହେବ। ଯେଉଁମାନେ ସାହିତ୍ୟ ଗଢ଼ିଯାଇଅଛନ୍ତି, ସେମାନେ ଏହିପରି କରିଅଛନ୍ତି। ଜଗତର ଶ୍ରେଷ୍ଠ କବିଗଣଙ୍କ କାବ୍ୟ-କବିତାରେ ଏହାହିଁ ଦେଖିବାକୁ ମିଳେ। ସେମାନଙ୍କର ମୁକୁଟ ଆକାଶ ସ୍ପର୍ଶ କରିଥିଲେହେଁ, ସେମାନଙ୍କ ପାଦ ତାଙ୍କର ନିଜ ଦେଶର ମାଟି ଉପରେ। ସେମାନେ ନିଜ ମାଟିରୁ ରସ ସଂଗ୍ରହ କରି, ନିଜର ପ୍ରତିଭାବଳରେହିଁ ତାକୁ ସବୁ ଦେଶର ସଂପଦ କରିଯାଇଅଛନ୍ତି। ସେକ୍‌ସପିୟରଙ୍କ ପରି ଖାଣ୍ଟି ଇଂରାଜ କବି ଦ୍ୱିତୀୟ ଆଉ ନାହିଁ। କାଳିଦାସ ଓ ରବୀନ୍ଦ୍ରନାଥଙ୍କ ପରି ଖାଣ୍ଟି ଭାରତୀୟ କବି ଆଉ ତୃତୀୟ ନାହିଁ। ଏହି ବିଶ୍ୱକବିମାନଙ୍କଠାରେ ଏହା ସମ୍ଭବପର ହେଲା କିପରି? ଆମ୍ଭମାନଙ୍କର ବୁଝିବା ଉଚିତ ଯେ, ଏହାହିଁ ସୃଷ୍ଟିର ନିୟମ। ଯେଉଁଠାରେ ଜୀବନକ୍ରିୟା ଯେତେ ପରାନପେକ୍ଷୀ, ସେଠାରେ ସୃଷ୍ଟିର ବିକାଶ ସେତେ ସୁନ୍ଦର ଓ ସୁସ୍ଥ। ପରାଙ୍ଗଭୋଜୀ ଉଦ୍ଭିଦ କେବେହେଲେ ମୃତ୍ତିକାଭୋଜୀ ଉଦ୍ଭିଦଠାରୁ ସୁସ୍ଥତର ଓ ସୁନ୍ଦରତର ହେବନାହିଁ। ଆମ୍ଭମାନଙ୍କ ମଧ୍ୟରେ ସେହି ହିଁ ଏକା ନମସ୍ୟ, ଯେ ଆପଣାର ପଥ ଆପେ ଗଢ଼ିଛି। ମହାତ୍ମା ଗାନ୍ଧି ଏଥିର ଏକ ଦୃଷ୍ଟାନ୍ତ। କର୍ମଜଗତରେ ବୁଦ୍ଧ-ଗାନ୍ଧି ଯାହା କରିଛନ୍ତି, କାବ୍ୟ-ଜଗତରେ ସେକ୍‌ସପୀୟର-ରବୀନ୍ଦ୍ରନାଥ ସେଇଆ କରିଛନ୍ତି। ଏମାନେ ପର-ଖାଦ୍ୟରେ ନିଜକୁ ପୁଷ୍ଟ କରିବାର ବାସନା କେବେ ପୋଷଣ କରିନାହାନ୍ତି; ନିଜ ମାଟିରୁ ନିଜ ଚେଷ୍ଟାରେ ନିଜର ଖାଦ୍ୟ ସଂଗ୍ରହ କରିଅଛନ୍ତି।

ଆମର ତରୁଣ କବିକୁଳ ଏତକ ହେଲେ ବୁଝନ୍ତେ !

ଆମ ଦେଶରେ କାବ୍ୟ-ଉପାଦାନ ଯଥେଷ୍ଟ ରହିଛି। ବିଚିତ୍ର ପ୍ରକୃତି, ଗରିମାମୟ ଅତୀତ, ଉଜ୍ଜ୍ୱଳ ଭବିଷ୍ୟତ – ଏଥିରେ କ'ଣ କାବ୍ୟର ଉପାଦାନ ନାହିଁ?

ଏ ଦେଶର ବିସ୍ତୀର୍ଣ୍ଣ ପ୍ରାଚୀନ ସାହିତ୍ୟ ଆଗରେ ବଙ୍ଗଳାର ପ୍ରାଚୀନ ସାହିତ୍ୟ ମୁଣ୍ଡ ନୁଆଁଇ ଦେବ। ଏ ଦେଶର କଥା-କାହାଣୀ କିଂବଦନ୍ତୀ କାବ୍ୟ-ଉପାଦାନର ଗୋଟିଏ ଗୋଟିଏ ହୀରକ-ଖଣି। କବି ଇଏଟ୍‌ସ୍ ପ୍ରମୁଖ କେତେକ ଆଇରିସ୍ ସାହିତ୍ୟିକ ଆୟରଲାଣ୍ଡର କଥା-କାହାଣୀକୁ ଆଶ୍ରୟ କରି ଆଇରିସ୍ ସାହିତ୍ୟରେ ଯୁଗାନ୍ତର ଆଣି-ଅଛନ୍ତି। କିନ୍ତୁ ଏ ଦେଶର କବିମାନେ ଦେଶର କଥା-କାହାଣୀକୁ ଆଡ଼ଆଖିରେ ସୁଦ୍ଧା ଅନାଉନାହାନ୍ତି। ଶ୍ରୀମାନ୍ ଚକ୍ରଧର ମହାପାତ୍ର ବହୁ ଆୟାସ ସହକାରେ କେତେକ ଗ୍ରାମ୍ୟକବିତା ସଂଗ୍ରହ କରି ପ୍ରକାଶ କରିଅଛନ୍ତି। ଏ ପ୍ରକାର ଉଚ୍ଚ ଦରେ‌ର କବିତା ଏ ଦେଶରେ ନାରୀମୁଖରେ ସୃଷ୍ଟି ହୋଇପାରିଛି ଭାବି ମୁଁ ପ୍ରଥମେ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଥିଲି। କିନ୍ତୁ ଏ ଦେଶର ଦୁର୍ଭାଗ୍ୟ ଏପରି ଯେ, ଦେଶର ଏହି ନିଜସ୍ୱ ସଂପଦକୁ କେହି ନିଜର ବୋଲି କହି ଆନନ୍ଦ ପ୍ରକାଶ ମଧ୍ୟ କଲେ ନାହିଁ– ସେହି ଦୀନ ଲେଖକର ଆୟାସକୁ କେହି ହେଲେ ଟିକିଏ ଉତ୍ସାହ ଦେଲେ ନାହିଁ; ଅଥଚ ଏଣେ ରସହୀନ, ଗୀତି-ହୀନ, ଯତିହୀନ ଧାର-ଅଣା ବଙ୍ଗାଳିଆ କବିତାରେ ଦେଶର ପତ୍ରିକା ଛାଇହୋଇଯାଉଛି। ଦେଶର ଏ ଅବସ୍ଥା କେବେ ପରିବର୍ତ୍ତିତ ହେବ? ଭାଷା ତାର ସ୍ୱତନ୍ତ୍ର ମର୍ଯ୍ୟାଦା କେବେ ଫେରିପାଇବ?

## ଚତୁର୍ଥ ଅଧ୍ୟାୟ

## ଓଡ଼ିଆରେ ଲେଖିବି କାହିଁକି?*

ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ଓଡ଼ିଶାର ଲେଖକମାନେ ଓଡ଼ିଆରେ କାହିଁକି ଲେଖିବେ ବୋଲି ପ୍ରଶ୍ନ କରିଛନ୍ତି ଓ ଉପଦେଶ ଦେଇଛନ୍ତି ଯେ, ଇଂରାଜୀରେ ଲେଖିଲେ ବରଂ ଲାଭ ଅଛି। ଏପ୍ରକାର ପ୍ରଶ୍ନ ଓ ଉପଦେଶ ଯେକୌଣସି ଆତ୍ମସମ୍ମାନ-ସଂପନ୍ନ ଲୋକ ପକ୍ଷରେ କୁରୁଚିର ପରିଚାୟକ ଓ ନିନ୍ଦାର ବିଷୟ; ଜଣେ ସାହିତ୍ୟିକ ପକ୍ଷରେ ତ କଥାହିଁ ନାହିଁ। ବରେଣ୍ୟ କବି ଗଙ୍ଗାଧର ଉତ୍କଳ ସରସ୍ୱତୀଙ୍କ ଚରଣସେବା କରି ପେଟ ପୋଷି ପାରିନଥିଲେ। ଉଦର ପୂରଣ ପାଇଁ ପ୍ରଥମେ ତାଙ୍କୁ ତନ୍ତ ଧରିବାକୁ ଓ ପରେ ମୋହରିରଗିରି କରିବାକୁ ପଡ଼ିଥିଲା। ତଥାପି ଦାରିଦ୍ର୍ୟ-ନିପୀଡ଼ିତ କବିପ୍ରାଣର କି ଅନୁଭୂତି ଘେନି ଗାଇଛନ୍ତି 'ଉଚ୍ଚ ହେବାପାଇଁ କର ଯଦି ଆଶା,

---

* ନବଭାରତ, ଦ୍ୱିତୀୟ ବର୍ଷ, ୫ମ ସଂଖ୍ୟା।

ଉଚ୍ଚ କର ଆଗେ ନିଜ ମାତୃଭାଷା।' ଏ ବାଣୀ ଓଡ଼ିଆ ପ୍ରାଣରେ ଉତ୍ସାହ ଆଣେ– ତାକୁ ଆତ୍ମସମ୍ମାନ ଜ୍ଞାନ ଦିଏ। ବାଣୀସେବାରେ ଲାଭାଲାଭର ପ୍ରଶ୍ନ କୌଣସି ଦେଶ ବା କୌଣସି କାଳରେ ଉଠିନି। ବାଣୀସେବାରେ ଏକ ଅପୂର୍ବ ଆନନ୍ଦ ଅଛି, ସାମାନ୍ୟ ସ୍ୱର୍ଣ୍ଣ-ରୌପ୍ୟ ଯାହାର ବିନିମୟ ହେବାର ଯୋଗ୍ୟ ନୁହେଁ। ସବୁ କାଳର ସବୁ ଦେଶର କବି ଓ ସାହିତ୍ୟିକ ଏହି ଆନନ୍ଦ ଉପଭୋଗ କରି, ସକଳ ଦାରିଦ୍ର୍ୟ ଓ ଲାଞ୍ଛନା ପ୍ରତି ଦୃକ୍‌ପାତ କରିନାହାନ୍ତି ଏବଂ ବିଧାତାର କି ରହସ୍ୟମୟ ନିୟମରେ କେଜାଣି, ବାଣୀର ପୂଜକ ସାଧାରଣତଃ ଲକ୍ଷ୍ମୀଙ୍କର ପ୍ରସାଦରୁ ବଂଚିତ ହୋଇ-ଆସିଛନ୍ତି। ଓଡ଼ିଶା, ଯାହା ଦାରିଦ୍ର୍ୟପାଇଁ ପ୍ରସିଦ୍ଧ, ସେଠି ଏ ନିୟମର ବ୍ୟତ୍ୟୟ ହୁଅନ୍ତା କିପରି? ଯେଉଁଠି ସମସ୍ତେ ଦରିଦ୍ର, ସେଠି ସାହିତ୍ୟିକର ଦାରିଦ୍ର୍ୟଟା କେବଳ ଭାବନାର ବିଷୟ ହେବାର କାରଣ ନାହିଁ ଏବଂ ଯେତେବେଳେ ଋଣଭାରାକ୍ରାନ୍ତ ଦରିଦ୍ର ଓଡ଼ିଆ ଚାଷୀ, ତେଲୀ, ଗୁଡ଼ିଆ, ସୁନାରି, ଉସ୍କୁଲ୍ ମାଷ୍ଟର, ଓକିଲ, ଖବରକାଗଜବାଲା– ସମସ୍ତେ କଷ୍ଟରେ ଦିନାତିପାତ କଲେ ମଧ୍ୟ ନିଜ ନିଜ ପନ୍ଥାରେ ଲାଗିରହିଛନ୍ତି, ସେତେବେଳେ କେବଳ ଓଡ଼ିଆ ଲେଖକର ଦାରିଦ୍ର୍ୟ ଘୁଞ୍ଚାଇବାପାଇଁ ଏ ପ୍ରକାର ଅସମ୍ମାନସୂଚକ ଉପଦେଶ ଦେଇ ଏ ଅନୁକଂପା କାହିଁକି? ଯାହାର କିଛି ହେଲେ କାଣ୍ଡଜ୍ଞାନ ଥିବ, ସେ ବୁଝିପାରିବ ଯେ ଏ ଦେଶର ସାହିତ୍ୟ ଧନପ୍ରଦ ହେଉନି; କାରଣ (୧) ଦେଶ ଦରିଦ୍ର ଓ (୨) ଦେଶର ଜନସାଧାରଣ ଅନ୍ଧ। ପ୍ରଥମ କଥା, ପଢ଼ିବାର ଲୋକ ବେଶୀ ସଂଖ୍ୟାରେ ନାହାନ୍ତି। ଦ୍ୱିତୀୟରେ ଯେଉଁମାନ ପଢ଼ନ୍ତି ତାଙ୍କର ବହି ବା ପତ୍ରିକା କିଣିବାର ସଂଗତି ନାହିଁ। ଦେଶରେ ସମୂହ-ଶିକ୍ଷାର ପ୍ରଚାର ହୋଇଗଲେ ଓ ଦେଶର ଆର୍ଥିକ ଦୁର୍ଗତି ଘୁଞ୍ଚିଲେ, ଏହି ସାହିତ୍ୟର ଦଶା କି ଏମିତି ଥିବ? ତେଣୁ ଦେଶର ଦୁର୍ଦ୍ଦଶା ଓ ଦୁର୍ଗତି କେଉଁଠି ତାହା ନ ବୁଝି, ଓଡ଼ିଆରେ ଲେଖିବାରେ ଅର୍ଥଲାଭ ନ ହେଲା ବୋଲି ମାତୃଭାଷାକୁ ଉପହାସ କରିବା ଓ ଭିନ୍ନ ଭାଷାରେ ଲେଖିବାକୁ ଉପଦେଶ ଦେବା ଯେପରି ଚିନ୍ତାହୀନତା, ସେପରି କୁରୁଚିର ପରିଚାୟକ।

କେବଳ ସାପ୍ତାହିକ ବା ମାସିକ ପତ୍ରିକାକୁ ଲେଖା ଯୋଗାଇବା କ'ଣ ଏକମାତ୍ର ସାହିତ୍ୟସେବା? ଆମ୍ଭମାନଙ୍କ ମତରେ ସାମୟିକ ପତ୍ରମାନଙ୍କୁ ଖୋରାକ ଯୋଗାଇବାର ଚେଷ୍ଟା ନିକୃଷ୍ଟତମ ସାହିତ୍ୟସାଧନା। ଶ୍ରେଷ୍ଠ ସାହିତ୍ୟର ଆବିର୍ଭାବ ଚିରକାଳ ଜନା-ନ୍ତରାଳରେ, ଲାଭାଲାଭର ଅପେକ୍ଷା ନକରି ଘଟିଛି। ନାରୀ, ସୃଷ୍ଟିର ଆନନ୍ଦରେ ପ୍ରସବବେଦନା ବରଣ କଲାପରି, ପ୍ରକୃତ କବି ଓ ସାହିତ୍ୟିକ, ବାଣୀ-ସୃଷ୍ଟିର ଆନନ୍ଦପାଇଁ, ଦାରିଦ୍ର୍ୟକୁ ବରଣ କରିଅଛନ୍ତି ଓ ଜନତାର କରତାଳିକୁ ଅପେକ୍ଷା କରିନାହାନ୍ତି। ସେକ୍‌ସପିୟରଙ୍କ ନାଟକସବୁ ରଚିତ ହେଲାବେଳେ ରାଣୀ ଏଲିଜାବେଥ୍ ବା ତାଙ୍କ ପ୍ରଜାମଣ୍ଡଳୀରୁ କେତେଜଣ ତାଙ୍କ ବିରାଟ ସୃଷ୍ଟିର ମହତ୍ତ୍ୱ ଉପଲବ୍ଧି କରିଥିଲେ? ଏବଂ କି ଅର୍ଥ ଲାଭ ବା ତାଙ୍କର ହୋଇଥିଲା? ତାଙ୍କ ବନ୍ଧୁ ସଦାମ୍ପଟନ୍ ଅନୁଗ୍ରହ କରି ତାଙ୍କପାଇଁ ଗ୍ଲୋବ୍ ଥିଏଟରରେ କେତେ ଅଂଶ କିଣେଇଦେବାରୁ, ସେ ବିଚାରା

ଲଣ୍ଡନ ନଗରୀରେ ପୁଂଜିଏ ଖାଇବାକୁ ପାଉଥିଲେ ଓ କିଛି ଅର୍ଥ ପାଇ ଖଣ୍ଡିଏ ଘର କରିପାରିଥିଲେ ନିଜ ଗାଁରେ। ତଥାପି ବହୁ ନାଟକ ଲେଖି ସାରିଲା ପରେ ମଧ୍ୟ ତାଙ୍କର ଦୈନନ୍ଦିନ ଜୀବିକାପାଇଁ ତାଙ୍କୁ ଅନ୍ୟ ବ୍ୟବସାୟ କରିବାକୁ ପଡ଼ିଥିଲା। କାରଣ 'ମାକ୍‌ବେଥ୍' ଲେଖିଲାବେଳେ ସେ, ଜଣେ ଲୋକ ନାଁରେ, ତାଙ୍କଠୁ ମଇଦା ନେଇ ପଇସା ନ ଦେଇଥିବାରୁ ସେ ମକଦ୍ଦମା କରିଥିବାର ପ୍ରମାଣ ଅଛି। ଏଥିରୁ କ'ଣ ପ୍ରମାଣିତ ହେଉନି ଯେ, ବାହାରର ଜମା-ଖର୍ଚ୍ଚ ସଂଗେ ସାହିତ୍ୟ-ସୃଷ୍ଟିର ସଂବଂଧଟା ନିଗୂଢ଼ ନୁହେଁ ଓ ଜମାଖର୍ଚ୍ଚଟା ଆମକୁ ସାହିତ୍ୟଠାରୁ ଭିନ୍ନ ବୋଲି ଭାବିବାକୁ ହେବ ?

ମୁଦ୍ରାଯନ୍ତ୍ରର ପ୍ରସାର ସଙ୍ଗେ ଖବରକାଗଜର ଓ ସାମୟିକ ପତ୍ରାଦିର ପ୍ରଚାର, ସବୁ ଦେଶରେ ସମ୍ଭବ ହୋଇଛି। ବାଧ୍ୟତାମୂଳକ ସମୂହ-ଶିକ୍ଷା କୋଟି କୋଟି ନରନାରୀଙ୍କୁ ପାଠୁଆ କରାଇ, ଏହି ପତ୍ରିକାଗୁଡ଼ିକର ମାର୍କେଟ୍ ଯୋଗେଇଛି। ଏ ବ୍ୟାପାରଟାରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ। ଆମ ଦେଶରେ ବାଧ୍ୟତାମୂଳକ ସମୂହ-ଶିକ୍ଷା ପ୍ରଚାର ହେଲେ ଦଶବର୍ଷ ଭିତରେ ଅନ୍ତତଃ ଦଶଟା ଦୈନିକ ଏଠି ଚଳିବ; ମାସିକ ପତ୍ର କଥା ଛାଡ଼। ଶତକଡ଼ା ୩-୪ ଶିକ୍ଷିତ ହୋଇ ଯଦି ଏତେ ଲେଖକ ବାହାରୁଛନ୍ତି, ଶହେକୁ ଶହେ ହେଲେ ସେହି ଅନୁପାତରେ ଲେଖକ ଲେଖିକା ମଧ୍ୟ ବାହାରିବେ। ଖବରକାଗଜମାନ ବେଶି ବିକ୍ରି ହେଲେ ତାଙ୍କର ଯଥେଷ୍ଟ ସମ୍ବଳ ମଧ୍ୟ ହେବ, ଯେଉଁଥିରୁ କି ସେମାନେ ଲେଖକମାନଙ୍କୁ କିଛି କିଛି ଦେଇପାରିବେ ଏବଂ ଯେହେତୁ ସମଗ୍ର ଜାତି ଏ ଧରଣର ଇସ୍କୁଲ୍‌ମାନଙ୍କରେ ଏକ ବିଜ୍ଞାନ-ସମ୍ମତ ରୀତିରେ ଶିକ୍ଷିତ ହେବେ, ଲେଖକମାନଙ୍କ ଲେଖା ମଧ୍ୟ ନିତାନ୍ତ ନିକୃଷ୍ଟ ହେବାର କୌଣସି ଆଶଙ୍କା ରହିବ ନାହିଁ। କାରଖାନା ଚାରିପାଖେ କୁଲି ଓ ଚାକିରିଆ ରହି ରହି ସହର ହେଲା ପରି, ଏସବୁ ସମୂହ-ଶିକ୍ଷାର ଆନୁଷଙ୍ଗିକ ମାତ୍ର। ଏଥିରେ କେବଳ ଇଂରେଜୀ ଭାଷାର ବାହାଦୁରି ନାହିଁ, କି ଓଡ଼ିଆ-ଭାଷା-ନିନ୍ଦାର ଏଥିରେ କୌଣସି କାରଣ ନାହିଁ।*

ସବୁ ଦେଶରେ ଲେଖକ-ଜାତି ଦରିଦ୍ର। Suffering is the badge of our tribe– ଲାଞ୍ଛନା ଆମ୍ଭମାନଙ୍କର ଲାଞ୍ଛନ। ଲାଞ୍ଛନା ଓ ଦୁଃଖ, ସାଧନା ଓ ଅନୁଭୂତିର ଜନନୀ ଓ ଧାତ୍ରୀ। ସାଧନା ଓ ଅନୁଭୂତି ସାହିତ୍ୟ-ସୃଷ୍ଟିର ମେରୁଦଣ୍ଡ। ଯେଉଁମାନଙ୍କ ଜୀବନରେ ସୃଜନାନନ୍ଦ ଅନୁଭବ କରିବା ପାଇଁ ଆଗ୍ରହ ଅଛି, ସେମାନଙ୍କର ଦୁଃଖ-ଦାରିଦ୍ର୍ୟରେ ଅଭିଭୂତ ନ ହୋଇ ସେସବୁକୁ ପ୍ରଶାନ୍ତ ଚିତ୍ତରେ ବରଣ କରିନେବା ଉଚିତ। ଅର୍ଜ୍ଜନାନନ୍ଦ ଓ ସୃଜନାନନ୍ଦ ଭିତରେ ଢେର୍ ବ୍ୟବଧାନ। ଅର୍ଜ୍ଜନ ମନୁଷ୍ୟର ଦୈନିକ ଦେହପୋଷଣ ଲାଗି। କିନ୍ତୁ କବି ବା ସାହିତ୍ୟିକ, ଦୁଃଖ ଦାରିଦ୍ର୍ୟ ଲାଞ୍ଛନାରେ ନିଷ୍ପେଷିତ ହୋଇ, ଲୋକଲୋଚନର ଅଗୋଚରରେ ଯାହା ସୃଜନ କରନ୍ତି, ତାହା କେବଳ ତାଙ୍କୁ ଆନନ୍ଦ ଦିଏନି, ସେ ଯେଉଁ ଜାତି ବା ଭାଷାର, ସେଗୁଡ଼ିକ ପାଇଁ

---

* ପ୍ରାୟ ତିରିଶ ବର୍ଷ ତଳେ ଲିଖିତ ଲେଖକର ଏହି ଯୁକ୍ତିଗୁଡ଼ିକ ଆଜି, ୧୯୭୨-୭୩ ସାଲରେ, ଓଡ଼ିଶା ଦେଶରେହିଁ ଯେ ଅନେକ ପରିମାଣରେ ଫଳବନ୍ତ ହୋଇ ଠିଆହୋଇଛନ୍ତି, ଦେଖିଲେ ଆଶାନ୍ୱିତ ହେବାକୁ ହୁଏ।

ମଧ୍ୟ ଚିରନ୍ତନ ଆନନ୍ଦ ଆୟୋଜିତ ହୋଇଯାଏ।

ଏବଂ ଏହି ସୃଜନ କେବଳ ମାତୃ-ଭାଷାରେହିଁ ସମ୍ଭବ। କିଏ ଯଦି ଭାବେ ରବୀନ୍ଦ୍ରନାଥ ଇଂରେଜୀରେ ଲେଖି ନାମ-ଯଶ କରିଛନ୍ତି, ସେ ବୋଧହୁଏ ଭୁଲ୍ କରେ। କବିଗୁରୁଙ୍କର ବାଉଲ-ପ୍ରାଣ ବାଉଲୀ ଭାଷାରେହିଁ ସ୍ୱଚ୍ଛଳ ଅନାବିଳ ପ୍ରକାଶ ପାଏ। ଏସବୁର ଇଂରାଜୀ ଅନୁବାଦ ତାଙ୍କର ଅଭିବ୍ୟକ୍ତିକୁ ପ୍ରଚାର କରେ ମାତ୍ର। ଅନେକ ଭାରତୀୟ ଇଂରେଜୀରେ କାବ୍ୟ-କବିତା ଲେଖି ଯଶ-ପ୍ରୟାସୀ ହୋଇଛନ୍ତି; କିନ୍ତୁ ଇଂରାଜୀ ସାହିତ୍ୟର ନାମ-ଖ୍ୟାତି ଗ୍ରନ୍ଥରେ ସେମାନଙ୍କର ଗାର ପଡ଼ିନି। ଏ ଦିଗରେ ଓଡ଼ିଶାର ତରୁଣ ଲେଖକମାନଙ୍କୁ ପ୍ରବର୍ତ୍ତାଇବା ଅତ୍ୟନ୍ତ ପରିତାପ ଓ ଦୁଃଖର କଥା।

ଲେଖକ-ଲେଖିକା ସାହିତ୍ୟ ଛଡ଼ା ଅନ୍ୟ ବୃତ୍ତି ଅବଲମ୍ବନ କରିବାରେ କୌଣସି ଅପରାଧ ବା ଅପମାନ ନାହିଁ। ପ୍ରକୃତିର ନିୟମ ଅନୁସାରେ ପ୍ରତ୍ୟେକଙ୍କୁ ଜୀବିକା ପାଇଁ ସ୍ୱେଦପାତ କରିବାକୁ ହେବ। କେବଳ ଘରେ ବସି କବିତା ଲେଖିବା ପାଇଁ ପ୍ରକୃତିର ସୃଷ୍ଟିରେ କୌଣସି ବ୍ୟବସ୍ଥା ନାହିଁ। ସେଥିପାଇଁ 'କୀଟ୍‌ସ' ପରି କବିଙ୍କୁ କମ୍ପାଉଣ୍ଡର୍ ହେବାକୁ, ଓ୍ୟାଡ୍‌ସୱାର୍ଥଙ୍କୁ ଡାକ-ଟିକଟ ବିକିବାକୁ, ବର୍ଣ୍ଣାଡ଼ ଶ'ଙ୍କୁ ଚାଷ କରିବାକୁ ଓ ମଦଖଟି ଦେଖିବାକୁ, ଗଙ୍ଗାଧରଙ୍କୁ ତନ୍ତ ବୁଣିବାକୁ ଓ ରାଧାନାଥଙ୍କୁ ପିଲାଙ୍କ ଖାତା ସଂଶୋଧନ କରିବାକୁ ହେଇଛି। ଉତ୍କଳର ଭବିଷ୍ୟତ ଲେଖକ-ଲେଖିକାଗଣ ମଧ୍ୟ ଜୀବିକା ପାଇଁ ଅନ୍ୟ ପନ୍ଥା ଦେଖି ମଧ୍ୟ ସାହିତ୍ୟ ସେବା କରିପାରନ୍ତି। ସେଥିରେ ଲଜ୍ଜା ବା ଦୁଃଖ ନାହିଁ।

ଉତ୍କଳର ତରୁଣ-କିଶୋର ଲେଖକ ଓ ଲେଖିକାଗଣ, ମାତୃଭାଷାର ହୀନ ଅବସ୍ଥା ଦେଖି ତାକୁ ତୁମେ ମୂଳରୁ ଅବଜ୍ଞା କରିବାକୁ ଶିଖିବ କି? ସୁନ୍ଦରୀ ବା ଅସୁନ୍ଦରୀ ହେଲେହେଁ ତମର ମା' ଓ ଭଉଣୀ ଯେପରି ତମର ସ୍ନେହମୟୀ ମା' ଓ ଭଉଣୀ, ତମର ମାତୃଭାଷା ମଧ୍ୟ ସେହିପରି ତମର ମାତୃଭାଷା। ଏହା ସଙ୍ଗେ ଆମର ପ୍ରାଣର ସଂବଂଧ। ଆମର ପ୍ରିୟଜନମାନେ ଏହି ଭାଷାରେ କଥା କହି ଆମର ପ୍ରାଣର ଦାବଦାହ ଦୂର କରନ୍ତି; ଇଂରେଜୀରେ ନୁହେଁ ତ! ଏ ଦେଶର ଜଳ, ପବନ, ମାଟି, ପ୍ରକୃତି ପରି, ଏ ଭାଷା ମଧ୍ୟ ଆମ ଜୀବନର ଏକ ଅଚ୍ଛେଦ୍ୟ ଉପାଦାନ। ହେଲୁଁ ଏବେ ଆମେ ଦରିଦ୍ର; କ୍ଷତି କ'ଣ? ଦରିଦ୍ରର କ'ଣ ମାତୃସ୍ନେହ ନାହିଁ? ସେ କ'ଣ ଭାଇ-ଭଗିନୀର, ବନ୍ଧୁ-ବାନ୍ଧବଙ୍କର ସ୍ନେହାନନ୍ଦ ପାଏନା? ଲାଭାଲାଭ ବା ଜମାଖର୍ଚ୍ଚ କ'ଣ ଏ ସବୁଠାରୁ ବଡ଼ ପଦାର୍ଥ? ଦାରିଦ୍ର୍ୟ ଓ ଲାଞ୍ଛନା ମଧ୍ୟରେ ସତ୍ୟ ଓ ଅନୁଭୂତି ଲାଗି ସାଧନା କର ଓ ସେହି ସାଧନାରେ ମାତୃଭାଷାକୁ ମଣ୍ଡିତ କର। ଜମା-ଖର୍ଚ୍ଚ ତୁମ ଜୀବନର ଲକ୍ଷ୍ୟ ନହେଉ। ଚିରଦାରିଦ୍ର୍ୟ ବୀଣାପାଣିଙ୍କର ଚରଣ-ଶତଦଳର ସୌରଭ ତମର ଦରିଦ୍ର ଜୀବନକୁ ସୁରଭିତ କରୁ।

କୌଣସି 'ନାମଜାଦା' ଓଡ଼ିଆ– ଯାହାଙ୍କର କବିଭାବରେ ଖୁବ୍ ଯଶ ଥିଲା ଦିନେ, କିନ୍ତୁ ଯଶ ହୋଇସାରିଲା ପରେ ପିଲାଳିଆ ଭାବ ଛାଡ଼ି 'ପୁରୁଷିଆ' ଭାବରେ ଏବେ କେବଳ ଅର୍ଥାର୍ଜନରେ ମନ ଦେଇଥିବାର କୁହାଯାଉଛି ଏବଂ ତାଙ୍କରି ଉଦାହରଣଦ୍ୱାରା

ଅନ୍ୟ ଲେଖକଲେଖିକାମାନଙ୍କୁ ଆତଙ୍କିତ କରିବାକୁ ଚେଷ୍ଟା ହୋଇଛି। ଏହି ନାମଜାଦା ଓଡ଼ିଆ କିଏ ତା ଜାଣିଥିଲେ, ତାଙ୍କର ସାହିତ୍ୟିକ ଦାନର କି ମୂଲ୍ୟ ତାହା ଆମ୍ଭେମାନେ ନିରୂପଣ କରିଥାନ୍ତୁ।

କିନ୍ତୁ ଯା ମଧ୍ୟ ହୋଇପାରେ ଯେ, ସେହି 'ନାମଜାଦା' ଓଡ଼ିଆଙ୍କ ଭିତରେ ଯାହା ଥିଲା, ସେ ତା ଦେଇସାରିଲା ପରେ ଯେତେବେଳେ ଆଉ କିଛି ନୂଆ ଦେବାକୁ ଦେଖିଲେନି, ସେତେବେଳେ ବୁଦ୍ଧିମାନ୍ ପରି ସେ ନୀରବତା ଅବଲମ୍ବନ କଲେ। ଏହାକୁ ସାହିତ୍ୟିକ-ମୃତ୍ୟୁ କୁହାଯାଇପାରେ; କିନ୍ତୁ ଏଥିରେ ଆତଙ୍କିତ ହେବାର କୌଣସି କାରଣ ନାହିଁ; କାରଣ ସ୍ୱାଭାବିକ ମୃତ୍ୟୁ ପରି ସାହିତ୍ୟିକ-ମୃତ୍ୟୁ ମଧ୍ୟ ଅନେକ ସାହିତ୍ୟିକ ଜୀବନରେ ଆସେ। ତାକୁ ଅପମୃତ୍ୟୁ ପରି ଆତଙ୍କର ବିଷୟ ଭାବିବାର କିଛି ନାହିଁ ବା ଓଡ଼ିଆ ଭାଷାର ଏଥିରେ କୌଣସି ସମ୍ବନ୍ଧ ନାହିଁ। ତେଣୁ ଓଡ଼ିଆ ଭାଷା ଛାଡ଼ି ଇଂରାଜୀ ଚର୍ଚ୍ଚା କରିବାର ଉପଦେଶ ନିରର୍ଥକ।

କବି ବା ସାହିତ୍ୟିକ-ଯଶ ଅତ୍ୟନ୍ତ ମୋହକର। ଏଥିପାଇଁ ଅନେକେ ଏଥିରେ ହାତ ଦିଅନ୍ତି, ଆମପରି ଅନେକେ 'ମନ୍ଦଃ କବିଯଶଃପ୍ରାର୍ଥୀ'। କିନ୍ତୁ ଏହି ଯଶ ଉଚ୍ଚଦରର ପ୍ରତିଭାସାପେକ୍ଷ। ଗଙ୍ଗାଧର ବା ଫକୀରମୋହନଙ୍କ ପ୍ରତିଭା, ଆମ ପରି କ୍ଷୁଦ୍ର ସାଧାରଣ କାହୁଁ ପାଇବେ? କିନ୍ତୁ ସାଧନାଦ୍ୱାରା ଅନେକ କ୍ଷେତ୍ରରେ ଏପରି ସିଦ୍ଧି ଲାଭ ହୋଇଛି, ଯାହା କେବଳ ପ୍ରତିଭା ଘେନି ହୋଇନପାରେ।

ତା'ଦ୍ୱାରା ଲେଖକ ଯଶ ପାଇବା ସଙ୍ଗେ ସଙ୍ଗେ ଦେ. ଓ ଭାଷାର ମଙ୍ଗଳ କରିଯାଇଅଛନ୍ତି। ଉଦାହରଣସ୍ୱରୂପ, ପଣ୍ଡିତ ଗୋପୀନାଥ ନନ୍ଦ ଓ ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥଙ୍କ କଥା କୁହାଯାଇପାରେ। ଏମାନଙ୍କର ବିଶିଷ୍ଟ ପ୍ରତିଭା ନଥିଲା; କିନ୍ତୁ ଏମାନେ ସାଧନା କରି ଅନେକ ଗ୍ରନ୍ଥ ଲେଖିଯାଇଛନ୍ତି, ଯାହାର କିଛି ନା କିଛି ସାହିତ୍ୟିକ ମୂଲ୍ୟ ଅଛି। ତେଣୁ ସାହିତ୍ୟକୁ ପିଲାଖେଳ ଭାବିବା ଉଚିତ ନୁହେଁ– ଏହା ଏକ ସାଧନାର କ୍ଷେତ୍ର ବୋଲି ମନେ ରଖିବା ଉଚିତ।

ଶ୍ରୀଯୁକ୍ତ ରମେଶଚନ୍ଦ୍ର ଦତ୍ତ ଇଂରେଜୀରେ ଯେଉଁ ଉପନ୍ୟାସ ବା କବିତା ଲେଖିଥିଲେ, ସେଗୁଡ଼ିକର ସତ୍ତା ଆଉ ନାହିଁ। ବଙ୍କିମଚନ୍ଦ୍ରଙ୍କ ଅନୁରୋଧରେ ସେ ବଙ୍ଗଳା ଲେଖିବା ଆରମ୍ଭ କରି ଯେଉଁଗୁଡ଼ିକ ଲେଖିଯାଇଛନ୍ତି, ସେହି କେବଳ ତାଙ୍କର ସାହିତ୍ୟିକ ନାମକୁ ବଜାୟ ରଖିବ। ଅବଶ୍ୟ ଏପରି ଅନେକ ବିଷୟ ଅଛି, ଯାହା କି ଓଡ଼ିଆରେ ଲେଖିହେବନି ବା ଲେଖିଲେ କେବଳ ଗୋଟିଏ ଛୋଟ ଦେଶରେ ସୀମାବଦ୍ଧ ରହିବ। ସେ ସ୍ଥଳରେ ବିସ୍ତୃତ-ପ୍ରଚାରିତ ଭାଷାର ଆଶ୍ରୟ ନେବା ଉଚିତ। ସେଥିପାଇଁ ଚନ୍ଦ୍ରଶେଖର ତାଙ୍କ ଗ୍ରନ୍ଥକୁ ସଂସ୍କୃତରେ ଲେଖିଲେ ଓ ରମେଶଚନ୍ଦ୍ର ଭାରତୀୟ ଅର୍ଥଶାସ୍ତ୍ରକୁ ଇଂରେଜୀରେ ଲେଖିଲେ। ଏପରି ଲେଖିବାରେ ମାତୃଭାଷାକୁ କୌଣସି ଅବମାନନା ନାହିଁ। କୌଣସି ଓଡ଼ିଆ ଯଦି ଏପରି କୌଣସି ବିଷୟରେ ହାତ ଦେଇଥାନ୍ତି, ତେବେ ସେ କେବଳ ଇଂରେଜୀ କାହିଁକି, ଜଗତରେ ଯେତେ ଭାଷା ଅଛି, ସେସବୁରେ ଲେଖନ୍ତୁ। କିନ୍ତୁ ଆମ୍ଭେମାନେ ଯେତେବେଳେ ଦେଖୁଛୁ ଯେ, ଆମର ଭାଷାର ଅବସ୍ଥା ଶୋଚନୀୟ,

ସେତେବେଳେ ପ୍ରତ୍ୟେକ ଲେଖକ ଲେଖିକା ଗୋଟିଏ ଗୋଟିଏ ବିଷୟ ଧରି ସେହି ଦିଗରେ ସାଧନା କରି ଭାଷାକୁ ଅଳଙ୍କୃତ କରିବାକୁ ଚେଷ୍ଟା କରିବା ଉଚିତ। ଜଣେ ରବୀନ୍ଦ୍ରନାଥ ବଙ୍ଗଭାଷାକୁ ବଡ଼ କରିନାହାନ୍ତି; ଅସଂଖ୍ୟ ଛୋଟ ଛୋଟ ଲୋକଙ୍କର ସାଧନାରେ ତାହା ପରିପୁଷ୍ଟ। ଆମେ ରବୀନ୍ଦ୍ରଙ୍କ ଯଶ ପାଇବାପାଇଁ ଇଂରେଜୀରେ ଲେଖା ଆରମ୍ଭ କରିବା ବାତୁଳତା। ଆମେ ଛୋଟ— ତେଣୁ ନିଜକୁ ଛୋଟ ବୋଲି ସ୍ୱୀକାର କରି ଆମର ଏହି ଛୋଟ ଭାଷାଟିରେହିଁ ଉନ୍ନତିରେ ଲାଗିବା ବୁଦ୍ଧିମାନ୍‌ର କାର୍ଯ୍ୟ।*

## ପଞ୍ଚମ ଅଧ୍ୟାୟ

# ଓଡ଼ିଶାର ଗାଉଁଲି ଗୀତ

### (୧)

ଋକ୍ ବେଦରେ ଯେଉଁସବୁ ମହିମ୍ନ ସ୍ତବ ଆମେ ପାଉଁ, ସେଥିର ସବୁଗୁଡ଼ିକ ଉଚ୍ଚଦରର କବିତା ନୁହେଁ। ଅର୍ଥାତ୍, ଏ ସବୁରେ ଏପରି କିଛି ଭାବ ବା ଚିନ୍ତା ପ୍ରକଟିତ ହୋଇନାହିଁ, ଯାହା ଉଚ୍ଚ ମାନସିକ ଶକ୍ତିର ପରିଚୟ ଦିଏ। କିନ୍ତୁ ସହସ୍ର ସହସ୍ର ବର୍ଷ ପୂର୍ବେ ସରସ୍ୱତୀ ଓ ଦୃଶଦ୍‌ବତୀର କୂଳେ କୂଳେ ଏହି ଆର୍ଯ୍ୟ କୃଷକଗଣ ଯେପରି ସରଳ ଓ ଅକୃତ୍ରିମ ଭାବରେ ସେମାନଙ୍କର କ୍ଷୁଦ୍ର କ୍ଷୁଦ୍ର ଆଶା, ଆକାଂକ୍ଷା, ଭୟ ବା ହିଂସା ପ୍ରଭୃତି ମନୋବୃତ୍ତିକୁ ପ୍ରକାଶ କରିଅଛନ୍ତି, ତାହା ଆମ୍ଭମାନଙ୍କୁ, ଆମର ଏହି ଜଟିଳ ଓ କୃତ୍ରିମ ସଭ୍ୟତା ମଧ୍ୟରେ, ଆକୃଷ୍ଟ ଓ ମୁଗ୍ଧ କରୁଛି।

* ଏହି ପ୍ରତିବାଦ ଲେଖିବାର ତିରିଶ ବର୍ଷ ପରେ ଲେଖକ ପଛକୁ ଅନାଇ ଦେଖୁଛି ଯେ, ଯିଏ "ଓଡ଼ିଆରେ କାହିଁକି ଲେଖିବି" ବୋଲି ନିଜ ମାତୃଭାଷା ପ୍ରତି ଅପମାନସୂଚକ ସ୍ଲୋଗାନ୍ ଉଠାଇଥିଲେ, ସେ ନିଜେ ଓଡ଼ିଆରେ ଲେଖି ଯେଉଁ ପରିମାଣରେ ଧନ-ମାନରେ ଉପକୃତ ହୋଇଛନ୍ତି ଉତ୍କଳ ଦେଶରେ, ସମସାମୟିକ କାଳରେ, ସେପରି ଅନ୍ୟ କେହି ହୋଇନାହିଁ ଏବଂ ଏହି ଜାତୀୟବାଦୀ ଅଧମ ଲେଖକ ଓଡ଼ିଆ ଓ ଇଂରେଜୀ ଉଭୟ ଭାଷାରେ ତା' ଜାତିର ସେବା କରିବାକୁ ଯାଇ ବାରମ୍ବାର ତା' ନିଜ ଲୋକଙ୍କଦ୍ୱାରା କ୍ରୁଶବିଦ୍ଧ ହୋଇଛି ମାତ୍ର। ଗ୍ରୀକ୍ ପୁରାଣରେ ଭାଗ୍ୟ-ଦେବତାକୁ ବୃଥାରେ ଅନ୍ଧ ବୋଲି ଚିତ୍ରିତ କରାଯାଇନାହିଁ। ତେବେ ଯିଏ, "ଓଡ଼ିଆରେ କାହିଁକି ଲେଖିବି" ବୋଲି ସ୍ୱର ଉତ୍ତୋଳନ କରିଥିଲେ ଏବଂ ଉପଦେଶ ଅନୁଯାୟୀ ଇଂରେଜୀ ବା ଅନ୍ୟ କୌଣସି ଭାଷାରେ ଖଣ୍ଡିଏ ହେଲେ ବହି ନ ଲେଖି ମଧ୍ୟ, ଓଡ଼ିଶା ଦେଶ ଓ ଓଡ଼ିଆ ଭାଷା ତାଙ୍କୁ ଯେ ଯଥେଷ୍ଟ ଧନ-ମାନ ଯୋଗାଇଛି, ତେବେ, ତାହାହିଁ ହେବା ଉଚିତ, କେବଳ ଓଡ଼ିଆରେ ଲେଖିବା ପାଇଁ, ତରୁଣ ଓଡ଼ିଆ-ଲେଖକମାନଙ୍କର ପ୍ରକୃଷ୍ଟ ପ୍ରେରଣା !!

ଋକ୍‌ବେଦର ଉଷାସ୍ତୁତି କାବ୍ୟ-ଗୌରବରେ ଉଷା ପରି ମହନୀୟ ଓ ରମଣୀୟ। କିନ୍ତୁ ଅନ୍ୟ ଅଧିକାଂଶ ସ୍ତୁତିରେ ଆମ୍ଭେମାନେ କେବଳ ସାଂସାରିକ ସୁଖ-ସ୍ୱାଚ୍ଛନ୍ଦ୍ୟ, ଗୋଧନର ଅଭିବୃଦ୍ଧି, ଅନାର୍ଯ୍ୟମାନଙ୍କର ପରାଭବ ବା ଧାନ୍ୟକ୍ଷେତ୍ରର ଉର୍ବରତା ଲାଗି ସରଳ ପ୍ରାର୍ଥନାହିଁ ପାଉଁ। ମାନବ ହୃଦୟର ଛୋଟ ଛୋଟ ଆଶା, ନିରାଶା ଭୟ-ଖ୍ୟାତିର ଏହି ଯେ ସହଜ ସ୍ୱଚ୍ଛନ୍ଦ ପ୍ରକାଶ, ତାହାହିଁ ଏଗୁଡ଼ିକୁ ଏପରି ମଧୁର କରିପାରିଛି।

ସମାଜ ଯେତେବେଳେ କୃତ୍ରିମ ହୋଇଉଠେ, ତାର ଭାଷା ସେହି ପରିମାଣରେ ଜଟିଳ ହୋଇଯାଏ। ଭଞ୍ଜୀୟ ଯୁଗର କୃତ୍ରିମ ସମାଜର ଚିତ୍ର ଆମ୍ଭେମାନେ ତାଙ୍କ ସାହିତ୍ୟରେ ପାଉଁ। ଏଥିରେ ଭାଷା ଦୁର୍ବୋଧ ଓ ଭାବ ଅସହ୍ୟ। ଏ ତ କାବ୍ୟକବିତା ନୁହେଁ; କାବ୍ୟ-କବିତାର ଅସ୍ଥିକଙ୍କାଳ ମାତ୍ର। ଅବଶ୍ୟ ଭଞ୍ଜଙ୍କର ସମସ୍ତ କାବ୍ୟ ଯେ ଏପରି ଦୂଷିତ ମୁଁ କହିବାକୁ ଯାଉନି; କିନ୍ତୁ ତାଙ୍କ କାବ୍ୟର ସାଧାରଣ ଦୋଷ ଏଇଆ। ଇଂରାଜୀ ସାହିତ୍ୟର ଅଷ୍ଟାଦଶ ଶତାବ୍ଦୀରେ ଏଇପରି ଏକ କାଳ ଉପସ୍ଥିତ ହୋଇଥିଲା। ବ୍ୟସନଶୀଳ ରାଜା ଦ୍ୱିତୀୟ ଚାର୍ଲସଙ୍କ ରାଜଦରବାରର ଛାୟାରେ ଏହି ସାହିତ୍ୟ ଗଢ଼ିଉଠିଥିଲା। ଏ ସାହିତ୍ୟ ସେ କାଳର ଇଂରାଜ ସମାଜର କୃତ୍ରିମତାର ପ୍ରତିକୃତି ମାତ୍ର ଏବଂ ଏଥିରେ ଶବ୍ଦର କସରତ୍ ଓ ଅଶ୍ଳୀଳ ମନୋବୃତ୍ତିର ସ୍ୱାଧୀନ କ୍ରୀଡ଼ା ଛଡ଼ା ଅନ୍ୟ କିଛି ନାହିଁ।

ମନୁଷ୍ୟର ହୃଦୟ କୃତ୍ରିମ ହୋଇଉଠିଲେ ହୃଦୟର ମନୋରମ ଓ କୋମଳ ବୃତ୍ତି ସବୁ ଲୁପ୍ତ ବା କ୍ଷୀଣ ହୋଇଉଠେ। ସେଥିପାଇଁ ଆମ୍ଭେମାନେ ଦରିଦ୍ର କୃଷକ ପରିବାରରେ ଯେଉଁ ସ୍ନେହ-ମମତା ଦେଖିବାକୁ ପାଉଁ, ରାଜବଂଶମାନଙ୍କରେ ତାହା ବିରଳ ଦେଖାଯାଏ ଏବଂ ପଲ୍ଲୀ-ଜୀବନର ସରଳତା ନଗର-ଜୀବନରେ ଦୁଷ୍ପ୍ରାପ୍ୟ ହୁଏ। ସରଳ ଓ ଅନାବିଳ ପ୍ରାଣ ଜୀବନକୁ ସରସ ଓ ଜୀବନ୍ତ କରି ରଖେ। ଜଗତରେ ଯାହା କିଛି ସୁନ୍ଦର ଓ ମହତ୍, ତାର ମୂଳରେ ଏହି ଅଦୂଷିତ, ସରଳ, ସୁନ୍ଦର ପ୍ରାଣ ଜଗତର ଶ୍ରେଷ୍ଠ କାବ୍ୟ-ସାହିତ୍ୟ।

ଉତ୍କଳ ଗାଉଁଲି ଗୀତ ଏପରି କେତେକ ସୁନ୍ଦର ପ୍ରାଣର ବିକାଶ ମାତ୍ର। କବି-ପ୍ରାଣ, ଜଗତର ସମସ୍ତ କୃତ୍ରିମତା ମଧ୍ୟରେ ପ୍ରକୃତିର କୁସୁମ ପରି ଫୁଟିଉଠେ ଓ ଆପଣାର ମନୋହର ସୌରଭକୁ ଭାଷାରେ ଢାଳିଦିଏ।

ଆମ୍ଭମାନଙ୍କର ପରମପ୍ରିୟ ଏହି ଉତ୍କଳ ଭୂମିରେ ଯେଉଁ ଦୁଇ କୋଟି ଲୋକଙ୍କର ବାସ, ସେମାନଙ୍କର ଗୃହେ ଗୃହେ ପ୍ରାଣର ଅନାବିଳ ଧାରା ଯୁଗ-ଯୁଗଧରି ପ୍ରବାହିତ ହେଉଥିବାର ଅଭିଜ୍ଞତା ଆମ ସମସ୍ତଙ୍କର ଜୀବନରେ ଅଛି। ପିତା ମାତା, ଭାଇ ଭଉଣୀ, ସାଇପଡ଼ୋଶୀଙ୍କ ମଧ୍ୟରେ ଯେଉଁ ନିବିଡ଼ ଓ ନିଷ୍କଳଙ୍କ ପ୍ରୀତି ଏଇ ଜାତିକୁ ନିରନ୍ତର ରସବନ୍ତ କରି ରଖିଛି, ତାହା ଅତ୍ୟନ୍ତ ମଧୁର। ଆମର କୋଟି କୋଟି ଦରିଦ୍ର ପଲ୍ଲୀ-ପରିବାର ସେମାନଙ୍କର ଦୈନନ୍ଦିନ ଦୁଃଖ ସୁଖ ନେଇ ଯେଉଁ ଜୀବନ ଯାପନ କରନ୍ତି, ସେଥିରେ କାବ୍ୟର ଉପାଦାନ ଯଥେଷ୍ଟ ଅଛି। ପଞ୍ଚନଦର ସରଳ କୃଷକର ଛୋଟ ଛୋଟ ଆଶା-ଆକାଂକ୍ଷା ଯଦି ଋକ୍‌ବେଦ ସୃଷ୍ଟି କରିପାରେ, ତେବେ

ଉତ୍କଳର ଦୁଇ କୋଟି ପ୍ରାଣର ଦୈନନ୍ଦିନ ସୁଖଦୁଃଖରୁ ଯଥେଷ୍ଟ କବିତା ଲାଭ କରାଯାଇପାରେ ବୋଲି ଆଶା କରିବା ଧୃଷ୍ଟତା ହେବ ନାହିଁ।

ବନ୍ଧୁ ଚକ୍ରଧର ମହାପାତ୍ର ଆମ୍ଭମାନଙ୍କର ସେ ଆଶାକୁ ସତ୍ୟ କରିଅଛନ୍ତି। ତାଙ୍କର ଓଡ଼ିଆ ପଲ୍ଲୀକବିତାର ଅପୂର୍ବ ସଂଗ୍ରହ ଆଜି ଦେଶବାସୀଙ୍କର ସମ୍ମୁଖରେ ଉପସ୍ଥିତ। ଏଥିରେ କି ପ୍ରକାର କବିତା ଅଛି ବା ଏହାଦ୍ୱାରା ସାହିତ୍ୟର କି ପ୍ରକାର ଶ୍ରୀବୃଦ୍ଧି ହେବ, ତାର ବିଚାର ପଣ୍ଡିତଜନଙ୍କଦ୍ୱାରା ହେବ। ମୋର ସେଥିଲାଗି ବିଦ୍ୱତ୍ତା ବା ପାଣ୍ଡିତ୍ୟର ସଂପୂର୍ଣ୍ଣ ଅଭାବ। ତେବେ ମୋର ଏତିକି ଯୋଗ୍ୟତା ଯେ ମୁଁ ଏହି ପଲ୍ଲୀକବିତାରେ ବହୁ ଦିନରୁ ମୁଗ୍‌ଧ ଓ ଆଗ୍ରହାନ୍ୱିତ। ମୁଁ ଯେତେବେଳେ ମୋର ପଲ୍ଲୀଗ୍ରାମକୁ ଯାଏ, ଗ୍ରାମର ଛୋଟ ଛୋଟ ବାଳିକାମାନଙ୍କ ମୁଖରେ ଏହି ସ୍ୱଚ୍ଛନ୍ଦ କବିତା ଶୁଣି ପ୍ରଥମେ ମୁଗ୍‌ଧ ହୁଏ। ଆମ ଗ୍ରାମର ଚଷା ଘରର ଛୋଟ ଛୋଟ ଝିଅସବୁ ଶାଗ ତୋଳିଯାଇ ଏକ ପଂକ୍ତିରେ ବସି ଶାଗ ତୋଳୁ ତୋଳୁ ଏଇପରି ଏକ ଗୀତ ସମବେତ ଭାବରେ ଗାଆନ୍ତି –

ମଦରଙ୍ଗା ଶାଗ ରାଇତା
ନନା ଭୁଞ୍ଜନ୍ତି ନାହିଁ
ଜନିକି ମାଇଲି ଗୋଇଠା
ଜନି ଫିଟିଲା ନାହିଁ ।'' –ଇତ୍ୟାଦି

କୌଣସିକ୍ରମେ ମୁଁ ଏଇ ଗୀତ ଶୁଣିବାକୁ ପାଇ ଅଧିକତର ଭାବରେ ସଂଗ୍ରହ କରିବାର ଚେଷ୍ଟା କରିଥିଲି, ଖାତା ପେନ୍‌ସିଲ୍ ଧରି ଝିଅଟିକୁ ନାନା ଅନୁରୋଧ କଲି। କିନ୍ତୁ ଆମ ଘରର ଝିଅମାନେ ଏତେ ଲଜ୍ଜାଶୀଳା ଯେ, ସଂଗ୍ରହ କରିବାଟା କ୍ରମେ କଷ୍ଟକର ହୋଇଉଠିଲା ଓ ତେଣୁ ଉତ୍ସାହ ଭାଙ୍ଗିଗଲା। ଯାହା କିଛି ମୁଁ ସଂଗ୍ରହ କରିଥିଲି, ସେଥିମଧ୍ୟରୁ ଅଧିକାଂଶର ବୃତ୍ତ ବା ରାଗ ମୁଁ ମୋର 'ପୁଷ୍ପିତା' ନାମକ ନାଟିକାରେ ନବୀକୃତ କରିବାକୁ ଚେଷ୍ଟାକରିଥିଲି; କିନ୍ତୁ ଏ ସମ୍ବନ୍ଧରେ ମୋର ସେ ଚେଷ୍ଟା କ୍ଷୀଣ, ମୋର ବନ୍ଧୁଙ୍କର ଆଗ୍ରହ ଓ ଅଧ୍ୟବସାୟ ଆଗରେ ନିତାନ୍ତ ନଗଣ୍ୟ।

(୨)

କବିତା ହୃଦୟର ଭାବପ୍ରକାଶ ମାତ୍ର। କ୍ରୌଞ୍ଚମିଥୁନ ମଧ୍ୟରୁ ଏକର ହତ୍ୟା ଦେଖି ବାଲ୍ମୀକି ଯେଉଁ ବ୍ୟଥା ଅନୁଭବ କଲେ, ତାହାର ଅଭିବ୍ୟକ୍ତିରେ ଜଗତର ପ୍ରଥମ କବିତା ସୃଷ୍ଟିହେଲା। ବାଲ୍ମୀକିଙ୍କର ସେହି ଶ୍ଳୋକରେ ଉଚ୍ଚ ଚିନ୍ତା ବା ନିଗୂଢ଼ ତତ୍ତ୍ୱ କିଛି ନାହିଁ– କେବଳ ଗୋଟିଏ କ୍ଷଣିକ ଅନୁଭୂତିର ପ୍ରକାଶ ମାତ୍ର। ବସ୍ତୁତଃ, କବିତା ଏହିପରି ଅନୁଭୂତିର ଅଭିବ୍ୟକ୍ତି ମାତ୍ର। ସଭ୍ୟତାର ଜଟିଳତା ବୃଦ୍ଧି ସଙ୍ଗେ ଅବଶ୍ୟ ମନୁଷ୍ୟର ଅନୁଭୂତି ଜଟିଳ ହୋଇଉଠିଲା ଏବଂ ସେଥି ସଙ୍ଗେ କବିତା ମଧ୍ୟ ଜଟିଳ ହୋଇଗଲା; କିନ୍ତୁ ମୂଳତଃ କବିତାର ସୃଷ୍ଟି ଅନୁଭୂତିର ଅଭିବ୍ୟକ୍ତିରେ।

ଶ୍ରୀ ଚକ୍ରଧର ମହାପାତ୍ର ଯେଉଁସବୁ ଗାଉଁଲି ଗୀତ ସଂଗ୍ରହ କରିଅଛନ୍ତି, ସେଥିରୁ

ଅନେକ ଗୀତରେ ଓଡ଼ିଆ ଜାତିର କେତେକ ନିବିଡ଼ ଅନୁଭୂତି ବ୍ୟକ୍ତ ହୋଇଅଛି। ପଲ୍ଲୀ-ଜୀବନରେ ଉଚ୍ଚ ଚିନ୍ତା ପାଇଁ ଅବକାଶ ନାହିଁ। ଜୀବନ ଯେଉଁଠାରେ ସରଳ ଓ ଘଟଣାହୀନ, ସେଠାରେ ସମସ୍ୟାର ସ୍ଥାନ ନାହିଁ। ଏପରି ସରଳ ଜୀବନର କେତୋଟି କ୍ଷୁଦ୍ର କ୍ଷୁଦ୍ର ସୁଖ ଦୁଃଖ, ଯାହା ଏ ଦେଶାରେ ପ୍ରତ୍ୟେକ ପଲ୍ଲୀର ପ୍ରତ୍ୟେକ ପରିବାରରେ ଅତ୍ୟନ୍ତ ପରିଚିତ କଥା, ତାହାହିଁ ଏ କବିତାଗୁଡ଼ିକର ପ୍ରାଣବସ୍ତୁ। ଦେଖିବାର କଥା ଏହି ଯେ, ଏପ୍ରକାର ଅତ୍ୟନ୍ତ ପରିଚିତ ଘଟଣା ଓ ଅନୁଭୂତିସବୁ ଆମର ବରେଣ୍ୟ କବିମାନଙ୍କର ଲେଖାରେ ସ୍ଥାନ ପାଇନି; ଅଥଚ ସେହି ଅଜ୍ଞାତନାମା ପଲ୍ଲୀକବିମାନଙ୍କର ସ୍ୱଚ୍ଛନ୍ଦ ଓ ସହଜ ଭାଷାରେ ମନୋରମ ଭାବରେ ବ୍ୟକ୍ତ ହୋଇଅଛି। ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଇ ମୋର ଏହି ପ୍ରଶଂସାକୁ ଯୁକ୍ତିଯୁକ୍ତ କରେ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ସଂଗ୍ରହର ପ୍ରଥମ କବିତାଟି ଦେଖନ୍ତୁ—

''ପହଲିପାଳି ବୋଉ ଦେଲୁ ପଠାଇ
ସାଙ୍ଗରେ ଯାଇଥିଲେ ସାନ କକେଇ ଲୋ।
ଅଧାବାଟକୁ ବୋଲି ମୋ ନନା ଗଲେ,
'ଝିଅ ଯାଉଚି' ବୋଲି ମେଲାଣି ଦେଲେ ଲୋ।
ନନାଙ୍କ ମୁହଁକୁ ଯେ ଚାହିଁଲି ମୁହିଁ।
ନନା ଧଇର୍ଯ୍ୟ ଧରିପାରୁନନ୍ତି ନାହିଁ ଲୋ।
ଗତୀଶ୍ୱରଙ୍କ ମାଳୀ ସେଠାରେ ଥିଲା,
ନନାଙ୍କ ଆଖିଲୁହ ପୋଛିଣ ଦେଲା ଲୋ—
କାହିଁକି କାନ୍ଦ ମିଶ୍ରେ ଯାଅ ଘରକୁ,
ଝିଅ-ଜନମ ସିନା ପରଘରକୁ ହେ।'' —ଇତ୍ୟାଦି।

ଆମ୍ଭମାନଙ୍କ ଗୃହରେ ବିବାହ ବେଳେ କନ୍ୟାର ବିଦାୟପରି କରୁଣ ଓ ହୃଦୟବିଦାରକ ଘଟଣା ଆଉ ଦ୍ୱିତୀୟ ନାହିଁ। ଅନ୍ୟ ଦେଶ ଓ ସମାଜରେ ବିବାହ ବେଳେ କନ୍ୟା ଓ ବର ସହିତ ତାଙ୍କର ବନ୍ଧୁବାନ୍ଧବମାନେ ହସନ୍ତି ଓ ଉତ୍ସବ କରନ୍ତି; କିନ୍ତୁ ଏ ଦେଶରେ ଆମ ସମାଜର ବର୍ବର ବ୍ୟବସ୍ଥାର ଚୂଡ଼ାନ୍ତ ପ୍ରମାଣ ଏହି ଯେ, ବିବାହ ପରି ସୁଖକର ଘଟଣାରେ କନ୍ୟା ଓ ତାର ବନ୍ଧୁବାନ୍ଧବ ହୃଦୟଭେଦୀ ବିଳାପ କରନ୍ତି। ଏହି ଅସଭ୍ୟ ପ୍ରଥାର ସମସ୍ତ କାରୁଣ୍ୟ, ପଲ୍ଲୀକବି ଅନୁପମ ଭାବରେ ସହଜ ଓ ନିରଳଙ୍କାର ଭାଷାରେ କିପରି ବ୍ୟକ୍ତ କରିଛନ୍ତି, ତାହା ପ୍ରତ୍ୟେକ ପାଠକ ଅନୁଭବ କରିପାରିବେ। ଏହି କେତୋଟି ପଂକ୍ତିରେ ଆମ୍ଭମାନଙ୍କର ପ୍ରତ୍ୟେକ ପରିବାରର ଗୋଟିଏ ଅତି ପରିଚିତ ଘଟଣା ଅତ୍ୟନ୍ତ ପରିସ୍ଫୁଟ ଭାବରେ ବର୍ଣ୍ଣିତ ହୋଇଅଛି। ଝିଅ ସାଥିରେ ସାନ କକେଇ ଯିବାର, ବାପ ଶୋକରେ ଅଧୀର ହେବାର, ଗତୀଶ୍ୱରଙ୍କ ମାଳୀ ଲୁହ ପୋଛିଦେବାର ଘଟଣା ଆମ୍ଭମାନଙ୍କର ଜଣାକଥା। କବିତାଟି ପଢ଼ିଲାବେଳେ ସମସ୍ତ ଚିତ୍ରଟି ଜୀବନ୍ତ ଭାବରେ ମନଶ୍ଚକ୍ଷୁରେ ଭାସିଉଠେ।

ଅନ୍ୟ ଦୃଷ୍ଟାନ୍ତ ଦେଇ ଏଇ ଲେଖାର କଳେବର ବୃଦ୍ଧି କରିବା ଉଚିତ ନୁହେଁ। ସଂଗ୍ରାହକଙ୍କ ବିରାଟ ସଂଗ୍ରହ 'ଉତ୍କଳ ଗାଉଁଲି ଗୀତ' ପାଣ୍ଡୁଲିପିର 'ବୋହୂଙ୍କ ସୁଖ ଦୁଃଖ' ବିଭାଗର କବିତାଗୁଡ଼ିକ ଏପରି ହୃଦୟସ୍ପର୍ଶୀ ହୋଇଅଛି ଯେ, ସେସବୁ ପାଠ କଲାବେଳେ ମୁଁ ଲୋତକ ସମ୍ବରଣ କରିପାରିନଥିଲି। ଆମମାନଙ୍କ ପରିବାରରେ ନାରୀ-ଜୀବନର କରୁଣ ଅନୁଭୂତିସବୁ ଅନ୍ୟ କୌଣସି କବି ଏପରି ଲିପିବଦ୍ଧ କରିଯାଇନାହାନ୍ତି। ଆମମାନଙ୍କର କାବ୍ୟ-କବିତା ପ୍ରେମମୂଳକ। ଭଞ୍ଜ-ଦୀନକୃଷ୍ଣ-ଗୋପାଳକୃଷ୍ଣ-ଅଭିମନ୍ୟୁ- ବଳଦେବ ପ୍ରେମର ମହନୀୟ ଓ ରସାଳ ଚିତ୍ର ଦେଇଯାଇଅଛନ୍ତି। କିନ୍ତୁ ସେ ଜୀବନ ସକଳ ନାରୀ-ପୁରୁଷଙ୍କ ଭାଗ୍ୟରେ ଘଟେ ନାହିଁ। ଏ ଦେଶରେ ଘରେ ଘରେ କୋମଳ-ପ୍ରାଣା-ବାଳିକା-ବଧୂଗଣ ସ୍ୱାମୀଗୃହରେ ଅତ୍ୟାଚାରିତା ହୋଇ ଯେପରି ମନୋଭାବ ଧରି କାଳ କାଟନ୍ତି, ସେ ଚିତ୍ର କୌଣସି କବି ଦେଇଯାଇନାହାନ୍ତି। ଏହି ପଲ୍ଲୀ-କବିତାରେ ନାରୀ-ଜୀବନର ଯୁଗ-ଯୁଗାନ୍ତବ୍ୟାପୀ ମୂକ ଅନୁଭୂତି ଆଜି ସର୍ବସାଧାରଣରେ ପ୍ରକାଶିତ ହେଲା।

ଉକ୍ତ ସଂଗ୍ରହରେ ଯେ ନାରୀଜୀବନର କରୁଣ ଇତିହାସ ଅଛି, ତାହା ନୁହେଁ; ପଲ୍ଲୀଜୀବନର ନାନା ଅବସ୍ଥାର ଚିତ୍ର ସେଥିରେ ସନ୍ନିବେଶିତ ଅଛି।

ଇଂରାଜୀ ଶିକ୍ଷାର ପ୍ରସାର ପୂର୍ବେ ଏ ଦେଶର ପଲ୍ଲୀ କାବ୍ୟ-ମୁଖର ଥିଲା। ଦିନର ନାନା ଘଟଣାରେ ପଲ୍ଲୀବାସୀର କର୍ମକୁ କବିତା ଓ ଗାନ ଉତ୍ସାହିତ ତଥା ରସବନ୍ତ କରୁଥିଲା। ଘରେ, ଅନ୍ତଃପୁରରେ ନାରୀମାନଙ୍କ ମୁଖରୁ ପ୍ରତ୍ୟେକ କଥାରେ ଢଗଢମାଳି, ବଚନିକା , ଫୁଟିଉଠୁଥିଲା। କିଶୋରୀମାନଙ୍କ କ୍ରୀଡ଼ା-କୌତୁକରେ, ବ୍ରତ-ଉପବାସରେ ସଙ୍ଗୀତ ପ୍ରଧାନ ଅଙ୍ଗ ଥିଲା। କିଶୋରମାନେ ଗୋ-ଧୂଳି ଦାଣ୍ଡକୁ କ୍ରୀଡ଼ା ଓ ସଙ୍ଗୀତରେ ମୁଖର ଓ ମଥିତ କରିରଖୁଥିଲେ। ପ୍ରୌଢ଼ାମାନେ କର୍ମାବସରରେ ବାଳବଚ୍ଚାଙ୍କୁ କୋଳରେ ଶୁଆଇ ସଙ୍ଗୀତ ଦେଇ ଜାତିର ପ୍ରାଣକଥା ଶିଖାଇ ରଖୁଥିଲେ। ଏହିପରି ଚାରିଆଡ଼େ କବିତାର ମଧୁର ପ୍ରଭାବରେ ପଲ୍ଲୀଜୀବନ ରସାଳ ହୋଇଉଠୁଥିଲା।

ସେ ସ୍ୱର୍ଣ୍ଣଯୁଗ କିନ୍ତୁ ଆଉ ନାହିଁ। ଇଂରାଜୀ ଶିକ୍ଷା ଫଳରେ ଜାତିର ପ୍ରାଣରୁ କବିତାକୁ ନିଗାଡ଼ି ପୋଛି ବାହାର କରିଦିଆଯାଇଛି। ତା' ଫଳରେ ଜାତିର ଆନନ୍ଦରସ ଏବେ ପ୍ରାୟ ସଂପୂର୍ଣ୍ଣ ଶୁଷ୍କ। ଦେଶରେ ନୂତନ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତିତ ହେବାରୁ ଓ ଜାତିର ଜ୍ଞାନକେନ୍ଦ୍ର ସହସ୍ର ସହସ୍ର ପଲ୍ଲିକୁ ଅନ୍ଧକାର କରି କେତୋଟି ସହରକୁ ଉଠିଆସିବାରୁ ଏହି ଗ୍ରାମ୍ୟ କବିତାର ଚର୍ଚ୍ଚା ରହିଲା ନାହିଁ ଓ କିଶୋର-କିଶୋରୀମାନଙ୍କ ଜୀବନରେ ତାର ପ୍ରଭାବ ପଡ଼ିଲା ନାହିଁ। ତା' ଫଳରେ ଜାତିର ଜୀବନରେ ସମସ୍ତଙ୍କ ଅଜ୍ଞାତସାରରେ କି ଘୋର ଅନିଷ୍ଟ ସାଧିତ ହୋଇଅଛି, ତାର ଆଲୋଚନା ଲାଗି ସ୍ଥାନ ଅନ୍ୟତ୍ର। ଶ୍ରୀଯୁକ୍ତ ମହାପାତ୍ରଙ୍କର 'ଉତ୍କଳ ଗାଉଁଲି ଗୀତ' ସଂଗ୍ରହ କିନ୍ତୁ ଆମମାନଙ୍କୁ ସେହି ସ୍ୱର୍ଣ୍ଣଯୁଗର ସ୍ମୃତି ଆଣିଦେଉଛି। ସେ କିଶୋରୀମାନଙ୍କର ଗୀତ, କିଶୋରମାନଙ୍କର ଗୀତ, ମାଇକିନାମାନଙ୍କର ଢଗ-ଢ଼ମାଳି, କୃଷକର ଗାନ ଓ ପୌରାଣିକ ଉପାଖ୍ୟାନ ଏବଂ ଦେବସ୍ତୁତି ଇତ୍ୟାଦି ନାନା ବିଭାଗରେ ପଲ୍ଲୀଜୀବନରେ କବିତାର ନାନା ବିକାଶ

ଦେଖାଇଦେଇଅଛନ୍ତି। ଏସବୁ ପାଠ କରିବାର ସୁଯୋଗ ଆସିଲେ ପାଠକ ଜାଣିପାରିବ, ପଲ୍ଲୀଜୀବନକୁ କବିତା କିପରି ଓତପ୍ରୋତ ଭାବରେ ଅନୁରଂଜିତ କରି ରଖିଥିଲା। ଏସବୁରେ ଲଘୁ ପଦାବଳୀ ମଧ୍ୟରେ ଅନେକ ଉତ୍କୃଷ୍ଟ କବିତା ମୁକ୍ତାମାଳାପରି ଫୁଟି ଉଠିଛି। ସଂଗ୍ରହର ପୌରାଣିକ ଉପାଖ୍ୟାନ ମଧ୍ୟରେ 'ରାମାରତନ' (୧) କବିତାଟି ଦାମ୍ପତ୍ୟ-ପ୍ରଣୟର ଏକ ଉତ୍କୃଷ୍ଟ ଚିତ୍ର। ଦେବବନ୍ଦନା ମଧ୍ୟରେ 'ଜଗନ୍ନାଥସ୍ତୁତି'ଟି (୨) ଗୋଟିଏ ଉଚ୍ଚାଙ୍ଗ କବିତା। ସମସ୍ତ ଇନ୍ଦ୍ରିୟ ଓ ମନ ଦେଇ ଦେବତାକୁ ଉପଭୋଗ କରିବାର ସାଗ୍ରହ ବାସନା ରମଣୀୟ ଭାବରେ ପରିସ୍ଫୁଟ ହୋଇଅଛି।

(୧) ''ହଂସୁଳି ତୂଳିରେ ସହି ରେ, ନିଦ୍ରା ଯେ ଆସଇ ନାହିଁ
ଫଳମୂଳ ଖାଇ ଡାଳରେ ଶୋଇ ରେ ରାମାରତନ,
କି କାଳ ବଞ୍ଚିବୁ ତୁହି।
ତୁମ୍ଭଙ୍କୁ ସିନା ମୋ ଆଶ ହେ, ତୁମ୍ଭରେ ସିନା ମୁହାଁସ
ତୁମ୍ଭର ଯେମନ୍ତ ଅରଣ୍ୟେ ବାସ ହେ ରଘୁନନ୍ଦନ
ଘରେ ମୁଁ କରିବି କିସ ?
ନପାରିବୁ ଅସକତେ ରେ, ନିସତେ ବସିଣ ପଥେ
ଛଳ ଛାତ କଲେ ଜଳଜ-ନେତ୍ରରେ ରାମାରତ୍ନ,
କି ଦୁଃଖ ନ ଦେବୁ ମୋତେ।
କହୁଚ୍ କେତେ ଚାତର ହେ, ତୁମ୍ଭେ କି ଏଡ଼େ ଚତୁର
ତୁମ୍ଭଠାରୁ ପରା ମୁଁ ସୁକୁମାର ହେ ରଘୁନନ୍ଦନ,
ରଖ ରଖ ଏ ବିଚାର।''  — ଇତ୍ୟାଦି

(୨) ''ହାତଯୋଡ଼ିକ ଥାଇ ବୋଇଲେ,
ସତ ମୋ ବଚନ ରାମା, ସତ ମୋ ବଚନ
ଜଗନ୍ନାଥଙ୍କ ଗରୁଡ଼ ଖମ୍ବ କୁଣ୍ଢାଇବାରେ ମନ, ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କ ଗରୁଡ଼ ଖୁମ୍ବ ନିତି କୁଣ୍ଢାଉଥିବି।
ଆଙ୍ଗୁଠି ଯୋଡ଼ିକ ଥାଇ ବୋଇଲେ,
ସତ ମୋ ବଚନ ରାମା, ସତ ମୋ ବଚନ
ଜଗନ୍ନାଥଙ୍କ ଧଣ୍ଡାମାଳ ଗୁନ୍ଥିବାରେ ମନ, ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କ ଧଣ୍ଡାମାଳ ନିତି ଗୁନ୍ଥୁଥିବି।
ଆଖିଯୋଡ଼ିକ ଥାଇ ବୋଇଲେ,
ସତ ମୋ ବଚନ ରାମା, ସତ ମୋ ବଚନ
ଜଗନ୍ନାଥଙ୍କର ଚକାଡୋଳା ଦେଖିବାରେ ମନ, ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଚକା ଡୋଳା ନିତି ଦେଖୁଥିବି।''  — ଇତ୍ୟାଦି

'ଏ ସଂଗ୍ରହ' ସଂପୂର୍ଣ୍ଣ ନୁହେଁ। ଉତ୍କଳର ଅସଂଖ୍ୟ ପୁରପଲ୍ଲୀରେ ଆହୁରି ଅସଂଖ୍ୟ କବିତା ଲୁକ୍କାୟିତ ରହିଛି। ଲେଖକ ଯଦି ଏହି ଏହି କାର୍ଯ୍ୟରେ ଲାଗନ୍ତି, ତେବେ ତାଙ୍କୁ ଆହୁରି ଅଧ୍ୟବସାୟ କରିବାକୁ ପଡ଼ିବ। ଏ 'ସଂଗ୍ରହ' ମୂଳତଃ ଲେଖକ ତାଙ୍କର ମାତୃଦେବୀଙ୍କଠାରୁ ପାଇଛନ୍ତି। × × × ଉତ୍କଳର ଆହୁରି ଅସଂଖ୍ୟ ଜନନୀଙ୍କଠାରେ କି କବିତା ଆଶ୍ରୟ କରି ରହିଛି, ତା' କିଏ କହିବ? ତା'ଛଡ଼ା ପଲ୍ଲୀଜୀବନର ଆହୁରି ଅନେକ ବିଭବ ମଧ୍ୟ ପ୍ରକାଶିତ ହୋଇନାହିଁ। ବିଶେଷତଃ ସାମରିକ କବିତାର ଅଭାବ ମୋ ଆଖିରେ ପଡ଼ିଛି। ଏବେ ମଧ୍ୟ ଉତ୍କଳର ପଲ୍ଲୀରେ ପ୍ରାଚୀନ ସାମରିକ ଜୀବନ କ୍ଷୀଣ ଭାବରେ ହେଲେ ମଧ୍ୟ ଜୀବନ୍ତ ରହିଛି। ପୂର୍ବେ ପ୍ରତ୍ୟେକ ପୁରୁଷ, ଯୋଦ୍ଧା ହେଉଥିଲେ। ପ୍ରତ୍ୟେକ ଗାଁରେ ଆଖଡ଼ା ଥିଲା। ଏ ଅବସ୍ଥାରେ ସାମରିକ କବିତା ନିଶ୍ଚୟ ସୃଷ୍ଟି ହୋଇଥିବ ବୋଲି ମୋର ବିଶ୍ୱାସ। ଏସବୁ ବିଷୟରେ ଲେଖକ ନୂତନ ଆଲୋକ ଦେବାକୁ ଚେଷ୍ଟିତ ହେବା ଉଚିତ। *

ଲେଖକ ଏସବୁ କବିତାର ଲେଖକଙ୍କୁ ପଲ୍ଲୀକବି ବୋଲି ଲେଖିଛନ୍ତି। କିନ୍ତୁ ମୋର ଧାରଣା ଏ ସମସ୍ତ ନାରୀଜାତିର ସୃଷ୍ଟି। କବିତାଗୁଡ଼ିକର ଭାଷା, ଭାବ, ଭଙ୍ଗୀ ସମସ୍ତହିଁ ନାରୀମନର ପରିଚୟ ଦିଏ। କବିତାଗୁଡ଼ିକ ପଢ଼ିଲାବେଳେ ମନେହୁଏ, ଯେପରି ଆମ୍ଭେମାନେ ଆମର ପରିଚିତା ପଲ୍ଲୀ ରମଣୀମାନଙ୍କର ମୁଖ-ବଚନ ଶୁଣିପାରୁଛୁଁ। ପ୍ରକୃତରେ ସେଇମାନେହିଁ ଏହାର ପ୍ରକୃତ ସ୍ରଷ୍ଟା ଓ ରକ୍ଷକ। ସେଇମାନଙ୍କର ମୁଖଦେଇ ଏ ସାହିତ୍ୟ ପୁରୁଷାନୁକ୍ରମେ ବଞ୍ଚିଆସିଛି। ଏ ଦେଶରେ ଧନ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବତା ନାରୀ! ଉତ୍କଳରେ ନାରୀ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟ।

(୩)

ଗ୍ରାମ୍ୟ କବିତା ସବୁ ଦେଶରେ ଓ ସବୁ ଜାତିରେ ଅଛି। ଧରଣୀପୃଷ୍ଠରେ ଯେଉଁ କୋଟି କୋଟି ନରନାରୀ ପ୍ରକୃତିର କୋଳରେ ମାଟି ସଙ୍ଗେ ଜୀବନକୁ ଜଡ଼ିତ କରି ଜୀବନ ଯାପନ କରନ୍ତି, ଏସବୁ ସେହିମାନଙ୍କର ପ୍ରାଣର ଭାଷା। ଏଥିରେ ମନୁଷ୍ୟ ପ୍ରାଣର ଚିରନ୍ତନ କ୍ଷୁଦ୍ର କ୍ଷୁଦ୍ର ଆଶା-ଆକାଂକ୍ଷା ଫୁଟିଉଠିଛି। ଏ ସବୁ ଅତି ଉଚ୍ଚ ଦରର କବିତା ନ ହୋଇପାରେ, ଗେଟେ-କାଳିଦାସଙ୍କ କବିତା ସଙ୍ଗେ ଏମାନଙ୍କର ତୁଳନା ନ ହୋଇପାରେ; କିନ୍ତୁ ଏମାନଙ୍କର ଗୋଟିଏ ସ୍ୱତନ୍ତ୍ର ମାଧୁର୍ଯ୍ୟ ଅଛି। ଏ ସବୁ ମାନବ ପ୍ରାଣର ଅନାବିଳ ପ୍ରକାଶ— ଏସବୁ ଦେଶରେ ସ୍ୱୟଂ ମୃତ୍ତିକା ଦେବୀର ଭାଷା। ଏଥିଯୋଗୁଁ ସବୁ ସାହିତ୍ୟରେ ଏ ବଞ୍ଚୁଛି। ଅଷ୍ଟାଦଶ ଶତାବ୍ଦୀର ଶେଷରେ ଇଂରାଜୀ ସାହିତ୍ୟରେ ଯେଉଁ ରୋମାଣ୍ଟିକ୍ ଆନ୍ଦୋଳନ ଘଟିଗଲା, ସେଥିରେ ଏହି ପଲ୍ଲୀସାହିତ୍ୟର ପ୍ରଭାବ ଯଥେଷ୍ଟ ଥିଲା। ପର୍ସି (Bishop Percy) ନାମକ ଜଣେ

* ଇତିମଧ୍ୟରେ ଶ୍ରୀ ମହାପାତ୍ର ତାଙ୍କର ଗାଉଁଲି ଗୀତସବୁର ନୂତନ ସଂସ୍କରଣରେ ସାମରିକ ଗୀତ କିଛି କିଛି ଉଦ୍ଧାର କରିଛନ୍ତି। ଇତିମଧ୍ୟରେ 'ପାଇକ-ଖେଦା' ଗ୍ରନ୍ଥଟିର ପ୍ରକାଶ ମଧ୍ୟ ଅତ୍ୟନ୍ତ ସନ୍ତୋଷଦାୟକ।

ବିଶପ୍ ଏଇ ସବୁ କବିତା ସଂଗ୍ରହ କରି ପ୍ରକାଶ କରିବା ପରେ ତାହା କେବଳ ଇଂରାଜୀ ସାହିତ୍ୟ ନୁହେଁ, ଅନ୍ୟ କଣ୍ଟିନେଣ୍ଟୀୟ ସାହିତ୍ୟକୁ ମଧ୍ୟ ପ୍ରଭାବାନ୍ୱିତ କରିଥିଲା। ଇଂରାଜୀ କବିତାରେ ସ୍କଟ୍, କଲେରିଜ୍, ବର୍ଣ୍ଣସ୍ ଓ ଜର୍ମାନୀର ବିଶ୍ୱବିଖ୍ୟାତ ଗେଟେ ଏହି କବିତା-ସଂଗ୍ରହରୁ ନିଜ ନିଜ ପ୍ରତିଭା ଲାଗି ପ୍ରେରଣା ପାଇଥିଲେ। ଏହିମାନଙ୍କର ଛନ୍ଦ ଓ ନିରାଡ଼ମ୍ବର ଭାବ ପ୍ରକାଶ ସେମାନଙ୍କ ପ୍ରତିଭାକୁ ସ୍ୱଚ୍ଛନ୍ଦ ଓ ଅକୃତ୍ରିମ ପ୍ରକାଶ ଲାଗି ନିର୍ଦ୍ଦେଶ ଦେଇଥିଲା। ବର୍ତ୍ତମାନ କାଳରେ ମଧ୍ୟ ଆଇରିସ୍ ସାହିତ୍ୟରେ ଏହି ଗ୍ରାମ୍ୟ କବିତା ଓ କଥାସାହିତ୍ୟକୁ ଆଶ୍ରୟ କରି ବିଶ୍ୱପ୍ରସିଦ୍ଧ କେଲ୍‌ଟିକ ଆନ୍ଦୋଳନ ଲବ୍‌ଧ-ପ୍ରତିଷ୍ଠ ହୋଇଉଠିଛି।

ଉତ୍କଳ ଦେଶର କବିମାନେ ଯଦି ବହିଃପ୍ରଭାବ ପରିତ୍ୟାଗ କରି ଏଇ କବିତାର ଅନୁକରଣରେ ନିଜ ମାଟିର କଥା ନିଜ ଭାଷାରେ କହନ୍ତେ, ତେବେ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ହୁଅନ୍ତା ବୋଲି ମୋର ବିଶ୍ୱାସ।

ମୋର ବିଶ୍ୱାସ ପୁଣି ଏହି ଯେ, ଓଡ଼ିଆ ଛାନ୍ଦମାନଙ୍କର ବିବର୍ତ୍ତନର ମୂଳରେ ଏହି ଗ୍ରାମ୍ୟ କବିତା ବର୍ତ୍ତମାନ। ଗଞ୍ଜାମର ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ପ୍ରତ୍ୟେକ ଓଡ଼ିଆ ଛାନ୍ଦ ପ୍ରାକୃତ ବା ସଂସ୍କୃତରୁ ଆସିଥିବାର ପ୍ରମାଣ କରାଇଛନ୍ତି। କିନ୍ତୁ ପ୍ରତ୍ୟେକ ଛାନ୍ଦ ଲାଗି ଯେ ଓଡ଼ିଆ କବି ପ୍ରାକୃତ ଉପରେ ନିର୍ଭର କରି ରହୁଥିଲେ, ଏହା ସ୍ୱାଭାବିକ ଦିଶୁନି। ବାଲ୍ମୀକି ଗାଳି ଦେଉ ଦେଉ ଛନ୍ଦର ସୃଷ୍ଟି ହେଲା। କବି କହିବସିଲେ ଛନ୍ଦ ଆପେ ସୃଷ୍ଟି ହୋଇଯିବ। ଏହି ପଲ୍ଲୀକବିତା ସବୁ ସେହିପରି ପ୍ରାକୃତିକ ନିୟମରେ ବିକାଶ ଲାଭ କରିଛି ଏବଂ ପରବର୍ତ୍ତୀ କାଳର ଜଟିଳ ଓଡ଼ିଆ ଛାନ୍ଦ ଅନେକ ପରିମାଣରେ ଏହି ମୂଳଦୁଆ ଉପରେ ଠିଆହୋଇଛି। ଧରନ୍ତୁ ଯେଉଁ ପଲ୍ଲୀକବି–

''ମଦରଙ୍ଗା ଶାଗ ରାଇତା ନନା ଭୁଞ୍ଜନ୍ତି ନାହିଁ
ଜନିକି ମାଇଲି ଗୋଇଠା ଜନି ଫିଟିଲା ନାହିଁ।''

–ଇତ୍ୟାଦି ଲେଖିଲେ, ସେ ପ୍ରାକୃତ-ଭାଷାଭିଜ୍ଞ ବୋଲି କହିବା ଯୁକ୍ତିଯୁକ୍ତ ନୁହେ। ଏ ଛନ୍ଦ ସ୍ୱଚ୍ଛନ୍ଦ ଭାବରେ ବିକାଶଲାଭ କରିଛି ଏବଂ ପରେ ରାମକେରୀ ରାଗ ଏହାରି ଅଭିବୃଦ୍ଧି ମାତ୍ର। ଉପରୋକ୍ତ କବିତା ଆଖିରେ ଚଖି –

''ଅଭିଷେକୋତ୍ସବ ଦର୍ଶନ ଆଶେ ସିଂହଦୁଆରେ
ବିଜେ ଆଜ ଦେବଦେବୀଏ ଯେଝା ପୂଜା-ସମ୍ଭାରେ।''

– ଇତ୍ୟାଦି ଲେଖିବା କି ସହଜ।

ଅବଶ୍ୟ ଏ ସମ୍ବନ୍ଧରେ ମୋର ପାଣ୍ଡିତ୍ୟ ନାହିଁ, ଏ କେବଳ ସାଧାରଣ ଆଲୋଚନା ମାତ୍ର। ମୋର ମନେହୁଏ ଗଞ୍ଜାମର ଅପର୍ଣ୍ଣା ପଣ୍ଡା ଏ ବିଷୟରେ ତାଙ୍କର 'ଛାନ୍ଦ ଚନ୍ଦ୍ରିକା'ରେ ବିଶେଷ ଆଲୋଚନା କରିଅଛନ୍ତି। କିନ୍ତୁ ଉତ୍କଳରେ ଯା' ଉପରେ ଆହୁରି ବିଶେଷ ଆଲୋଚନା ହେବା ବିଧେୟ।

# ଷଷ୍ଠ ଅଧ୍ୟାୟ

## ଓଡ଼ିଆ ସାହିତ୍ୟରେ ରୋମାଣ୍ଟିସିଜମ୍

ଓଡ଼ିଆ ସାହିତ୍ୟରେ ରୋମାଣ୍ଟିସିଜ୍‌ମ୍ ସମ୍ବନ୍ଧରେ କିଛି କହିବା ଆଗରୁ 'ରୋମାଣ୍ଟି-ସିଜ୍‌ମ୍' ଶବ୍ଦର ତାତ୍ପର୍ଯ୍ୟ ବୁଝିବାକୁ ହେବ। ଏହା ଏକ ଇଂରାଜୀ ଶବ୍ଦ। ଦେଢ଼ଶ' ବର୍ଷର ଇଂରେଜୀ ଶିକ୍ଷା ଫଳରେ ଆମ ଭାଷାରେ ଅନେକ ଇଂରେଜୀ ଶବ୍ଦ ସ୍ୱାଭାବିକ ଅଧିକାର ବଳରେ ପଶିଗଲାଣି; ଆଉରି ଅନେକ ଆମର ନିମନ୍ତ୍ରଣକୁ ଅପେକ୍ଷା କରି ଦ୍ୱାରଦେଶରେ ଠିଆହୋଇଛନ୍ତି ମାତ୍ର। ରୋମାଣ୍ଟିସିଜ୍‌ମ୍ ଏହିପରି ଏକ ଶବ୍ଦ। ଏହାର ଓଡ଼ିଆ ଅନୁବାଦ ସହଜ ନୁହେଁ; କାରଣ ଇଂରେଜୀରେ ଏହି ଗୋଟିଏ ଶବ୍ଦକୁ ବ୍ୟାଖ୍ୟା କରିବା ଲାଗି ଯାହା ସବୁ ଲେଖାହୋଇଛି, ତାହାହିଁ ଏକ ଲାଇବ୍ରେରୀ ହେବ। ତେଣୁ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ପ୍ରଭୃତି ଶବ୍ଦର ଧାତୁଗତ ଅର୍ଥ ନ ଜାଣି ମଧ୍ୟ ଆମ୍ଭେମାନେ ସାଧାରଣତଃ ଯେପରି ସେ ସବୁର ଭାବାର୍ଥଟା ଧାରଣା କରି ସନ୍ତୁଷ୍ଟ ରହୁ, ମୋ ମତରେ ରୋମାଣ୍ଟିସିଜ୍‌ମ୍ ଶବ୍ଦଟାକୁ ସେହିପରି ଗ୍ରହଣ କଲେ, ଆମ ଭାଷାର କୌଣସି ଅପମାନ ହେବନାହିଁ। ବର୍ତ୍ତମାନ ସଂକ୍ଷେପରେ ଏ ଶବ୍ଦର ତାତ୍ପର୍ଯ୍ୟ ବୁଝାଇଦିଏଁ।

ଏବର ଇଂରେଜୀଶିକ୍ଷିତମାତ୍ରେ 'ରୋମାନ୍‌ସ' ଶବ୍ଦ ବ୍ୟବହାର କରନ୍ତି। ଏହାର ଲୌକିକ ଅର୍ଥ ପ୍ରେମ-ବ୍ୟାପାର; ବିଶେଷତଃ ସେହି ସେହି ପ୍ରକାର ପ୍ରେମ ଯେଉଁଥିରେ କିଛି ଅନନ୍ୟତା ରହିଛି। ଯଦି କୌଣସି ବ୍ରାହ୍ମଣ ଯୁବକ ଗତାନୁଗତିକ ଭାବରେ ବ୍ରାହ୍ମଣୀ କନ୍ୟାର ପାଣି ଗ୍ରହଣ କରେ, ସେମାନଙ୍କ ଭିତରେ ପ୍ରେମର ସ୍ଥିରତା ଥିଲେ ମଧ୍ୟ, ସାଧାରଣ ଆଖିରେ ତାହା ରୋମାନ୍‌ସ ବୋଲି ଧରାଯିବନି। କିନ୍ତୁ ସେହି ବ୍ରାହ୍ମଣ ଯୁବକ ଯଦି ଏକ ପାଣ କନ୍ୟାକୁ ବିବାହ କରେ, ତେବେ ସେ କ୍ରିୟା ଲୋକଚକ୍ଷୁରେ ହଠାତ୍ 'ରୋମାଣ୍ଟିକ୍' ପ୍ରତୀତ ହେବାର ଆଶା କରାଯାଏ। ବ୍ରାହ୍ମଣ ଯୁବକ ଓ ପାଣ କନ୍ୟାର ସାମାଜିକ ଜୀବନ ସୁଖୀ ହେବ କି ନାହିଁ, ବା ସେମାନଙ୍କ କର୍ମରେ ଅନୈତିକତା ସମାଜ ପକ୍ଷରେ କିପରି ଭୟଙ୍କର ଆଦର୍ଶ, ସେସବୁ ପ୍ରସଙ୍ଗର ବିଚାର ଏଠି ନାହିଁ। ଏଠି ଅଛି ଗତାନୁଗତିକତାକୁ ପଦାଘାତ, ହୁଏତ ରୂପର ବା ଗୁଣର ପୂଜା, ତରୁଣ ପ୍ରାଣର ସ୍ୱାଭାବିକ ଉଚ୍ଛ୍ୱାସର ଅବାଧ ଗତି, ବିପଦକୁ ତାଚ୍ଛଲ୍ୟ କରିବାର ଓ ସମ୍ମୁଖୀନ ହେବାର ସାହସ, ତରୁଣ-ତରୁଣୀର ପାରସ୍ପରିକ ତ୍ୟାଗ ଓ ସମର୍ପଣ, ଓ ବୟସ୍କମାନଙ୍କର ଶୁଷ୍କ, ନିରସ, ଛନ୍ଦୋଗତାମୟ ଜୀବନକୁ ଘୃଣା କରି ସ୍ୱାଭାବିକ ଅନୁଭୂତିଚାଳିତ ଏକ ଆଦର୍ଶ ଜୀବନଯାପନ ପାଇଁ

ଚେଷ୍ଟା। ରୋମାନ୍ସ ବା ରୋମାଣ୍ଟିସିଜମ୍ ଶବ୍ଦରେ ଏହିସବୁ ଓ ଆଉରି ଅନେକ ଆନୁଷଙ୍ଗିକ ବ୍ୟଞ୍ଜନା ରହିଛି। ରୋମାନ୍ସ କହିଲେ କେବଳ ଯୌନମିଳନ ବା ସେଥିପାଇଁ ପ୍ରଯତ୍ନ ବୋଲି ବୁଝିବା ସତ୍ୟର ଅପଳାପ। ବସ୍ତୁତଃ ରୋମାଣ୍ଟିସିଜମ୍ ଆମ୍ଭମାନଙ୍କୁ ପାର୍ଥିବ ସ୍ଥୂଳତାରୁ ମାନସିକ ଲୋକର ସୂକ୍ଷ୍ମ ରହସ୍ୟ ଓ ଆଦର୍ଶ ଆଡ଼କୁ ଘେନିଯାଏ। ସେହି ଲୋକର ଶକୁନ୍ତଳା କଣ୍ୱ-ଆଶ୍ରମର ଗଛଲତାର ସାଥୀ, ସେଠି ଆମ୍ଭମାନେ ଶୁଣୁ ବିରହୀ ଯକ୍ଷର ମର୍ମ-ଭଙ୍ଗା ବିଳାପ, ସେଠି ଦେଖୁଁ ସମ୍ରାଟ୍ ସାଜାହାନ୍ ଓ ନରସିଂହ ଦେବଙ୍କ ସ୍ୱପ୍ନଲୋକରୁ ଉଦ୍‌ଭବ ହେଉଛି ତାଜମହଲ ଓ କୋଣାର୍କ।

ୟୁରୋପରେ ସଭ୍ୟତା ନାଗରିକ ଅର୍ଥାତ୍ ନଗରକେନ୍ଦ୍ରିକ। ଏହି ନାଗରିକ ସଭ୍ୟତା ପୁଣି ପୁସ୍ତକାନ୍ଧ ଖ୍ରୀଷ୍ଟୀୟ ଧର୍ମଯାଜକମାନଙ୍କର ତର୍ଜନୀ-ନିର୍ଦ୍ଦେଶରେ ଶତ ଶତ ବର୍ଷ ଧରି ନିଜକୁ ଅନ୍ଧ କରି ରଖିଥିଲା। ସେ ସଭ୍ୟତା ଦୃଶ୍ୟମାନ ପ୍ରକୃତିରେ କିଛି ସୌନ୍ଦର୍ଯ୍ୟ ଦେଖିପାରୁନଥିଲା; ପାର୍ଥିବ ଜୀବନକୁ ସେ ଦେଖୁଥିଲା। ଆଦାମ ଓ ଇଭ୍‌ର ପ୍ରାଥମିକ ପାପର ଅଭିଶପ୍ତ ଫଳ ବୋଲି। ହେଲ୍ ବା ନରକର ଭୟହିଁ ଜୀବନକୁ ନିୟନ୍ତ୍ରିତ କରୁଥିଲା; ପୃଥିବୀ ଥିଲା ଭୂମଧ୍ୟସାଗରର ଦୁଇ କୂଳରେ ଥିବା କେତୋଟି ମାତ୍ର ଦେଶ, ମାନବ ଜୀବନ ଥିଲା ସଂକୀର୍ଣ୍ଣ, ନିରାନନ୍ଦ। ଷୋଡ଼ଶ ଶତାବ୍ଦୀରେ ତୁର୍କମାନଙ୍କ ଅତ୍ୟାଚାର ଫଳରେ ବହୁ ପୁରାତନ ଓ ବିସ୍ମୃତ ଅଖ୍ରୀଷ୍ଟୀୟ ଗ୍ରୀକ୍ ସଭ୍ୟତାର ସାହିତ୍ୟ, ଦର୍ଶନ ଓ କବିତା ସହସା ମଧ୍ୟଯୁଗୀୟ ୟୁରୋପର ମନଲୋକରେ ଆପେ ଆପେ ପଶି, ଏକ ବିରାଟ ଆଲୋଡ଼ନ ସୃଷ୍ଟି କଲା। ଏହାରି ନାମ ରେନେସାଁ ବା ନବ-ଜୀବନ। ଆମ୍ଭେମାନେ ଆଜି ଯାହାକୁ ଆଧୁନିକ ସଭ୍ୟତା ବୋଲି ଧରୁଛୁଁ ତା'ର ଆରମ୍ଭ ପ୍ରକୃତରେ ଏଇଠାରୁ। ଗ୍ରୀକ୍‌ମାନେ ଥିଲେ ରୂପପ୍ରେମୀ ଜାତି, ସେମାନେ ପୃଥିବୀ ଓ ପ୍ରକୃତିକୁ ଗଭୀର ଭାବରେ ଭଲପାଉଥିଲେ। ସେମାନଙ୍କର ଚିନ୍ତା ଥିଲା ଭୀତିହୀନ, କର୍ମ ଥିଲା ଦ୍ୱନ୍ଦ୍ୱଶୂନ୍ୟ ଓ ସାହସିକ, ସତ୍ୟ ପାଇବାକୁ ସେମାନଙ୍କର ଥିଲା ଅକ୍ଲାନ୍ତ ଚେଷ୍ଟା। ଷୋଡ଼ଶ ଶତାବ୍ଦୀରେ ୟୁରୋପ ଏ ପ୍ରକାର ସଭ୍ୟତାର ସଂପର୍କରେ ଆସି, ଫିଙ୍ଗିଲା ଧର୍ମାନ୍ଧ ବିଚାରହୀନ ପୁରୋହିତର ତର୍ଜନୀ-ନିର୍ଦ୍ଦେଶ; ଉଠିଗଲା ନରକର ଭୟ, ଚିନ୍ତା ହେଲା ନିର୍ଭୀକ; ସେ ଭଲ ପାଇବାକୁ ଆରମ୍ଭ କଲା ଇହଜୀବନ ଓ ପୃଥିବୀକୁ। ମନୁଷ୍ୟ ଭାବରେ ମନୁଷ୍ୟର ମୂଲ୍ୟ ବଢ଼ିଲା, ପୃଥିବୀ ହେଲା କ୍ରମେ ବିସ୍ତୃତ, ଏକଦିଗରେ ଆମେରିକା ଓ ଅନ୍ୟଦିଗରେ ଭାରତ, ଚାଇନା, ଜାପାନ ସଙ୍ଗେ ବୋଇତଯାତ୍ରାର ଯୋଗରେଖା ପଡ଼ିଲା, ମାନବିକ ଜ୍ଞାନ ଓ ଅନୁଭୂତିର ଦିଗ୍‌ବଳୟ କ୍ରମେ ବଢ଼ିବାକୁ ଲାଗିଲା।

ୟୁରୋପର ଏ ଅଭିନବ ଚୈତନ୍ୟର ସଦ୍ୟଫଳ ଆମେ ଦେଖୁଁ ପ୍ରୋଟେଷ୍ଟାଣ୍ଟ୍ ଆନ୍ଦୋଳନରେ, ଫରାସୀ ରାଷ୍ଟ୍ର-ବିପ୍ଳବରେ, ଯୁକ୍ତରାଷ୍ଟ୍ରର ସ୍ୱାଧୀନତା ସଂଗ୍ରାମରେ ଏବଂ ଇଂଲଣ୍ଡ, ଜର୍ମାନୀ ଓ ଫ୍ରାନ୍ସର ସାହିତ୍ୟମାନଙ୍କର ନୂତନ ଚିନ୍ତା-ପ୍ରବାହରେ।

ଏ ସମସ୍ତ ଆଲୋଡ଼ନ ଭିତରେ ଆମ୍ଭେମାନେ କେତେକ ମୁଖ୍ୟ ଧାରା ଦେଖିବାକୁ ପାଉଁ। ଏହିସବୁର ମିଳିତ ବ୍ୟଞ୍ଜନାକୁହିଁ ପଣ୍ଡିତମାନେ ରୋମାଣ୍ଟିସିଜମ୍ କହନ୍ତି। ମୁଖ୍ୟ

ଭାବଧାରାଗୁଡ଼ିକ ଏହି –

(୧) ସୃଷ୍ଟି ଓ ପ୍ରକୃତିରେ ରହସ୍ୟର ସନ୍ଧାନ। ଷୋଡ଼ଶ ଶତାବ୍ଦୀ ପରେ ମନୁଷ୍ୟ ପ୍ରକୃତିର ରୂପରେ କେବଳ ମୁଗ୍ଧ ହୋଇନି; ସେହି ରୂପ ତଳେ ସେ ବିବିଧ ଦର୍ଶନର ସନ୍ଧାନ ପାଇଛି। ମନୁଷ୍ୟର କଳ୍ପନା ଜଡ଼ ପ୍ରକୃତିକୁ ଜୀବନ୍ତ ବୋଲି ଧରିନେଇଛି। ଫଳରେ ଭୌତିକ ଓ ଆଧିଭୌତିକର ପ୍ରଭେଦ ଲୋପ ପାଇଛି ଏବଂ ସେଥିଯୋଗୁଁ ଆମେ ଓ୍ୟାଡ଼ସ୍-ଓ୍ୱାର୍ଥଙ୍କ କବିତାର ପ୍ରକୃତି ଭିତରେ ଅତିପ୍ରାକୃତ ଓ ଶେଲି, କଲେରିଜ୍ ପ୍ରଭୃତିଙ୍କ କବିତାରେ ଅତିପ୍ରାକୃତ ଆସି ପ୍ରାକୃତ ସହିତ ମିଶିବାର ଦେଖୁଁ।

(୨) ମନୁଷ୍ୟ ଭାବରେ ମନୁଷ୍ୟର ସମ୍ମାନ। ବିଶେଷତଃ, ପ୍ରକୃତିର ସନ୍ନିଧିରେ ଯେଉଁମାନେ ବଞ୍ଚନ୍ତି, ଅର୍ଥାତ୍ କୃଷକ, ଗୋପାଳକ ଇତ୍ୟାଦି। ପୂର୍ବେ ସାଧାରଣତଃ ରାଜା, ରାଣୀ, ରାଜପୁତ୍ର, ରାଜକନ୍ୟାଙ୍କୁ ନେଇ କାବ୍ୟ ମହାକାବ୍ୟ ଲେଖାହେଉଥିଲା। ବର୍ତ୍ତମାନଠୁ ଦରିଦ୍ର ଜନସାଧାରଣ ସାରସ୍ୱତ ମନ୍ଦିରରେ ପ୍ରବେଶାଧିକାର ପାଇଲେ। ଫରାସୀ ରାଷ୍ଟ୍ରବିପ୍ଳବଠାରୁ ଋଷୀୟ ବିପ୍ଳବ ପର୍ଯ୍ୟନ୍ତ ୟୁରୋପୀୟ ଇତିହାସ ଏହି ଭାବଧାରାର ରାଜନୈତିକ ବିକାଶ ମାତ୍ର ବୋଲି ଧରିବାକୁ ହେବ।

(୩) ଚିନ୍ତାର ଅକୁତୋଭୟତା। ଏଯାବତ୍ ମନୁଷ୍ୟ ପ୍ରଶ୍ନ ପଚାରିବାକୁ ଓ ସତ୍ୟ କଥା କହିବାକୁ ଭୟକରୁଥିଲା। ସତ୍ୟକଥା କହିବାକୁ ଯାଇ ଗାଲିଲିଓ ଜେଲ୍ ଭୋଗିଥିଲେ। ରସାୟନଶାସ୍ତ୍ରର ଚର୍ଚ୍ଚା ସୟତାନୀ ବିଦ୍ୟା ବୋଲି ଘୃଣିତ ହେଉଥିଲା। କ୍ରମେ କିନ୍ତୁ ମାନବିକ ଚିନ୍ତାରେ ଶାସ୍ତ୍ର-ବାଧା ଉଠିବାକୁ ଲାଗିଲା। ଆଧୁନିକ ବିଜ୍ଞାନର ଉଦ୍ଭବ ହେଲା। ଶେଷରେ ଆମେ ଆଜି ଆଣବିକ ବୋମା ପାଇ, ନାଗ-ଚୁଚୁନ୍ଦ୍ରା ଅବସ୍ଥାରେ ପହଞ୍ଚିଛୁ। ଶିବ ଦ୍ୱିତୀୟବାର ନୀଳକଣ୍ଠ ହୋଇ ଏ କାଳକୂଟ ଗଳାଧଃକରଣ ଯଦି ନ କରନ୍ତି, ତେବେ ମାନବସଭ୍ୟତାର ଭବିଷ୍ୟତ ଅନ୍ଧକାର ବୋଲି ଧରିବାକୁ ହେବ।

ଥାଉ ସେ କଥା। ଆମର ବର୍ତ୍ତମାନ ଦେଖିବାର କଥା, ଓଡ଼ିଆ ସାହିତ୍ୟରେ ରୋମାଣ୍ଟିସିଜ୍‌ମର ଏହି ମୁଖ୍ୟ ଭାବଧାରାଗୁଡ଼ିକ କେତେ ପରିମାଣରେ ଦେଖାଦେଇଛି। ସେଇଥିପାଇଁହିଁ ଏହି ଦୀର୍ଘ ଅବତାରଣା। ମୁଁ ଗୋଟି ଗୋଟି କରି ବିଚାର କରେଁ।

ପ୍ରଥମ ହେଲା, ପ୍ରକୃତିର ସୌନ୍ଦର୍ଯ୍ୟ ଓ ରହସ୍ୟ ଉପଲବ୍ଧି।

ସଂସ୍କୃତ ସାହିତ୍ୟରେ ପ୍ରକୃତିର ଯେପରି ମନୋଜ୍ଞ ଚିତ୍ର ଏବଂ ପ୍ରକୃତି ଓ ମନୁଷ୍ୟ ଭିତରେ ପାରସ୍ପରିକ ମଧୁର ପ୍ରତିକ୍ରିୟା ଦେଖିବାକୁ ମିଳେ, ପୃଥିବୀର କୌଣସି ପ୍ରାଚୀନ ସାହିତ୍ୟରେ ତାହା ଦେଖିବାକୁ ମିଳେନା। ବେଦର ସ୍ତୋତ୍ରସବୁ ପ୍ରକୃତିକୁ ଆଶ୍ରୟ କରି ଲିଖିତ। ଉପନିଷଦ୍‌ର ଅଧିଷ୍ଠାନ ହେଲା ପ୍ରକୃତି କୋଳରେ। ବାଲ୍ମୀକି, ବ୍ୟାସ, ଭାସ, କାଳିଦାସ ଓ ଭବଭୂତିଙ୍କ କାବ୍ୟକବିତାରେ ପ୍ରକୃତି ଓତପ୍ରୋତ ଭାବରେ ମିଶିରହିଛି। ଜଗତରେ କେତେ କବି କେତେ କାବ୍ୟ ଲେଖିଗଲେଣି; କିନ୍ତୁ ମୌସୁମୀ ମେଘ ଓ ହିମାଳୟ କାହା କାବ୍ୟର ନାୟକ ହୋଇଛି, ଯେପରି ହୋଇଛି, ଭାରତର କାଳିଦାସଙ୍କ କାବ୍ୟରେ ?

ପ୍ରାଚୀନ ଓଡ଼ିଆ ସାହିତ୍ୟରେ କିନ୍ତୁ ପ୍ରକୃତି ପ୍ରତି ଏହି ଉଦାର ଅନୁରାଗ ଆମ୍ଭେମାନେ ଦେଖିବାକୁ ପାଉନା। ଉତ୍କଳର ପ୍ରାକୃତିକ ଶୋଭା ଅତୁଳନୀୟ। ବଣ, ପାହାଡ଼, ବିଲ, ପ୍ରାନ୍ତର, ନଦୀ, ପ୍ରପାତ, ସମୁଦ୍ର, ସିକତାର ସମାବେଶରେ ଓଡ଼ିଶା ଏକ ଚିତ୍ର ପରି ପ୍ରତୀୟମାନ ହୁଏ। କିନ୍ତୁ ସାରଳା, ଉପେନ୍ଦ୍ର, ଅଭିମନ୍ୟୁଙ୍କ କାବ୍ୟ-କବିତାରେ ଏ ଉତ୍କଳ ଆମ୍ଭେମାନେ ଦେଖିବାକୁ ପାଉନା। ସେ ଉତ୍କଳ ଓଡ଼ିଆ ସାହିତ୍ୟରେ ଫୁଟିଛି, ପ୍ରଥମେ ରାଧାନାଥଙ୍କ ଲେଖନୀମୁନରେ। ରାଧାନାଥଙ୍କ ଯାଦୁ ଲେଖନୀରେ ଲୁଣିଆ, କାଦୁଆ ଚିଲିକା ଆଜି ଶିକ୍ଷିତ ଉତ୍କଳୀୟମାନଙ୍କର ସ୍ୱପ୍ନରାଜ୍ୟରେ ପରିଣତ ହୋଇଛି। ତାଙ୍କ ମୃତସଂଜୀବନୀ ଫଳରେ ଓଡ଼ିଶାର ପ୍ରକୃତି ଓ ଇତିହାସ ମୃତ୍ୟୁରୁ ଉଦ୍ଧାର ପାଇ, ଅମରତ୍ୱ ଲାଭକରିଛି।

ରାଧାନାଥ ପ୍ରକୃତିର ଇନ୍ଦ୍ରିୟଗ୍ରାହ୍ୟ ରୂପର ଉପାସକ ଥିଲେ। ସେ ହିମାଳୟ ନିକଟରେ ଠିଆହୋଇ କେବଳ ଦେଖିଲେ 'ଶୃଙ୍ଗୋପରି ଶୃଙ୍ଗ, ଶୃଙ୍ଗ ତଦୁପରି, ନୀଳବ୍ୟୋମପଟେ ଚିତ୍ର ହେଲା ପରି'; ଯଦିଚ ମଧୁସୂଦନ 'ହିମାଚଳେ ଉଦୟୋତ୍ସବ' ଦେଖି ତାଙ୍କର 'ଋଷି-ପ୍ରାଣେ ଦେବାବତରଣ'ର ଅନୁଭୂତି ଆସିଛି। ପ୍ରକୃତି ପଛରେ ଏକ ରହସ୍ୟମୟ ମହାସତ୍ତାର ଉପଲବ୍‌ଧି ସେ ବରାବର କରିଆସିଛନ୍ତି।

ରାଧାନାଥଙ୍କ କାବ୍ୟମାନଙ୍କରେ ଆମ୍ଭେମାନେ ଭୌତିକ ଓ ଆଧିଭୌତିକର ମିଳନ ମଧ ଦେଖୁଁ। 'ପାର୍ବତୀ'ରେ କୌଶଲ୍ୟାର ପ୍ରେତର ଆବିର୍ଭାବ, 'ଉଷା' ଓ 'ଯଯାତି' କାବ୍ୟମାନଙ୍କରେ ଦେବଦେବୀ ଆସି ନରନାରୀଙ୍କ ସହ ସହଯୋଗ କରିଥିବାରୁହିଁ କବିଙ୍କର କାବ୍ୟପୂର୍ତ୍ତି ସମ୍ଭବ ହୋଇଛି; ନଚେତ୍ ଏ ସବୁ କାବ୍ୟର ଗଳ୍ପାଂଶ ଅସମ୍ପୂର୍ଣ୍ଣ ରହିଥାନ୍ତା। ଅବଶ୍ୟ ଏ ପ୍ରକାର ଆଧିଭୌତିକ ଉପାଦାନ ମିଶେଇଥିବାରୁ କାବ୍ୟଗୁଡ଼ିକର ଚମତ୍କାରିତା ବଢ଼ିଛି ଏବଂ ସାଧାରଣ ପାଠକମାନଙ୍କ ନିକଟରେ ରାଧାନାଥୀ କବିତା ପ୍ରିୟ ହେବାର ଏ ଏକ ପ୍ରଧାନ କାରଣ। କିନ୍ତୁ ଆଧିଭୌତିକ ଉପାଦାନ ଆମ ସାହିତ୍ୟରେ ବହୁ କାଳରୁ ପ୍ରବେଶ ଲାଭ କରି ଆସିଛି। କେବଳ ଭଂଜଙ୍କ 'ଲାବଣ୍ୟବତୀ' ଦେଖିନେଲେ ପାଠକମାନେ ଜାଣିବେ ଯେ, ସେ କାବ୍ୟଟିର ଗଳ୍ପାଂଶ ଆଧିଭୌତିକ କ୍ରିୟାମାନଙ୍କ ଯୋଗୁଁହିଁ ସମ୍ଭବ ହୋଇଛି।

ବର୍ତ୍ତମାନ ଦ୍ୱିତୀୟ ଭାବଧାରାର କଥା ବିଚାର କରାଯାଉ। ଏଟି ହେଲା ମନୁଷ୍ୟ ଭାବରେ ମନୁଷ୍ୟ ପ୍ରତି ସମ୍ମାନ ପ୍ରଦର୍ଶନ। ପୂର୍ବେ କହିଛି ଯେ, ପ୍ରାଚୀନ ସାହିତ୍ୟମାନଙ୍କରେ ଆମ୍ଭେମାନେ କେବଳ ରାଜବଂଶୀୟ ପୁରୁଷ ସ୍ତ୍ରୀ, ବଡ଼ ବଡ଼ ବୀର ଓ ତାଙ୍କ ରୂପସୀ ପ୍ରଣୟପାତ୍ରୀମାନଙ୍କର ବର୍ଣ୍ଣନା ଦେଖୁଁ। କେବଳ ଓଡ଼ିଆ ସାହିତ୍ୟ ନୁହେଁ, ପୃଥିବୀର ସମସ୍ତ ସାହିତ୍ୟ ପ୍ରତି ଏହା ସତ୍ୟ। ସାଧାରଣ ନରନାରୀର ଦୁଃଖ ସୁଖ କାବ୍ୟ-କବିତାରେ ପ୍ରକାଶିତ ହେବାର ଉପଯୁକ୍ତ ବିବେଚିତ ହେଉନଥିଲା। ସେ ସୁଖ-ଦୁଃଖର ପରିଚୟ ଆମେ ଏବେ ପାଉ ଗ୍ରାମ୍ୟ କବିତାମାନଙ୍କରେ। ଏଗୁଡ଼ିକ ଅଧିକାଂଶ ସ୍ତ୍ରୀମାନଙ୍କଦ୍ୱାରା ରଚିତ ହୋଇ ମୁଖେ ମୁଖେ ପ୍ରଚାରିତ ହୋଇଆସିଛି।

କିନ୍ତୁ ଷୋଡ଼ଶ ଶତାବ୍ଦୀରୁ 'ସାଧାରଣ ମନୁଷ୍ୟ'ର ନବଯୁଗ ଆରମ୍ଭ ହୋଇଛି।

ଶସ୍ତ୍ର, ଶାସ୍ତ୍ର, ସମାଜର ସହସ୍ର ବଂଧନ କାଟି କାଟି ମଧ୍ୟ, ଏବେଯାଏଁ ସେ ମୁଣ୍ଡ ଟେକି ପାରିନାହିଁ। ତେବେ ଆଗ ଚିନ୍ତା, ପରେ କର୍ମ। ସାହିତ୍ୟର ଚିନ୍ତା-ରାଜ୍ୟରେ ସାଧାରଣ ମନୁଷ୍ୟର ଅଧିକାର ଆଜି ସର୍ବମୟ। ସେଠି ରାଜା, ପୁଂଜିପତି, ଧର୍ମଯାଜକର ସ୍ଥାନ ଆଉ ନାହିଁ କହିଲେ ଚଳେ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀକୃଷ୍ଣଙ୍କ ଜୀବନର ଘଟଣାବଳୀ ଅନେକ ସ୍ଥାନ ମାଡ଼ିବସିଛି। ଶ୍ରୀକୃଷ୍ଣ ସାଧାରଣ ଗଉଡ଼ ଘରେ ପାଳିତ ହୋଇଥିଲେ ଏବଂ ମଥୁରାଗମନ ପର୍ଯ୍ୟନ୍ତ ସେ ସାଧାରଣ ଗ୍ରାମ୍ୟ ଗଉଡ଼ ପିଲାଏ ଯେପରି ଜୀବନ ଯାପନ କରନ୍ତି ସେହିପରି ଜୀବନ ଯାପନ କରିଥିଲେ। 'କୋଇଲି', 'ଗୋପୀଭାଷା,' 'ଚଉତିଶା' ପ୍ରଭୃତିରେ ଏବଂ ଅଭିମନ୍ୟୁଙ୍କ କାବ୍ୟ ଓ ଗୋପାଳକୃଷ୍ଣଙ୍କ କବିତାରେ ଆମେ କୃଷ୍ଣଚରିତ ଦେଇ ସାଧାରଣ ଗ୍ରାମ୍ୟ ଗୃହସ୍ଥ ଓ ନରନାରୀଙ୍କର ଜୀବନର ସୁଖ-ଦୁଃଖର ଚିତ୍ର କିଛି କିଛି ପାଉ। ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ଯାଦୁ ଲେଖନୀ, ଜନନୀ ଯଶୋଦାଙ୍କର ଗଭୀର ବାତ୍ସଲ୍ୟ ଭାବକୁ ସାର୍ବଜନୀନ ଭାବରେ ହୃଦୟସ୍ପର୍ଶୀ କରିପକାଇଅଛି। 'ବିଦଗ୍ଧ ଚିନ୍ତାମଣି'ର କଳାମାଣିକ ଛାନ୍ଦରେ ଯଶୋଦା ବନଚାରୀ କୃଷ୍ଣ ପାଇଁ ଯେଉଁ ଅନୁଶୋଚନା କରୁଛନ୍ତି, ତାକୁ ପଢ଼ି କେଉଁ ଓଡ଼ିଆ-ମା'ର ଆଖି ଛଳଛଳ ନ ହେବ?

କିନ୍ତୁ ଶ୍ରୀକୃଷ୍ଣ ବା ଯଶୋଦା 'ସାଧାରଣ ମନୁଷ୍ୟ'ର ପ୍ରତୀକ ହୋଇ ନ ପାରନ୍ତି। ସପ୍ତଦଶ ଶତାବ୍ଦୀରୁ କବି ଓ ଭାବୁକମାନେ ଯାହାର ଦୁଃଖ ସୁଖ, ଯାହାର ଅଭାବ-ଅଭିଯୋଗର ବର୍ଣ୍ଣନାରେ ତତ୍ପର, ସେ ହେଉଛି ଆଜିର ଚିର ନିର୍ଯାତିତ ଦରିଦ୍ର ଶ୍ରେଣୀର ଶ୍ରମିକ। ପୁରୁଣା କଥାରେ କହିଲେ ସେ ହେଉଛି ଶୂଦ୍ର। ଏହି ଶୂଦ୍ର ଆଜି ଶାସନ-ରଶ୍ମି ହାତକୁ ନେବାକୁ ଚାହେ ଏବଂ କବି ଓ ଭାବୁକ ଏହି ବହୁନିର୍ଯ୍ୟାତିତର ପୃଷ୍ଠପୋଷକ। ପ୍ରାଚୀନ ସମାଜ ବା ସାହିତ୍ୟରେ ଏ ଶୂଦ୍ରର ସ୍ଥାନ ନ ଥିଲା। ଯେଉଁ ମହାକବି ନିର୍ବାସିତ ଯକ୍ଷର ବିରହ-ଦୁଃଖରେ ବ୍ୟାକୁଳ ହୋଇଉଠିଥିଲେ, ସେ 'ରଘୁବଂଶ'ରେ ଶୂଦ୍ରକକୁ ବ୍ରାହ୍ମଣୋଚିତ ତପସ୍ୟା କରିବା ଅପରାଧରେ ହତ୍ୟା କରାଇଅଛନ୍ତି। ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏ ଶୂଦ୍ରର ସ୍ଥାନ ବା କାହୁଁ ଆସିବ? ରାଧାନାଥ ମଧୁସୂଦନଙ୍କ ସାହିତ୍ୟରେ ବି ତାର ସ୍ଥାନ ନାହିଁ। କେବଳ ଫକୀରମୋହନଙ୍କ ଅନୁପମ ଉପନ୍ୟାସାବଳିରେ ଓଡ଼ିଆ ସମାଜର ନିମ୍ନ ଶ୍ରେଣୀ ନିଖୁଣ ଭାବରେ ଚିତ୍ରିତ ହେବାର ଆମ୍ଭେମାନେ ଦେଖୁଁ। ହୁଏତ ସମଗ୍ର ଭାରତୀୟ ସାହିତ୍ୟରେ ଏ ଚିତ୍ର ଅତୁଳନୀୟ। ଫକୀରମୋହନଙ୍କ କୃତିତ୍ୱର ଆଲୋଚନା ଯେପରି ହେବାର କଥା, ସେପରି ଏପର୍ଯ୍ୟନ୍ତ ହୋଇନାହିଁ। ଗତ ଦଶବର୍ଷ ଭିତରେ କିନ୍ତୁ ଓଡ଼ିଆ ସାହିତ୍ୟରେ ରାଜନୈତିକ ନରନାରୀ ପ୍ରବେଶାଧିକାର ପାଇଛନ୍ତି। ସଚ୍ଚିଦାନନ୍ଦ ପ୍ରଭୃତି ସାମ୍ୟବାଦୀ କବିମାନେ ଅବହେଳିତମାନଙ୍କ ସମ୍ବନ୍ଧରେ ଲେଖିଆସୁଛନ୍ତି। କିନ୍ତୁ ଖାଣ୍ଟି ଅବହେଳିତକୁ କାବ୍ୟ-କବିତାର ନାୟକ-ନାୟିକା କରିବା ଯେପରି ହେବାର କଥା ତାହା ହୋଇନାହିଁ।

ତୃତୀୟ ଭାବଧାରା ହେଲା ଚିନ୍ତାର ଅକୁତୋଭୟତା। ଆମ୍ଭମାନଙ୍କୁ ମାନିବାକୁ ହେବ ଯେ, ଏ ଭାବଧାରା ଓଡ଼ିଆ ସାହିତ୍ୟରେ ଏକାନ୍ତ କ୍ଷୀଣ। କ୍ଷୀଣ କାହିଁକି;

ନାହିଁ କହିଲେ ଚଳେ। ଆଧୁନିକ ଓଡ଼ିଆସମାଜ ଓ ସାହିତ୍ୟରେ ଚାରିଆଡ଼େ ବିଚାରହୀନତା, ଗତାନୁଗତିକତା ଓ ଅନ୍ଧ ଅନୁକରଣରେହିଁ ଭର୍ତ୍ତି। ଅଧିକାଂଶ ଲେଖକ ଲେଖିକା କେବଳ ବଙ୍ଗଳାକୁ ଅନୁକରଣ କରି ଆତ୍ମପ୍ରସାଦ ଅନୁଭବ କରୁଛନ୍ତି। ନିଜର ପ୍ରାଚୀନ ସାହିତ୍ୟ ଓ ପୁରାତନ ଭାଷାର ନିଜସ୍ୱ ଚରିତ୍ର ଆଲୋଚନା କରିବାପାଇଁ ସେମାନଙ୍କର ଶକ୍ତି ବା ସ୍ପୃହା ନାହିଁ। ଓଡ଼ିଆ ଘରର ଅଳଙ୍କାର ଓ ଶାଢ଼ି ଆଜି ପ୍ରସିଦ୍ଧା ଅଭିନେତ୍ରୀମାନେ ଗ୍ରହଣ କରି ସୁଖ ଅନୁଭବ କରୁଥିଲାବେଳେ, ଶିକ୍ଷିତା ଓଡ଼ିଆ ସ୍ତ୍ରୀମାନେ କଲିକତୀ ଜହ୍ଲୁରୀମାନଙ୍କର ପ୍ରାଣହୀନ, ନାମହୀନ, କୁଦର୍ଶନ ଷ୍ଟାଇଲ୍‌ର ଭୂଷଣମାନଙ୍କୁ ଲେଟେଷ୍ଟ ଫାସନ୍‌ରୂପେ ଗ୍ରହଣ କରି ଆଦର କରୁଛନ୍ତି। ଖାଣ୍ଟି ଓଡ଼ିଆ ରନ୍ଧନ ପ୍ରଣାଳୀ ଯାହା କି ଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀ ଦେବୀଙ୍କ କଲ୍ୟାଣମୟ ହସ୍ତ ଏପର୍ଯ୍ୟନ୍ତ ବଞ୍ଚେଇରଖିଛି, ତାହା ଯେପରି ମୁଖରୋଚକ, ସେହିପରି ବିଜ୍ଞାନସମ୍ମତ ଓ ସ୍ୱାସ୍ଥ୍ୟକାରକ। କିନ୍ତୁ କୌଣସି ଓଡ଼ିଆ ଘରେ ସେ ତରକାରି ବା ପିଠାପଣା ଆଜି ଦେଖିବାକୁ ମିଳେନା। ଓଡ଼ିଆଣୀମାନେ ସେ ରନ୍ଧନ ପ୍ରଣାଳୀ ପାସୋରି ଦେଲେଣି। ବଙ୍ଗାଳୀ ଅନୁକରଣରେ ମିଶା ସୋରିଷ ତେଲ ଓ ପୁରୀ, ଲୁଚି, ଭଜାଭଜିର ଅତ୍ୟାଚାରରେ ଓଡ଼ିଆ ଜାତି ଆଜି କ୍ରମେ ହୀନସ୍ୱାସ୍ଥ୍ୟ ଓ ରୋଗପ୍ରବଣ ହୋଇପଡୁଛି। ଏ ଦିଗରେ ଓଡ଼ିଆ ସାହିତ୍ୟିକ, ଲେଖକ ଓ କବିମାନଙ୍କର କର୍ତ୍ତବ୍ୟ ଅଛି ବୋଲି ମୁଁ ମନେକରେ। ସେମାନେ ନିର୍ଭୀକ ଭାବରେ ଦେଶବାସୀର ବେଶଭୂଷା, ପାନ-ଭୋଜନ, କଥୋପକଥନ ଓ ଲେଖାଲେଖିରେ ଖାଣ୍ଟି ଓଡ଼ିଆତ୍ୱର ପ୍ରଚାର କରନ୍ତୁ। ବିଶେଷଭାବରେ ଅନୁରୋଧ, ସେମାନେ ଖାଣ୍ଟି ଓଡ଼ିଆ ଲେଖିବାକୁ ଧର୍ମ ବୋଲି ମନେକରନ୍ତୁ।

## ସପ୍ତମ ଅଧ୍ୟାୟ

## ନୂତନ ସାହିତ୍ୟର ନୂତନତ୍ୱ*

ପ୍ରିୟ ସଭ୍ୟବୃନ୍ଦ,

ଆପଣମାନେ ଏ ସଭାରେ ବକ୍ତୃତା ଦେବାକୁ ସୁଯୋଗ ଦେଇଥିବାରୁ ମୁଁ ଯେଉଁ ଧନ୍ୟବାଦ ଦେବାର କଥା, କେବଳ ଶିଷ୍ଟାଚାର ନୁହେଁ, ତାହା ମୋର ଅନ୍ତରର ବାଣୀ। କାରଣ ଗୋପାଳକୃଷ୍ଣଙ୍କ ଜନ୍ମସ୍ଥାନ ପାରଳାଖେମୁଣ୍ଡି ମୋର ତୀର୍ଥସ୍ଥାନ। ଆପଣମାନଙ୍କ ନିମନ୍ତ୍ରଣ ଯୋଗୁଁ ଏହି ତୀର୍ଥସ୍ଥାନରେ ମୁଁ ଆଜି ପହଁଚି ପାରିଛି। ଏ ସ୍ଥାନର ଧୂଳି ମୋର ଶିରୋଧାର୍ଯ୍ୟ; କାରଣ ଏହି ସ୍ଥାନର ବଣ, ପାହାଡ଼,

* ପାରଳାଖେମୁଣ୍ଡି ମହାରାଜା କଲେଜ ଓଡ଼ିଆ ସମାଜର (୧୯୪୧) ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଅଭିଭାଷଣ।

ନଦୀ, ପ୍ରାନ୍ତର, ନର ନାରୀ ଦିନେ ଏକ କବି-ପ୍ରତିଭାକୁ ପରିପୋଷଣ କରିଥିଲେ, ଯାହାର କାନ୍ତ ପଦାବଳି ଆଜି ଲକ୍ଷ ଲକ୍ଷ ଓଡ଼ିଆ ପ୍ରାଣରେ ସୁଧାଧାରା ପରି କ୍ଷାମ କରେ। ଏହି ସ୍ଥାନର ବଂଶଧାରା ବା ମହେନ୍ଦ୍ରତନୟା ସେହି କଳ୍ପନାକୁଶଳ କବିଙ୍କି ଯମୁନା ପୁଳିନ ଓ ଏହି ସ୍ଥାନର କେଉଁ କିଶୋର କିଶୋରୀ, ରାଧା-କୃଷ୍ଣର ଚିତ୍ରକୁ ଜୀବନ୍ତ କରିବାରେ ସାହାଯ୍ୟ କରିଥିବେ ନିଶ୍ଚୟ। ମାନବ ପ୍ରାଣର ଯେଉଁ ସନାତନ ଅନୁଭୂତିମାନଙ୍କର ରମଣୀୟ ଚିତ୍ର ସେ ତାଙ୍କ କବିତାରେ ଛାଡ଼ି ଯାଇଛନ୍ତି, ସେଗୁଡ଼ିକ କବିଙ୍କ ନିଜ ଜୀବନରେ ଏଇ ମାଟିଉପରେହିଁ ସ୍ତରେ ସ୍ତରେ ଅଭିନୀତ ହୋଇଥିବ। ଗତ ବହୁବର୍ଷ ଧରି ମୁଁ ଗୋପାଳକୃଷ୍ଣଙ୍କର ମୁଗ୍ଧ ସ୍ତାବକ। ତାଙ୍କ କବିତା ପଢୁ ପଢୁ ଅନେକବାର ହିଂସାରେ ଆତ୍ମା ଡାକିଉଠିଛି, 'ଓଃ, ଏ ଯାଦୁ ଲେଖନୀ ବିଧାତା ମତେ ଟିକିଏ ହେଲେ ଦିଅନ୍ତା!' ମୋର ସେହି ନମସ୍ୟ କବିଙ୍କ ଜନ୍ମପୀଠକୁ ଆସିବାର ସୁଯୋଗ ଦେଇଥିବାରୁ ମୁଁ ଆପଣମାନଙ୍କୁ ପୁଣି ଥରେ ଅନ୍ତରର ଧନ୍ୟବାଦ ଜଣାଉଅଛି।

ଇତିହାସ ଅନୁସାରେ ଗୋପାଳକୃଷ୍ଣ ଓ ରାଧାନାଥ ପ୍ରାୟ ଏକସମୟର ଲୋକ। କିନ୍ତୁ ସେମାନଙ୍କର ଯୁଗ ଭିନ୍ନ ଭିନ୍ନ। ଗୋପାଳକୃଷ୍ଣ ୧୮୬୨ରେ ପ୍ରାଣତ୍ୟାଗ କରିଥିଲେ। ସେତେବେଳକୁ ୬୦ବର୍ଷ କାଳ ଇଂରେଜ ରାଜତ୍ୱ ଉତ୍ତର-ଓଡ଼ିଶାରେ ପ୍ରତିଷ୍ଠିତ ହୋଇସାରିଲାଣି; ଗଞ୍ଜାମରେ ତାର ବହୁକାଳ ପୂର୍ବରୁ। ସେତେବେଳକୁ ରାଧାନାଥ ମାଟ୍ରିକ୍ୟୁଲେସନ ପାସ୍ କରି କଲିକତା ଗଲେଣି ପାଠ ପଢ଼ିବାକୁ। ଫକୀରମୋହନ ବାଲେଶ୍ୱରରେ ଶିକ୍ଷକତା ଆରମ୍ଭକଲେଣି। ହାସ୍ୟରସ-କବି ଯଦୁମଣି ଓ ଚମ୍ପୂକବି ବଳଦେବ ଜୀବନର ଅନ୍ତିମ ଦଶାରେ ପଦାର୍ପଣ କରି ମୃତ୍ୟୁକୁ ଯଥାକ୍ରମେ ଆଉ ୩ ଓ ୬ ବର୍ଷମାତ୍ର ଅପେକ୍ଷା କରୁଥିଲେ। ଯୁବକ ଭୀମ ଭୋଇ, ବାହ୍ୟଚକ୍ଷୁ ହରାଇ, ଭିତର ଚକ୍ଷୁରେ ରୂପହୀନ ବ୍ରହ୍ମଙ୍କର ରୂପ ଦେଖି ଦେଖି ଉଚ୍ଛ୍ୱସିତ କବିତାରେ ଅଲେଖ ଧର୍ମ ପ୍ରଚାର କରୁଥିଲେ, ରେଢାଖୋଲର କୌଣସି ନଗଣ୍ୟ ଗ୍ରାମରେ ଏବଂ ଜ୍ୟୋତିଷୀ ଚନ୍ଦ୍ରଶେଖର ଏକ ଅଜ୍ଞାତ ଜଗତରେ, ଜଗତ୍ ଆଡ଼କୁ ଆଖି ନ ପକାଇ, ଆଖି ରଖୁଥିଲେ ବ୍ୟୋମପଟର ଚିତ୍ରଶାଳା ଉପରେ। ଉତ୍କଳର ପ୍ରାଚୀନ ଯୁଗ ଓ ନବଯୁଗର ଏହି ସନ୍ଧିସ୍ଥଳର ଇତିହାସ ଅତ୍ୟନ୍ତ ଚିତ୍ତାକର୍ଷକ। ଭାରତର ଅନ୍ୟ ପ୍ରଦେଶମାନଙ୍କରେ ସମସାମୟିକ ଇତିହାସଠାରୁ ଏ ଇତିହାସ କମ୍ କୌତୂହଳୋଦ୍ଦୀପକ ବା ଶିକ୍ଷଣୀୟ ନୁହେଁ; କିନ୍ତୁ ଦୁଃଖର ବିଷୟ ଏ ଯୁଗର ଶୃଙ୍ଖଳାନ୍ୱିତ କାହାଣୀ ଏପର୍ଯ୍ୟନ୍ତ କେହି ହେଲେ ଲେଖିନାହାନ୍ତି।

କିନ୍ତୁ ଏକକାଳରେ ଦୁଇ ଯୁଗର ଏଇ ଯେ ସାକ୍ଷାତ ଆମେ ଦେଖୁଛୁ, ଏହାର ପ୍ରତିକ୍ରିୟା ଆମେ ପ୍ରାୟ ୫୦ ବର୍ଷ ହେଲା ଭୋଗିଲୁଣି। ମୁଁ ଭାବେ, ଆମେ ବର୍ତ୍ତମାନ ଆଉ ଗଡ୍ଡଳିକା ପ୍ରବାହ ପରି ମାଡ଼ି ନ ଯାଇ ଦଣ୍ଡେ ଠିଆହେବା, ଟିକିଏ ପଛକୁ ଅନେଇବା ଏବଂ ଟିକିଏ ଚିନ୍ତା କରିବା ଯେ, ୫୦ ବର୍ଷରେ ଆମେ ୫୦ ପାହୁଣ୍ଡ ଆଗକୁ ଆସିଛେ, କି ପଛକୁ ଯାଇଛେ, କି ଯେଉଁଠି ଥିଲେ ସେଇଠି ଅଛେ।

ପ୍ରାଚୀନ ଉତ୍କଳର ଯୋଗ୍ୟ ପ୍ରତିନିଧି ଚନ୍ଦ୍ରଶେଖରଙ୍କ ସଙ୍ଗେ ନବୋତ୍କଳର ପ୍ରତିନିଧି ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କର ଚାକ୍ଷୁଷ ଓ ଆତ୍ମିକ ପରିଚୟ ଘଟିଥିଲା ଏବଂ ସେମାନେ ପରସ୍ପରର ମହିମା ଉପଲବ୍ଧି କରିଥିଲେ। ଦୁଃଖର କଥା, ସାହିତ୍ୟକ୍ଷେତ୍ରରେ ସେ ପ୍ରକାର ମିଳନ ସମ୍ଭବ ହୋଇପାରିନଥିଲା। ରାଧାନାଥ ମଧୁସୂଦନଙ୍କ ସଙ୍ଗେ ବଳଦେବ ଓ ଗୋପାଳକୃଷ୍ଣଙ୍କର ସାହିତ୍ୟିକ ଆଲୋଚନା ହୋଇପାରିଥିଲେ, ମୋ ମତରେ ଓଡ଼ିଆ ସାହିତ୍ୟର ଆଧୁନିକ ରୂପ ଅନ୍ୟ ଆକାର ଧାରଣ କରିଥାନ୍ତା। ତା ନ ହୋଇ ଏମାନଙ୍କର ସାହିତ୍ୟିକ ଶିକ୍ଷକ ହେଲେ ମାଇକେଲ୍, ନବୀନ, ବଙ୍କିମାଦି ବଙ୍ଗ କବିବୃନ୍ଦ। ଷୋଡ଼ଶ ଶତାବ୍ଦୀରେ ବଙ୍ଗଳାରୁ ଧର୍ମସ୍ରୋତ ଆସି ଯେପରି ଓଡ଼ିଆର ଦୈନନ୍ଦିନ ଜୀବନ ଓ ଚରିତ୍ରକୁ ରୂପାନ୍ତରିତ କରିଥିଲା, ଊନବିଂଶ ଶତାବ୍ଦୀରେ ସାହିତ୍ୟ-ସ୍ରୋତ ସେହିପରି ଓଡ଼ିଆ ସାହିତ୍ୟକୁ ବେଶାନ୍ତର ଦେଲା।

ଗୋଟିଏ ଦେଶର ଧର୍ମ, ସାହିତ୍ୟ ବା ସାଧାରଣ ଭାବଧାରା ଅନ୍ୟ ଦେଶର ଧର୍ମ, ସାହିତ୍ୟ ବା ଭାବଧାରାଦ୍ୱାରା ପ୍ରଭାବିତ ହେବା କିଛି ଲଜ୍ଜା ବା ଦୋଷର କଥା ନୁହେଁ। କେତେକ ଓଡ଼ିଆଙ୍କର ତ୍ୱକ୍-ଗଭୀର ଜାତୀୟତା ଏଥିରେ ଫେନିଳ ହୋଇଉଠେ; କିନ୍ତୁ ସେପରି ହେବା ଆଦୌ ଉଚିତ ନୁହେଁ। ଇଂଲଣ୍ଡର ସାହିତ୍ୟ ଓ ଚିନ୍ତାଧାରା ଯୁଗେ ଯୁଗେ ବିଦେଶୀ ସାହିତ୍ୟ ଓ ଚିନ୍ତାଦ୍ୱାରା ପ୍ରଭାବିତ ଓ ପରିପୁଷ୍ଟ ହୋଇ ଆସିଛି। ଏ କଥା ଇଂରେଜମାନେ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି। ଆକାଶଟା ଖାଲି ନୀଳ ରହିଲେ ସୁନ୍ଦର। ତହିଁରେ ନାନା ବର୍ଣ୍ଣର ମେଘର ସମାବେଶ ହେଲେ ତାର ସ୍ୱତନ୍ତ୍ର ଶୋଭା ନଷ୍ଟ ନ ହୋଇ ବରଂ ବିଚିତ୍ର ଭାବରେ ସୁନ୍ଦର ହୋଇ ଉଠେ। ଇଂରେଜୀ ସାହିତ୍ୟରେ ଇଟାଲୀ, ଫ୍ରାନ୍ସ, ସ୍ପେନ୍, ଜର୍ମାନୀ, ଋଷିଆ, ଭାରତବର୍ଷ ପ୍ରଭୃତି ନାନା ଦେଶର ଚିନ୍ତାଧାରା ଅଙ୍ଗୀଭୂତ ହୋଇଯାଇଛି। ସେହି ଯୋଗୁଁ ତ ଇଂରେଜମାନଙ୍କର ସାହିତ୍ୟ ତାଙ୍କ ସାମ୍ରାଜ୍ୟଠାରୁ ସମୃଦ୍ଧତର ବୋଲି କୁହାଯାଏ।

ଆମର ବର୍ତ୍ତମାନ ଦେଖିବାର କଥା, ନବଯୁଗର ସାହିତ୍ୟ ଓ ଚିନ୍ତା ସମ୍ପର୍କରେ ଆସି, ଓଡ଼ିଆ ଭାଷା ପ୍ରକୃତରେ ତା'ର ଗନ୍ତାଘରର ସମ୍ପଦ ବଢ଼େଇଛି କି ନାହିଁ ବା କିପରି ବଢ଼େଇଛି ?

ଗୋପାଳକୃଷ୍ଣ ଇହଧାମ ତ୍ୟାଗ କରିବାର ଆଜିକି ୮୦ ବର୍ଷ ହେଲାଣି; ବଳଦେବ ମରିବାର ୭୪ ବର୍ଷ। ଗୋଟାଏ ସାହିତ୍ୟର ଉନ୍ନତି ପାଇଁ ଏ କାଳ ଯଥେଷ୍ଟ ଦୀର୍ଘ। ଏଇ କାଳ ଭିତରେ ବଙ୍ଗଳା ସାହିତ୍ୟ ଅଭୂତପୂର୍ବ ଭାବରେ ସମୃଦ୍ଧ ହୋଇ ବିଶ୍ୱବିଶ୍ରୁତ ହୋଇପାରିଛି। ଏଇ କାଳ ଭିତରେ ଜର୍ମାନୀ ଓ ଜାପାନ ଆପେକ୍ଷିକ ନ୍ୟୂନତାରୁ ମାନବ-ଆକାଶରେ ଦୁଇଟି ତୀବ୍ରତେଜ ଧୂମକେତୁ ପରି ହୋଇଉଠିଛନ୍ତି। କିନ୍ତୁ ଆମେ କେଉଁଠି ? ଯେଉଁ ଗ୍ରୀକ୍ ସଭ୍ୟତାକୁ ନେଇ ୟୁରୋପୀୟମାନେ ଏତେ ଗର୍ବ କରନ୍ତି, ସେ ସଭ୍ୟତାର ବିକଚ ବିକାଶ ପାଇଁ ମୋଟେ ପଚାଶ ବର୍ଷ ଦରକାର ହୋଇଥିଲା। ଇଂଲଣ୍ଡର ପରମ ଗୌରବଦୀପ୍ତ ଏଲିଜାବେଥୀୟ ସାହିତ୍ୟର ଜୀବନକାଳ ମୋଟେ ୪୦ ବର୍ଷ ଏବଂ ଊନବିଂଶ ଶତାବ୍ଦୀ ରୋମାଣ୍ଟିକ୍ ରିଭାଇଭାଲ୍ କେବଳ ୩୦ ବର୍ଷ

ଭିତରେ ଘଟିଗଲା । ଆମେ କିନ୍ତୁ ଏ ୭୦ ବର୍ଷ ଭିତରେ କଅଣ ପାଇଛେ ?

ଗୋପାଳକୃଷ୍ଣ, ବଳଦେବଙ୍କ ପରେ ଉତ୍କଳ ସାହିତ୍ୟରେ ଯେଉଁ ଯୁଗ ଆସିଛି, ସେଥିରେ ଜାତିକି ମିଳିଛି ଫକୀରମୋହନଙ୍କ ଉପନ୍ୟାସ, ରାଧାନାଥଙ୍କ କାବ୍ୟ, ମଧୁସୂଦନଙ୍କ ସନେଟ୍ ଓ ଆଧ୍ୟାତ୍ମିକ କବିତା, ନନ୍ଦକିଶୋରଙ୍କ ପଲ୍ଲୀଚିତ୍ର ଓ ଶେଷରେ ସତ୍ୟବାଦୀ ସାହିତ୍ୟ ଯେଉଁଠି ଦଣ୍ଡାୟମାନ ନୀଳକଣ୍ଠ, ଗୋଦାବରୀଶ ଓ ଗୋପବନ୍ଧୁ ।

ସାହିତ୍ୟର ଦୁଇଟା ଅଂଶ ଥାଏ । ଗୋଟାଏ ଅଂଶ ହେଉଛି ଯାହା ସାହିତ୍ୟ ଆମକୁ ଦିଏ, ଆଉ ଗୋଟାଏ ହେଉଛି ତାହା ଦେବାର ଭଙ୍ଗୀ । ପ୍ରାଚୀନ ଭାରତୀୟ ସମାଲୋଚକମାନେ— ସାହିତ୍ୟ ପାଠକମାନଙ୍କୁ ଯାହା ପରିବେଷଣ କରେ, ତାକୁ ନଅଟି ରସରେ ବିଭକ୍ତ କରିଥିଲେ । ଏ ବିଶ୍ଳେଷଣ ଅବଶ୍ୟ ପ୍ରମାଦଯୁକ୍ତ; କିନ୍ତୁ ତାର ଆଲୋଚନାର ସ୍ଥଳ ଏ ନୁହେ । କିନ୍ତୁ ଆମର ପ୍ରାଚୀନ ଓଡ଼ିଆ ସାହିତ୍ୟ ବିଶେଷତଃ କାବ୍ୟ-ସାହିତ୍ୟ, ଏହି ଆଦର୍ଶରେ ରଚିତ । ପ୍ରାଚୀନ ସାହିତ୍ୟ-ସ୍ରଷ୍ଟାଗଣ ମୂଳତଃ ଦୁଇଟି କାମନା ଦ୍ୱାରା ପ୍ରଭାବିତ ହେଉଥିଲେ— ଗୋଟିଏ ହେଉଛି କବି-ଯଶ; ଯାହା ଜଗତର ସବୁ ଦେଶରେ ଏକ ସର୍ବବିଦିତ କାମନା; ଆଉ ଗୋଟିଏ ହେଉଛି ଧର୍ମ, ଯାହା କି ଭାରତବର୍ଷର ସ୍ୱତନ୍ତ୍ର ସାହିତ୍ୟାଦର୍ଶ । ଭଞ୍ଜେ ଲାବଣ୍ୟବତୀ ଲେଖିଛନ୍ତି କବିଯଶ ପାଇଁ, ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣି ଲେଖିଛନ୍ତି କବିଯଶ ଓ ଧର୍ମପାଇଁ । ସାଧାରଣ ପାଠକଙ୍କ ଭିତରେ ମଧ୍ୟ ଦୁଇଟା ଅନ୍ୟୋନ୍ୟ ବିପରୀତ ପ୍ରବୃତ୍ତି କାର୍ଯ୍ୟ କରୁଥାଏ । ଆମେ ସାହିତ୍ୟରୁ ଆଶାକରି ବସ୍ତୁ ରୂପସ୍ୱାଦ ଓ ରସାସ୍ୱାଦ, ପୁଣି ବେଳେବେଳେ ଚାହୁଁ କିଂଚିତ୍ କିଂଚିତ୍ ଆଧ୍ୟାତ୍ମିକତା । ଆମର ଦୈନନ୍ଦିନ ଖାଦ୍ୟସାମଗ୍ରୀ ଭିତରେ ଲୁଣ ଓ ତେନ୍ତୁଳି, ବା ତେନ୍ତୁଳି ଓ ଲଙ୍କା ପରି ସାହିତ୍ୟ-ସେବନ ବେଳେ ମଧ୍ୟ ଆମେ ବିପରୀତାତ୍ମକ ରସ ଖୋଜୁ । ପ୍ରାଚୀନ ଓଡ଼ିଆ କବିମାନେ ପାଠକମାନଙ୍କର ଏହି ଦୁଇ ପ୍ରଧାନ ଆସ୍ୱାଦକୁ ତୃପ୍ତି ଦେବାପାଇଁ ସାହିତ୍ୟକୁ ଦୁଇ ପ୍ରଧାନ ରସରେ ଆପ୍ଳୁତ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ପୂର୍ବେ ଏବ ଅପେକ୍ଷା କବି ଓ ପାଠକମାନଙ୍କ ଭିତରେ ସମ୍ବନ୍ଧ ଘନିଷ୍ଠତର ଥିଲା । କିନ୍ତୁ ପ୍ରାଚୀନ ସାହିତ୍ୟରେ ଧର୍ମ ଓ ଶୃଙ୍ଗାର ଛଡ଼ା ଅନ୍ୟ ଭୋଜ୍ୟର ଆୟୋଜନ ଯେ ନଥିଲା, ଏପରି ନୁହେଁ ।

ପରିବେଷିତ ଭୋଜ୍ୟରେ ଯେପରି ଭିନ୍ନତା ଓ ବିଚାର ଥିଲା, ପରିବେଷଣର ଭଙ୍ଗୀରେ ମଧ୍ୟ ସେହିପରି ଉଦ୍ଭାବନର ବିଭବ ଦେଖାଯାଉଥିଲା । ଯାହା ଲୋକଙ୍କ ପାଇଁ, ତାହା ଲୌକିକ ଭାଷାରେ ଏବଂ ଯାହା ପଣ୍ଡିତମାନଙ୍କ ପାଇଁ, ତାହା ପଣ୍ଡିତିଆ ଭାଷାରେ ଲେଖାଥିଲା ଏବଂ ଉଭୟ ମାଧ୍ୟମରେ, ଉପଯୋଗୀ ଭାଷାଗତ ଚାତୁରୀ ଓ ବକ୍ର-ବାକ୍ୟ ଖଞ୍ଜାଯାଉଥିଲା । ଶବ୍ଦକ୍ରୀଡ଼ା ଓ ବକ୍ର-ବାକ୍ୟ, ସବୁ ସଭ୍ୟ ଭାଷାରେ ଦେଖାଯାଏ । ସେକ୍ସପିୟରଙ୍କ କମେଡ଼ିମାନଙ୍କରେ ଏହା ହାସ୍ୟରସର ଏକ ଉତ୍ସ । ଏ ପଦାର୍ଥ ଯେପରି ଅଭକ୍ଷ୍ୟ ବୋଲି ଧରାଯାଏ, ତାହା ଆଦୌ ଠିକ୍ ନୁହେଁ । ତେବେ ତାକୁ ଛାଡ଼ିଦେଲେ ମଧ୍ୟ ବାଣୀ, ବୃତ୍ତ, ଛାନ୍ଦର ଅଗଣନୀୟ ବିଚିତ୍ର ଥାଳିଆରେ ଆମର ପ୍ରାଚୀନ କବିମାନେ ଯମକ-ଅନୁପ୍ରାସର ରଞ୍ଜନ ଦେଇ ଯେପରି ରସ ପରିବେଷଣ

କରିଛନ୍ତି, ତାହାର ଅନୁକରଣ କରିବାର କ୍ଷମତା ମଧ୍ୟ ଆମର ନାହିଁ; ସେଥିରେ ପ୍ରତିଯୋଗୀ ହେବା ଦୂରେ ଥାଉ।

ପ୍ରାଚୀନ୍ ଯୁଗର ଏହି ଭୋଜ୍ୟାୟୋଜନ ତୁଳନାରେ ନବଯୁଗ ଆମକୁ ନୂତନ କିଛି ଭଲ ମାଲ ଦେଇଅଛି କି? ମୋର ମନେହୁଏ, ଏ ବିଚାର କରିବାର ବେଳ ଆସିଛି।

ନବଯୁଗର ଓଡ଼ିଆ ସାହିତ୍ୟରେ ପାଠକମାନେ ଯାହା ନୂତନ ବୋଲି ମନେ କରନ୍ତି ତାହାର ଲକ୍ଷଣ ସବୁ, ଏହି ଜାତୀୟତା, ରଚନାର ନିରାଳଙ୍କାର ସାରଲ୍ୟ, ଆଦିରସର ମାର୍ଜିତ ପ୍ରକାଶ ଏବଂ ପ୍ରାକୃତିକ ବର୍ଣ୍ଣନା। ଆମେ ଗୋଟି ଗୋଟି କରି ଦେଖିନେବା, ଏ ସବୁ ଲକ୍ଷଣ ଆମ ସାହିତ୍ୟରେ ଏକାବେଳକେ ନୂତନ କି ନା, ବା ଏସବୁର ଆମଦାନିଦ୍ୱାରା ଆମର ସାହିତ୍ୟ-ବିପଣି ପ୍ରକୃତରେ ସମୃଦ୍ଧ ହୋଇଛି କି ନା?

ଧୀରେ ଧୀରେ ଆମ ପ୍ରାଚୀନ ସାହିତ୍ୟ ସଙ୍ଗେ ଯେତିକି ଯେତିକି ମୋର ପରିଚୟ ହୋଇଆସୁଛି, ମୋର ଏହି ଧାରଣା ଆସୁଛି ଯେ, ନବ ସାହିତ୍ୟରେ ନବତ୍ୱ ପ୍ରକୃତରେ ଯତ୍‌କିଞ୍ଚିତ୍ ମାତ୍ର। ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜାତୀୟତା ଏକା-ବେଳକେ ନଥିଲା କହିବା ସତ୍ୟର ଘୋର ଅପଲାପ। ସାରଳା ଦାସଙ୍କ ମହାଭାରତରେ ଓଡ଼ରାଷ୍ଟ୍ରକୁ ଘେନି ନାନା ସ୍ଥାନରେ ଆସ୍ଫାଳନ ଓ ଅହଂକାର, ତୀବ୍ର ଜାତୀୟତାର ପ୍ରକାଶ। ମହାକବି ସ୍ୱଦେଶପ୍ରୀତି ଯୋଗୁଁ ପାଣ୍ଡବମାନଙ୍କୁ ବାରମ୍ବାର ଉତ୍କଳ ଭୂମିରେ ବୁଲେଇ ନେଇଛନ୍ତି— ଯଦିବା ଏକଥା ସଂସ୍କୃତ ମହାଭାରତରେ ନାହିଁ ଏବଂ ସେଥି ସଙ୍ଗେ ସଙ୍ଗେ ନାନା ସ୍ଥାନରେ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି ଉତ୍କଳର ତୀର୍ଥାବଳୀର। ରାଧାନାଥଙ୍କ 'ମହାଯାତ୍ରା'ରେ ତେଣୁ ପାଣ୍ଡବମାନଙ୍କର ଉତ୍କଳାଗମନରେ ବିଶେଷତ୍ୱ କିଛି ନାହିଁ। ଭଞ୍ଜେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ପୁରୀଧାମର କିପରି ଭାବ-ଗଦ୍‌ଗଦ ବର୍ଣ୍ଣନା ଦେଇ- ଅଛନ୍ତି ଏବଂ ବ୍ରଜନାଥ ବଡ଼ଜେନା 'ସମରତରଙ୍ଗ'ରେ ଓଡ଼ିଆ ରାଜ୍ୟରେ ମରହଟ୍ଟାମାନଙ୍କର ପରାଜୟକୁ ଆଶ୍ରୟ କରି କିପରି ଜାତୀୟତାରଞ୍ଜିତ ବୀରରସର ସୃଷ୍ଟି କରିଛନ୍ତି, ତାହା ମନେ କରିବା ଉଚିତ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗଯାଏ ୟୁରୋପୀୟ ସାହିତ୍ୟରେ ପ୍ରକୃତିର ସ୍ଥାନ ନଗଣ୍ୟ ଥିଲା। ସେ-ଯାଏ ଇଂରେଜ ଚିନ୍ତାନାୟକ ସବୁ ମଧ୍ୟ ପର୍ବତକୁ ଦେଶର ଏକ କୁତ୍ସିତ ଅଙ୍ଗ ବୋଲି ଭାବୁଥିଲେ। ଫରାସୀ ପଣ୍ଡିତ ରୁଷୋ ପାଶ୍ଚାତ୍ୟ ଜଗତରେ ପ୍ରକୃତିର ସୌନ୍ଦର୍ଯ୍ୟ ଓ ଶୁଭଙ୍କର ପ୍ରଭାବର ସୂଚନା ଦେଲେ। ତାଙ୍କ ଲେଖା ଫଳରେ ପାଶ୍ଚାତ୍ୟ ସାହିତ୍ୟରେ ଏକ ପରିବର୍ତ୍ତନ ଆସିଲା, ଯାହା ଫଳରେ କ୍ରମେ ନଦୀ, ପର୍ବତ, ବଣ, ପଶୁପକ୍ଷୀ ପ୍ରଭୃତି କାବ୍ୟର ନାୟକ-ନାୟିକା ହୋଇଉଠିଲେ। ସ୍କଟ୍ ଓ ବାଇରନ୍‌ଙ୍କ ଲେଖାରେ ଭିନ୍ନ ଭିନ୍ନ ସ୍ଥାନର ସ୍ୱତନ୍ତ୍ର ପ୍ରାକୃତିକ ସୁଷମାର ମନୋରଞ୍ଜନ ବର୍ଣ୍ଣନାଦ୍ୱାରା ପ୍ରଭାବିତ ହୋଇ ରାଧାନାଥ ଛବିଳ ଉତ୍କଳର ଭିନ୍ନ ଭିନ୍ନ ଛବିକୁ କାବ୍ୟରେ ଚିତ୍ର କରିବାକୁ ଲାଗିଲେ। କିନ୍ତୁ ତାଙ୍କ ଚେଷ୍ଟା ପଛରେ ଆମର ପ୍ରିୟକବି

କାଳିଦାସଙ୍କ ପ୍ରଭାବ ମଧ୍ୟ ନିଶ୍ଚୟ ପଡ଼ିଛି। ଇଂରେଜ କବିମାନେ ଊନବିଂଶ ଶତାବ୍ଦୀରେ ଯାହା କରି ଜୟଜୟକାର ପାଇଗଲେ ଓ ଆମର ବିସ୍ମୟର କାରଣ ହେଲେ, ବହୁ ଶତାବ୍ଦୀ ତଳେ ଆମର କାଳିଦାସ ଓ ଭବଭୂତି, ବିଶେଷତଃ କାଳିଦାସ, ଠିକ୍ ତାହାହିଁ କରିଯାଇଛନ୍ତି। ଊନବିଂଶ ଶତାବ୍ଦୀ ଯାଏ ଇଂରେଜମାନଙ୍କର ଆଖିରେ ପର୍ବତ କୁତ୍ସିତ ଦେଖାଯାଉଥିଲା ଏବଂ ନଗର ଭବ୍ୟତା ଥିଲା ସେ ଜାତିର କବିମାନଙ୍କର ବର୍ଣ୍ଣନୀୟ ବସ୍ତୁ; କିନ୍ତୁ ଆମର ମହାକବିଙ୍କ ଲେଖାରେ ଭାରତବର୍ଷର ବଣ, ପାହାଡ଼, ନଦନଦୀ, ମେଘ, ମଳୟର କି ମନୋଜ୍ଞ ବର୍ଣ୍ଣନା ଆମେ ନ ପାଉଁ! ତେଣୁ ସମୂହ ଭାବରେ ଦେଖିବାକୁ ଗଲେ ନବଯୁଗର ଭାରତୀୟ ସାହିତ୍ୟର ପ୍ରକୃତି-ଚର୍ଚ୍ଚା, ଊନବିଂଶ ଶତାବ୍ଦୀର ଇଂଲିଶ ରୋମାଣ୍ଟିକ୍ ରିଭାଇଭାଲ୍‌ର ବିଶେଷ ଦାନ ବୋଲି ଧରାଯିବା ଉଚିତ ନୁହେଁ। ଆମ ପ୍ରାଚୀନ ସାହିତ୍ୟରେ ଋତୁ-ପର୍ଯ୍ୟାୟ ଦେଇ ପ୍ରକୃତିର ବିଚିତ୍ର ବିକାଶର ଚିତ୍ର ପ୍ରଚୁର ଅଛି ଓ ଆମ କବିମାନଙ୍କର ଉପମା ସଂଗ୍ରହ ବିଷୟରେ ପ୍ରକୃତିକି ସ୍ପଷ୍ଟ ବୁଝିବାର ଅନୁରାଗ ଓ ତୀକ୍ଷ୍ଣ ଦୃଷ୍ଟି ଥିଲା। ଅବଶ୍ୟ ଉତ୍କଳର ନଦୀଟିଏ, ବଣଟିଏ, ହ୍ରଦଟିଏ, ପାହାଡ଼ଟିକି ନେଇ କାବ୍ୟ ଲେଖା ହୋଇନାହିଁ; କିନ୍ତୁ ନିଛକ ରସସୃଷ୍ଟି ଦିଗରୁ ଦେଖିଲେ ସେଇଟା ଯେ ବିଶେଷ ଗୋଟାଏ ସାହିତ୍ୟିକ ଅଭାବ, ଏହା ତ ମୋର ମନେହୁଏନା। ରାଧାନାଥଙ୍କ 'ଚିଲିକା' ପରେ ଏ ଧରଣର ଅନେକ କାବ୍ୟ ଯାହା ଲେଖା ଓ ପ୍ରକାଶ ପାଇଛି, ସେଗୁଡ଼ିକ ନ ଥିଲେ ଆମର ବିଶେଷ କିଛି କ୍ଷତି ହୁଅନ୍ତା ନାହିଁ। ଥିଲେ ମଧ୍ୟ, ପଦ୍ୟ ଅପେକ୍ଷା ଗଦ୍ୟରେ ଥିଲେ ଭଲହୋଇଥାନ୍ତା। 'ଘୁମୁସର କାବ୍ୟ' ଲେଖା ନ ହୋଇ ଘୁମୁସରର ଇତିହାସ ଭୂଗୋଳ ଲେଖା ହୋଇଥିଲେ ମୁଁ ଅନ୍ତତଃ ସେ ବହିଟିକି ମୂଳରୁ ଶେଷଯାଏ ପଢ଼ିପାରିଥାନ୍ତି। ଦେଶର ପ୍ରାକୃତିକ ସାହିତ୍ୟର ଉତ୍କୃଷ୍ଟ ପରିଚୟ ଦେବାର ପନ୍ଥା ହେଉଛି ତାକୁ କାବ୍ୟ-କାହାଣୀର ପୃଷ୍ଠଭୂମି କରିବା। ରାଧାନାଥ, ସ୍କଟ୍ ଓ ବାଇରନ୍‌ଙ୍କ ଅନୁକରଣରେ ଏହା ଅତି ସୁନ୍ଦର ଭାବରେ କରିଯାଇଛନ୍ତି।

ଯା' ପରେ ଆମେ ନବସାହିତ୍ୟରେ ରଚନା-ଭଙ୍ଗୀର ସାରଲ୍ୟ ଆଲୋଚନା କରିବା ଏବଂ ଆଦିରସର ମାର୍ଜିତ ପ୍ରକାଶର ମଧ୍ୟ। ଏ ଦୁଇ ଲକ୍ଷଣରେ ମଧ୍ୟ ପ୍ରକୃତ ନୂତନତ୍ୱ କିଛି ନାହିଁ ଏବଂ ଆମର ନୂତନ ଓଡ଼ିଆରେ ଗଦ୍ୟ-ପଦ୍ୟର ଶୈଳୀ ପ୍ରକୃତରେ ଯେ ସରଳ ଓ ସୁବୋଧ ହୋଇଉଠିଛି, ସେଥିରେ ମଧ୍ୟ ମୋର ସନ୍ଦେହ ଆସିଲାଣି। ରାଧାନାଥ ରଚନାକୁ ଅଳଙ୍କାର ଓ ବକ୍ରୋକ୍ତିର ଭାରରୁ ମୁକ୍ତି ଦେଇ ସର୍ବଜନବୋଧ କରିଛନ୍ତି; କିନ୍ତୁ ତାଙ୍କ ଶୈଳୀର ସାରଲ୍ୟ ସାରଳା, ଜଗନ୍ନାଥ, ରାମ ଦାସ, ବଳରାମ ଦାସ ପ୍ରଭୃତିଙ୍କ ଖାଣ୍ଟି ଓଡ଼ିଆ ଭାଷାକୁ ଆସିପାରିନାହିଁ। ଅପର ପକ୍ଷରେ ତାଙ୍କ 'ମହାଯାତ୍ରା'ର ଅଧିକାଂଶ ଓ ତାଙ୍କ ଶିଷ୍ୟ ମଧୁସୂଦନଙ୍କ ସଂସ୍କୃତିଆ ପଦ୍ୟ ବୁଝିବାକୁ ଅଭିଜ୍ଞ ପାଠକ ଦରକାର। ଅଳଙ୍କାରର ଭାରରୁ ମୁକ୍ତି ପାଇ ମଧ୍ୟ ରଚନାର ଶୈଳୀ ଯେ କେବଳ ଶବ୍ଦର ବୋଝରେ ଚିପିହୋଇପାରେ, ତାହା ପଣ୍ଡିତ ନୀଳକଣ୍ଠଙ୍କ ପଦ୍ୟ ଏବଂ ଏବର ଅତ୍ୟାଧୁନିକ ଗଦ୍ୟ-ଛନ୍ଦ କବିତା ପଢ଼ିଲେ ବୁଝାଯିବ।

ଏସବୁ ପଢ଼ିଲାବେଳେ ମୁଁ ମନେକରିପାରେ ନା ଯେ, ଆମ ଓଡ଼ିଆ ଭାଷା ଏହି ଦୀର୍ଘ ପାଞ୍ଚଶ' ବର୍ଷ ଭିତରେ ଜଗନ୍ନାଥଙ୍କ 'ଭାଗବତ'ର ଶୈଳୀରୁ ଉପରକୁ ଉଠିଛି ବୋଲି। ତେବେ ଏଇଟା ଅବଶ୍ୟ ମାନିବାକୁ ହେବ ଯେ, ଭିନ୍ନ ଭିନ୍ନ ଶୈଳୀର ବିଚିତ୍ରତାରେ ଏବର ସାହିତ୍ୟ ସୁନ୍ଦର। ରାଧାନାଥଙ୍କ 'ମହାଯାତ୍ରା' ପାଖକୁ ଫକୀରମୋହନଙ୍କ 'ମାମୁଁ', ନୀଳକଣ୍ଠଙ୍କ ଆଦିରସର ମାର୍ଜିତ ପ୍ରକାଶକୁ ଏ ଯୁଗର ସ୍ୱତନ୍ତ୍ର ଲକ୍ଷଣ ବା ଗୋଟାଏ ଲକ୍ଷଣ ବୋଲି ମୁଁ ଧରିବାକୁ ନାରାଜ। ଆମ ସାହିତ୍ୟ ଯେତେବେଳେ ରାଜପ୍ରାସାଦର ଆଶ୍ରୟ ନେଇଥିଲା, ସେହି ଯୁଗରେହିଁ ଆଦିରସର ଉତ୍କଟ ପ୍ରକାଶ ଦେଖାଯାଇଛି। କିନ୍ତୁ ସାରଳା ପ୍ରଭୃତି ଲୋକକବିମାନଙ୍କ ଲେଖାରେ ଏଥିର ବ୍ୟଞ୍ଜନା ଛଡ଼ା ଅନ୍ୟ କିଛି ନାହିଁ। ଜଗନ୍ନାଥ ଦାସଙ୍କ ଲେଖାରେ ପ୍ରଣୟର ସରଳ ମଧୁର ଚିତ୍ର ଅଛି; କିନ୍ତୁ ଓଁଙ୍କ 'ରାସକ୍ରୀଡ଼ା'ରେ ମଧ୍ୟ ଶୃଙ୍ଗାର ସାମାଜିକ ଶିଷ୍ଟତାକୁ ସମ୍ମାନ କରିଛି। 'ଗୋପୀଭାଷା' ପ୍ରଭୃତିରେ ଏ ରସର ବୀଭତ୍ସତା ପ୍ରକାଶ ପାଉଥିଲେ ମଧ୍ୟ ବୁଝିବାକୁ ହେବ ଯେ, ଏମାନେ ଆମ ସାହିତ୍ୟରେ ପ୍ରତିନିଧି ହେଲାଭଳି ଲୋକ ନୁହନ୍ତି।

ଆଗରେ, କହିବା କଥାର ଆଲୋଚନା ସଙ୍ଗେ, କହିବା ଭଙ୍ଗୀର ଆଲୋଚନା ମଧ୍ୟ ହୋଇଛି କିଛି କିଛି। ତାର ସ୍ୱତନ୍ତ୍ର ଆଲୋଚନା କଲେ ନୂତନ ଯୁଗର ଦୀନତା କେବଳ ପ୍ରକାଶ ପାଇବ। ଜଗନ୍ନାଥ, ସାରଳା, ଭଞ୍ଜ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ – ଏ ଦଳ କେତେ ମଞ୍ଜୁଳ ପ୍ରକାରରେ ନିଜନିଜକୁ ପ୍ରକାଶ କରି ନାହାନ୍ତି! ଅସଂଖ୍ୟ ବାଣୀ, ବୃତ୍ତ, ଛାନ୍ଦର ଆଖୁକିଆରିରେ ମୁଁ ଅନେକ ସମୟ ହଜିଯାଏ। ଆମ ବାଣୀର ଏ ଉଦ୍ଭାବନ ଶକ୍ତି କଅଣ କୁଆଡ଼େ ଚାଲିଗଲା! ରାଧାନାଥ ମିତ୍ରାକ୍ଷର କାବ୍ୟରେ ପ୍ରାଚୀନ ସରଳ ଛନ୍ଦ ସବୁ ବ୍ୟବହାର କରିଛନ୍ତି। 'ଉଷା'ର ବୃତ୍ତଟି କେବଳ ବୋଧହୁଏ ତାଙ୍କ ନିଜର। ସେ 'ମହାଯାତ୍ରା'ରେ ଅମିତ୍ରାକ୍ଷର ଛନ୍ଦ ଓଡ଼ିଆ ଭାଷାରେ ନୂତନ ପୂରେଇଲେ ସିନା, ଏ ଛନ୍ଦ ଦେଶରେ ଲୋକପ୍ରିୟ ହୋଇପାରିନାହିଁ।

ଅତ୍ୟାଧୁନିକମାନେ ବଙ୍ଗଳା ଛନ୍ଦର ଅନୁକରଣରେ ନାନା ଛନ୍ଦ ସାହିତ୍ୟରେ ଭର୍ତ୍ତି କରୁଛନ୍ତି ସତ, କିନ୍ତୁ ନିଜସ୍ୱ ଉଦ୍ଭାବନୀ ଶକ୍ତି ଓ ଗଭୀର ଆଲୋଚନା ନ ଥିବାରୁ ସେ ସବୁ ବରାବର ଧାର-କରା ପୋଷାକ ପରି ରହିଯାଉଛି।

ଏସବୁ ଆଲୋଚନା ଫଳରେ ଆମେ ତେବେ କଅଣ ଦେଖୁଛୁ? ଆମେ କଅଣ ଦମ୍ଭର ସହିତ କହିପାରିବା ଯେ, ଆମ ନୂତନ ଓଡ଼ିଆ ସାହିତ୍ୟ ପ୍ରାଚୀନ ସାହିତ୍ୟଠୁଁ ଆଗେଇଛି? ବିଶେଷ ଆଗେଇଛି ବୋଲି ମୋର ମନେ ହେଉ ନାହିଁ। ଗତ ଶହେ ବର୍ଷ ଭିତରେ ଆମେ ଯାହା ଲେଖି ଲେଖି ସ୍ତୁପୀକୃତ କରିଛୁ, ଛାପାଖାନା ଓ ପୁସ୍ତକ ଦୋକାନମାନଙ୍କରେ, ସେଥିଭିତରୁ ରାଧାନାଥଙ୍କ 'ଚିଲିକା', ଫକୀରମୋହନଙ୍କ ଉପନ୍ୟାସ, ପ୍ରହରାଜଙ୍କ ସାଟାଯାର, ନୀଳକଣ୍ଠଙ୍କ 'କୋଣାର୍କେ' ଓ 'ମାୟାଦେବୀ', ଗୋଦାବରୀଶଙ୍କ 'ଆଲେଖିକା' ଏଇ କେତୋଟିକୁ ମୁଁ ଓଡ଼ିଆ ସାହିତ୍ୟକୁ ଖାଣ୍ଟି ନୂତନ ଆମଦାନି ବୋଲି ମନେକରେ; ଅର୍ଥାତ୍ ଏ ଧରଣର ମାଲ୍ ଆମର ଆଦୌ

'ନାନ୍ଦିକା'। ଏସବୁ ଆମ ଗନ୍ତାଘରେ ନୂତନ ମାଣିକ୍ୟ। ଫକୀରମୋହନଙ୍କ ଉପନ୍ୟାସ

ପ୍ରହରାଜଙ୍କ ସାଟାୟାର ଯେ ନୂତନ ଜିନିଷ, ଏ କଥା ବୁଝାଇଦେବାକୁ ହେବ ନାହିଁ। ପ୍ରକୃତିକି ନାୟିକା କରି ଯେ ସୁନ୍ଦର କାବ୍ୟ ଲେଖାଯାଇପାରେ, ରାଧାନାଥ 'ଚିଲିକା'ରେ ତାହା ପ୍ରଥମେ ଦେଖାଇଛନ୍ତି। ନୀଳକଣ୍ଠଙ୍କ 'କୋଣାର୍କେ' ଓ 'ମାୟାଦେବୀ' ଓଡ଼ିଆ ଭାଷାର ଖାଣ୍ଟି ଓ ଉତ୍କୃଷ୍ଟ ଐତିହାସିକ କାବ୍ୟ। 'ମାୟାଦେବୀ'ର ରଚନାରେ ଏପରି ଏକ ବଳିଷ୍ଠ ବ୍ୟକ୍ତିତ୍ୱ, ଉପମାରେ ଏପରି ଏକ ନୂତନ ଦୃଷ୍ଟିଭଙ୍ଗୀ, ଭାବପ୍ରକାଶରେ ଏପରି ମାର୍ଜିତ ବ୍ୟଞ୍ଜନା, ଶବ୍ଦବିନ୍ୟାସ ଓ ଶୈଳୀର ଏପରି ନବୋଦ୍‌ଭାବନ ଲକ୍ଷିତ ହୁଏ ଯେ, ମୁଁ ଏହାକୁ ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ କାବ୍ୟ-କାହାଣୀ ବୋଲି ମନେ କରେ। ଏହାର ନିର୍ମାଣ-ରୀତି ବୈଦେଶିକ। ସ୍କଟ୍, ଟେନିସନ୍‌ର ଛାୟା ଏହାର ସମଗ୍ର ଶରୀର ଉପରେ ପଡ଼ିଛି, ତଥାପି ଏହା ଏକ ନୂତନ ବର-ସୃଷ୍ଟି ବୋଲି ମାନିବାକୁ ବାଧ ହୁଏ। ଗୋଦାବରୀଶବାବୁଙ୍କ 'ଆଲେଖିକା'ର ବାଲାଡ୍‌ଗୁଡ଼ିକର ସରଳ ମଧୁର ପଦାବଳି ତଳେ ତଳେ ଓଡ଼ିଆ ଗୃହ, ସମାଜ, ଚିନ୍ତାଧାରାର ଅନବଦ୍ୟ ଛବି ସଙ୍ଗେ ଆପଣମାନେ ତ ସମସ୍ତେ ପରିଚିତ ଥିବେ, ବୁଝେଇବି କଅଣ? ଭାଷା ଓ ଭାବରେ ଏ ଖଣ୍ଡିଏ ମନୋହର ସୃଷ୍ଟି। ଏହାର ଏକମାତ୍ର ଦୋଷ ହେଉଛି ଏହି ଯେ, କବି ଏକାସୁରରେ ସବୁ କାହାଣୀଗୁଡ଼ିକୁ ଗାଇବାକୁ ଚେଷ୍ଟା କରିଛନ୍ତି।

କିନ୍ତୁ ବଙ୍ଗଳା ସାହିତ୍ୟର ଏହି ଶହେ ବର୍ଷ ଭିତରେ ପ୍ରକାଶିତ ମୌଳିକ ସୃଷ୍ଟିମାଳା ସଙ୍ଗେ ଆମର ଏ ସୃଷ୍ଟି କି ଅକିଞ୍ଚିତ୍‌କର! ଏହାର କାରଣ କଅଣ?

ପ୍ରଧାନ କାରଣ ଏହି ଯେ, ସମୂହଭାବରେ ଆମ ସାହିତ୍ୟର ହୀନତା ଓ ଦୀନତା କେଉଁଠି, ଆମର କଅଣ ଅଛି, ଅନ୍ୟଠୁ ଆମର କଅଣ ଆଣିବା ଦରକାର, ତାର କୌଣସି ବିଚାର ହୋଇନାହିଁ ବା ସେ ବିଚାର ଉପରେ ନିର୍ଭର କରି ନୂତନ ସାହିତ୍ୟର ସୃଷ୍ଟି ହୋଇନାହିଁ। ଇଂରେଜ ସାହିତ୍ୟ ଆମେ ପଢ଼ିଲେ ଗତ ୭୦ ବର୍ଷ ଧରି। ଆମ ତରୁଣମାନେ ବର୍ଷ ପରେ ବର୍ଷ ଶେଲି-ସେକ୍‌ସ୍‌ପିୟର ପଢ଼ି ଗ୍ରାଜୁଏଟ୍ ହୋଇ ସମାଜରେ ମିଶିଲେ; କିନ୍ତୁ ତାର ପ୍ରତିକ୍ରିୟା ସାହିତ୍ୟରେ କାହିଁ? ଇଂରେଜୀ ସାହିତ୍ୟର ଇତିହାସରେ ଦେଖିବେ, ପଞ୍ଚଦଶ ଶତାବ୍ଦୀର ସାହିତ୍ୟଠାରୁ ଷୋଡ଼ଶର ଭିନ୍ନ, ଷୋଡ଼ଶରୁ ସପ୍ତଦଶ ଭିନ୍ନ, ସପ୍ତଦଶରୁ ଅଷ୍ଟାଦଶ, ଅଷ୍ଟାଦଶରୁ ଊନବିଂଶ ଓ ଊନବିଂଶରୁ ବିଂଶ ଶତାବ୍ଦୀର ସାହିତ୍ୟ ଭିନ୍ନ। ପ୍ରତ୍ୟେକ ଶତାବ୍ଦୀର ସାହିତ୍ୟ ସେହି ଶତାବ୍ଦୀର ଗୋଟିଏ ପ୍ରତିଲିପି। ସେକ୍‌ସପିୟରଙ୍କ ନାଟକ ବିଶ୍ୱଜନୀନ; କିନ୍ତୁ ସେହି ପୁଣି ଏଲିଜାବେଥୀୟ ଯୁଗର ଇଂଲଣ୍ଡୀୟ ସମାଜର ପ୍ରକୃଷ୍ଟ ଚିତ୍ର। ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ରାଜନୈତିକ ଦଳମାନଙ୍କର ଆବିର୍ଭାବ ହେଲା ଏବଂ ଦଳକନ୍ଦଳର ଛାପ ରହିଗଲା ଡିଫୋ, ସ୍ୱିଫଟ୍, ଡ୍ରାଇଡେନ୍‌ଙ୍କ ଲେଖାରେ। ଊନବିଂଶ ଶତକର ଆରମ୍ଭରେ ଫରାସୀ-ବିପ୍ଳବ ପରେ ଇଉରୋପରେ ରାଜନୈତିକ ମନୁଷ୍ୟର ଆବିର୍ଭାବ ହେଲା। ଫଳରେ ବର୍ଡ୍‌ସ୍, ବାଇରନ୍, ଶେଲିଙ୍କ ଲେଖନୀରେ ମନୁଷ୍ୟକୁ ମନୁଷ୍ୟ ଭାବରେ ଦେଖିବାର ଓ ବୁଝେଇବାର ଜ୍ୱାଳାମୟୀ ଚେଷ୍ଟା। ବାହାରର ଘଟଣାବଳି

ଓ ଚିନ୍ତାଧାରାଦ୍ୱାରା ନିତ୍ୟ ପ୍ରଭାବିତ ବାଣୀ-ବୀଣାର ଏପରି ବିଭିନ୍ନ ମୂର୍ଚ୍ଛନା ଆମ ସାହିତ୍ୟରେ କାହିଁ? ଗଭିମନ୍ତ ଇଂରେଜ ସାହିତ୍ୟ ସଙ୍ଗେ ଶହେ ବର୍ଷ କାଳ ସଂପୃକ୍ତ ରହି ଆମେ କଅଣ ଏଇ କେତେ ଖଣ୍ଡ କାବ୍ୟ-କବିତା ପାଇଛେ ବୋଲି ଖୁସି ହେବା ? କାବ୍ୟ-କବିତା କଅଣ ଆମର ନ ଥିଲା ? ରାଧାନାଥ, 'ପାର୍ବତୀ', 'ଯଯାତି' ପ୍ରଭୃତି କାବ୍ୟ ଲେଖି ନ ଥିଲେ କଅଣ ଆମ ସାହିତ୍ୟରେ କିଛି ଅଙ୍ଗହାନି ହୋଇଯାଇଥାନ୍ତା ? ଆମ ସାହିତ୍ୟର ଯେଉଁଠି ପ୍ରକୃତ ଅଙ୍ଗହାନି ହୋଇଛି, ସେଠିକି ଆମର ପ୍ରକୃତରେ ଆଖି ନାହିଁ। ଆମ ସାହିତ୍ୟରେ ଚିନ୍ତା ଓ ଜ୍ଞାନର ବଡ଼ ଅଭାବ। ଆମର 'ଏସେ' ବୋଲି କୌଣସି ଜିନିଷ ନାହିଁ। ବେକନ୍, ମିଲ୍, ସ୍ପେନସର୍, ବେନ୍ଥାମ୍, କାର୍ଲାଇଲ୍, ରସ୍କିନ୍ ପ୍ରଭୃତି ଇଂରେଜ ଚିନ୍ତାନାୟକମାନଙ୍କର ଅମୂଲ୍ୟ ଚିନ୍ତାଧାରା, ଅନୁବାଦ ଦେଇ ଆମ ସାହିତ୍ୟର ଅଙ୍ଗୀଭୂତ ହୋଇଥିଲେ, ତାହାହିଁ ଜାତୀୟ ପ୍ରତିଭାକୁ ନାନା ଭାବରେ ଉଦ୍‌ବୁଦ୍ଧ କରୁଥାଆନ୍ତା। ବୀଜ ଅଙ୍କୁରିତ ହେବାକୁ ଉତ୍ତାପ ଦରକାର କରେ। ଚିନ୍ତା, ପ୍ରତିଭାର ଉନ୍ମେଷ ପାଇଁ ଏହି ଉତ୍ତାପ ଯୋଗାଏ। ଓଡ଼ିଆ ସାହିତ୍ୟରେ, ପ୍ରାଚ୍ୟ ବା ପାଶ୍ଚାତ୍ୟ କୌଣସି ପ୍ରକାର ଚିନ୍ତାକୁ ସାଇତିବାର ଆୟୋଜନ ନାହିଁ। ବୌଦ୍ଧଧର୍ମ ଏପର୍ଯ୍ୟନ୍ତ ଓଡ଼ିଶାରେ ଜୀବିତ ଅଛି; କିନ୍ତୁ ବୌଦ୍ଧଧର୍ମ ଉପରେ ଖଣ୍ଡିଏ ପ୍ରାମାଣିକ ଗ୍ରନ୍ଥ ଓଡ଼ିଆରେ କାହିଁ? ଆମର କେତେଖଣ୍ଡ ନାଟକ ଲେଖା ହୋଇଛି, କିନ୍ତୁ ନାଟକର ପ୍ରଧାନ ଅଙ୍ଗ ଯେ ଚରିତ୍ର-ସୃଷ୍ଟି, ତାହା ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଲେଖକମାନଙ୍କର ନଥିଲା ପରି ବୋଧହୁଏ। ସେକ୍‌ସପିୟର, ମଲିଏର୍, ସୀଲର୍‌ଙ୍କ ଉତ୍କୃଷ୍ଟ ନାଟକାବଳୀର ଉତ୍କୃଷ୍ଟ ଅନୁବାଦ ହେଲେ ବୈଦେଶିକ ଭାଷାନଭିଜ୍ଞ ଲେଖକମାନେ ଓ ପାଠକ ସାଧାରଣ ଉତ୍କୃଷ୍ଟ ନାଟକ କିପରି, ତା ସମ୍ବନ୍ଧରେ ଧାରଣା କରିପାରନ୍ତେ। ସବୁବେଳେ ସବୁ କଥାରେ ଗୋଟିଏ ବିଦେଶୀ ଭାଷା ଉପରେ ନିର୍ଭର କରିବା ଆମ ପଙ୍ଗୁତ୍ୱର ପ୍ରଧାନ କାରଣ। ଇଂଲଣ୍ଡ ଓ ଜର୍ମାନୀରେ କାରଖାନାର ମଜଦୁର ଓ ଜମିର ଚଷା ସଂସ୍କୃତର ନାମ ନ ଶୁଣି ମଧ୍ୟ କାଳିଦାସଙ୍କ ଶକୁନ୍ତଳାର ସୌନ୍ଦର୍ଯ୍ୟ ଉପଭୋଗ କରିପାରିବ; ଅଥଚ୍ ଆମରି ଦେଶର ଏହି କବିଙ୍କୁ ବୁଝିବାକୁ ଅନ୍ତତଃ ୩।୪ ବର୍ଷ କାଳ ସଂସ୍କୃତ ପଢ଼ିବାକୁ ଏବଂ ତାଙ୍କ ଦେଶର ସେକ୍‌ସପିୟରଙ୍କୁ ବୁଝିବାକୁ ୧୬ ବର୍ଷ ଇଂରେଜୀ ପଢ଼ିବାକୁ ହେବ। ଯେଉଁ ସାହିତ୍ୟ ତାର ଜାତିକୁ ଜ୍ଞାନ ଦେବାରେ ସାହାଯ୍ୟ କରିପାରୁନି, ସେ କି ସାହିତ୍ୟ-ପଦବାଚ୍ୟ? ଅନୁବାଦ ସୂତ୍ରରେ ପାଶ୍ଚାତ୍ୟ ସାହିତ୍ୟର ଉତ୍କୃଷ୍ଟାଂଶ ଆମ ଭାଷାକୁ ଆସିପାରିଥିଲେ ଗଙ୍ଗାଧର ମେହେରଙ୍କ ଚମତ୍କାରିଣୀ ପ୍ରତିଭା ପରର ଡିଜାଇନ୍‌ରେ ନିଜର ବର୍ଣ୍ଣ ନଷ୍ଟ କରି ନଥାନ୍ତେ। ଆମେ ତାଙ୍କଠୁ କଅଣ ନ ପାଇଥାନ୍ତେ ?

ପ୍ରକାଶ ଭଙ୍ଗୀରେ ମଧ୍ୟ ଆମେ ଇଂରାଜୀ ସାହିତ୍ୟରୁ ଯାହା ଆଣିବାର ତାହା ଆଣି ନାହୁଁ। ବଙ୍ଗାଳୀମାନେ ମୂଳରୁ ଉପାଦାନ ନେଉଛନ୍ତି; ଆମେ ତାଙ୍କଠୁ କିଛି କିଛି ମାଗି କାମ ମେଣ୍ଟାଉଛୁ। ଏହା ଯେପରି ଲଜ୍ଜାକର, ସେହିପରି କ୍ଷତିକର। ଆପଣମାନେ ତ ତେଲଗୁ ସାହିତ୍ୟକୁ ସ୍ୱଚ୍ଛନ୍ଦରେ ଉପଭୋଗ କରନ୍ତି; କିନ୍ତୁ ତେଲଗୁର ଉତ୍କୃଷ୍ଟ ଛନ୍ଦ ଓଡ଼ିଆକୁ ଆଣୁନାହାନ୍ତି କାହିଁକି ? ଆମର ନିଜର ମୌଳିକ ସୃଷ୍ଟି ସ୍ୱଚ୍ଛ,

ଅଥଚ ଆମେ ଅନ୍ୟର ଉତ୍କୃଷ୍ଟ ସୃଷ୍ଟିକୁ ନିଜର କରିବାକୁ ବିଶେଷ ଆଗ୍ରହାନ୍ୱିତ ନୋହୁଁ। ଆପଣମାନେ ବଙ୍ଗକବି ଦ୍ୱିଜେନ୍ଦ୍ର ଲାଲଙ୍କର, "ଯେ ଦିନ ସୁନୀଳ ଜଳଧି ହଇତେ, ଉଠିଲ ଜନନୀ ଭାରତବର୍ଷ" ଗାନଟି ଶୁଣିଥିବ। ଏହାର ଛନ୍ଦ ବାଇରନ୍‌ଙ୍କ "Isles of Greece, Isles of Greece where burning Sapho sang" ଏହି ପ୍ରସିଦ୍ଧ କବିତାର ଅନୁସାରୀ। ରବୀନ୍ଦ୍ରନାଥଙ୍କ 'ଉର୍ବଶୀ'ରେ କିଟସ୍‌ଙ୍କ ପ୍ରସିଦ୍ଧ ଓଡ୍ ଗାଥାଗୁଡ଼ିକର ଛନ୍ଦର ଛାୟା ସ୍ପଷ୍ଟ। ଛନ୍ଦପଟୁ ବଙ୍ଗକବି ସତ୍ୟେନ୍ଦ୍ରନାଥ ଇଂରାଜୀ ରୀତି ଅନୁସରଣ କରି ନାନା ନୂତନ ଛନ୍ଦରେ ବଙ୍ଗଭାଷାକୁ ବିଚିତ୍ର କରିଯାଇଛନ୍ତି। କିନ୍ତୁ ଆମେ ସେଇ ଚକ୍ରକେଳି ଓ ବଙ୍ଗଳାଶ୍ରୀରେ ପଡ଼ିରହିଛୁ। Ultra modernମାନେ Whitmanଙ୍କ କଥାଛନ୍ଦ ଆମ ଭାଷାରେ ବ୍ୟବହାର କରୁଛନ୍ତି; କିନ୍ତୁ ଯେଉଁମାନେ ବ୍ୟବହାର କରୁଛନ୍ତି, ସେମାନଙ୍କର ବୋଧହୁଏ ବିଶ୍ୱାସ ଯେ, ଏହା ଅତି ସହଜ କ୍ରିୟା; ଯିମିତି ଅନେକଙ୍କର ଧାରଣା ଯେ, ଅମିତ୍ରାକ୍ଷର ଛନ୍ଦ ବଡ଼ ସହଜ କଥା। ଓଡ଼ିଆରେ ଯେଉଁମାନେ କଥା-ଛନ୍ଦ ବ୍ୟବହାର କରନ୍ତି, ସେମାନେ ଯେ Whitmanଙ୍କୁ ସ୍ୱତନ୍ତ୍ର ଆଦର୍ଶ କରି କଲମ ଧରିଛନ୍ତି ତା ନୁହେଁ, ସେମାନଙ୍କର ଆଦର୍ଶ ସୁପ୍ରାପ୍ୟ ବଙ୍ଗଳା ମାଗାଜିନ୍‌ର ଅତ୍ୟାଧୁନିକ କାବ୍ୟ ଲେଖାସବୁ Whitmanଙ୍କ ଲେଖାରେ ଏକ ବଳିଷ୍ଠ ବ୍ୟକ୍ତିତ୍ୱ ଆମେ ସର୍ବତ୍ର ପାଉ। ରବୀନ୍ଦ୍ରନାଥ ଏହି କଥା-ଛନ୍ଦ ବ୍ୟବହାର କରି ଅନୁପମ କବିତା ଦେଇଯାଇଛନ୍ତି। ସେମାନଙ୍କ ରହସ୍ୟ ସେମାନଙ୍କର ସ୍ୱତନ୍ତ୍ର ଜିନିଷ। ଏହି ରହସ୍ୟ ସମଜିବାକୁ ହେଲେ ଛନ୍ଦବିଜ୍ଞାନର ଗଭୀର ଗବେଷଣା ଓ ଆଲୋଚନା ଦରକାର, ଯାହା କି ଆମ ସାହିତ୍ୟରେ ନାହିଁ। ଗୋପାଳକୃଷ୍ଣଙ୍କର ଓ ଅଭିମନ୍ୟୁଙ୍କ କବିତାର ପ୍ରଚାର ଏ ଦେଶରେ ଯେପରି ହୋଇଛି, ରାଧାନାଥ, ମଧୁସୂଦନଙ୍କର ସେପରି ହୋଇନାହିଁ। କାହିଁକି ହେଉନାହିଁ, ଛନ୍ଦ-ଦୋଷ ବା ବିଷୟଦୋଷ କେଉଁଥିରୁ ହେଉନାହିଁ, ତାହା ବିଚାର କରିବାର କଥା।

ନୂତନ ମନେକରି ଆମେ ଇଂରାଜୀ ସାହିତ୍ୟର ଅନେକ କିଛି, ଗତ ଦୁଇଶହ ବର୍ଷ ହେଲା ଚିନ୍ତାହୀନ ଭାବରେ ଗଳାଧଃକରଣ କରିଆସିଅଛୁ; କିନ୍ତୁ ପ୍ରକୃତରେ ସେଗୁଡ଼ିକ ନୂତନ ନୁହେଁ। ଏଇ କେତେଦିନ ତଳେ ମୁଁ କେନ୍ଦୁଝର ଗଡ଼କୁ ଯିବାର ସୁଯୋଗ ପାଇଥିଲି। ତତ୍ରତ୍ୟ ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ କେନ୍ଦୁଝର ଗ୍ରନ୍ଥମାଳାର ସମ୍ପାଦକ। ପଣ୍ଡିତ ମହାଶୟ ଉତ୍କଳୀୟ କବି ନୀଳକଣ୍ଠକୃତ 'ଭଞ୍ଜମହୋଦୟ' ନାମକ ଏ ସଂସ୍କୃତ କାବ୍ୟ ପାଇଛନ୍ତି। ଏହା ଅଷ୍ଟାଦଶ ଶତାବ୍ଦୀର ଲେଖା। ଅର୍ଥାତ୍ ଯେଉଁ ସମୟରେ ଇଂଲିସ୍ ସାହିତ୍ୟରେ ରୋମାଣ୍ଟିକ୍ ରିଭାଇଭାଲ ହେଉଥିଲା, ଏ କାବ୍ୟେ ସେହି ସମୟର। ଆପଣମାନେ ତ ଜାଣନ୍ତି ଯେ, ରୋମାଣ୍ଟିକ୍ ରିଭାଇଭାଲର ପ୍ରଧାନ ଲକ୍ଷଣ ହେଉଛି, ପ୍ରକୃତି ପ୍ରତି ବିସ୍ମୟରଞ୍ଜିତ ଅନୁରାଗ ଓ ସାଧାରଣ ମନୁଷ୍ୟ ଭିତରେ କାବ୍ୟୋପଯୋଗୀ ଉପାଦାନର ଆବିଷ୍କାର। ଇଂରେଜ ସାହିତ୍ୟିକମାନେ ଏଇ ଲକ୍ଷଣ ସବୁକୁ ନେଇ ଉଚ୍ଛ୍ୱସିତ ପ୍ରବନ୍ଧ ଲେଖିଯାଇଛନ୍ତି, ଯାହାକୁ କି ଆମେ ସରସ୍ୱତୀ-ମୁଖନିଃସୃତ ବେଦ ପରି ଗତ ଦେଢ଼ଶହ ବର୍ଷ ହେଲା ମସ୍ତିଷ୍କଗତ କରିବାକୁ

ପ୍ରାଣପଣେ ଚେଷ୍ଟାକରିଆସିଛୁ। କିନ୍ତୁ, ରୋମାଣ୍ଟିକ୍ ରିଭାଇଭାଲର ପ୍ରାୟ ସମକାଳରେ ରଚିତ ଏହି 'ଭଞ୍ଜ-ମହୋଦୟ' କାବ୍ୟରେ କଅଣ ଅଛି, ଦେଖ। ଏ କାବ୍ୟ ସ୍କଟ୍‌ଙ୍କ କାବ୍ୟକାହାଣୀମାନଙ୍କ ପରି ଓଡ଼ିଶାର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନର ଇତିହାସ ଓ ପ୍ରକୃତିକୁ ନେଇ ଲିଖିତ। ଏଥିରେ କେନ୍ଦୁଝରର ସୁପ୍ରସିଦ୍ଧ ଗୋନାସିକା ପର୍ବତ, ବୈତରଣୀ ନଦୀ ଓ ଅନ୍ୟାନ୍ୟ ଦର୍ଶନୀୟ ଓ ଶୋଭନ ସ୍ଥାନମାନଙ୍କର ବର୍ଣ୍ଣନା ସଙ୍ଗେ ଅଛି ପୁଣି ଜୁଆଙ୍ଗମାନଙ୍କର ସାରଲ୍ୟମୟ, ଆନନ୍ଦମୟ ପାର୍ବତ୍ୟ ଜୀବନର ବର୍ଣ୍ଣନା। ଏହ କାବ୍ୟର ପ୍ରଧାନ ଉପଜୀବ୍ୟ ବିଷୟ ହେଉଛି, କେନ୍ଦୁଝର ଓ ବାମଣ୍ଡା ରାଜ୍ୟ ଭିତରେ ଏକ ଐତିହାସିକ ଯୁଦ୍ଧ। ଇଂଲିସ୍‌ରେ ରୋମାଣ୍ଟିସିଜମ୍ କହିଲେ ଯାହା ବୁଝାଏ, ଏ କାବ୍ୟରେ ତାହାର ସର୍ବଲକ୍ଷଣ ବିଦ୍ୟମାନ। ବସ୍ତୁତଃ ଭାରତୀୟ କାବ୍ୟ-ସାହିତ୍ୟରେ ପ୍ରଥମରୁ ଏଯାଏଁ ରୋମାଣ୍ଟିସିଜମ୍‌ର ସ୍ରୋତ ବରାବର ପ୍ରବାହିତ। ଇଂଲିସ-ସାହିତ୍ୟରେ ଏ ଜିନିଷ ଦେଖି ବିସ୍ମୟାଭିଭୂତ ହେବାର କୌଣସି କାରଣ ନାହିଁ।

ତେଣୁ ମୁଁ କହେ, ଗୋପାଳକୃଷ୍ଣଙ୍କ ପରେ ଆମେ ଆମ ସାରସ୍ୱତ ଭଣ୍ଡାରରେ ପ୍ରକୃତରେ କିଛି ନୂତନ ମାଲ ଥୋଇ, ଆଗେଇଛୁ କି ନାହିଁ ତାର ବିଚାର କରିବାର ସମୟ ଆସିଛି। ଯଦି ପ୍ରକୃତରେ ଅଗ୍ରସର ହୋଇଛୁ, ତାର ପରୀକ୍ଷା କାହିଁ? ଛନ୍ଦରେ ନା ଭାବରାଜିରେ? କେଉଁଥିରେ ଆମର ନୂତନ ସାହିତ୍ୟ ନୂତନତ୍ୱ ଆଣିଛି? ଆମେ ଇଂରେଜୀ ସାହିତ୍ୟରୁ ଯାହା ଆଣିଛୁ, ତାହା ଆମ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ, ନା ସେହିପରି ଜିନିଷ ଆମ ସାହିତ୍ୟରେ ଅଛି? ଆମ ସାହିତ୍ୟରେ ଏକାବେଳକେ ନାହିଁ, ଏପରି ଉତ୍କୃଷ୍ଟ ଜିନିଷ ଇଂରାଜୀ-ସାହିତ୍ୟରେ କଅଣ ଅଛି? ସେ ସବୁକୁ ଆମ ଭାଷାରେ ସଂଗୃହୀତ କରିବା ପାଇଁ କିଛି ଚେଷ୍ଟା ହୋଇଛି କି?

## ଅଷ୍ଟମ ଅଧ୍ୟାୟ

## ଓଡ଼ିଶାର ସାମାଜିକ ଜୀବନ*

ଓଡ଼ିଶାର ସାମାଜିକ ଜୀବନ ସଂପର୍କରେ ମୋର ଯାହା ମତ ଓ ସିଦ୍ଧାନ୍ତ, ତାହା ବହୁଦିନର। ପ୍ରାୟ ଦୁଇବର୍ଷ କାଳ, ଇଂଲଣ୍ଡରେ ରହିବା ଫଳରେ ଏବଂ ସେ ଦେଶର ସାମାଜିକ ଜୀବନର ପ୍ରତ୍ୟକ୍ଷ ସଂପର୍କରେ ଆସିବା ଫଳରେ ଆମ ଦେଶର ସାମାଜିକ ଜୀବନ ଆଡ଼କୁ ମୋ' ମନରେ କେତେ ଗୁଡ଼ିଏ ପ୍ରତିକ୍ରିୟା ବହୁ ଦିନରୁ ଜାତହୋଇଅଛି।

---

* ବ୍ରହ୍ମପୁରରେ ଏକ ସାହିତ୍ୟ ସମ୍ମିଳନୀରେ ପ୍ରଦତ୍ତ ବକ୍ତୃତା

ସମାଜକୁ, ସାଧାରଣତଃ, ଗୋଟିଏ ସମୁଦ୍ର ସଙ୍ଗେ ତୁଳନା କରାଯାଇପାରେ, ଯେଉଁଥିରେ କି ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଟିଏ ନୀରବିନ୍ଦୁ। ଏହ ଉପମାରୁ ଏହା ପ୍ରମାଣିତ ହେବ ଯେ ବ୍ୟକ୍ତି ଓ ଗୋଷ୍ଠୀ ମଧ୍ୟରେ ସମ୍ବନ୍ଧ ଅଭିନ୍ନ। ଏକକୁ ନେଇ ଅନ୍ୟର ସ୍ଥିତି। କିନ୍ତୁ ଓଡ଼ିଆ ସାମାଜିକ ଜୀବନ ସଂବଂଧରେ ମୁଁ ଏ ଉପମା ଦେବାକୁ କୁଣ୍ଠିତ। କାରଣ, ଏଠି ବ୍ୟକ୍ତି ଓ ସମାଜର ସଂବନ୍ଧ ଘନିଷ୍ଠ ନ ହୋଇ ଶିଥିଳ, ନିକଟ ନ ହୋଇ ଦୂର। ଏଠି ସମାଜ ଏକ ବିରାଟ ଅଭିନ୍ନ ଗୋଷ୍ଠୀ ନ ହୋଇ, ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ପରିବାର, ଗୋଷ୍ଠୀ ସମାବେଶ ମାତ୍ର। ଏଠି ବ୍ୟକ୍ତି ଓ ସମାଜ ମଧରେ ବର୍ଣ୍ଣ ଓ caste ପ୍ରଭୃତିର ପାଚେରି ଠିଆହୋଇ ପରସ୍ପରକୁ ବହୁଧା ଛିନ୍ନ-ବିଛିନ୍ନ କରି ସହସ୍ର ସହସ୍ର କ୍ଷୁଦ୍ର ବୃତ୍ତ ସୃଷ୍ଟି କରିଅଛି। ତେଣୁ ଓଡ଼ିଆ ସମାଜକୁ ମୁଁ ସମୁଦ୍ରର ଉପମା ଦେଇପାରୁନାହିଁ; ବରଂ ଏହା ଏପରି ଗୋଟିଏ ଦୃଶ୍ୟ ସଙ୍ଗେ ତୁଳନା କରାଯାଇପାରେ – ଗୋଟିଏ ବିରାଟ ଭୂମି, ଯହିଁରେ ଜଳଭଣ୍ଡାର ରହିବା ପରିବର୍ତ୍ତରେ ରହିଛି ଅଗଣିତ ଛୋଟ ଛୋଟ ଚୂଆ, ଯେଉଁଥିରେ ପାଣି ଏତେ ପଂକିଳ ଓ ଅଗଭୀର ଯେ ସେଠି ବଡ଼ ମାଛର ଜନ୍ମ ଓ ବୃଦ୍ଧି ଅସମ୍ଭବ; ତେଣୁ ସେଠି ଅଛନ୍ତି ଓ ରହିପାରନ୍ତି କେବଳ ଛୋଟ ମୀନ। ଆମେ ଟିକେ ଚିନ୍ତା କଲେ ଓଡ଼ିଆ ସାମାଜିକ ଜୀବନ ଯେ ଠିକ୍ ଏହିପରି, ତାହା ସହଜରେ ବୁଝିପାରିବା। ଅବଶ୍ୟ ଚୁଆଗୁଡ଼ିକୁ ଗଭୀର ଭାବରେ ଖୋଳି ମିଶାଇଦେଲେ ଏହି ସମାଜ ବିରାଟ ଜଳଭଣ୍ଡାର ହୋଇ ସମସ୍ତ କୂଳଦେଶକୁ ଉର୍ବର କରିବା ସଙ୍ଗେ ସଙ୍ଗେ ନିଜେ ବିରାଟ ଜଳଚର ଜୀବମାନଙ୍କର କ୍ରୀଡ଼ାଭୂମି ହୋଇପାରନ୍ତା। କିନ୍ତୁ ତାହା ହୋଇନାହିଁ; ଫଳରେ ଓଡ଼ିଆମାନେ, ଛୋଟ ଚୁଆରେ ଛୋଟ ମୀନ ବଞ୍ଚିଲା ପରି, ସଂକୁଚିତ, ଆନନ୍ଦବର୍ଜିତ, ସ୍ୱାଧୀନତା-ବର୍ଜିତ ଦୁଃଖମୟ ଜୀବନ ଯାପନ କରୁଅଛନ୍ତି।

ସମାଜ କ'ଣ? ଏହା ବ୍ୟକ୍ତିମାନଙ୍କର ଗୋଷ୍ଠୀ। ମନୁଷ୍ୟ ଏକ ସାମାଜିକ ଜୀବ। ଚେଷ୍ଟା କଲେ ମନୁଷ୍ୟ ଏକାକୀ ଜୀବନ ଯାପନ କରିପାରେ। ଆମର ଯୋଗୀମାନେ ଏପରି ଜୀବନ ଯାପନ କରନ୍ତି; କିନ୍ତୁ ଯୋଗୀମାନେ ମଧ ସେମାନଙ୍କର ଜୀବିକା ପାଇଁ ସମାଜ ଉପରେ ନିର୍ଭର କରନ୍ତି। ସମାଜ ବ୍ୟକ୍ତିକୁ ଜୀବିକା ଅର୍ଜନରେ ତ ସାହାଯ୍ୟ କରିଥାଏ; ତାହାଛଡ଼ା ସମାଜରେ ନ ରହିଲେ ବ୍ୟକ୍ତି-ଜୀବନର ପରିପୂର୍ଣ୍ଣ ବିକାଶ ଅସମ୍ଭବ। କବି କାହାପାଇଁ ଗୀତ ଲେଖିବ? ଶିଳ୍ପୀ କାହାପାଇଁ ଚିତ୍ର ଆଙ୍କିବ? କାଳିଦାସ ସମାଜରେ ନଥିଲେ କ'ଣ ଶକୁନ୍ତଳା ଲେଖିଥାନ୍ତେ? କବି ଓ ଶିଳ୍ପୀ ପରି ମଧ ସମାଜ କୃଷକ, ବଣିକ, ସ୍ୱର୍ଣ୍ଣକାର, ମାଳୀ, ଧର୍ମପ୍ରଚାରକ, ଶିକ୍ଷକ, ଦାର୍ଶନିକ ପ୍ରଭୃତିଙ୍କ ସୃଷ୍ଟି କରିଅଛି। ସମାଜ ବ୍ୟକ୍ତିକୁ ନାନା ଭାବରେ ଉଦ୍‌ବୁଦ୍ଧ କରି ତା'ରି ଭିତରେ ମନୁଷ୍ୟତାକୁ ପୂର୍ଣ୍ଣ ବିକାଶ ଦିଗରେ ସହାୟତା କରେ। ଗୋଷ୍ଠୀ ଯେ ବ୍ୟକ୍ତିକୁ ଆପଦହୀନତା ଓ ଜୀବନର ଅନ୍ୟାନ୍ୟ ସ୍ୱାଚ୍ଛନ୍ଦ୍ୟ ଦାନ କରେ, ତାହା ତ ଆମ୍ଭେମାନେ ସମସ୍ତେ ଜାଣୁ। ସରକାର ସମାଜର ଅନ୍ୟ ଏକ ରୂପ ମାତ୍ର। ସରକାରଙ୍କ କଟୁଆଳ ଆମ୍ଭମାନଙ୍କୁ ଅତ୍ୟାଚାରରୁ ରକ୍ଷା କରୁଅଛି। ଉତ୍ତମ ରାସ୍ତା

ଦେଇ ଆମ୍ଭମାନଙ୍କର ଗମନାଗମନର ସୁବିଧା କରିଦେଇଅଛି। ଉତ୍ତମ ହସ୍‌ପିଟାଲଦ୍ୱାରା ଆମର ଦେହର ଓ ଉତ୍ତମ ସ୍କୁଲ ଦ୍ୱାରା ଆମର ମନର ସ୍ୱାସ୍ଥ୍ୟ ରକ୍ଷା କରୁଅଛି। ସରକାରଙ୍କର ଏ ସୁବିଧା କିନ୍ତୁ ଦାତା-କର୍ଣ୍ଣର ଦାନ ନୁହେଁ; ଏହା ଆମ ସମସ୍ତଙ୍କର ମେଣ୍ଟ ବାନ୍ଧିବାର ଫଳ। ଏକା ଏକା ଆମେ ଏସବୁ ସୁବିଧା ପାଆନ୍ତୁ ନାହିଁ, ଏକାଠି ହେଲେ ଏସବୁ ସହଜରେ ମିଳେ। ତେଣୁ ଦେଖାଯାଉଛି, ପରସ୍ପରକୁ ସହାୟତା କରିବାରେ ସମାଜ ଓ ବ୍ୟକ୍ତି ଉଭୟର ମଙ୍ଗଳ। ବ୍ୟକ୍ତି ସମାଜକୁ ସୃଷ୍ଟି କରେ ଏବଂ ସମାଜ ବ୍ୟକ୍ତିର ଅଭିବୃଦ୍ଧିରେ ସାହାଯ୍ୟ କରେ। ତେଣୁ ଏ ଦୁହିଙ୍କର ସଂବନ୍ଧ ପରସ୍ପର ପ୍ରତି ସଦିଚ୍ଛା ଓ ସହଯୋଗ ଉପରେ ପ୍ରତିଷ୍ଠିତ ହେବା ଉଚିତ। ତା' ନ ହେଲେ ଉଭୟେ ହୀନତା ଆଡ଼କୁ ଗତିକରିବେ।

କିନ୍ତୁ ଆମର ସାମାଜିକ ଜୀବନରେ ଆମ୍ଭେମାନେ ଦେଖୁଁ କ'ଣ? ବ୍ୟକ୍ତି ଓ ସମାଜ ମଧ୍ୟରେ ଏହି ସଦିଚ୍ଛା ଓ ସହଯୋଗ ଦେଖିବାକୁ ପାଉଁ କି? ଓଡ଼ିଶା ଦେଶର ସାମାଜିକ ଜୀବନରେ ଏହା ଏକାବେଳକେ ନାସ୍ତି, କହିଲେ ଚଳେ। ମୁଁ ପୂର୍ବରୁ କହିଛି ଯେ, ଓଡ଼ିଆ ସାମାଜିକ ଜୀବନରେ ବିରାଟ ଅଚ୍ଛିନ୍ନତା ନାହିଁ– ଅଛି ଅଗଣିତ କ୍ଷୁଦ୍ର ଗୋଷ୍ଠୀର ଖର୍ବତାର ମେଳା ଓ ସଂଘର୍ଷ। ଓଡ଼ିଆର ପ୍ରଥମ ଗୋଷ୍ଠୀ ଓଡ଼ିଆ ଜାତି ବା ଓଡ଼ିଆ ସମାଜ ନୁହେଁ; ତାହା ତା'ର ନିଜର ଛୋଟ ପରିବାର। ତା'ଠୁଁ ବଡ଼ ଗୋଷ୍ଠୀ ତାର caste (କାସ୍‌ଟ)। କୁଟୁମ୍ବ ବା କାସ୍‌ଟ ମଧ୍ୟ ବ୍ୟକ୍ତିକୁ ଉଦ୍‌ବୁଦ୍ଧ କରି ତା'ର ମନୁଷ୍ୟତ୍ୱର ବିକାଶରେ ସହାୟତା କରିପାରନ୍ତି। କିନ୍ତୁ ସେଥିଲାଗି ଅବଶ୍ୟ କୁଟୁମ୍ବ ଓ କାସ୍‌ଟ ଉଚ୍ଚ ଆଦର୍ଶରେ ନିଜେ ଅନୁପ୍ରାଣିତ ହୋଇଥିବା ଦରକାର। କିନ୍ତୁ ଓଡ଼ିଆ ପରିବାର ବା ଓଡ଼ିଆ କାସ୍‌ଟ କୌଣସି ଉଚ୍ଚ ଆଦର୍ଶରେ ଯେ ଅନୁପ୍ରାଣିତ ନୁହେଁ, ତାହା ଆମେ ସମସ୍ତେ ଜାଣୁ। ଆମ୍ଭର ପରିବାର ଗୋଟିଏ ଆର୍ଥିକ ଆବଶ୍ୟକତା ଉପରେହିଁ ପ୍ରତିଷ୍ଠିତ। ଏଥିରେ ଅନ୍ୟ କୌଣସି ଉଚ୍ଚତର ଆଦର୍ଶ ନାହିଁ। ଓଡ଼ିଆ ପରିବାର ଭାଙ୍ଗିଗଲେ ଭାଇମାନେ ଉଚ୍ଚତର ଗୋଷ୍ଠୀ-ଜୀବନର କୌଣସି ସ୍ମୃତି ନ ନେଇ, ନେଇଯାନ୍ତି ଧାନ-ଚାଉଳପାଇଁ କେବଳ ତିକ୍ତ କଳହର ସ୍ମୃତି। ପ୍ରକୃତରେ ଆମ୍ଭମାନଙ୍କର ପାରିବାରିକ ଜୀବନ କେବଳ ପ୍ରାଣୀତ୍ୱର ସଂରକ୍ଷଣ-ପାଇଁ ଉଦ୍ଦିଷ୍ଟ; ସେଥିରେ ଉଚ୍ଚତର ଜୀବନର ବିଶେଷ କୌଣସି ଗନ୍ଧ ନାହିଁ ଏବଂ ତାହା 'କାସ୍‌ଟ'ର ନିଗୂଢ଼ ବନ୍ଧନରେ ନିଜେ ଏପରି ପିଷ୍ଟ ଯେ ବ୍ୟକ୍ତିକୁ ସ୍ୱାଧୀନତା ଦେଇ ତାକୁ ତା'ର ପୂର୍ଣ୍ଣ ବିକାଶ ଲାଗି ଉଦ୍‌ବୁଦ୍ଧ କରିବାର ଶକ୍ତି ତାର ନିଜର ନଥାଏ। ଆଉ ଆମର କାସ୍‌ଟ କିପରି କେବଳ କେତେଗୁଡ଼ିଏ ନିଷେଧ ଉପରେ ପ୍ରତିଷ୍ଠିତ, ତାହା ମଧ୍ୟ ଆମ୍ଭେମାନେ ଜାଣୁ। ଏହି ନିଷେଧର ବେଡ଼ି ଓ ହାତକଡ଼ି ପିନ୍ଧି କୁଟୁମ୍ବ ଓ ବ୍ୟକ୍ତିର ଗତି, ଗୋଡ଼ରେ ଦଉଡ଼ି ବନ୍ଧା ହୋଇଥିବା ବାଛୁରୀର ଗତିପରି ଚିରସଂକୁଚିତ। ସମାଜ, ବ୍ୟକ୍ତି ଉପରେ କିଛି କିଛି କର୍ତ୍ତୃତ୍ୱ ସବୁ ଦେଶରେ କରିଥାଏ। ତାହା ଚାରା ଗଛର ମୋଡ଼ା ପରି କଲ୍ୟାଣକର। କିନ୍ତୁ ଆମ ଦେଶପରି କୌଣସିଠାରେ ସମାଜ ଓ ବ୍ୟକ୍ତିର ସଂବନ୍ଧ କଏଦୀ ଓ କଟୁଆଳର ସଂବନ୍ଧ ପରି

ନୁହେଁ। ସମାଜ ଓ ବ୍ୟକ୍ତି ପରସ୍ପରର ବନ୍ଧୁ ହେବା ପରିବର୍ତ୍ତେ ଏଠି ଉଭୟେ ଉଭୟର ଶତ୍ରୁ। ଏଠି ସମାଜର ଅସ୍ତିତ୍ୱର ଏକମାତ୍ର ଅର୍ଥ ଯେପରି କି ବ୍ୟକ୍ତି ହାତରେ ହାତକଡ଼ି ଦେବା।

ଫଳରେ, ମନୁଷ୍ୟର ବ୍ୟକ୍ତିତ୍ୱକୁ ସମାଜ ଚିପି ରଖିବା ଯୋଗୁଁ ଆମ ଦେଶରେ ବିରାଟ, ସୁନ୍ଦର ଓ ପରିପୂର୍ଣ୍ଣ ବ୍ୟକ୍ତିତ୍ୱର ଏତେ ଅଭାବ। ମଧୁସୂଦନଙ୍କ ଭାଷାରେ ଆମେ ବର୍ତ୍ତମାନ ମଧ୍ୟ କହିବା –

''କୋଟିଏ ସନ୍ତାନ ମା'ଗୋ ଧରିଅଛୁ କୋଳେ
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ଡୋଳେ।''

କବିଙ୍କର ବିଳାପର କାରଣ ଖୋଜିବାକୁ ଗଲେ ଆମ୍ଭେମାନେ ଦେଖିବାକୁ ପାଇବା ସେ, ଓଡ଼ିଆ-ମା' ତାର ସନ୍ତାନମାନଙ୍କର ମନୁଷ୍ୟତ୍ୱର ବିକାଶପାଇଁ ଯେଉଁ ଅନୁକୂଳ ପରିସ୍ଥିତି ଦରକାର, ତାହା ରଖିନାହିଁ। ଓଡ଼ିଶାରେ ସାମାଜିକ ଜୀବନ ବ୍ୟକ୍ତି ଓ ସମାଜର ପାରସ୍ପରିକ ସହଯୋଗ ଉପରେ ପ୍ରତିଷ୍ଠିତ ନ ହୋଇ ବ୍ୟକ୍ତିର ସମାଜପ୍ରତି ଅନପେକ୍ଷା ଏବଂ ସମାଜର ବ୍ୟକ୍ତିକୁ ଚିପିରଖିବାର ଚେଷ୍ଟା ଉପରେ ପ୍ରତିଷ୍ଠିତ। ଫଳରେ ସମାଜ ହୋଇଛି ଖଣ୍ଡବିଖଣ୍ଡିତ ଏବଂ ବ୍ୟକ୍ତି ହୋଇଛି ଖର୍ବ। ଏହି ଦୁରବସ୍ଥା ଆମ୍ଭମାନଙ୍କର ସମଗ୍ର ସାମାଜିକ ଜୀବନକୁ ଗ୍ରାସ କରିଅଛି। ତାହା ଆମ୍ଭେମାନେ ଜୀବନର ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଅଛୁଁ। ନିଷେଧର ଚିପା ଖାଇ ଖାଇ ବ୍ୟକ୍ତି ବଢୁନାହିଁ ଏବଂ ଗୁଳ୍ମାକୃତି ବ୍ୟକ୍ତିମାନଙ୍କୁ ନେଇ ଦେଶର ଅରଣ୍ୟାନୀ ଯେପରି ଶ୍ୟାମଳ ବନସ୍ପତିମୟ ହୋଇପାରନ୍ତା, ତାହା ହୋଇପାରୁନାହିଁ। ଆମ୍ଭମାନଙ୍କର ଜାତୀୟ ଜୀବନର ସବୁ ବିଭାଗରେ ଏହି ଦୀନତା ଓ ହୀନତା ଫୁଟିବାହାରୁଛି। ରାଜନୀତି କହ, ସାହିତ୍ୟ କହ ବା ପାରିବାରିକ ଜୀବନ କହ, ସବୁଠି ଓଡ଼ିଆ ଯେପରି କ୍ଷୁଦ୍ରତାକୁ ନେଇ କାରବାର କରେ, ତାହା ଅନ୍ୟ କୌଣସିଠାରେ ଦେଖାଯାଏନାହିଁ।

ମଧ୍ୟ-ଯୁଗରେ ୟୁରୋପୀୟ ସମାଜ ଠିକ୍ ଆମର ସମାଜ ପରି ଥିଲା। ଚର୍ଚ୍ଚ ସେଠି ମନୁଷ୍ୟକୁ ଚିପିରଖିଥିଲା। ଫଳରେ ସମଗ୍ର ୟୁରୋପ ମୂର୍ଖତାର ଅନ୍ଧକାରରେ ବୁଡ଼ିରହିଥିଲା। ଆମେ ଜାଣୁଁ ଯେ ଗାଲିଲିଓ, 'ପୃଥିବୀ ବୁଲୁଛି' ଏକଥା ପ୍ରଚାର କରିବା ପାଇଁ ଜେଲଦଣ୍ଡ ଭୋଗିଥିଲେ। କାରଣ, ବାଇବଲ୍‌ରେ ପୃଥିବୀ ବୁଲିବାର କୌଣସି ପ୍ରମାଣ ନାହିଁ ଏବଂ ଧର୍ମାନ୍ଧ ପାଦ୍ରୀମାନଙ୍କ ମତରେ ବାଇବଲରେ ଯାହା ନାହିଁ ତାହା ମିଥ୍ୟା ଏବଂ ତା'ର ପ୍ରଚାର ଈଶ୍ୱରଙ୍କର ବିରୁଦ୍ଧ କର୍ମ। ଖ୍ରୀଷ୍ଟିଆନ ପୁରୋହିତ ସଂପ୍ରଦାୟର ଏହି ଧର୍ମାନ୍ଧତା ଏପର୍ଯ୍ୟନ୍ତ ଜିଇରହିଛି। ଊନବିଂଶ ଶତାବ୍ଦୀରେ ଡାରଉଇନ୍ ଯେତେବେଳେ ତାଙ୍କର ବିବର୍ତ୍ତନବାଦ ପ୍ରଚାର କଲେ, ସେତେବେଳେ ଖ୍ରୀଷ୍ଟୀୟ ପୁରୋହିତ ସଂପ୍ରଦାୟ ତାହାର ତୁମୁଳ ବିରୋଧ ଆରମ୍ଭ କରିଥିଲେ। କାରଣ, ବାଇବଲ୍ ମତରେ ଈଶ୍ୱର ଛଅ ଦିନରେ ପୃଥିବୀ ସୃଷ୍ଟି କରିଥିଲେ; ତେଣୁ ଡାରଉଇନ୍‌ଙ୍କ ମତ, ଯାହା ଅନୁସାରେ ସୃଷ୍ଟି କୋଟି କୋଟି ବର୍ଷ ବ୍ୟାପୀ କ୍ରମବିକାଶର ଫଳ, ତାହା ମିଥ୍ୟା। ଏହି ଧର୍ମାନ୍ଧତା ଖ୍ରୀଷ୍ଟିଆନ ପୁରୋହିତମାନଙ୍କଠାରେ ଆଜି ପର୍ଯ୍ୟନ୍ତ

ଥିଲେହେଁ, ୟୁରୋପୀୟ ସମାଜ ଅନେକ ପରିମାଣରେ ସମସ୍ତ ପ୍ରକାର ସାମାଜିକ ବନ୍ଧନରୁ ନିଜକୁ ମୁକ୍ତ କରିପାରିଛି ଏବଂ ସେହି ମୁକ୍ତିର ଫଳ ବର୍ତ୍ତମାନର ୟୁରୋପୀୟ ସଭ୍ୟତା। ଏହି ସଭ୍ୟତା ଦୁଇ-ଦୁଇଟି ମହାଯୁଦ୍ଧ ଫଳରେ ଆଜି ଦୁର୍ଦ୍ଦଶାଗ୍ରସ୍ତ ବୋଲି, କେହି ଯେପରି ନ ଭାବନ୍ତି ଯେ, ଏହା ତାହାର ଚିତାନଳ। ଗତିଶୀଳ ବସ୍ତୁ ଯେ ସଂଘର୍ଷରେ ଆସିବ, ଏଥିରେ ସନ୍ଦେହ ନାହିଁ। କିନ୍ତୁ ସେହି ସଂଘର୍ଷ ଜଡ଼ର ନିର୍ଜୀବତାଠାରୁ ଢେର୍ ଭଲ ନୁହେଁ କି? ୟୁରୋପ ଆଜି ଧ୍ୱଂସ ସ୍ତୂପରେ ପୂର୍ଣ୍ଣ ହୋଇ ଉଠିଥିଲେ ମଧ୍ୟ ମୋର ବିଶ୍ୱାସ, ସଂଘର୍ଷ ଶେଷ ହେଲେ ଅଳ୍ପକାଳ ମଧ୍ୟରେ ପୁଣି ଏକ ମହତ୍ତର ୟୁରୋପ ସଗର୍ବରେ ଦଣ୍ଡାୟମାନ ହେବ।* ଏହାର ଏକମାତ୍ର କାରଣ ଏହି ଯେ, ସେଠି ମନୁଷ୍ୟ ସକଳ ପ୍ରକାର ନିଷେଧ ଓ ଚାପରୁ ନିଜକୁ ମୁକ୍ତ କରି ନିଜର ନରତ୍ୱକୁ ଏପରି ଅଭିବୃଦ୍ଧି କରିପାରିଅଛି ଯେ, ସେ ଯେଉଁଠି ଓ ଯେଉଁ ଅବସ୍ଥାରେ ଠିଆହେଲେ ମଧ୍ୟ ଗୋଟିଏ ସଭ୍ୟ ଜୀବନ ସୃଷ୍ଟି କରି ପାରିବ। ଏଡ଼େନ୍‌ର କଠୋର ପଥର ଓ ସୁଏଜ କେନାଲ ଦାଢ଼ର ମରୁଭୂମିକୁ ୟୁରୋପୀୟ ମନୁଷ୍ୟର ହାତ କିପରି ସୌଷ୍ଠବ ଓ ଗୌରବସଂପନ୍ନ କରିଅଛି, ତାହା ମୁଁ ନିଜ ଆଖିରେ ଦେଖିଆସିଅଛି। ୧୯୨୦ ପର୍ଯ୍ୟନ୍ତ ପାଲେଷ୍ଟାଇନ ଗୋଟିଏ ମରୁଭୂମି ଥିଲା, ୟୁରୋପୀୟ ଜୁ (Jew) ତାକୁ ଏବେ ନନ୍ଦନକାନନରେ ପରିଣତ କରିଅଛି। ଆଙ୍ଗଲୋସାକ୍ସନ୍ ବୀରମାନେ ଆମେରିକା, କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ପ୍ରଭୃତି ବିରାଟ ପୃଥିବୀ-ଖଣ୍ଡମାନଙ୍କୁ କିପରି ସୁସଭ୍ୟ ମାନବ ବସତିରେ ପରିଣତ କରିଅଛନ୍ତି ତାହାତ ମାନବ ଇତିହାସର ଏକ ଗୌରବମୟ ଅଧ୍ୟାୟ ହୋଇ ରହିବ। ଆମ୍ଭେମାନେ କହୁ, ଇଂରେଜମାନେ ଆମକୁ exploit କରୁଛନ୍ତି ଏବଂ ତାଙ୍କର ଧନ ଓ ମାନ ଏହି exploitationର ଫଳ; କିନ୍ତୁ ଅଷ୍ଟ୍ରେଲିଆର ମରୁଭୂମିରେ, ଦକ୍ଷିଣ-ଆଫ୍ରିକାର ହୀରକ ଖଣିରେ, କାନାଡ଼ାର ପ୍ରେରିଜରେ ଇଂରେଜ କାହାକୁ ଏକ୍ସପ୍ଲଏଟ କରିଛି? ପୁରୁଷ ପୁରୁଷ ଧରି ଆଙ୍ଗଲୋ-ସାକ୍ସନ୍ ତାର ରକ୍ତ, ଶ୍ରମ ଓ ବୁଦ୍ଧି ଦେଇ ଏହି ସବୁ ଜନହୀନ ଦେଶମାନଙ୍କରେ ସୁନ୍ଦର ସଭ୍ୟତା ଠିଆକରାଇଅଛି। ମନୁଷ୍ୟ ନିଜେ ମୁକ୍ତ, ସ୍ୱାଧୀନ, ଆତ୍ମବିଶ୍ୱାସରେ ଗରୀୟାନ୍ ଓ ବିରାଟ ଆଦର୍ଶରେ ଅନୁପ୍ରାଣିତ ନହେଲେ ସଭ୍ୟତାର ବିହୁଡ଼ି ଜାଳିପାରିବ ନାହିଁ। ୟୁରୋପୀୟ ମନୁଷ୍ୟ ଆଧୁନିକ ଯୁଗରେ ଯେ ଏହା କରିପାରିଅଛି, ତାହାର କାରଣ ଏହି ଯେ, ୟୁରୋପରେ ଗତ ଚାରିଶ' ବର୍ଷ ହେଲା ମନୁଷ୍ୟତ୍ୱ ଅବାଧ ବିଚରଣର ଅଧିକାର ପାଇଅଛି।

---

* ପ୍ରାୟ ୩୦ ବର୍ଷ ପରେ ଲେଖକର ସେଦିନର ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ ହୋଇଛି। ଯୁଦ୍ଧବିଧ୍ୱସ୍ତ, ଉଭୟ ଇଂଲଣ୍ଡ ଓ ଜର୍ମାନୀ ଏପରି ସମୃଦ୍ଧି ବର୍ତ୍ତମାନ ଭୋଗ କରୁଛନ୍ତି, ଯାହା ସେମାନେ ପୂର୍ବେ କେବେ ଭୋଗି ନଥିଲେ। ଅଥଚ୍ ଭାରତ କ୍ରମେ ହେଉଛି ଦରିଦ୍ରତର।

ମଧ୍ୟଯୁଗରେ ଚର୍ଚ୍ଚର ଦୌରାତ୍ମ୍ୟ କଥା ଉଲ୍ଲେଖ କରିଅଛି। କିନ୍ତୁ ମାନବ-ଜାତିର କଲ୍ୟାଣ ପାଇଁ ଚର୍ଚ୍ଚର ଅତ୍ୟାଚାରରୁ ମନୁଷ୍ୟ ଆତ୍ମାକୁ ମୁକ୍ତି ଦେବାକୁ ୟୁରୋପରେ ରେନେସାଁର ଆବିର୍ଭାବ ହେଲା। ରେନେସାଁ ୟୁରୋପକୁ ଦ୍ୱିଜତ୍ୱ ଦାନ କରିଅଛି। ଏହା ୟୁରୋପରେ ଗ୍ରୀକ୍ କୃଷ୍ଟିର ପ୍ରଚାରର ଫଳ। ଗ୍ରୀକ୍‌ମାନେ ଖ୍ରୀଷ୍ଟାନ୍ ନ ଥିଲେ। ସେମାନେ ଆମ୍ଭମାନଙ୍କ ପରି ଦେବଦେବୀ ପୂଜା କରୁଥିଲେ। କିନ୍ତୁ ସୁଖର କଥା, ହିନ୍ଦୁ ଓ ଖ୍ରୀଷ୍ଟିଆନ ଧର୍ମରେ ଯେପରି, ଗ୍ରୀକ୍-ସମାଜରେ ସେହି ପୁରୋହିତ ସଂପ୍ରଦାୟର ସର୍ବଗ୍ରାସୀ ପ୍ରତିପତ୍ତି ନଥିଲା। ଗ୍ରୀସ୍‌ର ଚିନ୍ତାଶୀଳ ଲୋକେ ସଂସାରର ତତ୍ତ୍ୱପାଇଁ ପୁରୋହିତ ମୁହଁକୁ ଅନାଉ ନଥିଲେ। ଏସବୁ ବିଷୟରେ ସେମାନେ ଥିଲେ ସଂପୂର୍ଣ୍ଣ ସ୍ୱାଧୀନ। ଫଳରେ ଗ୍ରୀକ୍-ମନ, ଭୟଙ୍କର ପ୍ରଶ୍ନପ୍ରବଣ ହୋଇଉଠିଥିଲା। ପ୍ରଶ୍ନରୁ ଜ୍ଞାନର ଜନ୍ମ। ଫଳରେ ଜଗତ ପ୍ଲେଟୋ, ଆରିଷ୍ଟଟଲ୍, ସକ୍ରେଟିସ ପ୍ରଭୃତି ତୀକ୍ଷ୍ଣବୁଦ୍ଧି ମହାମାନବମାନଙ୍କର ଅମୂଲ୍ୟ ତତ୍ତ୍ୱରାଶି ପାଇପାରିଅଛି। ଏହି ଗ୍ରୀକ୍ ଶାସ୍ତ୍ରମାନଙ୍କରେ ଏକ ପ୍ରଧାନ ଉପଭୋଗ୍ୟ ବିସ୍ମୟ ହେଉଛି ଏହି ଯେ, ଏଥିରେ ଆପ୍ତ-ବାକ୍ୟର ବା କୌଣସି ଅଥରିଟି (authority)ର ବିଶେଷ ସ୍ଥାନ ନାହିଁ। ଏଥିରେ ମନୁଷ୍ୟ-ମନ ବହିର୍ଜଗତର ପରଦା ସବୁକୁ ଖୋଲି ଖୋଲି ନିଜର ଶକ୍ତି ଅନୁସାରେ ଜ୍ଞାନର ସ୍ୱରୂପ ଦେଖିବାକୁ ଚେଷ୍ଟା କରିଅଛି। ଏହି ଜିଜ୍ଞାସା ଫଳରେ, ପ୍ଲେଟୋ ଜଗତରେ ପ୍ରଥମେ ପ୍ରଚାର କଲେ ଯେ ମନୁଷ୍ୟ ନିଜ ଚେଷ୍ଟା ବଳରେ ସମାଜକୁ ନିଜ ଇଚ୍ଛା ଅନୁସାରେ ଗଢ଼ିପାରେ ଏବଂ ଲୋକଙ୍କର ଯେଉଁ ଧାରଣା ଯେ ଜଗତକୁ ଈଶ୍ୱର ସୃଷ୍ଟି କରିଅଛନ୍ତି ଏବଂ ତାହାର ପରିବର୍ତ୍ତନ ଅସମ୍ଭବ ଓ ଅବାଞ୍ଛନୀୟ, ତାହା ଏକାବେଳକେ ଭ୍ରାନ୍ତ। ଗ୍ରୀକ୍-ମନର ଏହି ଜିଜ୍ଞାସା ପ୍ରବୃତ୍ତି ଏବଂ ଗ୍ରୀକ୍ ଚିନ୍ତାଧାରାରେ ମନୁଷ୍ୟତ୍ୱ ଉପରେ ଏ ଯେଉଁ ଦୃଢ଼ ବିଶ୍ୱାସ, ତାହା ଚର୍ଚ୍ଚ-ନିଷ୍ପେଷିତ ୟୁରୋପୀୟ ମଧ୍ୟଯୁଗର ଅମାନିଶାରେ ନବୋଦିତ ସୂର୍ଯ୍ୟପରି କାର୍ଯ୍ୟ କରିଥିଲା। ୟୁରୋପୀୟ ମନୁଷ୍ୟ ପ୍ରଥମେ ଜିଜ୍ଞାସା କରିବାକୁ ଶିଖିଲା; ଫଳରେ ଯାହା ତାର ବିବେକାନୁମୋଦିତ ହେଲାନାହିଁ, ତାହା ସେ ପରିତ୍ୟାଗ କଲା; ଏବଂ ମନୁଷ୍ୟତ୍ୱ ପ୍ରତି ଯେଉଁ ନୂତନ ବିଶ୍ୱାସ ସେ ପାଇଲା, ତା ଫଳରେ ସେ ଜଗତକୁ ନୂଆ ଭାବରେ ଚିହ୍ନିବାକୁ ଓ ଗଢ଼ିବାକୁ ଆରମ୍ଭ କଲା। ସେହି ସମୟରୁ ୟୁରୋପୀୟ ମନୁଷ୍ୟ ଯେଉଁ ସୃଷ୍ଟି-କ୍ରିୟା ଓ ଜିଗୀଷା ଆରମ୍ଭ କରିଅଛି, ତାହା ଏପର୍ଯ୍ୟନ୍ତ ଶେଷ ହୋଇନାହିଁ।

ଭାରତର ସୌଭାଗ୍ୟ ଯେ ଯେଉଁ ଇଉରୋପୀୟମାନେ ଏଠି ସାମ୍ରାଜ୍ୟ ସ୍ଥାପନ କଲେ, ସେମାନେ ଥିଲେ ରେନେସାଁ କୃଷ୍ଟିର ଫଳ। ମୋର ମନେହୁଏ, ଯେପରି କି ୟୁରୋପରେ କାମ ସାରି, ରେନେସାଁ ଭାରତ ଓ ଅନ୍ୟାନ୍ୟ ପ୍ରାଚ୍ୟ ଦେଶମାନଙ୍କରେ କାମ ଆରମ୍ଭ କରିବାପାଇଁ ବିଧାତାର ଅଭିପ୍ରାୟ ଥିଲା। ତେଣୁ ଶ୍ୱେତାଙ୍ଗର ସଭ୍ୟତା ଓ ବାଣିଜ୍ୟ ଅଷ୍ଟାଦଶ ଶତାବ୍ଦୀରେ ପ୍ରାଚ୍ୟ ଭୂମି ଆଡ଼କୁ ପ୍ରସାର କଲା। ଏହି ସଭ୍ୟତାର ସଂସ୍ପର୍ଶରେ ଆସି ପ୍ରାଚ୍ୟ ଜଗତରେ ଯେ ଅଚିନ୍ତନୀୟ ଜାଗରଣ ଆସିଅଛି, ତାହା ସମସ୍ତେ ସ୍ୱୀକାର କରିବେ। ଅନେକ ପ୍ରାଚ୍ୟ ଭୂମିରେ ନବ-ଜାଗରଣକୁ

ପ୍ରାଚ୍ୟ-ରେନେସାଁ ବୋଲି ମଧ୍ୟ କହୁଛନ୍ତି। ୟୁରୋପରେ ଯେପରି, ଏଠି ମଧ୍ୟ ସେହିପରି ରେନେସାଁର ପ୍ରଧାନ ଲକ୍ଷଣ ହେଉଛି, ପ୍ରଶ୍ନ। ଉପନିଷଦ୍‌ରେ ଆମ୍ଭେମାନେ ମନୁଷ୍ୟ ପ୍ରାଣର ଗଭୀର ଓ ଚିରନ୍ତନ ପ୍ରଶ୍ନମାନଙ୍କର ପରିଚୟ ପାଉ।

ତା'ପରେ କିନ୍ତୁ ଆସିଲା ବ୍ରାହ୍ମଣମାନଙ୍କର ଜନତାକୁ ଅନ୍ଧୀକୃତ କରି ନିଜର ପ୍ରାଧାନ୍ୟ ରକ୍ଷା କରିବା ପାଇଁ ଅର୍ଥହୀନ ଆଚାରମାନଙ୍କର ପ୍ରଚାର। ଅବଶ୍ୟ ଏହାର ପ୍ରାୟ ପରେ ପରେ, ମନୁଷ୍ୟ-ବିବେକର ଜିଜ୍ଞାସା-ପ୍ରବୃତ୍ତି ମୂର୍ତ୍ତ ହୋଇ ଉଠିଥିଲା ଗୌତମ ବୁଦ୍ଧଙ୍କଠାରେ। ବୌଦ୍ଧଯୁଗରେହିଁ ଭାରତରେ ମନୁଷ୍ୟତ୍ୱ ପ୍ରକୃତ ମୁକ୍ତି ଲାଭ କରିଥିଲା; ଫଳରେ ସେ ସମୟରେ ଭାରତୀୟ ଜୀବନର ଏପରି ବହୁଧା ବିକାଶ ହୋଇଥିଲା, ଯାହା ଅନ୍ୟ କେବେ ହୋଇନାହିଁ। ଏବର ୟୁରୋପୀୟ ପରି ସେବର ଭାରତୀୟ, ନବାବିଷ୍କୃତ ସତ୍ୟକୁ ନିଜର କ୍ଷୁଦ୍ର ବେଷ୍ଟନୀ ଭିତରେ ଲୁଚାଇ ନ ରଖି ବାହାରି ପଡ଼ିଥିଲା ସମଗ୍ର ବିଶ୍ୱକୁ ବିତରଣ କରିବାକୁ। ହାନିବାଲ ଓ ନେପୋଲିଅନ୍‌ଙ୍କର ଆଲପସ୍ ଅତିକ୍ରମଣକୁ ଆମ୍ଭେମାନେ ବାହାବା କରୁ; କିନ୍ତୁ ଯେଉଁ ସହସ୍ର ସହସ୍ର ନଗ୍ନ-ପାଦ ବୌଦ୍ଧ ସନ୍ୟାସୀ ଏକ ହାତରେ ମନୁଷ୍ୟର ଦେହର ସେବା ପାଇଁ ଔଷଧ ଓ ମନର ସେବା ପାଇଁ ତ୍ରିପିଟକ ଧରି ହିମାଳୟର ତୁଷାର-ଶୀତଳ ଅଭ୍ରଭେଦୀ ଗିରିମାଳା, ବିପଦସଂକୁଳ ପଥହୀନ ତିବ୍ବତ ମାଳଭୂମି, ନୀରହୀନ, ଝଞ୍ଜାବ୍ୟାକୁଳ, ଜନହୀନ ଆଶ୍ରୟହୀନ ଗୋବି ମରୁଭୂମିର ସହସ୍ର-ସହସ୍ର-କ୍ରୋଶ-ବ୍ୟାପୀ ବାଲୁକା ବିସ୍ତାରକୁ ଅତିକ୍ରମ କରି ମଙ୍ଗୋଲିଆ, ଚୀନ, କୋରିଆ, ଜାପାନ ପ୍ରଭୃତି ପ୍ରାଚ୍ୟ ଭୂଖଣ୍ଡମାନଙ୍କରେ ନୂତନ ଧର୍ମରାଜ୍ୟ ସ୍ଥାପନ କରିଥିଲେ, ଜଗତର ଇତିହାସରେ ସେମାନଙ୍କର ପଟ୍ଟାନ୍ତର ଅଛି କି? ମିଶରରୁ ଜାପାନ ଓ ସାଇବେରିଆରୁ ସିଂହଳ ପର୍ଯ୍ୟନ୍ତ ଏହି ଅର୍ଦ୍ଧଧରଣୀରେ, ଭାରତର ଚିନ୍ତାଧାରା ଯେପରି ପ୍ରଚାରିତ ହୋଇପାରିଥିଲା ତାହା କି ବର୍ତ୍ତମାନର କାଷ୍ଟ୍-କୁଟୁମ୍ବ-ସଂକୁଚିତ ଭାରତୀୟ ଦେଇ ହୋଇପାରିଥାନ୍ତା?

କେବଳ ଧର୍ମ ନୁହେଁ, ଏହି ସମୟରେ ଚରକ ଓ ଶୁଶ୍ରୁତ ବୈଜ୍ଞାନିକ ଗବେଷଣା କରି ଚିକିତ୍ସାଶାସ୍ତ୍ରର ଏପରି ଉନ୍ନତି କରିଯାଇଅଛନ୍ତି ଯାହା ଏପର୍ଯ୍ୟନ୍ତ ପ୍ରାମାଣିକ ସ୍ୱରୂପ ରହିଅଛି। ଏହି ସମୟର ଭାରତୀୟହିଁ ସମୁଦ୍ର ପାର ହୋଇ ଜାଭା, ସୁମାତ୍ରା, ବାଲି, କାମ୍ବୋଡ଼ିଆ ପ୍ରଭୃତିରେ ଯେଉଁ ଉପନିବେଶ ଓ ସଭ୍ୟତା ପ୍ରତିଷ୍ଠିତ କରିଥିଲା, ତାହାର ସ୍ମୃତି କାଳ ଲିଭାଇ ପାରିବାକୁ ସମର୍ଥ ହୋଇନାହିଁ ଏବଂ ବରବୁଦ୍ଧୁର ଓ ଆଙ୍କୋରୋଭାଟରେ ଭାରତୀୟର ହାତ ଓ ସ୍ୱପ୍ନ ଯେଉଁ କାରୁକଳାମୟ ମନ୍ଦିରମାନ ସୃଷ୍ଟି କରି ଆସିଅଛି ତାହା ଆଜି ସଭ୍ୟ ଜଗତର ଗଭୀର ବିସ୍ମୟର କାରଣ ହୋଇଅଛି। ଏସବୁ ହେଲା କିପରି? ପୂର୍ବେ ଏହା ନ ଥିଲା କାହିଁକି ଏବଂ ପରେ ଏହାର ଅବସାନ ହେଲା କାହିଁକି? ଏହାର ଏକମାତ୍ର ଉତ୍ତର ଏହି ଯେ, ବୌଦ୍ଧଧର୍ମର ପୂର୍ବେ ଓ ପରେ ବ୍ରାହ୍ମଣ୍ୟ ଧର୍ମ ମନୁଷ୍ୟକୁ ନାନା ନିଷେଧ ମଧ୍ୟରେ ପକାଇ ଚିପିରଖିବା ସ୍ଥଳେ, ବୌଦ୍ଧଧର୍ମ ତାକୁ ଶାସ୍ତ୍ର, ସମାଜ, କାସ୍ଟ ଓ ପୁରୋହିତର ବନ୍ଧନରୁ ମୁକ୍ତ କରି ତାହାର ଅବାଧ ବିକାଶରେ ସାହାଯ୍ୟ କରିଥିଲା।

ଅବଶ୍ୟ ସୁଖର କଥା ଯେ, ୟୁରୋପୀୟ ମନର ସଂପର୍କରେ ଆସି ଭାରତୀୟ ମନ ଜାଗ୍ରତ ହୋଇଉଠିଛି। ଫଳରେ ଗତ ଦୁଇ ଶତାବ୍ଦୀ ଭିତରେ ଭାରତବର୍ଷରୁ ଯୁଗଯୁଗର ବହୁ କଳଙ୍କ ପୋଛି ହୋଇ ଯାଇଅଛି। ଆଜି ଆଉ ସତୀପ୍ରଥାର ଜୟପତାକା ଉଡ଼ାଇବା ପାଇଁ ହିନ୍ଦୁନାରୀ ନିଆଁରେ ଜିଅନ୍ତା ପୋଡ଼ା ହେଉନାହିଁ ବା ମୁକ୍ତି ପାଇବା ଆଶାରେ ହିନ୍ଦୁ ପିତା-ମାତା ଗଙ୍ଗାସାଗରରେ ସନ୍ତାନମାନଙ୍କୁ ଜୀବନ୍ତ ଜଳ-ସମାଧି ଦେଉନାହାନ୍ତି। ଭାରତୀୟ ଜନତା ଦେଶର ସ୍ୱାଧୀନତା ପାଇଁ ଆନ୍ଦୋଳନ ଓ ସେଥିପାଇଁ ଦୁଃଖ-କଷ୍ଟ ସହିବାକୁ ମଧ୍ୟ ପ୍ରସ୍ତୁତ ହେଲେଣି। କିନ୍ତୁ ଆମର ସମାଜ ଆଜି ମଧ୍ୟ ଆହୁରି ଅନେକ ଅବିବେକିତାର ବୋଝରେ ଭାରାକ୍ରାନ୍ତ, ବହୁ ନିଷେଧର ବାଧାରେ ସଙ୍କୁଚିତ ଏବଂ ଉଚ୍ଚ ଆଦର୍ଶ ଅଭାବରୁ ନିମ୍ନ ସ୍ତରରେ ଘାଣ୍ଟି ହୋଇ ପଡ଼ିରହିଅଛି। ଏ ସବୁକୁ ଦୂରକରି ବ୍ୟକ୍ତିକୁ ମୁକ୍ତ ନ କଲେ ଆମ୍ଭମାନଙ୍କ ସମାଜର ଭବିଷ୍ୟତ ଆଶାପ୍ରଦ ନୁହେଁ। କାରଣ, ଆମକୁ ଦେଖିବାକୁ ହେବ ଯେ ବ୍ୟକ୍ତିହିଁ ସମାଜର ମୂଳ ପତ୍ତନ। ବ୍ୟକ୍ତିକୁ ମୁକ୍ତ କରି ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ କଲେ ସମାଜ ଆପେ ଆପେ ଗଢ଼ିହୋଇଯିବ।

ଆମ୍ଭମାନଙ୍କର ବ୍ୟକ୍ତି ଓ ତହିଁ ସଙ୍ଗେ ଜାତି ବା ସମାଜର ପରିପୂର୍ଣ୍ଣ ସୌଷ୍ଠବମୟ ବିକାଶ ନ ହୋଇ, ଆମ ସମସ୍ତଙ୍କର ଜୀବନ କାହିଁକି ନିରାନନ୍ଦ, ଖଣ୍ଡିତ, ସଂକୁଚିତ, ଖର୍ବ ହେଉଅଛି, ତାହାର କେତୋଟି କାରଣ ମୁଁ ତଳେ ଦେଉଅଛି। ବିଚାରହୀନ ଯେଉଁ ସବୁ ଅନୁଷ୍ଠାନ ଆମ ସମାଜକୁ ଦୁର୍ଦ୍ଦଶାଗ୍ରସ୍ତ କରି ରଖିଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରଧାନ ହେଉଛନ୍ତି – ଏକାନ୍ନବର୍ତ୍ତୀ ପରିବାର, କାସ୍ଟ, ପିତୁଳା-ପୁରୋହିତ-ସମ୍ବଳିତ ଧର୍ମ, ନିକୃଷ୍ଟ ଖାଦ୍ୟ ପ୍ରଣାଳୀ, ନାରୀ-ପୁରୁଷର ସମତା ଓ ସହଧର୍ମିତାର ଅଭାବ, ସାମାଜିକ ଜୀବନରେ ନୃତ୍ୟ ଓ ସଙ୍ଗୀତର ଅଭାବ ଏବଂ ଶେଷରେ ଅକାମିକା, ଅନୁପଯୋଗୀ ଶିକ୍ଷାପ୍ରଣାଳୀ।

ଏ ସବୁ କାହାକୁ କାହାକୁ ଅତି ଛୋଟ ଛୋଟ କଥା ବୋଲି ଜଣାପଡ଼ିପାରେ। କିନ୍ତୁ ଆମମାନଙ୍କର ଜାଣିବା ଉଚିତ ଯେ ଦୈନନ୍ଦିନ ଜୀବନର ଛୋଟ ଛୋଟ ଅଭ୍ୟାସ ଉପରେହିଁ ଆମର ସାରା ଜୀବନର ସିଦ୍ଧି ବା ଅକୃତକାର୍ଯ୍ୟତା ନିର୍ଭର କରେ। ଏକାଧିକ ମରାଠାମାନଙ୍କଠୁ ମୁଁ ବୁଝିଛି ଯେ ପ୍ରାୟ ପ୍ରତ୍ୟେକ ମରାଠା ପ୍ରତ୍ୟହ ଅନ୍ତତଃ ଘଣ୍ଟାଏ ଖଣ୍ଡେ ବ୍ୟାୟାମ କରନ୍ତି। ମୁଁ ମରାଠା ଖାଦ୍ୟ ଖାଇଛି, ତାହା ଆମ ଖାଦ୍ୟଠାରୁ ଉତ୍କୃଷ୍ଟତର। ସେମାନଙ୍କ ବ୍ୟାୟାମ ଓ ଖାଦ୍ୟ ଏ ଦୁଇଟିକି ମିଶାଇ ମୁଁ ସେଥିରେ ମହାରାଷ୍ଟ୍ରୀମାନଙ୍କର ଅସାଧାରଣ ଅଧ୍ୟବସାୟର ମୂଳଦୁଆ ଦେଖେଁ। ପ୍ରାୟ ସମଗ୍ର ତାମିଲ ଜାତି, ମୁଁ ଶୁଣେ, ଖୁବ୍ ସକାଳୁ ଉଠନ୍ତି ଓ ନିରାମିଷାଶୀ। ଏଥିରେହିଁ ହୁଏତ ତାମିଲର ଚମତ୍କାର କର୍ମଠତା ନିହିତ ଅଛି। ଅତୀତରେ ଗ୍ରୀକ୍‌ମାନଙ୍କର ସଭ୍ୟତା ଯେତେବେଳେ ଅତୁଳନୀୟ ଥିଲା, ସେ ସମୟରେ ସେମାନଙ୍କର ବଞ୍ଚିବାର ଧରଣ ଅତି ସାଧାରଣ ଥିଲା। ସେମାନେ ସାମାନ୍ୟ ଭାତ ଓ ମାଛ ଖୁବ୍ ସାଦା ଭାବରେ ରାନ୍ଧି ଖାଉଥିଲେ ଏବଂ ତାହା ମଧ୍ୟ ଖୁବ୍ କମ୍ ପରିମାଣରେ। କିନ୍ତୁ

କେତେକ ଐତିହାସିକ କହନ୍ତି ଯେ ଗ୍ରୀକ୍‌ମାନେ ମାଂସ ଖାଇବା ଆରମ୍ଭ କରିବାରୁହିଁ ତାଙ୍କ ଚରିତ୍ରର ଅବନତି ଘଟିଲା। ସେହିପରି ରୋମାନ୍‌ମାନଙ୍କର ଅବନତି ସେମାନଙ୍କର ବିଳାସମୟ ସ୍ନାନରୁ ହେଲାବୋଲି ଅନେକେ କହନ୍ତି। ଫ୍ରାନ୍‌ସର ପତନ ପରେ, ମାର୍ସାଲ୍ ପେଟେଁ, ପ୍ରଥମ ମହାଯୁଦ୍ଧ ପରଠାରୁ ଫରାସୀ ଜାତି କିପରି ବିଳାସ ଯୋଗୁଁ ଦୁର୍ବଳ ହୋଇପଡ଼ିଲା, ତାହାର ବର୍ଣ୍ଣନା ଆମ୍ଭେମାନେ ପଢ଼ିଛୁ।

ଏଥିରୁ ଆମ୍ଭେମାନେ ବୁଝିବା ଯେ ଓଡ଼ିଆ ଅଳସୁଆ, ଅସାଧୁ, ଭାଗ୍ୟବାଦୀ, ପରମୁଖାପେକ୍ଷୀ ହେବାର କାରଣ, ନିଶ୍ଚୟ ତାର ଜୀବନ ଯାପନ ପ୍ରଣାଳୀର କୌଣସି ଦୋଷ ଭିତରେ ଅଛି। ମୋର ମନେହୁଏ, ଓଡ଼ିଆମାନଙ୍କର ଷ୍ଟାର୍ଚ୍ଚବହୁଳ ଖାଦ୍ୟ ସେମାନଙ୍କର ଅଳସୁଆ ହେବାର ଏକ ବିଶେଷ କାରଣ। ଓଡ଼ିଆ-ରନ୍ଧନ ପ୍ରଣାଳୀ କୌଣସି ବୈଜ୍ଞାନିକ ନୀତି ଉପରେ ପ୍ରତିଷ୍ଠିତ ନୁହେଁ। ଭିନ୍ନ ଭିନ୍ନ ଭୋଜ୍ୟମାନଙ୍କର କୌଣସି ନିର୍ଦ୍ଦିଷ୍ଟ ପରିମାଣ ନାହିଁ। ଦୈନନ୍ଦିନ ଖାଦ୍ୟରେ ପ୍ରକାରର ବାହୁଲ୍ୟ ନାହିଁ ଏବଂ ପରିବେଷଣରେ କ୍ଷୁନ୍ନିବୃତ୍ତି ଛଡ଼ା ଅନ୍ୟ କୌଣସି ଲକ୍ଷ୍ୟ ନ ଥାଏ। ଶ୍ୱେତାଙ୍ଗର ଭୋଜନରେ ଅର୍ଦ୍ଧେକ ଆନନ୍ଦ ହେଲା ଆଳାପ। ଡିନର୍ ଟେବୁଲ ପାଖରେ ବଡ଼ ବଡ଼ ବକ୍ତୃତା ମଧ୍ୟ ହେବାର ଆମେ ଜାଣୁଁ। କିନ୍ତୁ ଆମର ହାତ ମୁହଁ ଅଇଣ୍ଠା ବଳବଳ କରି ଆମେ ଭୋଜିସଭାରେ କି ବକ୍ତୃତା ଦେବା ବା ଶୁଣିବା? ଜାପାନୀ-ମାନଙ୍କର ଖାଦ୍ୟ ପରିବେଷଣରେ ଏପରି ସୁକୁମାର କଳା ଓ ବର୍ଣ୍ଣ-ବିଭବ ଫୁଟିଥାଏ ଯେ ତାହା ଦେଖିବାର ଜିନିଷ। ଆମର ଖାଇବା, ବଳଦ କୁଣ୍ଡା ଖାଇବା ପରି—ପ୍ରଭେଦ କେବଳ ଆମେ ଥାଳିରେ ମୁହଁ ଲଗାଉନା— ତେବେ ପଖାଳଖିଆବେଳେ ସେତକ ବି ହୁଏ। ଆମ ଜୀବନର ସକଳ କ୍ରିୟାରେ ସୌନ୍ଦର୍ଯ୍ୟର ସମ୍ମାନ ଥାଏ କି? ଆମର ଦୈନନ୍ଦିନ ଭାଷା, ଖାଦ୍ୟ, ବ୍ୟବହାର ସବୁଥିରେ କୃଷ୍ଟି ଓ ସୌନ୍ଦର୍ଯ୍ୟ ଫୁଟି ନ ବାହାରିଲେ ଆମର ସଭ୍ୟ ବୋଲି ଗର୍ବ କରିବାର କିଛି ନ ଥିବ।

ଖାଦ୍ୟର ପରିବର୍ତ୍ତନ କରି ସମାଜର ପ୍ରତ୍ୟେକ ଲୋକକୁ ବଳଶାଳୀ କରିସାରିଲା ପରେ ଆମକୁ ଦେଖିବାକୁ ହେବ ଯେ, ପ୍ରତ୍ୟେକେ ପ୍ରତ୍ୟେକର ଗୋଡ଼ରେ ଠିଆ ହେବେ। ପର ଉପରେ ନିର୍ଭର କରିବାର ଭାବକୁ ଆମକୁ ସମାଜରୁ ସମୂଳେ ଉତ୍ପାଟନ କରିବାକୁ ହେବ। ଏଇ କଦର୍ଯ୍ୟ ଭାବର ଜନ୍ମସ୍ଥଳ ହେଉଛି ଏକାନ୍ନବର୍ତ୍ତୀ ପରିବାର। ଶ୍ୱେତାଙ୍ଗ, ବିବାହ ସାଙ୍ଗେ ସାଙ୍ଗେ ବାପର ପରିବାର ଛାଡ଼ି, ନିଜର ଘର ଛିଡ଼ାକରେ। ଏଥିରେ ସୁବିଧା ହୁଏ ଏଇ ଯେ, ନୂତନ ସ୍ୱାମୀ-ସ୍ତ୍ରୀ ନିଜ ଆଦର୍ଶରେ ଜୀବନ ଚଳେଇବାର ସୁବିଧା ପା[illegible] ପରିବାରର ଅନ୍ୟ ପାଞ୍ଚଟାର ଅନାବଶ୍ୟକ ମତ ଓ ଉପସ୍ଥିତି ସେମାନଙ୍କ ଗତିରେ ବାଧା ଦିଏ ନାହିଁ। ଅର୍ଜ୍ଜନକ୍ଷମ ନହେଲାଯାଏ ଇଂରେଜ ଯୁବକ ବିବାହ କରେ ନାହିଁ ଏବଂ ବିବାହ ପରେ ସେ ବାପର ସଂପତ୍ତିକି ଅନାଏ ନାହିଁ। ତାର ଦୁଃଖ-ସୁଖ ଓ ଜୀବନ-ସଂଗ୍ରାମ ବର୍ତ୍ତମାନ ସଂପୂର୍ଣ୍ଣତଃ ତା'ରି। ଏହାଦ୍ୱାରା ଶ୍ୱେତାଙ୍ଗ ଜୀବନରେ କି ପ୍ରକାର ଆତ୍ମନିର୍ଭରତା ଜାଗ୍ରତ ହୁଏ, ତାହା ଆପଣମାନେ ଅନୁମାନ କରିପାରିବେ। ମୁଁ ଇଂଲଣ୍ଡରେ ଜଣେ

ବୃଦ୍ଧ ଡାକ୍ତରଙ୍କର ଘରେ ଅତିଥି ହୋଇଥିଲି। ବୁଢ଼ାର ୩-୪ ପୁଅ ଓ ଦୁଇ ତିନି ଝିଅ। ସେମାନେ ସମସ୍ତେ ଶିକ୍ଷିତ ଓ ଜୀବିକାର୍ଜନକ୍ଷମ ହୋଇ ନିଉକାସଲର ଭିନ୍ନ ଭିନ୍ନ ଜାଗାରେ ବାସକରନ୍ତି; ଅଥଚ ସେହି ସହରରେ ବୁଢ଼ା ବୁଢ଼ୀ ଦିହେଁ ଅଲଗା ଘରେ ରହିଛନ୍ତି। ଅବଶ୍ୟ ବାପ ମା' ଓ ତାଙ୍କ ପିଲାପିଲିଙ୍କ ଭିତରେ ସୌହାର୍ଦ୍ଦ୍ୟର ଅଭାବ ନାହିଁ। ପିଲେ ବରାବର ବୁଢ଼ାବୁଢ଼ୀଙ୍କି ଦେଖିଆସନ୍ତି ଏବଂ ବୁଢ଼ା ପୁଅମାନଙ୍କୁ ତାଙ୍କ କାମରେ ବରାବର ମୁରବିୟାନା କରି ଆସେ। ବୁଢ଼ୀ ରାନ୍ଧିବାଢ଼ି, ଘରଟି ସଜେଇ ବୁଢ଼ାର ଦେଖାଶୁଣା କରେ। ବୁଢ଼ୀକି ପଚାରିଲି– ସେମାନେ କୌଣସି ପୁଅ ବା ଝିଅ ପାଖରେ କାହିଁକି ରହୁନାହାନ୍ତି? ବୁଢ଼ି ଉତ୍ତର ଦେଲା– ହାତଗୋଡ଼ ଚଳିଲାଯାଏଁ କାହିଁକି କା' ପାଖରେ ଆଶ୍ରୟ ନେବୁ? ମୁଁ ପଚାରିଲି– ବେଳ ଆସିବ ଯେତେବେଳେ ହାତ ଗୋଡ଼ ଆଉ ଚଳିବ ନାହିଁ– ସେତେବେଳେ? ବୁଢ଼ୀ ତା' ହାତ ଆଙ୍ଗୁଠି ତା ବେକ ପାଖରେ ରଖି କହିଲା– "ସେପରି ଅବସ୍ଥାରେ ଗୁଳି ଖାଇ ମରିଯିବା ବରଂ ଭଲ, କିନ୍ତୁ କାହା ଉପରେ ଭରା ହେବୁନି।"

ଅନେକେ ହୁଏତ ଏହାକୁ ଗପ ବୋଲି ମନେକରିବେ। କିନ୍ତୁ ଇଂରେଜ-ଚରିତ୍ର ଯେ ଜାଣିଛି, ସେ ଜାଣିବ ଯେ ଏହା ଖାଣ୍ଟି ସତ୍ୟ। ଯେଉଁଠି ଆତ୍ମନିର୍ଭରତା ଏତେ ଦୂରକୁ ଯାଇପାରେ, ସେଠି ବ୍ୟକ୍ତିତ୍ୱର ବିକାଶ କିପରି ହୋଇପାରେ, ତାହା ସହଜରେ ଅନୁମେୟ। ଆମ ଦେଶରେ ଚମାର ପୁଅ ତ ଚମାର ହେବ, କିନ୍ତୁ ସେଠି ମୋଚିର ପୁତୁରା ଲଏଡ଼ ଜର୍ଜ, ଓ କେଉଟ ପୁଅ ରାମସେ ମାକ୍‌ଡୋନାଲ୍‌ଡ଼, ବ୍ରିଟିଶ ସାମ୍ରାଜ୍ୟରେ ପ୍ରଧାନ ମନ୍ତ୍ରୀ ହୋଇପାରନ୍ତି। ଚେମ୍ବରଲେନ୍ ପ୍ରଧାନମନ୍ତ୍ରୀ ଥିଲା-ବେଳେ ତାଙ୍କ ପୁଅ ଗୋଟିଏ ସାଧାରଣ ସୈନିକ ମାତ୍ର ଥାଏ; ପ୍ରେସିଡେଣ୍ଟ ରୁଜଭେଲ୍‌ଟଙ୍କ ପୁଅ ଫିଲ୍‌ମ ବ୍ୟବସାୟରେ ଲାଗିଛନ୍ତି; ଏଥିରେ କାହାର କିଛି ଅପମାନ ନାହିଁ। ହିଟଲର ସମଗ୍ର ୟୁରୋପର ଅଧୀଶ୍ୱର ଥିଲାବେଳେ ତାଙ୍କ ଭାଇ ବର୍ଲିନରେ କଫି-ଦୋକାନ ଦେଇ ବଞ୍ଚେ। ଏକାନ୍ନବର୍ତ୍ତୀ ପରିବାରକୁ ଓ ଜାତିପ୍ରଥାକୁ ଭାଙ୍ଗିଦେଲେ ଯାଇ ଆମେ ଶ୍ୱେତାଙ୍ଗ ଜୀବନର ବୈଚିତ୍ର୍ୟ ପାଇପାରିବା। ବାପା ମା' ଜନ୍ମ ଦେଇ ଶିକ୍ଷା ଦେଇଦେଲେ– ବେଶ୍, ତାଙ୍କ ଦାୟିତ୍ୱ ସେଇଠି ସରିଲା। ତା'ପରେ ପିଲାମାନେ ନିଜେ ନିଜେ ଜୀବନ ସଙ୍ଗେ ଯୁଦ୍ଧ କରନ୍ତୁ। ବାପ ମା' ଯଦି ବରାବର ସାହାଯ୍ୟ କରୁଥିବେ, ତେବେ ସନ୍ତାନସନ୍ତତି ଚିରକାଳ ଶିଶୁ ହୋଇ ରହିବେ, ମଣିଷ ହେବେନି। ୨୧ ବର୍ଷ ବୟସରେ ପ୍ରତ୍ୟେକ ଇଂରେଜ ଯୁବକ ମଣିଷ ବୋଲି ଗଣାହୁଏ। କିନ୍ତୁ ଭାରତୀୟମାନେ ବହୁକାଳଯାଏଁ ବାଳକ ହୋଇ ରହନ୍ତି। ମଣିଷ ହୋଇ ନିଜ ଗୋଡ଼ରେ ଠିଆ ହୋଇ ଜୀବନ ସଙ୍ଗେ ମୂଳରୁ ଯୁଦ୍ଧ କରି ଶିଖିବାରୁହିଁ ଇଂରେଜ ସର୍ବତ୍ର ବିଜୟୀ ଔପନିବେଶିକ। ଇଂଲଣ୍ଡରେ କ୍ଲବରେ ବରାବର ଶୁଣ, କାହାର ଗୋଟିଏ ଭାଇ ଟାଙ୍ଗାନିକାରେ କୃଷକ ତ, ଅନ୍ୟ ଜଣେ ଅଷ୍ଟ୍ରେଲିଆରେ ଇଞ୍ଜିନିୟର, ଆଉ ଜଣେ ଆସାମରେ ମିସନାରୀ। ଏକାନ୍ନବର୍ତ୍ତୀ ପରିବାର ଓ ଜାତିପ୍ରଥା ନ ଭାଙ୍ଗିଲେ, ଆମ ଜୀବନରେ ଏ ବିଭବମୟ ବୈଚିତ୍ର୍ୟ ଆସିବ ନାହିଁ।

ଏକାନ୍ତ ପରିବାର ଓ ଜାତିକୁ ଭାଙ୍ଗିଲେ ଆମେମାନେ ବାହାରର ବଂଧନରୁ ମୁକ୍ତ ହେବା। ପୁରୋହିତ-ପ୍ରଧାନ ଧର୍ମକୁ ଲୋପ କଲେ ଯାଇଁ ଆମର ମନ ମୁକ୍ତ ହେବ। ଗୀତାରେ ମୁକ୍ତପୁରୁଷର ଯେତେଗୁଡ଼ିଏ ଗୁଣ ବର୍ଣ୍ଣିତ ଅଛି, ସେଥିରେ ପ୍ରଥମ ଗୁଣ ହେଉଛି ଅଭୟ। କିନ୍ତୁ ଦେଖ, ଧର୍ମ ଆମପାଇଁ ଚାରିଆଡ଼େ କିପରି ଭୟ ଖଞ୍ଜିରଖିଛି– ଶାସ୍ତ୍ରର ଭୟ, ଦେବତାର ଭୟ, ନରକର, ପରପାରର ଭୟ। ହିନ୍ଦୁ ପର-ପାରର ଭୟରେ ପୁଣ୍ୟ କର୍ମ କରେ। ସେଥିପାଇଁ ଖାତକ-ତଣ୍ଟିଚିପା- ହିନ୍ଦୁ-ମହାଜନ, ମଲାବେଳକୁ ବ୍ରାହ୍ମଣ ହାତରେ ଗୁଡ଼ାଏ ଦେଇଯିବାର ଦେଖାଯାଏ। ଏପରି ଭୟରେ କି ମନୁଷ୍ୟକୁ ଧାର୍ମିକ କରାଯାଇପାରେ? ଫଳରେ ହିନ୍ଦୁର ଦର୍ଶନଶାସ୍ତ୍ର ଜଗତରେ ଶ୍ରେଷ୍ଠ ହେଲେ ମଧ ପ୍ରଚଳିତ ହିନ୍ଦୁଧର୍ମ ପରି ଅସଭ୍ୟ ବ୍ୟବସ୍ଥା ଅନ୍ୟ କୌଣସିଠି ନାହିଁ। ଆମକୁ ଏ ସବୁକୁ ଉଠେଇବାକୁ ହେବ। ଧର୍ମ ଭିତରର ଜିନିଷ; ସେଥିପାଇଁ ପୁରୋହିତ, ମାନସିକ, ବଳିଦାନ, ହୋମ, ଯଜ୍ଞ କିଛି ହେଲେ ଦରକାର ନାହିଁ। ସମାଜ ପ୍ରତ୍ୟେକ ବ୍ୟକ୍ତିଠାରୁ କେବଳ ଗୋଟିଏ ସାମାଜିକ ଧର୍ମ ଆଶାକରେ, ତାହା ଏହି ଯେ, ବ୍ୟକ୍ତି ତାର କର୍ତ୍ତବ୍ୟଟି ସାଧୁଭାବରେ ସଂପନ୍ନ କରିବ ଏବଂ ସବୁବେଳେ ନିଜର ସ୍ୱାର୍ଥକୁ ସମାଜର ଭାଇମାନଙ୍କର ସ୍ୱାର୍ଥ ପାଇଁ ତ୍ୟାଗ କରିବାକୁ ପ୍ରସ୍ତୁତ ଥିବ। ଆପଣମାନେ ଅବଶ୍ୟ ମାନିବେ ଯେ, ଏ ଧର୍ମ, ବଳିଦାନ ବା ମାଜିକ୍ ଅପେକ୍ଷା ଉତ୍କୃଷ୍ଟତର କର୍ମ।

ସମାଜର ପ୍ରତ୍ୟେକ ବ୍ୟକ୍ତି ସ୍ୱାଧୀନ ଓ ଆତ୍ମନିର୍ଭର ହେବେ, ତାଙ୍କୁ ଉତ୍ତମ ଖାଦ୍ୟ ଦିଆଯିବ, ନିଃସ୍ୱାର୍ଥପର ଭାବରେ ନିଜର କର୍ତ୍ତବ୍ୟ ପାଳନ କରି ସେ ଆଧ୍ୟାତ୍ମିକ ସୁଖ ଅନୁଭବ କରିବେ। ବର୍ତ୍ତମାନ ଦେଖିବା ଉଚିତ, ଯେପରି ସମାଜ ପ୍ରତ୍ୟେକ ବ୍ୟକ୍ତିର ଜୀବନକୁ ଆନନ୍ଦ ଯୋଗାଏ। ଆନନ୍ଦ ଦୈହିକ ଓ ମାନସିକ ହୋଇପାରେ। ଆମର ନବସମାଜରେ ନାରୀ ଓ ପୁରୁଷର ଅବାଧ ମିଳନର ବ୍ୟବସ୍ଥା ହେବା ଉଚିତ। ଉତ୍କୃଷ୍ଟ ସଙ୍ଗୀତ ଓ ନାରୀ ପୁରୁଷର ମିଳିତ ଓ ଏକାକୀ ନୃତ୍ୟର ବ୍ୟବସ୍ଥା ମଧ ହେବା ଉଚିତ। ମିଳିତ ନୃତ୍ୟର ସମାଜର ମନ ଉପରେ କ୍ରିୟା ଦେଖିବାକୁ ଆମକୁ ଦୂରକୁ ଯିବାକୁ ହେବନାହିଁ। କେହି ଓଡ଼ିଶାର ଜଙ୍ଗଲରେ କନ୍ଧ ସାନ୍ତାଳମାନଙ୍କର ମିଳିତ ନୃତ୍ୟ ଦେଖି ଆସି କହନ୍ତୁ, ନୃତ୍ୟଟା ପାପକର୍ମ ନା ଏହା ଜୀବନର ଦୈନନ୍ଦିନ କ୍ରିୟା ହେବା ଉଚିତ।

ବ୍ୟକ୍ତିକୁ ଆନନ୍ଦ ସଙ୍ଗେ ସଙ୍ଗେ ଉଚ୍ଚ ଜୀବନର ଆଦର୍ଶ ଓ କୃଷ୍ଟି ଦେବାପାଇଁ ସାହିତ୍ୟର ସାହାଯ୍ୟ ଦରକାର। ଆମର ନିଜର ସାହିତ୍ୟ ସେଥିପାଇଁ ଯଥେଷ୍ଟ ନୁହେଁ। ଆମେ ଜଗତର ସବୁ ସାହିତ୍ୟର ଯାହା କିଛି ଶ୍ରେଷ୍ଠ ସେ ସମସ୍ତକୁ ଆମ ଭାଷାକୁ ଅନୁବାଦ କରି ଆମ ସମାଜର ପ୍ରତି ସ୍ତରରେ ତାହାର ପ୍ରଚାର ହେଲାଭଳି ବ୍ୟବସ୍ଥା କରିବା। ଖଣ୍ଡିଏ ଖଣ୍ଡିଏ ବହି ଅଛି, ଯାହା ଜୀବନକୁ ଏକଘଣ୍ଟା ଭିତରେ ଓଲଟପାଲଟ କରିଦେବ। ଆମର ଲୋକେ ସେ ପୁସ୍ତକମାନଙ୍କଠାରୁ ବହୁ ଦୂରରେ। ବହିକି ଉପଯୁକ୍ତ କରି ଲୋକଙ୍କ ପାଖକୁ ଆଣିବାକୁ ଓ ଲୋକଙ୍କୁ ଉପଯୁକ୍ତ କରି ବହି ପାଖକୁ

ଆଣିବାକୁ ହେବ। ତାହାହେଲେ ଉଭୟେ ଉଭୟକୁ ଚିହ୍ନିବେ।

କିନ୍ତୁ ଏ ସବୁ ନୂତନତା କିପରି ଅଣାଯିବ? କିପରି ଆମେ ଏହି ନୂତନ ସମାଜ ଗଢ଼ିବୁ? ପ୍ରକୃଷ୍ଟ ଉପାୟ ହେଉଛି, ଆମର ଶିକ୍ଷାପ୍ରଣାଳୀକୁ ଆମ ଆଦର୍ଶର ବାହନ କରିବା। ଆମେ ଏପରି ଏକ ଶିକ୍ଷା ପ୍ରଣାଳୀ ଦେଶରେ ଚଳେଇବା, ଯାହା ଆମ ପିଲାଙ୍କୁ ଆତ୍ମନିର୍ଭର, ଭୟହୀନ ଏବଂ କାସ୍ଟ-ବା-ପୁରୋହିତ-ପ୍ରତିଷ୍ଠିତ ଧର୍ମ ପ୍ରତି ଶ୍ରଦ୍ଧାହୀନ ହେବାକୁ ଶିଖେଇବ! ସେ ଶିକ୍ଷାରୁ ସେମାନେ ଶିଖିବେ ଖାଇବା ଓ ବ୍ୟବହାର ପ୍ରଭୃତି ବଂଚିବାର କର୍ମମାନଙ୍କରେ ଆଦର୍ଶ ପ୍ରଣାଳୀ। ସେମାନେ ଶିଖିବେ ପ୍ରତ୍ୟେକ କର୍ମରେ ଓ ଜିନିଷରେ ସୌନ୍ଦର୍ଯ୍ୟ ଅନୁଭବ କରିବାକୁ, ସେମାନେ ଶିଖିବେ ନିଜର ସ୍ୱାର୍ଥକୁ ସମାଜର ସ୍ୱାର୍ଥପାଇଁ ବଳିଦେବାକୁ ଓ ନିଜର କର୍ତ୍ତବ୍ୟଟି ସାଧୁଭାବରେ ସଂପନ୍ନ କରିବାକୁ। ସେ ଶିକ୍ଷା ସେମାନଙ୍କ ହାତରେ ଜଗତର ଶ୍ରେଷ୍ଠ ଜ୍ଞାନ ସମର୍ପଣ କରିବା ସଙ୍ଗେ ସଙ୍ଗେ, ଜୀବନକୁ ନୃତ୍ୟ-ଗୀତଦ୍ୱାରା କିପରି ଆନନ୍ଦମୟ କରାଯାଇପାରେ, ତା' ଶିଖେଇବ। ପ୍ରତ୍ୟେକେ କୌଣସି ନା କୌଣସି ହାତପାଇଟି କରିବେ। ଧନୀ ଦରିଦ୍ରର ଭେଦ ନ ରହି, ଭେଦ ରହିବ କେବଳ ବୁଦ୍ଧି ବୁଦ୍ଧିର ବା ଚରିତ୍ର ଚରିତ୍ରର– ଯାହା କି ନୈସର୍ଗିକ। 'ଓ୍ୱାର୍ଦ୍ଧା' ଶିକ୍ଷା ପଦ୍ଧତି ଏ ଦିଗରେ ବହୁ ସୂଚନା ଦେଉଛି।

## ନବମ ଅଧ୍ୟାୟ

# ଜୀବ-ଧର୍ମ

ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟାମାନଙ୍କର ଅତ୍ୟାଚାର ମଧ୍ୟଭାରତ, ଓଡ଼ିଶା ଓ ବଙ୍ଗଳାର ଇତିହାସକୁ ବିଭୀଷିକାମୟ କରିପକାଇଥିଲା। ବର୍ଗୀମାନଙ୍କର ନୃଶଂସତା, ତୈମୁର ଓ ଚେଙ୍ଗିସ ପ୍ରଭୃତି ବର୍ବରମାନଙ୍କର ମରଣ-କ୍ରୀଡ଼ାକୁ ସ୍ମରଣ କରାଇଦିଏ। କିନ୍ତୁ ଏହି ନିଷ୍ଠୁର, ନୃଶଂସ, ଅତ୍ୟାଚାରୀ ବର୍ଗୀ-ଜାତିରୁ ତୁକାରାମ, ଏକନାଥଙ୍କପରି ଭକ୍ତ-କବି, ଶିବାଜୀଙ୍କ ପରି ଜାତି-ଗଠକ, ରାମ ଶାସ୍ତ୍ରୀ ଓ ତେଲାଙ୍ଗଙ୍କ ପରି ବିଚାରକ, ଗୋଖଲେଙ୍କ ପରି ରାଜନୈତିକ, ତିଲକଙ୍କ ପରି ପଣ୍ଡିତ– ଧାରାବାହିକ ଭାବରେ ଏ ପ୍ରକାର ବିରାଟ ପ୍ରତିଭା ସବୁ ଜନ୍ମ ହେଲେ କିପରି? ଆଉ ଆମର ଏ ପବିତ୍ର ଉତ୍କଳ ଭୂମି, ଯେଉଁଠାରେ ଯୁଗ-ଯୁଗଧରି ନାନା ଯୋଗୀ ଋଷିଙ୍କର ଲୀଳା ଲାଗିଛି, ନାନା ଧର୍ମର ପବିତ୍ର ତରଙ୍ଗ ମହାନଦୀର ବନ୍ୟା ପରି ବହି ଚାଲିଛି, ସେଠି ଏମାନଙ୍କ ପରି ଗୋଟିଏ ହେଲେ ବିରାଟ ପୁରୁଷ ଦେଖାଦେଲେନି କାହିଁକି? ଇତିହାସର ଏହି ଅସାମଞ୍ଜସ୍ୟ ଅନେକ ଦିନ ହେଲା ମନରେ ଉଠୁଛି। ଜୀବନ-ଧର୍ମର କେଉଁ ରହସ୍ୟ ସେମାନଙ୍କର ଅଧିଗତ ହୋଇଛି, ଯାହାଦ୍ୱାରା ଏମାନେ

ସବୁ କ୍ଷେତ୍ରରେ ଦିଗ୍‌ବିଜୟୀ ହେଲେ, ଆଉ ଆମେ ଧର୍ମପ୍ରାଣ ଓଡ଼ିଆ ଜଗତରେ ସବୁଠୁ ନଗଣ୍ୟତମ ଜାତି ବୋଲି ଘୃଣିତ ହୋଇ ଆସିଲୁ? ଯାହାକୁ ଆମ୍ଭେମାନେ ସାଧାରଣତଃ ପାପ ବୋଲି କହୁଁ, ସେ ପାପ ସେମାନେ ଯଥେଷ୍ଟ କରନ୍ତି – ଅନ୍ତତଃ ଆମ୍ଭମାନଙ୍କ ଅପେକ୍ଷା କମ୍ ନୁହେଁ ଏବଂ ପାପର ଯଦି ପରିଣାମ ଥାଏ, ତେବେ ସେମାନଙ୍କର ଅଧଃପତନ ସୁନିଶ୍ଚିତ ହୋଇଥାନ୍ତା। କିନ୍ତୁ କାହିଁକି? . ନିରୀହ ଓଡ଼ିଆ, ଆଉ ଦୁର୍ଦ୍ଧାନ୍ତ ବର୍ଗୀ ଭିତରେ ଆଜି ପ୍ରଭେଦ କେତେ?

ପ୍ରଥମ ମହାଯୁଦ୍ଧରେ ଜର୍ମାନୀର ନିରୀହ, ନିର୍ଦ୍ଦୋଷ ବେଲଜିୟାନମାନଙ୍କ ଉପରେ ସ୍ତ୍ରୀ-ବାଳକ-ନିର୍ବିଶେଷରେ ଯେଉଁ ଅମାନୁଷିକ ଅତ୍ୟାଚାର, ତାହା ତ ସ୍ମୃତିପଟରୁ ଲିଭିଯାଇନି। ବିରାଟ ନଗରୀସମୂହ ଧ୍ୱଂସ ହୋଇ ଇଷ୍ଟକ ସ୍ତୂପରେ ପରିଣତ ହେଲା। ଶତ-ଶତ-ବର୍ଷର-ପରିଶ୍ରମରେ-ସଂଚିତ ମହାର୍ଘ ଶିଳ୍ପ-କଳା କ୍ଷଣକରେ ଭସ୍ମୀଭୂତ କରିଦିଆଗଲା। ନିର୍ଦ୍ଦୋଷ ନୌ-ଯାତ୍ରୀମାନଙ୍କୁ ନିଶ୍ଚିନ୍ତ ମନରେ ସମୁଦ୍ର ଗର୍ଭରେ ବୁଡ଼ାଇ ଦିଆଗଲା। ଏ ଅତ୍ୟାଚାରର ପରିଣାମ? ପନ୍ଦର ବର୍ଷ ଭିତରେ ଜର୍ମାନୀ ପୁଣି ତାର ପାଶବିକ ବଳରେ ମତ୍ତ ହୋଇ ସିଂହ-ଗର୍ଜନ ଦେଲା। ପୁଣି ସେହି ଅତ୍ୟାଚାରର ପୁନରାବୃତ୍ତି ହେଲା ଏବଂ କରୁଣାମୟ ଭଗବାନଙ୍କ ରାଜ୍ୟରେ ନିଷ୍ଠୁରତାର ଜୟପତାକା ପୁଣି ଥରେ ଉଠିଲା।

ସେ ଜାତିମାନଙ୍କର ଏପ୍ରକାର ଜୀବନୀଶକ୍ତି ଆସୁଛି କୁଆଡୁ? ଆଉ ଆମେ ଓଡ଼ିଆ, ଜଗନ୍ନାଥଙ୍କ ବାହୁଚ୍ଛାୟା ତଳେ ରହି, ଆନନ୍ଦବଜାରର ଦେବଭୋଗ କୈବଲ୍ୟ ସେବନ କରି, ନାନା ବ୍ରତ-ଉପବାସରେ ସଢ଼ି, ଚିତା ଚଇତନ ରଖି, ନିରାମିଶ ଭକ୍ଷଣ ଓ ଆମିଶ ବର୍ଜନ କରି, ପଞ୍ଚୁକ ଓ ମାଘ-ସ୍ନାନ ପାଳନ କରି କରି ମଧ, ଭକ୍ତ-ଚିନ୍ତାମଣିଙ୍କଠାରୁ ଟିକିଏ ହେଲେ ଅନୁଗ୍ରହ ପାଇପାରୁନୁ କାହିଁକି? ହାୟରେ ଧର୍ମ! ଏ ସବୁ ତୁଳନା କରି ଦେଖିଲେ ଦୃଢ଼ ଧାରଣା ହୁଏ ଯେ, ଆମ୍ଭମାନଙ୍କର ଧର୍ମ, ମିଥ୍ୟା-ଧର୍ମ। ଏହା ମନୁଷ୍ୟର ଉପଯୋଗୀ ନୁହେଁ। ଜୀବ ଭାବରେ ମନୁଷ୍ୟର ଯାହା ସବୁ ଅତ୍ୟନ୍ତ ଆବଶ୍ୟକୀୟ ପ୍ରୟୋଜନ ଏ ଧର୍ମ ସେ ସବୁକୁ ଦୃଷ୍ଟି ନ ଦେବାରୁ ଆମ୍ଭେମାନେ ଶେଷରେ ପଙ୍ଗୁ ଓ ନିର୍ଜୀବ ହୋଇପଡ଼ିଛୁ।

ଆମ୍ଭମାନଙ୍କର ଧର୍ମ ଆମ୍ଭମାନଙ୍କୁ ସନ୍ୟାସ ଶିକ୍ଷା ଦିଏ ଜଗତରେ ନିସ୍ପୃହ ହେବାକୁ ଓ ଭାଗ୍ୟ ଓ ଭଗବାନଙ୍କ ଉପରେ ନିର୍ଭର କରିବାକୁ ଶିକ୍ଷା ଦିଏ। କିନ୍ତୁ ମ୍ଲେଚ୍ଛ ଜର୍ମାନୀ ବା ଇଂରେଜୀ ନିଜ ଉପରେ ନିର୍ଭର କରେ, ସନ୍ନ୍ୟାସକୁ ଘୃଣା କରେ ଓ କର୍ମକୁ ପ୍ରାଣ ପରି ଭଲପାଏ। ସନ୍ନ୍ୟାସ ଓ ନିସ୍ପୃହତା ଜୀବର ଧର୍ମ ନୁହେ। ତାହା ଯଦି ଜୀବର ଧର୍ମ ବୋଲି ଗ୍ରହଣ କରାଯାଇଥାନ୍ତା, ତେବେ ମନୁଷ୍ୟ ପୃଥିବୀର ଅଧୀଶ୍ୱର ହୋଇପାରିନଥାନ୍ତା; ପୃଥିବୀ ଅନ୍ୟ ଜୀବମାନଙ୍କର ଲୀଳାସ୍ଥଳୀ ହୋଇଥାନ୍ତା। ଜଗତର ବିବର୍ତ୍ତନ ସନ୍ୟାସ ବା ନାମ-ସଂକୀର୍ତ୍ତନ ବା ବ୍ରତ-ଉପବାସର ଫଳ ନୁହେଁ; ତାହା ଯୁଗ-ଯୁଗ-ବ୍ୟାପୀ କଠୋର ସଂଗ୍ରାମ, ଅଜସ୍ର ରକ୍ତପାତ ଓ ଜୀବନ-ବ୍ୟୟର ଫଳ। ଜୀବ-ଧର୍ମର ଏହି ନିୟମ, ଜୀବନର ପ୍ରତ୍ୟେକ ଛୋଟ

ଛୋଟ ଘଟଣାରେ ମଧ ପ୍ରଯୁଜ୍ୟ। ଇତିହାସର କୌଣସି କୃତକାର୍ଯ୍ୟତା, ପ୍ରାର୍ଥନା ବା ନାମ-ସଂକୀର୍ତ୍ତନ, ଭାଗବତପାଠ ବା ମହାପ୍ରସାଦସେବନରେ ହୋଇପାରିନି। ତା'ଲାଗି ବହୁ ଲୋକର ବହୁ ସ୍ୱେଦ, ବହୁ ସମୟ ଓ ବହୁ ରକ୍ତ ଦରକାର ହୋଇଛି। ଜୀବନର ସିଦ୍ଧି ଲାଗି ସ୍ୱେଦ ଓ ନହେଲେ ନିଜର ରକ୍ତ ଢାଳିବା ଜୀବର ଧର୍ମ– ଆମ୍ଭେମାନେ ବହୁଦିନ ହେଲା ତା' ଭୁଲିଯାଇଛୁ ଓ ଆମ୍ଭମାନଙ୍କର ଅଧଃପତନର କାରଣ ଏହିଠାରେ। ରାମଦାସଙ୍କ ପରି ସନ୍ନ୍ୟାସୀ ଶିବାଜୀଙ୍କୁ କଳେ-କୌଶଳେ ସଂଗ୍ରାମ ଓ ଜୀବବଧ କରିବାକୁ ଉତ୍ତେଜିତ କରି ବିରାଟ ସାମ୍ରାଜ୍ୟ ସ୍ଥାପନ କରାଇପାରିଲେ। ଆଉ ପ୍ରତାପରୁଦ୍ର, ଜୀବର କି ମୁକ୍ତି ଲାଗି, ସଂଗ୍ରାମଭୂମି ତ୍ୟାଗ କରି ଚୈତନ୍ୟଙ୍କ ପଦରଜରେ ଗଡ଼ିବାକୁ ଲାଗିବାରୁ, ଉତ୍କଳର ଦକ୍ଷିଣ ପ୍ରଦେଶ କେବଳ ଚ୍ୟୁତ ହେଲା ନୁହେଁ, କୃଷ୍ଣଦେବ ରାୟ, କଟକ ପର୍ଯ୍ୟନ୍ତ ବିଜୟ ଅଭିଯାନରେ ଆସିଲେ ଓ ଦୁର୍ବଳ ପ୍ରତାପରୁଦ୍ର ଶତ୍ରୁକୁ କନ୍ୟାଦାନ କରି ଆତ୍ମରକ୍ଷା କଲେ। ପ୍ରତାପଙ୍କ ଦୁର୍ବଳତା ସମୟ-ସ୍ରୋତରେ ବନ୍ୟା ହୋଇ ଦେଶମୟ ବ୍ୟାପିଛି ଓ ଓଡ଼ିଆ ଜାତି ତିନିଶତ ବର୍ଷ ହେଲା ନାମ-ସଂକୀର୍ତ୍ତନ କରି କରି ଅମନୁଷ୍ୟ ହୋଇପଡ଼ିଛି। ଅଥଚ ଏହି ତିନିଶ' ବର୍ଷ ଭିତରେ ମର୍ହଟ୍ଟା, ତାର ଅଜ୍ଞାତ ଗିରିଗହ୍ୱରରୁ ଯେ ଖଣ୍ଡା ଧରି ବାହାରିଛି, ତାକୁ ପ୍ରତିରୋଧ କରିବାକୁ କେହି ନାହିଁ, ଶିବାଜୀଠୁ ତିଳକ ଯାଏଁ ପୁରୁଷକୁ ପୁରୁଷ ବିରାଟ ବିରାଟ ନର-ନେତା ବାହାରି ସେ ଜାତିର ଦିଗ୍‌ବିଜୟ ଚଳେଇଆସିଛନ୍ତି।

ହୁଏତ କିଏ କହିପାରନ୍ତି, ମର୍ହଟ୍ଟା ଓ ଜର୍ମାନଗୁଡ଼ାକ ପଶୁ, ପାଷଣ୍ଡ– ଏମାନଙ୍କର ଧର୍ମ ନାହିଁ, ସାହିତ୍ୟ ନାହିଁ। କିନ୍ତୁ ମନେରଖିବାକୁ ହେବ, ସମଗ୍ର ୟୁରୋପରେ ଜର୍ମାନ୍‌ମାନେ ସବୁଠାରୁ ବୁଦ୍ଧିମାନ୍ ଜାତି ଓ ସେମାନଙ୍କର ସାହିତ୍ୟ ଗେଟେ ପ୍ରଭୃତିଙ୍କ ଅବଦାନରେ ସମୃଦ୍ଧ। ଆଉ ମରହଟ୍ଟାମାନଙ୍କ ପ୍ରାଚୀନ ଓ ନବୀନ ସାହିତ୍ୟ, ଆମ ଓଡ଼ିଆ ପ୍ରାଚୀନ ଓ ନବୀନ ସାହିତ୍ୟଠାରୁ ଯଥେଷ୍ଟ ସମୃଦ୍ଧ ଓ ମର୍ହଟ୍ଟା ଯାତ୍ରୀ, ପଥିକ, କୃଷକ ବା ସିପାହି ଯେତେବେଳେ ଜୀବନ-ସଂଗ୍ରାମରୁ ଫେରିଆସେ, ସେ ତୁକାରାମ୍ ବା ଏକନାଥଙ୍କର ପ୍ରାଣସ୍ପର୍ଶୀ 'ଅଭଙ୍ଗ' ଗାନ କରି କରି ନିଦ୍ରା ଯାଏ। ସେ ଅଭଙ୍ଗମାନଙ୍କର ତୁଳନା ଓଡ଼ିଆ ସାହିତ୍ୟରେ ମିଳିବା ଦୁଷ୍କର।

ମନୁଷ୍ୟ ଦେହରେ ଜୀବ-ଶକ୍ତି ପ୍ରଚୁର ଥିଲେ ତାହା ନାନା ଦିଗରେ ବିକଶିତ ହୁଏ– ବସନ୍ତର ଆନନ୍ଦ ସାମାନ୍ୟ ଘାସରେ ମଧ ଯେପରି ଫୁଟି ବାହାରେ। ଏହି ଜୀବଶକ୍ତି, କର୍ମ-ପ୍ରବଣତାରେ ଉଜ୍ଜୀବିତ ରହେ। ଆତ୍ମ-ବିଶ୍ୱାସ ଓ ଉଚ୍ଚାଭିଳାଷ ଏହି ଶକ୍ତି-ବୃକ୍ଷର ଆଳବାଳ ଓ ଜଳଧାରା। ଯେଉଁ ଧର୍ମ ଏହି ଜୀବ-ଶକ୍ତିର ଉଦ୍‌ବୋଧନ କରେ ନାହିଁ, ତାହା ମିଥ୍ୟା ଧର୍ମ। ଇସ୍‌ଲାମ ଏହି ଶକ୍ତିର ଉଦ୍‌ବୋଧନ କରିବାରୁ ୫୦ ବର୍ଷ ଭିତରେ ଅସଭ୍ୟ ଆରବ ସୁସଭ୍ୟ ହେଲା ଓ ମୁସଲମାନର ଚନ୍ଦ୍ର-ଲାଞ୍ଛିତ ପତାକା ସ୍ପେନ୍‌ରୁ ଭାରତ ପର୍ଯ୍ୟନ୍ତ ଉଡ଼ିବାକୁ ଲାଗିଲା। ଯେଉଁ ଧର୍ମ କେବଳ ଓପାସ, ନାମ-ସଂକୀର୍ତ୍ତନ, ଭାଗବତପାଠ ଦ୍ୱାରା ଆତ୍ମାକୁ ମୁକ୍ତି ଦେବାପାଇଁ କହେ ଓ ଜୀବନରେ

ଉଚ୍ଚାଭିଳାଷ ଓ ଆତ୍ମବିଶ୍ୱାସ ପାଇଁ ସ୍ଥାନ ରଖେନାହିଁ, ତାହା ମିଥ୍ୟା ଧର୍ମ। ଏହି ମିଥ୍ୟା ଧର୍ମ, ଆମ୍ଭମାନଙ୍କୁ ନିର୍ଜୀବ ଓ ପଙ୍ଗୁ କରିଛି। ଆମ୍ଭମାନଙ୍କର କର୍ମଠତା ନାହିଁ, ସିଦ୍ଧି ଲାଗି ସ୍ୱେଦ ଓ ରକ୍ତ ଦେବାର ଆମେ ଭୁଲିଯାଇଛୁ ଓ ଉଚ୍ଚାଭିଳାଷ ଭୁଲି, ଛୋଟ ଛୋଟ ଲାଭରେହିଁ ସନ୍ତୁଷ୍ଟ ରହୁଛୁ।

ଅନେକେ କହନ୍ତି ଓଡ଼ିଆ ଦରିଦ୍ର। ଏ ଦେଶରେ ସକଳ ନିଷ୍ଫଳତା ଏହି ଦାରିଦ୍ର୍ୟଦୋଷରେ ଘୋଡ଼େଇଦିଆଯାଏ। କିନ୍ତୁ ଠିକ୍ କଥା ଏହି ଯେ, ଓଡ଼ିଆର ଧନ-ଦାରିଦ୍ର୍ୟ ଅପେକ୍ଷା, ମନ ଓ ଶକ୍ତିର ଦାରିଦ୍ର୍ୟ ବେଶି।

ମର୍ହଟ୍ଟାମାନେ ମଧ୍ୟ ଓଡ଼ିଆମାନଙ୍କ ପରି ଅତ୍ୟନ୍ତ ଦରିଦ୍ର। ମୁଁ ଶୁଣିଛି, କୋଂକଣୀ ବ୍ରାହ୍ମଣ– ଯେଉଁମାନେ ମର୍ହଟ୍ଟାମାନଙ୍କ ମଧ୍ୟରେ ଅତ୍ୟନ୍ତ ବୁଦ୍ଧିମାନ୍– ସେମାନଙ୍କର ବାଡ଼ି-ଗୋବରେ ଗୋବାଏ ସୁଦ୍ଧା ଜମି ନ ଥାଏ। ମୁଣ୍ଡର ମସ୍ତିଷ୍କ ସେମାନଙ୍କର ଏକମାତ୍ର ସଂପଦ। ତା'ରି ବଳରେ ଏମାନେ ବମ୍ବେ ପ୍ରଦେଶରେ ସମସ୍ତ ବଡ଼ ଚାକିରି ଓ ବୁଦ୍ଧିଜୀବୀ କାର୍ଯ୍ୟ ମାଡ଼ିବସିଛନ୍ତି ଓ ପ୍ରଗାଢ଼ ନିଷ୍ଠାରେ ପ୍ରକାଣ୍ଡ ପ୍ରକାଣ୍ଡ ଅନୁଷ୍ଠାନମାନ ମଧ୍ୟ ଗଢ଼ିଛନ୍ତି। ଏମାନଙ୍କର ଜୀବନଯାପନ ଅତ୍ୟନ୍ତ ସରଳ; କିନ୍ତୁ ଏମାନଙ୍କର ଉଚ୍ଚାଭିଳାଷର ସୀମା ନାହିଁ। ଆମ୍ଭମାନଙ୍କ ପରି ଦରିଦ୍ର ହୋଇ ମଧ୍ୟ, ଅସାଧାରଣ ନିଷ୍ଠା ବଳରେ, ଏମାନେ ଭାରତ ସେବକ ସମିତି, ନାରୀ ବିଶ୍ୱବିଦ୍ୟାଳୟ, ଭଣ୍ଡାରକର ଅନୁସନ୍ଧାନ ସମିତି ପ୍ରଭୃତି ବିରାଟ ଅନୁଷ୍ଠାନମାନ ଗଢ଼ିପାରିଛନ୍ତି। ଆଉ ଆମ ଓଡ଼ିଆଙ୍କର ନିଷ୍ଠା, ଚରିତ୍ର, ଦେଶସେବାର ଗଭୀରତା ଏତେ ଯେ, ସତ୍ୟବାଦୀ ସ୍କୁଲ ପରି ହାଇସ୍କୁଲଟାଏ ମଧ୍ୟ ତିଷ୍ଠିପାରିଲାନି। ମର୍ହଟ୍ଟା ଦେଶରେ ଗୋଖଲେ, ପାରାଞ୍ଜପେଙ୍କ ପରି ଦିଗ୍‌ଗଜ ପଣ୍ଡିତ ସବୁ ୭୦ ଟଙ୍କା ଦରମାରେ ସନ୍ତୁଷ୍ଟ ରହନ୍ତି, କିନ୍ତୁ ଜଣେ ଓଡ଼ିଆ ଏମ୍.ଏ. ବା ବି.ଏ.ଙ୍କୁ ଗୋଟିଏ ଜାତୀୟ ଅନୁଷ୍ଠାନରେ ଅଳ୍ପ ବେତନରେ କାମ କରିବାକୁ ପଚାରିବାରେ ନାସ୍ତିସୂଚକ ଉତ୍ତର ମିଳେ।

୧୮୭୦ ଖ୍ରୀଷ୍ଟାବ୍ଦରେ ଜର୍ମାନୀ ଓ ଫ୍ରାନ୍‌ସର ଯୁଦ୍ଧ ହୁଏ। ସେହି ଯୁଦ୍ଧରେ ବିସ୍‌ମାର୍କ ଶ୍ରୀକୃଷ୍ଣ ରୂପେ କାର୍ଯ୍ୟ କରି, ଫରାସୀମାନଙ୍କୁ ପରାସ୍ତ କରି, ବିଜୟୀ ବାହିନୀକୁ ପାରିସ୍ ପର୍ଯ୍ୟନ୍ତ ନେଇଯାଇଥିଲେ। ଏହି ବିଜୟୀ ବାହିନୀରେ ନିଚ୍‌ଜେ ବୋଲି ଜଣେ କର୍ମଚାରୀ ଥିଲେ। ଯୁଦ୍ଧ ସାଙ୍ଗହେବା ପରେ ସେ ଏକ ନୂତନ ମତ ପ୍ରଚାର କଲେ। ତାଙ୍କର ମତ ସେହି ଯୁଦ୍ଧର ଅଭିଜ୍ଞତାରୁହିଁ ଉଦ୍ଭୂତ ହୋଇଥିଲା। ସେ ଦେଖିଲେ ଯେ ଫରାସୀମାନେ ଜର୍ମାନ୍‌ମାନଙ୍କଠାରୁ କୌଣସି ଅଂଶରେ ହୀନ ନୁହନ୍ତି– କିନ୍ତୁ ପରାସ୍ତ ହେଲେ କାହିଁକି? ସେ ଠିକ କଲେ ଯେ, ଜର୍ମାନ୍‌ମାନଙ୍କର ପ୍ରବଳ ଜିଗୀଷା ଓ ଜିଜୀବିଷା ହିଁ ସେମାନଙ୍କର ବିଜୟର ମୂଳ ମନ୍ତ୍ର। ଏହି ମତ ତାଙ୍କର କ୍ରମେ ବଦ୍ଧମୂଳ ହେଲା ଓ ସେ ମତ ପ୍ରଚାର କଲେ ଯେ, ଜାତି ବା ବ୍ୟକ୍ତିର ଜୟ, Will to power ବା ଜିଗୀଷା ଉପରେହିଁ ନିର୍ଭର କରେ। ଏହି ପ୍ରବୃତ୍ତି ଯୋଗୁହିଁ, ମନୁଷ୍ୟ ଅପରାପର ପ୍ରାଣୀମାନଙ୍କୁ ନିପାତ କରି ପୃଥିବୀ ଅଧିକାର କରିଛି। ଏବଂ ଏହି ଯୋଗୁଁ ଫରାସୀମାନଙ୍କ ଉପରେ ଜର୍ମାନ୍‌ମାନଙ୍କର

ବିଜୟ। ସେହି କାଳରୁ ଏହି ମତ ଜର୍ମାନୀରେ ପ୍ରଚାରିତ ହୋଇ କ୍ରମେ ଏହା ଜର୍ମାନ୍‌ମାନଙ୍କର ଜାତୀୟ ଧର୍ମରେ ପରିଣତ ହୋଇଛି। ଜର୍ମାନ୍ ବ୍ୟକ୍ତି ଓ ଜାତି, ଏହି **Will to power** ଅତ୍ୟନ୍ତ ଯତ୍ନରେ ବଢ଼ାଇବାରୁ, ମହାଯୁଦ୍ଧ'ର ସର୍ବସ୍ୱାନ୍ତ ହୋଇଥିଲେହେଁ ପୁଣି ୧୫ ବର୍ଷ ପରେ ସିଂହ-ଗର୍ଜନ ଦେଲା।

ବର୍ତ୍ତମାନ ଜଗତରେ ନିଟ୍‌ଜେଙ୍କ ଭକ୍ତ ବହୁତ। ବର୍ଣ୍ଣାଡ଼-ଶ'ଙ୍କ 'ମାନବ ଓ ଅତିମାନବ' ନାମକ ପ୍ରସିଦ୍ଧ ନାଟକର ନୃ-ତତ୍ତ୍ୱ ଓ ଯୌନ-ତତ୍ତ୍ୱ ନିଟ୍‌ଜେଙ୍କ ମତର ଅନୁରୂପ ମାତ୍ର। ଏହାହିଁ ଜୀବ-ଧର୍ମର ମୂଳମନ୍ତ୍ର। ଏହାଦ୍ୱାରା ମନୁଷ୍ୟର ଜୀବଶକ୍ତି ଉଦ୍‌ବୁଦ୍ଧ ହେବ। ଆତ୍ମ-ବିଶ୍ୱାସ ଓ ଉଚ୍ଚାଭିଳାଷ ଜାଗ୍ରତ ହେବ। ଓଡ଼ିଆମାନଙ୍କ ପ୍ରାଣରେ **Will to power** ନାହିଁ; ତେଣୁ ସେମାନେ ନିର୍ଜୀବ। ମହଟ୍ଟା ବା ଜର୍ମାନ୍‌ମାନଙ୍କର ତାହା ଅଛି; ତେଣୁ ସେମାନେ ଶକ୍ତିଶାଳୀ ଓ ଦିଗ୍‌ବିଜୟୀ। ଏ ଜାତିର ଅଭ୍ୟୁତ୍‌ଥାନ ଯେଉଁମାନେ ଚାହାନ୍ତି, ସେମାନଙ୍କର ମନେରଖିବାକୁ ହେବ– ଉପବାସ, ନାମ-କୀର୍ତ୍ତନ, ସୂତାକଟା, ଭାଗବତପାଠରେ କୌଣସି ଜାତି ଉଠିନି; ଏ ଜାତି ଉଠିବା ଅସମ୍ଭବ। ବହୁଶତବର୍ଷ ହେଲା, ଏ ପାଳାର ପରୀକ୍ଷା ହେଲା ଏବଂ ଫଳ ଦେଖାଯାଉଛି, ଅତ୍ୟନ୍ତ ଭୟାବହ। ବର୍ତ୍ତମାନ ନୂତନ ଧର୍ମ ପ୍ରଚାର ଆବଶ୍ୟକ। ଏହି ଧର୍ମ ମନୁଷ୍ୟର ଜୀବଶକ୍ତିକୁ, ତା'ର 'will to power'କୁ ଉଦ୍‌ବୁଦ୍ଧ କରି ଦ୍ୱିଧାହୀନ ଭାବରେ ସ୍ୱେଦ ଓ ରକ୍ତ ଦେବାକୁ ପ୍ରେରଣା ଦେଇ, ହୃଦୟରେ ଆତ୍ମବିଶ୍ୱାସ ଓ ମନରେ ଉଚ୍ଚାଭିଳାଷ ଆଣିଦେବ। ଏହି ଧର୍ମରେହିଁ ଏ ଜାତିର ମୁକ୍ତି ଓ ଉତ୍‌ଥାନ ସମ୍ଭବ। ମୋର ଇଚ୍ଛା, ଉତ୍କଳର ପ୍ରତ୍ୟେକ ତରୁଣ ଏହି ଜୀବ-ଧର୍ମରେ ଦୀକ୍ଷିତ ହୋଇ, ଖାରବେଳ-କପିଳେନ୍ଦ୍ର-ପୁରୁଷୋତ୍ତମ-ନରସିଂହଙ୍କ ଗୌରବକୁ ଏ ଭୂମିରେ ପୁଣି ସତ୍ୟ କରନ୍ତୁ।

□ □ □